

ବାଲ୍ମୀକିକୃତ

# ରାମାୟଣ

ସଂକ୍ଷିପ୍ତସାର

ଜାନକୀବଲ୍ଲଭ ପଟ୍ଟନାୟକ

BALMIKIKRUTA RAMAYANA

by Janaki Ballav Patnaik

Published by Vidyapuri, Cuttack 753 002

ISBN 81-7411-379-7

ପ୍ରଥମ ମୁଦ୍ରଣ, ୧୯୯୧
ବିଦ୍ୟାପୁରୀ ଦ୍ୱାରା
ଦ୍ୱିତୀୟ ମୁଦ୍ରଣ, ସେପ୍ଟେମ୍ବର ୨୦୦୧

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩୦୦୨

ମୁଦ୍ରଣ
ରୟାଲ୍ ହାଫ୍‌ଟୋନ୍ କୋ, କଟକ

ମୂଲ୍ୟ ଟ ୧୬୦.୦୦

*Ramayan has become the property of the entire Indian folk and as perhaps no other poem in the entire World literature has influenced the whole thinking and the writing of the folk through all the centuries.*

**–Maurice Winternitz**

ଯାବତ୍ ସ୍ଥାସ୍ୟନ୍ତି ଗିରୟଃ
ସରିତଶ୍ଚ ମହୀତଳେ ।
ତାବଦ୍ ରାମାୟଣୀ କଥା
ଲୋକେଷୁ ପ୍ରଚରିଷ୍ୟତି ॥
॥ ରାମାୟଣ ॥

# ସୂଚୀପତ୍ର

## ପରିଶିଷ୍ଟ—୧ ଉତ୍ତରକାଣ୍ଡ



## ପରିଶିଷ୍ଟ—୨

# ୧ ।। ଭୂମିକା

ବାଲ୍ମୀକି ଆଦିକବି । ରାମାୟଣ ଆଦିକାବ୍ୟ । ରାମାୟଣ ପୂର୍ବରୁ ବେଦରେ ଋଷିମାନେ ଇନ୍ଦ୍ର, ଅଗ୍ନି, ରୁଦ୍ର, ମରୁତ୍, ଉଷା, ରାତ୍ରି ଆଦିର ଜୟଗାନ କରି ବହୁ ରଚନା କରିଛନ୍ତି । କିନ୍ତୁ ଛନ୍ଦୋବଦ୍ଧ ପଦ୍ୟ କହିଲେ ଯାହା ବୁଝାଯାଏ, ବାଲ୍ମୀକି ତାହା ପ୍ରଥମେ ରଚନା କଲେ । ଏହି ଛନ୍ଦୋବଦ୍ଧ ପଦକୁ ସଂସ୍କୃତରେ ଶ୍ଳୋକ କୁହାଯାଏ । ବାଲ୍ମୀକି ଏହି ଶ୍ଳୋକର ସ୍ରଷ୍ଟା ଓ ରଚୟିତା । କ୍ରୌଞ୍ଚମିଥୁନର ଦୁଃଖ ଓ ବେଦନାକୁ ଅନୁଭବ କରି ତାଙ୍କର ହୃଦୟରେ ଯେଉଁ ଶୋକ ଜାତ ହେଲା, ତାହା ଶ୍ଳୋକର ରୂପ ଧାରଣ କଲା । 'ଶୋକଃ ଶ୍ଳୋକତ୍ୱମାଗମତ୍' । ଶୋକ ଶ୍ଳୋକ ହୋଇଗଲା ।

କିନ୍ତୁ କେତେଗୁଡ଼ିଏ ବିକ୍ଷିପ୍ତ ଶ୍ଳୋକ ବା ଶ୍ଳୋକର ସମଷ୍ଟି ମହାକାବ୍ୟ ନୁହେଁ । କୌଣସି ଐତିହାସିକ ବା ପୌରାଣିକ ବିଷୟବସ୍ତୁକୁ ଆଧାର କରି ଏକ ବା ଏକାଧିକ ଛନ୍ଦ ସାହାଯ୍ୟରେ ବିଭିନ୍ନ ରସ ପରିବେଷଣ କରି ପାଠକ ଓ ଶ୍ରୋତାର ମନକୁ ମୁଗ୍ଧ କରୁଥିବା କବିର କୃତିକୁ କାବ୍ୟ କୁହାଯାଏ । ରାମାୟଣ ସେହି ଦୃଷ୍ଟିରୁ ସଂସ୍କୃତ ସାହିତ୍ୟର ପ୍ରଥମ ମହାକାବ୍ୟ । ଏଥିରେ ୨୪ ହଜାର ଶ୍ଳୋକ ଅଛି ଏବଂ ଏହା ସାତ କାଣ୍ଡ ବା ଖଣ୍ଡରେ ବିଭକ୍ତ । ମହାଭାରତକୁ ଛାଡ଼ିଦେଲେ ଏପରି ବିଶାଳ କାବ୍ୟ ପୃଥିବୀରେ ବିରଳ । ବାଲ୍ମୀକି ଅନୁଷ୍ଟୁପ୍ ଛନ୍ଦରେ ପ୍ରଥମ ଶ୍ଳୋକ ଏବଂ ଏହି ଶ୍ଳୋକରେ ପ୍ରାୟ ସମଗ୍ର ରାମାୟଣ ରଚନା କରିଥିଲେ ମଧ୍ୟ ଏଥିରେ ଅନ୍ୟାନ୍ୟ ଛନ୍ଦ, ଯଥା ଉପଜାତି, ବଂଶସ୍ଥ, ପୁଷ୍ପିତାଗ୍ରା, ମାଳିନୀ ଆଦି ସ୍ଥାନେ ସ୍ଥାନେ ବ୍ୟବହାର କରିଛନ୍ତି । ତେଣୁ ସେ ମଧ୍ୟ ସଂସ୍କୃତ କାବ୍ୟରେ ଏକାଧିକ ଛନ୍ଦର ପ୍ରବର୍ତ୍ତକ ।

ରାମାୟଣ ରାମଙ୍କ ଜୀବନ ଉପରେ ଆଧାରିତ ମହାକାବ୍ୟ । ଅଯୋଧ୍ୟାର ରାଜପୁତ୍ର ବିଶ୍ୱାମିତ୍ରଙ୍କ ଆଶ୍ରମ ବାଟ ଦେଇ ମିଥିଳା ଯାତ୍ରା କରିଛନ୍ତି । ସେଠାରେ ଶିବଧନୁ ଭଙ୍ଗ ଓ ସୀତାଙ୍କୁ ବିବାହ କରି ଅଯୋଧ୍ୟା ଫେରିଆସିଛନ୍ତି । ପୁଣି ପିତୃସତ୍ୟ ପାଳନପାଇଁ ବନବାସ କରିବାବେଳେ ଉତ୍ତରଭାରତରୁ ମଧ୍ୟଭାରତ, ଦଣ୍ଡକାରଣ୍ୟ, କିଷ୍କିନ୍ଧ୍ୟା ଓ ଲଙ୍କାରେ ପହଞ୍ଚିଛନ୍ତି । ରାବଣ ସହିତ ଯୁଦ୍ଧରେ ଜୟଲାଭ କରି ଲକ୍ଷ୍ମଣ ଓ ସୀତାଙ୍କ ସହିତ ପୁଣି ଅଯୋଧ୍ୟା ଫେରି ଆସିଛନ୍ତି । ତେଣୁ ତାଙ୍କ ଜୀବନର ଘଟଣାବଳୀ କେବଳ ଅଯୋଧ୍ୟାରେ ସୀମିତ ନ ହୋଇ ସସାଗରା ଭାରତବର୍ଷକୁ ବ୍ୟାପ୍ତ ହୋଇଛି । ଏହି କାବ୍ୟରେ କେକୟ, କୁରୁ, ପାଞ୍ଚାଳ, କୋଶଳ, କାଶୀ, ମଗଧ, ଅଙ୍ଗ, ବିଦେହ ଆଦି ଉତ୍ତରଭାରତର ରାଜ୍ୟ ସମୂହ, ଦକ୍ଷିଣଭାରତର କିଷ୍କିନ୍ଧ୍ୟା ରାଜ୍ୟ ଓ ଦକ୍ଷିଣସମୁଦ୍ର ମଧ୍ୟସ୍ଥ ଲଙ୍କା ଦ୍ୱୀପର ଆଧିପତ୍ୟ ବର୍ଣ୍ଣନା କରାଯାଇଛି । ବିନ୍ଧ୍ୟାଚଳରୁ ଗୋଦାବରୀ ପର୍ଯ୍ୟନ୍ତ ବ୍ୟାପ୍ତ ଓ ଦଣ୍ଡକାରଣ୍ୟ ନାମରେ ଖ୍ୟାତ ମହାରଣ୍ୟ; ଚିତ୍ରକୂଟ, ବିନ୍ଧ୍ୟ, ମହେନ୍ଦ୍ର ମଳୟ, ମାଲ୍ୟବନ୍ତ ଆଦି

ଗିରିସମୂହ; ଗଙ୍ଗା, ଯମୁନା, ସରଯୁ, କୁଶୀ, ଗୋଦାବରୀ ଆଦି ନଦୀଗଣ; ବିଭିନ୍ନ ଶୈଳ ଓ ପ୍ରସ୍ରବଣ, ବ୍ୟାଘ୍ର, ସିଂହ, ଭଲ୍ଲୁକ, ବରାହ, ମୃଗ ଆଦି ପଶୁ, ହଂସ, ସାରସ, କ୍ରୌଞ୍ଚ, ଡାହୁକ, ଚକ୍ରବାକ, କାକ, ଗୃଧ୍ର, ଶୁକ, ମୟୂର ଆଦି ପକ୍ଷୀ; ଶାଳ, ଅଶନ, ଅର୍ଜୁନ, କଦମ୍ବ, ଚମ୍ପକ, ଅଶୋକ, ଆମ୍ର, ପଣସ, ଅଁଳା, ଜାମୁ ଆଦି ବିଭିନ୍ନ ପୁଷ୍ପ ଓ ଫଳବୃକ୍ଷ; ବସନ୍ତ, ବର୍ଷା, ଶରତ, ହେମନ୍ତ ଆଦି ଋତୁମାନଙ୍କର ଚିତ୍ର ରାମାୟଣର ଛତ୍ରେ ଛତ୍ରେ ସୌନ୍ଦର୍ଯ୍ୟମୟୀ ବୈଚିତ୍ର୍ୟମୟୀ ଭାରତଭୂମିକୁ ନିତ୍ୟ ନୂତନ ରୂପରେ ପ୍ରକଟିତ କରିଛି । ରାଜା ଋଷି, ଯୋଦ୍ଧା ଓ ଯାଜକ, ଶିଳ୍ପୀ ଓ ସଙ୍ଗୀତଜ୍ଞ, ଗାୟକ ଓ ନର୍ତ୍ତକ, ନଗର ଓ ଜନପଦବାସୀ, ଅନ୍ତଃପୁରର ନାରୀ ଓ ବନବାସିନୀ ଶବରୀ, ସମସ୍ତେ ଏହାର ବିଶାଳ ଚିତ୍ରପଟରେ ଆବିର୍ଭୂତ ହୋଇ ସେମାନଙ୍କର ଧର୍ମଧାରଣା, ଆଚାର ସଂସ୍କାର, ରୀତିନୀତି ଦ୍ୱାରା ଭାରତର ବୈଶିଷ୍ଟ୍ୟ ଓ ସାଂସ୍କୃତିକ ବିଭବର ଘୋଷଣା କରୁଛନ୍ତି ।

ଜର୍ମାନ ପଣ୍ଡିତ ଭିଣ୍ଟରନିଜ (Wintenitz)ଙ୍କ ଭାଷାରେ 'ରାମାୟଣ ହେଉଛି ସମଗ୍ର ଭାରତର ଜନଗଣଙ୍କର ସମ୍ପତ୍ତି । ପୃଥିବୀର ସମୁଦାୟ ସାହିତ୍ୟ ମଧ୍ୟରେ ଏପରି କାବ୍ୟ କ୍ୱଚିତ୍ ଅଛି, ଯେ କି ଶତାବ୍ଦୀ ଶତାବ୍ଦୀ ଧରି ଏକ ମହାଜାତିର ଚିନ୍ତାଧାରା ଓ ସାହିତ୍ୟକୁ ଏଭଳି ଭାବରେ ପ୍ରଭାବିତ କରିପାରିଛି ।

କେବଳ ଭାରତୀୟ ମହାଜାତି ନୁହେଁ, ରାମାୟଣକୁ ଏସିଆର ମହାକାବ୍ୟ ଆଖ୍ୟା ଦିଆଯାଇପାରେ । ସିଂହଳ, ଯବଦ୍ୱୀପ, (ଇଣ୍ଡୋନେସିଆ), ବ୍ରହ୍ମଦେଶ, ମାଳୟ, ଚମ୍ପା (ଭିଏତ୍‌ନାମ) କାମ୍ବୋଜ (କାମ୍ପୁଚିଆ), ଲାଓସ, ଥାଇଲାଣ୍ଡ, ମଙ୍ଗୋଲିଆ ଆଦି ଦେଶରେ ସେହିସବୁ ସ୍ଥାନୀୟ ଭାଷାରେ ବାଲ୍ମୀକିଙ୍କ ମୂଳ ରାମାୟଣର ଛାୟାରେ ରାମାୟଣମାନ ରଚିତ ହୋଇଛି । ଇଣ୍ଡୋନେସିଆରେ ଏହାର ନାମ 'ରାମାୟଣ କକବିନ୍' ଏବଂ ଏହାର ରଚୟିତା ଯୋଗୀଶ୍ୱର ନାମକ କବି । ରାମାୟଣର ରଚୟିତା ଜଣେ ଯୋଗୀ ବା ଋଷି ହେବା ଦରକାର । 'ନାନୃଷିଃ କୁରୁତେ କାବ୍ୟମ୍ ।' ମାଳୟ ରାମାୟଣର ନାମ 'ହେକିୟତ ସେରିରାମ ।' ବ୍ରହ୍ମଦେଶରେ ଏହାର ନାମ 'ରାମ ବତ୍‌ଥୁ ।' ଥାଇଲାଣ୍ଡରେ 'ରାମ କିଏନ' ବା ରାମକୀର୍ତ୍ତି । ଇଣ୍ଡୋନେସିଆ, ଥାଇଲାଣ୍ଡ, କାମ୍ପୁଚିଆ ଆଦି ଦକ୍ଷିଣ-ପୂର୍ବ ଏସିଆର ଲୋକମାନେ ରାମାୟଣ ପ୍ରତି କିପରି ଋଣୀ, ତାହା ଖୋଲାଖୋଲି ଭାବରେ ପ୍ରକାଶ କରନ୍ତି । ଏହିସବୁ ଦେଶମାନଙ୍କରେ ଭିତ୍ତିଚିତ୍ର ଓ ଭାସ୍କର୍ଯ୍ୟରେ ରାମାୟଣର ବିଷୟବସ୍ତୁକୁ ଆଧାର କରାଯାଇଛି । ଇଣ୍ଡୋନେସିଆର ପ୍ରମ୍ବନନ ଶିବମନ୍ଦିର ଓ କାମ୍ପୁଚିଆର ଆଙ୍ଗକରବଟ ବୌଦ୍ଧ ମନ୍ଦିରର ଗାତ୍ରରେ ରାମାୟଣର ଗାଥା ଖୋଦନ କରାଯାଇଛି । ଥାଇଲାଣ୍ଡର ବଟ ପ୍ରା ସେତୁବନ୍ଧ ଓ ବ୍ୟାଙ୍କକ୍‌ର ରତ୍ନମୟ ବୌଦ୍ଧମନ୍ଦିର (The Temple of the Emerald Budha) ରେ ଅଙ୍କିତ କରାଯାଇଛି । ନାଟକ, ଲୀଳା, ବାଲେ, ରାବଣଛାୟା ଆଦି ଜରିଆରେ ଏବେ ମଧ୍ୟ ସେହିସବୁ ଦେଶରେ ରାମାୟଣ ପ୍ରଚାରିତ ହୁଏ । କେହି କେହି ଦେଶ ବୌଦ୍ଧଧର୍ମ , କେହି କେହି ଇସଲାମ୍ ଧର୍ମ ଗ୍ରହଣ କରିଛନ୍ତି, କିନ୍ତୁ ସେମାନଙ୍କର ସଂସ୍କୃତିର ଭିତ୍ତିଭୂମି ରାମାୟଣ ଉପରେ ପ୍ରତିଷ୍ଠିତ ।

ରାମାୟଣରେ ତିନୋଟି ସଭ୍ୟତାର ବର୍ଣ୍ଣନା ଦେଖିବାକୁ ମିଳେ । ଗୋଟିଏ ଅଯୋଧ୍ୟାକୁ କେନ୍ଦ୍ର କରି ଗଢ଼ି ଉଠିଛି । ଦ୍ୱିତୀୟ କିଷ୍କିନ୍ଧ୍ୟା ଓ ତୃତୀୟ ଲଙ୍କାରେ କେନ୍ଦ୍ରିତ । ଏହି ତିନୋଟି ସଭ୍ୟତାରେ କେତେକ ସମାନତା ଓ କେତେକ ବିଷମତା ଦେଖାଯାଏ । ଶାସନ ରାଜତନ୍ତ୍ରମୂଳକ ଏବଂ ଅଭିଜ୍ଞ ବରିଷ୍ଠ ମନ୍ତ୍ରୀମାନଙ୍କ ପରାମର୍ଶରେ ପରିଚାଳିତ । ଦଶରଥଙ୍କର ଆଠଜଣ ମନ୍ତ୍ରୀଙ୍କ ମଧ୍ୟରେ ବଶିଷ୍ଠ, ବାମଦେବ, କାଶ୍ୟପ, ଜାବାଳି, ଗୌତମ ପ୍ରମୁଖ ଋଷିମାନେ ଥିଲେ । ସେମାନେ ସମସ୍ତେ ଧର୍ମଜ୍ଞ, ମତିମାନ୍, ନୀତିମାନ୍, ଧୈର୍ଯ୍ୟଶୀଳ, ପଣ୍ଡିତ, ନିର୍ଲୋଭ, ଜିତେନ୍ଦ୍ରିୟ ଓ ନିର୍ଭୀକ ଥିଲେ ଏବଂ ରାଜାଙ୍କୁ ସତ୍‌ପରାମର୍ଶ ଦେଉଥିଲେ । ବାନରରାଜ ସୁଗ୍ରୀବଙ୍କର ଯେଉଁ ପାଞ୍ଚଜଣ ସହଚର ମନ୍ତ୍ରୀ ରୂପେ କାର୍ଯ୍ୟ କରୁଥିଲେ, ସେମାନଙ୍କ ମଧ୍ୟରେ ହନୁମାନ ପ୍ରଧାନ ଥିଲେ ଏବଂ ସେ ସମସ୍ତ ଗୁଣରେ ପରିପୂର୍ଣ୍ଣ ଥିଲେ । ରାବଣର ମନ୍ତ୍ରୀମାନେ ମଧ୍ୟ ନିର୍ଭୀକ ଭାବରେ ରାଜାଙ୍କୁ ପରାମର୍ଶ ଦେଉଥିଲେ । ଅବଶ୍ୟ ଏହି ମନ୍ତ୍ରୀମାନେ କେତେବେଳେ ସେନାପତି ଓ କେତେବେଳେ ଦୂତର କାର୍ଯ୍ୟ ମଧ୍ୟ କରୁଥିଲେ । କିନ୍ତୁ ସେମାନଙ୍କର ସତ୍ ପରାମର୍ଶ ରାବଣ କ୍ୱଚିତ୍ ଗ୍ରହଣ କରୁଥିଲା । ଦ୍ୱିତୀୟ ସାମଞ୍ଜସ୍ୟ ହେଉଛି ସଭା । ଦଶରଥ ରାମଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କରିବା ପୂର୍ବରୁ ପ୍ରଧାନ ପ୍ରଧାନ ନଗର ଓ ଜନପଦବାସୀଙ୍କୁ ଡାକି ଏକ ସଭାରେ ସେମାନଙ୍କ ମତାମତ ଲୋଡ଼ିଥିଲେ । ରାଜା ସର୍ବମାନ୍ୟ ଓ ରାଜାଙ୍କର ଆଦେଶ ଅଲଂଘନୀୟ ହେଲେ ମଧ୍ୟ ରାଜା ତାଙ୍କର ପ୍ରଧାନ ସିଦ୍ଧାନ୍ତମାନ ମନ୍ତ୍ରିପରିଷଦ ଓ ପ୍ରଜାଙ୍କର ସଭାକୁ ନ ଡାକି ଗ୍ରହଣ କରୁ ନ ଥିଲେ । ରାମ ବାନରସେନା ସହିତ ଲଙ୍କା ଅବରୋଧ କରିବାବେଳେ ରାବଣ ଦୁଇଥର ତାର ମନ୍ତ୍ରୀ ଓ ପରାମର୍ଶଦାତାମାନଙ୍କ ସହିତ ପରାମର୍ଶ କରି ସାରିବାପରେ ଲଙ୍କାର ସଭାକୁ ଆହ୍ୱାନ କରିଥିଲା ଏବଂ ଏହି ସଭାର ସିଦ୍ଧାନ୍ତ ଅନୁଯାୟୀ ସୀତାଙ୍କୁ ନ ଫେରାଇ ରାମଙ୍କ ସହିତ ଯୁଦ୍ଧ କରିବାର ଘୋଷଣା କରାଗଲା । ତେଣୁ ଲଙ୍କାରେ ମଧ୍ୟ ରାଜତନ୍ତ୍ର ଯେ ସମ୍ପୂର୍ଣ୍ଣ ଏକଛତ୍ରବାଦୀ ନ ଥିଲା, ଯୁଦ୍ଧ, ଶାନ୍ତି ଓ ଯୁବରାଜ ନିଯୁକ୍ତି ଆଦି କାର୍ଯ୍ୟରେ ପ୍ରଜାମାନଙ୍କ ପରାମର୍ଶ ଗ୍ରହଣ କରାଯାଉଥିଲା, ତାହା ଏଥିରୁ ସ୍ପଷ୍ଟ ହୋଇଯାଉଛି । ତୃତୀୟ ସାମଞ୍ଜସ୍ୟ ହେଉଛି– ଜନଗଣଙ୍କର ଖାଦ୍ୟ, ପାନୀୟ, ବସ୍ତ୍ର, ବାସଗୃହ ଆଦି କେତେକ ନିମ୍ନତମ ଆବଶ୍ୟକତାର ଅଭାବ ନ ଥିଲା । ବରଂ ଏ ସବୁର ପ୍ରାଚୁର୍ଯ୍ୟ ଅଯୋଧ୍ୟା ଓ ଲଙ୍କାର ଐଶ୍ୱର୍ଯ୍ୟ ବର୍ଣ୍ଣନାରେ ଉଲ୍ଲେଖ କରାଯାଇଛି । ଭରତ ଓ ତାଙ୍କର ବିଶାଳ ସେନା ଓ ପ୍ରଜାଗଣଙ୍କୁ ଋଷି ଭରଦ୍ୱାଜ ଯେଉଁ ନୈଶଭୋଜି ଦେଇଥିଲେ ଏବଂ ସେଥିରେ ଯେଉଁସବୁ ଖାଦ୍ୟ ଓ ପାନୀୟ ପରିବେଷଣ କରାଯାଇଥିଲା ଏବଂ ନୃତ୍ୟ ଗୀତର ଆୟୋଜନ କରାଯାଇଥିଲା, ତାହା ଆଧୁନିକ ସମୟର ଯେ କୌଣସି ସର୍ବଶ୍ରେଷ୍ଠ ନୈଶଭୋଜି ସହିତ ତୁଳନୀୟ ହୋଇପାରିବ । ବରଂ ଭୌତିକ ଐଶ୍ୱର୍ଯ୍ୟ ଦୃଷ୍ଟିରୁ କିଷ୍କିନ୍ଧ୍ୟା ଓ ସମସ୍ତଙ୍କଠାରୁ ଲଙ୍କା ଅଧିକ ଐଶ୍ୱର୍ଯ୍ୟଶାଳୀ ଥିଲା । ଲକ୍ଷ୍ମଣ କିଷ୍କିନ୍ଧ୍ୟାରେ ପ୍ରବେଶ କରିବାବେଳେ ରୁପାର ପାହାଡ଼ ପରି (ରଜତଗିରିନିଭ) ବାନର ଯୂଥପତିମାନଙ୍କର ପ୍ରାସାଦ ଦେଖିବାକୁ ପାଇଲେ । ରାମାୟଣର ବର୍ଣ୍ଣନା ଦେଖିଲେ ଜଣାଯାଏ, ଅଯୋଧ୍ୟାର ରାଜପ୍ରାସାଦ ଅପେକ୍ଷା କିଷ୍କିନ୍ଧ୍ୟା ରାଜପ୍ରାସାଦ ଅଧିକ ଋଦ୍ଧିମନ୍ତ ଥିଲା । କିନ୍ତୁ ସ୍ୱର୍ଣ୍ଣପୁରୀ ଲଙ୍କାର ଐଶ୍ୱର୍ଯ୍ୟ ସମସ୍ତଙ୍କୁ ଟପି ଯାଇଥିଲା । ଉଭୟ

ରାମ ଓ ଲକ୍ଷ୍ମଣ ଲଙ୍କାକୁ ପ୍ରଥମେ ଦେଖିବାବେଳେ ଅବାକ୍ ବିସ୍ମୟରେ ତାର ପ୍ରଶଂସା କରିଥିଲେ ଏବଂ ରାବଣର ଅବିବେକିତା ଯୋଗୁଁ ଏପରି ରମଣୀୟ ନଗରୀ ଅଚିରେ ନଷ୍ଟ ହୋଇଯିବ ବୋଲି ଦୁଃଖ ପ୍ରକାଶ କରିଥିଲେ । ଏହିସବୁ ସଭ୍ୟତା ମଧ୍ୟରେ ଚତୁର୍ଥ ସାମଞ୍ଜସ୍ୟ ହେଉଛି – ସମ୍ଭ୍ରାନ୍ତ ରାଜପୁରୁଷଗଣ ସଂସ୍କୃତ ଭାଷା ଜାଣିଥିଲେ ଏବଂ ବେଦର ଅଧ୍ୟୟନ କରୁଥିଲେ । ଅଯୋଧ୍ୟାରେ ବେଦଜ୍ଞ ବ୍ରାହ୍ମଣମାନଙ୍କର ବାରମ୍ବାର ଉଲ୍ଲେଖ ଦେଖାଯାଏ । ହନୁମାନ ଲଙ୍କାରେ ଛଦ୍ମବେଶରେ ବୁଲୁଥିଲାବେଳେ ବହୁସ୍ଥାନରେ ବେଦପାଠ ହେଉଥିବାର ଦେଖିବାକୁ ପାଇଥିଲେ । ଇନ୍ଦ୍ରଜିତ୍ ଯଜ୍ଞ ଓ ହୋମ କରି ଦେବତାମାନଙ୍କୁ ସନ୍ତୁଷ୍ଟ କରିଥିଲା । ଯୁଦ୍ଧଯାତ୍ରା ପୂର୍ବରୁ ନିକୁମ୍ଭିଳା ବଟମୂଳେ ଅଗ୍ନିଙ୍କୁ ଯଜ୍ଞରେ ସନ୍ତୁଷ୍ଟ କରିବାପରେ ସେ ଦୁର୍ଜୟ ହୋଇଯାଉଥିଲା । ରାବଣ ବେଦ ଓ ସମସ୍ତ ଶାସ୍ତ୍ରରେ ପଣ୍ଡିତ ଥିଲା । ଶୁଦ୍ଧ ସଂସ୍କୃତ ଭାଷାରେ କଥାଭାଷାରେ ସେ ସୀତାଙ୍କୁ ତାର ନିବେଦନ ବା ଭର୍ତ୍ସନା କରୁଥିବା କଥା ହନୁମାନ ଲକ୍ଷ୍ୟ କରିଥିଲେ । ହନୁମାନ ନିଜେ ମଧ୍ୟ ବେଦଜ୍ଞ ଓ ଶୁଦ୍ଧ ସଂସ୍କୃତ ଭାଷାରେ କଥୋପକଥନ କରୁଥିଲେ । ରାମାୟଣକାଳରେ ଅଯୋଧ୍ୟା, କିଷ୍କିନ୍ଧ୍ୟା, ଲଙ୍କା ସର୍ବତ୍ର ସଂସ୍କୃତ ଭାଷାର ଶିକ୍ଷା ଓ ବେଦାଧ୍ୟୟନ କରାଯାଉଥିଲା । ନୃତ୍ୟ ଓ ସଙ୍ଗୀତର ପ୍ରଚାର ସର୍ବତ୍ର ହେଉଥିଲା ।

କିନ୍ତୁ ଏ ସମସ୍ତ ସାମଞ୍ଜସ୍ୟ ସତ୍ତ୍ୱେ ଏହିସବୁ ସଭ୍ୟତାର ଯେଉଁ ମୌଳିକ ବୈଷମ୍ୟ ରହିଥିଲା, ତାହା ବିଶେଷ ଭାବରେ ଲକ୍ଷ୍ୟ କରିବାର କଥା । ତାହା ହେଉଛି ଆଦର୍ଶବାଦ ସମ୍ପର୍କୀୟ । ସେମାନଙ୍କର ଆଦର୍ଶ ଥିଲା ଭିନ୍ନ ଭିନ୍ନ । ଅଯୋଧ୍ୟା ଥିଲା ଆର୍ଯ୍ୟ ସଂସ୍କୃତିର ଚରମ ଆଦର୍ଶସ୍ଥଳ । ଏହି ଆଦର୍ଶ ହେଉଛି ସତ୍ୟ ଓ ଧର୍ମ ପ୍ରତି ନିଷ୍ଠା । ନାରଦ ରାମଙ୍କ ପୂର୍ବବର୍ତ୍ତୀ ଦଶରଥଙ୍କ ଅଯୋଧ୍ୟା ସମ୍ପର୍କରେ ବର୍ଣ୍ଣନା କରି କହିଛନ୍ତି, ଅଯୋଧ୍ୟାର ଲୋକମାନେ ସଂଯତ, ନିର୍ଲୋଭ ଓ ସତ୍ୟବାଦୀ । ସେମାନେ ନାସ୍ତିକ, ମିଥ୍ୟାବାଦୀ, ନୃଶଂସ ବା ଅସୂୟାପରାୟଣ ନ ଥିଲେ । ପରସ୍ୱ ବା ପରଦାର ଅପହରଣ କରୁ ନ ଥିଲେ । ଏପରି କୌଣସି ଅପରାଧୀ ବ୍ୟକ୍ତି ଥିଲେ ତାକୁ କଠୋର ଦଣ୍ଡ ଦିଆଯାଉଥିଲା । ଇକ୍ଷ୍ୱାକୁ ବଂଶରେ ସଗରପୁତ୍ର ଅସମଞ୍ଜ ଅତ୍ୟାଚାରୀ ଓ ନୃଶଂସ ହୋଇଥିବା ଯୋଗୁଁ ସେ ପିତାଙ୍କ ଦ୍ୱାରା ନିର୍ବାସିତ ହୋଇଥିଲେ । ରାମ ଦଣ୍ଡକାରଣ୍ୟକୁ ନିର୍ବାସିତ ହେବାପରେ ଭରତ ଅଯୋଧ୍ୟାକୁ ଆସି ମାତା କୈକେୟୀଙ୍କୁ ରାମଙ୍କର ନିର୍ବାସନର କାରଣ ପଚାରିଥିଲେ । ସେ ପଚାରିଲେ, ରାମ କ'ଣ କରିଛନ୍ତି ? ସେ କ'ଣ କୌଣସି ବ୍ରାହ୍ମଣର ଧନ ଅପହରଣ କରିଛନ୍ତି ? କୌଣସି ନିର୍ଦ୍ଦୋଷ ବ୍ୟକ୍ତି – ସେ ଧନୀ ହେଉ ବା ଦରିଦ୍ର ହେଉ, ତା ପ୍ରତି ଅନ୍ୟାୟ କରିଛନ୍ତି ? ପରଦାର ହରଣ କରିଛନ୍ତି ? କେଉଁଥିପାଇଁ ତାଙ୍କୁ ରାଜ୍ୟରୁ ନିର୍ବାସିତ କରାଯାଇଛି । 'କସ୍ମାତ୍ ସ ଦଣ୍ଡକାରଣ୍ୟଂ ଭ୍ରାତା ରାମ ବିବାସିତଃ' । ଅର୍ଥାତ୍ ଏହିସବୁ ଦୋଷରେ ଯେକୌଣସି ବ୍ୟକ୍ତି ଏପରିକି ରାଜପୁତ୍ର ହେଲେ ମଧ୍ୟ ତାଙ୍କୁ ନିର୍ବାସିତ କରାଯାଇପାରେ । କିନ୍ତୁ ନିର୍ଦ୍ଦୋଷ ରାମଙ୍କୁ କାହିଁକି ଏହି ଦଣ୍ଡ ଦିଆଗଲା ? ଦଶରଥ କୈକେୟୀଙ୍କୁ ବର ଦେବାପାଇଁ ପୂର୍ବରୁ ସତ୍ୟ କରିଥିବା ଯୋଗୁଁ ତାହା ପାଳନ କରିବାପାଇଁ ବାଧ୍ୟ ହୋଇଥିଲେ । ରାମରାଜ୍ୟ ସମ୍ପର୍କରେ ବର୍ଣ୍ଣନାକରି ନାରଦ କହିଛନ୍ତି,

ରାମରାଜ୍ୟରେ ପ୍ରଜାମାନେ ଧର୍ମପରାୟଣ, ସତ୍ୟନିଷ୍ଠ, ନିଜ ନିଜ କାର୍ଯ୍ୟରେ ସନ୍ତୁଷ୍ଟ ଓ ସୁଲକ୍ଷଣଯୁକ୍ତ ଥିଲେ । ରାମାୟଣରେ ବାରମ୍ବାର ଏହି ଧର୍ମର କଥା ଉଲ୍ଲେଖ କରାଯାଇଛି ।

ଧର୍ମ କ'ଣ ? ଶାସ୍ତ୍ରରେ ଏହାର ବହୁ ବ୍ୟାଖ୍ୟା ଓ ଉଦାହରଣ ଦିଆଯାଇଛି । କିନ୍ତୁ ସେଥିମଧ୍ୟରୁ ଦୁଇଟି ବିଶେଷ ଉଲ୍ଲେଖଯୋଗ୍ୟ । ଆଚରଣ ଦ୍ୱାରାହିଁ ଧର୍ମ ପ୍ରତିଷ୍ଠିତ ହୁଏ । ବରଂ ଭିନ୍ନ ଭିନ୍ନ ସମୟରେ ଈଶ୍ୱରଙ୍କ ଅବତାରୀ ପୁରୁଷମାନେ ସଂସାରକୁ ଆସି ଏହି ଆଚରଣ ପ୍ରତିଷ୍ଠା କରନ୍ତି । 'ଆଚାରପ୍ରଭବୋ ଧର୍ମଃ ଧର୍ମସ୍ୟ ପ୍ରଭୁରଚ୍ୟୁତଃ ।' ରାମଙ୍କୁ ହିଁ ବାଲ୍ମୀକି ସେହି ଶ୍ରେଷ୍ଠ ପୁରୁଷ 'ରାମୋ ବିଗ୍ରହବାନ୍ ଧର୍ମଃ' ରୂପରେ ଅବତାରଣା କରିଛନ୍ତି ।

ଅଯୋଧ୍ୟାରେ ଏହି ସଭ୍ୟତା ସହିତ ଅନ୍ୟ ଦୁଇ ସଭ୍ୟତାର ତୁଳନା କଲେ ପ୍ରକୃତ ପାର୍ଥକ୍ୟ ଲକ୍ଷ୍ୟ କରାଯାଏ । ବାଳୀଙ୍କ ଅନୁପସ୍ଥିତିରେ ସୁଗ୍ରୀବ ରାଜା ହୋଇଯିବା, ବାଳୀ ଆସିବା ପରେ ସୁଗ୍ରୀବ ରାଜପଦ ଛାଡ଼ିଦେଇ ତାଙ୍କ ପ୍ରତି ସମ୍ପୂର୍ଣ୍ଣ ଆନୁଗତ୍ୟ ପ୍ରକାଶ କଲେ ମଧ୍ୟ ବାଳୀ ଦ୍ୱାରା ଅପମାନିତ ଓ ରାଜ୍ୟରୁ ବିତାଡ଼ିତ ହେବା, ସୁଗ୍ରୀବଙ୍କର ପତ୍ନୀକୁ ବାଳୀ ଉପଭୋଗ କରିବା ଓ ବାଳୀଙ୍କ ପତ୍ନୀକୁ ସୁଗ୍ରୀବ ଉପଭୋଗ କରିବା, କିଷ୍କିନ୍ଧ୍ୟାର ରାଜା ହେବା ପରେ ସୁଗ୍ରୀବଙ୍କର ରାମଙ୍କୁ ଦେଇଥିବା ପ୍ରତିଶ୍ରୁତି ଭୁଲିଯିବା, ଅତ୍ୟଧିକ ମଦ୍ୟପାନ କରିବା ଓ ସ୍ତ୍ରୀମାନଙ୍କ ମଧ୍ୟରେ ବିଳାସରେ ରହି ରାଜକାର୍ଯ୍ୟକୁ ସମ୍ପୂର୍ଣ୍ଣ ଅବହେଳା କରିବା, ମଦବିହ୍ୱଳା ଅବସ୍ଥାରେ ତାରା ଆସି ଲକ୍ଷ୍ମଣଙ୍କୁ ଭେଟିବା ଆଦି ଘଟଣା ତତ୍‌କାଳୀନ କିଷ୍କିନ୍ଧ୍ୟା ସଭ୍ୟତାର ପରିଚୟ ଦିଏ । କେବଳ ଲକ୍ଷ୍ମଣ ଓ ରାମଙ୍କ ଭୟରେ ସୁଗ୍ରୀବ ରାମଙ୍କୁ ସାହାଯ୍ୟ କରିବାପାଇଁ ବାଧ୍ୟ ହୋଇଥିଲେ ।

ଅଯୋଧ୍ୟା ଓ ଲଙ୍କାକୁ ଯଥାକ୍ରମେ ଆର୍ଯ୍ୟ ଓ ଅସୁର ସଭ୍ୟତା ବୋଲି ଆଖ୍ୟା ଦିଆଯାଇପାରେ । ଏହି ଅସୁର ସଭ୍ୟତା ସମ୍ପୂର୍ଣ୍ଣ ଆର୍ଯ୍ୟଧର୍ମର ବିରୋଧୀ । ଗଙ୍ଗାକୂଳରୁ ଲଙ୍କା ପର୍ଯ୍ୟନ୍ତ ବିଭିନ୍ନ ସ୍ଥାନରେ ଋଷି ମୁନିମାନେ ଆଶ୍ରମ ସ୍ଥାପନ କରି ଯେତିକି ଆର୍ଯ୍ୟଧର୍ମର ବିସ୍ତାର କରିବାକୁ ଚେଷ୍ଟା କରୁଥିଲେ, ଅସୁରମାନଙ୍କ ପକ୍ଷରୁ ସେତିକି ତାର ପ୍ରତିରୋଧ ହେଉଥିଲା । ବିଶ୍ୱାମିତ୍ରଙ୍କ ଯଜ୍ଞକୁ ତାଡ଼କା, ସୁବାହୁ ଓ ମାରୀଚ ଭାଙ୍ଗି ଦେଉଥିଲେ । ଦଣ୍ଡକାରଣ୍ୟରେ ଋଷିମାନଙ୍କ ଆଶ୍ରମ ଉପରେ ସେମାନେ ଆକ୍ରମଣ କରୁଥିଲେ । ଜନସ୍ଥାନରେ ରାକ୍ଷସବୀର ଖର ତାର ସେନାପତି ଦୂଷଣ ଓ ତ୍ରିଶିରା ଏବଂ ରାବଣର ଭଉଣୀ ଶୂର୍ପଣଖା ସହିତ ଚଉଦହଜାର ରାକ୍ଷସ ଯୋଦ୍ଧାଙ୍କୁ ଧରି ଏକ ରାଜ୍ୟ ସ୍ଥାପନ କରିଥିଲା । ଅଗସ୍ତ୍ୟ ଋଷି ଇଲ୍ୱଳ ଓ ବାତାପି ଏହି ଦୁଇ ରାକ୍ଷସଙ୍କୁ ନିହତ କରି ଋଷିମାନଙ୍କୁ ଅଭୟ ଦେବାପାଇଁ ଦଣ୍ଡକାରଣ୍ୟ ମଧ୍ୟରେ ଏକ ଆଶ୍ରମ ସ୍ଥାପନ କରିଥିଲେ । ଭରଦ୍ୱାଜ, ସୁତୀକ୍ଷ୍ଣ, ଶରଭଙ୍ଗ, ଅତ୍ରି, ମାତଙ୍ଗ ଆଦି ଋଷିମାନେ ଗଙ୍ଗାଠାରୁ କିଷ୍କିନ୍ଧ୍ୟା ପର୍ଯ୍ୟନ୍ତ ବିଭିନ୍ନ ସ୍ଥାନରେ ଆଶ୍ରମମାନ ସ୍ଥାପନ କରି ଧର୍ମର ପ୍ରଚାର କରୁଥିଲେ । କିନ୍ତୁ ରାକ୍ଷସମାନଙ୍କ କବଳରେ ବନବାସୀ ଋଷି ଓ ତପସ୍ୱୀମାନେ ସାଧାରଣତଃ ଭୟାର୍ତ୍ତ ହୋଇ ରହିଥିଲେ । ଏହି ରାକ୍ଷସମାନଙ୍କର ପ୍ରଧାନ କେନ୍ଦ୍ର ଥିଲା ଲଙ୍କା ।

ଅସୁର ଶବ୍ଦର ଅର୍ଥ ହେଉଛି ପ୍ରାଣନାଶକ (ଅସୂନ୍ ବା ପ୍ରାଣାନ୍ ରାତି ବା ଛେଦୟତି ଇତି ଅସୁରଃ) । ନୃଶଂସ, ନରମାଂସଭୋଜୀ, ପରସ୍ୱ ଓ ପରଦାର ଅପହରଣକାରୀ ରାକ୍ଷସମାନଙ୍କର ଆଦର୍ଶ ଥିଲା ସମ୍ପୂର୍ଣ୍ଣ ସ୍ୱାର୍ଥସର୍ବସ୍ୱ । ସେମାନେ ଆର୍ଯ୍ୟ ଧର୍ମର ନୈତିକତାରେ ବିଶ୍ୱାସ କରୁ ନ ଥିଲେ । ମିଥ୍ୟା, ପ୍ରବଞ୍ଚନା, ଶଠତା, ବଳପ୍ରୟୋଗ ଓ ନିଷ୍ଠୁରତା ଥିଲା ସେମାନଙ୍କ ଆଚରଣର ବିଶେଷତ୍ୱ ।

ଏହି ତିନୋଟି ସଭ୍ୟତା ମଧ୍ୟରେ ଅଯୋଧ୍ୟା ବା ଆର୍ଯ୍ୟ ସଭ୍ୟତାର ଶ୍ରେଷ୍ଠତ୍ୱ ରାମାୟଣରେ ପ୍ରତିପାଦନ କରାଯାଇଛି । ନ୍ୟାୟ, ଅନ୍ୟାୟ, ସତ୍ୟ, ମିଥ୍ୟା ମଧ୍ୟରେ ଯେଉଁ ଅହରହ ସଂଗ୍ରାମ, ସେଥିରେ ସତ୍ୟ ଓ ନ୍ୟାୟର ଜୟ ସୁନିଶ୍ଚିତ ବୋଲି ପ୍ରମାଣିତ କରାଯାଇଛି । ପରିବାର ମଧ୍ୟରେ ବାପ ପୁଅ, ଭାଇ ଭାଇ, ପତି ପତ୍ନୀଙ୍କ ମଧ୍ୟରେ ଶ୍ରଦ୍ଧାପୂର୍ଣ୍ଣ ଆଦର୍ଶ ସମ୍ପର୍କ, ସତ୍ୟ ଧର୍ମରେ ପରିଚାଳିତ ସମାଜ ଓ ରାଷ୍ଟ୍ର ଅନ୍ୟ ପକ୍ଷରେ କଳହ ଓ ବିବାଦରତ ପରିବାର, ହିଂସା, ଦ୍ରୋହ, ଲୋଭ ନୃଶଂସତା ଉପରେ ପ୍ରତିଷ୍ଠିତ ସମାଜ ଓ ରାଷ୍ଟ୍ର ଅପେକ୍ଷା ଉତ୍କୃଷ୍ଟତର ବୋଲି ପ୍ରମାଣ କରାଯାଇଛି ।

ଏହି ପୃଷ୍ଠଭୂମିରେ ଏଠାରେ ରାମାୟଣର ପାତ୍ରମାନଙ୍କର ବିଚାର କରାଯାଇପାରେ । ଅଯୋଧ୍ୟାର ରାଜା ଦଶରଥଙ୍କୁ ବେଦଜ୍ଞ, ବୁଦ୍ଧିମାନ, ଧର୍ମନିଷ୍ଠ, ଶତ୍ରୁମାନଙ୍କ ଦମନକାରୀ ବୋଲି ବର୍ଣ୍ଣନା କରାଯାଇଛି । ସେ ଦିଲୀପ ଓ ରଘୁଙ୍କର ବଂଶଧର ଓ ଅଜଙ୍କର ପୁତ୍ର ଭାବରେ ଏକ ସମ୍ଭ୍ରାନ୍ତ ପରମ୍ପରାର ଅଧିକାରୀ । ପୁତ୍ରପରି ସେ ପ୍ରଜାମାନଙ୍କୁ ପାଳନ କରୁଥିଲେ । ରାମଙ୍କୁ ଯୁବରାଜ କରିବା ବିଷୟ ମନେ ମନେ ସ୍ଥିର କରିଥିଲେ ମଧ୍ୟ ସେ ପ୍ରଜାମାନଙ୍କୁ ନ ପଚାରି ତାହା କରି ନ ଥିଲେ ।

କିନ୍ତୁ ଦଶରଥ ଥିଲେ ସ୍ତ୍ରୈଣ ଓ ଦୁର୍ବଳମନା । ତାଙ୍କର ଅନ୍ତଃପୁରରେ ସାତଶହ ପଚାଶ ଜଣ ରାଣୀ ଥିଲେ ଏବଂ ପରିଣତ ବୟସରେ ସେ କୈକେୟୀଙ୍କୁ ବିବାହ କରି ତାଙ୍କ ଦ୍ୱାରା ଅନେକ ସମୟରେ ପରିଚାଳିତ ହେଉଥିଲେ । ରାକ୍ଷସମାନଙ୍କୁ ଦମନ କରିବାପାଇଁ ବିଶ୍ୱାମିତ୍ର ଯେତେବେଳେ ରାମ ଲକ୍ଷ୍ମଣଙ୍କୁ ମାଗିବାକୁ ଆସିଲେ, ତାଙ୍କୁ ପୂର୍ବରୁ ହଁ କରି ପରେ ମନା କରିବାକୁ ଲାଗିଲେ । ନିଜେ ରାକ୍ଷସମାନଙ୍କୁ ଦମନ କରିବାର ଶକ୍ତି ମଧ୍ୟ ତାଙ୍କର ନ ଥିଲା ।

ରାମ ତାଙ୍କର ପ୍ରିୟତମ ଜ୍ୟେଷ୍ଠପୁତ୍ର । ସର୍ବଜନପ୍ରିୟ । ତାଙ୍କୁ ଯୁବରାଜ କରିବାପାଇଁ ସେ ସ୍ଥିର କଲେ । କିନ୍ତୁ ତାର ବହୁ ପୂର୍ବରୁ କୈକେୟୀଙ୍କ ବିବାହବେଳେ ସେ ତାଙ୍କ ଶ୍ୱଶୁରଙ୍କୁ ପ୍ରତିଶ୍ରୁତି ଦେଇଥିଲେ ଯେ କୈକେୟୀଙ୍କର ପୁତ୍ର ରାଜା ହେବ । ସେଥିପାଇଁ ଭରତ ମାମୁଘରେ ଥିଲାବେଳେ ସେ ରାମଙ୍କୁ ରାଜା କରିବାପାଇଁ ତର ତର ହେଲେ । ପୂର୍ବରୁ ପୁଣି ସେ କୈକେୟୀଙ୍କୁ ଦୁଇଟି ବରର ପ୍ରତିଶ୍ରୁତି ଦେଇଥିଲେ । ବର ତତ୍କ୍ଷଣାତ୍ ମଗାଯାଏ । ମାତ୍ର ଯେତେବେଳେ ସେ ଚାହିଁବେ ତାହା ମାଗି ନେଇପାରିବେ ବୋଲି ରାଜି ହେବାଦ୍ୱାରା ଦଶରଥ ଜାଣିଶୁଣି ନିଜକୁ ଏକ ଦୟନୀୟ ଅବସ୍ଥାରେ ରଖିଥିଲେ । ଏହାଫଳରେ ରାମଙ୍କୁ ସେ ରାଜା କରି ନ ପାରି ସମସ୍ତଙ୍କ ସମକ୍ଷରେ ଅପଦସ୍ଥ ହେଲେ ଏବଂ ସେହି ଦୁଃଖରେ ତାଙ୍କୁ ପ୍ରାଣ ହରାଇବାକୁ ପଡ଼ିଲା ।

ରାମଙ୍କର ମାତା କୌଶଲ୍ୟା ପୁତ୍ରସ୍ନେହରେ ହିଁ ବନ୍ଧି ରହିଥିଲେ । ସେ ଅତିଶୟ ସରଳ ଥିଲେ ଏବଂ ଯାହା ମନକୁ ଆସୁଥିଲା ତାହା ସ୍ପଷ୍ଟ ଭାବରେ ପ୍ରକାଶ କରୁଥିଲେ । ରାମ ବନକୁ ଯିବାର ଶୁଣି ସେ ଭାଙ୍ଗିପଡ଼ିଲେ । ତାଙ୍କର ସପତ୍ନୀର ଚକ୍ରାନ୍ତ ସଫଳ ହେଲା ବୋଲି ଭାବି ସେ କୈକେୟୀ ଓ ଦଶରଥ ଉଭୟଙ୍କ ଉପରେ କ୍ରୁଦ୍ଧ ହେଲେ । ତେଣୁ ଲକ୍ଷ୍ମଣ ଯେତେବେଳେ ପ୍ରସ୍ତାବ ଦେଲେ ଯେ ରାମ ବନକୁ ଯାଆନ୍ତୁ ନାହିଁ ଏବଂ ସେହି ମୁହୂର୍ତ୍ତରେ ସେ ଦଶରଥଙ୍କୁ ଉପଯୁକ୍ତ ଶାସ୍ତି ଦେବାପାଇଁ ପ୍ରସ୍ତୁତ, ସେଥିରେ କୌଶଲ୍ୟା ସଙ୍ଗେ ସଙ୍ଗେ ରାଜି ହୋଇଗଲେ । ରାମଙ୍କ ବନଗମନ ପରେ ଦଶରଥ ତାଙ୍କ ପାଖକୁ ସାନ୍ତ୍ୱନା ପାଇବା ଆଶାରେ ଆସି ତୀବ୍ର ବାକ୍ୟବାଣର ସମ୍ମୁଖୀନ ହେଲେ ଏବଂ ତାହା ରାଜାଙ୍କୁ ଅଧିକ ବିବ୍ରତ କରିବାକୁ ଲାଗିଲା । ଭରତ ମାମୁଘରୁ ଫେରି ତାଙ୍କୁ ଭେଟିବାକୁ ଗଲାବେଳେ କୌଶଲ୍ୟା କହିଲେ, ଭରତ, ତୁ ଯାହା ଚାହୁଁଥିଲୁ ସେହି ନିଷ୍କଣ୍ଟକ ରାଜ୍ୟ ତୋତେ ମିଳିଗଲା । କିନ୍ତୁ ରାମଙ୍କ ବନଗମନରେ ଭରତଙ୍କ ହୃଦୟର ଦୁଃଖ ଓ ବେଦନା ଅନୁଭବ କରିପାରି ସେ ତାଙ୍କୁ କୋଳାଗ୍ରତ କରି ରାଜା ଭାବରେ ନିଜର କର୍ତ୍ତବ୍ୟ ପାଳନ କରିବାପାଇଁ ପରାମର୍ଶ ଦେଇଥିଲେ ।

ସୁମିତ୍ରା ଧର୍ମଦର୍ଶିନୀ, ପ୍ରାଜ୍ଞୀ । ମହାଭାରତରେ ଗାନ୍ଧାରୀଙ୍କ ପରି ତାଙ୍କର ଚରିତ୍ର ଅତି ଉଚ୍ଚକୋଟୀର । ରାମ ବନବାସ ଗଲାବେଳେ ସେ ଦୁଃଖାର୍ତ୍ତ କୌଶଲ୍ୟାଙ୍କୁ ସାନ୍ତ୍ୱନା ଦେଇ କହୁଛନ୍ତି, ରାମ ପ୍ରକୃତି ଓ ଦେବତାମାନଙ୍କ ଦ୍ୱାରା ସୁରକ୍ଷିତ । ୧୪ ବର୍ଷ କାଳିପରି ଚାଲିଯିବ । ରାମ ଫେରିଆସିବେ । ତୁମେ ଦୁଃଖ କର ନାହିଁ । ଲକ୍ଷ୍ମଣ ବନବାସ ପାଇଁ ବିଦାୟ ନେବାକୁ ଆସିବାବେଳେ ସେ କହୁଛନ୍ତି, ଜ୍ୟେଷ୍ଠଭ୍ରାତାର ସେବା କରିବା ତୋର କର୍ତ୍ତବ୍ୟ । ତୋର ଧର୍ମ ।

**ରାମଂ ଦଶରଥଂ ବିଦ୍ଧି ମାଂ ବିଦ୍ଧି ଜନକାତ୍ମଜାମ୍**

**ଅଯୋଧ୍ୟାମଟବୀଂ ବିଦ୍ଧି ଗଚ୍ଛ ତାତ ଯଥାସୁଖମ୍ ।**

'ରାମଙ୍କୁ ଦଶରଥ ବୋଲି ମନେକରି ସୀତାଙ୍କୁ ମୋର ତୁଲ୍ୟା ଏବଂ ଅରଣ୍ୟକୁ ଅଯୋଧ୍ୟା ବୋଲି ମନେକରି ସୁଖରେ ଯାତ୍ରା କର ।'

କୈକେୟୀ ବୟଃକନିଷ୍ଠା ରାଣୀ, ରୂପବତୀ, ସାହସିନୀ । ଦାନବମାନଙ୍କ ସହିତ ଦଶରଥଙ୍କର ଯୁଦ୍ଧ ହେବାବେଳେ ସେ ତାଙ୍କ ସହିତ ଥିଲେ ଓ ରଥ ଭଗ୍ନ ହେବାରୁ ନିଜେ ରଥକୁ ଟେକି ଧରିଥିଲେ ଏବଂ ଆହତ ସ୍ୱାମୀଙ୍କର ସେବା ଶୁଶ୍ରୂଷା କରି ତାଙ୍କୁ ସୁସ୍ଥ କରାଇଥିଲେ । ସେଥିପାଇଁ ଦଶରଥ ସନ୍ତୁଷ୍ଟ ହୋଇ ତାଙ୍କୁ ଦୁଇଟି ବର ମାଗିବାପାଇଁ କହିଥିଲେ । ଅବଶ୍ୟ ବୃଦ୍ଧର ତରୁଣୀ ଭାର୍ଯ୍ୟା ପରି ଦଶରଥଙ୍କର ତାଙ୍କ ପ୍ରତି ଅତ୍ୟଧିକ ଅନୁରକ୍ତିର ସେ ସୁଯୋଗ ନେଉଥିଲେ ଏବଂ କୌଶଲ୍ୟା ଓ ସୁମିତ୍ରାଙ୍କ ପ୍ରତି ଅବଜ୍ଞା ପ୍ରଦର୍ଶନ କରୁଥିଲେ । କୈକେୟୀଙ୍କର ପ୍ରାସାଦରେ ଏକ ପ୍ରକୋଷ୍ଠର ନାମ ଥିଲା କ୍ରୋଧଗୃହ । ଅର୍ଥାତ୍ ରାଜାଙ୍କ ଉପରେ ସେ ଯଦି କ୍ରୁଦ୍ଧ ହେଉଥିଲେ, ସେହି ଗୃହରେ ତଳେ ମୁହଁ ମାଡ଼ି ଶୋଉଥିଲେ ଓ ପରେ ରାଜା ଆସି ତାଙ୍କର ଅଭିମାନ ଭାଙ୍ଗୁଥିଲେ । କିନ୍ତୁ ଅଭିମାନିନୀ କୈକେୟୀଙ୍କୁ ନୀଚ, ନିଷ୍ଠୁର ଓ ଚକ୍ରାନ୍ତକାରୀ ବୋଲି ଯେଉଁ ଆଖ୍ୟା ଦିଆଯାଏ, ତାହା ଠିକ୍

ନୁହେଁ । ତାଙ୍କର ପିତାଙ୍କ ନିକଟରେ ଦଶରଥ ପ୍ରତିଶ୍ରୁତ ଥିଲେ ମଧ ରାମଙ୍କୁ ଛାଡ଼ି ଭରତ ରାଜା ହେବାକଥା ସେ କେବେ ଚିନ୍ତାକରୁ ନ ଥିଲେ । ରାମଙ୍କୁ ସେ ନିଜର ପୁଅଠାରୁ ବଳି ଅଧିକ ସ୍ନେହ କରୁଥିଲେ । ସେଥିପାଇଁ ମନ୍ଥରା ପ୍ରଥମେ ଯେତେବେଳେ ଆସି ରାମ ଯୁବରାଜ ହେଉଥିବାର ସମ୍ବାଦ ଦେଲା, ସେଥିରେ ସେ ଏତେ ଖୁସି ହୋଇଗଲେ ଯେ ନିଜ ଗଳାରୁ ବହୁମୂଲ୍ୟ ହାର ବାହାର କରି ସେ ତାକୁ ପୁରସ୍କାର ଦେଇଥିଲେ । କିନ୍ତୁ ଏକ ସରଳବିଶ୍ୱାସୀ ବାଳିକାପରି ଦାସୀ ମନ୍ଥରାର କଥାକୁ ସେ ବେଦବାକ୍ୟ ପରି ମାନିଯାଉଥିଲେ । ମନ୍ଥରା ତାଙ୍କ ସହିତ ତାଙ୍କର ପିତୃଗୃହରୁ ଆସିଥିଲା ଏବଂ ସେ ଯାହା କହେ, ତାଙ୍କର ଭଲପାଇଁ କହେ ବୋଲି ସେ ମନେ କରୁଥିଲେ । ସେଥିପାଇଁ ମନ୍ଥରାର କୁମନ୍ତ୍ରଣାରେ ଯେଉଁ ଦୁଇଟି ବର କଥା ସେ ସମ୍ପୂର୍ଣ୍ଣ ଭୁଲିଯାଇଥିଲେ, ତାହା ତାଙ୍କର ମନେ ପଡ଼ିଯାଇଥିଲା ଏବଂ ସେତିକିବେଳେ ସେ ତାହା ରାଜାଙ୍କୁ ମାଗିବସିଲେ । ରାକ୍ଷସମାନଙ୍କର ନିଧନପାଇଁ ରାମଙ୍କର ବନବାସ ପ୍ରକୃତରେ ଥିଲା ବିଧିର ଅଭିପ୍ରେତ ଏବଂ କୈକେୟୀ ତାହାର ଏକ ସାଧନ ମାତ୍ର ହୋଇଥିଲେ । ସେଥିପାଇଁ କୈକେୟୀଙ୍କୁ ଦୋଷ ଦେଇ ଲାଭ ନାହିଁ । ତାଙ୍କୁ ଅସମ୍ମାନ ବା ଭର୍ତ୍ସନା ନ କରିବାପାଇଁ ରାମ ଭରତଙ୍କୁ ବାରମ୍ବାର କହୁଥିଲେ ।

ଲକ୍ଷ୍ମଣ ଥିଲେ ରାମଙ୍କର ପ୍ରିୟଭ୍ରାତା, ସଖା ଓ ସହଚର । ସେ ସମ୍ପୂର୍ଣ୍ଣ ଭାବରେ ରାମଙ୍କଠାରେ ନିଜକୁ ସମର୍ପଣ କରିଦେଇଥିଲେ । ରାକ୍ଷସମାନଙ୍କୁ ଦମନ କରିବାପାଇଁ ବିଶ୍ୱାମିତ୍ର ରାମଙ୍କୁ ସାଙ୍ଗରେ ନେବାପାଇଁ ଦଶରଥଙ୍କୁ ଅନୁରୋଧ କଲେ । ଦଶରଥଙ୍କ ଅନୁମତି ନେଇ ରାମ ଯେତେବେଳେ ବାହାରିଲେ, ଲକ୍ଷ୍ମଣ ତାଙ୍କ ସହିତ ଯିବାପାଇଁ ସାଙ୍ଗେ ସାଙ୍ଗେ ବାହାରିପଡ଼ିଲେ ଓ ରାମଙ୍କ ସହିତ ମିଶି ରାକ୍ଷସମାନଙ୍କୁ ଧ୍ୱଂସ କଲେ । ରାମ ଯେତେବେଳେ ପିତୃସତ୍ୟ ପାଳନପାଇଁ ବନବାସକୁ ବାହାରିଲେ, ଲକ୍ଷ୍ମଣ କହିଲେ, ସେ ତାଙ୍କ ସହିତ ନିଶ୍ଚୟ ଯିବେ ଓ ତାଙ୍କର ପରିଚାରକ ହୋଇ ରହିବେ । ସେ କହିଲେ, ମୁଁ ଧନୁର୍ବାଣ ଧରି ଆପଣଙ୍କ ଆଗେ ଆଗେ ବାଟ ଦେଖାଇ ଯିବି । ଆପଣଙ୍କର ଅନୁଚର ହୋଇ ମୁଁ ସମସ୍ତ କାର୍ଯ୍ୟ କରିବି । ଆପଣଙ୍କୁ ଛାଡ଼ି ଦେବଲୋକ, ଅମରତ୍ୱ ବା ତ୍ରିଲୋକର ଐଶ୍ୱର୍ଯ୍ୟ ମୁଁ କିଛି ଚାହେ ନାହିଁ । ଏହା ହେଉଛି ଲକ୍ଷ୍ମଣଙ୍କ ବିଶେଷତ୍ୱ – ରାମ ହିଁ ତାଙ୍କପାଇଁ ସବୁ । ପିତା ମାତା ପତ୍ନୀ, ଅଯୋଧ୍ୟାର ରାଜଭୋଗ, ଏପରିକି ଅମରତ୍ୱ ବା ତ୍ରିଲୋକର ଐଶ୍ୱର୍ଯ୍ୟ ମଧ ତାଙ୍କ ନିକଟରେ ତୁଚ୍ଛ । ଅର୍ଜୁନଙ୍କ ପରି ଲକ୍ଷ୍ମଣ ଈଶ୍ୱରଙ୍କର ସଗୁଣ ଭକ୍ତ । ଅର୍ଜୁନ ଯେପରି କୃଷ୍ଣଙ୍କର ସାଙ୍ଗେ ସାଙ୍ଗେ ରହି ତାଙ୍କର କାର୍ଯ୍ୟ ସାଧନ କରୁଥିଲେ ଓ କୃଷ୍ଣଙ୍କର ତିରୋଧାନ ପରେ ତାଙ୍କର ନିଜତ୍ୱ କିଛି ରହିଲା ନାହିଁ, ଲକ୍ଷ୍ମଣଙ୍କର ସ୍ଥିତି ମଧ ସେହିପରି । ସେ ରାମଙ୍କର କାୟାର ଛାୟା । ରାମତଦ୍‌ଗତପ୍ରାଣ ହୋଇ ସେ ବଞ୍ଚିଥିଲେ । ବିନା ପ୍ରଶ୍ନ ବିନା ଦ୍ୱିଧାରେ ରାମଙ୍କର ଆଦେଶ ପାଳନ କରୁଥିଲେ, ରାମଙ୍କ ପାଖେ ପାଖେ ରହି ଯୁଦ୍ଧରେ ଅସ୍ତ୍ର ଧରି ଲଢୁଥିଲେ, ଅରଣ୍ୟରେ କାଠ ସଂଗ୍ରହ କରିବା, ଖାଦ୍ୟ ସଂଗ୍ରହ କରିବା, କୁଟୀର ନିର୍ମାଣ କରିବା, ରାମ ଶୋଇଲେ ତାଙ୍କୁ ଜଗି ରହିବା ଆଦି ସମସ୍ତ କାର୍ଯ୍ୟ ସେ କରୁଥିଲେ । ଅବସ୍ଥାଚକ୍ରରେ ରାମ ଯେତେବେଳେ ତାଙ୍କୁ ବିସର୍ଜନ

କଲେ, ସେ ଆଉ ମୁହୂର୍ତ୍ତେ ବଞ୍ଚି ରହିବାପାଇଁ ଚାହିଁଲେ ନାହିଁ ଓ ସରଯୂ ଜଳରେ ଆତ୍ମ ବିସର୍ଜନ କଲେ ।

ଲକ୍ଷ୍ମଣଙ୍କ ଦ୍ୱାରା ରାମଙ୍କର ଆଦେଶ ପାଳନ ସମ୍ପର୍କରେ ଏଠାରେ କେତୋଟି ଉଦାହରଣ ଦିଆଯାଇପାରେ । ରାମ ଶୂର୍ପଣଖାର ନାକ କାନ କାଟିଦେବାପାଇଁ ଲକ୍ଷ୍ମଣଙ୍କୁ ଆଦେଶ ଦେଲେ । ଶୂର୍ପଣଖା ରାକ୍ଷସୀ ହେଲେ ମଧ୍ୟ ନାରୀ । ନାକ, କାନ ନ କାଟି ତାକୁ ବିତାଡ଼ିତ କରାଯାଇପାରିଥାନ୍ତା । ଲକ୍ଷ୍ମଣ ଏ ବିଷୟରେ ପ୍ରଶ୍ନ କରିବାର ବ୍ୟକ୍ତି ନ ଥିଲେ । ରାମଙ୍କର ଆଦେଶ ବିନା ବିଚାରରେ ପାଳନ କରିବାକୁ ହେବ । ସୁଗ୍ରୀବ କିଷ୍କିନ୍ଧ୍ୟାରେ ରାଜା ହେବାପରେ ରାମଙ୍କୁ ଦେଇଥିବା ପ୍ରତିଶ୍ରୁତି ଭୁଲିଯାଇ ଭୋଗ ବିଳାସରେ ମାତି ରହିଲେ । ଚାରିମାସ ବିତିଯିବା ପରେ ରାମ ଲକ୍ଷ୍ମଣଙ୍କୁ କହିଲେ— ଲକ୍ଷ୍ମଣ, ଯାଅ, ସୁଗ୍ରୀବଙ୍କୁ ଚେତାଇ ଦେବ, ବାଳୀର ଯେଉଁ ଅବସ୍ଥା ହୋଇଥିଲା ତାକୁ ଟିକିଏ ସେ ଚିନ୍ତା କରିବେ । ଲକ୍ଷ୍ମଣ କହିଲେ, ଚିନ୍ତା କ'ଣ କରିବେ ? ବର୍ତ୍ତମାନ ମୁଁ ତାର ବ୍ୟବସ୍ଥା କରିଦେଇ ଆସୁଛି । ଏହି ଧନୁର୍ବାଣରେ ସୁଗ୍ରୀବଙ୍କୁ ନିହତ କରି ମୁଁ ବାଳୀପୁତ୍ର ବାନରବୀର ଅଙ୍ଗଦଙ୍କୁ ରାଜା କରାଇଦେଇ ଆସୁଛି, ଯେପରିକି ସଙ୍ଗେ ସଙ୍ଗେ ସୀତାଙ୍କୁ ଖୋଜିବା କାର୍ଯ୍ୟ ଆରମ୍ଭ ହୋଇଯିବ । ରାମ 'ଧର' କହିଲେ, ଲକ୍ଷ୍ମଣ ବାନ୍ଧି ଆଣିବାପାଇଁ ପ୍ରସ୍ତୁତ ଥିଲେ । ତୃତୀୟ ଘଟଣା ହେଉଛି ସୀତା ବନବାସ । ଏହା ଲକ୍ଷ୍ମଣଙ୍କ ପାଇଁ ଏକ ଅତି ନିଷ୍ଠୁର ଆଦେଶ ଥିଲା । କିନ୍ତୁ ଲକ୍ଷ୍ମଣ ରାମଙ୍କୁ ପ୍ରଶ୍ନ କଲେ ନାହିଁ । ସଜଳ ନୟନରେ ସୀତାଙ୍କୁ ରଥରେ ବସାଇ ନେଇ ଗଙ୍ଗାର ଅନ୍ୟ ପାଖରେ ଛାଡ଼ି ଦେଇଥିଲେ ।

ଦୁଇଟି କ୍ଷେତ୍ରରେ ଲକ୍ଷ୍ମଣ ରାମଙ୍କର ଆଦେଶ ଲଂଘନ କରିଥିଲେ, ଯାହାର ପରିଣତି ଭୟାବହ ହୋଇଥିଲା । ପ୍ରଥମଟି ହେଉଛି, ମାୟାମୃଗକୁ ମାରିବାକୁ ଯିବାବେଳେ ରାମ ଲକ୍ଷ୍ମଣଙ୍କୁ କହିଥିଲେ ଯେ ସେ ସୀତାଙ୍କୁ ଛାଡ଼ି କୁଆଡ଼େ ଯିବେ ନାହିଁ । କିନ୍ତୁ 'ହା ସୀତା, ହା ଲକ୍ଷ୍ମଣ' ବୋଲି ମାୟାମୃଗର ଚିତ୍କାର ଶୁଣି ସୀତା ଲକ୍ଷ୍ମଣଙ୍କୁ ଶୀଘ୍ର ଯିବାକୁ ଆଦେଶ ଦେଲେ । ଲକ୍ଷ୍ମଣ ଯେତେ ମନାକଲେ, ସୀତା ଅସହ୍ୟ କଟୁବାକ୍ୟ ପ୍ରୟୋଗ କରି ତାଙ୍କୁ ଯିବାପାଇଁ ବାଧ୍ୟ କରିଥିଲେ । ଦ୍ୱିତୀୟ ଘଟଣା ହେଉଛି, ରାମ କାଳ ସହିତ ନିଭୃତ ଆଲୋଚନା କରିବାବେଳେ ଲକ୍ଷ୍ମଣଙ୍କୁ ବାହାରେ ପ୍ରହରୀ ରୂପେ ଜଗାଇଥିଲେ, ଯେପରିକି କେହି ଆସିପାରିବେ ନାହିଁ । ଆଦେଶ ଲଂଘନକାରୀକୁ ପ୍ରାଣଦଣ୍ଡ ଦିଆଯିବ ବୋଲି ରାମ କହିଥିଲେ । କିନ୍ତୁ ଦୁର୍ବାସା ଯେତେବେଳେ ରାମଙ୍କ ସହିତ ସାକ୍ଷାତପାଇଁ ଜିଦ୍ କଲେ ଓ ତାଙ୍କୁ ନ ଛାଡ଼ିଲେ ରାମଙ୍କ ସହିତ ସମସ୍ତ ଅଯୋଧ୍ୟାକୁ ଅଭିଶାପ ଦେଇ ଭସ୍ମସାତ୍ କରିବେ ବୋଲି ଧମକ ଦେଲେ, ଲକ୍ଷ୍ମଣ ଅଭିଶାପର ଡରରେ ରାମଙ୍କ ପାଖକୁ ତାଙ୍କୁ ଆଣିବାପାଇଁ ବାଧ୍ୟ ହୋଇଥିଲେ । ପରିଣାମସ୍ୱରୂପ ରାମ ତାଙ୍କୁ ଦଣ୍ଡ ଦିଅନ୍ତୁ ବୋଲି ନିଜେ ଦାବି କରି ଓ ରାମଙ୍କ ଦ୍ୱାରା ତ୍ୟକ୍ତ ହୋଇ ସେ ସରଯୂରେ ପ୍ରାଣ ବିସର୍ଜନ କରିଥିଲେ । ଏହି ଦଣ୍ଡଭୋଗ କରିବା ବିଷୟରେ ତାଙ୍କର ଉକ୍ତି ରାମାୟଣର କେତେକ ଅମର ମହନୀୟ ବାଣୀ ମଧ୍ୟରେ ଅନ୍ୟତମ । 'ଏକସ୍ୟ ମରଣମସ୍ତୁ ମା ଭୂତ୍ ସର୍ବବିନାଶନମ୍ ।' ମୋର ଜଣକର ପଛେ ମୃତ୍ୟୁ ହେଉ, ସମସ୍ତଙ୍କର ବିନାଶ ନ ହେଉ ।

ବଟବୃକ୍ଷର ଛାୟାରେ ଅନ୍ୟବୃକ୍ଷର ଅବସ୍ଥା ପରି ରାମଙ୍କର ଛାୟାରେ ଲକ୍ଷ୍ମଣଙ୍କ ସ୍ୱାତନ୍ତ୍ର୍ୟ ଘୋଡ଼ାଇ ହୋଇଯାଇଥିଲେ ମଧ୍ୟ ତାଙ୍କର ସ୍ୱତନ୍ତ୍ର ବ୍ୟକ୍ତିତ୍ୱକୁ ଅସ୍ୱୀକାର କରାଯାଇପାରିବ ନାହିଁ । ଲକ୍ଷ୍ମଣ ରୂପବାନ୍, ଗୁଣୀ, ତେଜସ୍ୱୀ, ମହାବୀର, ପ୍ରାଜ୍ଞ ଓ ସଂଯତେନ୍ଦ୍ରିୟ ଥିଲେ । ହନୁମାନ ସୀତାଙ୍କ ପାଖରେ ରାମ ଲକ୍ଷ୍ମଣଙ୍କର ରୂପ ବର୍ଣ୍ଣନା କରିବାବେଳେ ଗୋଟିଏ ବୃନ୍ତର ଦୁଇଟି ଫୁଲ ପରି ସେ ଦୁହିଁଙ୍କୁ ବର୍ଣ୍ଣନା କରିଥିଲେ । ଯୋଦ୍ଧା ଭାବରେ ଲକ୍ଷ୍ମଣଙ୍କର ଖ୍ୟାତି ଅତୁଳନୀୟ ଥିଲା । ରାବଣ ମହାବୀର ଥିଲା, କିନ୍ତୁ ସେ ବାଳୀ, ସହସ୍ରାର୍ଜୁନ ଓ ଲଙ୍କାର ପ୍ରଥମ ଯୁଦ୍ଧରେ ରାମଙ୍କ ଦ୍ୱାରା ପରାସ୍ତ ହୋଇଥିଲା । କିନ୍ତୁ ରାବଣର ପୁତ୍ର ଇନ୍ଦ୍ରଜିତ୍ ଥିଲା ଅପରାଜେୟ । ରାବଣ ଯାହା କରିପାରି ନ ଥିଲା, ସେ ନିଜେ ଦେବଲୋକକୁ ରାବଣ ପାଇଁ ଜୟ କରିଥିଲା, ହନୁମାନଙ୍କୁ ବନ୍ଧନ କରିଥିଲା, ରାମ ଲକ୍ଷ୍ମଣଙ୍କୁ ନାଗପାଶରେ ବାନ୍ଧିଥିଲା । ଇନ୍ଦ୍ରଜିତ୍ ଥିବା ପର୍ଯ୍ୟନ୍ତ ଲଙ୍କା ଥିଲା ଦୁର୍ଜୟ । କିନ୍ତୁ ଇନ୍ଦ୍ରଜିତ୍‌କୁ ବଧ କରି ଲକ୍ଷ୍ମଣ ରାମଙ୍କ ପାଇଁ ଲଙ୍କା ଜୟର ପଥ ସୁଗମ କରିଥିଲେ ।

ଯେତେବେଳେ ଦରକାର ପଡୁଥିଲା, ଲକ୍ଷ୍ମଣ ରାମଙ୍କୁ ଉଚିତ ପରାମର୍ଶ ଦେବାକୁ ଛାଡୁ ନ ଥିଲେ । ଅଯୋଧ୍ୟା ତ୍ୟାଗ କରି ବନବାସ ଯିବାର ସିଦ୍ଧାନ୍ତ କରି ରାମ ଯେତେବେଳେ ଲକ୍ଷ୍ମଣଙ୍କୁ କହିଲେ ଯେ ଦୈବ ହିଁ ପ୍ରଧାନ, ଭାଗ୍ୟରେ ଯାହା ଥିବ, ତାହା ହେବ, ଲକ୍ଷ୍ମଣ ତାର ଘୋର ପ୍ରତିବାଦ କରିଥିଲେ । ଦୈବ ଉପରେ ବିଶ୍ୱାସ ନ କରି ପୁରୁଷକାରରେ ବିଶ୍ୱାସ କରିବା କ୍ଷତ୍ରିୟର କର୍ତ୍ତବ୍ୟ ବୋଲି ଲକ୍ଷ୍ମଣ କହିଥିଲେ । ସୀତାଙ୍କ ବିରହରେ ରାମ ଅନେକ ସମୟରେ ଅଧୈର୍ଯ୍ୟ ହୋଇଛନ୍ତି । ଏକ ସମୟରେ ତାଙ୍କ ପକ୍ଷରେ ବଞ୍ଚି ରହିବା ଉଚିତ ନୁହେଁ ବୋଲି ସେ କହିଛନ୍ତି । ଅନ୍ୟ ସମୟରେ ଧନୁର୍ବାଣ ଦ୍ୱାରା ସେ ଚନ୍ଦ୍ର, ସୂର୍ଯ୍ୟ, ଅଗ୍ନି, ବାୟୁ, ସମୁଦ୍ର ଆଦିକୁ ନିପାତ କରିବାପାଇଁ ଘୋଷଣା କରୁଛନ୍ତି । ଏହି ସମୟରେ ଲକ୍ଷ୍ମଣ ତାଙ୍କୁ ଅତିଶୟ ଶୋକ ବା କ୍ରୋଧ ପରିହାର କରି ପ୍ରକୃତିସ୍ଥ ଭାବରେ ଧୈର୍ଯ୍ୟ ଅବଲମ୍ବନ ପୂର୍ବକ କାର୍ଯ୍ୟ କରିବାପାଇଁ ପରାମର୍ଶ ଦେଇଛନ୍ତି ।

ମାତା ସୁମିତ୍ରାଙ୍କ ଆଦେଶରେ ଲକ୍ଷ୍ମଣ ରାମଙ୍କୁ ପିତୃତୁଲ୍ୟ ଓ ସୀତାଙ୍କୁ ମାତୃତୁଲ୍ୟ ବ୍ୟବହାର କରୁଥିଲେ । ମୁହଁ ଟେକି ସେ ସୀତାଙ୍କୁ ଚାହୁଁ ନ ଥିଲେ । ବନବାସ ବେଳେ ପ୍ରତିଦିନ ସୀତାଙ୍କର ପଦବନ୍ଦନା କରିବା ଥିଲା ତାଙ୍କର କାର୍ଯ୍ୟ । ଋଷ୍ୟମୂକରେ ସୁଗ୍ରୀବ ସୀତାଙ୍କ ନିକ୍ଷିପ୍ତ ଅଳଙ୍କାର ସବୁ ରାମଙ୍କୁ ଆଣି ଦେଇଥିଲେ । ତାହା ସୀତାଙ୍କର ଅଳଙ୍କାର କି ନୁହେଁ ଚିହ୍ନିବାପାଇଁ ଯେତେବେଳେ ରାମ ଲକ୍ଷ୍ମଣଙ୍କୁ ଦେଖାଇଲେ ଲକ୍ଷ୍ମଣ ଉତ୍ତର ଦେଲେ, ମୁଁ ଏହି କେୟୂର କୁଣ୍ଡଳକୁ ଚିହ୍ନି ପାରୁ ନାହିଁ । କିନ୍ତୁ ପ୍ରତିଦିନ ପାଦବନ୍ଦନା କରିଥିବା ଯୋଗୁଁ ସୀତାଙ୍କର ନୂପୁରକୁ ଚିହ୍ନିପାରୁଛି ।

'ନାହଂ ଜାନାମି କେୟୂରେ ନାହଂ ଜାନାମି କୁଣ୍ଡଳେ
ନୂପୁରେତ୍ୱେବ ଜାନାମି ନିତ୍ୟଂ ପାଦାଭିବନ୍ଦନାତ୍ ।'

ଲକ୍ଷ୍ମଣଙ୍କୁ ରାମ କେତେ ସ୍ନେହ କରୁଥିଲେ, ତାହାର ପ୍ରମାଣ ଅଶୋକ ବନରେ ହନୁମାନଙ୍କ ପ୍ରତି ସୀତାଙ୍କର ଉକ୍ତି । ସେ କହିଥିଲେ, ଲକ୍ଷ୍ମଣ ମୋ' ଠାରୁ ରାମଙ୍କର ଅଧିକ

ପ୍ରିୟ । 'ମତ୍ତଃ ପ୍ରିୟତରୋ ନିତ୍ୟଂ ଭ୍ରାତା ରାମସ୍ୟ ଲକ୍ଷ୍ମଣଃ ।' ଲକ୍ଷ୍ମଣ ରାମଙ୍କର ପ୍ରାଣପ୍ରିୟ ଥିଲେ । ଲକ୍ଷ୍ମଣ-ଶକ୍ତିଭେଦରେ ଗଭୀର ଶୋକ ପ୍ରକାଶ କରି ରାମ କହିଥିଲେ – ଲକ୍ଷ୍ମଣ ମରିଗଲେ ମୋର ଜୀବନ, ସୀତାଲାଭ ବା ଲଙ୍କାଜୟରେ କୌଣସି ମୂଲ୍ୟ ନାହିଁ । ଦେଶ ଦେଶରେ ସ୍ତ୍ରୀ ମିଳିବେ, ବନ୍ଧୁ ମିଳିବେ, କିନ୍ତୁ ଏପରି ଦେଶ ଦେଖୁ ନାହିଁ, ଯେଉଁଠି ଲକ୍ଷ୍ମଣ ପରି ସହୋଦର ଭ୍ରାତା ମିଳିପାରିବ । ଲକ୍ଷ୍ମଣଙ୍କୁ ରାମ ନିଜର ସହୋଦର ଭ୍ରାତାପରି ମନେ କରୁଥିଲେ ।

'ଦେଶେ ଦେଶେ କଳତ୍ରାଣି ଦେଶେ ଦେଶେ ଚ ବାନ୍ଧବାଃ
ତଂ ତୁ ଦେଶଂ ନ ପଶ୍ୟାମି ଯତ୍ର ଭ୍ରାତା ସହୋଦରଃ ।

ଭରତ ରାମାୟଣର ଏକ ମହନୀୟ ଚରିତ୍ର । ରାମଙ୍କ ପ୍ରତି ଲକ୍ଷ୍ମଣଙ୍କର ଭକ୍ତିକୁ ସଗୁଣ ଭକ୍ତି ଆଖ୍ୟା ଦିଆଯାଇପାରେ । କିନ୍ତୁ ଭରତଙ୍କର ଭକ୍ତି ହେଉଛି ନିର୍ଗୁଣ । ଲକ୍ଷ୍ମଣ ରାମଙ୍କ ପାଖେ ପାଖେ ଅଛନ୍ତି । ଭରତଙ୍କୁ ସେ ସୁଯୋଗ ମିଳି ନାହିଁ । କିନ୍ତୁ ସେ ମଧ ଲକ୍ଷ୍ମଣଙ୍କ ପରି ରାମତଦ୍‌ଗତପ୍ରାଣ । ସେ ଯେତେବେଳେ ମାମୁଘରୁ ଅଯୋଧ୍ୟାକୁ ଫେରି ଆସି ରାମଙ୍କ ବନବାସର କାରଣ ପଚାରୁଛନ୍ତି, କୈକେୟୀ କହୁଛନ୍ତି, ତୁ ରାଜା ହେବାପାଇଁ ମୁଁ ରାମର ବନବାସ ବ୍ୟବସ୍ଥା କରିଛି । ଭରତ କହୁଛନ୍ତି, ନୃଶଂସା, ପାପୀୟସୀ କୈକେୟୀ, ତୋତେ ଧର୍ମ ଛାଡ଼ିଲାଣି । ରାମ ତୋତେ ନିଜର ମା ଭଳି ଦେଖୁଥିବା ଯୋଗୁଁ ତୋତେ ମୁଁ ହତ୍ୟା ନ କରି ଛାଡ଼ିଦେଉଛି । ତୋର କାମନା କେବେ ସିଦ୍ଧ ହେବ ନାହିଁ । ରାମଙ୍କୁ ମୁଁ ଫେରାଇ ଆଣିଲେ ମୋର ଅନ୍ତରରେ ଶାନ୍ତି ଲାଭ କରିବି ଏବଂ ସେହି ତେଜସ୍ୱୀ ଧର୍ମଜ୍ଞ ରାମଙ୍କର ଦାସ ହୋଇ ରହିବି ।

ଦଶରଥଙ୍କ ଅନ୍ତ୍ୟେଷ୍ଟିକ୍ରିୟା ଶେଷ ହେବାପରେ ବଶିଷ୍ଠ ଅଭିଷେକର ବିଭିନ୍ନ ଉପକରଣ ସଂଗ୍ରହ କରି ଭରତଙ୍କୁ ସଭାଗୃହକୁ ଡକାଇ କହୁଛନ୍ତି, ତୁମେ ଶୀଘ୍ର ଅଭିଷିକ୍ତ ହୋଇ ପିତା ଓ ଭ୍ରାତାଙ୍କ ପ୍ରଦତ୍ତ ଏହି ନିଷ୍କଣ୍ଟକ ରାଜ୍ୟ ଭୋଗ କର । ଭରତଙ୍କ ଉତ୍ତର ସ୍ପଷ୍ଟ । ସେ କହୁଛନ୍ତି, ଏ ରାଜ୍ୟ ରାମଙ୍କର । ମୁଁ ତାହା ଅପହରଣ କରିବି ନାହିଁ । ମୋ ମାତାର ପାପପାଇଁ ମୁଁ ଦାୟୀ ନୁହେଁ । ମୁଁ ଏହି ଅନାର୍ଯ୍ୟୋଚିତ ପାପକାର୍ଯ୍ୟ କରି ଇକ୍ଷ୍ୱାକୁ ବଂଶର କୁଳାଙ୍ଗାର ହେବାକୁ ଚାହେ ନାହିଁ । ମୁଁ ଏଇଠି ରହି ରାମଙ୍କୁ ପ୍ରଣାମ କରୁଛି । ମୁଁ ତାଙ୍କୁ ଫେରାଇଆଣି ଅଯୋଧ୍ୟାର ରାଜା କରାଇବି ।

ସେତେବେଳେ ଭରତଙ୍କୁ କେହି ବୁଝିପାରୁ ନାହାନ୍ତି । ସମସ୍ତେ ଭାବୁଛନ୍ତି ଦଶରଥ ଓ ରାମ ଉଭୟ ଯେତେବେଳେ ଭରତଙ୍କୁ ରାଜ୍ୟ ଛାଡ଼ି ଦେଇଛନ୍ତି, ସେ କାହିଁକି ରାଜା ହେଉ ନାହାନ୍ତି ? ରାମଙ୍କୁ ଫେରାଇଆଣିବାପାଇଁ ଚତୁରଙ୍ଗ ସେନା ସହିତ ଭରତ ଯେତେବେଳେ ଚିତ୍ରକୂଟ ଯାଉଛନ୍ତି, ବାଟରେ ରାମଙ୍କର ମିତ୍ର ଶବରରାଜ ଗୁହକଙ୍କର ସନ୍ଦେହ ହେଉଛି, ଭରତ ରାମଙ୍କ ସହିତ ଶତ୍ରୁତା କରିବାକୁ ଯାଉନାହାନ୍ତି ତ ? ଋଷି ଭରଦ୍ୱାଜଙ୍କ ମନରେ ମଧ ସେହି ସନ୍ଦେହ ହେଉଛି । ଲକ୍ଷ୍ମଣ ଭରତଙ୍କ ଚତୁରଙ୍ଗ ସେନା ଦୂରରୁ ଦେଖି ରାମଙ୍କୁ କହୁଛନ୍ତି, ଭରତ ନିଷ୍କଣ୍ଟକ ହେବାପାଇଁ ଆମକୁ ହତ୍ୟା କରିବା ନିମନ୍ତେ ଆସୁଛି । ଆଜି ମୁଁ ଏକାକୀ ଯୁଦ୍ଧରେ ଭରତକୁ ନିହତ କରି ଏବଂ ତା ସହିତ କୈକେୟୀ ଓ ମନ୍ଥରାକୁ ହତ୍ୟା କରି

ମେଦିନୀକୁ ନିଷ୍କଣ୍ଟକ କରିବି । କେବଳ ରାମ ହିଁ ଭରତଙ୍କୁ ବୁଝୁଛନ୍ତି । ସେ କହୁଛନ୍ତି, ଭରତ ମୋର ପ୍ରାଣସମ ପ୍ରିୟ ଭ୍ରାତା । ସେ ମୋର ବନବାସ ଖବର ପାଇ ନିଶ୍ଚୟ ବ୍ୟାକୁଳ ହୋଇ ମୋତେ ଦେଖିବାକୁ ଆସୁଛି । ଲକ୍ଷ୍ମଣ, ତୁମର ଯଦି ରାଜ୍ୟ ଦରକାର, ମୁଁ ଭରତକୁ କହିବି, ଲକ୍ଷ୍ମଣକୁ ରାଜ୍ୟ ଦେଇଦିଅ ।

ରାମଙ୍କ କଥାରେ ଲକ୍ଷ୍ମଣ ଲଜ୍ଜିତ ହେଲେ । ଭରତଙ୍କ ଉତ୍ତରରେ ବଶିଷ୍ଠ ଲଜ୍ଜିତ ହେଲେ । ଗୁହକ ଓ ଭରଦ୍ୱାଜ ଯେତେବେଳେ ତାଙ୍କର ଉତ୍ତର ଶୁଣିଲେ, ସେମାନେ କହିଲେ, ଧନ୍ୟ ଭରତ, ବିନା ଚେଷ୍ଟାରେ ଲାଭ କରିଥିବା ଏ ରାଜ୍ୟ ସମ୍ପତ୍ତିକୁ ତୁମେ ଛାଡ଼ିବାପାଇଁ ଆସିଛ ।

ଚିତ୍ରକୂଟରେ ରାମଙ୍କ ସହିତ ଭରତଙ୍କର ମିଳନ ରାମାୟଣର ଏକ ଅପୂର୍ବ ଅଧ୍ୟାୟ । ଜଟାବଲ୍କଳ ପରିହିତ ରାମଙ୍କର ତପସ୍ୱୀର ବେଶ ଦେଖି ଭରତ ସମ୍ଭାଳି ପାରୁ ନାହାନ୍ତି । ରୋଦନ କରି ତାଙ୍କ ପାଦତଳେ ଗଡ଼ୁଛନ୍ତି ଏବଂ ଅଯୋଧ୍ୟା ଫେରି ଆସିବାପାଇଁ କାକୁତି ମିନତି ହୋଇ ପ୍ରାର୍ଥନା କରୁଛନ୍ତି । ସେ କହୁଛନ୍ତି, ଏ ଅଯୋଧ୍ୟା ରାଜ୍ୟ ଆପଣଙ୍କର । ଆପଣ ଭର୍ତ୍ତା, ମୁଁ ଭୃତ୍ୟ । ଆପଣ ନିଜ ରାଜ୍ୟକୁ ଫେରିଯାଆନ୍ତୁ । ପିତାମାତାଙ୍କ ପାପରେ ମୋତେ ଭାଗୀ କରନ୍ତୁ ନାହିଁ । ଶେଷରେ ରାମଙ୍କୁ ବାଧ୍ୟ କରିବାପାଇଁ ସେ ସେଠାରେ ପ୍ରାୟୋପବେଶନରେ ବସି ପ୍ରାଣ ବିସର୍ଜନ କରିବାପାଇଁ ବାହାରୁଛନ୍ତି । ବହୁ କଷ୍ଟରେ ରାମ ତାଙ୍କୁ ଫେରିଯିବା ପାଇଁ ପ୍ରବର୍ତ୍ତାଇବା ପରେ ସେ କହୁଛନ୍ତି, ତା' ହେଲେ ଆପଣଙ୍କର ପାଦୁକା ଦୁଇଟି ଦିଅନ୍ତୁ । ତାକୁ ସିଂହାସନରେ ବସାଇ ମୁଁ ନଗର ବାହାରେ ସନ୍ନ୍ୟାସୀ ଭାବରେ ରହି ରାଜ୍ୟ ଶାସନ କରିବି । ଚଉଦ ବର୍ଷ ପୂରିଗଲେ ଯଦି ମୁଁ ଆପଣଙ୍କୁ ନ ଦେଖେ, ତା' ହେଲେ ନିଶ୍ଚୟ ଅଗ୍ନିରେ ଝାସ ଦେବି । ଭରତ ଅଯୋଧ୍ୟାର ବାହାରେ ନନ୍ଦୀଗ୍ରାମରେ ରହିଲେ । ସନ୍ନ୍ୟାସୀର ଜୀବନ ଯାପନ କରି ରାମଙ୍କ ପାଦୁକାକୁ ଧରି ରାଜ୍ୟ ଶାସନ କଲେ ଏବଂ ରାମ ଫେରିବା ପରେ ପୂର୍ବଠାରୁ ଦଶଗୁଣ ବିସ୍ତୃତ ଅଯୋଧ୍ୟା ରାଜ୍ୟକୁ ତାଙ୍କ ହାତରେ ଅର୍ପଣ କଲେ । ଭରତଙ୍କର ଆଦର୍ଶ ଓ ତାଙ୍କର ତ୍ୟାଗପୂତ ଜୀବନର ପଟାନ୍ତର ନାହିଁ । ରାମ ବନରେ ବନବାସୀ ତପସ୍ୱୀ ଭାବରେ ରହିଥିଲେ । କିନ୍ତୁ ଭରତ ରାଜ୍ୟ ଶାସନ କରି ମଧ୍ୟ ତପସ୍ୱୀ ଭାବରେ ଚଳୁଥିଲେ । ଏକ ବିଶାଳ ରାଜ୍ୟର ସମସ୍ତ କ୍ଷମତା ଓ ଐଶ୍ୱର୍ଯ୍ୟ ତାଙ୍କୁ ଟିକିଏ ହେଲେ ପ୍ରଲୋଭିତ ବା ବିଚଳିତ କରିପାରୁ ନ ଥିଲା । ରାଜ୍ୟ ଈଶ୍ୱର ବା ରାମଙ୍କର । ରାଜା ବା ଶାସକ ତାର ସନ୍ନ୍ୟାସୀ ବା ଟ୍ରଷ୍ଟି ଏହି ଉଚ୍ଚାଙ୍ଗ ଆଦର୍ଶର ପ୍ରବର୍ତ୍ତକ ଥିଲେ ଭରତ । ଭରତଙ୍କ ତ୍ୟାଗ, ସାଧନା ଓ ଭକ୍ତିର ତୁଳନା ନ ଥିଲା ।

ଭରତଙ୍କ କଥା କହିବାବେଳେ ସ୍ନେହରେ ରାମଙ୍କର ହୃଦୟ ଭରି ଉଠୁଥିଲା । ରାବଣକୁ ପରିତ୍ୟାଗ କରି ବିଭୀଷଣ ରାମଙ୍କ ଶରଣାଗତ ହେବାବେଳେ ସୁଗ୍ରୀବଙ୍କର କେତେକ ସନ୍ଦେହର ଉତ୍ତର ଦେଇ ରାମ କହିଥିଲେ, ସବୁଭାଇ ଭରତଙ୍କ ଭଳି ନୁହନ୍ତି । 'ନ ସର୍ବେ ଭ୍ରାତରସ୍ତାତ ଭବନ୍ତି ଭରତୋପମାଃ ।' ଲଙ୍କା ଜୟପରେ ବିଭୀଷଣ ରାମଙ୍କୁ ଦିନେ ସେଠାରେ ରହି ବିଶ୍ରାମ କରିବାପାଇଁ ଅନୁରୋଧ କରିବାବେଳେ ରାମ କହିଥିଲେ, ଭ୍ରାତା

ଭରତଙ୍କୁ ଦେଖିବାପାଇଁ ମୋର ମନ ଅସ୍ଥିର ହେଉଛି । ସେ ମୋର ବାଟ ଚାହିଁ ବସିଥିବ । ତେଣୁ ତୁମର ଆତିଥ୍ୟର ନିମନ୍ତ୍ରଣ ମୁଁ ଗ୍ରହଣ କରିପାରୁ ନାହିଁ ।

ରାମାୟଣର ଅନ୍ୟ ଏକ ମହାନ୍ ଚରିତ୍ର, ହନୁମାନ । ହନୁମାନ ମହାବୀର, ବିଦ୍ୱାନ, ବୁଦ୍ଧିମାନ୍, ତେଜସ୍ୱୀ, ବାଗ୍ମୀ, କୂଟନୀତିଜ୍ଞ ଓ ରାମଙ୍କର ଅନନ୍ୟ ଭକ୍ତ । ରାକ୍ଷସମାନେ ଯେପରି କାମରୂପୀ ଥିଲେ, କିଷ୍କିନ୍ଧ୍ୟାର ବାନରମାନେ ମଧ୍ୟ ସେହିପରି ଇଚ୍ଛା ଅନୁସାରେ ବିଭିନ୍ନ ରୂପ ଗ୍ରହଣ କରିପାରୁଥିଲେ । ହନୁମାନ ସେଥିରେ ଅଗ୍ରଣୀ ଥିଲେ । ଋଷ୍ୟମୂକ ପର୍ବତରେ ସୁଗ୍ରୀବଙ୍କ ସହିତ ଥିବାବେଳେ ଧନୁର୍ବାଣଧାରୀ ରାମ ଲକ୍ଷ୍ମଣଙ୍କୁ ଦୂରରୁ ଦେଖି ସୁଗ୍ରୀବ ଭାବିଲେ ସେମାନେ ବୋଧହୁଏ ବାଳୀର ଗୁପ୍ତଚର ଭାବରେ ସେଠାକୁ ଆସିଛନ୍ତି । ସେଥିପାଇଁ ସେ ହନୁମାନଙ୍କୁ ତାହା ଜାଣିବାପାଇଁ ପଠାଇଲେ । ହନୁମାନ ଏକ ଭିକ୍ଷୁରୂପ ଧାରଣ କରି ସେମାନଙ୍କୁ ଅତି କୋମଳ ମଧୁର ସ୍ୱରରେ ସେମାନେ କିଏ ଓ କାହିଁକି ସେଠାକୁ ଆସିଛନ୍ତି ବୋଲି ପଚାରିଲେ । କିନ୍ତୁ ରାମଲକ୍ଷ୍ମଣଙ୍କୁ ଦେଖିବାମାତ୍ରେ ତାଙ୍କର ନିର୍ମଳ ହୃଦୟରେ ଭାବାନ୍ତର ଜାତ ହେଲା । ସେ ତାଙ୍କର ଛଦ୍ମବେଶକୁ ଲୁଚାଇ ପାରିଲେ ନାହିଁ ଓ ସଙ୍ଗେ ସଙ୍ଗେ କହିପକାଇଲେ ସେ ବାୟୁପୁତ୍ର ହନୁମାନ, ବାଳୀଦ୍ୱାରା ନିର୍ବାସିତ ସୁଗ୍ରୀବର ମନ୍ତ୍ରୀ । ହନୁମାନଙ୍କ କଥା ଶୁଣି ରାମ ମୁଗ୍ଧ ହୋଇଗଲେ । ସେ ଲକ୍ଷ୍ମଣଙ୍କୁ କହିଲେ, ବାନର ହେଲେ ମଧ୍ୟ ଏ ବେଦଜ୍ଞ । ବ୍ୟାକରଣରେ ଏହାଙ୍କର ପାରଦର୍ଶିତା ଅଛି । ତାଙ୍କର କଥାରେ ଗୋଟିଏ ହେଲେ ଅଶୁଦ୍ଧ ଶବ୍ଦ ନାହିଁ । ସଂକ୍ଷେପରେ ସେ ସମସ୍ତ ସାରକଥା ପ୍ରକାଶ କରିପାରୁଛନ୍ତି । ଏପରି ସୁନ୍ଦର ବିଚିତ୍ର ବାକ୍ୟ ଦୁର୍ଲଭ ମନେହୁଏ । ସୁଗ୍ରୀବ ଏହାଙ୍କ ପରି ମନ୍ତ୍ରୀ ଲାଭ କରି ନିଶ୍ଚୟ କୃତାର୍ଥ ହେଉଥିବେ ।

ଅଶୋକବନରେ ସୀତାଙ୍କୁ ହନୁମାନ ଭେଟିବା ପାଇଁ ମନରେ ଚିନ୍ତାକଲେ ଯେ ସେ ଶୁଦ୍ଧ ସଂସ୍କୃତ ଭାଷାରେ ସୀତାଙ୍କ ସହିତ କଥାଭାଷା କରିବେ ନାହିଁ । କାରଣ ରାବଣ ଶୁଦ୍ଧ ସଂସ୍କୃତ ବ୍ୟବହାର କରେ । ତେଣୁ ସେ ଅଶୁଦ୍ଧ ସଂସ୍କୃତରେ କହିଲେ ସୀତାଙ୍କର ସନ୍ଦେହ ହେବ ନାହିଁ । ସେ ମଧୁର ସ୍ୱରରେ ରାମଙ୍କର ଚରିତ ଗାନ କରି ସୀତାଙ୍କୁ ମୁଗଧ କରିଥିଲେ । କୂଟନୀତିଜ୍ଞ ଭାବରେ ତାଙ୍କର ପ୍ରଧାନ ସାଫଲ୍ୟ ହେଉଛି ରାମ ଓ ସୁଗ୍ରୀବଙ୍କ ମଧ୍ୟରେ ମିତ୍ରତା । ସେ ତ ପୂର୍ବରୁ ସୁଗ୍ରୀବଙ୍କର ଆପଣାର ଥିଲେ । କିନ୍ତୁ ରାମଙ୍କର ଆପଣାର ହେବାପାଇଁ ତାଙ୍କୁ ବେଶି ସମୟ ଲାଗିଲା ନାହିଁ । ଅଗ୍ନିକୁ ସାକ୍ଷୀ ରଖି ସେମାନେ କିପରି ଅଖଣ୍ଡ ମିତ୍ରତା ସୂତ୍ରରେ ଆବଦ୍ଧ ହେବେ, ସେଥିପାଇଁ ହନୁମାନ ଦୁଇଖଣ୍ଡ କାଷ୍ଠ ଘର୍ଷଣ କରି ଅଗ୍ନି ଉତ୍ପାଦନ କରିଥିଲେ ଓ ତାହା ଉଭୟଙ୍କ ମଧ୍ୟରେ ସ୍ଥାପନ କରିଥିଲେ । ରାଜ୍ୟଲାଭ ପରେ ସୁଗ୍ରୀବ ଭୋଗବିଳାସ ମଧ୍ୟରେ ସମ୍ପୂର୍ଣ୍ଣ ମତ୍ତ ରହି ରାମଙ୍କୁ ଦେଇଥିବା ପ୍ରତିଶ୍ରୁତି ଭୁଲିଯିବାକୁ ବସିଲେ । ସେତେବେଳେ ହନୁମାନ ତାଙ୍କୁ ଚେତାଇଦେଇ କହିଲେ, ରାଜ୍ୟ, ଯଶ, ଲକ୍ଷ୍ମୀ, ସବୁ ତୁମକୁ ମିଳିଗଲା । ବର୍ତ୍ତମାନ ରାମଙ୍କ କାର୍ଯ୍ୟରେ ସାମାନ୍ୟ ବିଳମ୍ବ କରିବା ଦୂଷଣୀୟ ହେବ । ରାମ ତୁମକୁ ମନେପକାଇବା ପୂର୍ବରୁ ସୀତାଙ୍କ ଅନ୍ୱେଷଣ ପାଇଁ ଚତୁର୍ଦ୍ଦିଗକୁ ବାନରବୀରମାନଙ୍କୁ ପଠାଇବାର ବ୍ୟବସ୍ଥା କର । ହନୁମାନ ଏତିକି କାର୍ଯ୍ୟ ଆଗରୁ କରାଇ ନ ଥିଲେ ସୁଗ୍ରୀବଙ୍କୁ ସାକ୍ଷାତ କରିବାକୁ ଆସି ଲକ୍ଷ୍ମଣଙ୍କର

କ୍ରୋଧ ଶାନ୍ତ ହୋଇ ନ ଥାନ୍ତା । ଅନ୍ୟ ଏକ ଘଟଣାରେ ହନୁମାନ ନ ଥିଲେ ବାନରସେନା ମଧ୍ୟରେ ବିଦ୍ରୋହ ଘଟିଯାଇଥାନ୍ତା । ଯେତେବେଳେ ଅଙ୍ଗଦ ଜାମ୍ବବାନ ଆଦି ବାନରବୀରଗଣ ସୀତାଙ୍କୁ ଖୋଜିବାପାଇଁ ବୁଲି ବୁଲି ସମୁଦ୍ର କୂଳରେ ପହଞ୍ଚିଲେ, ସେତେବେଳେ ସୁଗ୍ରୀବ ଦେଇଥିବା ମାସେ ସମୟ ଅତୀତ ହୋଇଯାଇଥିଲା । ଅଙ୍ଗଦ କହିଲେ, ଯଦି ସେମାନେ ଫେରିଯାନ୍ତି, ତା' ହେଲେ ସୁଗ୍ରୀବ ସେମାନଙ୍କୁ ପ୍ରାଣଦଣ୍ଡରେ ଦଣ୍ଡିତ କରିବେ । ତାହା ଅପେକ୍ଷା ପଳାଇଯାଇ ସ୍ୱୟଂପ୍ରଭାଙ୍କ ବିବର ଗୃପକ ଆଶ୍ରୟ ସ୍ଥଳରେ ସୁଖରେ ରହିବା ଦରକାର । ହନୁମାନ କଠୋର ଭାଷାରେ ଅଙ୍ଗଦଙ୍କୁ ଭର୍ତ୍ସନା କରି କହିଥିଲେ, ସୁଗ୍ରୀବଙ୍କ ବିଦ୍ରୋହୀ ହୋଇ ତୁମେ ରାମଙ୍କର ବିଦ୍ରୋହୀ ହେବ ଏବଂ ଯେଉଁଠି ଲୁଚି ରହିଲେ ମଧ ଲକ୍ଷ୍ମଣଙ୍କ ଶର ତୁମକୁ ନିପାତିତ କରିବ । ଏହାଫଳରେ ବାନରସେନା ମଧ୍ୟରେ ବିଦ୍ରୋହ ଦମିତ ହେଲା । ହନୁମାନଙ୍କ କୂଟନୀତିର ଅନ୍ୟ ଏକ ପ୍ରମାଣ ହେଉଛି, ଯେତେବେଳେ ବିଭୀଷଣ ରାମଙ୍କର ଶରଣ ନେବାକୁ ଆସିଲେ, ସେତେବେଳେ ସୁଗ୍ରୀବ ଅଙ୍ଗଦ ଆଦି ସମସ୍ତେ ରାମଙ୍କୁ ମନାକଲେ । କିନ୍ତୁ ହନୁମାନ କହିଲେ, ବିଭୀଷଣଙ୍କୁ ଶୀଘ୍ର ଗ୍ରହଣ କରି ଶତ୍ରୁ ଶିବିରରେ ବିଭେଦ ଘଟାଇବା ଦରକାର ।

ସମଗ୍ର ସୁନ୍ଦରକାଣ୍ଡ ହନୁମାନଙ୍କର ମହନୀୟ ଅସାଧ କାର୍ଯ୍ୟକଳାପରେ ପରିପୂର୍ଣ୍ଣ । ରାମାୟଣର ପାଠକପାଇଁ ସୁନ୍ଦର କାଣ୍ଡର ମହତ୍ତ୍ୱ ଯଥେଷ୍ଟ ବେଶି । କାରଣ ଏହି କାଣ୍ଡରେ ହନୁମାନଙ୍କର ସାଗର ଲଂଘନ, ସୀତାଠାବ, ଲଙ୍କାଦହନ, ସେତୁବନ୍ଧ ନିର୍ମାଣ ଆଦି ବର୍ଣ୍ଣିତ ହୋଇଛି । ରାମଙ୍କର ହନୁମାନଙ୍କ ଉପରେ ଅଖଣ୍ଡ ବିଶ୍ୱାସ ଥିଲା । ଅଙ୍ଗଦ ଜାମ୍ବବାନ୍ ପ୍ରଭୃତିଙ୍କର ଯେଉଁ ଦଳରେ ହନୁମାନଙ୍କୁ ପଠାଗଲା, ସେ ଦଳ ନିଶ୍ଚୟ ସଫଳ ହୋଇ ଫେରିବେ ବୋଲି ସୁଗ୍ରୀବଙ୍କର ବିଶ୍ୱାସ ଥିଲା । କେବଳ ହନୁମାନ ଥିବାଯୋଗୁଁ ରାମ ଧରି ନେଇଥିଲେ, ସେ କେବେ ବିଫଳ ହୋଇ ଫେରିବେ ନାହିଁ । ସମୁଦ୍ର କୂଳରେ ହତାଶ ବାନରମାନଙ୍କ ମଧ୍ୟରେ ହନୁମାନ ଚୁପ ହୋଇ ବସିଥିବାର ଦେଖି ବୃଦ୍ଧ ଜାମ୍ବବାନ କହିଲେ– କପିଶ୍ରେଷ୍ଠ, ତୁମେ ନୀରବ ହୋଇ ବସିରହିଚ କାହିଁକି ? ତୁମେ ବାନରବୀରମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଶାସ୍ତ୍ରବିତ୍ ପଣ୍ଡିତମାନଙ୍କ ମଧ୍ୟରେ ବି ଶ୍ରେଷ୍ଠ । 'ବୀରଃ ବାନରଲୋକସ୍ୟ ସର୍ବଶାସ୍ତ୍ରବିଦାଂ ବରଃ ।' ଜାମ୍ବବାନ୍ ହନୁମାନଙ୍କର ବିପୁଳ ବଳ ବୀର୍ଯ୍ୟ ସମ୍ପର୍କରେ ବର୍ଣ୍ଣନା କରି ତେଜ ଓ ବଳରେ ସେ ରାମ ଲକ୍ଷ୍ମଣଙ୍କର ସମାନ, ବେଗରେ ବାୟୁ ଓ ଗରୁଡ଼ଙ୍କ ସହିତ ସମାନ ବୋଲି ଉଲ୍ଲେଖ କରିଥିଲେ ଓ ଶେଷରେ କହିଲେ, ବର୍ତ୍ତମାନ ତୁମର ବିକ୍ରମ ପ୍ରକାଶ କରିବାର ବେଳ । ବାମନ ଅବତାରରେ ତ୍ରିବିକ୍ରମ ବିଷ୍ଣୁ ଯେପରି ତାଙ୍କର ପାଦ ବିସ୍ତାର କରିଥିଲେ, ବର୍ତ୍ତମାନ ତୁମେ ସେହିପରି ବିକ୍ରମ ପ୍ରକାଶ କର । ଶୀଘ୍ର ଉଠି ଏହି ମହାସାଗରକୁ ଲଂଘନ କର । 'ଉତ୍ତିଷ୍ଠ ହରିଶାର୍ଦ୍ଦୁଳ, ଲଂଘୟସ୍ୱ ମହାର୍ଣ୍ଣବମ୍ ।' (ସମୁଦ୍ର ଲଂଘନବେଳେ ହନୁମାନଙ୍କର ବିଶାଳ କାୟା, ପ୍ରଚଣ୍ଡ ବେଗ, ଅସାମାନ୍ୟ ବୁଦ୍ଧି ଓ ଏକାଗ୍ରତା ଅତି ଚମତ୍କାର ଭାବରେ ବର୍ଣ୍ଣିତ ହୋଇଛି । ଲକ୍ଷ୍ୟ ସାଧନପାଇଁ ଏକାନ୍ତ ଚତୁର ଥିବାଯୋଗୁଁ ମୈନାକ ପର୍ବତର ଆତିଥ୍ୟ ସେ ସ୍ୱୀକାର କରୁନାହାନ୍ତି । ବୁଦ୍ଧି ଓ ବଳ ପ୍ରୟୋଗ କରି ସୁରସାକୁ ସନ୍ତୁଷ୍ଟ କରୁଛନ୍ତି, ସିଂହିକାକୁ ନିହତ

କରୁଛନ୍ତି । ଲଙ୍କାରେ ପ୍ରବେଶ କରି ନିଜର ବିଶାଳ ଶରୀରକୁ ମାର୍ଜାର ପ୍ରମାଣ କ୍ଷୁଦ୍ର କରି ଦେଉଛନ୍ତି ଓ ଲଙ୍କାଦେବୀଙ୍କୁ କହୁଛନ୍ତି, ଏହି ସୁନ୍ଦର ଲଙ୍କାପୁରୀକୁ ମୁଁ କେବଳ ଦେଖିବାକୁ ଆସିଛି । ରାବଣର ପ୍ରାସାଦରେ ସେହି କ୍ଷୁଦ୍ରରୂପ ଏବଂ ଅଶୋକବନରେ ମଧ୍ୟ ସେହି ରୂପରେ ପ୍ରବେଶ କରୁଛନ୍ତି । ରାବଣର ଅନ୍ତଃପୁରରେ ସ୍ଖଳିତବସନା ନିଦ୍ରିତା ନାରୀମାନଙ୍କୁ ଦେଖି ସେ ଭାବୁଛନ୍ତି, ଏପରି ଅବସ୍ଥାରେ ସ୍ତ୍ରୀଲୋକମାନଙ୍କୁ ଦେଖିବା ଠିକ୍ ନୁହେଁ । କିନ୍ତୁ ପରମୁହୂର୍ତ୍ତରେ ଏହି ଜିତେନ୍ଦ୍ରିୟ ବାନରବୀର ମନେ ମନେ କହୁଛନ୍ତି, ଏମାନଙ୍କୁ ଏପରି ଅବସ୍ଥାରେ ଦେଖି ମଧ୍ୟ ମୋର ମନ ବିକାରଗ୍ରସ୍ତ ହେଉ ନାହିଁ । ମୁଁ ସୀତାଙ୍କୁ ଖୋଜିବାକୁ ଆସିଛି, ତାଙ୍କୁ ନାରୀମାନଙ୍କ ମଧ୍ୟରେ ଖୋଜିବି ନାହିଁ ତ କେଉଁଠି ଖୋଜିବି ?

ନିଜର ମଧୁର ମନୋହର ବ୍ୟବହାର ଦ୍ୱାରା ସେ ସୀତାଙ୍କର ବିଶ୍ୱାସ ଜନ୍ମାଉଛନ୍ତି ଓ ରାମଙ୍କର ମୁଦ୍ରିକା ପ୍ରଦାନ କରି ତାଙ୍କୁ ସାନ୍ତ୍ୱନା ବାକ୍ୟରେ ପ୍ରବୋଧିତ କରୁଛନ୍ତି । ସୀତାଙ୍କର ଦୁଃଖରେ ସେ ଏପରି ଦୁଃଖୀ ହୋଇଛନ୍ତି ଯେ ତାଙ୍କୁ ପିଠିରେ ବସାଇ ରାମଙ୍କ ପାଖରେ ପହଞ୍ଚାଇଦେବେ ବୋଲି ମଧ୍ୟ ତାଙ୍କର ଅନୁମତି ମାଗୁଛନ୍ତି । ଅନ୍ୟ କୌଣସି ବ୍ୟକ୍ତି ହୋଇଥିଲେ ସେ ଆଉ କିଛି ଚିନ୍ତା ନ କରି ସୀତାଙ୍କର ସମ୍ବାଦ ଶୀଘ୍ର ରାମଙ୍କ ପାଖରେ ପହଞ୍ଚାଇ ଦେଇଥାନ୍ତା । କିନ୍ତୁ ହନୁମାନ ଦେଖୁଛନ୍ତି, ସେ ଖାଲି ଫେରିଗଲେ ଠିକ୍ ହେବ ନାହିଁ । ରାମଙ୍କର ବଳ ଓ ପ୍ରଭାବ କ'ଣ ତାହା ତାଙ୍କର ଦୂତ ରାବଣକୁ ଦେଖାଇ ଦେଇ ଗଲେ ଭଲ ହେବ । ସେଥିପାଇଁ ରାବଣର ବୀରପୁତ୍ର ଅକ୍ଷକୁମାର ସମେତ ବହୁ ସେନାପତି ଓ ସୈନ୍ୟଙ୍କୁ ନିହତ କରି ଏବଂ ଲଙ୍କାକୁ ଭସ୍ମସାତ୍ କରି ସେ ରାମଙ୍କ ପାଖକୁ ଫେରିଗଲେ । ସେ ସୀତାଙ୍କୁ ଦେଖିଛନ୍ତି ବୋଲି ପ୍ରମାଣସ୍ୱରୂପ ସୀତାଙ୍କର ମଥାମଣି ରାମଙ୍କୁ ଦେବା ପୂର୍ବରୁ ତାଙ୍କ ମନରେ ହର୍ଷ ଜାତ କରିବାପାଇଁ ସେ ଦେଖିବା କଥାଟା ଆଗରୁ ପ୍ରକାଶ କରି କହିଛନ୍ତି, 'ଦେଖିଲି, ସୀତାଙ୍କୁ ଦେଖିଲି' । ଲଙ୍କାରେ ଯୁଦ୍ଧରେ ହନୁମାନଙ୍କ ଅସାମାନ୍ୟ ବୀରତ୍ୱ, ରାମ ଲକ୍ଷ୍ମଣଙ୍କୁ ବଞ୍ଚାଇବାପାଇଁ ବିପୁଳ ବେଗରେ ହିମାଳୟ ଯାଇ ସେଠାରୁ ଔଷଧିପର୍ବତକୁ ଟେକିଆଣି ପହଞ୍ଚାଇ ଦେବା, ଇନ୍ଦ୍ରଜିତ୍ ସହିତ ଶେଷ ଯୁଦ୍ଧରେ ଲକ୍ଷ୍ମଣଙ୍କ ପାଖେ ପାଖେ ରହି ତାଙ୍କୁ ସାହାଯ୍ୟ କରିବା ଆଦି ଏହି ମହାବୀରଙ୍କର ବହୁ ସଫଳତାର ପରିଚୟ ଦିଏ ।

ହନୁମାନ କେବଳ ରାମଙ୍କର ଭକ୍ତ ନୁହନ୍ତି, ସୀତାଙ୍କର ମଧ୍ୟ ପ୍ରିୟ ଥିଲେ । ରାମ ଅଯୋଧ୍ୟାରେ ଅଭିଷେକ ବେଳେ ସୀତାଙ୍କୁ ଯେଉଁ ଦୁର୍ମୂଲ୍ୟ ରତ୍ନହାର ଉପହାର ଦେଲେ, ସୀତା ତାକୁ ନିଜେ ନ ପିନ୍ଧି ହନୁମାନଙ୍କ ଗଳାରେ ଲମ୍ବାଇଦେଲେ । ରାମ ନିଜର ଦେହ ବିସର୍ଜନ କରିବା ପୂର୍ବରୁ ହନୁମାନଙ୍କୁ ଡାକି କହିଲେ, ତୁମେ ଏହି ସଂସାରରେ ଅମର ହୋଇ ରହିବ । ହନୁମାନ କହିଲେ, ପ୍ରଭୁ, ଯେତେଦିନ ତୁମର ଗୁଣ କୀର୍ତ୍ତନ ହେଉଥିବ, ସେତେଦିନ ତାହା ଶୁଣିବାପାଇଁ ମୁଁ ବଞ୍ଚି ରହିବି । ସେଥିପାଇଁ ଯେଉଁଠାରେ ରାମାୟଣ ପାରାୟଣ ହୁଏ, ସେଠାରେ ହନୁମାନ ଅଲକ୍ଷିତରେ ଉପସ୍ଥିତ ରହନ୍ତି ବୋଲି କିମ୍ବଦନ୍ତୀ ଅଛି ।

ଶାସ୍ତ୍ରରେ ଅଛି, ଅନେକ ସମୟରେ ଭଗବାନ୍ ଭକ୍ତକୁ ନିଜଠାରୁ ବଡ଼ ବୋଲି ମନେ କରନ୍ତି । ହନୁମାନଙ୍କ କ୍ଷେତ୍ରରେ ତାହାହିଁ ହୋଇଛି । ଯେଉଁଠି ରାମଙ୍କର ପୂଜା ହୁଏ, ସେଠାରେ ରାମ ଲକ୍ଷ୍ମଣ ଓ ସୀତା ଏବଂ ତାଙ୍କ ପାଖରେ ହନୁମାନ ବସିଥାନ୍ତି । ହନୁମାନ ନ ଥାଇ ରାମ ମନ୍ଦିର ନାହିଁ । କିନ୍ତୁ କେବଳ ହନୁମାନ ଥାଇ ଅସଂଖ୍ୟ ମନ୍ଦିର ଏ ଦେଶରେ ରହିଛି ।

ରାମାୟଣରେ ବିଭୀଷଣ ଚରିତ୍ରର ସ୍ୱତନ୍ତ୍ର ମୂଲ୍ୟ ଅଛି । ବିଭୀଷଣଙ୍କର ସାହାଯ୍ୟ ନେଇ ନ ଥିଲେ ରାମ ଲଙ୍କାଜୟ କରିପାରି ନ ଥାନ୍ତେ । ରାବଣର ସେନାପତି ଓ ସହାୟକଗଣ କିଏ କେଉଁ ବଳରେ ବଳୀୟାନ୍, କାହାର କେଉଁ ଦୁର୍ବଳତା ରହିଛି, ତାହା ବିଭୀଷଣଙ୍କୁ ଭଲଭାବରେ ଜଣାଥିଲା ଓ ଲଙ୍କାଯୁଦ୍ଧରେ ଯଥା ସମୟରେ କଣ କରିବାକୁ ହେବ, ରାମଙ୍କୁ ସେ ତାର ପରାମର୍ଶ ଦେଉଥିଲେ । ବ୍ରହ୍ମାସ୍ତ୍ର ପ୍ରୟୋଗ କରି ଇନ୍ଦ୍ରଜିତ୍ ରାମ ଲକ୍ଷ୍ମଣଙ୍କୁ ମୃତବତ୍ ମୂର୍ଚ୍ଛିତ କରିଥିଲା । ଏହି ଅସ୍ତ୍ର ରାମ ଲକ୍ଷ୍ମଣଙ୍କ ପ୍ରତି ପ୍ରାଣନାଶକ ହେବ ନାହିଁ ବୋଲି ବିଭୀଷଣ କହିଥିଲେ । ନିକୁମ୍ଭିଳା ବଟ ମୂଳରେ ଇନ୍ଦ୍ରଜିତ୍‌ର ଯଜ୍ଞ ଭଙ୍ଗ ନ ହେଲେ ଇନ୍ଦ୍ରଜିତ୍ ଦୁର୍ଜୟ ହେବ ବୋଲି ସେ ରାମଙ୍କୁ ସତର୍କ କରିଦେଇଥିଲେ ଏବଂ ଏହି ସୁରକ୍ଷିତ ବଟ ମୂଳକୁ ସେ ବାଟ ଦେଖାଇ ଲକ୍ଷ୍ମଣଙ୍କୁ ନେଇ ଯାଇଥିଲେ । ମାୟା ସୀତାଙ୍କ ଛିନ୍ନ ଶିର ଦେଖି ରାମ ବିଳାପ କରିବାକୁ ଲାଗିଲେ । ବିଭୀଷଣ କହିଲେ, ଏ ପ୍ରକୃତ ସୀତା ନୁହନ୍ତି, ତେଣୁ ଶୋକ କରିବା ଅନାବଶ୍ୟକ । ଯୁଦ୍ଧରେ ରାବଣର ବିନାଶ ଓ ରାମଙ୍କର ବିଜୟ ସୁନିଶ୍ଚିତ ବୋଲି ବିଭୀଷଣ ବହୁ ଆଗରୁ ଜାଣିଥିଲେ ।

ବିଭୀଷଣ ଲଙ୍କାରେ ଥିବାବେଳେ ରାବଣକୁ ସର୍ବଦା ସତ୍ ପରାମର୍ଶ ଦେଉଥିଲେ । ରାବଣ ରାମଙ୍କର ଦୂତ ବାନରବୀର ହନୁମାନଙ୍କୁ ବଧ କରିବାପାଇଁ ଯେତେବେଳେ ପ୍ରସ୍ତାବ ଦେଲା, ବିଭୀଷଣ ତାର ପ୍ରତିବାଦ କରିଥିଲେ । ଦୂତକୁ ବଧ କରିବା ଅଧର୍ମ ବୋଲି କହିଥିଲେ, ଯାହାଫଳରେ ତାଙ୍କୁ ଅନ୍ୟ ଦଣ୍ଡ ଦେବାପାଇଁ ରାବଣ ନିଷ୍ପତ୍ତି କଲା ।

ଇନ୍ଦ୍ରଜିତ୍ ବିଭୀଷଣଙ୍କୁ ଭର୍ତ୍ସନା କରି କହିଥିଲା, ତୁମେ ଲଙ୍କାରେ ଜନ୍ମ ହୋଇ ଓ ଲାଳିତ ପାଳିତ ହୋଇ ରାଜ୍ୟର ଶତ୍ରୁ ଭାବରେ ଠିଆ ହୋଇଛ । ନିଜର ଭ୍ରାତା ଓ ସ୍ୱଜନଙ୍କ ସହିତ ଶତ୍ରୁତା କରି ଅନ୍ୟର ଦାସତ୍ୱ ସ୍ୱୀକାର କରିଛ । ରାବଣ ମଧ୍ୟ ବିଭୀଷଣଙ୍କୁ ଅନୁରୂପ ଭର୍ତ୍ସନା କରୁଥିଲା । ଜନଶ୍ରୁତିରେ ବିଭୀଷଣଙ୍କୁ ଦେଶଦ୍ରୋହୀ ବୋଲି ଚିତ୍ରଣ କରାଯାଏ । ଓଡ଼ିଆରେ 'ଘରଭଙ୍ଗା ବିଭୀଷଣ' ବୋଲି ଏକ ପ୍ରବାଦ ଅଛି । କିନ୍ତୁ ଏପରି ଲଘୁ ଭାବରେ ବିଭୀଷଣ ଚରିତ୍ରର ବିଚାର କଲେ ଆମେ ରାମାୟଣର ଏକ ମହାନୀୟ ଚରିତ୍ର ପ୍ରତି ଅନ୍ୟାୟ କରିବା । ଉତ୍ତରକାଣ୍ଡରେ ଅଛି, ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣ ଏହି ତିନିଭାଇ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରିବାପାଇଁ ଘୋର ତପସ୍ୟା କରିଥିଲେ । ପ୍ରଥମ ଦୁଇଜଣ ଦେବାସୁରଙ୍କର ଅବଧ୍ୟ ହୋଇ ତ୍ରିଲୋକବିଜୟୀ ହେବେ ବୋଲି ବର ମାଗିଥିଲେ । ବିଭୀଷଣ କହିଲେ– ପିତାମହ, ମହାବିପଦରେ ମଧ୍ୟ ଯେପରି ଧର୍ମରେ ମୋର ମତି ରହେ, ଶିକ୍ଷା ନ ପାଇ ମଧ୍ୟ ମୁଁ ବ୍ରହ୍ମବିଦ୍ୟା ଲାଭ କରେ, ମୋତେ ସେହି ବର ପ୍ରଦାନ କର । ବ୍ରହ୍ମାଙ୍କ ବରରେ ବିଭୀଷଣ ଏକ ଶ୍ରେଷ୍ଠ ଧର୍ମଜ୍ଞ ପୁରୁଷ ହୋଇଥିଲେ । ବାଲ୍ମୀକି

ବିଭୀଷଣଙ୍କ ପରିଚୟ ଦେଇ କହିଛନ୍ତି, 'ବିଭୀଷଣସ୍ତୁ ଧର୍ମାତ୍ମା ନିତ୍ୟଂ ଧର୍ମବ୍ୟବସ୍ଥିତଃ ।' ଧର୍ମାତ୍ମା ବିଭୀଷଣ ପ୍ରତ୍ୟହ ଧର୍ମମାର୍ଗରେ ଚଳନ୍ତି । ତେଣୁ କୌଣସି ଲୋଭର ବଶବର୍ତ୍ତୀ ହୋଇ ସେ ଲଙ୍କା ବା ରାବଣକୁ ପରିତ୍ୟାଗ କରି ନ ଥିଲେ । ରାବଣର ଭ୍ରାତା ଭାବରେ ଲଙ୍କାରେ ତାଙ୍କର ଏକ ସମ୍ମାନିତ ସ୍ଥାନ ଥିଲା । ରାବଣ ଓ କୁମ୍ଭକର୍ଣ୍ଣ ଦିଗ୍‌ବିଜୟ କରିବାକୁ ଯିବାବେଳେ ବିଭୀଷଣଙ୍କୁ ରାଜକାର୍ଯ୍ୟ ଚଳାଇବାର ଦାୟିତ୍ୱ ଦେଇ ଯାଉଥିଲେ, ତେଣୁ ତାଙ୍କର କୌଣସି କ୍ଷମତା, ପଦବୀ ବା ଐଶ୍ୱର୍ଯ୍ୟର ଅଭାବ ନ ଥିଲା । ଏକ ପକ୍ଷରେ ନିଶ୍ଚିତ ପଦମର୍ଯ୍ୟାଦା, ଅନ୍ୟପକ୍ଷରେ ଅର୍ଥାତ୍ ରାମଙ୍କ ସହିତ ଯୋଗଦେବାକୁ ଯିବାବେଳେ ଏକ ଅନିଶ୍ଚିତ ଅବସ୍ଥା । ଶତ୍ରୁର ଭାଇ ହିସାବରେ ରାମ ତାଙ୍କୁ କିପରି ଗ୍ରହଣ କରିବେ, ହୁଏତ ସେ ବନ୍ଦୀ ହୋଇ ପାରନ୍ତି କିମ୍ବା ଦଣ୍ଡିତ ହୋଇପାରନ୍ତି, ଏହା ଜାଣି ମଧ୍ୟ ବିଭୀଷଣ ନିଜର ଭାଇ, ବନ୍ଧୁ, ଘରଦ୍ୱାର, ସ୍ତ୍ରୀ ଓ ସ୍ୱଜନମାନଙ୍କୁ ଛାଡ଼ି କାହିଁକି ଅନିଶ୍ଚିତକୁ ବରଣ କଲେ ? ତାର ଏକମାତ୍ର କାରଣ ହେଉଛି ବିଭୀଷଣ ଧର୍ମାତ୍ମା । 'ନିତ୍ୟଂ ଧର୍ମବ୍ୟବସ୍ଥିତଃ ।' ସେ ଯେତେବେଳେ ଦେଖିଲେ ରାବଣ ସୀତାଙ୍କୁ ଅପହରଣ କରି ଏକ ଘୋର ଅଧର୍ମ କାର୍ଯ୍ୟ କରିଛି, ସେ ତାର ତୀବ୍ର ପ୍ରତିବାଦ କରିଥିଲେ । ରାବଣର ଘରକୁ ଯାଇ ଓ ସମସ୍ତଙ୍କ ସମକ୍ଷରେ ସଭା ମଧ୍ୟରେ ରାମଙ୍କ ହସ୍ତରେ ସୀତାଙ୍କୁ ପ୍ରତ୍ୟର୍ପଣ କରିବାପାଇଁ ସେ ବାରମ୍ବାର ଦାବି କରିଥିଲେ । ସେ କହିଥିଲେ, ମନ୍ତ୍ରୀମାନେ ତୁମକୁ କେହି ଉଚିତ ମନ୍ତ୍ରଣା ଦେଉ ନାହାନ୍ତି, ଯାହା ନ୍ୟାୟସମ୍ମତ ଓ ହିତକର, ତାହା କର । ରାମଙ୍କର ପତ୍ନୀଙ୍କୁ ଫେରାଇ ଦିଅ । କ୍ରୋଧ ତ୍ୟାଗ କରି ଧର୍ମର ଆଶ୍ରୟ ନିଅ । ନଚେତ୍ ତୁମର ଅପରାଧରୁ ରାକ୍ଷସଙ୍କ ସମେତ ସମଗ୍ର ଲଙ୍କାପୁରୀ ଧ୍ୱଂସ ହେବ । କୁମ୍ଭକର୍ଣ୍ଣ ମଧ୍ୟ ରାବଣକୁ ଧିକ୍କାର କରି କହିଥିଲା, ତୁମେ ରାମଙ୍କ ପାଖରୁ ସୀତାଙ୍କୁ ଅପହରଣ କରି ଅତିଶୟ ଅନ୍ୟାୟ କରିଛ । ଏହି ଅପରିଣାମଦର୍ଶୀ କାର୍ଯ୍ୟପାଇଁ ରାମ ଯେ ଏ ପର୍ଯ୍ୟନ୍ତ ତୁମକୁ ନିହତ ନ କରି ରଖିଛନ୍ତି, ଏହା କେବଳ ତୁମର ଭାଗ୍ୟ ବୋଲି କହିବାକୁ ହେବ । କିନ୍ତୁ ବିଭୀଷଣ ଓ କୁମ୍ଭକର୍ଣ୍ଣ ମଧ୍ୟରେ ପାର୍ଥକ୍ୟ ହେଉଛି, ଜଣେ ଅଧର୍ମର ପ୍ରତିକାର ପାଇଁ ଧର୍ମର ପକ୍ଷ ଗ୍ରହଣ କରୁଛି । ଅନ୍ୟ ଜଣେ ଅଧର୍ମ ବୋଲି ଜାଣି ମଧ୍ୟ ଭ୍ରାତୃସ୍ନେହର ବଶବର୍ତ୍ତୀ ହୋଇ ଅଧର୍ମର ପକ୍ଷ ଗ୍ରହଣ କରୁଛି । ମହାତ୍ମା ଗାନ୍ଧୀ ତାଙ୍କ ଜୀବଦ୍ଦଶାରେ ବାରମ୍ବାର କହୁଥିଲେ – ସତ୍ୟ ଓ ଧର୍ମ ଏବଂ ଅନ୍ୟ ପକ୍ଷରେ ଯେ କୌଣସି ବାଟରେ ଦେଶର ସ୍ୱାଧୀନତା ଲାଭ ଏ ଦୁଇଟି ମଧ୍ୟରୁ ଯଦି ଗୋଟିକୁ ମୋତେ ବାଛିବାକୁ ହୁଏ ତା' ହେଲେ ମୁଁ ସତ୍ୟର ପକ୍ଷ ଗ୍ରହଣ କରିବି । ସେହି ଦୃଷ୍ଟିରୁ ବିଭୀଷଣଙ୍କୁ ଦେଶଦ୍ରୋହୀ ବୋଲି ବିଚାର କରିବା ଅନ୍ୟାୟ ହେବ । ଧର୍ମର ପକ୍ଷ ଏବଂ ଯେଉଁ ରାମ ଧର୍ମର ପ୍ରତୀକ, ତାଙ୍କର ପକ୍ଷ ଗ୍ରହଣ କରିବାପାଇଁ ଯେଉଁ ସାହସ ଦରକାର ତାହା ତାହାଙ୍କର ଥିଲା ।

ଏ ସମ୍ପର୍କରେ ଯୁଦ୍ଧର ଏକ ମର୍ମସ୍ପର୍ଶୀ ଘଟଣା ଏଠାରେ ଉଲ୍ଲେଖ କରାଯାଇପାରେ । ଲଙ୍କାର ଯୁଦ୍ଧଭୂମିରେ ଯେତେବେଳେ କୁମ୍ଭକର୍ଣ୍ଣ ଓ ବିଭୀଷଣଙ୍କ ଭେଟ ହେଲା, ସେତେବେଳେ କୁମ୍ଭକର୍ଣ୍ଣ ସାନଭାଇକୁ କହିଲା, ତୁ ରାକ୍ଷସମାନଙ୍କ ମଧ୍ୟରେ ଏକାକୀ ସତ୍ୟ ଓ ନ୍ୟାୟ ପାଇଁ ଲଢୁଛୁ । ରାକ୍ଷସକୁଳର ରକ୍ଷା ପାଇଁ ତୋର ବଞ୍ଚିରହିବା ଦରକାର । ଏହା

କହି ବିଭୀଷଣକୁ ତା ଆଗରୁ ଠେଲିଦେଇ ସେ ଲଢ଼ିବା ପାଇଁ ଆଗେଇଗଲା । ଇନ୍ଦ୍ରଜିତ୍‌ର ବଧ ପାଇଁ ଲକ୍ଷ୍ମଣଙ୍କୁ ସାଙ୍ଗରେ ନେଇ ଗଲାବେଳେ ବିଭୀଷଣ କହିଲେ, ଇନ୍ଦ୍ରଜିତ୍ ମୋର ପୁତ୍ର ତୁଲ୍ୟ । ତା'ର ନିଧନ ମୋ' ପକ୍ଷରେ ଅନୁଚିତ । କିନ୍ତୁ ରାମଙ୍କ କାର୍ଯ୍ୟରେ ମୋତେ ତାହା କରିବାକୁ ହେବ । ରାବଣର ନିଧନ ପରେ ବିଭୀଷଣ ବିଳାପ କରି କହୁଛନ୍ତି, ତୁମ ପରି ଖ୍ୟାତନାମା ନୀତିଜ୍ଞ ମହାବୀରକୁ ହରାଇ ଲଙ୍କା ବୀରଶୂନ୍ୟ ହେଲା । ସୂର୍ଯ୍ୟ ଭୂପତିତ, ଚନ୍ଦ୍ର ତମସାବୃତ ଓ ଅଗ୍ନି ନିର୍ବାପିତ ହେଲା । ମୋର ହିତବାକ୍ୟ ତୁମର ରୁଚିକର ହେଲା ନାହିଁ । ସେଥିପାଇଁ ଏହି ଦଶା ଘଟିଲା । ନିଜର ଭ୍ରାତା ଓ ସ୍ୱଜନଙ୍କ ପ୍ରତି ଓ ସ୍ୱଦେଶ ଲଙ୍କା ପ୍ରତି ବିଭୀଷଣଙ୍କର ସମସ୍ତ ଅନୁରକ୍ତି ସତ୍ତ୍ୱେ ସତ୍ୟ ଓ ନ୍ୟାୟ ପାଇଁ ତାଙ୍କୁ ରାମଙ୍କର ପକ୍ଷ ଗ୍ରହଣ କରିବାକୁ ହୋଇଥିଲା । ଲଙ୍କାଯୁଦ୍ଧ ପରେ ଅଯୋଧ୍ୟାରୁ ଲଙ୍କା ପର୍ଯ୍ୟନ୍ତ ସତ୍ୟ ଓ ନ୍ୟାୟ ଉପରେ ପ୍ରତିଷ୍ଠିତ ଆର୍ଯ୍ୟଧର୍ମର ପ୍ରସାର ହେଲା ଏବଂ ସୁଗ୍ରୀବ ଓ ବିଭୀଷଣ ତାର ଏକ ଏକ ସ୍ତମ୍ଭ ହୋଇ ରହିଲେ । ଦେହତ୍ୟାଗ ପୂର୍ବରୁ ରାମ ବିଭୀଷଣଙ୍କୁ ଲଙ୍କାରେ ଆର୍ଯ୍ୟଧର୍ମର ରକ୍ଷା ପାଇଁ ଅମରତ୍ୱ ପ୍ରଦାନ କରିଥିଲେ ।

ରାବଣ ରାମାୟଣର ଅନ୍ୟତମ ପ୍ରଧାନ ଚରିତ୍ର । ବାଲ୍ମୀକି ରାବଣକୁ ସର୍ବଲକ୍ଷଣ ସମ୍ପନ୍ନ, ସମସ୍ତ ଗୁଣ ଓ ବିଭିନ୍ନ ଗୁଣର ଆଧାର ବୋଲି ଉଲ୍ଲେଖ କରିଛନ୍ତି । ରାବଣ ନୀଳାଞ୍ଜନ କାନ୍ତି, ସୁନ୍ଦର ଚକ୍ଷୁ, ଓଷ୍ଠ ଓ ଶୁଭ୍ର ଦନ୍ତଯୁକ୍ତ, ବିଶାଳ ବକ୍ଷ ଓ ବିପୁଳ ବାହୁ ବିଶିଷ୍ଟ ତେଜସ୍ୱୀ ପୁରୁଷ ରୂପେ ବର୍ଣ୍ଣିତ ହୋଇଛି । ରାମାୟଣର ବିଭିନ୍ନ ସ୍ଥାନରେ ରାବଣର ରୂପ ଓ ତେଜର ବର୍ଣ୍ଣନା କରାଯାଇଛି । ଶୂର୍ପଣଖା ରାମଙ୍କ ସମ୍ପର୍କରେ ଅଭିଯୋଗ କରିବାପାଇଁ ରାବଣର ପାଖକୁ ଆସିବା ବେଳେ, ହନୁମାନ ନିଦ୍ରିତ ଓ ଜାଗ୍ରତ ଅବସ୍ଥାରେ ରାବଣକୁ ଦେଖିବା ବେଳେ ଓ ରାମଙ୍କ ସହିତ ରାବଣର ଯୁଦ୍ଧ ସମୟରେ ତା'ର ରୂପ, ବଳ ଓ ପରାକ୍ରମର ବର୍ଣ୍ଣନା ଦେଖିବାକୁ ମିଳେ । ଅଶୋକବନରେ ରାବଣକୁ ଦେଖି ହନୁମାନ ଭାବୁଛନ୍ତି, କନ୍ଦର୍ପ ଧନୁ ତ୍ୟାଗକରି ଯେପରି ସମ୍ମୁଖରେ ଉପସ୍ଥିତ । 'ସମକ୍ଷମିବ କନ୍ଦର୍ପମପବିଦ୍ଧଶରାସନମ୍' । ତେଜସ୍ୱୀ ହନୁମାନ ରାବଣର ତେଜ ଓ ପ୍ରଭାରେ ବିଚଳିତ ହୋଇ ବୃକ୍ଷଶାଖାରେ ପତ୍ରଗହଳ ଭିତରେ ଲୁଚିଯାଉଛନ୍ତି । ଇନ୍ଦ୍ରଜିତ୍ ହନୁମାନଙ୍କୁ ବନ୍ଧନ କରି ଯେତେବେଳେ ରାବଣର ପାଖକୁ ଆଣିଲା, ସିଂହାସନରେ ବସିଥିବା ରାବଣର ତେଜ ଓ ରୂପରେ ହନୁମାନ ମୋହିତ ହୋଇଗଲେ । ସେ ମନେ ମନେ କହିବାକୁ ଲାଗିଲେ, ଏହି ରାକ୍ଷସରାଜର କି ରୂପ, କି ଧୈର୍ଯ୍ୟ, କି ଶକ୍ତି, କି ଦ୍ୟୁତି । ଏହାର ସର୍ବାଙ୍ଗ କିପରି ସୁଲକ୍ଷଣଯୁକ୍ତ । ଯଦି ଏହାର ଅଧର୍ମ ପ୍ରବଳ ନ ହୋଇଥାନ୍ତା, ତା'ହେଲେ ଇନ୍ଦ୍ର ସମେତ ସୁରଲୋକର ସେ ରକ୍ଷକ ହୋଇପାରିଥାନ୍ତା ।

**ଅହୋରୂପମହୋଧୈର୍ଯ୍ୟମହୋସତ୍ତ୍ୱମହୋଦ୍ୟୁତିଃ**
**ଅହୋ ରାକ୍ଷସରାଜସ୍ୟ ସର୍ବଲକ୍ଷଣଯୁକ୍ତସ୍ୟ ।**
**ଯଦ୍ୟଧର୍ମୋ ନ ବଳବାନ୍ ସ୍ୟାଦୟଂ ରାକ୍ଷସେଶ୍ୱରଃ**
**ସ୍ୟାଦୟଂ ସୁରଲୋକସ୍ୟ ସଶକ୍ରସ୍ୟାପିରକ୍ଷିତା ॥**

ରାମ ଲଙ୍କାର ଯୁଦ୍ଧକ୍ଷେତ୍ରରେ ରାବଣକୁ ପ୍ରଥମେ ଦେଖି ବିଭୀଷଣଙ୍କୁ କହୁଛନ୍ତି, 'ରାକ୍ଷସରାଜ ରାବଣର କି ଦୀପ୍ତି କି ତେଜ ! ସୂର୍ଯ୍ୟ ପରି ଏହି ତେଜସ୍ୱୀ ରାବଣକୁ ଚାହିଁ ହେଉ ନାହିଁ ।' ଲଙ୍କାଯୁଦ୍ଧ ଶେଷରେ ରାବଣର ମୃତଦେହକୁ ଦେଖି ବିଭୀଷଣ ବିଳାପ କରି କହୁଛନ୍ତି, 'ସୂର୍ଯ୍ୟ ଖସିପଡ଼ିଲେ । ଚନ୍ଦ୍ରମା ନିଷ୍ପ୍ରଭ ହୋଇଗଲେ ।' ବୟସ ଦୃଷ୍ଟିରୁ ରାବଣ ରାମଙ୍କଠାରୁ ବହୁତ ବଡ଼ ହେଲେ ମଧ୍ୟ ରାବଣର ଥିଲା ଅଖଣ୍ଡ ଯୌବନ । ରୂପଯୌବନସମ୍ପନ୍ନ ବୋଲି ତାକୁ ବର୍ଣ୍ଣନା କରାଯାଇଛି ।

ରାବଣ ତପଃସିଦ୍ଧ, ତ୍ରିଲୋକବିଜୟୀ ବୀର । କେବଳ ବାଳୀ, ସହସ୍ରାର୍ଜୁନ, କପିଳରୂପୀ ଭଗବାନ୍ ବିଷ୍ଣୁ ଓ କୈଳାସବିହାରୀ ମହାଦେବଙ୍କୁ ଛାଡ଼ିଦେଲେ ରାବଣଙ୍କୁ କେହି ପରାସ୍ତ ଓ କବଳିତ କରି ନାହାନ୍ତି । ଲଙ୍କାର ଯୁଦ୍ଧରେ ରାମ ଦୁଇ ଦିନ ଧରି ଅବିଶ୍ରାନ୍ତ ଲଢ଼ି ବିଭିନ୍ନ ଦିବ୍ୟାସ୍ତ୍ର ସାହାଯ୍ୟରେ ରାବଣକୁ ନିହତ କରୁଛନ୍ତି ଏବଂ କହୁଛନ୍ତି, ରାବଣର ପରାକ୍ରମ ଆଶ୍ଚର୍ଯ୍ୟ । ସେ ମହାବୀର, ମହୋତ୍ସାହୀ ଓ କ୍ଷାତ୍ରଧର୍ମ ପାଳନକାରୀ ।

ରାବଣ କୁଳୀନ, ବିଶ୍ରବାଋଷିଙ୍କର ପୁତ୍ର ଓ ବ୍ରହ୍ମାଙ୍କର ନାତି, ସଂସ୍କୃତ ଭାଷାରେ ପଣ୍ଡିତ ଓ କବି, ଶାସ୍ତ୍ରବିତ୍ ଓ ବେଦଜ୍ଞ, ରାଜନୀତି ଓ କୂଟନୀତିରେ ପାରଙ୍ଗମ । ଶୁଦ୍ଧ ସଂସ୍କୃତରେ ସୀତାଙ୍କ ସହିତ ରାବଣ କଥାଭାଷା କରୁଥିବାର ହନୁମାନ ଅଶୋକବନରେ ଲକ୍ଷ୍ୟ କରିଥିଲେ । କୈଳାସ ପର୍ବତରେ ଶିବଙ୍କ ଦ୍ୱାରା ପୀଡ଼ିତ ହୋଇ ରାବଣ ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ଯେଉଁ ସ୍ତୋତ୍ର ପାଠ କରିଥିଲା, କିମ୍ବଦନ୍ତୀ ଅନୁସାରେ ତାହା ରାବଣକୃତ 'ଶିବ ତାଣ୍ଡବସ୍ତୋତ୍ର' ନାମରେ ସଂସ୍କୃତ ସାହିତ୍ୟରେ ପରିଚିତ । କୂଟନୀତି ଦୃଷ୍ଟିରୁ ଅଧିକ ବଳୀୟାନ୍ ବାଳୀ ସହିତ ରାବଣ ମିତ୍ରତା କରିଥିଲା । ଏକ ବିଚକ୍ଷଣ ରାଜନୀତିଜ୍ଞ ଭାବରେ ବିଶାଳ ଲଙ୍କା ସାମ୍ରାଜ୍ୟକୁ ସେ ଅଖଣ୍ଡ ଓ ଅକ୍ଷୁଣ୍ଣ ରଖିଥିଲା ।

କିନ୍ତୁ ଏ ସମସ୍ତ ଗୁଣ ସତ୍ତ୍ୱେ ରାବଣକୁ ଆସୁରୀଶକ୍ତିର ପ୍ରତୀକ ଭାବରେ ବର୍ଣ୍ଣନା କରାଯାଇଛି । ସେ ଦେବତାମାନଙ୍କର ଉତ୍ପୀଡ଼କ, ଧର୍ମର ଉଚ୍ଛେଦକ, ଯଜ୍ଞ ବିଘ୍ନକାରୀ, କ୍ରୂରକର୍ମା, କର୍କଶ, ନିର୍ଦ୍ଦୟ ଓ ପରସ୍ୱ ଓ ପରଦାର ହରଣକାରୀ । ଋଷି ଓ ତପସ୍ୱୀମାନଙ୍କ ପରି ରାବଣ ବେଦାଧ୍ୟୟନ ଓ ତପସ୍ୟାରେ ବିଶ୍ୱାସ କରୁଥିଲା । କିନ୍ତୁ ଋଷିମାନେ ସଂସାରର କଲ୍ୟାଣ ପାଇଁ ତପସ୍ୟା କରୁଥିଲେ । ରାବଣ ନିଜର ସ୍ୱାର୍ଥ ସିଦ୍ଧି ପାଇଁ । ବ୍ରହ୍ମାଙ୍କଠାରୁ ବର ଲାଭ କରି ସେ ଦେବତା ଓ ଋଷିମାନଙ୍କୁ ନିର୍ଯାତିତ କରୁଥିଲା । ଇନ୍ଦ୍ରଙ୍କୁ ବନ୍ଦୀ ଓ ଅପମାନିତ କରି କୁବେରଙ୍କୁ ଲଙ୍କାରୁ ବିତାଡ଼ିତ କରିଥିଲା ଓ କୈଳାସରେ କୁବେରପୁରୀକୁ ଆକ୍ରମଣ କରି ତାଙ୍କର ପୁଷ୍ପକ ବିମାନକୁ ଅପହରଣ କରିଥିଲା । ଖର, ଦୂଷଣ, ମାରୀଚ, ସୁବାହୁଙ୍କୁ ସେ ନିଯୁକ୍ତ କରିଥିଲା ଭାରତବର୍ଷର ବିଭିନ୍ନ ସ୍ଥାନରେ ରାଜ୍ୟ ସ୍ଥାପନ କରି ଋଷିମାନଙ୍କ ତପସ୍ୟା ଓ ଯଜ୍ଞରେ ବିଘ୍ନ ଘଟାଇବା ପାଇଁ ହିଂସା ଓ ନିର୍ଦ୍ଦୟତା ଦ୍ୱାରା ଚତୁର୍ଦ୍ଦିଗରେ ଭୟର ସଞ୍ଚାର କରିବା ପାଇଁ । ନିଜର ସ୍ୱାର୍ଥ ପାଇଁ ଅନ୍ୟର ପ୍ରାଣ ହରଣ ଏକ ସାଧାରଣ କଥା ବୋଲି ସେମାନେ ଗ୍ରହଣ କରି ନେଇଥିଲେ । ରାବଣର ସବୁଠାରୁ ପ୍ରଧାନ ଦୋଷ ଥିଲା ପରଦାର ହରଣ । ଶହ ଶହ ନାରୀଙ୍କୁ ସେ ବଳପୂର୍ବକ ଆଣି ତାର ଅନ୍ତଃପୁରରେ ରଖିଥିଲା ।

ପାତାଳରେ ନାଗରାଜ୍ୟ ଭୋଗବତୀକୁ ଆକ୍ରମଣ କରି ରାଣୀଙ୍କୁ ବଳପୂର୍ବକ ଧର୍ଷଣ କରିଥିଲା । ତପସ୍ୱିନୀ ବେଦବତୀ ଓ ଅପ୍‌ସରା ପୁଞ୍ଜିକସ୍ଥଳାଙ୍କୁ ବଳପୂର୍ବକ ଧରିନେଇ ଧର୍ଷଣ କରିଥିବାରୁ ଅଭିଶପ୍ତ ହୋଇଥିଲା । ସୀତାଙ୍କୁ ଅପହରଣ କରି ସେ ଅଶୋକବନରେ ରଖିଥିବା ବେଳେ ତାଙ୍କ ଆଗରେ ନିଜର ପ୍ରୌଢ଼ି ଦେଖାଇ କହିଥିଲା, 'ପରସ୍ତ୍ରୀ ଗମନ ହେଉଛି ରାକ୍ଷସମାନଙ୍କର ସ୍ୱଧର୍ମ । ପୂର୍ବର ଅଭିଶାପ ଯୋଗୁଁ ରାବଣ ସୀତାଙ୍କୁ ଧର୍ଷଣ କରିବା ପାଇଁ ସାହସ କରୁନଥିଲା । ଏହି ଅଭିଶାପ ହେଉଛି କୌଣସି ନାରୀକୁ ସେ ଯଦି ବଳାତ୍କାର କରିବାକୁ ଚେଷ୍ଟା କରେ, ତା'ହେଲେ ତା'ର ଶିର ଶତଧା ବିଦୀର୍ଣ୍ଣ ହେବ । ସୀତାଙ୍କୁ ରାମଙ୍କ ପାଖରେ ଫେରାଇଦେବା ପାଇଁ ବିଭୀଷଣ, କୁମ୍ଭକର୍ଣ୍ଣ, ମନ୍ଦୋଦରୀ, ମାଲ୍ୟବାନ୍ ଆଦି ତାକୁ ଯେତେ ପରାମର୍ଶ ଦେଲେ ମଧ୍ୟ ସେ ଶୁଣିନଥିଲା । ରାବଣ ରାମଙ୍କୁ ଆର୍ଯ୍ୟଧର୍ମର ପ୍ରତୀକ ଓ ପ୍ରତିଷ୍ଠାତା ବୋଲି ଗ୍ରହଣ କରି ତାଙ୍କୁ ରାକ୍ଷସମାନଙ୍କର ପ୍ରଧାନ ଶତ୍ରୁ ବୋଲି ମନେକରୁଥିଲା । ପ୍ରଥମେ ସୀତାଙ୍କୁ ଅପହରଣ କରି ସେ ରାମଙ୍କୁ ଦୁର୍ବଳ ଓ ନଷ୍ଟ କରିଦେବା ପାଇଁ ଚେଷ୍ଟା କଲା । ତାହା ସଫଳ ନ ହେବାରୁ ରାମଙ୍କ ସହିତ ଶେଷ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲା । ରାବଣର ସଙ୍କଳ୍ପ, ସେ କିମ୍ବା ରାମ ଏ ଦୁଇଜଣଙ୍କ ମଧ୍ୟରୁ ଜଣେ ଏ ସଂସାରରେ ରହିବେ । ମଝିରେ ମଝିରେ ପୂର୍ବର ଅଭିଶାପ ତା' ମନକୁ ଆସୁଥିଲା । ବେଦବତୀ ସୀତା ହୋଇ ଜନ୍ମ ହୋଇ ନାହିଁ ତ ? ଏ ରାମ କ'ଣ ସ୍ୱୟଂ ବିଷ୍ଣୁ ଯେ କି ତା'ର ନିପାତ ପାଇଁ ଜନ୍ମ ଗ୍ରହଣ କରିଛନ୍ତି ? ପର ମୁହୂର୍ତ୍ତରେ ସେ ଯୁଦ୍ଧ ପାଇଁ ସଂକଳ୍ପବଦ୍ଧ ହୋଇ ବାହାରି ପଡ଼ିଛି ।

ରାମାୟଣର ମଧୁର ମନୋହର ପବିତ୍ର ଚରିତ୍ରମାନଙ୍କ ମଧ୍ୟରେ ସୀତା ହିଁ ପ୍ରଧାନ । ସେ ଧରଣୀର କନ୍ୟା । ଜନକ ଭୂମିକର୍ଷଣ ବେଳେ ଧରାଗର୍ଭରୁ ତାଙ୍କୁ ଲାଭ କରିଥିଲେ । ସମସ୍ତଙ୍କ ସମକ୍ଷରେ ଏହି ଧରାଗର୍ଭରେ ଶେଷରେ ସେ ଲୁଚିଯାଇଥିଲେ । ସ୍ୱାମୀଙ୍କର ସହଚାରିଣୀ ଭାବରେ ସେ ବହୁ ଦୁଃଖ ଭୋଗ କରିଛନ୍ତି । ଅଯୋଧ୍ୟାରୁ ଯାଇ ଅରଣ୍ୟରେ ନିର୍ବାସିତ ଜୀବନ, ଅରଣ୍ୟରୁ ଯାଇ ଲଙ୍କାରେ ବନ୍ଦିନୀ ହୋଇ ଆଶା ଓ ନୈରାଶ୍ୟ ମଧ୍ୟରେ ଏକ ଘୋର ଶୋକାକୁଳ ସମୟ ଏବଂ ଅଯୋଧ୍ୟାରେ ଜନରବର ଶରବ୍ୟ ରୂପେ ସ୍ୱାମୀଙ୍କ ଦ୍ୱାରା ପରିତ୍ୟକ୍ତ ହୋଇ ବାଲ୍ମୀକିଙ୍କ ଆଶ୍ରମରେ ପୁଣି ବନବାସ । ସର୍ବଂସହା ଧରଣୀ ପରି ସେ ଥିଲେ ସହିଷ୍ଣୁତା ଓ କ୍ଷମାର ପ୍ରତିମୂର୍ତ୍ତି । ଜୀବନର ବହୁଭାଗ ତାଙ୍କର ତପସ୍ୟାର ଅଗ୍ନିପରୀକ୍ଷା ମଧ୍ୟରେ କଟିଥିଲା ଏବଂ ଏକ ଶୁଦ୍ଧ ସୁବର୍ଣ୍ଣର ପ୍ରତିମା ପରି ତାହା ମଧ୍ୟରୁ ସେ ବାହାରି ଆସିଥିଲେ ।

ସୀତାଙ୍କର ବିବାହ ବେଳେ ରାଜା ଜନକ କନ୍ୟାପ୍ରଦାନ ବେଳେ ରାମଙ୍କୁ କହିଥିଲେ, 'ଏହି ମୋର କନ୍ୟା ସୀତା ତୁମର ସହଧର୍ମଚାରିଣୀ । ତୁମେ ଏହାଙ୍କୁ ନିଅ । ଏହାଙ୍କ ହସ୍ତରେ ହସ୍ତ ରଖି ପାଣି ଗ୍ରହଣ କର । ତୁମର ମଙ୍ଗଳ ହେଉ । ଏହି ମହାଭାଗା ପତିବ୍ରତା ସର୍ବଦା ଛାୟା ପରି ତୁମର ଅନୁଗାମିନୀ ହେବେ ।'

ଇୟଂ ସୀତା ମମ ସୁତା ସହଧର୍ମଚରୀ ତବ ।
ପ୍ରତୀଚ୍ଛ ଚୈନାଂ ଭଦ୍ରଂ ତେ ପାଣିଂ ଗୃହୀଷ୍ୱ ପାଣିନା
ପତିବ୍ରତା ମହାଭାଗା ଛାୟେବାନୁଗତା ସଦା ।

ବିବାହ ପରଠାରୁ ସୀତା ସ୍ୱାମୀଙ୍କ କାୟାର ଛାୟା ପରି ସୁଖଦୁଃଖରେ ତାଙ୍କର ସାଥୀ ହୋଇ ରହିଲେ । ସ୍ୱାମୀଙ୍କର ସୁଖ ତାଙ୍କର ସୁଖ ଓ ସ୍ୱାମୀଙ୍କର ଦୁଃଖ ତାଙ୍କର ଦୁଃଖ ଥିଲା । ସ୍ୱାମୀଙ୍କର ଅଭିଷେକ ପାଇଁ ସୀତା ଆନନ୍ଦ ମନରେ ଅପେକ୍ଷା କରି ରହିଛନ୍ତି । ଯେତେବେଳେ ସେ ଦେଖିଲେ ସ୍ୱାମୀ ବିନା ଶ୍ୱେତରାଜଛତ୍ରରେ ବିମର୍ଷ ମନରେ ତାଙ୍କୁ ଆସି କହୁଛନ୍ତି, ମୁଁ ଚଉଦ ବର୍ଷ ବନବାସ କରିବାପାଇଁ ସତ୍ୟ କରିଛି, ସେ ଏହାର କାରଣ ପଚାରିବା ପାଇଁ ଚେଷ୍ଟା ନ କରି କହିଛନ୍ତି, ଠିକ୍ ଅଛି । ମୁଁ ମଧ୍ୟ ତୁମ ସାଙ୍ଗରେ ବନବାସ କରିବି । ହିଂସ୍ରଜନ୍ତୁପୂର୍ଣ୍ଣ ବନକୁ ଯାଇ ମୁଁ ତୁମ ସହିତ ରହିବି । ପିତୃଗୃହରେ ରହିବା ପରି ମୁଁ ସେଠାରେ ବେଶ୍ ଆନନ୍ଦରେ ବାସ କରିବି । ତୁମ ସାଙ୍ଗରେ ରହିଲେ ମୁଁ ତ୍ରିଲୋକର ଐଶ୍ୱର୍ଯ୍ୟ କଥା ଚିନ୍ତା କରିବି ନାହିଁ । ମୁଁ ତୁମର ବୋଝ ହେବି ନାହିଁ । ବ୍ରହ୍ମଚାରିଣୀ ଭାବରେ ତୁମର ସେବା କରି ସୁଖରେ କାଳାତିପାତ କରିବି । ତୁମକୁ ଛାଡ଼ି ସ୍ୱର୍ଗସୁଖରେ ମୋର ରୁଚି ନାହିଁ ।' ରାମ ତାଙ୍କୁ ବାରଣ କରିବା ପାଇଁ ବହୁ ଚେଷ୍ଟା କରୁଛନ୍ତି । ବନବାସର ଦୁଃଖ ସଂପର୍କରେ ବର୍ଣ୍ଣନା କରି ଅଯୋଧ୍ୟାରେ ରହି ପିତାମାତାଙ୍କ ସେବା ଓ ବ୍ରତ ଉପବାସ କରି ସମୟ କଟାଇବାକୁ ତାଙ୍କୁ କହୁଛନ୍ତି । ସୀତା ରାମଙ୍କୁ ଯେଉଁ ଉତ୍ତର ଦେଉଛନ୍ତି, ତାହା ତାଙ୍କର ଦୃଢ଼ ବ୍ୟକ୍ତିତ୍ୱର ସୂଚନା ଦିଏ । ସେ କହୁଛନ୍ତି, 'ତୁମର ପତିବ୍ରତା ସ୍ତ୍ରୀକୁ ତୁମେ କାହିଁକି ତୁଚ୍ଛଜ୍ଞାନ କରୁଛ ? ଅନନ୍ୟପରାୟଣା ପତ୍ନୀକୁ ଛାଡ଼ି ଯିବାପାଇଁ କାହିଁକି ତୁମର ଏ ସଂକଳ୍ପ ? ଏକ ନଟର ପରି ତୁମେ ନିଜ ସ୍ତ୍ରୀକୁ ଅନ୍ୟମାନଙ୍କ ହାତରେ ଛାଡ଼ି ଚାଲିଯିବା ପାଇଁ ଚାହଁ ? ତୁମେ ଭାବୁଛ ତୁମ ବିଚ୍ଛେଦରେ ମୁଁ ମୁହୂର୍ତ୍ତେ ବଞ୍ଚି ରହିପାରିବି ? ମୋର ପିତା ଜନକ ଯଦି ଜାଣନ୍ତି ଯେ ତାଙ୍କର ଜାମାତା ଆକାରରେ ପୁରୁଷ, ମାତ୍ର କାର୍ଯ୍ୟରେ ସ୍ତ୍ରୀ, ତା ହେଲେ ସେ କଣ ମନେକରିବେ ?' ସୀତାଙ୍କର ଦୁଃଖ ଓ ଉପହାସପୂର୍ଣ୍ଣ ଏହି କଟୂକ୍ତି ରାମଙ୍କ ପାଇଁ ଯଥେଷ୍ଟ ହୋଇଥିଲା ଓ ସୀତାଙ୍କୁ ସାଂଗରେ ନ ନେଇ ଯିବେ ନାହିଁ ବୋଲି ସେ ଉତ୍ତର ଦେଲେ । ରାମ କହିଲେ, ବନକୁ ଯିବା ପୂର୍ବରୁ ଆମର ସମସ୍ତ ବହୁମୂଲ୍ୟ ବସ୍ତ୍ର, ଅଳଙ୍କାର, ଶଯ୍ୟା, ଯାନ ଆଦି ବ୍ରାହ୍ମଣ ଓ ଭୃତ୍ୟମାନଙ୍କୁ ଦାନ କରିଦେବା । ସୀତା ପ୍ରଫୁଲ୍ଲ ମନରେ ସବୁ ଦାନ କରିବାକୁ ଲାଗିଲେ ।

ସୀତା ରାମଙ୍କ ସାଙ୍ଗରେ ରହି ବନବାସକୁ ଏପରି ଗ୍ରହଣ କରିଗଲେ ଯେ ଜଣାଗଲା ଯେପରିକି ବନବାସ କରିବାକୁ ସେ ଜନ୍ମ ହୋଇଛନ୍ତି । ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ଛାଡ଼ି ସୁମନ୍ତ ଯେତେବେଳେ ଅଯୋଧ୍ୟାକୁ ଫେରିଆସିଲେ, ମାତା କୌଶଲ୍ୟା ଉଦ୍‌ବିଗ୍ନ ହୋଇ ସୀତା କିପରି ଅଛନ୍ତି ବୋଲି ପଚାରିଲେ । ସୀତା ବନକୁ ଯିବା ପରେ କୌଶଲ୍ୟା ଦଶରଥଙ୍କୁ କାତର ସ୍ୱରରେ କହିଥିଲେ, 'ସୀତା ତରୁଣୀ, ସୁନ୍ଦରୀ, ସୁକୁମାରୀ । ଦୁଃଖ ଭୋଗ କରିବାରେ ସେ ଅଭ୍ୟସ୍ତ ନୁହେଁ । ସେ କିପରି ଅରଣ୍ୟର ଶୀତ ଓ ଉତ୍ତାପ ସହ୍ୟ କରିବ ?' ସୁମନ୍ତ ବନବାସିନୀ ସୀତାଙ୍କ ସଂପର୍କରେ ଯେଉଁ ସମ୍ବାଦ ଦେଉଛନ୍ତି, ତାହା

ଆନନ୍ଦପ୍ରଦ । ସେ କହୁଛନ୍ତି, ସୀତା ରାମଙ୍କଠାରେ ସମ୍ପୂର୍ଣ୍ଣ ଭାବରେ ମନୋନିବେଶ କରି ନିଜ ଘର ପରି ବିଜନ ବନରେ ଆନନ୍ଦରେ ରହୁଛନ୍ତି । ସୀତା ରାମତଦ୍‌ଗତପ୍ରାଣା, ରାମଙ୍କ ବିରହରେ ଅଯୋଧ୍ୟା ତାଙ୍କ ପ୍ରତି ବନ ପରି ହୋଇଥାନ୍ତା । ବର୍ତ୍ତମାନ ବନ ତାଙ୍କ ପାଇଁ ଅଯୋଧ୍ୟାର ଉପବନ ତୁଲ୍ୟ । ସେଠାରେ ସେ ବାଳିକା ପରି ବିଚରଣ କରୁଛନ୍ତି । ପଥଶ୍ରମ ବା ସୂର୍ଯ୍ୟତାପ ସୀତାଙ୍କର ଚନ୍ଦ୍ରକିରଣ ତୁଲ୍ୟ କମନୀୟ ପ୍ରଭାକୁ ମଳିନ କରିପାରି ନାହିଁ । ବିଭିନ୍ନ ବୃକ୍ଷ ଲତା ପୁଷ୍ପ, ଗିରିଶୃଙ୍ଗ, ନଦୀ ନିର୍ଝର ଆଦି ପ୍ରାକୃତିକ ଦୃଶ୍ୟାବଳୀ ସୀତାଙ୍କୁ ବିମୋହିତ କରୁଛି । ଲକ୍ଷ୍ମଣଙ୍କୁ କହି ପୁଷ୍ପସ୍ତବକଶୋଭିତ ବୃକ୍ଷର ଛୋଟ ଛୋଟ ଶାଖାମାନ ଆଣି ସେ ପାଖରେ ରଖୁଛନ୍ତି । ବନ୍ୟ ପଶୁପକ୍ଷୀମାନେ ତାଙ୍କର କୌତୂହଳ ବୃଦ୍ଧି କରୁଛନ୍ତି । ଭାରତର ପବିତ୍ର ନଦୀମାନଙ୍କୁ ସେ ତୀର୍ଥଜ୍ଞାନରେ ନମସ୍କାର କରୁଛନ୍ତି । ଗଙ୍ଗା ପାରି ହେବାବେଳେ ନଦୀ ଗର୍ଭରେ ସେ କୃତାଞ୍ଜଳି ହୋଇ ପ୍ରାର୍ଥନା କରି କହୁଛନ୍ତି, ଦେବୀ ଗଙ୍ଗା, ରାମ ଚଉଦ ବର୍ଷ ବନବାସ ପରେ କୁଶଳରେ ଫେରିଆସିଲେ, ମୁଁ ତୁମର ଯଥାର୍ଥ ପୂଜା ଓ ଅର୍ଚ୍ଚନାର ବ୍ୟବସ୍ଥା କରିବି । ଯମୁନା ପାରି ହେବାବେଳେ ମଧ୍ୟ ସେ ସେହିପରି ମନାସୁଛନ୍ତି । 'ଯମୁନା, ମୋର ପତି ତାଙ୍କର ବ୍ରତ ନିର୍ବିଘ୍ନରେ ପାଳନ କରନ୍ତୁ । ଏକସହସ୍ର ଗାଭୀ ଓ ଶହେ ସୁରାଘଟ ଦ୍ୱାରା ତୁମର ପୂଜା କରିବି ।' ଗୋଦାବରୀ କୂଳରେ ବହୁ ଦିନ ରହିବା ଫଳରେ ତାହା ପ୍ରତି ତାଙ୍କର ଏକାନ୍ତ ଆତ୍ମୀୟତା ଜନ୍ମିଛି । ନାରୀମାନେ ଯେପରି ପତି ଓ ସନ୍ତାନମାନଙ୍କର କୁଶଳ ପାଇଁ ଦେବଦେବୀଙ୍କୁ ମନାସନ୍ତି, ରାମଙ୍କର ଗୃହିଣୀ ଜନକନନ୍ଦିନୀ ମଧ୍ୟ ସେଇଆ କରୁଛନ୍ତି । ଅରଣ୍ୟରେ ପ୍ରକୃତିର ସହିତ ସେ ଏପରି ଏକାକାର ହୋଇଯାଇଛନ୍ତି ଯେ ରାବଣ ତାଙ୍କୁ ନେଇଯାଉଥିବା ବେଳେ ସେ ବିଳାପ କରି କହୁଛନ୍ତି, 'ହେ ଜନସ୍ଥାନର ପୁଷ୍ପିତ ତରୁଗଣ, ହେ ଗୋଦାବରୀ ନଦୀ, ବୃକ୍ଷସ୍ଥ ବନଦେବତାଗଣ, ମୁଁ ତୁମମାନଙ୍କୁ ନମସ୍କାର କରୁଛି । ଏଠାରେ ଯେତେ ମୃଗପକ୍ଷୀ ଅଛନ୍ତି, ମୁଁ ସମସ୍ତଙ୍କର ଶରଣ ନେଉଛି– ଶୀଘ୍ର ରାମଙ୍କୁ ଜଣାଅ, ରାବଣ ତାଙ୍କର ପ୍ରାଣାଧିକା ସୀତାଙ୍କୁ ହରଣ କରି ନେଉଛି ।' ରାମ ମଧ୍ୟ ସୀତାଙ୍କୁ ଖୋଜିବାବେଳେ ଉଦ୍‌ଭ୍ରାନ୍ତ ପରି ସୀତାଙ୍କର ପ୍ରିୟ ବୃକ୍ଷ ଓ ପୁଷ୍ପମାନଙ୍କୁ ସମ୍ବୋଧନ କରୁଛନ୍ତି, କଦମ୍ବ, ମୋର ପ୍ରିୟା ତୁମକୁ କେତେ ଭଲ ପା'ନ୍ତି । ଅଶୋକ, କନିଅର, ତୁମେ ମୋର ପ୍ରିୟାଙ୍କର କେତେ ପ୍ରିୟ, ତୁମେ ଯଦି ସୀତାଙ୍କୁ ଦେଖିଥାଅ, କହିଦିଅ ।' ସେହି ମୁନିମାନଙ୍କର ପବିତ୍ର ଆଶ୍ରମ ଓ ଆନନ୍ଦମୟ ପ୍ରକୃତି ମଧ୍ୟରେ ରହିବାପାଇଁ ସୀତା ସବୁବେଳେ ପସନ୍ଦ କରୁଥିଲେ । ଅଯୋଧ୍ୟାର ରାଜପୁରୀରେ ତାଙ୍କର ଗର୍ଭବାସ ପରେ ରାମ ସେ କଣ ଇଚ୍ଛା କରନ୍ତି ବୋଲି ପଚାରିବାରୁ ସୀତା ଉତ୍ତର ଦେଇଥିଲେ, ସେ ଗଙ୍ଗାକୂଳରେ କୌଣସି ପବିତ୍ର ତପୋବନରେ କିଛି ସମୟ କଟାଇବାକୁ ଚାହାନ୍ତି ।

ଅଳଙ୍କାର ପ୍ରତି ତାଙ୍କର ସାଧାରଣ ନାରୀସୁଲଭ ପ୍ରୀତି । ବନକୁ ଯିବାବେଳେ ରାମ ଲକ୍ଷ୍ମଣ ବଲ୍କଳବସ୍ତ୍ର ପିନ୍ଧୁଛନ୍ତି । ସୀତା କିପରି ପିନ୍ଧିବାକୁ ହେବ, ପ୍ରଥମେ ସଂଶୟରେ ପଡୁଛନ୍ତି । ପରେ ରାମଙ୍କ ସହାୟତାରେ ପିନ୍ଧୁଛନ୍ତି । କିନ୍ତୁ ଦଶରଥ ବାରଣ କରି କୈକେୟୀଙ୍କୁ ଧିକ୍କାର କରୁଛନ୍ତି । ସେ କହୁଛନ୍ତି, ସୁକୁମାରୀ ସୀତା ଚୀର ଧାରଣ କରି

ବନକୁ ଯିବା କଥା କିଏ କହିଲା ? ରାମ ବଳ୍କଳ ଧାରଣ କରିପାରନ୍ତି । କିନ୍ତୁ ଚଉଦ ବର୍ଷ ପାଇଁ ଯେଉଁ ବସ୍ତ୍ର ଓ ଅଳଙ୍କାର ଦରକାର, ସୀତାଙ୍କ ପାଇଁ ତାହା ଯିବ । ତଦନୁଯାୟୀ ବଳ୍କଳବସ୍ତ୍ରଧାରୀ ରାମ ଲକ୍ଷ୍ମଣଙ୍କ ସହିତ, ବିଚିତ୍ର ଅଳଙ୍କାରରେ ଭୂଷିତା ସୀତା ବନଯାତ୍ରା କରୁଛନ୍ତି । ଅତ୍ରିଙ୍କ ପତ୍ନୀ ବୃଦ୍ଧା ଅନସୂୟା ସୀତାଙ୍କ ରୂପଗୁଣରେ ଏପରି ମୁଗ୍ଧ ହୋଇ ଯାଉଛନ୍ତି ଯେ ତାଙ୍କ ପାଖରେ ଥିବା ସମସ୍ତ ବହୁମୂଲ୍ୟ ଅଳଙ୍କାର ଓ ପ୍ରସାଧନ ସବୁ ସେ ସୀତାଙ୍କୁ ଉପହାର ଦେଉଛନ୍ତି ଓ ତାଙ୍କ ଆଗରେ ପିନ୍ଧିବା ପାଇଁ ଆଗ୍ରହ ପ୍ରକାଶ କରୁଛନ୍ତି । ଅରଣ୍ୟବାସ ସମୟରେ ସୀତା ଉତ୍ତମବସ୍ତ୍ର ଓ ଅଳଙ୍କାର ପରିଧାନ କରି ପତିଙ୍କର ଆନନ୍ଦ ବର୍ଦ୍ଧନ କରୁଥିଲେ । କେବଳ ରାବଣ ଦ୍ୱାରା ଅପହୃତ ହୋଇ ଲଙ୍କାକୁ ଯିବାବେଳେ ସେ ତାଙ୍କର ଅଧିକାଂଶ ଅଳଙ୍କାର ଦେହରୁ କାଢ଼ି ଋଷ୍ୟମୂକରେ ବସିଥିବା ସୁଗ୍ରୀବ ପ୍ରମୁଖ ବାନରମାନଙ୍କ ଆଡ଼କୁ ଫିଙ୍ଗି ଦେଇଥିଲେ ଏବଂ ଲଙ୍କାରେ ଏକବସ୍ତ୍ରା ତପସ୍ୱିନୀ ହୋଇ ରହିଥିଲେ ।

ସୀତା ଧୂଳିଧୂସରିତ ଧରଣୀରୁ ଜନ୍ମ ହୋଇ ଭାରତୀୟ ଆକାଶରେ ଚନ୍ଦ୍ରମା ପରି ଦୀପ୍ତିମୟୀ ହୋଇ ରହିଛନ୍ତି । ବାଲ୍ମୀକି ସୀତାଙ୍କୁ ଦେବୀ ନୁହେଁ, ମାନବୀ ରୂପରେ ଚିତ୍ରଣ କରିଛନ୍ତି । ଅଳି କରି ପତିଙ୍କ ସହିତ ଯିବା, ଶାଶୂ ଶଶୁର ଓ ଋଷିପତ୍ନୀଙ୍କ କହିବା ଅନୁସାରେ ଉତ୍ତମ ବସ୍ତ୍ର ଓ ଅଳଙ୍କାର ଆଦି ପରିଧାନ କରି ନିଜର ପତିଙ୍କୁ ଖୁସି କରିବା ପାଇଁ ଚେଷ୍ଟା କରିବା, ସ୍ୱାମୀଙ୍କର ଶୁଭ ମନାସିବା, ଲୀଳାପ୍ରିୟା ବାଳିକା ପରି ବନପ୍ରଦେଶରେ ଯିବାବେଳେ ପତ୍ର ପୁଷ୍ପ ଆଦି ସଂଗ୍ରହ କରିବା ଦ୍ୱାରା ଏକ ହାସ୍ୟମୟୀ, ଲାସ୍ୟମୟୀ ସାଧାରଣ ନବବଧୂ ପରି ସେ ନାରୀ ଜାତିର ପ୍ରିୟ ହୋଇ ଉଠିଛନ୍ତି । ଦୁଃଖ ଓ ଶୋକକୁ ସେ ଯେପରି ଭାବରେ ସହୁଛନ୍ତି, ତାହା ମଧ୍ୟ ଭାରତୀୟ ନାରୀର ଯୁଗେ ଯୁଗେ ଆଦର୍ଶ ହୋଇ ରହିଛି । କିନ୍ତୁ ଏହି ସାଧାରଣ ଗୁଣ ସହିତ ତାଙ୍କର ଅସାଧାରଣ ବ୍ୟକ୍ତିତ୍ୱ ରାମାୟଣର ଛତ୍ରେ ଛତ୍ରେ ପ୍ରସ୍ଫୁଟିତ ହୋଇଛି । ରାମଙ୍କ ସହିତ ସୀତା ବନବାସ ପାଇଁ ପ୍ରସ୍ତୁତ ହେବାବେଳେ ବଶିଷ୍ଠ କୈକେୟୀଙ୍କୁ ଭର୍ତ୍ସନା କରି କହୁଛନ୍ତି, 'ସୀତା ବନକୁ ଯିବା ଉଚିତ ନୁହେଁ । ଏ ରାମଙ୍କ ଆସନରେ ବସି ରାଜ୍ୟ ଶାସନ କରିବା ପାଇଁ ଯୋଗ୍ୟ । ଏ ରାମଙ୍କର ଆତ୍ମାସ୍ୱରୂପ । ଏ ପୃଥିବୀକୁ ପାଳନ କରିବେ ।' 'ଆତ୍ମେୟମିତି ରାମସ୍ୟ ପାଳୟିଷ୍ୟତି ମେଦିନୀମ୍' । ସୀତା ବିଦୁଷୀ ଓ ଧର୍ମଜ୍ଞ । ରାମ ଦଣ୍ଡକାରଣ୍ୟରେ ଋଷିମାନଙ୍କୁ ଆଶ୍ୱାସନା ଦେଇ କହୁଛନ୍ତି ଯେ ସେ ରାକ୍ଷସମାନଙ୍କୁ ନିପାତ କରିବେ । ଏହାର ପରିଣାମ କଣ ହେବ, ତାହା ପୂର୍ବରୁ ସୀତା ଅନୁମାନ କରିପାରୁଛନ୍ତି । ସେ ରାମଙ୍କୁ କହୁଛନ୍ତି, 'ମିଥ୍ୟା କହିବା, ପରଦାର ଗମନ କରିବା ଓ ଅକାରଣ କ୍ରୋଧ ଓ ହିଂସା କରିବା, ଏହି ତିନୋଟି ଦୋଷରୁ ଲୋକ ଦୂରରେ ରହିବା ଦରକାର । ତୁମର ଦୁଇଟି ଦୋଷ ପୂର୍ବରୁ ନ ଥିଲା କି ଭବିଷ୍ୟତରେ ହେବ ନାହିଁ । କିନ୍ତୁ ତୃତୀୟ ଦୋଷଟି ବର୍ତ୍ତମାନ ତୁମ ସମ୍ମୁଖରେ ଉପସ୍ଥିତ ।' କ୍ଷାତ୍ରଧର୍ମ ଓ ବନବାସରେ ତପସ୍ୱୀ ଜୀବନ ଯାପନ କରିବା ମଧ୍ୟରେ ପାର୍ଥକ୍ୟ ଅଛି । ତପୋବନରେ ରହିବା ବେଳେ ତପୋବନର ଧର୍ମ ଆଚରଣ କରିବା ଆବଶ୍ୟକ । ଅଯୋଧ୍ୟାକୁ ଫେରିଗଲେ କ୍ଷାତ୍ରଧର୍ମର ଚର୍ଚ୍ଚା କରିବ । ରାକ୍ଷସମାନେ ତ ତୁମ ସହିତ ଶତ୍ରୁତା

କରୁ ନାହାନ୍ତି, ତୁମେ କାହିଁକି ତାଙ୍କୁ ନିପାତ କରିବା ପାଇଁ ଅସ୍ତ୍ର ଧାରଣ କରିବ ?' ରାବଣ ତାଙ୍କୁ ହରଣ କରି ନେବାବେଳେ ସେ ଅସହାୟା ଅନୁଭବ କରୁଛନ୍ତି । ମାତ୍ର ନିଜର ଧୈର୍ଯ୍ୟ ବା ସାହସ ହରାଉ ନାହାନ୍ତି । ସେ ରାବଣଙ୍କୁ ଭର୍ତ୍ସନା କରି କହୁଛନ୍ତି – ନୀଚ, ଭୀରୁ, ନିଜକୁ ମହାବୀର ବୋଲାଇ ମୋତେ ଏକାକୀ ଦେଖି ଚୋର ପରି ନେଇ ପଳାଉଛୁ । ତୋତେ ଲଜ୍ଜା ନାହିଁ । ଯଦି ଭଲ ଗତି ଅଛି, ମୋତେ ମୁକ୍ତ କରିଦେ, ନଚେତ୍ ରାମଙ୍କ ହାତରୁ ତୋର ନିସ୍ତାର ନାହିଁ ।' ରାବଣ ମଣିରତ୍ନଖଚିତ ତାର କାଞ୍ଚନମୟ ରାଜପ୍ରାସାଦକୁ ଦେଖାଇ ତା'ର ପାଟରାଣୀ ହେବା ପାଇଁ ସୀତାଙ୍କୁ ପ୍ରଲୋଭିତ କରିବାକୁ ଚେଷ୍ଟା କରୁଛି । ନିର୍ଭୟରେ ସୀତା ଉତ୍ତର ଦେଉଛନ୍ତି, 'ମୁଁ ଧର୍ମାତ୍ମା ରାମଙ୍କର ପତିବ୍ରତା ଧର୍ମପତ୍ନୀ, ତୁ ପାପୀ ମୋତେ ସ୍ପର୍ଶ କରିପାରିବୁ ନାହିଁ । ତୁ ଦେବାସୁରଙ୍କର ଅବଧ୍ୟ ହୋଇପାରୁ । କିନ୍ତୁ ରାମଙ୍କ ଶରରେ ନିଶ୍ଚୟ ନିହତ ହେବୁ ।' ରାବଣ ସୀତାଙ୍କୁ ଅଶୋକବନରେ ରଖାଇ ଭୟଙ୍କରୀ ରାକ୍ଷସମାନଙ୍କୁ ସେଠାରେ ଜଗାଇଛି । ସୀତା ତା'ର ବଶୀଭୂତ ନ ହେଲେ ତାଙ୍କୁ ବଧ କରିବ ବୋଲି ଧମକାଉଛି । କିନ୍ତୁ ଘୋର ଦୁଃଖ ଓ ଯନ୍ତ୍ରଣା ମଧ୍ୟରେ ଥିଲେ ମଧ୍ୟ ସୀତା ତାକୁ ଧିକ୍କାର କରି ସଗର୍ବରେ କହୁଛନ୍ତି, 'ତୁ ଦୁର୍ବୁଦ୍ଧି, ସଦାଚାରହୀନ, ତା ନ ହେଲେ ପରନାରୀ ପ୍ରତି ଆସକ୍ତ ହୁଅନ୍ତୁ ନାହିଁ । ମୁଁ ରାମଙ୍କର ଧର୍ମପତ୍ନୀ । ଅଚିରେ ରାମଙ୍କର ଧନୁର ନିର୍ଘୋଷ ତୋତେ ଶୁଣାଯିବ ଏବଂ ଏହି ସ୍ୱର୍ଣ୍ଣପୁରୀ ଲଙ୍କା ଛାରଖାର ହୋଇଯିବ ।' ଲଙ୍କାର ଯୁଦ୍ଧ ସମୟରେ ରାବଣ ପୁଣି ଥରେ ଆସି ରାମଙ୍କର କଟାମୁଣ୍ଡ ଦେଖାଉଛି । କିନ୍ତୁ ସୀତାଙ୍କୁ ବିଚଳିତ କରିପାରି ନାହିଁ । ରାବଣ ତାଙ୍କୁ ଏକ ମାସ ସମୟ ଦେଇଥିବାରୁ ସୀତା ମନ ମଧ୍ୟରେ ଆଶଙ୍କା କରିଛନ୍ତି ଯେ ରାବଣ କେତେବେଳେ ହେଲେ ତାଙ୍କୁ ହତ୍ୟା କରିପାରେ । କିନ୍ତୁ ସେଥିପାଇଁ ତାଙ୍କର ଭୟ ନାହିଁ । 'ତୁ ମୋତେ ପାଇବୁ ନାହିଁ, ମୋର ସଂଜ୍ଞାହୀନ ମୃତ ଦେହକୁ ଅବଶ୍ୟ ପାଇପାରୁ ।' ତାଙ୍କର କେବଳ ଆଶଙ୍କା, ସେ ତାଙ୍କର ପ୍ରିୟ ପତିଙ୍କୁ ଦେଖିପାରିବେ ନାହିଁ । ଲଙ୍କାରୁ ପଳାଇବାକୁ ସେ ଯେ କୌଣସି ଉପାୟ ଅବଲମ୍ବନ କରିବାକୁ ଚାହାନ୍ତି ନାହିଁ । ହନୁମାନ ଯେତେବେଳେ ତାଙ୍କୁ ପିଠିରେ ବସାଇ ସମୁଦ୍ର ପାର କରି ନେଇଯିବାକୁ ପ୍ରସ୍ତାବ ଦେଉଛନ୍ତି, ସେ କହୁଛନ୍ତି, ପ୍ରଥମତଃ ରାମଙ୍କ ଛଡ଼ା ମୁଁ ଅନ୍ୟ କୌଣସି ପୁରୁଷକୁ ସ୍ପର୍ଶ କରିବାକୁ ଚାହେଁ ନାହିଁ । ଦ୍ୱିତୀୟତଃ ରାମ ନିଜେ ବାହୁବଳରେ ଲଙ୍କା ଜୟ କରି ରାବଣକୁ ଉପଯୁକ୍ତ ଦଣ୍ଡ ଦେବେ ଓ ମୋତେ ଉଦ୍ଧାର କରିବେ ବୋଲି ମୁଁ ଅପେକ୍ଷା କରିଛି ।

ଲଙ୍କାର ଯୁଦ୍ଧ ଶେଷହେବା ପରେ ହନୁମାନ ସୀତାଙ୍କୁ କହୁଛନ୍ତି, ଯେଉଁ ରାକ୍ଷସୀମାନେ ଆପଣଙ୍କୁ ଭୟ ଦେଖାଉଥିଲେ, ହତ୍ୟା କରିବେ ବୋଲି ଧମକ ଦେଉଥିଲେ, ଆପଣ ଅନୁମତି ଦେଲେ ମୁଁ ଶୀଘ୍ର ସେମାନଙ୍କୁ ନିହତ କରିବି । ସୀତା କହିଲେ, ନା, ସେମାନେ ବଧ୍ୟ ନୁହନ୍ତି । ସେମାନେ ରାବଣର ଅଧୀନ, ନିଜର ଅଧୀନ ନ ଥିଲେ । ସେମାନେ ଭୃତ୍ୟ, ପ୍ରଭୁର ଆଦେଶ ପାଳନ କରୁଥିଲେ, ସେମାନଙ୍କୁ ଦୋଷ ଦେବା ଠିକ୍ ହେବ ନାହିଁ । ସୀତାଙ୍କର ସବୁଠାରୁ ଦୁଃଖ ଓ ନୈରାଶ୍ୟର ସମୟ ହେଲା, ଯେତେବେଳେ ଯୁଦ୍ଧ ଶେଷରେ ବିଭୀଷଣ ତାଙ୍କୁ ରାମଙ୍କ ପାଖକୁ ଆଣିଲେ, ସେତେବେଳେ ରାମଙ୍କର ତାଙ୍କ ପ୍ରତି

ଅପ୍ରତ୍ୟାଶିତ ନିର୍ଦ୍ଦୟ ଓ କଠୋର ବ୍ୟବହାର । ସମସ୍ତ ବାନର ଓ ରାକ୍ଷସମାନଙ୍କ ସମକ୍ଷରେ ରାମ ସୀତାଙ୍କୁ ଯାହା କହି ଅପମାନିତ କଲେ, ତାହା ଯେକୌଣସି ନାରୀ ପକ୍ଷରେ ଅଶ୍ରାବ୍ୟ ଓ ଅସହ୍ୟ । ରାମ କହିଲେ, 'ମୁଁ ଶତ୍ରୁ ଜୟ କରି ନିଜର ପୌରୁଷ ଓ ବନ୍ଧୁମାନଙ୍କ ବାହୁବଳରେ ତୁମକୁ ଉଦ୍ଧାର କରିଛି । ତୁମ ପ୍ରତି କୌଣସି ଅନୁରକ୍ତି ଯୋଗୁଁ ନୁହଁ । ନିଜର ଚରିତ୍ର ରକ୍ଷା ଓ ଆମର ବିଖ୍ୟାତ ବଂଶର ଗ୍ଲାନି ଦୂର କରିବା ପାଇଁ ମୁଁ ଏହା କରିଛି । ତୁମର ଚରିତ୍ରରେ ମୋର ସନ୍ଦେହ ଜନ୍ମିଛି । ନେତ୍ରରୋଗୀ ପକ୍ଷରେ ଦୀପଶିଖା ଯେପରି କଷ୍ଟକର, ତୁମକୁ ଦେଖିବା ମୋ' ପାଇଁ ମଧ୍ୟ ସେହିପରି କଷ୍ଟକର । ତୁମେ ରାବଣର ଅଙ୍କରେ ନିପୀଡ଼ିତ ହୋଇଛ । ତୁମକୁ ସେ ପାପପୂର୍ଣ୍ଣ ଦୃଷ୍ଟିରେ ଦେଖିଛି । ଏପରି ଅବସ୍ଥାରେ ମୁଁ ତୁମକୁ ଗ୍ରହଣ କରିପାରିବି ନାହିଁ । ତୁମର ଯୁଆଡ଼େ ଇଚ୍ଛା, ସିଆଡ଼େ ଯାଅ । ମୁଁ ମନ ସ୍ଥିର କରି କହୁଛି 'ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ, ସୁଗ୍ରୀବ, ରାକ୍ଷସ ବିଭୀଷଣ, ତୁମେ ଯାହାକୁ ଇଚ୍ଛାକର, ତା' ପାଖକୁ ଯାଅ ।' ସମସ୍ତଙ୍କ ସମକ୍ଷରେ ଏପରି ଅପମାନିତ ହୋଇ ସୀତା ଯେପରି ଘୋର ଲଜ୍ଜାରେ ନିଜର ଦେହ ଭିତରେ ପଶିଗଲେ ।

**ଶ୍ରୁତା ଭର୍ତ୍ତୃବଚୋରୁକ୍ଷଂ ଲଜ୍ଜୟାବ୍ରୀଡ଼ିତାଭବତ୍**
**ପ୍ରବିଶ୍ୟନ୍ତୀବ ଗାତ୍ରାଣି ସ୍ୱାନୀବ ଜନକାତ୍ମଜା ।**

ସୀତା ମ୍ରିୟମାଣ ହୋଇଗଲେ । ତାଙ୍କ ଆଖିରୁ ଲୋତକର ଧାର ବହିବାକୁ ଲାଗିଲା । କିନ୍ତୁ ଲୁହକୁ ପୋଛିଦେଇ ସେ ପ୍ରକୃତିସ୍ଥ ହୋଇ ଯେପରି ଉତ୍ତର ଦେବାର କଥା ତାହା ରାମଙ୍କୁ ଶୁଣାଇଦେଲେ । ସେ କହିଲେ, ତୁମେ କ'ଣ ମୋର ଚରିତ୍ର ବିଷୟରେ ଜାଣ ନାହିଁ ? ଗାଉଁଲି ବ୍ୟକ୍ତି ତା'ର ସ୍ତ୍ରୀକୁ ଗାଳି ଦେବା ପରି ତୁମେ ମୋତେ ଭର୍ତ୍ସନା କରୁଛ । ରାବଣ ମୋତେ ବଳପୂର୍ବକ ଅପହରଣ କରିନେଲା, ମୁଁ କ'ଣ କରିପାରିଥା'ନ୍ତି ? କିନ୍ତୁ ମୋର ହୃଦୟ, ଯାହାକି ମୋର ଅଧୀନ, ତାହା ତୁମର ଥିଲା କି ନାହିଁ ? ତୁମେ ଯେ ମୋତେ ବୁଝିପାରିଲ ନାହିଁ, ତାହା ଅପେକ୍ଷା ମୃତ୍ୟୁ ବରଣୀୟ । ରାଜା ଜନକଙ୍କ ନାମରେ ମୋର ପରିଚୟ । ବସୁଧା ତଳରୁ ମୁଁ ଉତ୍ପନ୍ନ ହୋଇଛି, ଏସବୁ ତୁମକୁ ଗ୍ରାହ୍ୟ ହେଲା ନାହିଁ । ବାଲ୍ୟକାଳରୁ ତୁମର ପାଣିଗ୍ରହଣ କରି ତୁମ ପ୍ରତି ମୋର ଯେଉଁ ଏକାନ୍ତ ନିଷ୍ଠା ଓ ଭକ୍ତି ରହିଛି ସବୁ ପଛକୁ ପକାଇଦେଲ । ମୋତେ ଦେଖିବା ପାଇଁ ଯେତେବେଳେ ହନୁମାନଙ୍କୁ ପଠାଇଲ ସେତେବେଳେ ମୋତେ ପରିତ୍ୟାଗ କରିବା କଥା ଜଣାଇଦେଲ ନାହିଁ ? ତୁମ ଦ୍ୱାରା ପରିତ୍ୟକ୍ତ ହେବାର ଜାଣି ମୁଁ ହନୁମାନଙ୍କ ସମକ୍ଷରେ ପ୍ରାଣତ୍ୟାଗ କରିଥା'ନ୍ତି । ତା' ହେଲେ ତୁମକୁ ଏତେ ପରିଶ୍ରମ କରିବାକୁ ପଡ଼ିନଥାନ୍ତା କି ତୁମେ ନିଜେ ବା ତୁମର ମିତ୍ରମାନେ ପ୍ରାଣସଂଶୟରେ ପଡ଼ି ନ ଥାନ୍ତେ । ତା'ପରେ ସୀତା ଲକ୍ଷ୍ମଣଙ୍କୁ ଡାକି କହିଲେ, ଲକ୍ଷ୍ମଣ, ତୁମେ ଶୀଘ୍ର ଏକ ଚିତା ପ୍ରସ୍ତୁତ କର । ସ୍ୱାମୀଙ୍କ ଦ୍ୱାରା ପରିତ୍ୟକ୍ତ ଓ ମିଥ୍ୟା ଅପବାଦରେ ପୀଡ଼ିତ ହୋଇ ମୁଁ ଅଗ୍ନିରେ ଝାସ ଦେବାପାଇଁ ଚାହେଁ । ସୀତା ରାମଙ୍କୁ କାନ୍ଦି କାନ୍ଦି ତାଙ୍କୁ ଗ୍ରହଣ କରିବାକୁ ଅଳି କରୁ ନାହାନ୍ତି କିମ୍ବା କେବଳ ଠିଆ ହୋଇ ରୋଦନ କରୁ ନାହାନ୍ତି । ଜଣେ ସୀତା ମନସ୍ୱିନୀ ନାରୀ ଯେପରି ଉତ୍ତର ଦେବାର କଥା ଦେଇଛନ୍ତି ଏବଂ ଜ୍ୱଳନ୍ତ ଅଗ୍ନି ତାଙ୍କର ମହନୀୟ ଚରିତ୍ରର ପ୍ରମାଣ ଦେଇଛି ।

ଏତିକି ଯଥେଷ୍ଟ ହେଲା ନାହିଁ । ଅଯୋଧ୍ୟାରେ କିଛିକାଳ ସୀତାଙ୍କ ସହିତ ସୁଖରେ ରହିବା ପରେ ରାମ ପୁଣି ତାଙ୍କର ଅନ୍ତଃସତ୍ତ୍ୱା ପତ୍ନୀଙ୍କୁ ପରିତ୍ୟାଗ କରୁଛନ୍ତି । ସୀତା ତପସ୍ୱିନୀ ଭାବରେ ବାଲ୍ମୀକିଙ୍କ ଆଶ୍ରମରେ ରହି ନିଜର ଯମଜ ପୁତ୍ର ଲବକୁଶଙ୍କୁ ଲାଳିତ ପାଳିତ କରୁଛନ୍ତି । ଅଶ୍ୱମେଧ ଯଜ୍ଞର ସଭାରେ ରାମ ପୁଣି ଯେତେବେଳେ ସୀତାଙ୍କୁ ଆହୁରି ଥରେ ଚରିତ୍ରର ପରୀକ୍ଷା ଦେବାପାଇଁ ବାଲ୍ମୀକିଙ୍କ ଦ୍ୱାରା ଡକାଇ ଆଣୁଛନ୍ତି, ସୀତା ମନେକରୁଛନ୍ତି ଯଥେଷ୍ଟ ହୋଇଗଲା । ଆଉ ପରୀକ୍ଷା ଅନାବଶ୍ୟକ । ସେ ବସୁମାତାଙ୍କୁ ପ୍ରାର୍ଥନା କରି କହୁଛନ୍ତି, ଦେବୀ, ମୁଁ ଯଦି କେବେହେଲେ ରାମଙ୍କ ଛଡ଼ା ଆଉ କାହାରିକୁ ମନରେ ଚିନ୍ତା କରି ନାହିଁ, ତା'ହେଲେ ତୁମେ ବିଦୀର୍ଣ୍ଣ ହୋଇ ମୋତେ ଗ୍ରହଣ କର । ମନରେ କର୍ମରେ ବାକ୍ୟରେ ମୁଁ ଯଦି ରାମଙ୍କୁ ଅର୍ଚ୍ଚନା କରିଆସିଛି, ତା'ହେଲେ ଦେବୀ, ତୁମେ ବିଦୀର୍ଣ୍ଣ ହୋଇ ଶୀଘ୍ର ମୋତେ ଆଶ୍ରୟ ଦିଅ ।

**ଯଥାହଂ ରାଘବାଦନ୍ୟଂ ମନସାପି ନ ଚିନ୍ତୟେ ।**
**ତଥା ମେ ମାଧବୀ ଦେବୀ ବିବରଂ ଦାତୁମର୍ହତି ॥**
**ମନସା କର୍ମଣା ବାଚା ଯଥାରାମଂ ସମର୍ଚ୍ଚୟେ ।**
**ତଥା ମେ ମାଧବୀ ଦେବୀ ବିବରଂ ଦାତୁମର୍ହତି ॥**

ଧରଣୀ ବିଦୀର୍ଣ୍ଣ ହେଲା ଏବଂ ସୀତା ରସାତଳରେ ପ୍ରବେଶ କଲେ । ବାରମ୍ବାର ଅପମାନିତ ହୋଇ ପୁଣି ଅଯୋଧ୍ୟାର ରାଜରାଣୀ ହୋଇ ରହିବା ଅପେକ୍ଷା ଏହି ପୃଥିବୀର କନ୍ୟା ନିଜର ମହନୀୟ ଚରିତ୍ରରେ ଚିରକାଳ ପୃଥିବୀକୁ ଆଲୋକିତ କରି ପୁଣି ବସୁଧାଗର୍ଭରେ ଲୀନ ହୋଇଗଲେ ।

ରାମ ରାମାୟଣର ନାୟକ, ରାମାୟଣର ଆତ୍ମା । ମହାଭାରତ ଭରତ ବଂଶୀୟମାନଙ୍କର କାହାଣୀ । ରାମାୟଣ ଜଣଙ୍କର । ରାମଙ୍କର ଜୀବନୀ ଓ କୀର୍ତ୍ତିର ଅମର କାହାଣୀର ନାମ ହେଉଛି ରାମାୟଣ । ଥାଇଲାଣ୍ଡରେ ରାମାୟଣର ଅନ୍ୟ ନାମ ହେଉଛି ରାମ କୀର୍ତ୍ତି । ରାମାୟଣର ପ୍ରଥମ ଅଧ୍ୟାୟରେ ପ୍ରଥମେ ରାମଙ୍କ ସଂପର୍କରେ ଆରମ୍ଭ ହେଉଛି, ଯଦି ଯୁଦ୍ଧକାଣ୍ଡକୁ ଶେଷ ବୋଲି ଧରାଯାଏ, ତା'ହେଲେ ରାମଙ୍କ ଅଭିଷେକରେ ଶେଷ ହେଉଛି, ଉତ୍ତରକାଣ୍ଡକୁ ଶେଷ ବୋଲି ଧରିଲେ ରାମଙ୍କ ଦେହ ତ୍ୟାଗରେ ହେଉଛି ରାମାୟଣ ଶେଷ ।

ଏ ରାମ କିଏ ? ଦେବତା, ଈଶ୍ୱର ନା ମନୁଷ୍ୟ ? ବାଲ୍ମୀକିଙ୍କର ରାମ ମନୁଷ୍ୟ । ଅବଶ୍ୟ ମଝିରେ ମଝିରେ ବାଲ୍ମୀକି ତାଙ୍କୁ ବିଷ୍ଣୁଙ୍କର ଅବତାର ବୋଲି କହୁଛନ୍ତି । କିନ୍ତୁ ରାମାୟଣର ପ୍ରଥମ କେତୋଟି ଶ୍ଳୋକରେ ସେ ନାରଦଙ୍କୁ ଯେଉଁ ପ୍ରଶ୍ନ ପଚାରୁଛନ୍ତି, ତାହା ହେଉଛି ମନୁଷ୍ୟମାନଙ୍କ ମଧ୍ୟରେ ଶ୍ରେଷ୍ଠ ପୁରୁଷ କିଏ ? 'ପୃଥିବୀରେ କିଏ ଅଛି ଯେ କି ଗୁଣବାନ୍, ବୀର୍ଯ୍ୟବାନ୍, ଧର୍ମଜ୍ଞ, କୃତଜ୍ଞ, ସତ୍ୟବାଦୀ, ଦୃଢ଼ବ୍ରତ, ଯେ କି ସଚ୍ଚରିତ୍ର, ସମସ୍ତ ପ୍ରାଣୀଙ୍କର ମଙ୍ଗଳକାରୀ, ବିଦ୍ୱାନ୍, କର୍ତ୍ତବ୍ୟ ପାଳନରେ ସମର୍ଥ ଓ ଅଦ୍ୱିତୀୟ, ପ୍ରିୟଦର୍ଶନ, ଯେ କି ସଂଯତ, ଜିତକ୍ରୋଧ, କାନ୍ତିମାନ୍ ଓ ଅସୂୟାଶୂନ୍ୟ ? ଯାହାଙ୍କୁ ଯୁଦ୍ଧରେ କ୍ରୁଦ୍ଧ

ହେବାର ଦେଖିଲେ ଦେବତାମାନେ ମଧ୍ୟ ଭୀତ ହୁଅନ୍ତି ?' ନାରଦ କହିଲେ, ଜଣେ ମନୁଷ୍ୟ ପାଖରେ ଏ ସମସ୍ତ ଗୁଣ ମିଳିବା ଦୁର୍ଲଭ । ତଥାପି ଇକ୍ଷ୍ୱାକୁ ବଂଶରେ ଜାତ ଜଣେ ରାଜା ଅଛନ୍ତି । ତାଙ୍କର ନାମ ରାମ । ସେ ଏହି ସମସ୍ତ ଗୁଣର ଅଧିକାରୀ ।

ରାମ ମଧ୍ୟ ମନୁଷ୍ୟ ପରି ଏ ସଂସାରରେ ତାଙ୍କର କର୍ତ୍ତବ୍ୟ ଶେଷ କରି ଇହଲୀଳା ସାଙ୍ଗ କରିଛନ୍ତି । ସେ ନିଜେ ମଧ୍ୟ ଈଶ୍ୱରଙ୍କର ଅବତାର ବୋଲି ଜାଣନ୍ତି ନାହିଁ । ଲଙ୍କାଯୁଦ୍ଧ ଶେଷରେ ସୀତାଙ୍କ ଅଗ୍ନି ପରୀକ୍ଷା ପରେ ବ୍ରହ୍ମା ଯେତେବେଳେ ତାଙ୍କୁ ସ୍ୱୟଂ ନାରାୟଣ ବୋଲି ଘୋଷଣା କରୁଛନ୍ତି, ରାମ କହୁଛନ୍ତି, ମୁଁ ତ ଜାଣେ ମୁଁ ଜଣେ ମନୁଷ୍ୟ, ଦଶରଥଙ୍କର ପୁତ୍ର ରାମ । 'ଆତ୍ମାନଂ ମାନୁଷଂ ମନ୍ୟେ ରାମଂ ଦଶରଥାତ୍ମଜମ୍' । ସାଧାରଣ ମନୁଷ୍ୟ ପରି ସେ ସୁଖରେ ଆନନ୍ଦିତ ଓ ଦୁଃଖରେ ବିମନା ହେଉଛନ୍ତି । ଯେତେବେଳେ ରାଜା ହେବା କଥା ସେ ଜାଣୁଛନ୍ତି, ସେ ଖୁସିରେ ସୀତାଙ୍କୁ ତାଙ୍କର ଆସନ୍ନ ଅଭିଷେକର ସମ୍ବାଦ ଦେଉଛନ୍ତି । ଯେତେବେଳେ ରାଜା ହେବାର ହେଉ ନାହିଁ ଓ ତା' ପରିବର୍ତ୍ତରେ ବନବାସକୁ ଯିବାକୁ ପଡୁଛି, ସେ ଦୁଃଖ ମନରେ କୌଶଲ୍ୟା ଓ ସୀତାଙ୍କୁ ଏହି ସମ୍ବାଦ ଦେଉଛନ୍ତି । ପର୍ଣ୍ଣକୁଟୀରରେ ରାବଣ ଦ୍ୱାରା ଅପହୃତା ସୀତାଙ୍କୁ ନ ଦେଖି ସେ ଶୋକରେ କାତର ହୋଇ ତାଙ୍କୁ ଖୋଜି ବୁଲୁଛନ୍ତି । ଉଦ୍‌ଭ୍ରାନ୍ତ ପରି ପୁଷ୍ପିତ ବୃକ୍ଷ, ବନ, ଗିରି, ନଦୀ ଓ ମୃଗପକ୍ଷୀମାନଙ୍କୁ ସୀତାଙ୍କୁ ଦେଖିଥିବା କଥା ପଚାରୁଛନ୍ତି । ସୀତାଙ୍କ ବିରହରେ ରାମଙ୍କର ଅବସ୍ଥା ବାରମ୍ବାର ଅରଣ୍ୟ, କିଷ୍କିନ୍ଧ୍ୟା, ସୁନ୍ଦର ଓ ଯୁଦ୍ଧ କାଣ୍ଡମାନଙ୍କରେ ବର୍ଣ୍ଣନା କରାଯାଇଛି । ପ୍ରସ୍ରବଣ ଓ ମାଲ୍ୟବନ୍ତ ଗିରିରେ ସୀତାଙ୍କ ବିରହରେ ରାମ ବର୍ଷା ଓ ଶରତ ଋତୁ କଟାଇଛନ୍ତି । ତାହା ଅତ୍ୟନ୍ତ ମର୍ମସ୍ପର୍ଶୀ ଭାବରେ ବାଲ୍ମୀକି ବର୍ଣ୍ଣନା କରିଛନ୍ତି । ହନୁମାନ ଫେରିଆସି ଯେତେବେଳେ ସୀତାଙ୍କର ମଥାମଣି ରାମଙ୍କୁ ଦେଇ ସୀତାଙ୍କର ସମ୍ବାଦ ଜଣାଉଛନ୍ତି, ସେତେବେଳେ ସେ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇଉଠୁଛନ୍ତି ଏବଂ ବାନରବୀରଙ୍କୁ କୁଣ୍ଢାଇପକାଇ ତାଙ୍କୁ କୌଣସି ପୁରସ୍କାର ଦେଇପାରୁ ନାହାନ୍ତି ବୋଲି ଦୁଃଖ ପ୍ରକାଶ କରୁଛନ୍ତି । ପରମୁହୂର୍ତ୍ତରେ ଏହି ପରମ ଭକ୍ତଙ୍କୁ ପୁରୁଷୋତ୍ତମ ଉପାଧି ଦେଉଛନ୍ତି । ସୀତାଙ୍କ ବିରହରେ ବେଳେ ବେଳେ ଶୋକରେ ଅଧୀର ହୋଇ ସେ ପ୍ରାଣ ବିସର୍ଜନ କଥା କହୁଛନ୍ତି । ବେଳେ ବେଳେ କ୍ରୋଧରେ ଅଧୀର ହୋଇ ତ୍ରିଲୋକକୁ ଧ୍ୱଂସ କରିବା ପାଇଁ ଘୋଷଣା କରୁଛନ୍ତି । ବହୁ କଷ୍ଟରେ ଲକ୍ଷ୍ମଣ ତାଙ୍କୁ ଧୈର୍ଯ୍ୟ ଧରିବା ପାଇଁ ପରାମର୍ଶ ଦେଉଛନ୍ତି ।

ସୀତା ସ୍ୱର୍ଣ୍ଣମୃଗକୁ ଆଣିବା ପାଇଁ ଯେତେବେଳେ ତାଙ୍କୁ ଅନୁରୋଧ କରୁଛନ୍ତି, ସାଧାରଣ ମନୁଷ୍ୟର ମତିଭ୍ରମ ତାଙ୍କର ଘଟୁଛି ଏବଂ ସୁବର୍ଣ୍ଣର ମୃଗ ଅସମ୍ଭବ ବୋଲି ଲକ୍ଷ୍ମଣ ଯେତେ କହିଲେ ମଧ୍ୟ ସେ ସେହି ହେମମୃଗର ପଛରେ ଗୋଡ଼ାଉଛନ୍ତି । ଏହାକୁ ଲକ୍ଷ୍ୟ କରି ମହାଭାରତରେ ବ୍ୟାସଦେବ କହିଛନ୍ତି, ହେମମୃଗର ଜନ୍ମ ଅସମ୍ଭବ । ତଥାପି ରାମ ଏହି ମୃଗ ପ୍ରତି ଲୋଭଗ୍ରସ୍ତ ହେଉଛନ୍ତି । ବିପତ୍ତି ବେଳରେ ପୁରୁଷମାନଙ୍କର ବୁଦ୍ଧି ମଳିନ ପଡ଼ିଯାଏ ।

**ଅସମ୍ଭବଂ ହେମମୃଗସ୍ୟ ଜନ୍ମ ତଥାପି ରାମୋ ଲୁଲୁଭେ ମୃଗାୟ ।**
**ପ୍ରାୟଃ ସମାପନ୍ନବିପତ୍ତିକାଳେ ଧିୟୋଽପି ପୁଂସାଂ ମଳିନୀଭବନ୍ତି ॥**

କିନ୍ତୁ ରାମଙ୍କର ଏହି ଦୁଃଖ ଶୋକ ଭ୍ରମ ଆଦି କେତେକ ସାଧାରଣ ମାନବୋଚିତ ଆଚରଣ ନ ଥିଲେ, ସେ ଯୁଗେ ଯୁଗେ ଜନଗଣଙ୍କ ମଧ୍ୟରେ ଏତେ ପ୍ରିୟ ହୋଇ ନ ଥା'ନ୍ତେ । ତାଙ୍କର ପିତୃଭକ୍ତି, ଭ୍ରାତୃସ୍ନେହ ଏକପତ୍ନୀବ୍ରତ, ସତ୍ୟନିଷ୍ଠା, ପ୍ରଗାଢ଼ କର୍ତ୍ତବ୍ୟବୋଧ ଓ ପ୍ରଜାନୁରଞ୍ଜନ ତାଙ୍କୁ ଆଦର୍ଶ ପୁରୁଷ ରୂପେ ଯୁଗେ ଯୁଗେ ଉପସ୍ଥାପିତ କରିଛି । ତାଙ୍କର ଶତ୍ରୁ, ମିତ୍ର, ଗୁରୁ, ସ୍ୱଜନ ସମସ୍ତେ ସତ୍ୟ ଓ ଧର୍ମ ପ୍ରତି ତାଙ୍କର ଏକାନ୍ତ ନିଷ୍ଠାର ଭୂୟସୀ ପ୍ରଶଂସା କରିଛନ୍ତି । ବିଶ୍ୱାମିତ୍ର ରାମଙ୍କୁ ଗୁରୁ ରୂପେ ଅସ୍ତ୍ର ଶିକ୍ଷା ଦେଉଛନ୍ତି, ସତ୍ ଧର୍ମର ଉପଦେଶ ଦେଉଛନ୍ତି । ତାଙ୍କ ନିଜ ଭାଷାରେ 'ରାମ ଧର୍ମର ପ୍ରତିମୂର୍ତ୍ତି, ବୀରମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଲୋକମାନଙ୍କ ମଧ୍ୟରେ ଅଧିକ ବୁଦ୍ଧିମାନ, ତପସ୍ୱୀମାନଙ୍କର ଆଶ୍ରୟସ୍ଥାନ' ।

**ଏଷ ବିଗ୍ରହବାନ୍ ଧର୍ମ ଏଷ ବୀର୍ଯ୍ୟବତାଂ ବରମ୍ ।**
**ଏଷ ବୁଦ୍ଧ୍ୟଧିକଃ ଲୋକେ ତପସଶ୍ଚ ପରାୟଣମ୍ ॥**

ରାମଙ୍କ ସହିତ ଶତ୍ରୁତା କରିଥିବା ରାକ୍ଷସ ମାରୀଚ ଆଗରେ ରାବଣ ନିଜର ପ୍ରୌଢ଼ି ଦେଖାଇ ରାମଙ୍କୁ ଅବଜ୍ଞା କରିବାରୁ ମାରୀଚ ରାବଣଙ୍କୁ ଉତ୍ତର ଦେଇଥିଲା, ରାମ ସ୍ୱୟଂ ଧର୍ମର ବିଗ୍ରହ, ସାଧୁ, ସତ୍ୟପରାକ୍ରମ, ଦେବତାମାନଙ୍କ ମଧ୍ୟରେ ଇନ୍ଦ୍ରଙ୍କ ପରି ସମସ୍ତ ଲୋକର ରାଜା । ଦଶରଥ ରାମଙ୍କର ଗୁଣରେ ଅତ୍ୟନ୍ତ ପ୍ରୀତ ହୋଇ ବାରମ୍ବାର ତାଙ୍କର ଗୁଣଗାନ କରୁଛନ୍ତି । ସୀତା, ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ, ସମସ୍ତେ ତାଙ୍କର ଗୁଣଗାନରେ ମୁଖର । ଋଷିମାନେ ବନଚାରୀ ରାମଙ୍କୁ ରାକ୍ଷସମାନଙ୍କ ଠାରୁ ସୁରକ୍ଷା ପାଇଁ ପ୍ରାର୍ଥନା କରୁଛନ୍ତି । ରାମ ରାକ୍ଷସମାନଙ୍କୁ ଅବଶ୍ୟ ନିପାତ କରିବେ ବୋଲି ପ୍ରତିଜ୍ଞା କରୁଛନ୍ତି । ସୀତା କହୁଛନ୍ତି, ତୁମ ସହିତ ଶତ୍ରୁତା ନ କରୁଥିବା ଲୋକଙ୍କ ସହିତ ତୁମେ କାହିଁକି ଶତ୍ରୁତା କରୁଛ ? ରାମ ଉତ୍ତର ଦେଉଛନ୍ତି, ତାହା ମୋର ଧର୍ମ । ପୁଣି ଋଷିମାନଙ୍କ ନିକଟରେ ମୁଁ ପ୍ରତିଜ୍ଞାବଦ୍ଧ । ମୁଁ ତୁମଙ୍କୁ ବା ଲକ୍ଷ୍ମଣଙ୍କୁ ଛାଡ଼ିଦେଇପାରେ । କିନ୍ତୁ ଧର୍ମ ଓ ସତ୍ୟ ରକ୍ଷା ନିଶ୍ଚୟ କରିବି । କଥା ଦେଇ ଅନ୍ୟଥା ନ କରୁଥିବା ଯୋଗୁଁ ରାମଙ୍କ ସଂପର୍କରେ କୁହାଯାଇଛି 'ଦ୍ୱିଃଶରଂ ନାଭିସନ୍ଧତ୍ତେ, ରାମୋ ଦ୍ୱି ର୍ନାଭିଭାଷତେ' । ରାମ ଗୋଟିଏ ଶରକୁ ଦୁଇ ଥର ପ୍ରୟୋଗ କରନ୍ତି ନାହିଁ କିମ୍ବା ଦୁଇ ପ୍ରକାର କଥା କହନ୍ତି ନାହିଁ । ପିତା ଓ ପୁରବାସୀଙ୍କ ସିଦ୍ଧାନ୍ତ ଅନୁଯାୟୀ ରାଜା ହେବା ପାଇଁ ପ୍ରସ୍ତୁତ ହେଉଛନ୍ତି, କିନ୍ତୁ ଯେଉଁଦିନ ଅଭିଷେକ ହେବ, ସେଦିନ ଦଶରଥଙ୍କଠାରୁ କୈକେୟୀ ପୂର୍ବରୁ ଲାଭ କରିଥିବା ଦୁଇଟି ବର ମାଗି ନେଉଛନ୍ତି – ଭରତ ରାଜା ହେବେ ଓ ରାମ ଚଉଦବର୍ଷ ବନବାସ କରିବେ । ରାମ ବିନା ଦ୍ୱିଧାରେ ପିତୃସତ୍ୟ ପାଳନ କରିବା ପାଇଁ ସଂକଳ୍ପ କରୁଛନ୍ତି, ରାଜ୍ୟର ବହୁମୂଲ୍ୟ ବସ୍ତ୍ର ଅଳଙ୍କାର ମୁକୁଟ ଆଦିକୁ ଛାଡ଼ି ଜଟାବଲ୍କଳ ଧାରଣ କରୁଛନ୍ତି ଏବଂ ସେହିଦିନ ଅଯୋଧ୍ୟା ଛାଡ଼ି ବନଯାତ୍ରା କରୁଛନ୍ତି । ପିତା ଦଶରଥ ଗୋଟିଏ ଦିନ ମାତ୍ର ରହିବା ପାଇଁ ଅନୁରୋଧ

କରୁଛନ୍ତି । ତାହା ପ୍ରତ୍ୟାଖ୍ୟାନ କରି ରାମ କହୁଛନ୍ତି, ଆପଣ ଯେପରି ନିଜର ସତ୍ୟ ପାଳନ କରି ଆସୁଛନ୍ତି, ମୁଁ ମଧ୍ୟ ମୋର ସତ୍ୟରୁ ସେହିପରି ବିଚ୍ୟୁତ ହେବି ନାହିଁ । ଆଜି ବନବାସ କରିବି ବୋଲି ପ୍ରତିଜ୍ଞା କରି ମୁଁ କାହିଁକି ମୋର ଗୋଟିଏ ଦିନର ପୁଣ୍ୟ ହରାଇବି ? ଦଶରଥ ପୁଣି କହିଲେ, ରାମଙ୍କ ସହିତ ଚତୁରଙ୍ଗ ସେନା, ଧନରତ୍ନ, ଦାସଦାସୀ, ମଲ୍ଲଯୋଦ୍ଧା, ଶିକାର ଜାଣିଥିବା ବ୍ୟାଧଗଣ ଓ ବଣିକମାନେ ବନକୁ ଯା'ନ୍ତୁ, ଯେପରିକି ବନରେ ରାମଙ୍କ ସମୟ ଭଲରେ କଟିଯିବ । ରାମ ଉତ୍ତର ଦେଲେ, ରାଜ୍ୟ ପରିତ୍ୟାଗ କରିବା ପରେ ଏ ସବୁ ନେଇ ମୁଁ କ'ଣ କରିବି ? ଗଜରାଜକୁ ଦାନ କରିସାରି ସେହି ଗଜର କଟିବନ୍ଧନ ରଜ୍ଜୁ ଯେତେ ସୁନ୍ଦର ହେଲେ ମଧ୍ୟ କେହି କେବେ ତାକୁ ରଖିବାକୁ ଇଚ୍ଛାକରେ ? ପରେ ଚିତ୍ରକୂଟରେ ଭରତ ଯେତେ ବାଧ କଲେ ମଧ୍ୟ ସେ ତାଙ୍କର ସତ୍ୟପାଳନରେ ଅଟଳ ରହୁଛନ୍ତି । କେବଳ ସେତିକି ନୁହେଁ, ବନବାସ ବ୍ରତକୁ ସେ ଅତି କଠୋର ଭାବରେ ପାଳନ କରୁଛନ୍ତି, ଆରମ୍ଭରୁ ଶେଷ ପର୍ଯ୍ୟନ୍ତ । ଆରମ୍ଭରେ ନିଷାଦରାଜ ଗୁହକ ତାଙ୍କୁ ଆତିଥ୍ୟ ଗ୍ରହଣ କରିବା ପାଇଁ ଅନୁରୋଧ କରୁଛନ୍ତି, ମାତ୍ର ତାହା ସେ ପ୍ରତ୍ୟାଖ୍ୟାନ କରି ବୃକ୍ଷମୂଳରେ ଶୟନ କରୁଛନ୍ତି । ବାଳୀ ବଧ ପରେ ରାମ କିଷ୍କିନ୍ଧ୍ୟା ନଗରୀକୁ ଆସି ସୁଗ୍ରୀବଙ୍କୁ ଅଭିଷିକ୍ତ କରିବା ନିମନ୍ତେ ତାଙ୍କୁ ବାନରମୁଖ୍ୟମାନେ ଅନୁରୋଧ କରୁଛନ୍ତି । କିନ୍ତୁ ରାମ କହୁଛନ୍ତି, ସେ ବନବାସୀ, ନଗର ମଧ୍ୟକୁ ଯିବେ ନାହିଁ । ଲଙ୍କାଯୁଦ୍ଧ ଶେଷ ହେବା ପରେ ବିଭୀଷଣ ଗୋଟିଏ ଦିନ ତାଙ୍କର ଅତିଥି ହୋଇ ରହିବା ପାଇଁ ଅନୁରୋଧ କରୁଛନ୍ତି । ରାମ କହୁଛନ୍ତି, ଭରତ ମୋ ପାଇଁ ଅପେକ୍ଷା କରି ରହିଥିବ । ତାକୁ ଦେଖିବା ପାଇଁ ମୋ ମନ ବ୍ୟାକୁଳ ହେଉଛି । ମୁଁ ତୁମର ଆତିଥ୍ୟ ଗ୍ରହଣ କରିପାରିବି ନାହିଁ ।

ମିତ୍ରକୁ କଥା ଦେଇ ଆଶ୍ରୟପ୍ରାର୍ଥୀକୁ ଆଶ୍ରୟ ଦେଇ ସେ ତାଙ୍କର ବଚନବଦ୍ଧତାର ଚରମ ନିଦର୍ଶନ ଦେଖାଉଛନ୍ତି । ସୁଗ୍ରୀବଙ୍କୁ କିଷ୍କିନ୍ଧ୍ୟାର ରାଜା କରିବା ପାଇଁ ସେ ତାଙ୍କ ସହିତ ଅଗ୍ନିକୁ ସାକ୍ଷୀ ରଖି ମିତ୍ରତାସୂତ୍ରରେ ଆବଦ୍ଧ । ସେଥିପାଇଁ ସେ ବାଳୀକୁ ବଧ କରୁଛନ୍ତି । ବାଳୀ ସୁଗ୍ରୀବଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ଥିବାବେଳେ ରାମ ବାଳୀକୁ ବଧ କରିବା ନିନ୍ଦନୀୟ ବୋଲି ଅନେକେ ଆଖ୍ୟା ଦେଇଛନ୍ତି । କିନ୍ତୁ ସୁଗ୍ରୀବ ମିତ୍ର, ତାଙ୍କୁ ଯଦି ସେ ରକ୍ଷା କରି ନ ଥା'ନ୍ତେ, ତା'ହେଲେ ତାହା ଅଧିକ ନିନ୍ଦନୀୟ ହୋଇଥା'ନ୍ତା । ଏଠାରେ ମହାଭାରତ ଯୁଦ୍ଧର ଏକ ଦୃଷ୍ଟାନ୍ତ ଦିଆଯାଇପାରେ । ଯୁଦ୍ଧକ୍ଳାନ୍ତ ସାତ୍ୟକିଙ୍କୁ ଧରାଶାୟୀ କରି ଭୂରିଶ୍ରବା ଯେତେବେଳେ ଖଡ୍‌ଗ ଉତ୍ତୋଳନ କରି ତାଙ୍କୁ ହତ୍ୟା କରିବାକୁ ଯାଉଛନ୍ତି, ସେତେବେଳେ ଅର୍ଜୁନ ତାଙ୍କର ଏହି ଉତ୍ତୋଳିତ ଖଡ୍‌ଗଯୁକ୍ତ ହସ୍ତକୁ ଶରରେ ଛେଦନ କରୁଛନ୍ତି । ଏହା କ୍ଷାତ୍ରଧର୍ମର ଉପଯୁକ୍ତ ନୁହେଁ ବୋଲି ଅନ୍ୟମାନେ ଅର୍ଜୁନଙ୍କର ନିନ୍ଦା କରିବାରୁ ଅର୍ଜୁନ ଉତ୍ତର ଦେଉଛନ୍ତି, ସାତ୍ୟକି ମୋର ମିତ୍ର, ଏ ଯୁଦ୍ଧରେ ତାଙ୍କୁ ରକ୍ଷା କରିବା ମୋର ଧର୍ମ ।

ବିଭୀଷଣ ରାବଣ ଦ୍ୱାରା ଅପମାନିତ ହୋଇ ଲଙ୍କା ପରିତ୍ୟାଗ କରି ରାମଙ୍କର ଶରଣ ଭିକ୍ଷା କରୁଛନ୍ତି । କେବଳ ହନୁମାନଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତେ ଶତ୍ରୁର ଭାଇକୁ ଶରଣ ଦେବା ଠିକ୍ ନୁହେଁ ବୋଲି ରାମଙ୍କୁ ପରାମର୍ଶ ଦେଉଛନ୍ତି । କିନ୍ତୁ ବିଭୀଷଣଙ୍କୁ ଆଶ୍ରୟ ଦାନ

କରି ରାମ କହୁଛନ୍ତି, କୌଣସି ବ୍ୟକ୍ତି ଯଦି ମୋର ଶରଣାଗତ ହୋଇ ଥରେ ମାତ୍ର କହେ – 'ମୁଁ ତୁମର' (ତବାସ୍ମୀତି) ତାକୁ ଆଶ୍ରୟ ଦେଇ ଅଭୟ ଦାନ କରିବା ମୋର ବ୍ରତ । ଏପରିକି ରାବଣ ଯଦି ଆସି ମୋର ଶରଣାପନ୍ନ ହୁଏ, ତାକୁ ମଧ୍ୟ ମୁଁ ଶରଣ ଦେବା ପାଇଁ ପ୍ରସ୍ତୁତ ।

ନିଜର ବୀରତ୍ୱ ଓ ବାହୁବଳ ପ୍ରତି ରାମଙ୍କର ଅଖଣ୍ଡ ଆତ୍ମବିଶ୍ୱାସ ଥିଲା । କିନ୍ତୁ ସେ ଲକ୍ଷ୍ମଣଙ୍କୁ କହୁଥିଲେ, ଅଯଥା ନିଜର ବଳ ପ୍ରଦର୍ଶନ କରିବା ଉଚିତ ନୁହେଁ । କିଶୋର ବୟସରେ ତାଡ଼କା, ସୁବାହୁ ଓ ମାରୀଚ ସହିତ ତାଙ୍କର ଯୁଦ୍ଧ ହେଉଛି । ଋଷିମାନଙ୍କ ଯଜ୍ଞ ଭଙ୍ଗକାରୀ ଏହି ହିଂସ୍ର ରାକ୍ଷସମାନଙ୍କ ସହିତ ଯୁଦ୍ଧ କରି ସେ ପ୍ରଥମ ଦୁଇ ଜଣଙ୍କୁ ନିହତ କରି ମାରୀଚଙ୍କୁ ଶର ଦ୍ୱାରା ଉଡ଼ାଇ ନେଇ ସମୁଦ୍ରରେ ନିକ୍ଷେପ କରୁଛନ୍ତି । ପରଶୁରାମ ତାଙ୍କର ବଳବୀର୍ଯ୍ୟ ଦେଖାଇବା ପାଇଁ ତାଙ୍କର ପଥରୋଧ କରୁଛନ୍ତି । କିନ୍ତୁ ପରେ ପରାସ୍ତ ଓ ନିସ୍ତେଜ ହୋଇ ଫେରିଯାଉଛନ୍ତି । ଖର ଦୂଷଣ ଚଉଦହଜାର ରାକ୍ଷସସେନାଙ୍କୁ ଧରି ତାଙ୍କ ସହିତ ଲଢ଼ିବାପାଇଁ ଆସୁଛନ୍ତି । କିନ୍ତୁ ଏହି ବିପୁଳ ସେନା ସହିତ ସେମାନେ ସେହି ରଣଭୂମିରେ ନିହତ ହୋଇ ଶୟନ କରୁଛନ୍ତି । ବିରାଧ, କବନ୍ଧ, କୁମ୍ଭକର୍ଣ୍ଣ, ରାବଣ ସମସ୍ତଙ୍କର ଏହି ଦଶା ହେଉଛି । କିନ୍ତୁ ଏମାନଙ୍କର ମୃତ୍ୟୁ ପରେ ରାମଙ୍କର ସେମାନଙ୍କ ପ୍ରତି କୌଣସି ବିରୋଧ ନାହିଁ (ମରଣାନ୍ତାନି ବୈରାଣି) । ରାବଣର ଉପଯୁକ୍ତ ଅନ୍ତ୍ୟେଷ୍ଟିକ୍ରିୟା କରିବା ପାଇଁ ସେ ବିଭୀଷଣଙ୍କୁ ପରାମର୍ଶ ଦେଉଛନ୍ତି ।

ସେ ଧର୍ମ ଓ ସତ୍ୟର ଆଦର୍ଶ ଦେଖାଇବେ ବୋଲି ବାରମ୍ବାର କହିଛନ୍ତି । କାରଣ ସେ ଯେପରି ଆଦର୍ଶ ଦେଖାଇବେ, ସାଧାରଣ ଲୋକେ ତାହାକୁ ଅନୁସରଣ କରିବେ । ଭଗବଦ୍‌ଗୀତାରେ 'ଯଦ୍‌ଯଦାଚରତି ଶ୍ରେଷ୍ଠଃ ତତ୍ତଦେବେତରୋଜନାଃ' ବୋଲି କୁହାଯାଇଛି । ସେଥିପାଇଁ ସେ ନିଜେ କେବଳ ଧର୍ମାଚରଣ କରୁ ନାହାନ୍ତି; ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ, ସୁଗ୍ରୀବ, ସମସ୍ତଙ୍କୁ ଧର୍ମ ପଥରୁ ବିଚ୍ୟୁତ ନ ହେବା ପାଇଁ ପରାମର୍ଶ ଦେଉଛନ୍ତି । ଏପରିକି ତାଙ୍କର ପିତାଙ୍କର ଜଣେ ମନ୍ତ୍ରୀ ଜାବାଳି ଯେତେବେଳେ ତାଙ୍କର ପିତାଙ୍କର ସିଦ୍ଧାନ୍ତ ବିରୋଧରେ ତାଙ୍କୁ ଚିତ୍ରକୂଟରେ ରାଜା ହେବାପାଇଁ ପରାମର୍ଶ ଦେଉଛନ୍ତି, ସେ କଠୋର ବାକ୍ୟରେ ତାଙ୍କର ଭର୍ତ୍ସନା କରୁଛନ୍ତି । ସେ ଋଷି ସୁତୀକ୍ଷ୍ଣଙ୍କର ସଞ୍ଚିତ ପୁଣ୍ୟ ଗ୍ରହଣ କରିବା ପାଇଁ ମନା କରି ଦେଉଛନ୍ତି । ସେ କହୁଛନ୍ତି, ମୋର କାର୍ଯ୍ୟରେ ମୁଁ ନିଜେ ପୁଣ୍ୟ ସଞ୍ଚୟ କରିବି । କାହାରିଠାରୁ ମାଗିନେବି ନାହିଁ ।

ପ୍ରଜାନୁରଞ୍ଜନ ରାଜାର ଧର୍ମ, ସେଥିପାଇଁ ସମସ୍ତ ବ୍ୟକ୍ତିଗତ ସୁଖସ୍ୱାଚ୍ଛନ୍ଦ୍ୟ ସେ ତ୍ୟାଗ କରିବା ପାଇଁ ପ୍ରସ୍ତୁତ । ପ୍ରଜାଙ୍କର ଅପବାଦ ଭୟରେ ଅଶୋକ ବନରୁ ପ୍ରତ୍ୟାଗତ ସୀତାଙ୍କ ପ୍ରତି କଠୋର ବ୍ୟବହାର କରୁଛନ୍ତି । ମହାଭାରତର ଶକୁନ୍ତଳା-ଦୁଷ୍ମନ୍ତ ଚରିତ୍ରର ଦୃଷ୍ଟାନ୍ତ ଦିଆଯାଇପାରେ । ଦୁଷ୍ମନ୍ତ ଶକୁନ୍ତଳାଙ୍କୁ ଗାନ୍ଧର୍ବ ମତରେ କଣ୍ୱଙ୍କ ତପୋବନରେ ବିବାହ କରି ପରେ ନିଜ ରାଜଧାନୀକୁ ଆସି ତାଙ୍କୁ ଗ୍ରହଣ କରୁ ନାହାନ୍ତି । ରାଜସଭାରେ ତାଙ୍କୁ ଅପମାନିତ କରୁଛନ୍ତି । ସେଠାରେ ଦୈବବାଣୀ ଦ୍ୱାରା କୁହାଯାଉଛି ଏ ଶକୁନ୍ତଳା ତୁମର ପତ୍ନୀ, ଏହାଙ୍କର ପୁତ୍ର ତୁମର ପୁତ୍ର, ତୁମେ ଏହାଙ୍କୁ ଗ୍ରହଣ କର । ଦୁଷ୍ମନ୍ତ ସେମାନଙ୍କୁ

ଆନନ୍ଦରେ ଗ୍ରହଣ କରି କହୁଛନ୍ତି, ମୁଁ ଶକୁନ୍ତଳାଙ୍କ ସହିତ ପୂର୍ବରୁ ବିବାହ କରିଥିବା କଥା ଜାଣେ । କିନ୍ତୁ ପ୍ରଜାମାନଙ୍କ ଅପବାଦ ଭୟରେ ମୁଁ ସ୍ୱୀକାର କରୁନଥିଲି । ଅଗ୍ନି ଗର୍ଭରୁ ଉତ୍ତୀର୍ଣ୍ଣ ସୀତାଙ୍କୁ ଆନନ୍ଦରେ ଗ୍ରହଣ କରି ରାମ ସେହିପରି କହୁଛନ୍ତି, ସୀତାଙ୍କର ଚରିତ୍ର ବିଷୟରେ ମୋର ଅଣୁମାତ୍ର ସନ୍ଦେହ ନ ଥିଲା । କିନ୍ତୁ ସୀତା ରାବଣ ଗୃହରେ ଦୀର୍ଘକାଳ ଥିବାରୁ ଏହି ପରୀକ୍ଷା ନ ହୋଇଥିଲେ ଲୋକେ ମୋତେ ମୂର୍ଖ ଓ କାମୁକ ବୋଲି ଅପବାଦ ଦେଇଥା'ନ୍ତେ । ରାମ ପ୍ରଜାମାନଙ୍କୁ ଯେତିକି ଶ୍ରଦ୍ଧା କରୁଥିଲେ, ପ୍ରଜାମାନେ ତାହାଠାରୁ ତାଙ୍କୁ ଅଧିକ ସ୍ନେହ କରୁଥିଲେ । ଶାସକ ଓ ଶାସିତ ମଧ୍ୟରେ ଏହି ଆଦର୍ଶ ସଂପର୍କ ରାମାୟଣ ଘୋଷଣା କରୁଛି ।

ରାମାୟଣର ରଚନାକାଳ ଠିକ୍ ଭାବରେ ନିରୂପିତ ହୋଇ ନାହିଁ । ଏହା ନିଶ୍ଚିତ ଭାବରେ ବେଦର ପରବର୍ତ୍ତୀ । ବେଦର ତତ୍ତ୍ୱକୁ ରାମାୟଣ ଦ୍ୱାରା ପ୍ରଚାର କରିବା ପାଇଁ (ବେଦୋପବୃହଣାର୍ଥାୟ) ବାଲ୍ମୀକି କୁଶ ଲବଙ୍କୁ ଶିଷ୍ୟ ଭାବରେ ଗ୍ରହଣ କଲେ ବୋଲି ବାଳକାଣ୍ଡରେ ଉଲ୍ଲେଖ ଅଛି । କିନ୍ତୁ ରାମାୟଣ ମହାଭାରତ ପୂର୍ବବର୍ତ୍ତୀ । ମହାଭାରତରେ ରାମୋପାଖ୍ୟାନ ଶୀର୍ଷକ ୨୦ଟି ଅଧ୍ୟାୟ ଅଛି । ମାତ୍ର ରାମାୟଣରେ ମହାଭାରତର ଉଲ୍ଲେଖ ନାହିଁ । ମହାଭାରତର ରଚନାକାଳ ପ୍ରାୟ ଖ୍ରୀ.ପୂ. ୧୪୦୦ ବର୍ଷ ବୋଲି ଧରାଯାଇଛି । ରାମାୟଣ ନିଶ୍ଚୟ ତାହା ପୂର୍ବରୁ ରଚିତ ଓ ପ୍ରଚାରିତ ହୋଇଥିବ, ଯଦିଓ ସଂସ୍କୃତ ସାହିତ୍ୟକାରମାନେ ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରେ ରାମାୟଣ ଲିପିବଦ୍ଧ କରାଯାଇଛି ବୋଲି ଉଲ୍ଲେଖ କରନ୍ତି । ଏ କଥା ନିଶ୍ଚିତ ଯେ ପ୍ରଚଳିତ ରାମାୟଣ ଜଣେ କବିଙ୍କ ଦ୍ୱାରା ଲେଖାଯାଇ ନାହିଁ । ପ୍ରଧାନତଃ ଏହା ବାଲ୍ମୀକିଙ୍କ ଦ୍ୱାରା ରଚିତ । କିନ୍ତୁ ମହାଭାରତ ପରି ଅନେକ କବି ଏଥିରେ ବହୁ ଅଂଶ ବିଭିନ୍ନ ସମୟରେ ଯୋଡ଼ିଛନ୍ତି । ଉତ୍ତରକାଣ୍ଡକୁ ଅନେକେ ପ୍ରକ୍ଷିପ୍ତ ବୋଲି ମନେକରନ୍ତି । କାରଣ ଯୁଦ୍ଧକାଣ୍ଡ ପରେ ରାମାୟଣର ପ୍ରଶସ୍ତି ଗାନ କରାଯାଇଛି । କାବ୍ୟ ଶେଷ ନ ହେଲେ ତା'ର ପ୍ରଶସ୍ତି କରାଯାଏ ନାହିଁ । ଦ୍ୱିତୀୟତଃ, ଅଳ୍ପ କେତୋଟି ଅଧ୍ୟାୟ ଛଡ଼ା ଉତ୍ତରକାଣ୍ଡରେ କୌଣସି ନୂତନତ୍ୱ ନାହିଁ । କେବଳ ଋଷି ଅଗସ୍ତ୍ୟଙ୍କ ମୁହଁରେ ରାବଣ, ବାଳୀ, ସୁଗ୍ରୀବ, ହନୁମାନ ପ୍ରଭୃତିଙ୍କର ପୂର୍ବବୃତ୍ତାନ୍ତ ବହୁଳ ଭାବରେ ବର୍ଣ୍ଣନା କରାଯାଇଛି । ତୃତୀୟତଃ, ଥରେ ସୀତାଙ୍କର ଅଗ୍ନିପରୀକ୍ଷା କରାଇ ପୁଣି ବାଲ୍ମୀକି ସୀତାଙ୍କୁ ଅପବାଦ ଦୋଷରେ ନିର୍ବାସିତ କରାଇବା କାବ୍ୟର ଶୃଙ୍ଖଳା ଓ ଶିଷ୍ଟତାକୁ ଲଙ୍ଘନ କରିବା ପରି ଜଣାଯାଉଛି । ଏହି ସବୁ ଯୁକ୍ତିରେ ଯଥେଷ୍ଟ ସାରବତ୍ତା ଅଛି । କିନ୍ତୁ ସାତକାଣ୍ଡ ରାମାୟଣ ବୋଲି କଥିତ ଅଛି ଏବଂ ଉତ୍ତର ଖଣ୍ଡ ଅନ୍ୟ ଖଣ୍ଡମାନଙ୍କ ପରି ବହୁ ପ୍ରାଚୀନ । ତେଣୁ ଏ ବିବାଦ ମଧ୍ୟରେ ପ୍ରବେଶ କରି ବିଶେଷ ଲାଭ ନାହିଁ । ଯାହା ଜନଗଣଙ୍କ ମଧ୍ୟରେ ଗୃହୀତ, ତାକୁ ଗ୍ରହଣ କରିଯିବା ଯଥାର୍ଥ ହେବ । ପରବର୍ତ୍ତୀ କାଳରେ ବିଭିନ୍ନ ଭାରତୀୟ ଭାଷାରେ ବହୁ ରାମାୟଣ ଲେଖକ ରାମାଭିଷେକରେ ରାମାୟଣକୁ ଶେଷ କରି ଦେଇଛନ୍ତି । ସେମାନେ ଏହି ମିଳନାନ୍ତ ମହାକାବ୍ୟରେ ଉତ୍ତର କାବ୍ୟକୁ ଯୋଡ଼ି ବିୟୋଗାନ୍ତ କରିବାକୁ ଚାହାନ୍ତି ନାହିଁ । ଏହି ପୁସ୍ତକରେ ଉତ୍ତରକାଣ୍ଡକୁ କେବଳ ସଂକ୍ଷେପରେ ପରିଶିଷ୍ଟ (୧)ରେ ଦିଆଯାଇଛି ।

ମହାଭାରତ ବିଶେଷ ଭାବରେ ଇତିହାସ । ରାମାୟଣ କାବ୍ୟ । ତଥାପି ରାମାୟଣରେ ଇତିହାସର ବହୁ ତଥ୍ୟ ରହିଛି । ଉତ୍ତର ଭାରତ, ମଧ୍ୟ ଭାରତ ଓ ଦକ୍ଷିଣ ଭାରତରେ ବିଭିନ୍ନ ରାଜ୍ୟର ବିକାଶ, ଆର୍ଯ୍ୟ ଓ ଆର୍ଯ୍ୟେତର ବିଭିନ୍ନ ସଭ୍ୟତା ମଧ୍ୟରେ ସଂଘର୍ଷ, ଦେଶର ବିଭିନ୍ନ ଅଞ୍ଚଳରେ ସଂସ୍କୃତ ଭାଷାର ପ୍ରସାର, ପ୍ରାଚୀନ ଯୁଦ୍ଧକୌଶଳ, ଶିକ୍ଷାପ୍ରଣାଳୀ, ଶାସନନୀତି, ସାମାଜିକ ବ୍ୟବସ୍ଥା ଆଦି ଓ ବ୍ୟକ୍ତିଗତ ଜୀବନଚର୍ଯ୍ୟା ସଂପର୍କରେ ରାମାୟଣରେ ବହୁ ତଥ୍ୟ ଦେଖିବାକୁ ମିଳେ ।

ରାମାୟଣ ପୁଣି ଏକ ଧର୍ମଗ୍ରନ୍ଥ । ବେଦ ଓ ସ୍ମୃତିଶାସ୍ତ୍ରକୁ ସାଧାରଣଙ୍କର ବୋଧଗମ୍ୟ ଭାଷାରେ ଆଖ୍ୟାନ ଛଳରେ ପ୍ରକାଶ କରିବା ହେଉଛି ରାମାୟଣର ଲକ୍ଷ୍ୟ । ଏହା ଏକ ନୀତିଶାସ୍ତ୍ର, କାରଣ ରାଜଧର୍ମ ଓ ଶାସନ ନୀତି ସଂପର୍କରେ ଏଥିରେ ବିସ୍ତାରିତ ଭାବରେ ବ୍ୟାଖ୍ୟା କରାଯାଇଛି । ରାଜଗୋପାଳାଚାରୀ ଉଲ୍ଲେଖ କରିଛନ୍ତି, ମହାତ୍ମା ଗାନ୍ଧୀ ରାମାୟଣକୁ ପତିପତ୍ନୀଙ୍କର ଏକାନ୍ତ ପ୍ରେମର ଗାଥା ବୋଲି ମନେ କରୁଥିଲେ । ରାମାୟଣ କାବ୍ୟରସମୟ । ରାମଙ୍କର ବନବାସ ସମୟରେ ବାଲ୍ମୀକି ଯେପରି ଋତୁମାନଙ୍କର ବର୍ଣ୍ଣନା କରିଛନ୍ତି, ହନୁମାନଙ୍କ ସମ୍ମୁଖରେ ଚିତ୍ରପଟ ପରି ଅଶୋକ ବନର ଶୋଭାକୁ ଦର୍ଶାଇଛନ୍ତି, ତାହା ଯେପରି ସୁନ୍ଦର, ସେହିପରି ମନୋହାରୀ । ସଂସ୍କୃତର କାବ୍ୟରସ ଆସ୍ୱାଦନ କରିବାକୁ ହେଲେ ବାଲ୍ମୀକିଙ୍କର ରାମାୟଣ କାବ୍ୟକୁ ସୁମଧୁର ଚନ୍ଦ୍ରଜ୍ୟୋତ୍ସ୍ନା ପରି ପ୍ରଥମେ ଉପଭୋଗ କରିବାକୁ ହେବ ।

ରୂପକଥାର ବୈଚିତ୍ର୍ୟ ପରି ରାମାୟଣରେ ଦେବାସୁର, ନର, ନାଗ, ବାନର, ଗନ୍ଧର୍ବ ଆଦିଙ୍କର କାହାଣୀ ମନକୁ ମୋହିତ ଓ ଅଭିଭୂତ କରେ । ସ୍ୱର୍ଗ ଛାଡ଼ି ଗନ୍ଧର୍ବ ଓ ବିଦ୍ୟାଧରମାନେ ମହେନ୍ଦ୍ର ପର୍ବତରେ ବିହାର କରୁଛନ୍ତି । ଦେବତାମାନଙ୍କୁ ସାହାଯ୍ୟ କରିବା ପାଇଁ ଯାଇ ଦେବାସୁର ଯୁଦ୍ଧରେ ଦଶରଥ ଆହତ ହେଉଛନ୍ତି । ଋଷି ଓ ଅପ୍ସରା, ଦେବତା ଓ ଋଷିପତ୍ନୀ, ଦେବତା ଓ ବାନରୀମାନଙ୍କ ମଧ୍ୟରେ ଅବାଧ ମିଳାମିଶା ଓ ସେମାନଙ୍କ ସଂଯୋଗରେ ସନ୍ତାନୋତ୍ପତ୍ତି ଆଦିର ବହୁ ଦୃଷ୍ଟାନ୍ତ ଏଥିରେ ଦିଆଯାଇଛି ଯେପରିକି ଏମାନେ ସମସ୍ତେ ଗୋଟିଏ ପୃଥିବୀର ଅଂଶବିଶେଷ ।

ଭୋଜ ରାମାୟଣ ଚମ୍ପୂରେ ବାଲ୍ମୀକିଙ୍କ ସମ୍ପର୍କରେ କହିଛନ୍ତି, ସେ ମଧୁମୟ କବିମାନଙ୍କର ମାର୍ଗଦର୍ଶୀ । 'ମଧୁମୟଭଣିତୀନାଂ ମାର୍ଗଦର୍ଶୀ ମହର୍ଷିଃ' । ସେ କାବ୍ୟିକ ପରମ୍ପରାର ପ୍ରବର୍ତ୍ତକ ଓ ବିଭିନ୍ନ କବିମାନଙ୍କର ପ୍ରେରଣାର ଉତ୍ସ ହୋଇ ରହିଛନ୍ତି । ସଂସ୍କୃତ ସାହିତ୍ୟରେ ଏପରି କୌଣସି ପୁରାଣ ବା ଉପପୁରାଣ ନାହିଁ, ଯେଉଁଥିରେକି ରାମାୟଣର ଉଲ୍ଲେଖ ନାହିଁ । ଏପରିକି କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ରାବଣର ଉଦାହରଣ ଦିଆଯାଇଛି । ରାମଙ୍କର ଛାୟାରେ ସଂସ୍କୃତ ଓ ପ୍ରାକୃତ ଭାଷାର କାବ୍ୟମାନଙ୍କର ନାୟକମାନଙ୍କୁ ଚିତ୍ରିତ କରାଯାଇଛି । ରାମାୟଣକୁ ଆଶ୍ରୟ କରି ଯେଉଁସବୁ କାବ୍ୟ ନାଟକାଦି ଲେଖାଯାଇଛି ତାହା ମଧ୍ୟରେ କାଳିଦାସଙ୍କ 'ରଘୁବଂଶ', ଭବଭୂତିଙ୍କର 'ଉତ୍ତର ରାମଚରିତ' ଓ 'ମହାବୀର ଚରିତ', ମୁରାରିଙ୍କର 'ଅନର୍ଘରାଘବ', ଭଟ୍ଟିଙ୍କର 'ରାବଣ ବଧ', ସିଂହଳର କବି କୁମାର ଦାସଙ୍କ 'ଜାନକୀ ହରଣ', କ୍ଷେମେନ୍ଦ୍ରଙ୍କର 'ରାମାୟଣ

ମଞ୍ଜରୀ', ଭୋଜଙ୍କ 'ରାମାୟଣ ଚମ୍ପୂ' ଓ ରାଜଶେଖରଙ୍କ 'ବାଳ ରାମାୟଣ' ପ୍ରସିଦ୍ଧ । ପୁଣି 'ଆଧ୍ୟାତ୍ମ ରାମାୟଣ', 'ଅଦ୍‌ଭୁତ ରାମାୟଣ' ଓ 'ଆନନ୍ଦ ରାମାୟଣ' ଆଦି ଲେଖାଯାଇଛି । ଅଦ୍‌ଭୁତ ରାମାୟଣରେ ଶତଶିର ରାବଣଙ୍କୁ ଶକ୍ତିରୂପିଣୀ ସୀତା ନିହତ କରୁଛନ୍ତି ।

ବିଭିନ୍ନ ଭାରତୀୟ ଭାଷାରେ ଯେଉଁସବୁ ରାମାୟଣ ରଚନା କରାଯାଇଛି ତାହା ମଧ୍ୟରେ ତୁଳସୀଦାସଙ୍କ ରାମଚରିତ ମାନସ (ହିନ୍ଦୀ), କମ୍ବନ ରାମାୟଣ (ତାମିଲ), କୌଶିକ ରାମାୟଣ (କନ୍ନଡ଼), ଗିରିଧର ରାମାୟଣ (ଗୁଜୁରାଟୀ), କୃତ୍ତିବାସ ରାମାୟଣ (ବଙ୍ଗଳା) ଓ ଜଗମୋହନ ରାମାୟଣ (ଓଡ଼ିଆ) ପ୍ରସିଦ୍ଧ । ଓଡ଼ିଆରେ ଆଦିକବି ସାରଳା ଦାସ ମହାଭାରତ ରଚନା କରିବା ସଂଗେ ସଂଗେ ସପ୍ତକାଣ୍ଡ ରାମାୟଣ ମଧ୍ୟ ରଚନା କରିଥିଲେ । ସଂସ୍କୃତ 'ଅଦ୍ଭୁତ ରାମାୟଣ'ପରି ତାଙ୍କର 'ବିଲଙ୍କା ରାମାୟଣ' ସୁପ୍ରସିଦ୍ଧ । ଓଡ଼ିଆରେ ସୁପ୍ରସିଦ୍ଧ ରାମାୟଣ ରଚୟିତା ଭାବରେ ବଳରାମ ଦାସଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ସେ ଦାଣ୍ଡିବୃତ୍ତରେ ଯେଉଁ ରାମାୟଣ ରଚନା କଲେ ତାହା ସାରଳା ମହାଭାରତ ଓ ଜଗନ୍ନାଥ ଦାସଙ୍କ ଭାଗବତ ପରି ଓଡ଼ିଶାରେ ଘରେ ଘରେ ପ୍ରସିଦ୍ଧ ହୋଇଗଲା । ବଳରାମ ଦାସଙ୍କ ରାମାୟଣର ଏକ ନୂତନ ସୃଷ୍ଟି ହେଉଛି, ଗୁଣ୍ଡୁଚି ମୂଷା ରାମଚନ୍ଦ୍ରଙ୍କ ସେତୁବନ୍ଧ ନିର୍ମାଣରେ ଦେହର ବାଲି ଝାଡ଼ି ହୋଇ ସାହାଯ୍ୟ କରୁଛି ଏବଂ ରାମ ତାର ପିଠିକୁ ନିଜ ହାତରେ ଆଉଁଶି ଦେଉଛନ୍ତି, ଯାହା ଫଳରେ ଗୁଣ୍ଡୁଚିର ଦେହରେ କଳାଗାର ଦେଖାଯାଏ । ଏହା ଛଡ଼ା ବହୁ କବି ଛନ୍ଦ ଓ ଗୀତରେ ରାମାୟଣ ରଚନା କରିଛନ୍ତି । ବିଶ୍ୱନାଥ ଖୁଣ୍ଟିଆଙ୍କର ବିଚିତ୍ର ରାମାୟଣ ଓ ଉପେନ୍ଦ୍ର ଭଞ୍ଜଙ୍କର ବୈଦେହୀଶ ବିଳାସ ସୁପ୍ରସିଦ୍ଧ ।

ବାଲ୍ମୀକି ରାମାୟଣରେ ନ ଥିବାବେଳେ ଜନପ୍ରିୟ କିମ୍ବଦନ୍ତୀ ରାମାୟଣ ସଂପର୍କରେ ପ୍ରଚଳିତ ଅଛି । ଯଥା – ସୀତାଙ୍କୁ ପଞ୍ଚବଟୀରେ ଛାଡ଼ଯିବାବେଳେ ଲକ୍ଷ୍ମଣ ତିନୋଟି ଗାର କାଟି ଯାଉଛନ୍ତି ଏବଂ ଏହି ଗାରକୁ ଅତିକ୍ରମ କରି ବାହାରକୁ ନ ଆସିବା ପାଇଁ ତାଙ୍କୁ କହୁଛନ୍ତି । ଏହି ମନ୍ତ୍ରିତ ଗାର 'ଲକ୍ଷ୍ମଣ-ଗାର' ନାମରେ ବିଭିନ୍ନ ଭାଷାରେ ପ୍ରସିଦ୍ଧି ଲାଭ କରିଛି । ସେହିପରି ଶବରୀ ରାମଙ୍କୁ ଫଳ ଖାଇବାକୁ ଦେବା ପୂର୍ବରୁ ନିଜେ ଚାଖି ଅଇଁଠା ଫଳ ଖାଇବାକୁ ଦେଇଛି ଏବଂ ରାମ ତାକୁ ଆନନ୍ଦରେ ଖାଉଛନ୍ତି । ଅନ୍ୟ ଏକ ଘଟଣା ହେଉଛି, ରାମଙ୍କର ଯଜ୍ଞଅଶ୍ୱକୁ କୁଶ ଲବ ବାନ୍ଧି ରଖୁଛନ୍ତି ଏବଂ ତାଙ୍କ ସହିତ ଲଢ଼ିବାକୁ ଆସି ଅଯୋଧ୍ୟାର ବିପୁଳ ସେନା ସହିତ ରାମଙ୍କର ଭାଇମାନେ ପରାସ୍ତ ହେଉଛନ୍ତି । ଏହିସବୁ ଘଟଣା ମୂଳ ରାମାୟଣରେ ନାହିଁ । କିନ୍ତୁ ଏହା ବିଭିନ୍ନ ପ୍ରାକୃତ ରାମାୟଣ ଓ ଲୋକଶ୍ରୁତିରେ ଏପରି ପ୍ରଚାରିତ ହୋଇଛି ଯେ ତାହାକୁ ରାମାୟଣ କିମ୍ବଦନ୍ତୀର ଅଭିନ୍ନ ଅଂଶ ବୋଲି କୁହାଯାଇପାରେ ।

ଓଡ଼ିଆ ଭାଷାରେ ରାମାୟଣର ଆକ୍ଷରିକ ଅନୁବାଦ ସ୍ୱର୍ଗୀୟ ପଣ୍ଡିତ ଲିଙ୍ଗରାଜ ମିଶ୍ର ପ୍ରାୟ ପଚାଶ ବର୍ଷ ତଳେ କରିଥିଲେ ଏବଂ ସତ୍ୟବାଦୀ ପ୍ରେସ୍ ପକ୍ଷରୁ ତାହା ପ୍ରକାଶିତ

ହୋଇଥିଲା । ଏଥିରେ ମୂଳ ସଂସ୍କୃତ ଓ ତା'ର ଓଡ଼ିଆ ଅନୁବାଦ ଦିଆଯାଇଛି । ଓଡ଼ିଆ ଭାଷାରେ ଏହା ଏକ ପ୍ରାମାଣିକ ଅନୁବାଦ ଗ୍ରନ୍ଥ ।

ଶଂସିତ ପୁସ୍ତକରେ ୨୪ ହଜାର ଶ୍ଳୋକବିଶିଷ୍ଟ ରାମାୟଣର ସାରକଥା ଦିଆଯାଇଛି । ଏଥିରେ କୌଣସି ମୁଖ୍ୟ ଆଖ୍ୟାୟିକା ବା ଉଲ୍ଲେଖଯୋଗ୍ୟ ବିଷୟବସ୍ତୁକୁ ଛଡ଼ାଯାଇ ନାହିଁ । ଯେତେଦୂର ସମ୍ଭବ ଓଡ଼ିଶାରେ ସଂସ୍କୃତ ରାମାୟଣର ମୌଳିକ ଭାଷାକୁ ରକ୍ଷା କରିବାର ଉଦ୍ୟମ ହୋଇଛି । ମୋର ପିତା ସ୍ୱର୍ଗୀୟ ଗୋକୁଳାନନ୍ଦ ପଟ୍ଟନାୟକ ୧୯୨୭ ମସିହାରେ 'ଜାନକୀବଲ୍ଲଭ ବିଳାସ' ନାମକ ରାମାୟଣ କାବ୍ୟ ରଚନା କରିଥିଲେ । ବହୁ ବର୍ଷ ପରେ ପିତୃପରଂପରାରେ ଗଦ୍ୟରେ ଏହି ରାମାୟଣ ରଚନା କରି ମୁଁ ଅତିଶୟ ଆନନ୍ଦ ଅନୁଭବ କରୁଛି । ଏହି ଗ୍ରନ୍ଥର ପ୍ରୁଫ୍ ସଂଶୋଧନ କାର୍ଯ୍ୟରେ ମୋ ଝିଅ ଶ୍ରୀମତୀ ସୁଦତ୍ତା ପଟ୍ଟନାୟକ ବହୁ ଯତ୍ନ ସହକାରେ ସାହାଯ୍ୟ କରିଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଦେଉଚି । ପାଠକମାନଙ୍କ ମଧ୍ୟରେ ଏହି ପୁସ୍ତକ ଆଦୃତ ହେବ ବୋଲି ମୁଁ ଆଶା କରୁଛି ।

ଶ୍ରୀଗୁଣ୍ଡିଚା
୧୯୯୧

ଜାନକୀବଲ୍ଲଭ ପଟ୍ଟନାୟକ

# ୨ ॥ ରାମ ପୁରୁଷୋତ୍ତମ

ଦିନେ ମହର୍ଷି ବାଲ୍ମୀକି ଗଙ୍ଗାର ଅଦୂରରେ ପ୍ରବାହିତ ତମସା ନଦୀ କୂଳରେ ତାଙ୍କର ଆଶ୍ରମରେ ଥିବାବେଳେ ବେଦଜ୍ଞ, ତପସ୍ୱୀ, ପଣ୍ଡିତପ୍ରବର ମହାମୁନି ନାରଦ ସେଠାରେ ପହଞ୍ଚିଲେ । ବାଲ୍ମୀକି ନାରଦଙ୍କୁ ପଚାରିଲେ – ମୁନିଶ୍ରେଷ୍ଠ, ସଂସାରରେ କ'ଣ ଏପରି କେହି ପୁରୁଷ ଅଛନ୍ତି, ଯେକି ସମସ୍ତ ଦିବ୍ୟ ଗୁଣର ଆଧାର, ଯେକି ଧାର୍ମିକ, କୃତଜ୍ଞ, ବୀର, ସତ୍ୟବ୍ରତ, ସଚ୍ଚରିତ୍ର, ସମସ୍ତ ପ୍ରାଣୀଙ୍କର ମଙ୍ଗଳକାରୀ, ସୁପଣ୍ଡିତ, ପ୍ରିୟଦର୍ଶନ, ତେଜସ୍ୱୀ, ଜିତକ୍ରୋଧ ଓ ଅସୂୟାଶୂନ୍ୟ, ଯେକି ରଣସ୍ଥଳରେ କ୍ରୁଦ୍ଧ ହେଲେ ଦେବତାମାନେ ମଧ୍ୟ ଭୟଭୀତ ହୋଇପଡ଼ନ୍ତି ।

ତ୍ରିଲୋକଜ୍ଞ ନାରଦ ବାଲ୍ମୀକିଙ୍କର ସଂଶୟ ମୋଚନ କରି ଆନନ୍ଦରେ କହିଲେ, ତୁମେ ଯେଉଁ ଗୁଣାବଳୀର କୀର୍ତ୍ତନ କଲ, ଏକାଧାରରେ ଜଣେ ଲୋକ ପାଖରେ ତାହା ଦେଖାଯିବା ଦୁର୍ଲ୍ଲଭ । ତଥାପି ଏପରି ଜଣେ ବ୍ୟକ୍ତି ଅଛନ୍ତି, ଯେକି ଏହି ସମସ୍ତ ଗୁଣର ଅଧିକାରୀ । ସେ ହେଉଛନ୍ତି ଇକ୍ଷ୍ୱାକୁବଂଶରେ ଜନ୍ମ, ଲୋକବିଶ୍ରୁତ, ରାମ ନାମରେ ଖ୍ୟାତ । ସେ ସଂଯତଚିତ୍ତ, ମହାବୀର, କାନ୍ତିମାନ, ଧୈର୍ଯ୍ୟଶୀଳ ଓ ଜିତେନ୍ଦ୍ରିୟ । ସେ ବୁଦ୍ଧିମାନ, ନୀତିଜ୍ଞ, ବାଗ୍ମୀ, ସୁଶ୍ରୀ ଓ ଶତ୍ରୁନାଶକ । ତାଙ୍କର ସ୍କନ୍ଧ ଉନ୍ନତ, ବାହୁ ଦୀର୍ଘ, କଣ୍ଠଦେଶ ଶଙ୍ଖତୁଲ୍ୟ ସୁନ୍ଦର, ଗଣ୍ଡଦେଶ ସୁଠାମ ଓ ବକ୍ଷ ବିଶାଳ । ସେହି ଆଜାନୁଲମ୍ବିତ ବାହୁ, ସୁନ୍ଦର ଲଲାଟଯୁକ୍ତ ଧନୁର୍ଦ୍ଧାରୀ ପ୍ରତାପବାନ୍ ବୀର ଶତ୍ରୁମାନଙ୍କୁ ସହଜରେ ଦମନ କରିପାରନ୍ତି । ତାଙ୍କର ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ସୁନ୍ଦର ଓ ସୁଗଠିତ ଏବଂ ବର୍ଣ୍ଣ ସ୍ନିଗ୍ଧ । ସେ ଆୟତନେତ୍ର ଓ ସମସ୍ତ ଶୁଭ ଲକ୍ଷଣରେ ଯୁକ୍ତ । ସେ ଧର୍ମଜ୍ଞ, ସତ୍ୟସନ୍ଧ, ପ୍ରଜାହିତେ ରତ, ଯଶସ୍ୱୀ, ଜ୍ଞାନୀ, କୁଳୀନ ଏବଂ ସ୍ଥିତଧୀ । ସମସ୍ତ ଶାସ୍ତ୍ର ଓ ଶସ୍ତ୍ରରେ ନିପୁଣ ସେହି ରାଜା ରାମ ସଂସାରରେ ଧର୍ମରକ୍ଷା କରିଛନ୍ତି । ସର୍ବଗୁଣାଳଂକୃତ କୌଶଲ୍ୟାଙ୍କର ଆନନ୍ଦବର୍ଦ୍ଧନ ରାମଚନ୍ଦ୍ରଙ୍କର କ'ଣ ବା ଉପମା ଦିଆଯାଇପାରେ ? ସେ ଗାମ୍ଭୀର୍ଯ୍ୟରେ ସମୁଦ୍ର ପରି, ଧୈର୍ଯ୍ୟରେ ହିମାଳୟ ପରି, ବୀରତ୍ୱରେ ବିଷ୍ଣୁଙ୍କ ପରି, ସୌନ୍ଦର୍ଯ୍ୟରେ ଚନ୍ଦ୍ରମା ଓ କ୍ଷମା ଗୁଣରେ ପୃଥିବୀ ସହିତ ସମାନ ।

ଜଣେ ବ୍ୟକ୍ତିଙ୍କ ଠାରେ ବାଲ୍ମୀକି ଯେଉଁସବୁ ଗୁଣ ଆଶା କରିଥିଲେ ରାଜା ରାମଚନ୍ଦ୍ରଙ୍କ ଠାରେ ଥିବା ଗୁଣାବଳୀର ବର୍ଣ୍ଣନା ବାଗ୍ମୀପ୍ରବର ନାରଦଙ୍କ ମୁହଁରୁ ଶୁଣି ରାମଙ୍କ ସଂପର୍କରେ ଆହୁରି ଜାଣିବାପାଇଁ ତାଙ୍କର ଆଗ୍ରହ ବଢ଼ିବାକୁ ଲାଗିଲା ।

ନାରଦ ରାମଚନ୍ଦ୍ରଙ୍କ ଜୀବନବୃତ୍ତାନ୍ତ ସଂକ୍ଷେପରେ ବର୍ଣ୍ଣନା କରି କହିଲେ, ସର୍ବଗୁଣ ସଂପନ୍ନ ରାମଙ୍କୁ ଦଶରଥ ଯୁବରାଜ ପଦରେ ଅଭିଷିକ୍ତ କରିବାପାଇଁ ଦିନ ସ୍ଥିର କଲେ । ମାତ୍ର ରାଣୀ କୈକେୟୀ ରାଜାଙ୍କଠାରୁ ଯେଉଁ ବର ଲାଭ କରିଥିଲେ ତାହା ମାଗିବା ଫଳରେ ରାମଙ୍କୁ ବନବାସ କରିବାକୁ ହେଲା । ଏହି ଦୁଃଖରେ ଦଶରଥଙ୍କର ମୃତ୍ୟୁ ହେଲା । କୈକେୟୀପୁତ୍ର ଭରତ ରାଜପଦ ଗ୍ରହଣ ନ କରି ରାମଙ୍କୁ ଫେରାଇ ଆଣିବା ପାଇଁ ଚିତ୍ରକୂଟ ଯାତ୍ରା କଲେ । ମାତ୍ର ପ୍ରାଣସମା ପତ୍ନୀ ସୀତା ଓ ଛାୟାପରି ଅନୁଗାମୀ ଭାଇ ଲକ୍ଷ୍ମଣଙ୍କ

ସହିତ ବନବାସ କରୁଥିବା ସତ୍ୟବ୍ରତ ରାମଚନ୍ଦ୍ର ଭରତଙ୍କ ଅନୁରୋଧ ରକ୍ଷା କଲେ ନାହିଁ । ସେ ପିତୃସତ୍ୟ ପାଳନ କରି ଚଉଦ ବର୍ଷ ପରେ ଅଯୋଧ୍ୟାକୁ ଫେରିବେ ବୋଲି କହିଲେ । ଭରତ ରାମଙ୍କର ପାଦୁକା ଦୁଇଟିକୁ ଧରି ଫେରିଆସିଲେ ଓ ଅଯୋଧ୍ୟା ନିକଟବର୍ତ୍ତୀ ନନ୍ଦୀଗ୍ରାମରେ ଏକ କୁଟୀରରେ ବାସ କରି ରାମଙ୍କର ପ୍ରତିନିଧି ଭାବରେ ରାଜ୍ୟ ଶାସନ କଲେ ।

ତା'ପରେ ନାରଦ ପରବର୍ତ୍ତୀ ଘଟଣାବଳୀ – ରାମଙ୍କର ଦଣ୍ଡକାରଣ୍ୟରେ ଅବସ୍ଥାନ, ଖର ଦୂଷଣଙ୍କ ନିଧନ, ଶୂର୍ପଣଖାର ନାସାକର୍ଣ୍ଣ ଛେଦନ, ମାୟାମୃଗରୂପୀ ମାରୀଚର ବଧ, ରାବଣ ଦ୍ୱାରା ସୀତା ହରଣ, ରାମଙ୍କ ସହିତ ହନୁମାନ ଓ ସୁଗ୍ରୀବଙ୍କର ମିତ୍ରତା, ବାଳୀବଧ, ସୀତାଙ୍କର ଅନ୍ୱେଷଣ, ହନୁମାନଙ୍କର ସମୁଦ୍ର ଲଂଘନ, ଅଶୋକବନରେ ସୀତାଙ୍କର ଠାବ, ଲଙ୍କା ଦହନ, ସମୁଦ୍ରରେ ସେତୁ ନିର୍ମାଣ ଓ ଲଙ୍କାଗଡ଼ରେ ପ୍ରବେଶ, ବିଭୀଷଣଙ୍କୁ ଶରଣ ଦାନ, କୁମ୍ଭକର୍ଣ୍ଣ, ଇନ୍ଦ୍ରଜିତ ଓ ରାବଣର ବିନାଶ, ସୀତାଙ୍କର ଅଗ୍ନି ପରୀକ୍ଷା ଓ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ଏବଂ ରାଜ୍ୟାଭିଷେକ ଆଦି ବର୍ଣ୍ଣନା କରି କହିଲେ, ଏଣିକି ରାମରାଜ୍ୟରେ ଲୋକେ କିପରି ରହିବେ ତାର ଏକ ଚିତ୍ର ମୁଁ ଦେଉଛି, ଶୁଣ ।

ନାରଦ କହିଲେ, ରାମରାଜ୍ୟରେ ପ୍ରଜାମାନେ ଆନନ୍ଦରେ ଓ ସୁଖରେ ରହିବେ । ସମସ୍ତେ ଧର୍ମ ଅନୁଯାୟୀ ଚଳିବେ । କାହାରି ରୋଗ ବ୍ୟାଧି ହେବ ନାହିଁ । ଦୁର୍ଭିକ୍ଷ ଓ ମହାମାରୀର ଭୟ, ପୁତ୍ରଶୋକ ପତିଶୋକର ଭୟ, କ୍ଷୁଧା, ତୃଷା, ଚୋର ତସ୍କରର ମଧ ଭୟ ରହିବ ନାହିଁ । ନଗର ଓ ରାଜ୍ୟ ଧନଧାନ୍ୟରେ ପରିପୂର୍ଣ୍ଣ ହେବ । ସତ୍ୟ ଯୁଗରେ ଯେପରି ଲୋକେ ସଦା ସନ୍ତୋଷରେ ରହୁଥିଲେ, ସେହିପରି ସୁଖରେ ରହିବେ । ବହୁ ଅଶ୍ୱମେଧ ଯଜ୍ଞ କରି ଓ ସୁଦୀର୍ଘକାଳ ରାଜ୍ୟ ଶାସନ କରି ରାମ ଇହଲୀଳା ସମ୍ବରଣ କରିବେ । ଏହି ପବିତ୍ର, ପାପନାଶକ, ପୁଣ୍ୟଜନକ ରାମଚରିତ ଯେ ଶୁଣିବ, ସେ ସମସ୍ତ ପାପରୁ ମୁକ୍ତ ହେବ ।

**ଇଦଂ ପବିତ୍ରଂ ପାପଘ୍ନଂ ପୁଣ୍ୟଂ ବେଦୈଶ୍ଚ ସମ୍ମିତମ୍**
**ଯଃ ପଠେଦ୍ରାମଚରିତଂ ସର୍ବପାପୈଃ ପ୍ରମୁଚ୍ୟତେ ।**

ପୁଣ୍ୟଶ୍ଳୋକ ରାମଚନ୍ଦ୍ରଙ୍କର ଚରିତ ନାରଦଙ୍କଠାରୁ ଶୁଣି ଶିଷ୍ୟମାନଙ୍କ ସହିତ ବାଲ୍ମୀକି ଅତିଶୟ ସନ୍ତୋଷ ଲାଭ କଲେ ଏବଂ ମୁନିପ୍ରବରଙ୍କର ଉପଯୁକ୍ତ ପୂଜା ଓ ସତ୍କାର କରି ତାଙ୍କୁ ବିଦାୟ ଦେଲେ ।

## ୩ ।। ଆଦିକବି : ଶୋକରୁ ଶ୍ଳୋକର ଜନ୍ମ

ନାରଦ ଚାଲିଯିବା ପରେ ବାଲ୍ମୀକି ବହୁ ସମୟ ରାମଙ୍କ ଚରିତ ଚିନ୍ତା କରିବାକୁ ଲାଗିଲେ । ସେହି ଅବସ୍ଥାରେ ସେ ତମସାନଦୀ କୂଳରେ ବିଚରଣ କରୁଛନ୍ତି, ନଦୀର ଏକ ସୁନ୍ଦର ଘାଟ ଦେଖି ଶିଷ୍ୟଙ୍କୁ କହିଲେ, ଭରଦ୍ୱାଜ, ଏହି କର୍ଦ୍ଦମହୀନ ରମଣୀୟ ତୀର୍ଥକୁ

ଦେଖ, ସଜ୍ଜନ ବ୍ୟକ୍ତିର ମନପରି ଏହାର ଜଳ କିପରି ନିର୍ମଳ ଦେଖାଯାଉଛି । ଏଇଠି କଳସକୁ ଥୁଅ ଓ ମୋତେ ମୋର ବଲ୍କଳ ଖଣ୍ଡିକ ଦିଅ । ଏଇ ଉତ୍ତମ ତୀର୍ଥରେ ମୁଁ ସ୍ନାନ କରିବାକୁ ସ୍ଥିର କରିଚି ।

ଶିଷ୍ୟଙ୍କ ହସ୍ତରୁ ବଲ୍କଳ ଗ୍ରହଣ କରି ବାଲ୍ମୀକି ତମସାତଟବର୍ତ୍ତୀ ବିଶାଳ ବନ ମଧ୍ୟରେ ବୁଲିବାକୁ ଲାଗିଲେ । ସେ ଘନ ଅରଣ୍ୟର ଦୃଶ୍ୟ ଉପଭୋଗ କରୁଛନ୍ତି, ଏକ କଳକଣ୍ଠ କ୍ରୌଞ୍ଚମିଥୁନ (ବଗ ଓ ବଗୁଲୀ) ଆନନ୍ଦରେ ବିହାର କରୁଥିବାର ଦେଖିପାରିଲେ । ହଠାତ୍ ସଙ୍ଗମରତ ଏଇ ଦୁଇଟି ପକ୍ଷୀ ମଧ୍ୟରୁ ପୁରୁଷ ପକ୍ଷୀଟି ଏକ ବ୍ୟାଧର ଶରରେ ଆହତ ହୋଇ ତଳକୁ ଖସିପଡ଼ିଲା ଓ ରକ୍ତାକ୍ତ ଶରୀରରେ କିଛି ସମୟ ଛଟପଟ ହୋଇ ମରିଗଲା । ନିଜର ଜୀବନର ସହଚର ତାମ୍ରବର୍ଣ୍ଣ ଚୂଡ଼ାବିଶିଷ୍ଟ କାମମତ୍ତ ଏହି ପକ୍ଷୀର ମୃତଶରୀରକୁ ଦେଖି କ୍ରୌଞ୍ଚୀଟି କରୁଣ ସ୍ୱରରେ ବିଳାପ କରିବାକୁ ଲାଗିଲା । ମହର୍ଷି ବାଲ୍ମୀକିଙ୍କର ହୃଦୟ କରୁଣାରେ ଭରିଗଲା । ସେ ବ୍ୟାଧକୁ ଧିକ୍କାର କରି କହିଲେ, ନିଷାଦ, କେବେହେଲେ ତୁ ପ୍ରତିଷ୍ଠା ଲାଭ କରିପାରିବୁ ନାହିଁ । କାରଣ ତୁ ଏହି କ୍ରୌଞ୍ଚମିଥୁନ ମଧ୍ୟରୁ ଜଣକୁ କାମାସକ୍ତ ଅବସ୍ଥାରେ ବଧ କରିଚୁ । ବାଲ୍ମୀକି ସଂସ୍କୃତ ଭାଷାରେ ଏହି ଯେଉଁ ପଦକ କଥା କହିଲେ, ତା ହେଉଚି

ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀଃସମାଃ
ଯତ୍ କ୍ରୌଞ୍ଚମିଥୁନାଦେକମବଧୀଃ କାମମୋହିତମ୍ ।

ବାଲ୍ମୀକି ବ୍ୟାଧକୁ ଅଭିଶାପ ଦେଇ ଭାବିବାକୁ ଲାଗିଲେ, ଏହି ପକ୍ଷୀର ଦୁଃଖରେ ବ୍ୟଥିତ ହୋଇ ମୁଁ କ'ଣ କହି ପକାଇଲି ! ମୁନି ଶିଷ୍ୟ ଭରଦ୍ୱାଜଙ୍କୁ ଡାକି କହିଲେ – ଦେଖ, ଶୋକାର୍ତ୍ତ ଅବସ୍ଥାରେ ମୋ ତୁଣ୍ଡରୁ ପାଦବଦ୍ଧ ସମାନ ଅକ୍ଷରବିଶିଷ୍ଟ ସ୍ୱରଲୟଯୁକ୍ତ ଯେଉଁ ବାକ୍ୟ ବାହାରିଗଲା, ତାହା ଶ୍ଳୋକ ନାମରେ ବିଖ୍ୟାତ ହେବ । ଏହା କେବେ ଅନ୍ୟଥା ହେବ ନାହିଁ । ଶିଷ୍ୟ ଗୁରୁଙ୍କର ବାକ୍ୟକୁ ତତ୍‌କ୍ଷଣାତ୍ ଗ୍ରହଣ କରି ଏହି ଶ୍ଳୋକକୁ ମୁଖସ୍ଥ କଲେ ଓ ତାହା ମନରେ ରଖି ଗୁରୁଙ୍କର ଆନନ୍ଦଭାଜନ ହେଲେ । ଏହାପରେ ମୁନି ତମସାର ସେହି ନିର୍ମଳ ଜଳରେ ସ୍ନାନ କରି ଏହି ଶ୍ଳୋକର କଥା ଚିନ୍ତା କରି କରି ଆଶ୍ରମକୁ ଫେରି ଆସିଲେ । ଶିଷ୍ୟ ଜଳପୂର୍ଣ୍ଣ କଳସୀ ଧାରଣ କରି ଗୁରୁଙ୍କର ଅନୁଗମନ କଲେ ।

ବାଲ୍ମୀକି କିଛି ସମୟ ଧ୍ୟାନ କରି ଆଶ୍ରମରେ ବସିଛନ୍ତି, ସ୍ୱୟଂ ପ୍ରଜାପତି ବ୍ରହ୍ମା ସେଠାରେ ଉପସ୍ଥିତ ହେଲେ । ମୁନି ଆନନ୍ଦ ଓ ବିସ୍ମୟରେ ଅଭିଭୂତ ହୋଇ ବ୍ରହ୍ମାଙ୍କୁ ପାଦ୍ୟ ଅର୍ଘ୍ୟ ଓ ଆସନ ଆଦି ଦାନ କରି ସାଷ୍ଟାଙ୍ଗ ପ୍ରଣିପାତ କଲେ । ପ୍ରଜାପତି ବାଲ୍ମୀକିଙ୍କୁ ଆସନ ଗ୍ରହଣ କରିବାକୁ କହି ତାଙ୍କର କୁଶଳ ଜିଜ୍ଞାସା କଲେ । ବ୍ୟାଧ ବିନା କାରଣରେ ନିଷ୍ଠୁର ଭାବରେ ଯେପରି କାମମୋହିତ କ୍ରୌଞ୍ଚପକ୍ଷୀକୁ ହତ୍ୟା କରିଥିଲା, ତାହା ଚିନ୍ତାକରି ଏବଂ କ୍ରୌଞ୍ଚୀର କରୁଣ ବିଳାପକୁ ବାରମ୍ବାର ସ୍ମରଣ କରି ମୁନି ସ୍ୱରଚିତ ଶ୍ଳୋକକୁ ବ୍ରହ୍ମାଙ୍କ ଆଗରେ ଆବୃତ୍ତି କଲେ ।

ବ୍ରହ୍ମା କହିଲେ – ମହାମୁନି, ତୁମେ ଯାହା ରଚନା କରିବ, ତାହା ଶ୍ଳୋକ ନାମରେ ବିଖ୍ୟାତ ହେବ । ମୋର ଇଚ୍ଛାରେ ହିଁ ତୁମ ମୁହଁରୁ ଏହା ବାହାରିଗିଚି ଏବଂ ବାଗ୍‌ଦେବୀ

ସରସ୍ୱତୀ ତୁମଠାରେ ପ୍ରସନ୍ନ ହୋଇଛନ୍ତି । ବର୍ତ୍ତମାନ ତୁମେ ସମଗ୍ର ରାମଚରିତକୁ ଏହି ଶ୍ଳୋକରେ ରଚନାକର । ଯାହା ତୁମେ ନାରଦଙ୍କ ମୁହଁରୁ ଶୁଣିଚ, ଜ୍ଞାତ, ଅଜ୍ଞାତ ସେ ସମସ୍ତ ବିଷୟ ବର୍ଣ୍ଣନା କର । ଯାହା ଘଟିଚି, ତାହା ତୁମେ ଜାଣ । ଯାହା ଘଟି ନାହିଁ, ତାହା ମଧ୍ୟ ତୁମକୁ ଜଣାପଡ଼ିଯିବ । ଏଥିରେ ବର୍ଣ୍ଣିତ କୌଣସି କଥା ମିଥ୍ୟା ହେବ ନାହିଁ । ଯେତେକାଳ ପର୍ଯ୍ୟନ୍ତ ପୃଥିବୀରେ ନଦୀ ଓ ପର୍ବତମାନେ ରହିଥିବେ, ଯେପର୍ଯ୍ୟନ୍ତ ରାମାୟଣୀ କଥା ଜନଗଣରେ ପ୍ରଚାରିତ ହେଉଥିବ ଏବଂ ଯେପର୍ଯ୍ୟନ୍ତ ତୁମ ରଚିତ ରାମାୟଣୀ କଥା ପୃଥିବୀରେ ପ୍ରଚାରିତ ହେଉଥିବ, ସେପର୍ଯ୍ୟନ୍ତ ତୁମେ ଏହି ଜଗତର ଉର୍ଦ୍ଧ୍ୱ ଓ ଅଧଃ ସର୍ବତ୍ର ରହିଥିବ (ଅର୍ଥାତ୍ ଜଗତରେ ତୁମର କୀର୍ତ୍ତି ଅମର ହୋଇ ରହିବ) ।

**ଯାବଦ୍ ସ୍ଥାସ୍ୟନ୍ତି ଗିରୟଃ ସରିତଶ୍ଚ ମହୀତଳେ**
**ତାବଦ୍ ରାମାୟଣୀ କଥା ଲୋକେଷୁ ପ୍ରଚରିଷ୍ୟତି ।**
**ଯାବଦ୍ରାମାୟଣୀକଥା ତ୍ୱଦ୍‌କୃତା ପ୍ରଚରିଷ୍ୟତି**
**ତାବଦୂର୍ଦ୍ଧ୍ୱମଧଶ୍ଚ ତ୍ୱଂ ମଲ୍ଲୋକେଷୁ ନିବତ୍ସ୍ୟସି ।**

ବ୍ରହ୍ମା ଏହା କହି ବାଲ୍ମୀକିଙ୍କୁ ଆଶୀର୍ବାଦ କରି ଅନ୍ତର୍ଦ୍ଧାନ ହେଲେ । ମହର୍ଷି ବାଲ୍ମୀକି ମନେକଲେ ତାଙ୍କର ଏହି ଶ୍ଳୋକ ରଚନା ବିଧିପ୍ରେରିତ ଏବଂ ଏବେ ବିଶ୍ୱର କଲ୍ୟାଣ ପାଇଁ ତାଙ୍କୁ ରାମାୟଣ ରଚନା କରିବାକୁ ହେବ ।

ଏହାପରେ ଋଷି କୁଶାସନରେ ବସି ଧ୍ୟାନସ୍ଥ ହେଲେ ଏବଂ ରାମଚନ୍ଦ୍ରଙ୍କ ଜୀବନରେ ଯାହା ସବୁ ଘଟିଯାଇଚି, ତାହା ଜାଣିବା ପାଇଁ ଇଚ୍ଛା ପ୍ରକାଶ କଲେ । ନିଜର ହାତମୁଠା ଭିତରେ ଥିବା ଅଁଳା ଫଳ ପରି ତାଙ୍କୁ ଗୋଟି ଗୋଟି କରି ସେହିସବୁ ଘଟଣା ଘଟିଯାଉଥିବାର ଦେଖାଗଲା । ଋଷି ବିଚିତ୍ର ପଦ ଓ ଅର୍ଥଯୁକ୍ତ ଚବିଶ ହଜାର ଶ୍ଳୋକରେ, ପାଞ୍ଚ ଶହ ସର୍ଗ ଓ ଛ' କାଣ୍ଡରେ କର୍ଣ୍ଣପ୍ରୀତିକର ଏହି ବିଚିତ୍ର ରାମଚରିତକୁ ସମାପ୍ତ କଲେ । ଏହାପରେ ଉତ୍ତରକାଣ୍ଡ ମଧ୍ୟ ସେ ରଚନା କରିଥିଲେ ।

ରାମାୟଣ ରଚନା କରିସାରି କିଏ ଏହାକୁ ଗାନ କରିବ, କାହା ଦ୍ୱାରା ଏହା ପ୍ରଚାରିତ ହେବ, ଋଷି ଏହା ଚିନ୍ତା କରୁଥିବାବେଳେ ମୁନିବେଶଧାରୀ ରାଜକୁମାର କୁଶ ଲବ ଦୁହେଁ ସେଠାକୁ ଆସି ତାଙ୍କର ପାଦ ଛୁଇଁ ନମସ୍କାର କଲେ । ସେହି ଭ୍ରାତୃଦ୍ୱୟ ମଧୁର ସ୍ୱରଯୁକ୍ତ ଓ ମେଧାବୀ ହୋଇଥିବାରୁ ମହର୍ଷି ସେଇ ଦୁଇ ବାଳକଙ୍କୁ ଶିଷ୍ୟ ରୂପେ ଗ୍ରହଣ କଲେ ଏବଂ ରାମାୟଣ ମାଧ୍ୟମରେ ଜଗତର କଲ୍ୟାଣ ନିମନ୍ତେ ବେଦର ତତ୍ତ୍ୱ ପ୍ରଚାର କରିବା ପାଇଁ ତାହା ସେମାନଙ୍କୁ ଶିଖାଇବାକୁ ଲାଗିଲେ ।

ରାମାୟଣର ପାଠ ଓ ଗାନ ମଧୁର ଓ ଆନନ୍ଦଦାୟକ ଥିଲା ଏବଂ ଦ୍ରୁତ, ମଧ୍ୟ ଓ ବିଳମ୍ବିତ ଏହି ତିନୋଟି ମାନ ଓ ବିଭିନ୍ନ ସ୍ୱର ଓ ଲୟରେ ତାହା ଯୁକ୍ତ ଥିଲା । ଶୃଙ୍ଗାର, କରୁଣ, ହାସ୍ୟ, ରୌଦ୍ର, ଭୟାନକ, ବୀର ଆଦି ରସ ଏଥିରେ ପୂରି ରହିଥିଲା । ଲବ କୁଶ ଏହି ରସପୂର୍ଣ୍ଣ କାବ୍ୟକୁ ସୁନ୍ଦର କଣ୍ଠରେ ଗାଇବାକୁ ଲାଗିଲେ । ସେମାନେ ସଙ୍ଗୀତକଳାର ତତ୍ତ୍ୱ ଜାଣିଥିଲେ । କିପରି ଉଚ୍ଚାରଣ କରିବାକୁ ହେବ, କିପରି ସ୍ୱର ଓ ମୂର୍ଚ୍ଛନା ଦେବାକୁ

ହେବ, ତାହା ସେମାନଙ୍କୁ ସଂପୂର୍ଣ୍ଣ ବିଦିତ ଥିଲା । ରୂପରେ ମଧ୍ୟ ସେମାନେ ଅଶ୍ୱିନୀକୁମାରଙ୍କ ପରି ସୁନ୍ଦର ଏବଂ ସମସ୍ତ ଶୁଭଲକ୍ଷଣଯୁକ୍ତ ଥିଲେ । ଜଳରେ ଯେପରି ସୂର୍ଯ୍ୟବିମ୍ବର ଅନୁରୂପ ପ୍ରତିବିମ୍ବ ପ୍ରତିଫଳିତ ହୁଏ, ସେମାନେ ସେହିପରି ରାମଙ୍କ ଶରୀରରୁ ଜାତ ଦୁଇଜଣ ରାମଙ୍କ ପରି ଦେଖାଯାଉଥିଲେ ।

ଦିନେ ଋଷିମାନେ ଏକାଠି ବସିଥିବାବେଳେ ଲବ ଓ କୁଶ ଏପରି ସୁମଧୁର ଲଳିତ କଣ୍ଠରେ ରାମାୟଣ ଗାନ କରିବାକୁ ଲାଗିଲେ, ତାହା ଶୁଣି ସମସ୍ତଙ୍କ ଆଖିରେ ଲୁହ ଭରିଗଲା । ଆନନ୍ଦ ଓ ବିସ୍ମୟରେ ସେମାନେ 'ସାଧୁ ସାଧୁ' କହିବାକୁ ଲାଗିଲେ । ବହୁଦିନ ପୂର୍ବରୁ ଯାହା ସବୁ ଘଟିଥିଲା, ତାହା ସେମାନଙ୍କ ଆଖି ଆଗରେ ଘଟିଯାଉଥିବା ପରି ମନେହେଲା ଏବଂ ସେମାନେ ଗାୟକଦ୍ୱୟଙ୍କର ଉଚ୍ଛ୍ୱସିତ ପ୍ରଶଂସା କରିବାକୁ ଲାଗିଲେ । ଏଥିରେ ଉତ୍ସାହିତ ହୋଇ ସେମାନେ ଆହୁରି ମଧୁର ସ୍ୱରରେ ଗାଇବାକୁ ଲାଗିଲେ । ଜଣେ ମୁନି ଉଠିପଡ଼ି ସେମାନଙ୍କୁ ସଙ୍ଗେ ସଙ୍ଗେ ଏକ କଳସ ଉପହାର ଦେଲେ । ଆଉ ଜଣେ କୃଷ୍ଣସାର ମୃଗଚର୍ମ, କେହି କମଣ୍ଡଳୁ, କେହି ମୁଞ୍ଜଘାସର ମେଖଳା, ଜପାମାଳି ଓ ବଲ୍କଳ ଆଦି ଉପହାର ଦେବାକୁ ଲାଗିଲେ । ଉପସ୍ଥିତ ସମସ୍ତ ମୁନି ସେମାନଙ୍କୁ ଆନନ୍ଦରେ କୁଣ୍ଢାଇ ପକାଇ ବରଦାନ ଓ ଆଶୀର୍ବାଦ କରିବାକୁ ଲାଗିଲେ ।

ଲବ କୁଶ ଚାରିଆଡ଼େ ରାମାୟଣ ଗାଇ ଗାଇ ବୁଲିଲେ ଓ ସର୍ବତ୍ର ପ୍ରଶଂସାଭାଜନ ହେଲେ । ଦିନେ ସେମାନଙ୍କର ଏହି ଗାନରେ ରାମଚନ୍ଦ୍ର ନିଜେ ମୁଗ୍ଧ ହୋଇଗଲେ ଓ ସଭାରେ ସମସ୍ତଙ୍କ ଆଗରେ ରାମାୟଣ ଗାନ କରିବା ପାଇଁ ସେ ଦୁହିଁଙ୍କୁ ଆଦେଶ ଦେଲେ । ସେମାନଙ୍କର ରାମାୟଣଗାନ ସମସ୍ତ ସଭାସ୍ଥଳକୁ ଚମତ୍କୃତ କରିଦେଲା ।

ଏହିପରି କଳ୍ପନା, ଲେଖା ଓ ଗାନ ଦ୍ୱାରା ରାମାୟଣ ସଂସାରରେ ପ୍ରତିଷ୍ଠିତ ହେଲା ।

## ୪ ।। ଅଯୋଧ୍ୟା

ଯେଉଁ ବଂଶରେ ସଗରରାଜା ଜନ୍ମ ହୋଇଥିଲେ ଏବଂ ତାଙ୍କର ଷାଠିଏହଜାର ପୁତ୍ର ସାଗର ଖନନ କରିଥିଲେ, ତାହାହିଁ ହେଉଛି ଇକ୍ଷ୍ୱାକୁ ବଂଶ ଏବଂ ଏହି ବଂଶ କୋଶଳ ରାଜ୍ୟରେ ରାଜପଣ କରୁଥିଲେ । ସରଯୂ ନଦୀ ଶୋଭିତ ଏହି ବିଶାଳ କୋଶଳ ରାଜ୍ୟ ବହୁ ଧନଧାନ୍ୟ ସଂପନ୍ନ ଏକ ସମୃଦ୍ଧିଶାଳୀ ରାଜ୍ୟ ରୂପେ ପ୍ରସିଦ୍ଧ ଥିଲା ।

କୋଶଳ ରାଜ୍ୟର ରାଜଧାନୀ ଅଯୋଧ୍ୟା ସ୍ୱୟଂ ମାନବେନ୍ଦ୍ର ମନୁଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଦ୍ୱାଦଶ ଯୋଜନ ଦୀର୍ଘ ଓ ତିନି ଯୋଜନ ପ୍ରଶସ୍ତ ଏହି ମହାନଗରୀକୁ ସୁନ୍ଦର ଭାବରେ ନିର୍ମାଣ କରାଯାଇଥିଲା । ନଗର ବାହାରେ ମହାପଥ (ଜାତୀୟ ରାଜପଥ) ଓ ନଗର ଭିତରେ ରାଜପଥମାନ ନ୍ୟସ୍ତ କରାଯାଇଥିଲା । ସଡ଼କମାନଙ୍କରେ ଯେପରି ଧୂଳି ନ ଉଡ଼ିବ, ସେଥିପାଇଁ ପ୍ରତିଦିନ ପାଣି ଛିଞ୍ଚା ଯାଉଥିଲା ଓ ରାସ୍ତା ଦୁଇକଡ଼ରେ ଥିବା ଫୁଲଗଛମାନଙ୍କରୁ ଫୁଲ ଝଡ଼ି ରାସ୍ତା ଉପରେ ପଡୁଥିଲା । ନଗର ମଧ୍ୟରେ ତୋରଣ,

ଦ୍ୱାର ଆଦି ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କରେ ସ୍ଥାପନ କରାଯାଇଥିଲା । ବହୁ ଶିଳ୍ପୀ ଓ କାରିଗର ଏଠାରେ ରହୁଥିଲେ । ଅତୁଳ ପ୍ରଭାଯୁକ୍ତ ଏହି ନଗରର ଗରିମା ସୂତ, ମାଗଧ (କବି ଓ ଗାୟକମାନେ) ଗାନ କରୁଥିଲେ । ବହୁ ଉଦ୍ୟାନ ଓ ଆମ୍ରବନଶୋଭିତ ଏହି ନଗରୀର ଚତୁର୍ଦ୍ଦିଗରେ ଏକ ଘଞ୍ଚ ଶାଳବନ ଏହାର ମେଖଳା ପରି ଶୋଭା ପାଉଥିଲା । ନଗରୀର ପରିଖା ଗଭୀର ଜଳପୂର୍ଣ୍ଣ ଥିବାଯୋଗୁଁ କେହି ଏହା ମଧ୍ୟରେ ପଶିବା କଷ୍ଟକର ଥିଲା । ଗୋରୁ, ଗଧ, ଘୋଡ଼ା, ହାତୀ, ଓଟ ଆଦି ପଶୁରେ ଏହା ପରିପୂର୍ଣ୍ଣ ଥିଲା । ବହୁ ଦେଶରୁ ବଣିକମାନେ ଏଠାକୁ ବାଣିଜ୍ୟ କରିବାକୁ ଆସୁଥିଲେ ଏବଂ ସାମନ୍ତ ରାଜାମାନେ କର ଦେବାପାଇଁ ଠୁଳ ହେଉଥିଲେ ।

ସାମରିକ ଶକ୍ତିରେ ଅଯୋଧ୍ୟା ଅଜେୟ ଥିବାଯୋଗୁଁ ଏହା ଅଯୋଧ୍ୟା ନାମକୁ ସାର୍ଥକ କରୁଥିଲା । ସହସ୍ର ସହସ୍ର ରଥୀ, ମହାରଥୀ ଏହି ନଗରୀକୁ ରକ୍ଷାକରି ରହିଥିଲେ । ସଙ୍ଗୀତକଳାରେ ମଧ୍ୟ ଅଯୋଧ୍ୟା ଅତୁଳନୀୟ ଥିଲା ଏବଂ ବୀଣା, ପଣବ, ଦୁନ୍ଦୁଭି, ମୃଦଙ୍ଗ ଆଦି ବାଦ୍ୟରେ ଏହା ସଦା ମୁଖରିତ ରହୁଥିଲା । ବେଦବେଦାଙ୍ଗନିପୁଣ ବ୍ରାହ୍ମଣ ଓ ସତ୍ୟନିଷ୍ଠ ଋଷିମାନେ ଧର୍ମମାର୍ଗରେ ଲୋକଙ୍କୁ ପରିଚାଳିତ କରୁଥିଲେ ।

ଏହି ଅଯୋଧ୍ୟାର ରାଜା ଥିଲେ ଦଶରଥ, ଯେକି ବେଦଜ୍ଞ, ବୀର, ଧର୍ମନିଷ୍ଠ ଓ ପ୍ରଜାମାନଙ୍କର ପ୍ରିୟ ଥିଲେ । ଦଶରଥଙ୍କ ରାଜ୍ୟରେ ପ୍ରଜାମାନେ ଆନନ୍ଦରେ ରହୁଥିଲେ । କେହି ମୂର୍ଖ, ନାସ୍ତିକ ବା ମିଥ୍ୟାଚାରୀ ନ ଥିଲେ । ଲୋକେ ପରିଷ୍କାର ପରିଚ୍ଛନ୍ନ ରହି ମାଳା, ଚନ୍ଦନ, ଅତର ଆଦି ବ୍ୟବହାର କରୁଥିଲେ ଏବଂ ମୁକୁଟ, କୁଣ୍ଡଳ, ହାର ଆଦି ପରିଧାନ କରୁଥିଲେ । ଲୋକେ କୃତଜ୍ଞ, ବଦାନ୍ୟ, ବୀର ଓ ବିକ୍ରମୀ ଥିଲେ ଏବଂ ଦେବତା ଓ ଅତିଥିମାନଙ୍କର ସେବା କରୁଥିଲେ । କ୍ଷତ୍ରିୟମାନେ ବ୍ରାହ୍ମଣମାନଙ୍କୁ ମାନୁଥିଲେ, ବୈଶ୍ୟମାନେ କ୍ଷତ୍ରିୟମାନଙ୍କ କଥାରେ ଚାଲୁଥିଲେ ଏବଂ ଶୂଦ୍ରମାନେ ଅନ୍ୟ ତିନି ଜାତିର ସେବା କରୁଥିଲେ । ଅର୍ଥାତ୍ ଚାତୁର୍ବର୍ଣ୍ଣ୍ୟ ପ୍ରଥା ସମାଜରେ ପ୍ରତିଷ୍ଠିତ ଥିଲା । ଦଶରଥଙ୍କ ସମୟରେ ଅଯୋଧ୍ୟାର ଐଶ୍ୱର୍ଯ୍ୟ ଆହୁରି ବଢ଼ିଯାଇଥିଲା । କାମ୍ବୋଜ, ବାହ୍ଲୀକ ଓ ସିନ୍ଧୁ ଦେଶରୁ ଅଶ୍ୱମାନଙ୍କୁ ବାଛି ବାଛି ଅଣାଯାଉଥିଲା । ବିନ୍ଧ୍ୟାଚଳ ଓ ହିମାଳୟରୁ ବଳବାନ ହସ୍ତୀମାନଙ୍କୁ ଅଣାଯାଇ ତାଲିମ ଦିଆଯାଉଥିଲା । ନକ୍ଷତ୍ରମାନଙ୍କ ମଧ୍ୟରେ ଚନ୍ଦ୍ରମା ପରି, ଦେବତାମାନଙ୍କ ମଧ୍ୟରେ ମହେନ୍ଦ୍ରଙ୍କ ପରି ଅମିତତେଜା ରାଜା ଦଶରଥ ଅଯୋଧ୍ୟାର ଯଶ କୀର୍ତ୍ତି ବର୍ଦ୍ଧନ କରି ପୁତ୍ରପରି ପ୍ରଜାମାନଙ୍କୁ ପାଳନ କରୁଥିଲେ ।

ରାଜା ଦଶରଥଙ୍କର ନୀତିଶାସ୍ତ୍ରରେ ଧୁରନ୍ଧର ସୁମନ୍ତ୍ର ଆଦି ଆଠଜଣ ମନ୍ତ୍ରୀ ଥିଲେ ଏବଂ କୁଳଗୁରୁ ବଶିଷ୍ଠ ଓ ଋଷି ବାମଦେବ ତାଙ୍କର ପରାମର୍ଶଦାତା ରୂପେ କାର୍ଯ୍ୟ କରୁଥିଲେ । ଏହିପରି ମନ୍ତ୍ରୀ ଓ ଋଷିମାନଙ୍କ ସାହାଯ୍ୟରେ ରାଜ୍ୟଶାସନ କରୁଥିବା ଯୋଗୁଁ ରାଜା ଦଶରଥଙ୍କର କୀର୍ତ୍ତି ଚାରିଆଡ଼େ ପ୍ରସାରିତ ହୋଇଥିଲା ।

କିନ୍ତୁ ଏହି ସମସ୍ତ ସୁଖ, ଶାନ୍ତି ଓ ଐଶ୍ୱର୍ଯ୍ୟ ମଧ୍ୟରେ ଦଶରଥଙ୍କର ଗୋଟିଏ ଅଭାବ ରହିଥିଲା, ତାହା ହେଉଚି, ତାଙ୍କର କୌଣସି ସନ୍ତାନସନ୍ତତି ନ ଥିଲେ । ରାଜା ଏଥିପାଇଁ ଚିନ୍ତିତ ଥିଲେ ଏବଂ ବହୁ ପୂଜା ଯଜ୍ଞାନୁଷ୍ଠାନ ପରେ ପୁତ୍ର ନ ହେବାରୁ ସେ ମନ୍ତ୍ରୀ ସୁମନ୍ତ୍ର,

ପୁରୋହିତ ଓ କୁଳଗୁରୁ ବଶିଷ୍ଠଙ୍କୁ ଡାକି କହିଲେ, ପୁତ୍ର କାମନାରେ ସେ ଅଶ୍ୱମେଧ ଯଜ୍ଞ କରିବେ । ସୁମନ୍ତ୍ର ଓ ବଶିଷ୍ଠ ଏଥିରେ ସମ୍ମତି ଦେଲେ ।

ସରଯୂ ନଦୀ କୂଳରେ ବିଶାଳ ଯଜ୍ଞଭୂମି ପ୍ରସ୍ତୁତ ହେଲା । ଏଥିରେ ବିଭିନ୍ନ ଦେଶରୁ ନିମନ୍ତ୍ରିତ ରାଜା ଓ ଅତିଥିମାନଙ୍କ ପାଇଁ, ଯଜ୍ଞକର୍ମଚାରୀ ବ୍ରାହ୍ମଣ ଓ ପୁରବାସୀମାନଙ୍କ ନିମନ୍ତେ ଶହ ଶହ ଗୃହ, ଅତିଥିଭବନ, ସ୍ନାନାଗାର, ରନ୍ଧନଶାଳା ଓ ଭୋଜନାଗାର, ଅଶ୍ୱ ଓ ହସ୍ତୀଶାଳା ଆଦି ନିର୍ମାଣ କରାଗଲା ଏବଂ ତାହା ଅଯୋଧ୍ୟା ପାର୍ଶ୍ୱବର୍ତ୍ତୀ ଆଉଗୋଟି ଏକ ନୂତନ ନଗରୀ ଭାବରେ ଗଢ଼ିଉଠିଲା । ବସନ୍ତକାଳରେ ଯଜ୍ଞ ହେବ ବୋଲି ସ୍ଥିର ହେଲା ଏବଂ ଯଜ୍ଞର ସମସ୍ତ ଉପକରଣ ସଂଗ୍ରହ କରିବା ପାଇଁ ରାଜା ଦଶରଥ ମନ୍ତ୍ରୀ ଓ କର୍ମଚାରୀମାନଙ୍କୁ ଆଦେଶ ଦେଲେ । ସମସ୍ତ ସୈନ୍ୟ ଓ ସେନାପତିମାନଙ୍କ ଦ୍ୱାରା ସୁରକ୍ଷିତ ଯଜ୍ଞର ଅଶ୍ୱକୁ ଦେଶଦେଶାନ୍ତର ବୁଲିବା ପାଇଁ ଛାଡ଼ି ଦିଆଗଲା, ଯେପରିକି ରାଜନ୍ୟବର୍ଗ ଏହି ଅଶ୍ୱ ଜରିଆରେ ରାଜା ଦଶରଥଙ୍କ ପ୍ରତି ସେମାନଙ୍କର ଆନୁଗତ୍ୟ ଜ୍ଞାପନ କରିବେ ।

ମହାମନ୍ତ୍ରୀ ସୁମନ୍ତ୍ର କହିଲେ – ମହାରାଜ, ଆପଣଙ୍କର ଏହି ଯଜ୍ଞର ସଫଳତା ପାଇଁ ଆପଣ ଋଷି ବିଭାଣ୍ଡକଙ୍କର ପୁତ୍ର ଋଷ୍ୟଶୃଙ୍ଗଙ୍କୁ ଯଜ୍ଞର ପୁରୋଧା ରୂପେ ନିମନ୍ତ୍ରଣ କରନ୍ତୁ । ଥରେ ଅଙ୍ଗରାଜ୍ୟର ରାଜା ଲୋମପାଦ ତାଙ୍କ ରାଜ୍ୟରେ ଘୋର ଅନାବୃଷ୍ଟି ଦୂର କରିବା ପାଇଁ ତାଙ୍କୁ ବହୁ କଷ୍ଟରେ ଆଣି ଯଜ୍ଞ କରାଇଥିଲେ । ଅଙ୍ଗରାଜ୍ୟ ପୁଣି ଥରେ ସୁଜଳା ସୁଫଳା ହୋଇ ହସିଉଠିଲା ।

ଦଶରଥ ପଚାରିଲେ, ଲୋମପାଦ ଋଷ୍ୟଶୃଙ୍ଗଙ୍କୁ କିପରି କଷ୍ଟରେ ଆଣିଥିଲେ ? ଆମେ ତାଙ୍କୁ ଆଣିବା କଷ୍ଟକର ହେବ ନାହିଁ ତ ?

ସୁମନ୍ତ୍ର ଋଷ୍ୟଶୃଙ୍ଗଙ୍କର କାହାଣୀ ବର୍ଣ୍ଣନା କରି କହିଲେ, ବିଭାଣ୍ଡକ ଋଷିଙ୍କ ଆଶ୍ରମରେ ରହି ତାଙ୍କ ପୁତ୍ର ଋଷ୍ୟଶୃଙ୍ଗ ବ୍ରହ୍ମଚାରୀ ଭାବରେ ବେଦାଧ୍ୟୟନ କରୁଥିଲେ । ସ୍ତ୍ରୀସୁଖ ଭୋଗ ଦୂରର କଥା, ସେ କୌଣସି ସ୍ତ୍ରୀମୁଖ ଦର୍ଶନ କରି ନ ଥିଲେ । ନିର୍ଜନବନ ମଧ୍ୟରେ ପିତାଙ୍କର କଠୋର ଶାସନରେ ରହି ସେ ସାଧନାରେ ଜୀବନ ଯାପନ କରୁଥିଲେ । ଲୋମପାଦଙ୍କର ମନ୍ତ୍ରୀମାନେ ସ୍ଥିର କଲେ, ସୁନ୍ଦରୀ ବାରାଙ୍ଗନାମାନଙ୍କ ସାହାଯ୍ୟରେ କୌଶଳରେ ଋଷ୍ୟଶୃଙ୍ଗଙ୍କୁ ଅପହରଣ କରି ଅଣାଯାଇପାରିବ ।

ବାରାଙ୍ଗନାମାନେ ଆଶ୍ରମର ଅଳ୍ପ ଦୂରରେ ଅବସ୍ଥାନ କଲେ । ଦିନେ ଋଷ୍ୟଶୃଙ୍ଗ ଆଶ୍ରମ ବାହାରକୁ ଆସି ବୁଲୁ ବୁଲୁ ସେଠାରେ ପହଞ୍ଚିଗଲେ ଏବଂ ବିଚିତ୍ରବେଶା ସେହି ସୁନ୍ଦରୀ ରମଣୀମାନେ ମଧୁର ସ୍ୱରରେ ଗାନ କରୁଥିବାର ଦେଖିଲେ । ସେମାନେ ଋଷ୍ୟଶୃଙ୍ଗଙ୍କ ପାଖକୁ ଆସି କହିଲେ – ବ୍ରାହ୍ମଣ, ଆପଣ କିଏ ? କାହିଁକି ଏହି ନିର୍ଜନ ବନ ମଧ୍ୟରେ ଏକାକୀ ବୁଲୁଛନ୍ତି ? ଋଷ୍ୟଶୃଙ୍ଗ ନିଜର ପରିଚୟ ଦେଇ ସେମାନଙ୍କୁ ତାଙ୍କ ଆଶ୍ରମକୁ ନିମନ୍ତ୍ରଣ କଲେ । ସେମାନେ ଆସିବା ପରେ ଅର୍ଘ୍ୟ, ପାଦ୍ୟ, ଫଳମୂଳ ଦେଇ ସେମାନଙ୍କୁ ଅଭ୍ୟର୍ଥନା କଲେ । ବାରାଙ୍ଗନାମାନେ ତାହା ଗ୍ରହଣ କରି ଋଷ୍ୟଶୃଙ୍ଗଙ୍କୁ ଆନନ୍ଦରେ ଆଲିଙ୍ଗନ କଲେ ଏବଂ ତାଙ୍କ ସାଙ୍ଗରେ ଆଣିଥିବା ବିଭିନ୍ନ ମିଷ୍ଟାନ୍ନ ତାଙ୍କୁ ଖାଇବାକୁ ଦେଇ କହିଲେ, ଆମ୍ଭେମାନେ ଯେଉଁ ଫଳମୂଳ ଦେଉଛୁ, ଆପଣ ମଧ୍ୟ ତାକୁ ଭୋଜନ କରନ୍ତୁ ।

ବାରାଙ୍ଗନାମାନେ ଚାଲିଯିବା ପରେ, ଋଷ୍ୟଶୃଙ୍ଗ ସେମାନଙ୍କ ବିରହ ଅନୁଭବ କରିବାକୁ ଲାଗିଲେ ଏବଂ ପୁଣି ସେମାନଙ୍କର ସାକ୍ଷାତ ପାଇଁ ପରଦିନ ସକାଳେ ସେଠାକୁ ଗଲେ । ଏଥର ବାରାଙ୍ଗନାମାନେ ତାଙ୍କୁ କହିଲେ, ଆପଣ ଆମ୍ଭମାନଙ୍କର ଆଶ୍ରମକୁ ଆସନ୍ତୁ । ସେଠାରେ ଅନେକ ଆଶ୍ଚର୍ଯ୍ୟ ଫଳମୂଳ ଆପଣଙ୍କୁ ଖାଇବାକୁ ଦେବୁ । ସେମାନଙ୍କର ରୂପଲାବଣ୍ୟ ଓ ମଧୁର ବାକ୍ୟରେ ମୁଗ୍ଧ ହୋଇ ଋଷ୍ୟଶୃଙ୍ଗ ସେମାନଙ୍କ ସହିତ ଅଙ୍ଗଦେଶକୁ ଚାଲିଗଲେ । ସେଠାରେ ସେ ପହଞ୍ଚିବା ସଙ୍ଗେ ସଙ୍ଗେ ବହୁକାଳର ଅନାବୃଷ୍ଟି ଦୂର ହୋଇ ସଙ୍ଗେ ସଙ୍ଗେ ବର୍ଷା ହେବାକୁ ଲାଗିଲା । ଅଙ୍ଗରାଜ ତାଙ୍କୁ ସାଦର ଅଭ୍ୟର୍ଥନା କରି ନିଜ ଅନ୍ତଃପୁରକୁ ଘେନିଗଲେ ଏବଂ କନ୍ୟା ଶାନ୍ତାଙ୍କ ସହିତ ତାଙ୍କର ବିବାହ କରାଇଲେ । ଋଷ୍ୟଶୃଙ୍ଗ ଆନନ୍ଦରେ ରାଜପ୍ରାସାଦରେ ରହି ଦାମ୍ପତ୍ୟ ଜୀବନ ଯାପନ କଲେ ।

ଋଷ୍ୟଶୃଙ୍ଗଙ୍କର କାହାଣୀ ବର୍ଣ୍ଣନା କରି ଦଶରଥଙ୍କୁ ସୁମନ୍ତ୍ର କହିଲେ, ବର୍ତ୍ତମାନ ଲୋମପାଦଙ୍କର ଜାମାତା ଋଷ୍ୟଶୃଙ୍ଗଙ୍କୁ ଆପଣ ନିଜେ ଯାଇ ଆମନ୍ତ୍ରଣ କରନ୍ତୁ । ଦଶରଥ କୁଳଗୁରୁ ବଶିଷ୍ଠଙ୍କ ଅନୁମତି ନେଇ ରାଣୀ ଓ ଅମାତ୍ୟମାନଙ୍କୁ ସାଙ୍ଗରେ ଧରି ଅଙ୍ଗରାଜ୍ୟ ଯାତ୍ରା କଲେ ଏବଂ ଲୋମପାଦଙ୍କ ସାଦର ଆତିଥ୍ୟ ଗ୍ରହଣ କରି ତାଙ୍କ ଆସିବାର କାରଣ ଜଣାଇଲେ । ଦଶରଥ ଅଙ୍ଗରାଜଙ୍କୁ କହିଲେ, ହେ ଧର୍ମାତ୍ମା, ମୁଁ ସନ୍ତାନହୀନ, ଆପଣଙ୍କ ଜାମାତା ଋଷ୍ୟଶୃଙ୍ଗ ମୋର ସନ୍ତାନ ଉତ୍ପତ୍ତି ଓ କୁଳରକ୍ଷା ପାଇଁ ଯଜ୍ଞ ଅନୁଷ୍ଠାନ କରନ୍ତୁ । ଅଙ୍ଗରାଜ ପ୍ରତିଶ୍ରୁତି ଦେଇ ନିଜର ଜାମାତାଙ୍କୁ ଡାକି କହିଲେ – ଋଷିପୁତ୍ର, ରାଜା ଦଶରଥଙ୍କ କାର୍ଯ୍ୟ ସାଧନ ପାଇଁ ତୁମେ ଶାନ୍ତାଙ୍କୁ ସଙ୍ଗରେ ଧରି ଅଯୋଧ୍ୟା ଯାତ୍ରା କର । ଏହିପରି ଋଷ୍ୟଶୃଙ୍ଗ ପୁତ୍ରକାମୀ ଦଶରଥଙ୍କ ଯଜ୍ଞର ପୁରୋଧା ହେଲେ ।

## ୫ ।। ରାମଜନ୍ମ

ବସନ୍ତକାଳ ଉପସ୍ଥିତ ହେବାରୁ ଯଜ୍ଞର ନିର୍ଦ୍ଧାରିତ ସମୟ ଆସିଗଲା । ବହୁସଂଖ୍ୟାରେ ସ୍ଥପତି, ଶିଳ୍ପୀ, ସୂତ୍ରଧର, ଖନକ, ଗଣକ, ନଟ, ନର୍ତ୍ତକ ଓ ଶାସ୍ତ୍ରଜ୍ଞ ପଣ୍ଡିତଗଣ ଯଜ୍ଞସ୍ଥଳକୁ କର୍ମମୁଖର କରୁଥିଲେ । ବର୍ଷକ ପୂର୍ବେ ଯେଉଁ ଅଶ୍ୱକୁ ଛଡ଼ା ଯାଇଥିଲା, ସେ ଫେରିଆସିଲା । ମିଥିଳାର ରାଜା ଜନକଙ୍କ ସମେତ କାଶୀ, କେକୟ, ଅଙ୍ଗ ଓ ମଗଧାଦି ଦେଶର ରାଜାମାନେ ନିମନ୍ତ୍ରିତ ହୋଇ ଉପସ୍ଥିତ ହେଲେ । ବଶିଷ୍ଠଙ୍କ ନେତୃତ୍ୱରେ ତପୋନିଷ୍ଠ ବ୍ରାହ୍ମଣ ଓ ଋଷିମାନେ ଋଷ୍ୟଶୃଙ୍ଗଙ୍କୁ ଅଗ୍ରବର୍ତ୍ତୀ କରି ଯଜ୍ଞକର୍ମ ଆରମ୍ଭ କଲେ । ରାଜା ତାଙ୍କର ମହିଷୀମାନଙ୍କ ସହିତ ଯଜ୍ଞର ଦୀକ୍ଷା ଗ୍ରହଣ କଲେ । ହୋତାଗଣ ମନ୍ତ୍ରଦ୍ୱାରା ଦେବତାମାନଙ୍କୁ ଆହ୍ୱାନ କରି ଯଥାବିଧି ହବିର୍ଭାଗ ଦାନ କଲେ ।

ଯଜ୍ଞାଶ୍ୱକୁ ବଧ କରାଯାଇ ତାର ମେଦକୁ ପାକ କରାଗଲା ଏବଂ ସ୍ୱର୍ଣ୍ଣପକ୍ଷ ଗରୁଡ଼ ପରି ଯେଉଁ ହୋମାଗ୍ନି ଜଳୁଥିଲା, ତିନିଦିନ କାଳ ସେଥିରେ ତାହାକୁ ଆହୁତି ଦିଆଗଲା । ଅଶ୍ୱମେଧ ଯଜ୍ଞ ଶେଷ ହେବାପରେ ରାଜା ଦଶରଥ ଉପସ୍ଥିତ ଯଜ୍ଞକାରୀ ଋତ୍ୱିକମାନଙ୍କୁ

ନିୟମ ଅନୁସାରେ ତାଙ୍କର ଶାସିତ ପୃଥିବୀକୁ ଦାନ କଲେ । ଋତ୍ୱିକମାନେ କହିଲେ, ହେ ନିଷ୍ପାପ ରାଜା, ଆମର ଏ ପୃଥିବୀ କ'ଣ ହେବ ? ଆମେ ଏହାକୁ ପାଳନ କରିବାକୁ ଅସମର୍ଥ । ଆପଣ ହିଁ ଏକାକୀ ଏହାର ରକ୍ଷା ଓ ପାଳନ କରିପାରିବେ । ଏହାପରେ ରାଜା ଦଶରଥ ସେମାନଙ୍କୁ ପ୍ରଚୁର ପରିମାଣରେ ସ୍ୱର୍ଣ୍ଣ, ଧନରତ୍ନ ଓ ଲକ୍ଷ ଲକ୍ଷ ସଂଖ୍ୟାରେ ଦୁଗ୍ଧବତୀ ଗାଭୀ ଦାନ କଲେ ।

ଋଷି ଓ ବ୍ରାହ୍ମଣମାନେ ସନ୍ତୁଷ୍ଟ ହେବା ପରେ ରାଜା ଋଷ୍ୟଶୃଙ୍ଗଙ୍କୁ ନିବେଦନ କରି କହିଲେ – ସୁବ୍ରତ, ଆପଣ ମୋର କୁଳବର୍ଦ୍ଧନ କରିବା ପାଇଁ ଏବେ ଯାହା କରିବାର କଥା କରନ୍ତୁ । ଋଷ୍ୟଶୃଙ୍ଗ କହିଲେ – ରାଜା, ବର୍ତ୍ତମାନ ମୁଁ ସେହି କାର୍ଯ୍ୟ କରିବାକୁ ଯାଉଛି । ତୁମେ କିପରି କୁଳବର୍ଦ୍ଧନକାରୀ ଯଶସ୍ୱୀ ପୁତ୍ରମାନଙ୍କୁ ଲାଭ କରିବ, ସେଥିପାଇଁ ଅଥର୍ବ ବେଦମନ୍ତ୍ର ଦ୍ୱାରା ସିଦ୍ଧ ପୁତ୍ରେଷ୍ଟି ଯଜ୍ଞ ମୁଁ ଆରମ୍ଭ କରିବି ।

ପୁତ୍ରେଷ୍ଟି ଯଜ୍ଞ ଆରମ୍ଭ ହେଲା । ଯଜ୍ଞରେ ହବିର୍ଭାଗ ଗ୍ରହଣ କରିବା ପାଇଁ ଦେବତାମାନଙ୍କୁ ନିମନ୍ତ୍ରଣ କରାଯିବା ସମୟରେ ଦେବତାମାନେ ବ୍ରହ୍ମାଙ୍କ ନିକଟକୁ ଯାଇ କହିଲେ – ପରମେଷ୍ଠି, ଆପଣଙ୍କ ବରରେ ବଳୀୟାନ ରାକ୍ଷସରାଜ ରାବଣ ବଳଦର୍ପରେ କାହାରିକୁ ମାନୁ ନାହିଁ । ବର୍ତ୍ତମାନ ଦେବତା, ଋଷି, ଯକ୍ଷ, ଗନ୍ଧର୍ବ, ଅସୁର, ବ୍ରାହ୍ମଣ ସମସ୍ତେ ତାର ଅତ୍ୟାଚାରରେ ଉତ୍ପୀଡ଼ିତ । ଦେବତାମାନେ ଇନ୍ଦ୍ରଙ୍କ ସମେତ ମହାଭୟରେ କାଳଯାପନ କରୁଛନ୍ତି । ପ୍ରଚଣ୍ଡ ସୂର୍ଯ୍ୟ ବା ପ୍ରଖର ପବନ ତାର କିଛି କରିପାରୁ ନାହିଁ । ସମୁଦ୍ରର କରାଳ ଲହରୀମାନ ତାକୁ ଦେଖି ସ୍ଥିର ହୋଇଯାଉଛି । ବର୍ତ୍ତମାନ ଆପଣ ରାବଣ ବଧର ଉପାୟ କରନ୍ତୁ ।

ବ୍ରହ୍ମା ଟିକିଏ ଚିନ୍ତାକରି କହିଲେ – ରାବଣ ବର ମାଗିଥିଲା, ଦେବ, ଦାନବ, ଯକ୍ଷ, ଗନ୍ଧର୍ବ କେହି ତାକୁ ମାରିପାରିବେ ନାହିଁ । ସେ ମନୁଷ୍ୟମାନଙ୍କୁ ଏତେ ଅବଜ୍ଞା କରେ ଯେ ସେମାନଙ୍କ କଥା କହି ନ ଥିଲା । ତେଣୁ ମନୁଷ୍ୟଦ୍ୱାରା ହିଁ ରାବଣର ବଧ ସମ୍ଭବ ହେବ । ତୁମେ ବର୍ତ୍ତମାନ ବିଷ୍ଣୁଙ୍କର ଶରଣାଗତ ହୁଅ । ଦେବତାମାନେ ବିଷ୍ଣୁଙ୍କ ଶରଣାଗତ ହୋଇ କହିଲେ – ଭଗବାନ୍, ଜଗତର ମଙ୍ଗଳପାଇଁ ଆପଣ ପରମ ଧାର୍ମିକ, ତେଜସ୍ୱୀ ରାଜା ଦଶରଥଙ୍କର ପୁତ୍ରରୂପେ ଜନ୍ମଗ୍ରହଣ କରନ୍ତୁ । ଦୃପ୍ତ ରାକ୍ଷସ ରାବଣ ଦେବତାମାନଙ୍କର ଅବଧ୍ୟ । ସେ ବଳଗର୍ବରେ ଇନ୍ଦ୍ର ଚନ୍ଦ୍ର କାହାରିକୁ ମାନୁ ନାହିଁ । ସମସ୍ତେ ତାର ପୀଡ଼ାରେ ଅଥୟ ହେଲେଣି । ହେ ଶତ୍ରୁସଂହାରକ, ଶରଣରକ୍ଷକ, ଆପଣ ନରଜନ୍ମରେ ରାବଣକୁ ସଂହାର କରି ସଂସାରରେ ଧର୍ମପ୍ରତିଷ୍ଠା କରନ୍ତୁ ଏବଂ ଆମ୍ଭମାନଙ୍କୁ ଅଭୟ ଦାନ କରନ୍ତୁ । ବିଷ୍ଣୁ କହିଲେ, ମୁଁ ତୁମମାନଙ୍କ ମଙ୍ଗଳ ନିମନ୍ତେ ଦେବତା ଓ ଋଷିମାନଙ୍କର ଉତ୍ପୀଡ଼କ ସେହି ଦୁରାତ୍ମା ରାବଣକୁ ସବଂଶ ନିଧନ କରିବା ପାଇଁ ନିଜକୁ ଚାରିଭାଗରେ ବିଭକ୍ତ କରି ରାଜା ଦଶରଥଙ୍କ ପୁତ୍ରରୂପେ ଜନ୍ମ ଗ୍ରହଣ କରିବି ।

ଦେବତାମାନେ ଆନନ୍ଦରେ ଦଶରଥଙ୍କ ପୁତ୍ରେଷ୍ଟି ଯଜ୍ଞର ହବିର୍ଭାଗ ଗ୍ରହଣ କରିବାକୁ ବାହାରିଲେ ।

ଏହି ସମୟରେ ଦଶରଥଙ୍କ ହୋମାଗ୍ନି ମଧ୍ୟରୁ ଏକ ଅତୁଳନୀୟ ପ୍ରଭାବିଶିଷ୍ଟ ମହାବୀର୍ଯ୍ୟଶାଳୀ ବିରାଟ କୃଷ୍ଣବର୍ଣ୍ଣ ପୁରୁଷ ଆବିର୍ଭୂତ ହେଲେ । ସେ ରକ୍ତବର୍ଣ୍ଣ ବସ୍ତ୍ର

ପିନ୍ଧିଥିଲେ ଏବଂ ତାଙ୍କର ଆରକ୍ତ ମୁହଁରୁ ଦୁନ୍ଦୁଭିର ସ୍ୱର ପରି ସ୍ୱର ନିର୍ଗତ ହେଉଥିଲା । ତାଙ୍କର ଶ୍ମଶ୍ରୁ ଓ କେଶ ସିଂହର କେଶରପରି । ସେ ତପ୍ତକାଞ୍ଚନମୟ ଏକ ପାତ୍ର ହସ୍ତରେ ଧାରଣ କରିଥିଲେ । ସୂର୍ଯ୍ୟ ଓ ଅଗ୍ନିପରି ତେଜୀୟାନ୍ ସେହି ଦିବ୍ୟପୁରୁଷ ଦଶରଥଙ୍କ ଆଡ଼କୁ ଚାହିଁ କହିଲେ – ରାଜା, ମୁଁ ପ୍ରଜାପତି ବ୍ରହ୍ମାଙ୍କ ନିର୍ଦ୍ଦେଶରେ ତୁମର ପୁତ୍ରଲାଭ ପାଇଁ ଏହି ପାୟସପୂର୍ଣ୍ଣ ପାତ୍ର ଦେବାପାଇଁ ଆସିଛି । ତୁମର ପତ୍ନୀମାନଙ୍କୁ ଏହି ପାୟସ ଖାଇବାକୁ ଦେଇ ଅଭିଳଷିତ ପୁତ୍ର ସନ୍ତାନ ଲାଭକର ।

ରାଜା ଦଶରଥଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ସେଇ ପାୟସ ନେଇ ଅଧେ ଜ୍ୟେଷ୍ଠମହିଷୀ କୌଶଲ୍ୟାଙ୍କୁ ଦାନ କଲେ । ବାକି ଅଧକର ଅଧା ସାନରାଣୀ ସୁମିତ୍ରାଙ୍କୁ ଦେଲେ । ବାକି ଯାହା ରହିଲା ତାର ଅଧେ କୈକେୟୀଙ୍କୁ ଦେଲେ । ଅବଶିଷ୍ଟ ପୁଣି ସୁମିତ୍ରାଙ୍କୁ ଦାନ କଲେ । ରାଣୀମାନେ ଗର୍ଭଧାରଣ କରି ଯଥାସମୟରେ ପୁତ୍ରବତୀ ହେଲେ ।

ଚୈତ୍ର ଶୁକ୍ଳନବମୀ ତିଥିରେ ପୁନର୍ବସୁ ନକ୍ଷତ୍ରରେ ପାଞ୍ଚଟି ଗ୍ରହ ନିଜ ନିଜ ଉଚ୍ଚସ୍ଥାନରେ ଥିବାବେଳେ ମହାରାଣୀ କୌଶଲ୍ୟାଙ୍କର ସର୍ବଲକ୍ଷଣସଂପନ୍ନ ଏକ ପୁତ୍ରସନ୍ତାନ ଜାତ ହେଲା । ବିଷ୍ଣୁଙ୍କର ଅର୍ଦ୍ଧାଂଶସମ୍ଭୂତ ସେହି ମହାତେଜସ୍ୱୀ ପୁତ୍ର ରାମନାମରେ ଖ୍ୟାତ ହୋଇ ଇକ୍ଷ୍ୱାକୁବଂଶର ଶୋଭା ବର୍ଦ୍ଧନ କଲେ । କୈକେୟୀଙ୍କ ଗର୍ଭରୁ ଜନ୍ମହେଲେ ସମସ୍ତଗୁଣଯୁକ୍ତ ସତ୍ୟବ୍ରତ ଭରତ । ଅଶ୍ଳେଷା ନକ୍ଷତ୍ରରେ ସୂର୍ଯ୍ୟ କର୍କଟ ରାଶିରେ ଥିବାବେଳେ ସୁମିତ୍ରାଙ୍କର ଦୁଇଟି ଦୀପ୍ତିମାନ୍ ପୁତ୍ର ଲକ୍ଷ୍ମଣ ଓ ଶତ୍ରୁଘ୍ନ ଜନ୍ମଲାଭ କଲେ । ଏହିପରି ବିଷ୍ଣୁ ଚାରୋଟି ଅଂଶରେ ରାଜା ଦଶରଥଙ୍କ ତିନିରାଣୀଙ୍କ ଗର୍ଭରୁ ସଂସାରର ପାପତାପ ହରଣ ପାଇଁ ନରଜନ୍ମ ଗ୍ରହଣ କଲେ ।

ଦେବତାମାନେ ମଧ୍ୟ ବିଷ୍ଣୁଙ୍କୁ ସାହାଯ୍ୟ କରିବା ପାଇଁ ବିଭିନ୍ନ ରୂପରେ ସଂସାରରେ ବୀର ସନ୍ତାନ ଉତ୍ପାଦନ କଲେ । ଇନ୍ଦ୍ର ବାଳୀକୁ ଓ ସୂର୍ଯ୍ୟ ସୁଗ୍ରୀବଙ୍କୁ, ବୃହସ୍ପତି ତାରଙ୍କୁ, କୁବେର ଗନ୍ଧମାଦନଙ୍କୁ, ବିଶ୍ୱକର୍ମା ନଳଙ୍କୁ, ଅଗ୍ନି ନୀଳଙ୍କୁ ପୁତ୍ରରୂପେ ଉତ୍ପାଦନ କଲେ । ବରୁଣ ସୁଷେଣଙ୍କୁ ଏବଂ ଅଶ୍ୱିନୀକୁମାର ମୈନ୍ଦ ଓ ଦ୍ୱିବିଦଙ୍କୁ ଜାତ କଲେ । ଅଞ୍ଜନାଙ୍କ ଗର୍ଭରୁ ପବନପୁତ୍ର ମହାବଳଶାଳୀ, ବୁଦ୍ଧିମାନ ଓ ତେଜସ୍ୱୀ ହନୁମାନଙ୍କର ଜନ୍ମ ହେଲା । ହଜାର ହଜାର ସଂଖ୍ୟାରେ ଦେବତା, ଗନ୍ଧର୍ବ, କିନ୍ନର, ବିଦ୍ୟାଧରମାନଙ୍କ ଔରସରେ ଭଲ୍ଲୁକ ଓ ବାନରବୀରମାନେ ଜନ୍ମ ଗ୍ରହଣ କଲେ ।

## ୬ ॥ ବିଶ୍ୱାମିତ୍ର

ରାଜକୁମାରମାନେ କାଳକ୍ରମେ ଉପଯୁକ୍ତ ଗୁରୁଙ୍କ ତତ୍ତ୍ୱାବଧାନରେ ଶାସ୍ତ୍ର ଓ ଶସ୍ତ୍ରବିଦ୍ୟା ଶିକ୍ଷାକଲେ । ସେମାନେ ସମସ୍ତେ ବୀର, ବେଦଜ୍ଞ, ଲୋକହିତରେ ରତ ଓ ସମସ୍ତ ଜ୍ଞାନ ଗୁଣରେ ଅଳଙ୍କୃତ ଥିଲେ । ତେଜସ୍ୱୀ ଓ ପରାକ୍ରମଶାଳୀ ରାମଚନ୍ଦ୍ର ନିର୍ମଳ ଚନ୍ଦ୍ରମା ପରି

ସମସ୍ତଙ୍କର ପ୍ରିୟଭାଜନ ହୋଇଥିଲେ । ସେ ହସ୍ତୀ, ଅଶ୍ୱ, ରଥଚାଳନା ଓ ଧନୁର୍ବିଦ୍ୟାରେ ପାରଙ୍ଗମ ଥିଲେ ଓ ପିତାଙ୍କର ସେବାରେ ନିଜକୁ ନିୟୋଜିତ କରୁଥିଲେ· । ବାଲ୍ୟକାଳରୁ ଲକ୍ଷ୍ମଣ ଥିଲେ ରାମଙ୍କପ୍ରତି ସବୁଠାରୁ ଅନୁରକ୍ତ । ସେ ରାମଙ୍କର ଦ୍ୱିତୀୟ ପ୍ରାଣପରି ଥିଲେ । ରାମଚନ୍ଦ୍ରଙ୍କୁ ମଧ୍ୟ ଲକ୍ଷ୍ମଣଙ୍କ ବିନା ନିଦ୍ରା ହେଉ ନ ଥିଲା । ରାମଲକ୍ଷ୍ମଣଙ୍କ ପରି ଭରତ ଓ ଶତ୍ରୁଘ୍ନଙ୍କ ମଧ୍ୟରେ ସେହିପରି ସ୍ନେହଭାବ ରହିଥିଲା ।

ତାଙ୍କର ଚାରୋଟିଯାକ ପୁଅ ଏପରି ବିଦ୍ୱାନ, ଗୁଣଜ୍ଞ ଓ ବୀର ହୋଇ ସମସ୍ତ ଲୋକଙ୍କର ପ୍ରିୟ ହେବା ଯୋଗୁଁ ଦଶରଥଙ୍କର ଆନନ୍ଦ ବଢ଼ିବାକୁ ଲାଗିଲା । ଦିନେ ରାଜା ତାଙ୍କର ଅମାତ୍ୟ ଓ ବନ୍ଧୁମାନଙ୍କ ସହିତ ପୁଅମାନଙ୍କୁ ବିବାହ ଦେବା ବିଷୟରେ ଚିନ୍ତା କରୁଛନ୍ତି, ଏହି ସମୟରେ ମହାମୁନି ବିଶ୍ୱାମିତ୍ର ରାଜଦର୍ଶନପାଇଁ ପହଞ୍ଚିଲେ । ରାଜା ସଙ୍ଗେ ସଙ୍ଗେ ନିଜର ପୁରୋହିତମାନଙ୍କୁ ଧରି ସେହି ମହାତପସ୍ୱୀ ଗାଧିନନ୍ଦନ ବିଶ୍ୱାମିତ୍ରଙ୍କୁ ପାଛୋଟି ଆଣିଲେ । ବିଶ୍ୱାମିତ୍ର ରାଜାଙ୍କର କୁଶଳ ଜିଜ୍ଞାସା କରି ବଶିଷ୍ଠଙ୍କ ପାଖକୁ ଯାଇ ତାଙ୍କର ମଧ୍ୟ କୁଶଳ ଜିଜ୍ଞାସା କଲେ ।

ଦଶରଥ ବିଶ୍ୱାମିତ୍ରଙ୍କୁ ଅତ୍ୟନ୍ତ ଆନନ୍ଦରେ ପୂଜା ଏବଂ ଅଭ୍ୟର୍ଥନା କରି କହିଲେ, ହେ ବ୍ରହ୍ମର୍ଷି, ମୁଁ ଆପଣଙ୍କର ସ୍ୱାଗତ ଅଭିବାଦନ କରୁଛି । ଆପଣଙ୍କର ଶୁଭାଗମନ ମୋତେ ଅମୃତଲାଭ ପରି, ଅନାବୃଷ୍ଟିରେ ବର୍ଷାପରି, ଅପୁତ୍ରକ ବ୍ୟକ୍ତିର ପୁତ୍ରଲାଭ ପରି ଆନନ୍ଦ ଦାନ କରିଛି । ମହାମୁନି, ଆପଣଙ୍କର ମୁଁ କି ପ୍ରିୟ ସାଧନ କରିପାରିବି, କହନ୍ତୁ । ଆପଣଙ୍କପରି ମହାଶକ୍ତିସଂପନ୍ନ ପରମ ତେଜସ୍ୱୀଙ୍କର ଆଗମନରେ ମୋର ଜନ୍ମ ଓ ଜୀବନ ସଫଳ ହୋଇଛି । ଆପଣ ବିନା ଦ୍ୱିଧାରେ ଆଦେଶ ଦିଅନ୍ତୁ, ମୁଁ ତତ୍‌କ୍ଷଣାତ୍ ସଂପାଦନ କରିବି ।

ଦଶରଥଙ୍କ ଅଭିବାଦନରେ ସନ୍ତୁଷ୍ଟ ହୋଇ ବିଶ୍ୱାମିତ୍ର କହିଲେ – ମହାରାଜ, ଆପଣ ଇକ୍ଷ୍ୱାକୁ ବଂଶରେ ଜନ୍ମ ଏବଂ ବଶିଷ୍ଠ ଆପଣଙ୍କ ଗୁରୁ ଓ ପରାମର୍ଶଦାତା । ତେଣୁ ଆପଣ ଯାହା କହୁଛନ୍ତି, ସେଥିପାଇଁ ମୁଁ ଆନନ୍ଦିତ । ମୁଁ ବର୍ତ୍ତମାନ ଏକ ମହାଯଜ୍ଞ କରୁଛି । ତାହା ଶେଷ ହେବା ବେଳକୁ ଦୁଇଜଣ ଶକ୍ତିଶାଳୀ ଅସ୍ତ୍ରଧାରୀ ରାକ୍ଷସ ମାରୀଚ ଓ ସୁବାହୁ ସେଥିରେ ବିଘ୍ନ ଘଟାଉଛନ୍ତି । ସେମାନେ ଯଜ୍ଞବେଦୀରେ ମାଂସ ଓ ରକ୍ତରାଶି ବର୍ଷା କରି ମୋର ପବିତ୍ର ଯଜ୍ଞକୁ ଭଗ୍ନ କରିବା ଯୋଗୁଁ ମୁଁ ଏଠାକୁ ଚାଲିଆସିଛି । ସେ ଯଜ୍ଞର ନିୟମ ଅନୁସାରେ ମୁଁ ସେମାନଙ୍କ ପ୍ରତି କ୍ରୋଧ ପ୍ରକାଶ କରି ଅଭିଶାପ ଦେଇପାରିବି ନାହିଁ । ତୁମର ଧନୁର୍ଦ୍ଧର ବୀରପୁତ୍ର ରାମଚନ୍ଦ୍ର ରାକ୍ଷସମାନଙ୍କୁ ସଂହାର କରି ମୋର ଯଜ୍ଞ ରକ୍ଷା କରିପାରିବେ । ରାମଙ୍କ ଛଡ଼ା କେହି ତାଙ୍କର ବିନାଶ କରିପାରିବେ ନାହିଁ । ମହାରାଜ, ରାମଚନ୍ଦ୍ରଙ୍କୁ ମୋ ସହିତ ଯିବା ପାଇଁ ଅନୁମତି ଦିଅ । ଆଜିଠାରୁ ଦଶଦିନ ମଧ୍ୟରେ ଏ ଯଜ୍ଞରକ୍ଷା କାର୍ଯ୍ୟ ଶେଷ ହେବା ଦରକାର । ସେହି କାର୍ଯ୍ୟରେ ତୁମ ପୁତ୍ରର ମଧ୍ୟ ଯଶ ବୃଦ୍ଧି ହେବ । ତେଣୁ ଆଉ ବିଳମ୍ବ ନ କରି ନିଜର ପ୍ରତିଶ୍ରୁତି ରକ୍ଷା କର ।

ବିଶ୍ୱାମିତ୍ରଙ୍କ କଥା ଶୁଣି ଦଶରଥ ସଂଜ୍ଞାହୀନ ହେବାପରି ଅନୁଭବ କଲେ । ସେ ଅତ୍ୟନ୍ତ ଭୟଭୀତ ହୋଇ ବିଷଣ୍ଣ ଭାବରେ ବସିରହିଲେ । ତା ପରେ ଧୀରେ ଧୀରେ କହିଲେ, ମୋର ପୁତ୍ରର ବୟସ ମାତ୍ର ପନ୍ଦର ବର୍ଷ । ସେ ରାକ୍ଷସମାନଙ୍କ ସହିତ କିପରି

ଲଢ଼ିପାରିବ ? ରାକ୍ଷସମାନେ କପଟଯୁଦ୍ଧରେ ନିପୁଣ । ଅସ୍ତ୍ରଶିକ୍ଷାରେ ସଂପୂର୍ଣ୍ଣ ଦକ୍ଷତା ଲାଭ କରିନଥିବା ଏପରି ବାଳକକୁ ରାକ୍ଷସମାନଙ୍କ ସହିତ ଲଢ଼ିବା ପାଇଁ ପଠାଇ ମୁଁ ମୁହୂର୍ତ୍ତେ ବଞ୍ଚିପାରିବି ନାହିଁ । ମହାମୁନି, ଆପଣ ରାମଙ୍କୁ ନ ନେଇ ଚତୁରଙ୍ଗ ସେନା ସହିତ ମୋତେ ସାଙ୍ଗରେ ନିଅନ୍ତୁ । ମୋର ଯୋଦ୍ଧାମାନେ ସମସ୍ତେ ଶସ୍ତ୍ରନିପୁଣ ଓ ପରାକ୍ରମୀ । ମୁଁ ଏବଂ ମୋର ସୈନ୍ୟମାନେ ସେହି ଯଜ୍ଞଭଙ୍ଗକାରୀ ରାକ୍ଷସମାନଙ୍କ ସହିତ ପ୍ରାଣପଣେ ଯୁଦ୍ଧ କରିବୁ । ମହର୍ଷି, ଏ ମାରୀଚ ଓ ସୁବାହୁ କିଏ ? କାହାଦ୍ୱାରା ସୁରକ୍ଷିତ ହୋଇ ସେମାନେ ଏପରି ଦୁରାଚାରୀ ହୋଇଛନ୍ତି ?

ବିଶ୍ୱାମିତ୍ର କହିଲେ, ମହାବଳବାନ ରାକ୍ଷସ ମାରୀଚ ଓ ସୁବାହୁ ରାକ୍ଷସରାଜ ରାବଣଦ୍ୱାରା ସୁରକ୍ଷିତ । ରାବଣ ବିଶ୍ରବାମୁନିଙ୍କର ପୁତ୍ର ଓ କୁବେରଙ୍କର ଭ୍ରାତା । ସେ ବ୍ରହ୍ମାଙ୍କ ବରରେ ମହାବଳଶାଳୀ ହୋଇ ତ୍ରିଭୁବନକୁ ଉତ୍ପୀଡ଼ିତ କରୁଚି । ସେ ନିଜେ ମୁନିଋଷିଙ୍କର ଯଜ୍ଞରେ ବିଘ୍ନ ଘଟାଇବାକୁ ଆସେ ନାହିଁ । ତାର ଅନୁଚରମାନେ ତା'ଦ୍ୱାରା ପ୍ରେରିତ ହୋଇ ଏହି କାର୍ଯ୍ୟ କରନ୍ତି । ମାରୀଚ ଓ ସୁବାହୁ ପ୍ରବଳ ପରାକ୍ରାନ୍ତ ରାକ୍ଷସରାଜ ଦ୍ୱାରା ପ୍ରେରିତ ହୋଇ ଏହି ବିଘ୍ନ ଘଟାଉଛନ୍ତି ।

ରାବଣର ନାମ ଶୁଣି ଦଶରଥ ଥରିଉଠିଲେ । ସେ କହିଲେ – ଧର୍ମଜ୍ଞ, ଆପଣ ମୋ' ପ୍ରତି ପ୍ରସନ୍ନ ହୁଅନ୍ତୁ । ରାମ ବାଳକମାତ୍ର । ସେ ରାବଣର ଶକ୍ତି ବିରୋଧରେ ଠିଆ ହୋଇପାରିବ ନାହିଁ । ଦେବତା, ଗନ୍ଧର୍ବ, ଯକ୍ଷ, ନାଗ, ଦାନବ କେହି ରାବଣର ବିକ୍ରମ ସହିପାରନ୍ତି ନାହିଁ । ରାବଣ ଯୁଦ୍ଧରେ ବୀର୍ଯ୍ୟଶାଳୀମାନଙ୍କର ବୀର୍ଯ୍ୟ ହରଣକରେ । ମୁଁ ମଧ ମୋର ବଳଶାଳୀ ସୈନ୍ୟମାନଙ୍କୁ ନେଇ ରାବଣ ବିରୋଧରେ ଲଢ଼ିପାରିବି ନାହିଁ । ମୁନିପୁଙ୍ଗବ, ମୁଁ ମୋର ପୁତ୍ରକୁ ଆପଣଙ୍କ ସହିତ ପଠାଇପାରିବି ନାହିଁ । ମୋତେ ସଦୟ ହୋଇ କ୍ଷମା କରନ୍ତୁ ।

ଦଶରଥଙ୍କର କଥାଶୁଣି ବିଶ୍ୱାମିତ୍ର କ୍ରୋଧରେ ଉତ୍ତର ଦେଲେ – ରାଜା, ତୁମର ପ୍ରତିଶ୍ରୁତିର କ'ଣ କୌଣସି ମୂଲ୍ୟ ନାହିଁ ? ବଚନଭଙ୍ଗ କେବେହେଲେ ରଘୁକୁଳର ରୀତି ନୁହେଁ । ଏହା କୁଳଧ୍ୱଂସର ଲକ୍ଷଣ । ହେ ପ୍ରତିଜ୍ଞାଭଙ୍ଗକାରୀ ରାଜା, ତୁମେ ଏହାକରି ଯଦି ସୁଖୀ ହୋଇ ରହିପାରିବ, ରହ । ମୁଁ ଯେଉଁଠୁ ଆସିଛି, ସେଠାକୁ ଫେରିଯାଉଛି ।

ବିଶ୍ୱାମିତ୍ରଙ୍କ କ୍ରୋଧରେ ବସୁଧା ଥରହର ହେଲା ଓ ଦେବତାମାନେ ଭୟଭୀତ ହୋଇଗଲେ । ସ୍ଥିତଧୀ ବଶିଷ୍ଠ କହିଲେ – ମହାରାଜ, ସ୍ୱଧର୍ମ ତ୍ୟାଗ କରିବା ରାଜା ପକ୍ଷରେ ଉଚିତ ନୁହେଁ । ତୁମେ ବିଶ୍ୱାମିତ୍ରଙ୍କୁ ଯେଉଁ ପ୍ରତିଶ୍ରୁତି ଦେଇଚ, ତାହା ରକ୍ଷାକର । ରାମଙ୍କୁ ତାଙ୍କ ସହିତ ଛାଡ଼ିଦିଅ । ଅଗ୍ନିଦ୍ୱାରା ରକ୍ଷିତ ଅମୃତକୁ ଯେପରି ରାକ୍ଷସମାନେ ନେଇପାରି ନ ଥିଲେ, ସେହିପରି ବିଶ୍ୱାମିତ୍ରଙ୍କ ଦ୍ୱାରା ରକ୍ଷିତ ରାମଚନ୍ଦ୍ରଙ୍କର କେହି କିଛି କ୍ଷତି କରିପାରିବେ ନାହିଁ । ରାମଚନ୍ଦ୍ର ଅସ୍ତ୍ରବିଦ୍ୟାରେ ଦକ୍ଷ ହୁଅନ୍ତୁ ବା ନ ହୁଅନ୍ତୁ, ସେଥିରେ କିଛି ଯାଏ ଆସେ ନାହିଁ । ବିଶ୍ୱାମିତ୍ର ମହାଯଶା, ମହାତେଜସ୍ୱୀ, ମହାବଳଶାଳୀ । ଏ ଭୂମଣ୍ଡଳରେ ଏପରି କୌଣସି ଅସ୍ତ୍ରଶସ୍ତ୍ର ନାହିଁ, ଯାହା ସେ ଜାଣି ନାହାନ୍ତି । ପୂର୍ବେ ମହାଦେବ ତାଙ୍କୁ ସମସ୍ତ ଦିବ୍ୟାସ୍ତ୍ର ଦାନ କରିଥିଲେ । ସେ ମଧ ନିଜେ ବହୁ ଅମୋଘ ଅସ୍ତ୍ରର

ଉଦ୍‌ଭାବକ । ତୁମେ କ'ଣ ଭାବୁଚ, ରାକ୍ଷସମାନଙ୍କୁ ଦମନ କରିବାକୁ ସେ ନିଜେ ସମର୍ଥ ନୁହନ୍ତି ? କେବଳ ତୁମ ପୁତ୍ରର ମଙ୍ଗଳପାଇଁ ସେ ପ୍ରାର୍ଥୀ ହୋଇଛନ୍ତି । ବଶିଷ୍ଠଙ୍କ ଉକ୍ତିରେ ଦଶରଥ ଆଶ୍ୱସ୍ତ ହେଲେ ଏବଂ ପ୍ରସନ୍ନଚିତ୍ତରେ ରାମଙ୍କୁ ବିଶ୍ୱାମିତ୍ରଙ୍କ ସହିତ ପଠାଇବାପାଇଁ ରାଜି ହେଲେ ।

ଦଶରଥ ଲକ୍ଷ୍ମଣଙ୍କ ସହିତ ରାମଙ୍କୁ ଡାକି ସ୍ୱସ୍ତ୍ୟୟନ ପରେ ସ୍ନେହରେ ସେମାନଙ୍କ ମସ୍ତକ ଆଘ୍ରାଣ କରି ବିଶ୍ୱାମିତ୍ରଙ୍କ ହସ୍ତରେ ଅର୍ପଣ କଲେ । ବିଶ୍ୱାମିତ୍ର ଆଗେ ଆଗେ ଚାଲିଲେ । ତାଙ୍କ ପଛରେ ରାମଚନ୍ଦ୍ର ଓ ରାମଙ୍କ ପଛରେ ଲକ୍ଷ୍ମଣ । ରୂପବାନ୍ ରାଜକୁମାରମାନେ ଧନୁ, ଖଡ୍‌ଗ ଓ ଅଙ୍ଗୁଳିତ୍ରାଣ ଧାରଣକରି ଓ ବିଭିନ୍ନ ଅଳଙ୍କାରରେ ଭୂଷିତ ହୋଇ ଆହୁରି ସୁନ୍ଦର ଦେଖାଯାଉଥିଲେ । ଅଧଯୋଜନରୁ କିଛି ଅଧିକ ବାଟ ଯିବା ପରେ ସରଯୂର ଦକ୍ଷିଣକୂଳରେ ସେମାନେ ଉପସ୍ଥିତ ହେଲେ । ବିଶ୍ୱାମିତ୍ର ଅତି ମଧୁର ଭାବରେ 'ରାମ' ବୋଲି ସଂବୋଧନ କରି କହିଲେ – ବତ୍ସ, ଆଞ୍ଜୁଳାରେ ପାଣିଧରି ତୁମେ ବଳା ଓ ଅତିବଳା ନାମରେ ମୋ' ଠାରୁ ଦୁଇଟି ମନ୍ତ୍ର ଗ୍ରହଣ କର । ଏହା ଫଳରେ ତୁମକୁ ପଥଶ୍ରମ ଜଣାପଡ଼ିବ ନାହିଁ । ଜ୍ୱର ହେବ ନାହିଁ । ରୂପ ବା ତେଜର ହାନି ଘଟିବ ନାହିଁ । ନିଦ୍ରିତ ବା ଅସାବଧାନ ଅବସ୍ଥାରେ ରାକ୍ଷସମାନେ ତୁମକୁ ପରାସ୍ତ କରିପାରିବେ ନାହିଁ । ବାହୁବଳରେ ତୁମେ ତ୍ରିଭୁବନରେ ଅଜେୟ ହେବ । ଜ୍ଞାନ, ବୁଦ୍ଧି, ଦୟା, ଦାକ୍ଷିଣ୍ୟ, ସୌଭାଗ୍ୟ, ଉତ୍ତରପ୍ରତ୍ୟୁତ୍ତର କୌଣସି ବିଷୟରେ କେହି ତୁମକୁ ବଳାଇପାରିବ ନାହିଁ । ଏ ଦୁଇଟି ମନ୍ତ୍ରବିଦ୍ୟା ଗ୍ରହଣ କଲେ ତୁମର କ୍ଷୁଧା ପିପାସା ମଧ ରହିବ ନାହିଁ । ତୁମଠାରେ ସମସ୍ତ ଗୁଣ ଥିବା ଯୋଗୁଁ ସତ୍‌ପାତ୍ର ମନେକରି ତୁମକୁ ମୁଁ ଏହି ବିଦ୍ୟା ଦାନ କଲି । ତୁମେ ଏହାକୁ ଗ୍ରହଣ କରି ଅଧୟନ ଓ ଅଭ୍ୟାସ କର । ରାମଚନ୍ଦ୍ର ଶୁଦ୍ଧ ମନରେ ଜଳ ସ୍ପର୍ଶ କରି ମହର୍ଷିଙ୍କ ଠାରୁ ଏହି ମହାର୍ଘ ବିଦ୍ୟା ଗ୍ରହଣ କଲେ ଓ ଲକ୍ଷ୍ମଣଙ୍କୁ ମଧ ତାହା ଦାନ କଲେ ।

ବିଶ୍ୱାମିତ୍ରଙ୍କ ସହିତ ରାମ ଲକ୍ଷ୍ମଣ ସରଯୂ ନଦୀକୂଳରେ ସେଦିନ ରାତ୍ରି ଯାପନ କଲେ । ତୃଣଶଯ୍ୟାରେ ଶୋଇ ମଧ ସେମାନେ ପରମ ଆନନ୍ଦ ଅନୁଭବ କଲେ । ଋଷିଙ୍କ ସହିତ ମଧୁର ବାକ୍ୟାଳାପରେ ରାତିଟି ମୁହୂର୍ତ୍ତେ ପରି କଟିଗଲା ।

## ୭ ॥ ତାଡ଼କା ବଧ, ସିଦ୍ଧାଶ୍ରମ, ବଳି ବାମନ ଉପାଖ୍ୟାନ

ପରଦିନ ପ୍ରଭାତ ହେବାରୁ ମା' ପିଲାମାନଙ୍କୁ ସ୍ନେହରେ ଉଠାଇବାପରି ଋଷି ବିଶ୍ୱାମିତ୍ର ଶଯ୍ୟାରୁ ରାମଚନ୍ଦ୍ରଙ୍କୁ ଉଠାଇ କହିଲେ – କୌଶଲ୍ୟାନନ୍ଦନ ରାମ, ଉଠ, ସୁମିତ୍ରାନନ୍ଦନ ଲକ୍ଷ୍ମଣ, ଉଠ । ପ୍ରାତଃକାଳର ଆହ୍ନିକ କାର୍ଯ୍ୟ ଶେଷ କର । ରାଜକୁମାର ଦୁହେଁ ସ୍ନାନ ଓ ସନ୍ଧ୍ୟାକାର୍ଯ୍ୟ ଶେଷକରି ମନ୍ତ୍ରଜପପୂର୍ବକ ମୁନିଙ୍କୁ ଅଭିବାଦନ କଲେ ଏବଂ ପୁଣି ମୁନିଙ୍କ ସହ ଯାତ୍ରାପାଇଁ ପ୍ରସ୍ତୁତ ହୋଇଗଲେ । ଯାଉ ଯାଉ ବାଟରେ ଗଙ୍ଗା ଓ ସରଯୂନଦୀର ସଙ୍ଗମସ୍ଥଳରେ ସେମାନେ ପହଞ୍ଚିଲେ । ମୁନି କହିଲେ, ଏହାର ନାମ କାମାଶ୍ରମ । ସ୍ୱୟଂ ଶିବ ଏଠାରେ କଠୋର ତପସ୍ୟା କରିଥିଲେ । ଦିନେ କନ୍ଦର୍ପର ବାଣରେ ସେ ବିଚଳିତ

ହେବାରୁ କ୍ରୋଧରେ ତାଙ୍କର ଚକ୍ଷୁ ଜଳିଉଠିଲା । ରୁଦ୍ର ଚକ୍ଷୁର ଜ୍ୱାଳାରେ ମୁହୂର୍ତ୍ତକ ମଧ୍ୟରେ କନ୍ଦର୍ପ ଖଣ୍ଡ ଖଣ୍ଡ ହୋଇ ଭସ୍ମ ହୋଇଗଲା । ସେହିଦିନଠାରୁ ଅଙ୍ଗହୀନ ହେବାରୁ ତାର ନାମ ହେଲା ଅନଙ୍ଗ ଏବଂ ଯେଉଁଠି ତାର ଅଙ୍ଗ ଖଣ୍ଡ ଖଣ୍ଡ ହୋଇ ପଡ଼ିଗଲା, ତାହା ଅଙ୍ଗଦେଶ ନାମରେ ପରିଚିତ ହେଲା । କନ୍ଦର୍ପର ଶିଷ୍ୟମାନେ ନିଷ୍ପାପ ଓ ଧର୍ମପରାୟଣ ହୋଇ ଏଠାରେ ତପସ୍ୟା କରୁଛନ୍ତି । ବିଶ୍ୱାମିତ୍ର କହିଲେ, ଏହି ପବିତ୍ର ଆଶ୍ରମରେ ଆମେ ରାତ୍ରିଯାପନ କରିବା ।

ପରଦିନ ମୁନିମାନଙ୍କ ପ୍ରଦତ୍ତ ନୌକାରେ ବସି ରାମ ଲକ୍ଷ୍ମଣ ଓ ବିଶ୍ୱାମିତ୍ର ନଦୀ ପାର ହେଲେ । ନଦୀର ମଧ୍ୟଭାଗରେ ଜଳରାଶିର ସଂଘର୍ଷଜନିତ ଶବ୍ଦ ଶୁଣି ରାମ ଏହାର କାରଣ ପଚାରିଲେ । ବିଶ୍ୱାମିତ୍ର ଉତ୍ତର ଦେଲେ, ସରଯୂ ଓ ଗଙ୍ଗାନଦୀର ମିଳନ ଯୋଗୁଁ ଉଭୟ ଜଳରାଶିର ସଂଘର୍ଷରେ ଏହି ଶବ୍ଦ ହେଉଛି । ହିମାଳୟର ମାନସସରୋବରରୁ ବାହାରିଥିବା ଯୋଗୁଁ ଏହି ନଦୀର ନାମ ସରଯୂ ଏବଂ ବ୍ରହ୍ମାଙ୍କର ମାନସରୁ ଜାତ ହୋଇଥିବା ଯୋଗୁଁ ସରୋବରର ନାମ ମାନସସରୋବର । ବିଶ୍ୱାମିତ୍ରଙ୍କ ପରାମର୍ଶରେ ରାମ ଲକ୍ଷ୍ମଣ ଏହି ପବିତ୍ର ସଙ୍ଗମସ୍ଥଳକୁ ଏକାଗ୍ର ଚିତ୍ତରେ ନମସ୍କାର କଲେ ।

ଗଙ୍ଗା ପାର ହେବା ପରେ ସେମାନେ ଶ୍ୱାପଦସଙ୍କୁଳ ଏକ ବିଶାଳ ଅରଣ୍ୟ ମଧ୍ୟରେ ପ୍ରବେଶ କଲେ । ବିଶ୍ୱାମିତ୍ର ରାମଚନ୍ଦ୍ରଙ୍କ ପ୍ରଶ୍ନର ଉତ୍ତର ଦେଇ କହିଲେ – ରାଘବ, ଦିନେ ଏହା ମଳଦ ଓ କରୂଷ ନାମରେ ଦୁଇଟି ପ୍ରସିଦ୍ଧ ଜନପଦ ଥିଲା, ଯାହାକି ଏବେ ଜନଶୂନ୍ୟ ଅରଣ୍ୟରେ ପରିଣତ ହୋଇଚି । ଇନ୍ଦ୍ର ଅନ୍ତିମ ସଂଗ୍ରାମରେ ବୃତ୍ରାସୁରକୁ ବଧ କରିବାବେଳେ ତାଙ୍କର ଶରୀର ମଳଲିପ୍ତ ହୋଇପଡ଼ିଲା । ସେ କ୍ଷୁଧାରେ ପୀଡ଼ିତ ଓ ବ୍ରହ୍ମହତ୍ୟା ପାପରେ ଭାଗୀ ହୋଇଗଲେ । ଦେବତା ଓ ଋଷିମାନେ ଏହିଠାରେ ତାଙ୍କୁ ସ୍ନାନ କରାଇ ତାଙ୍କର ମଳ ଓ କ୍ଷୁଧା ଦୂର କରାଇଥିଲେ । ଇନ୍ଦ୍ର ସନ୍ତୁଷ୍ଟ ହୋଇ ବରଦାନ କରିଥିଲେ, ଏଠାରେ ମଳଦ ଓ କରୂଷ ନାମରେ ଦୁଇଟି ସମୃଦ୍ଧଶାଳୀ ରାଜ୍ୟ ସ୍ଥାପିତ ହେଉ । କାଳକ୍ରମେ ଏହି ଧନଧାନ୍ୟପୂର୍ଣ୍ଣ ରାଜ୍ୟରେ ତାଡ଼କାନାମରେ ଏକ ଯକ୍ଷିଣୀର ଜନ୍ମ ହେଲା । ତାର ଦେହରେ ସହସ୍ରହସ୍ତୀର ବଳ ଏବଂ କାମରୂପିଣୀ ଭାବରେ ସେ ଯେକୌଣସି ସମୟରେ ଯେକୌଣସି ରୂପ ଗ୍ରହଣ କରିପାରେ । ତାର ପୁତ୍ର ମାରୀଚ ନାମକ ରାକ୍ଷସ ଅତ୍ୟନ୍ତ ପରାକ୍ରମୀ ଓ ଦୁରାଚାରୀ । ଏଇ ମାଆପୁଅଙ୍କ ଅତ୍ୟାଚାରରେ ଦୁଇଟି ସମୃଦ୍ଧିଶାଳୀ ଦେଶ ଛାରଖାର ହୋଇ ଘୋର ବନରେ ପରିଣତ ହୋଇଛି । ସେମାନେ ଏହି ଅରଣ୍ୟରେ ବାସ କରୁଛନ୍ତି । ତେଣୁ ସେମାନଙ୍କୁ ବିନାଶ ନ କରି ଆମେ ଏହି ଅରଣ୍ୟପଥ ଅତିକ୍ରମ କରିପାରିବା ନାହିଁ ।

ରାମଚନ୍ଦ୍ର ପଚାରିଲେ, ଯକ୍ଷମାନେ ବିଶେଷ ବଳବାନ୍ ନୁହନ୍ତି ବୋଲି ଜନଶ୍ରୁତି ଅଛି । ଏକ ଅବଳା ଯକ୍ଷିଣୀ କିପରି ସହସ୍ରହସ୍ତୀର ବଳ ଧାରଣ କରିଛି ? ବିଶ୍ୱାମିତ୍ର କହିଲେ, ପୂର୍ବେ ସୁକେତୁ ନାମରେ ଏକ ଶ୍ରେଷ୍ଠ ଯକ୍ଷ ଥିଲା । ସେ ପୁତ୍ରଲାଭ ପାଇଁ କଠୋର ତପସ୍ୟା କରି ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରିଥିଲା । କିନ୍ତୁ ପିତାମହ ତାକୁ ପୁତ୍ର ନ ଦେଇ ଏକ କନ୍ୟାଲାଭର ବରଦାନ କରିଥିଲେ । ସେହି କନ୍ୟା ଏକ ମହାବୀର ପୁତ୍ରପରି ସହସ୍ର ହସ୍ତୀର ବଳ

ଲାଭକରିବ ବୋଲି ସେ କହିଥିଲେ । ଯକ୍ଷକୁଳରେ ଜାତ ଜମ୍ଭପୁତ୍ର ସୁନ୍ଦ ସହିତ ରୂପଯୌବନସମ୍ପନ୍ନା ତାଡ଼କାର ବିବାହ ହେଲା ଏବଂ ଉଭୟଙ୍କ ଔରସରୁ ମାରୀଚ ନାମକ ଏକ ଦୁର୍ଦ୍ଧର୍ଷ ପୁତ୍ରର ଜନ୍ମ ହେଲା । ସୁନ୍ଦ ଋଷି ଅଗସ୍ତ୍ୟଙ୍କର ବିରାଗଭାଜନ ହୋଇ ତାଙ୍କର ଅଭିଶାପରେ ଅକାଳରେ ମୃତ୍ୟୁବରଣ କଲା । ଏଥିରେ କ୍ରୁଦ୍ଧ ହୋଇ ତାଡ଼କା ଏବଂ ତାର ପୁତ୍ର ମାରୀଚ ଅଗସ୍ତ୍ୟଙ୍କୁ ଆକ୍ରମଣ କଲେ । ଋଷି ଅଭିଶାପ ଦେଲେ, ବଳଗର୍ବରେ ମତ୍ତ ହୋଇ ରାକ୍ଷସପରି ଆଚରଣ କରୁଥିବା ଯୋଗୁଁ ତୁମେ ଦୁହେଁ ରାକ୍ଷସ ହୋଇଯାଅ । ତୁମର ଏଇ ସୁନ୍ଦର ରୂପ ଚାଲିଯାଉ । ରାକ୍ଷସର ଭୟାନକ ରୂପ ଧାରଣ କରି ତୁମେମାନେ ଏହି ରାଜ୍ୟରେ ବିଚରଣ କର । ବିଶ୍ୱାମିତ୍ର କହିଲେ, ବର୍ତ୍ତମାନ ଗୋବ୍ରାହ୍ମଣ ଓ ପ୍ରଜାମାନଙ୍କର ମଙ୍ଗଳପାଇଁ ତୁମକୁ ଏହି ନିଷ୍ଠୁର ରାକ୍ଷସୀକୁ ହତ୍ୟା କରିବାକୁ ହେବ । ରାଘବ, ସ୍ତ୍ରୀବଧ ବିଷୟରେ ତୁମ ମନରେ କୌଣସି ବିକାର ସୃଷ୍ଟି ନ ହେଉ । ପ୍ରଜାର ରକ୍ଷାପାଇଁ ନୃଶଂସ, ଅନୃଶଂସ ପବିତ୍ର ବା ଦୋଷାବହ ଯେ କୌଣସି କାର୍ଯ୍ୟ କରାଯାଇପାରେ । ରାଜାମାନଙ୍କର ଏହାହିଁ ସନାତନ ଧର୍ମ । ପୂର୍ବେ ଅଧର୍ମଚାରିଣୀ ବହୁ ନାରୀଙ୍କୁ ପୃଥିବୀର ମଙ୍ଗଳପାଇଁ ନିହତ କରାଯାଇଚି । ତେଣୁ ତୁମେ ଶୀଘ୍ର ତାଡ଼କାର ବିନାଶ କର ।

ରାମଚନ୍ଦ୍ର କହିଲେ – ବ୍ରହ୍ମର୍ଷି, ଆପଣଙ୍କର ଆଦେଶ ଆମର ଶିରୋଧାର୍ଯ୍ୟ । ଆପଣ ଯାହା କହିବେ, ବିନା ବିଚାରରେ ତାହା ପାଳନ କରିବାପାଇଁ ପିତା ମୋତେ ଆଜ୍ଞା ଦେଇଛନ୍ତି । ଏହିକ୍ଷଣି ଆପଣଙ୍କର ସନ୍ତୋଷ ବିଧାନ କରି ଗୋବ୍ରାହ୍ମଣ ଓ ଦେଶର ମଙ୍ଗଳପାଇଁ ମୁଁ ତାଡ଼କାର ବିନାଶ କରିବି । ସଙ୍ଗେ ସଙ୍ଗେ ରାଘବଙ୍କର ଧନୁଷ୍ଟଙ୍କାରରେ ଦିଗବିଦିଗ ପ୍ରତିଧ୍ୱନିତ ହେବାକୁ ଲାଗିଲା । ବନସ୍ଥଳୀ କମ୍ପିତ ହେଲା ଓ ବନ୍ୟପ୍ରାଣୀମାନେ ଇତସ୍ତତଃ ପଳାୟନ କଲେ । ତାଡ଼କା ସେହି ଶବ୍ଦ ଶୁଣି ପ୍ରଥମେ ଆଶ୍ଚର୍ଯ୍ୟ ହୋଇଗଲା ଓ ପରେ କ୍ରୋଧରେ ବିବଶ ହୋଇ ଯେଉଁଆଡୁ ସେହି ଶବ୍ଦ ଶୁଣାଯାଉଥିଲା, ସେଆଡ଼କୁ ଦୌଡ଼ିଆସିଲା । ସେହି ବିଶାଳକାୟ ଭୟଙ୍କର ରାକ୍ଷସୀକୁ ଦେଖି ରାମ କହିଲେ – ଲକ୍ଷ୍ମଣ, ଦେଖ ଏହି ରାକ୍ଷସୀ କିପରି ଭୀଷଣରୂପ ଧାରଣ କରି ମାଡ଼ିଆସୁଚି । ଏହାକୁ ଦେଖିଲେ ଯେ କୌଣସି ଭୀରୁର ହୃଦୟ ବିଦୀର୍ଣ୍ଣ ହୋଇଯିବ । ସ୍ତ୍ରୀ ହୋଇଥିବା ଯୋଗୁଁ ଏହାକୁ ପ୍ରଥମେ ବଧ ନ କରି ଏହାର ବାହୁ କର୍ଣ୍ଣ ଓ ନାସିକା ଛେଦନ କରି ଏହାକୁ ବାରଣ କରିବାପାଇଁ ଚେଷ୍ଟା କରିବା । କିନ୍ତୁ ମାୟାବିନୀ ରାକ୍ଷସୀ ଏକ ଭୟାନକ ଧୂଳିଝଡ଼ ସୃଷ୍ଟିକରି ସେଥିରେ ରାମ ଲକ୍ଷ୍ମଣଙ୍କୁ ଘୋଡ଼ାଇଦେଲା । ବିଶ୍ୱାମିତ୍ର ତାକୁ ତିରସ୍କାର କରି ଗର୍ଜନ କଲେ ଏବଂ ରାମ ଲକ୍ଷ୍ମଣଙ୍କର ଜୟଧ୍ୱନି କଲେ । ତାଡ଼କା ସମୟ ନ ଦେଇ ମାୟାବଳରେ ନିଜେ ଅଦୃଶ୍ୟ ହୋଇ ଚତୁର୍ଦ୍ଦିଗରୁ ଶିଳାବୃଷ୍ଟି କରିବାକୁ ଲାଗିଲା । ବିଶ୍ୱାମିତ୍ର କହିଲେ – ରାମ, ଆଉ କାଳବିଳମ୍ବ ନ କରି ଏହି ରାକ୍ଷସୀକୁ ବିନାଶ କର । ନଚେତ୍ ସନ୍ଧ୍ୟା ହୋଇଯିବ ଏବଂ ନିଶା ଆଗମନରେ ନିଶାଚରୀର ବଳ ଏପରି ବଢ଼ିବ ଯେ ତୁମେ ତାକୁ ପରାସ୍ତ କରିବା କଷ୍ଟକର ହେବ । ରାମଚନ୍ଦ୍ର ରାକ୍ଷସୀର ମାୟାକୁ କାଟି ଏକ ବଜ୍ରତୁଲ୍ୟ ବାଣଦ୍ୱାରା ତାର ବକ୍ଷସ୍ଥଳକୁ ବିଦ୍ଧ କଲେ । ଘୋର ରଡ଼ି କରି ତାଡ଼କା ପଡ଼ିଗଲା ଏବଂ ସଙ୍ଗେ ସଙ୍ଗେ ତାର ପ୍ରାଣବାୟୁ ଉଡ଼ିଗଲା ।

ଦେବତାମାନେ 'ସାଧୁ ସାଧୁ' କହି ରାମଚନ୍ଦ୍ରଙ୍କର ଜୟଧ୍ୱନି ଓ ବିଶ୍ୱାମିତ୍ରଙ୍କୁ ଅଭିବାଦନ କଲେ । ମୁନି ରାମଚନ୍ଦ୍ରଙ୍କୁ ଆଲିଙ୍ଗନ କରି କହିଲେ – ରାମ, ତୁମର ମଙ୍ଗଳ ହେଉ । ବର୍ତ୍ତମାନଠାରୁ ଏହି ବନ ଶାପମୁକ୍ତ ହେଲା । ଏଣିକି ଏହାର ଶୋଭା ଦେବତାମାନଙ୍କର ବିହାରସ୍ଥଳୀ ଚୈତ୍ରରଥ ବନକୁ ମଧ ଉପହାସ କରିବ ।

ଅରଣ୍ୟରେ ସେମାନେ ରାତ୍ରିଯାପନ କଲେ । ପ୍ରଭାତ ହେବାରୁ ବିଶ୍ୱାମିତ୍ର କହିଲେ – ରାଘବ, ତୁମର କାର୍ଯ୍ୟରେ ମୁଁ ସନ୍ତୁଷ୍ଟ ହୋଇଚି । ବର୍ତ୍ତମାନ ତୁମକୁ ମୁଁ ଏପରି କେତେକ ଅସ୍ତ୍ରଶସ୍ତ୍ର ଦାନ କରିବି, ଯାହା ବଳରେ ଦେବାସୁର, ଗନ୍ଧର୍ବ, ଉରଗ ଯେ କୌଣସି ଶତ୍ରୁଙ୍କୁ ତୁମେ ଯୁଦ୍ଧରେ ଜୟ କରିପାରିବ । ଏହା କହି ମହାଯଶା ଋଷି ବ୍ରହ୍ମଶିର, ପାଶୁପତ, ନାରାୟଣ, ଆଗ୍ନେୟ, ବାୟବ୍ୟ, ବାରୁଣ ଆଦି ଅସ୍ତ୍ର, ବିଭିନ୍ନ ଚକ୍ର ପାଶ ଗଦା, ଅସୀ, ଶୂଳ, ମୁଷଳ ଆଦି ଶସ୍ତ୍ରଦାନ କଲେ । ମହାତେଜା ରାମଚନ୍ଦ୍ର ଶୀଘ୍ର ସେହି ଅସ୍ତ୍ରଶସ୍ତ୍ରମାନଙ୍କ ମନ୍ତ୍ର ଆୟତ୍ତ କଲେ, ଯେପରିକି ସ୍ମରଣ କରିବାମାତ୍ରେ ସେସବୁ ତାଙ୍କର ହସ୍ତଗତ ହୋଇପାରିବ । ଏହିସବୁ ଅସ୍ତ୍ରମାନଙ୍କୁ ପ୍ରୟୋଗ କରି କିପରି ତାକୁ ଫେରାଇ ଅଣାଯାଇପାରିବ ସେହିସବୁ ସମରବିଦ୍ୟା ମଧ ବିଶ୍ୱାମିତ୍ର ତାଙ୍କୁ ଶିକ୍ଷା ଦେଲେ ।

କିଛିଦୂର ଯିବାପରେ ଏକ ପର୍ବତ ଦେଖାଯିବାରୁ ସେହି ପର୍ବତ ତଟବର୍ତ୍ତୀ ବୃକ୍ଷମାନଙ୍କର ଦୃଶ୍ୟ ରାମଚନ୍ଦ୍ରଙ୍କୁ ବିମୋହିତ କଲା । ସେ ବିଶ୍ୱାମିତ୍ରଙ୍କୁ ପଚାରିଲେ, ବର୍ତ୍ତମାନ ଘନ ଅରଣ୍ୟ ଅତିକ୍ରମ କରି ଆମେ ଏକ ମନୋରମ ଆଶ୍ରମର ନିକଟବର୍ତ୍ତୀ ହେବାକୁ ଯାଉଛେ । ମୁନିଶ୍ରେଷ୍ଠ, ଏ ଆଶ୍ରମଟି କାହାର ? ଯେଉଁଠାରେ ଦୁରାତ୍ମା ରାକ୍ଷସମାନେ ଯଜ୍ଞରେ ବିଘ୍ନ ଘଟାଉଛନ୍ତି, ଆପଣଙ୍କର ସେହି ଆଶ୍ରମ ଆଉ କେତେଦୂର ?

ବିଶ୍ୱାମିତ୍ର କହିଲେ, ତୁମେ ଯେଉଁ ଆଶ୍ରମ ଦେଖୁଚ ତାହାର ନାମ ସିଦ୍ଧାଶ୍ରମ । ବର୍ତ୍ତମାନ ସେଇଠାରେ ମୁଁ ଯଜ୍ଞ କରୁଚି ଏବଂ ତାହାହିଁ ମୋର ଆଶ୍ରମ । କିନ୍ତୁ ଏହି ସିଦ୍ଧାଶ୍ରମର ଏକ ଇତିହାସ ଅଛି । ଏଠାରେ ବାମନରୂପୀ ବିଷ୍ଣୁ ଘୋର ତପସ୍ୟା କରି ସିଦ୍ଧିଲାଭ କରିଥିଲେ । କିନ୍ତୁ ବିଷ୍ଣୁ କାହିଁକି ବାମନ ଅବତାର ଗ୍ରହଣ କଲେ, ତାହା ଶୁଣ । ବିରୋଚନ ପୁତ୍ର ବଳି ଇନ୍ଦ୍ର ଓ ମରୁତଗଣଙ୍କୁ ପରାସ୍ତ କରି ତ୍ରିଭୁବନ ଜୟକରି ପ୍ରଜାପାଳନ କରୁଥିଲେ । ଦାନପାଇଁ ସେ ପ୍ରସିଦ୍ଧ ଥିଲେ ଏବଂ ଯେ ଯାହା ମାଗୁଥିଲେ, ତାହା ଦାନ କରୁଥିଲେ । ତାଙ୍କର ବିକ୍ରମ ଓ ଦାନର ପ୍ରଭାବରେ ସେ ଇନ୍ଦ୍ର ଓ ଦେବତାମାନଙ୍କୁ ନିଷ୍ପ୍ରଭ କରିବାକୁ ବସିଲେ । ଏଥିରେ ଇନ୍ଦ୍ର ଓ ଦେବତାମାନେ ଭୟଭୀତ ହୋଇ ଆତଙ୍କ ଗଣିଲେ ।

ଅସୁରରାଜ ବଳି ଏକ ପ୍ରସିଦ୍ଧ ଯଜ୍ଞ କଲେ । ଏହି ଯଜ୍ଞ ଶେଷ ହେଲେ ଇନ୍ଦ୍ର ଓ ଦେବଗଣଙ୍କର ସମସ୍ତ ଶକ୍ତି ଓ ତେଜ ଚାଲିଯିବ, ଏହି ଭୟରେ ସେମାନେ ଅସ୍ଥିର ହେବାକୁ ଲାଗିଲେ । ସେମାନେ ବିଷ୍ଣୁଙ୍କ ନିକଟକୁ ଯାଇ ପ୍ରାର୍ଥନା କରି କହିଲେ – ଭଗବନ୍, ମହାବଳିଙ୍କର ଯଜ୍ଞ କାର୍ଯ୍ୟ ଶେଷ ହେଲେ ଆମ୍ଭମାନଙ୍କର ସ୍ଥିତି ବିପନ୍ନ ହେବ । ସେହି ଯଜ୍ଞକୁ ବହୁ ଯାଚକ ଆସୁଛନ୍ତି ଏବଂ ଯେ ଯାହା ମାଗୁଚି ଦାନବରାଜ ତାହା ଦାନ କରୁଛନ୍ତି । ତେଣୁ ଆପଣ ଶୀଘ୍ର ଏହାର ପ୍ରତିବିଧାନ କରନ୍ତୁ ।

ଏହି ସମୟରେ ପରମ ତେଜସ୍ୱୀ କଶ୍ୟପଋଷି ତାଙ୍କର ପତ୍ନୀ ଅଦିତିଙ୍କ ସହିତ କଠୋର ତପସ୍ୟା କରୁଥିଲେ । ସେ ନାରାୟଣଙ୍କର ଶରଣାପନ୍ନ ହୋଇ ତାଙ୍କୁ ପୁତ୍ର ରୂପେ ଲାଭ କରିବାପାଇଁ ସଙ୍କଳ୍ପ କରିଥିଲେ । ଅନ୍ତର୍ଯାମୀ ହରି ତାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ତାଙ୍କୁ ବରଦାନ କରି କହିଲେ – ମୁନି, ମୁଁ ଅଦିତିଙ୍କ ଗର୍ଭରେ ତୁମର ପୁତ୍ରରୂପେ ଜନ୍ମଗ୍ରହଣ କରି ଶୋକାତୁର ଦେବତାମାନଙ୍କର ସହାୟକ ହେବି ।

ନାରାୟଣ ବାମନ ରୂପରେ ଜନ୍ମଗ୍ରହଣ କଲେ । ସେ ଇନ୍ଦ୍ରଙ୍କର କନିଷ୍ଠଭ୍ରାତା ହୋଇଥିବା ଯୋଗୁଁ ତାଙ୍କର ଅନ୍ୟନାମ ହେଲା ଉପେନ୍ଦ୍ର । ପୁଣି ସେ ରାକ୍ଷସରାଜ ବଳିଙ୍କଠାରୁ ଯେଉଁ ରୂପରେ ତ୍ରିପାଦଭୂମି ଗ୍ରହଣ କଲେ, ସେଥିପାଇଁ ସେ ତ୍ରିବିକ୍ରମ ନାମରେ ପ୍ରସିଦ୍ଧ ହେଲେ ।

ବଳି ଯେଉଁଠାରେ ଯଜ୍ଞ କରୁଥିଲେ ବାମନ ସେଠାରେ ଯାଇ ପହଞ୍ଚିଲେ । ଏହି ମହାତେଜସ୍ୱୀ କ୍ଷୁଦ୍ରକାୟ ବ୍ରାହ୍ମଣଙ୍କୁ ଦେଖି ବଳି ନିଜର ଆସନରୁ ଉଠିପଡ଼ିଲେ ଏବଂ ଯାହା ସେ ମାଗିବାକୁ ଚାହାନ୍ତି, ମାଗନ୍ତୁ ବୋଲି କହିଲେ । ବାମନ କହିଲେ, ମୁଁ ବେଶି କିଛି ମାଗୁ ନାହିଁ । ଅଳ୍ପ କିଛି ମାଗିବି । କିନ୍ତୁ ଆପଣ ଦେବେ ବୋଲି ନିର୍ଭର ପ୍ରତିଶ୍ରୁତି ଦିଅନ୍ତୁ । ବଳି କହିଲେ, ଏହି ସମସ୍ତ ସମ୍ପତ୍ତି ଓ ରାଜ୍ୟ ଆପଣ ମାଗିଲେ ମଧ ମୁଁ ଦେବାପାଇଁ ପ୍ରସ୍ତୁତ ଅଛି । ତେଣୁ ନିଃସଙ୍କୋଚରେ ଯାହା ମାଗିବାର କଥା ମାଗନ୍ତୁ । ଦାନବରାଜ ବଳିଙ୍କର ଗୁରୁ ଶୁକ୍ରାଚାର୍ଯ୍ୟ ବିଷ୍ଣୁ ନିଜେ ବାମନ ବେଶରେ ଆସିଛନ୍ତି ବୋଲି ଜାଣିପାରି କହିଲେ – ମହାରାଜ, ବିଷ୍ଣୁ ଛଳ ପ୍ରୟୋଗ କରି ତୁମର ରାଜ୍ୟ ସମ୍ପଦ ଓ ସମସ୍ତ ଐଶ୍ୱର୍ଯ୍ୟ ଅପହରଣ କରିବାକୁ ଏହି ବାମନ ରୂପରେ ଆସିଛନ୍ତି । ତେଣୁ ତୁମେ ଏଥିରେ ରାଜି ହୁଅ ନାହିଁ । ମହାବଳୀ ବଳି କହିଲେ, ଯଦି ବିଷ୍ଣୁ ସ୍ୱୟଂ ମୋର ଯଜ୍ଞକୁ ଆସିଛନ୍ତି, ତା ହେଲେ ଏହାଠାରୁ ବଳି ବଡ଼ ପୁଣ୍ୟ ଓ ଭାଗ୍ୟ ମୋର କ'ଣ ହୋଇପାରେ ? ଯେ ସମସ୍ତ ତପସ୍ୟା, ସମସ୍ତ ଯଜ୍ଞର ଇଷ୍ଟ ଓ ଅଭିଳଷିତ ତାଙ୍କୁ ଏଡ଼େ ସହଜରେ ଲାଭ କରି ମୋର ହୃଦୟ ଆନନ୍ଦରେ ଉଲ୍ଲସିତ ହୋଇଉଠୁଚି । ବାମନ, ମୁଁ ଆଞ୍ଜୁଳିରେ ଜଳ ଭରି ପ୍ରତିଜ୍ଞା କରୁଚି, ତୁମେ ଯାହା ମାଗିବ ତାହା ଦେବି ।

ବାମନରୂପୀ ନାରାୟଣ ଈଷତ୍ ହସି କହିଲେ, ଦାନବରାଜ, ମୋର ମାତ୍ର ତିନିପାଦ ଭୂମି ଦରକାର । ବଳି କହିଲେ, ଏହା ତ ଅତି ସାମାନ୍ୟ ଭିକ୍ଷା । କେଉଁ ତ୍ରିପାଦ ଭୂମି ଆପଣ ଚାହାନ୍ତି, ନିଅନ୍ତୁ । ସଙ୍ଗେ ସଙ୍ଗେ ବାମନଙ୍କର ଆକାର ଓ ପାଦ ବଢ଼ିବାକୁ ଲାଗିଲା । ସେ ତ୍ରିବିକ୍ରମ ହୋଇଗଲେ । ଗୋଟିଏ ପାଦରେ ସମସ୍ତ ପୃଥିବୀ ଆବୃତ ହୋଇଗଲା ଏବଂ ଅନ୍ୟପାଦରେ ଆକାଶ । ତୃତୀୟ ପାଦ ପାଇଁ ଆଉ କିଛି ନ ରହିବାରୁ ବଳି ନିଜର ମସ୍ତକକୁ ଅବନତ କରି ଦେଖାଇଦେଲେ । ଏହି ତୃତୀୟ ପାଦରେ ବାମନ ତାଙ୍କୁ ଚାପିଦେଇ ନିଜର ପରମ ଭକ୍ତରୂପେ ପାତାଳରେ ସ୍ଥାନ ଦେଲେ ।

ବିଶ୍ୱାମିତ୍ର କହିଲେ – ଏହି ସେହି ସିଦ୍ଧାଶ୍ରମ, ଯେଉଁଠି ବାମନରୂପୀ ନାରାୟଣ କଠୋର ତପସ୍ୟା କରୁଥିଲେ । ତାଙ୍କର ସିଦ୍ଧି ଯୋଗୁଁ ଏହି ଆଶ୍ରମର ନାମ ସିଦ୍ଧାଶ୍ରମ ହୋଇଛି ।

ବର୍ତ୍ତମାନ ମୁଁ ଏହି ଆଶ୍ରମରେ ବାସ କରୁଚି । କିନ୍ତୁ ମୋର କୌଣସି ହୋମ ବା ଯଜ୍ଞ ନିର୍ବିଘ୍ନରେ ହୋଇପାରୁ ନାହିଁ । ଯଜ୍ଞବିଘ୍ନକାରୀମାନେ ସବୁବେଳେ ଏହି ଆଶ୍ରମ ଉପରେ ଦୃଷ୍ଟି ରଖି ନାନା ବିଘ୍ନ ଘଟାଉଛନ୍ତି ।

ମୁନିମାନଙ୍କ ଦ୍ୱାରା ଆଦୃତ ହୋଇ ରାମଚନ୍ଦ୍ର ସେଠାରେ ଅଳ୍ପକ୍ଷଣ ମାତ୍ର ବିଶ୍ରାମ କରିବାପରେ କହିଲେ – ମୁନିଶ୍ରେଷ୍ଠ, ଆପଣ ଯଜ୍ଞ ନିମନ୍ତେ ଆଜି ଦୀକ୍ଷା ଗ୍ରହଣ କରନ୍ତୁ । ଆପଣଙ୍କର ବ୍ରତ ପୂର୍ଣ୍ଣ ହେଉ ଏବଂ ଉଦ୍ଦେଶ୍ୟ ସିଦ୍ଧି ହେଉ । ସିଦ୍ଧାଶ୍ରମର ନାମ ସାର୍ଥକ ହେଉ । ମୁଁ ଏବଂ ଲକ୍ଷ୍ମଣ ଆପଣଙ୍କର ଯଜ୍ଞକୁ ସର୍ବତୋଭାବେ ରକ୍ଷା କରିବୁ । ବିଶ୍ୱାମିତ୍ର ସେହିଦିନ ରାତିରେ ଦୀକ୍ଷା ଗ୍ରହଣ କଲେ ।

ପରଦିନ ପ୍ରଭାତରେ ରାମ ଲକ୍ଷ୍ମଣ ବିଶ୍ୱାମିତ୍ରଙ୍କୁ ପଚାରିଲେ – ମହାମୁନି, କେଉଁ ସମୟରେ ମାରୀଚ ଓ ସୁବାହୁଙ୍କ ଆକ୍ରମଣରୁ ଯଜ୍ଞରକ୍ଷା କରିବାକୁ ହେବ, ସେହି ସମୟ ଆମକୁ ବତାଇ ଦିଅନ୍ତୁ । ବିଶ୍ୱାମିତ୍ର ଉତ୍ତର ଦେଲେ ନାହିଁ । ତାଙ୍କର ଶିଷ୍ୟମାନେ କହିଲେ, ଯଜ୍ଞପାଇଁ ଋଷି ମୌନବ୍ରତ ଗ୍ରହଣ କରିଛନ୍ତି । ତୁମେ ଦୁହେଁ ଛ' ଦିନ ଛ' ରାତି ଜାଗ୍ରତ ରହି ଏହି ଯଜ୍ଞକୁ ରକ୍ଷାକର । ରାମ ଲକ୍ଷ୍ମଣ ସଶସ୍ତ୍ର ପ୍ରହରୀ ଭାବରେ ଦିବାରାତ୍ର ଯଜ୍ଞକୁ ରକ୍ଷାକଲେ ।

ଷଷ୍ଠ ଦିବସରେ ଯଜ୍ଞବେଦୀ ହଠାତ୍ ପ୍ରଜ୍ୱଳିତ ହୋଇଉଠିଲା । ଆକାଶରୁ ଏକ ତୁମୁଳ ଧ୍ୱନି ଶୁଣାଗଲା ଏବଂ ବର୍ଷାକାଳୀନ କଳାମେଘ ଆକାଶକୁ ଛାଇଯିବା ପରି ରାକ୍ଷସମାନେ ମାୟାରେ ନଭୋମଣ୍ଡଳକୁ ଆଚ୍ଛାଦିତ କରି ଜଳଧାରପରି ରୁଧିର ବୃଷ୍ଟି କରିବା ଆରମ୍ଭ କରିଦେଲେ । ରାମ ଲକ୍ଷ୍ମଣଙ୍କୁ କହିଲେ, ଏହି ଦୁରାଚାରୀ ମାଂସଭୋଜୀ ମାରୀଚ ଓ ସୁବାହୁଙ୍କ ମାୟାକୁ ଦେଖ, ପବନ ମେଘକୁ ଉଠାଇ ନେବାପରି ମୁଁ ଏ ଦୁହିଁଙ୍କୁ ମାନବାସ୍ତ୍ର ଦ୍ୱାରା ଦୂରକୁ ଉଡ଼ାଇନେଇ ନିହତ କରିବି । ରାମ ଧନୁରେ ମାନବାସ୍ତ୍ରକୁ ସଂଯୋଗ କରି ମାରୀଚର ବକ୍ଷଦେଶକୁ ନିକ୍ଷେପ କଲେ । ଏହି ଶର ମହା ବେଗରେ ମାରୀଚକୁ ଦୂରକୁ ଉଡ଼ାଇନେଇ ସମୁଦ୍ରରେ ନିପାତିତ କଲା । ରାମଙ୍କର ଆଗ୍ନେୟାସ୍ତ୍ର ସୁବାହୁର ବକ୍ଷକୁ ବିଦ୍ଧ କରି ତାକୁ ବିନାଶ କଲା । କ୍ଷିପ୍ରହସ୍ତ ରାମଚନ୍ଦ୍ରଙ୍କ ବାଣରେ ଚାହୁଁ ଚାହୁଁ ଅନ୍ୟ ସମସ୍ତ ରାକ୍ଷସ ନିର୍ମୂଳ ହୋଇଗଲେ । ନିର୍ବିଘ୍ନରେ ବିଶ୍ୱାମିତ୍ରଙ୍କ ଯଜ୍ଞ ଶେଷ ହେଲା । ମୁନିମାନେ ରାମଚନ୍ଦ୍ରଙ୍କୁ ଅଭିବାଦନ କଲେ । ବିଶ୍ୱାମିତ୍ର କହିଲେ – ମହାଯଶା ରାମ, ତୁମେ ତୁମର ପିତୃବାକ୍ୟ ପାଳନ କରି ଗୁରୁଙ୍କର କାର୍ଯ୍ୟ ସାଧନ କରିଚ । ସିଦ୍ଧାଶ୍ରମର ନାମ ଯଥାର୍ଥରେ ତୁମଦ୍ୱାରା ସାର୍ଥକ ହୋଇଚି ।

ପରଦିନ ପ୍ରଭାତରେ ରାମଚନ୍ଦ୍ର କହିଲେ – ମୁନିବର, ଆମେ ଦୁହେଁ ଆପଣଙ୍କର କିଙ୍କର ସ୍ୱରୂପ । ପୁଣି ଆମକୁ କେଉଁ କାର୍ଯ୍ୟ କରିବାକୁ ହେବ, ଆଦେଶ ଦିଅନ୍ତୁ । ବିଶ୍ୱାମିତ୍ର କହିଲେ, ମିଥିଳାରେ ରାଜା ଜନକ ଏକ ଯଜ୍ଞ କରୁଛନ୍ତି । ସେହି ଯଜ୍ଞ ଆମେ ଦେଖିବାକୁ ଯିବା । ସେଠାରେ ତୁମେ ଏକ ଅଦ୍‌ଭୁତ ଧନୁ ଦେଖିବ । ଦେବ, ଗନ୍ଧର୍ବ, ରାକ୍ଷସ କେହି ଏହି ଧନୁରେ ଗୁଣ ସଂଯୋଗ କରିପାରି ନାହାନ୍ତି । ମନୁଷ୍ୟ ତ ଦୂରର କଥା । ଅନେକ

ବଳବାନ୍ ରାଜା ଓ ରାଜପୁତ୍ର ମଧ୍ୟ ଆସିଥିଲେ, ସେମାନେ ଏହି ଧନୁରେ ଗୁଣ ଚଢ଼ାଇ ପାରିଲେ ନାହିଁ । ମିଥିଳାଧିପତି ପୂର୍ବରୁ ଯଜ୍ଞ କରି ଏହି ଧନୁକୁ ଲାଭ କରିଥିଲେ । ସେ ମାଳା, ଚନ୍ଦନ, ଗନ୍ଧ ଓ ଧୂପ ଦେଇ ସେହି ଧନୁକୁ ପୂଜା କରି ଆସୁଛନ୍ତି ।

## ୮ ॥ ସଗର ଉପାଖ୍ୟାନ

ବିଶ୍ୱାମିତ୍ର ଓ ଅନ୍ୟ ଋଷିମାନେ ରାମ ଲକ୍ଷ୍ମଣଙ୍କ ସହ ମିଥିଳା ଅଭିମୁଖରେ ଯାତ୍ରା କଲେ । ଏକଶତସଂଖ୍ୟକ ଶକଟ ସହ ଋଷିମାନେ ତାଙ୍କର ଅନୁଗମନ କଲେ । ଏପରିକି ଆଶ୍ରମବାସୀ ମୃଗ ଓ ପକ୍ଷୀଗଣ ତାଙ୍କ ସଙ୍ଗେ ସଙ୍ଗେ ଉଡ଼ି ଚାଲିଲେ । ସନ୍ଧ୍ୟାଗମ ଦେଖି ମୁନି ସେମାନଙ୍କୁ ବିଦାୟ ଦେଲେ । ଋଷିମାନଙ୍କ ସହ ରାମ ଲକ୍ଷ୍ମଣ ଓ ବିଶ୍ୱାମିତ୍ର ଶୋଣ ନଦୀକୂଳରେ ରାତ୍ରିଯାପନ କଲେ ।

ସନ୍ଧ୍ୟା ସ୍ନାନ ଓ ଅଗ୍ନିହୋତ୍ର ଆଦି ଶେଷ ହେବାପରେ ରାମ ପଚାରିଲେ, ମହାତ୍ମନ୍, ଅରଣ୍ୟଶୋଭିତ ଏହି ସମୃଦ୍ଧିଶାଳୀ ଦେଶର ନାମ କ'ଣ ? ବିଶ୍ୱାମିତ୍ର କହିଲେ, ପୂର୍ବକାଳରେ କୁଶ ନାମରେ ଜଣେ ବ୍ରତାଚାରୀ ଧର୍ମଜ୍ଞ ରାଜା ଥିଲେ । ତାଙ୍କର ରାଣୀ ବୈଦର୍ଭୀଙ୍କ ଗର୍ଭରୁ ଚାରୋଟି ପୁତ୍ର ଜନ୍ମ ହୋଇଥିଲେ । ସେମାନଙ୍କ ନାମ କୁଶାମ୍ବ, କୁଶନାଭ, ଅସୂର୍ତ୍ତରାଜ ଏବଂ ବସୁ । ପିତାଙ୍କର ଆଦେଶରେ ସେମାନେ କୌଶାମ୍ବୀ, ମହୋଦୟ, ଧର୍ମାରଣ୍ୟ ଓ ଗିରିବ୍ରଜ ନଗର ପ୍ରତିଷ୍ଠା କରି ପ୍ରଜାପାଳନ କଲେ । ଏହି ସେହି ବସୁଙ୍କର ରାଜ୍ୟ, ଯାହାର ରାଜଧାନୀ ଗିରିବ୍ରଜ ପାଞ୍ଚୋଟି ପର୍ବତଦ୍ୱାରା ସୁଶୋଭିତ । ଏଥିରେ ମାଗଧୀ ନଦୀ ପ୍ରବାହିତ ହେଉଛି, ଯାହାର ନାମାନୁସାରେ ମଗଧଦେଶ ବିଖ୍ୟାତ ହୋଇଚି ।

ରାଜା କୁଶନାଭଙ୍କ ଔରସରେ ପତ୍ନୀ ଘୃତାଚୀଙ୍କ ଗର୍ଭରୁ ଏକଶତ ରୂପବତୀ କନ୍ୟା ଜନ୍ମଲାଭ କରିଥିଲେ । ସେମାନେ ରାଜୋଦ୍ୟାନରେ ଆନନ୍ଦରେ ବୁଲୁଥିଲେ । ରୂପଯୌବନବତୀ ସେହି କନ୍ୟାମାନଙ୍କ ସୌନ୍ଦର୍ଯ୍ୟରେ ମୋହିତ ହୋଇ ଦିନେ ବାୟୁଦେବତା ସେମାନଙ୍କୁ ବିବାହ କରିବାପାଇଁ ପ୍ରସ୍ତାବ ଦେଲେ । ମାତ୍ର ଏହି କନ୍ୟାମାନେ ତାଙ୍କ ପିତାଙ୍କୁ ଅବମାନନା କରି ନିଜ ଇଚ୍ଛା ଅନୁସାରେ କାହାରିକୁ ବରଣ କରିବେ ନାହିଁ ବୋଲି ମନାକଲେ । ଏଥିରେ ବାୟୁ କ୍ରୁଦ୍ଧ ହୋଇ ସେମାନଙ୍କୁ ବିକଳାଙ୍ଗ କରିଦେଲେ । ରାଜକନ୍ୟାମାନେ ପିତାଙ୍କ ପାଖକୁ ଯାଇ ସମସ୍ତ କଥା ଜଣାଇଲେ । କୁଶନାଭ କନ୍ୟାମାନେ କିଛି ଅନ୍ୟାୟ କରିନାହାନ୍ତି ବରଂ ସେମାନଙ୍କର ଦୁଃଖର କାରଣ ବାୟୁଙ୍କୁ ସେମାନେ କ୍ଷମା ଦେଇଛନ୍ତି, ସେଥିପାଇଁ ସେମାନଙ୍କୁ ପ୍ରଶଂସା କଲେ ଏବଂ କିପରି ଭାବରେ ଅଭିଶାପରୁ କନ୍ୟାମାନେ ମୁକ୍ତ ହେବେ, ସେଥିପାଇଁ ମନ୍ତ୍ରୀମାନଙ୍କ ସହିତ ପରାମର୍ଶ କଲେ । ମନ୍ତ୍ରୀମାନେ ପରାମର୍ଶ ଦେଲେ – କାମ୍ପିଲ୍ୟନଗରୀରେ ମହାତପସ୍ୱୀ ଚୁଳୀ ଋଷିଙ୍କର ପୁତ୍ର ପରମଧାର୍ମିକ ବ୍ରହ୍ମଦତ୍ତ ରାଜପଣ କରୁଛନ୍ତି । ତାଙ୍କୁ ଏହି କନ୍ୟାମାନଙ୍କୁ ସମ୍ପ୍ରଦାନ କରନ୍ତୁ । କୁଶନାଭ ତାହାହିଁ କଲେ । ରାଜା ବ୍ରହ୍ମଦତ୍ତ ସେହି

କନ୍ୟାମାନଙ୍କର ପାଣି ଗ୍ରହଣ କରିବାମାତ୍ରେ ସେମାନଙ୍କ ଦେହର ସମସ୍ତ ବିକଳାଙ୍ଗ ଅବସ୍ଥା ଦୂର ହୋଇଗଲା । କୁଶନାଭଙ୍କର ପୁତ୍ର ନ ଥିଲେ ।`ସେଥିପାଇଁ ପୁତ୍ରେଷ୍ଟି ଯଜ୍ଞ କଲେ । କୁଶନାଭଙ୍କର ପିତା ରାଜର୍ଷି କୁଶ ସେତେବେଳେ ବଞ୍ଚିଥିଲେ । ଯଜ୍ଞ ଶେଷରେ କୁଶନାଭଙ୍କୁ ଆଶୀର୍ବାଦ କଲେ, ତୁମର ଶୀଘ୍ର ଏକ ଧାର୍ମିକ ପୁତ୍ର ଜନ୍ମ ହେବ । ଏହି ଆଶୀର୍ବାଦ କରି କୁଶ ସ୍ୱର୍ଗାରୋହଣ କଲେ । କୁଶଙ୍କର ଏହି ପୁତ୍ରଙ୍କର ନାମ ହେଲା ଗାଧି । ବିଶ୍ୱାମିତ୍ର କହିଲେ, ମୁଁ ସେହି ଗାଧିଙ୍କର ପୁତ୍ର । କୁଶଙ୍କ ବଂଶରେ ଜନ୍ମ ହୋଇଥିବାରୁ ମୋର ଅନ୍ୟନାମ କୌଶିକ । ମୋର ଜ୍ୟେଷ୍ଠା ଭଗିନୀ ସତ୍ୟବତୀ ତାଙ୍କ ସ୍ୱାମୀଙ୍କର ସ୍ୱର୍ଗବାସ ପରେ ଜଗତର କଲ୍ୟାଣ ପାଇଁ ଗୋଟିଏ ନଦୀ ହୋଇ ହିମାଳୟରୁ ପ୍ରବାହିତ ହେଲେ । ସେହି ନଦୀର ନାମ ତାଙ୍କ ନାମାନୁସାରେ କୌଶିକୀ ହୋଇଚି । (ଯାହାର ଡାକନାମ ଏବେ ହେଉଚି କୁଶୀ ।)

ବିଶ୍ୱାମିତ୍ର ଏହିପରି ନିଜ ବଂଶର ପରିଚୟ ଦେଇ ଅଧରାତି ବିତିଯାଇଥିବାରୁ ରାମ ଲକ୍ଷ୍ମଣଙ୍କୁ ଶୋଇପଡ଼ିବା ପାଇଁ ପରାମର୍ଶ ଦେଲେ ।

ପରଦିନ ସେମାନେ ଶୋଣନଦୀ କୂଳେ କୂଳେ କିଛିବାଟ ଯାଇ ଶୋଣନଦୀକୁ ଅତିକ୍ରମ କରି ମଧ୍ୟାହ୍ନ ସମୟରେ ଗଙ୍ଗାନଦୀ କୂଳରେ ପହଞ୍ଚିଲେ । ବିଶ୍ୱାମିତ୍ର କହିଲେ, ଏଇ ତ୍ରିପଥଗା ପବିତ୍ର ଗଙ୍ଗାନଦୀରେ ସ୍ନାନ ଶେଷ କରି ଅଗ୍ନିହୋତ୍ର ପୂର୍ବକ ମଧ୍ୟାହ୍ନଭୋଜନ କରି ବିଶ୍ରାମ କରିବା । ମଧ୍ୟାହ୍ନ – ହବି (ଯଜ୍ଞରେ ଅର୍ପିତ ଖାଦ୍ୟ) ଭୋଜନ କରିବାପରେ ରାମ ପଚାରିଲେ, ମହର୍ଷି, ଏହାଙ୍କର ନାମ କାହିଁକି ତ୍ରିପଥଗା ଗଙ୍ଗା ହୋଇଛି ? ଏହାଙ୍କର ଉତ୍ପତ୍ତି କିପରି ହୋଇଥିଲା ଏବଂ କିପରି ଭାବରେ ଏହା ତିନିଲୋକକୁ ବ୍ୟାପ୍ତ କରି ସମୁଦ୍ରରେ ପଡ଼ିଥିଲେ ?

ବିଶ୍ୱାମିତ୍ର କହିଲେ – ହିମାଳୟଙ୍କ ପତ୍ନୀ ମେନାଙ୍କର ଗର୍ଭରୁ ଦୁଇଟି କନ୍ୟା ଜନ୍ମ ହୋଇଥିଲେ । ଗଙ୍ଗା ଓ ଉମା । ଗଙ୍ଗାଙ୍କର ଜନ୍ମ ପରେ ଦେବତାମାନେ ତ୍ରିଭୁବନର ମଙ୍ଗଳପାଇଁ ଗଙ୍ଗାକୁ ଦାନ କରିବାପାଇଁ ହିମାଳୟଙ୍କୁ ପ୍ରାର୍ଥନା କରିଥିଲେ । ଦେବତାମାନେ ଗଙ୍ଗାକୁ ନେଇ ସ୍ୱର୍ଗକୁ ଗଲେ । ସ୍ୱର୍ଗରେ ଗଙ୍ଗା ଏକ ନଦୀ ପାଲଟିଯାଇ ଦେବତାମାନଙ୍କର ଆନନ୍ଦ ବର୍ଦ୍ଧନ କଲେ । ସେ ସ୍ୱର୍ଗଗଙ୍ଗା, ସୁରଧୁନୀ ଓ ମନ୍ଦାକିନୀ ନାମରେ ପ୍ରସିଦ୍ଧ ହେଲେ । ଉମା କଠୋର ତପସ୍ୟା କରି ମହାଦେବଙ୍କୁ ପତିରୂପେ ଲାଭ କଲେ । ମହାଦେବ ଓ ଉମାଙ୍କର ପୁତ୍ର କାର୍ତ୍ତିକେୟ ପରେ ଦେବତାମାନଙ୍କର ସେନାପତି ହୋଇଥିଲେ ।

ବିଶ୍ୱାମିତ୍ର କହିଲେ ରାମ, ପୂର୍ବକାଳରେ ଅଯୋଧ୍ୟାରେ ସଗର ନାମରେ ଜଣେ ରାଜା ରାଜପଣ କରୁଥିଲେ । ତାଙ୍କର କେଶିନୀ ଓ ସୁମତି ନାମରେ ଦୁଇପତ୍ନୀ ଥିଲେ । ପୁତ୍ର ନ ହେବାରୁ ସେ ଦୁଇପତ୍ନୀଙ୍କୁ ସାଙ୍ଗରେ ନେଇ ଭୃଗୁପ୍ରସବିତା ନାମକ ହିମାଳୟର ଏକ ପର୍ବତରେ କଠୋର ତପସ୍ୟା କଲେ । ଏଥିରେ ଭୃଗୁ ମୁନି ପ୍ରସନ୍ନ ହୋଇ ବର ଦେଲେ, ରାଜା, ତୁମର ଦୁଇ ପତ୍ନୀ ଅଚିରେ ପୁତ୍ରବତୀ ହେବେ । ଜଣଙ୍କ ଗର୍ଭରୁ ଏକ କୁଳ ଉଜ୍ଜ୍ୱଳକାରୀ ପୁତ୍ର ଜନ୍ମ ହେବ । ଅନ୍ୟଜଣକ ଗର୍ଭରୁ ଷାଠିଏ ହଜାର ପୁତ୍ର ଜନ୍ମ ହେବେ । କେଶିନୀ ଏକପୁତ୍ର ଓ ସୁମତି ଷାଠିଏ ହଜାର ପୁତ୍ରର ବର ଗ୍ରହଣ କଲେ ।

କେଶିନୀଙ୍କ ଗର୍ଭରୁ ଜାତ ସଗର ରାଜାଙ୍କର ପୁତ୍ର ଅସମଞ୍ଜସ ଅତ୍ୟନ୍ତ ଦୁଷ୍ଟ ପ୍ରକୃତିର ଥିଲେ । ସେ ଛୋଟ ଛୋଟ ପିଲାମାନଙ୍କୁ ନେଇ ସରଯୂନଦୀ ଗର୍ଭକୁ ଠେଲି ଦେଇ ହସୁଥିଲେ । ପିଲାମାନଙ୍କୁ ବୁଡ଼ାଇ ମାରିବାରେ ତାଙ୍କୁ ଖୁସି ଲାଗୁଥିଲା । ବୟସ ବଢ଼ିବା ସଙ୍ଗେ ସଙ୍ଗେ ତାଙ୍କର ଦୁଷ୍ଟ ପ୍ରକୃତି ବଢ଼ିବାକୁ ଲାଗିଲା । ସେ ଅତ୍ୟନ୍ତ ନିଷ୍ଠୁର ଓ ଅତ୍ୟାଚାରୀ ହୋଇଉଠିଲେ । ପ୍ରଜାମାନେ ସଗରରାଜାଙ୍କ ପାଖକୁ ଯାଇ ତାଙ୍କର ଦୁର୍ବୃତ୍ତ ପୁତ୍ର ବିରୋଧରେ ଅଭିଯୋଗ କଲେ । ରାଜା ଅତ୍ୟନ୍ତ ଧର୍ମଜ୍ଞ ଓ ନ୍ୟାୟପରାୟଣ ଥିଲେ । ସେ ପ୍ରଜାମାନଙ୍କ ଅଭିଯୋଗକୁ ଗ୍ରହଣ କରି ପୁତ୍ର ଅସମଞ୍ଜସକୁ ରାଜ୍ୟରୁ ନିର୍ବାସିତ କଲେ । ମାତ୍ର ଅସମଞ୍ଜସଙ୍କର ଏକ ପୁତ୍ରସନ୍ତାନ ଥିଲେ, ଯେ କି ରାଜପ୍ରାସାଦରେ ପ୍ରତିପାଳିତ ହୋଇଥିଲେ । ଏହି ପୁତ୍ରର ନାମ ଅଂଶୁମାନ । ସେ ପିତାଙ୍କ ପରି ନ ଥିଲେ । ସେ ଅତ୍ୟନ୍ତ ମିଷ୍ଟଭାଷୀ, ଶୂର, ବୀର, ଜନପ୍ରିୟ ହୋଇ ନିଜର ପିତାମହଙ୍କର ଆନନ୍ଦ ବର୍ଦ୍ଧନ କରୁଥିଲେ ।

ସଗରଙ୍କର ଅନ୍ୟପତ୍ନୀ ସୁମତି ବିହଙ୍ଗରାଜ ଗରୁଡ଼ଙ୍କର ଭଗିନୀ ଥିଲେ । ତାଙ୍କ ଗର୍ଭରୁ ଏକ ତୁମ୍ୱାକାର ପିଣ୍ଡ ଜାତ ହେଲା ଏବଂ ସେଥିରୁ ଜନ୍ମ ହେଲେ ଷାଠିଏ ହଜାର ପୁତ୍ର । ଏହି ପୁତ୍ରମାନେ ସୁନ୍ଦର ଓ ବଳଶାଳୀ ହେଲେ ମଧ ଅତ୍ୟନ୍ତ ଉଦ୍ଧତ ଥିଲେ ।

ବହୁକାଳ ପରେ ସଗର ଏକ ଅଶ୍ୱମେଧ ଯଜ୍ଞର ଆୟୋଜନ କଲେ । ହିମାଳୟ ଓ ବିନ୍ଧ୍ୟ ପର୍ବତର ମଧ୍ୟଦେଶରେ ପବିତ୍ର ଯଜ୍ଞଶାଳା ନିର୍ମିତ ହେଲା । ଅଂଶୁମାନ ଯଜ୍ଞଅଶ୍ୱର ଅନୁଗମନ କଲେ । ଇନ୍ଦ୍ର ଏହି ଅଶ୍ୱମେଧ ଯଜ୍ଞରେ ସଗରଙ୍କ ପ୍ରତାପ ବୃଦ୍ଧି ହେବ ଜାଣି ବିଚଳିତ ହେଲେ ଏବଂ ଏକ ରାକ୍ଷସର ବେଶରେ ଯଜ୍ଞାଶ୍ୱକୁ ଅପହରଣ କରିଥିଲେ ।

ଯଜ୍ଞର ଅଶ୍ୱ ଅପହୃତ ହେବାରୁ ଯଜ୍ଞକାରୀ ଆଚାର୍ଯ୍ୟଗଣ ରାଜାଙ୍କୁ କହିଲେ, ଅଶ୍ୱ ବିନା ଯଜ୍ଞର ପୂର୍ଣ୍ଣାହୁତି ସମ୍ଭବ ନୁହେଁ । ଯଦି ଯଜ୍ଞରେ ତ୍ରୁଟି ଘଟେ, ତା' ହେଲେ ସମସ୍ତଙ୍କର ବିଶେଷତଃ ଯଜ୍ଞକାରୀର ଘୋର ଅମଙ୍ଗଳ ହେବ । ତେଣୁ ଶୀଘ୍ର ଯଜ୍ଞାଶ୍ୱକୁ ଆଣିବାର ବ୍ୟବସ୍ଥା କରାଯାଉ । ସଗର ତାଙ୍କର ଷାଠିଏ ହଜାର ପୁତ୍ରଙ୍କୁ ଆଦେଶ ଦେଲେ – ପୁତ୍ରମାନେ, ତୁମେ ଯଜ୍ଞାଶ୍ୱକୁ ଉଦ୍ଧାର କରି ନ ଆଣିବା ପର୍ଯ୍ୟନ୍ତ ଆମେମାନେ ଏହି ଅପୂର୍ଣ୍ଣ ଯଜ୍ଞକୁ ଶେଷ କରିବାପାଇଁ ଯଜ୍ଞସ୍ଥଳରେ ବସିରହିଲୁ ।

ସଗରଙ୍କର ଷାଠିଏହଜାର ପୁତ୍ର ପୃଥିବୀର ଚାରିଆଡ଼େ ଖୋଜି ଖୋଜି ଅଶ୍ୱକୁ ପାଇଲେ ନାହିଁ । ସେମାନେ କ୍ରୁଦ୍ଧ ହୋଇ ପୃଥିବୀଗର୍ଭରେ କାଳେ ଅଶ୍ୱକୁ କିଏ ଲୁଚାଇ ରଖିଥିବ ବୋଲି ଭାବି ପୃଥିବୀକୁ ଖୋଳିବାକୁ ଲାଗିଲେ । ସେମାନେ ଏପରି ଜୋରରେ ଓ ଦ୍ରୁତ ବେଗରେ ଖୋଳିବାକୁ ଲାଗିଲେ ଯେ ସମସ୍ତ ପ୍ରାଣୀ ଭୟରେ ଆର୍ତ୍ତନାଦ କରିବାକୁ ଲାଗିଲେ । ଦେବତା, ଗନ୍ଧର୍ବ, ଅସୁର, ପନ୍ନଗ ସମସ୍ତେ ବ୍ରହ୍ମାଙ୍କ ପାଖକୁ ଯାଇ ପ୍ରାର୍ଥନା କରି କହିଲେ – ପିତାମହ, ମନ୍ଦବୁଦ୍ଧି ସଗରପୁତ୍ରଗଣ ବହୁ ପ୍ରାଣୀଙ୍କୁ ନାଶକରି ଏବଂ ସମଗ୍ର ଜଗତକୁ କଷ୍ଟଦେଇ ଏହି ପୃଥିବୀକୁ ଖନନ କରୁଛନ୍ତି । ଆପଣ ଏହାର ପ୍ରତିକାର କରନ୍ତୁ । ବ୍ରହ୍ମା କହିଲେ, ବର୍ତ୍ତମାନ ବିଷ୍ଣୁ କପିଳ ଋଷି ରୂପରେ ଏହି ସଂସାରର ରକ୍ଷକ ଭାବରେ ତପସ୍ୟା କରୁଛନ୍ତି । ତାଙ୍କର କୋପାନଳରେ ସଗରପୁତ୍ରମାନେ ଅବଶ୍ୟ ଭସ୍ମୀଭୂତ ହେବେ । ତୁମେ ଅଳ୍ପକାଳ ଅପେକ୍ଷାକର ।

ସଗରପୁତ୍ରମାନେ ପୃଥିବୀକୁ ଖୋଳିସାରି ଅଶ୍ୱକୁ ନ ପାଇବାରୁ ପିତାଙ୍କ ପାଖକୁ ଫେରିଆସି ସମସ୍ତ ବିବରଣୀ ଦେଲେ । ସଗର କହିଲେ, ତୁମେମାନେ କୃତକାର୍ଯ୍ୟ ନ ହେବା ପର୍ଯ୍ୟନ୍ତ ଫେରିବ ନାହିଁ, ତୁମମାନଙ୍କୁ ଆହୁରି ଖୋଳି ପାତାଳ ପର୍ଯ୍ୟନ୍ତ ପୃଥିବୀକୁ ଭେଦ କରିବାକୁ ପଡ଼ିବ । ସଗରପୁତ୍ରମାନେ ସେହିପରି କରି ଦେଖିଲେ ବିରୂପାକ୍ଷ ନାମକ ପର୍ବତାକାର ଏକ ବିଶାଳ ଦିଗ୍‌ଗଜ ପର୍ବତ ଓ କାନନ ସହିତ ଏହି ପୃଥିବୀକୁ ଧାରଣ କରି ରହିଚି । ଏହି ଦିଗ୍‌ଗଜ ଟିକିଏ ହଳଚଲ ହୋଇଗଲେ ଭୂମିକମ୍ପ ହୁଏ । ସେମାନେ ଦିଗ୍‌ଗଜକୁ ବିନୟପୂର୍ବକ ପ୍ରଦକ୍ଷିଣ କରି ପୃଥିବୀ ଭେଦକରି ଦକ୍ଷିଣ ଦିଗକୁ ଚାଲିଲେ । ଦକ୍ଷିଣରେ ସେମାନେ ଏହିପରି ଏକ ବିଶାଳ ଦିଗ୍‌ଗଜ ମହାପଦ୍ମ ମଧ୍ୟ ପୃଥିବୀ ଧାରଣ କରିଥିବାର ଦେଖିଲେ । ଏହିପରି ପଶ୍ଚିମକୁ ଯାଇ ସୌମନସ ଏବଂ ଉତ୍ତରରେ ତୁଷାରଧବଳ ଭଦ୍ର ନାମକ ଦିଗ୍‌ଗଜକୁ ଦେଖିଲେ । ଏହି ଚାରୋଟି ଦିଗ୍‌ଗଜ ଚାରିପଟୁ ପୃଥିବୀକୁ ଧାରଣ କରିଥାନ୍ତି ।

ସଗରପୁତ୍ରମାନେ ଉତ୍ତର-ପୂର୍ବ ଦିଗରେ ପୃଥିବୀକୁ ଭେଦ କରି ପାତାଳ ପ୍ରଦେଶରେ ଯାଇ ପହଞ୍ଚି ଦେଖିଲେ ଜଣେ ଋଷି ସେଠାରେ ତପସ୍ୟା କରୁଛନ୍ତି ଏବଂ ତାଙ୍କର ଅଦୂରରେ ଯଜ୍ଞ ଅଶ୍ୱଟି ଚରୁଛି । ସେମାନେ କ୍ରୋଧରେ ଅଧୀର ହୋଇ ଖଣତି, ଲଙ୍ଗଳ, ବୃକ୍ଷ ଓ ଶିଳାମାନ ଧରି ସେହି ତପସ୍ୟାରତ ଋଷିଙ୍କ ନିକଟକୁ ଦଉଡ଼ି ଯାଇ କହିଲେ– ଦୁର୍ବୁଦ୍ଧି, ଯଜ୍ଞର ଅଶ୍ୱକୁ ଚୋରିକରି ଏଠାରେ ଆସି ଆଖିବୁଜି ବସିଯାଇଚୁ । ତୁ ଜାଣିନାହୁଁ, ଆମେମାନେ ମହାପ୍ରତାପୀ ସଗରରାଜାଙ୍କର ପୁତ୍ର । ସେମାନଙ୍କ କୋଳାହଳରେ ଋଷିଙ୍କର ତପୋଭଙ୍ଗ ହେଲା । ଏହି ଋଷି ଅନ୍ୟ କେହି ନୁହନ୍ତି, ସ୍ୱୟଂ ବିଷ୍ଣୁ ଯେ କପିଳ ରୂପରେ ତପସ୍ୟା କରୁଥିଲେ, ତାଙ୍କର କୋପାନଳରେ ସଗରପୁତ୍ରମାନେ ତତ୍‌କ୍ଷଣାତ୍ ଭସ୍ମସାତ୍ ହୋଇଗଲେ ।

ପୁତ୍ରମାନେ ନ ଫେରିବାର ଦେଖି ସଗର ତାଙ୍କର ପୌତ୍ର ଅଂଶୁମାନଙ୍କୁ କହିଲେ, ବତ୍ସ, ତୁମେ ବୀର ଓ କୃତବିଦ୍ୟ । ତୁମେ ଧନୁ ଖଡ୍ଗ ନେଇ ତୁମର ପିତୃବ୍ୟମାନଙ୍କର ଅନୁସନ୍ଧାନ କର ଏବଂ ଅଶ୍ୱକୁ ଧରି ସେମାନଙ୍କ ସହିତ ଶୀଘ୍ର ଫେରିଆସ । ଅଂଶୁମାନ ଦ୍ରୁତବେଗରେ ଯାଇ ସଗରପୁତ୍ରମାନଙ୍କ ଦ୍ୱାରା ନିର୍ମିତ ଭୂଗର୍ଭ ପଥକୁ ଦେଖିପାରିଲେ । ସେହି ପଥରେ ଯାଉ ଯାଉ ଦିଗ୍‌ଗଜଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ସେ ତାଙ୍କୁ ପ୍ରଣିପାତ କରି ଆସିବାର କାରଣ ଜଣାଇଲେ । ଦିଗ୍‌ଗଜ କହିଲେ, ଅସମଞ୍ଜସପୁତ୍ର, ତୁମର ମଙ୍ଗଳ ହେଉ । ତୁମେ ଶୀଘ୍ର ଯଜ୍ଞାଶ୍ୱକୁ ଘେନି ଫେରିଆସିବ । ଅନ୍ୟ ଦିଗ୍‌ଗଜମାନେ ମଧ୍ୟ ତାଙ୍କୁ ସେହିପରି ଆଶୀର୍ବାଦ କଲେ । ଅଂଶୁମାନ ତଳକୁ ଯାଇ ଯେଉଁଠି ଯଜ୍ଞାଶ୍ୱ ଚରୁଥିଲା, ସେଠାରେ ପହଞ୍ଚି ଖୁସି ହୋଇଗଲେ । ମାତ୍ର ତାଙ୍କର ଏହି ଆନନ୍ଦ କ୍ଷଣସ୍ଥାୟୀ ହେଲା । ସେ ତାଙ୍କର ପିତୃବ୍ୟମାନଙ୍କୁ ନ ଦେଖି ବିରାଟ ଭସ୍ମସ୍ତୂପମାନ ଦେଖିବାକୁ ପାଇଲେ । ଏହିସବୁ ସ୍ତୂପ କାହାର, ସେଥିରେ ତାଙ୍କର ସନ୍ଦେହ ରହିଲା ନାହିଁ । ଶୋକରେ ସେ କ୍ରନ୍ଦନ କରିବାକୁ ଲାଗିଲେ । ଏହି ସମୟରେ ତାଙ୍କର ପିତୃବ୍ୟମାନଙ୍କର ମାତୁଳ ଗରୁଡ଼ ସେଠାରେ ଉପସ୍ଥିତ ହୋଇ କହିଲେ– ବୀରଶ୍ରେଷ୍ଠ, ତୁମେ ଶୋକ କର ନାହିଁ । କପିଳଙ୍କର

ଅଭିଶାପରେ ତୁମର ପିତୃବ୍ୟମାନଙ୍କର ବିନାଶ ଘଟିଚି । କିନ୍ତୁ ତାହା ଜଗତର ମଙ୍ଗଳ ପାଇଁ । ଏମାନଙ୍କର ଉଦ୍ଧାର ହୋଇପାରିବ, ତୁମେ ଯଦି ଗଙ୍ଗାଜଳ ଦ୍ୱାରା ଏମାନଙ୍କର ତର୍ପଣକ୍ରିୟା କରିପାରିବ । ସେହି ପତିତପାବନୀ ଗଙ୍ଗା ବର୍ତ୍ତମାନ ସ୍ୱର୍ଗଲୋକରେ ରହୁଛନ୍ତି । ତୁମେ ତାଙ୍କୁ ଧରାତଳକୁ ଆଣି ଅକ୍ଷୟକୀର୍ତ୍ତି ଅର୍ଜନ କର ।

ଯଶସ୍ୱୀ ଅଂଶୁମାନ ଯଜ୍ଞ ଅଶ୍ୱକୁ ଧରି ଫେରିଆସିଲେ ଏବଂ ପିତାମହଙ୍କୁ ପିତୃବ୍ୟମାନଙ୍କର ଶୋକସମ୍ବାଦ ଦେଲେ । ଗରୁଡ଼ ଯାହା କହିଥିଲେ ତାହା ମଧ୍ୟ ଜଣାଇଲେ । ଗଙ୍ଗାଙ୍କୁ କିପରି ଅଣାଯାଇପାରିବ ରାଜା ସଗର ତାର କୌଣସି ଉପାୟ ପାଇପାରିଲେ ନାହିଁ । ସେହି କଥା ଚିନ୍ତା କରି କରି ତାଙ୍କର ମୃତ୍ୟୁ ହେଲା ।

## ୯ ।। ଗଙ୍ଗା

ସଗରଙ୍କ ପରେ ଅଂଶୁମାନ ରାଜା ହେଲେ । ମାତ୍ର ସେ ବେଶିଦିନ ରାଜତ୍ୱ ନ କରି ତାଙ୍କର ପୁତ୍ର ଦିଲୀପଙ୍କୁ ରାଜପଦ ଦେଇ କଠୋର ତପସ୍ୟା କରିବାପାଇଁ ହିମାଳୟ ଚାଲିଗଲେ । ରାଜା ଦିଲୀପ ଗଙ୍ଗାଙ୍କୁ ଆଣିବାପାଇଁ ନାନା ଉପାୟ ଚିନ୍ତାକରି କୃତକାର୍ଯ୍ୟ ହୋଇପାରିଲେ ନାହିଁ । ମନଦୁଃଖରେ ବ୍ୟାଧିଗ୍ରସ୍ତ ହୋଇ ସେ ମୃତ୍ୟୁବରଣ କଲେ । ଏହିପରି ତିନୋଟି ପୁରୁଷ ଅତିକ୍ରମ କରିଗଲା ।

ଦିଲୀପଙ୍କ ପୁତ୍ର ଭଗୀରଥ ରାଜପଦରେ ଅଭିଷିକ୍ତ ହେଲେ । ପରମ ଧାର୍ମିକ ରାଜା ଭଗୀରଥଙ୍କର ଦୁଇଟି ଚିନ୍ତା ଥିଲା । ସେ ନିଃସନ୍ତାନ ଥିବାରୁ ସର୍ବଦା ପୁତ୍ର କାମନା କରୁଥିଲେ । ତାଙ୍କର ପୂର୍ବପୁରୁଷଗଣ ଗଙ୍ଗାଙ୍କୁ ସ୍ୱର୍ଗରୁ ଆଣିବାପାଇଁ ଚିନ୍ତା କରି କରି ଇହଲୀଳା ସମ୍ବରଣ କରିଥିଲେ । ତାହା ଏକ ବଂଶାନୁଗତ ସଙ୍କଳ୍ପ ରୂପେ ତାଙ୍କ ମନକୁ ଆଲୋଡ଼ିତ କରୁଥିଲା । ତେଣୁ ସେ ଉପଯୁକ୍ତ ମନ୍ତ୍ରୀମାନଙ୍କଠାରେ ରାଜ୍ୟଭାର ଅର୍ପଣ କରି ତପସ୍ୟା କରିବାପାଇଁ ଚାଲିଗଲେ ।

ଭଗୀରଥ ଉର୍ଦ୍ଧ୍ୱବାହୁ ହୋଇ ଚତୁର୍ଦ୍ଦିଗରେ ଅଗ୍ନି ଜଳାଇ ତା' ମଧ୍ୟରେ ବସି ଏବଂ ମାସରେ ଥରେ ମାତ୍ର ଭୋଜନ କରି ବହୁକାଳ ପର୍ଯ୍ୟନ୍ତ ଗୋକର୍ଣ୍ଣ ତୀର୍ଥରେ କଠୋର ତପସ୍ୟା କଲେ । ତାଙ୍କର ଘୋର ତପଃ ପ୍ରଭାବରେ ପ୍ରଜାପତି ବ୍ରହ୍ମା ସ୍ଥିର ହୋଇ ରହି ପାରିଲେ ନାହିଁ । ତପସ୍ୟାରତ ଭଗୀରଥଙ୍କ ପାଖରେ ଆବିର୍ଭୂତ ହୋଇ କହିଲେ – ରାଜା, ମୁଁ ତୁମର କଠୋର ତପସ୍ୟାରେ ସନ୍ତୁଷ୍ଟ ହୋଇଚି, ତୁମେ କି ବର ମାଗୁଚ, ମାଗ । ଭଗୀରଥ ଦୁଇଟି ବର ମାଗିଲେ, ବଂଶରକ୍ଷା ପାଇଁ ପୁତ୍ର ଓ ପୂର୍ବପୁରୁଷଙ୍କ ଉଦ୍ଧାର ପାଇଁ ଗଙ୍ଗାଙ୍କୁ ପୃଥିବୀକୁ ଆଣିବା । ବ୍ରହ୍ମା କହିଲେ, ପ୍ରଥମ ବରଟି ଦେବାରେ କିଛି ଅସୁବିଧା ନାହିଁ । ଇକ୍ଷ୍ୱାକୁ ବଂଶର ରକ୍ଷାପାଇଁ ତୁମେ ଉପଯୁକ୍ତ ପୁତ୍ର ଲାଭ କରିବ । କିନ୍ତୁ ତୁମର ଦ୍ୱିତୀୟ ବରଟି କାର୍ଯ୍ୟକାରୀ ହେବା କଷ୍ଟକର । ହୈମବତୀ ଗଙ୍ଗା ପୃଥିବୀକୁ ଅବତରଣ କରିବେ ସତ, କିନ୍ତୁ ତାଙ୍କର ପତନ ପୃଥିବୀ ସହିପାରିବ ନାହିଁ । ଅନ୍ୟମାନେ କେହି ମଧ୍ୟ

ତାଙ୍କୁ ଧାରଣ କରିପାରିବେ ନାହିଁ । କେବଳ ଗଙ୍ଗାଙ୍କୁ ଧାରଣ କରିବାପାଇଁ ଶୂଳପାଣି ହରଙ୍କ ଛଡ଼ା ଅନ୍ୟ କେହି ସମର୍ଥ ନୁହନ୍ତି । ତେଣୁ ତୁମେ ମହାଦେବଙ୍କୁ ଯଦି ସନ୍ତୁଷ୍ଟ କରି ରାଜି କରାଇଦେଇପାରିବ, ତା' ହେଲେ ଅବଶ୍ୟ ଗଙ୍ଗା ଧରାତଳରେ ଅବତରଣ କରିବେ ।

ପୁଣି ଭଗୀରଥ କଠୋର ତପସ୍ୟାର ବ୍ରତ ଗ୍ରହଣ କଲେ । ଗୋଡ଼ର ବୁଢ଼ା ଆଙ୍ଗୁଠିରେ ଠିଆ ହୋଇ କେବଳ ପବନ ମାତ୍ର ଆହାର କରି ସେ ନିବିଷ୍ଟ ଚିତ୍ତରେ ଶିବଙ୍କୁ ଆରାଧନା କଲେ । ବର୍ଷେ ଅତୀତ ହେବାପରେ ବିଶ୍ୱବନ୍ଦିତ ଉମାପତି ତାଙ୍କ ଆଗରେ ଉପସ୍ଥିତ ହୋଇ କହିଲେ – ନରଶ୍ରେଷ୍ଠ, ତୁମର ଅଭିଳାଷ ଅଚିରେ ପୂର୍ଣ୍ଣ ହେବ । ସ୍ୱର୍ଗରୁ ପତିତ ହେବାବେଳେ ମୁଁ ଶୈଳରାଜନନ୍ଦିନୀଙ୍କୁ ମସ୍ତକରେ ଗ୍ରହଣ କରିବି । ଭଗୀରଥଙ୍କର ଆନନ୍ଦର ସୀମା ରହିଲା ନାହିଁ ।

ଗଙ୍ଗା ଧରାତଳରେ ଅବତରଣ କରିବାପାଇଁ ପ୍ରସ୍ତୁତ ହେଲେ । ସେ ଭାବିଲେ ମୁଁ ଏପରି ବିଶାଳ ରୂପ ଗ୍ରହଣ କରି ଭୟଙ୍କର ବେଗରେ ଆକାଶରୁ ପଡ଼ିବି ଯେ ଶଙ୍କରଙ୍କୁ ଭସାଇନେଇ ପାତାଳରେ ଯାଇ ବିଶ୍ରାମ କରିବି । ସର୍ବାନ୍ତର୍ଯାମୀ ହର ଗଙ୍ଗାଙ୍କର ମନୋଭାବ ଜାଣିପାରିଲେ ଏବଂ ତାଙ୍କର ଗର୍ବ ଖଣ୍ଡନ କରି ତାଙ୍କୁ ଉପଯୁକ୍ତ ଶିକ୍ଷା ଦେବାପାଇଁ ସ୍ଥିର କଲେ । କ୍ରୁଦ୍ଧ ତ୍ରିଲୋଚନ ରୁଦ୍ରମୂର୍ତ୍ତି ଧରି ତାଙ୍କର ମସ୍ତକର ଜଟାଜାଳ ବିସ୍ତାର କରିବାକୁ ଲାଗିଲେ । ତାଙ୍କର ବିସ୍ତାରିତ ଜଟା ସମସ୍ତ ଆକାଶମଣ୍ଡଳକୁ ବ୍ୟାପିଗଲା । ସେହିଦିନୁ ତାଙ୍କର ନାମ ହେଲା ବ୍ୟୋମକେଶ । ଗଙ୍ଗା ପ୍ରବଳ ବେଗରେ ସେହି ଜଟାରେ ପଡ଼ି ଆଉ ବାହାରିପାରିଲେ ନାହିଁ । ପଥଭ୍ରାନ୍ତ ହୋଇ ତାହାରି ମଧ୍ୟରେ ରହିଗଲେ । ଶିବ ଓ ଗଙ୍ଗାଙ୍କ ବିବାଦ ମଧ୍ୟରେ ଗଙ୍ଗା ଲୁଚିଯିବାରୁ ଭଗୀରଥ କିଛି ଉପାୟ ନ ଦେଖି ପୁଣି ତପସ୍ୟା କଲେ । ମହାଦେବ ଜଟାଜୁଟ ମଧ୍ୟରୁ ଗଙ୍ଗାଙ୍କୁ ମୁକ୍ତି ଦେଇ ତାଙ୍କୁ ବିନ୍ଦୁସରୋବର ଆଡ଼କୁ ମୁହାଁଇ ଛାଡ଼ିଦେଲେ । ପୂତନୀରା ଗଙ୍ଗା ସାତଟି ସ୍ରୋତରେ ପ୍ରବାହିତ ହେଲେ । ପୂର୍ବରେ ହ୍ଲାଦିନୀ, ପାବନୀ ଓ ନଳିନୀ ଏହି ତିନି ସ୍ରୋତ, ପଶ୍ଚିମରେ ସୁଚକ୍ଷୁ, ସୀତା ଓ ସିନ୍ଧୁ ନାମରେ ଅନ୍ୟ ତିନୋଟି ସ୍ରୋତ ଏବଂ ଅଳକାନନ୍ଦା ନାମରେ ସପ୍ତମ ସ୍ରୋତ ଭଗୀରଥଙ୍କ ପଛେ ପଛେ ପ୍ରବାହିତ ହେଲା । ଭଗୀରଥ ସୁନ୍ଦର ରଥ ଉପରେ ଆରୋହଣ କରି ଚାଲିଲେ ଏବଂ ତାଙ୍କ ପଛେ ପଛେ ପୃଥିବୀରେ ପତନପୂର୍ବକ ତୁମୁଳ କଳଧ୍ୱନି କରି ଗଙ୍ଗା ପ୍ରବାହିତ ହେଲେ । ଏହି ବିଚିତ୍ର ମନୋରମ ଦୃଶ୍ୟ ଦେଖିବାପାଇଁ ଦେବ, ଗନ୍ଧର୍ବ, ଯକ୍ଷ ଓ ସିଦ୍ଧମାନେ ବିଭିନ୍ନ ବାହନ ଆରୋହଣ କରି ଏବଂ ବହୁ ସୁନ୍ଦର ଜ୍ୟୋତିର୍ମୟ ଅଳଙ୍କାର ପରିଧାନ କରି ସେଠାରେ ଜମା ହେବାକୁ ଲାଗିଲେ । ଗଙ୍ଗାଙ୍କର ନିର୍ମଳ ନୀଳ ଜଳ ଉପରେ ବହୁ ଜଳଚର ଜୀବ, ମତ୍ସ୍ୟ, ସର୍ପ, ଶିଶୁମାର ଆଦି ନୃତ୍ୟ କରୁଥିବାରୁ ଆକାଶରେ ବିଜୁଳିର ଝଲକପରି ଶୋଭା ସୃଷ୍ଟି କରୁଥିଲା । ଜଳ ଉପରେ ଫେନରାଶି ଗଗନଚାରୀ ମେଘମାନଙ୍କ ପରି ଦେଖାଯାଉଥିଲା । ଗଙ୍ଗାଙ୍କର ଗତି ମଧ୍ୟ ବଡ଼ ବିଚିତ୍ର ଥିଲା । କେତେବେଳେ ଦ୍ରୁତବେଗରେ ତ କେତେବେଳେ ଧୀର ଗତିରେ, କେତେବେଳେ କାୟା ବିସ୍ତାର କରି ବା କେତେବେଳେ ସଙ୍କୁଚିତ ହୋଇ, ଉଚ୍ଚଭୂମିରୁ ପୁଣି

ନିମ୍ନ ସମତଳ ଭୂମିକୁ ଖସିଆସି ଅପୂର୍ବଛନ୍ଦରେ ଗଙ୍ଗା ଯେତେବେଳେ ଭଗୀରଥଙ୍କ ପଛେ ପଛେ ନୃତ୍ୟକରି ଚାଲିଥିଲେ, ତାହା ସମସ୍ତ ସଂସାରର ଆନନ୍ଦ ବର୍ଦ୍ଧନ କରୁଥିଲା ।

ଏହିପରି ଯିବା ସମୟରେ ଗଙ୍ଗା ଜହ୍ନୁଋଷିଙ୍କର ଆଶ୍ରମକୁ ଭସାଇ ନେଇ ଚାଲିଗଲେ । ଋଷି ଅତ୍ୟନ୍ତ କ୍ରୁଦ୍ଧ ହୋଇ ଗଙ୍ଗାଙ୍କୁ ଚଳୁ କରି ଉଦରସ୍ଥ କରିନେଲେ । ଏଥର କେବଳ ଭଗୀରଥ ନୁହନ୍ତି, ଦେବତା ଓ ଋଷିମାନେ ଗଙ୍ଗାଙ୍କୁ ଛାଡ଼ିଦେବାପାଇଁ ଜହ୍ନୁଋଷିଙ୍କୁ ପ୍ରାର୍ଥନା କଲେ । ଋଷି ସନ୍ତୁଷ୍ଟ ହୋଇ କାନ ବାଟେ ତାଙ୍କୁ ଛାଡ଼ିଦେଲେ । ଜହ୍ନୁଙ୍କ ଗର୍ଭରୁ ପୁଣି ଥରେ ଜନ୍ମହେବା ଯୋଗୁଁ ଗଙ୍ଗାଙ୍କର ଆହୁରି ଏକ ନାମ ହେଲା ଜାହ୍ନବୀ । ଏଥର ସ୍ୱଚ୍ଛନ୍ଦ ଗତିରେ ପ୍ରବାହିତ ହୋଇ ଗଙ୍ଗା ସାଗରରେ ମିଶିଗଲେ ଏବଂ ଭଗୀରଥଙ୍କ କାର୍ଯ୍ୟସିଦ୍ଧି ନିମନ୍ତେ ରସାତଳରେ ପ୍ରବେଶ କଲେ । ସଗରପୁତ୍ରମାନଙ୍କ ଭସ୍ମରାଶି ଉପରେ ଗଙ୍ଗାଜଳ ପ୍ରବାହିତ ହେବାମାତ୍ରେ ସେମାନଙ୍କର ସମସ୍ତ ପାପ ଧୋଇଗଲା ଏବଂ ସେମାନେ ସ୍ୱର୍ଗକୁ ଚାଲିଗଲେ ।

ବ୍ରହ୍ମା କହିଲେ – ଭଗୀରଥ, ଯେତେଦିନ ପର୍ଯ୍ୟନ୍ତ ସାଗରରେ ଜଳ ରହିବ, ସେ ପର୍ଯ୍ୟନ୍ତ ତୁମର ପୂର୍ବପୁରୁଷ ସଗରପୁତ୍ରମାନେ ସୁଖରେ ସ୍ୱର୍ଗରେ ରହିଥିବେ । ତୁମେ ଗଙ୍ଗାଙ୍କୁ ପୃଥିବୀକୁ ଆଣିଥିବା ଯୋଗୁଁ ତୁମ ନାମାନୁସାରେ ଗଙ୍ଗାଙ୍କର ନାମ ହେବ ଭାଗୀରଥୀ । ପୁଣି ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତ୍ରିଭୁବନରେ ଗଙ୍ଗା ପ୍ରବାହିତ ହେବା ଯୋଗୁଁ ସେ ତ୍ରିପଥଗା ନାମରେ ପ୍ରସିଦ୍ଧ ହେବେ । ରାଜା, ତୁମେ ଭୂଲୋକକୁ ଗଙ୍ଗାଙ୍କୁ ଆଣି ଅସାଧ୍ୟ ସାଧନ କରିଛ । ସମସ୍ତଙ୍କ ଦ୍ୱାରା ପ୍ରଶଂସିତ ହୋଇ ତୁମେ ଅମ୍ଳାନ ଯଶ ଲାଭ କରିବ । ବର୍ତ୍ତମାନ ପ୍ରତିଜ୍ଞା ପୂରଣ କରିଥିବାରୁ ପବିତ୍ର ଗଙ୍ଗାଜଳରେ ତର୍ପଣ କରି ପରମାନନ୍ଦ ଲାଭ କର । ରାଜା, ତୁମର ମଙ୍ଗଳ ହେଉ ।

ବିଶ୍ୱାମିତ୍ରଙ୍କ କଥିତ ପରମ ପ୍ରୀତିକର ଗଙ୍ଗାବତରଣ ଆଖ୍ୟାନ ଶୁଣି ରାମ ଲକ୍ଷ୍ମଣ ଆନନ୍ଦରେ ନିଦ୍ରାଗଲେ ଓ ପରଦିନ ପ୍ରଭାତ ହେବାରୁ ଗଙ୍ଗା ପାର ହେବାପାଇଁ ପ୍ରସ୍ତୁତ ହେଲେ ।

## ୧୦ ॥ ସମୁଦ୍ର ମନ୍ଥନ

ଋଷିମାନେ ବିଶ୍ୱାମିତ୍ର ଓ ରାମ ଲକ୍ଷ୍ମଣଙ୍କ ଗଙ୍ଗାପାର ପାଇଁ ଏକ ଶୁଭ୍ର ଆସ୍ତରଣଯୁକ୍ତ ନୌକା ଆଣି ପହଞ୍ଚାଇ ଦେଲେ । ଏହି ନୌକାରେ ରାଜକୁମାରମାନେ ଗଙ୍ଗାନଦୀ ପାର ହୋଇ ଉତ୍ତର ଦିଗରେ ବିଶାଳା ନାମକ ଏକ ନଗରୀରେ ପହଞ୍ଚିଲେ । ଏହି ବିଶାଳା ନଗରୀର ଇତିହାସ ଓ ରାଜବଂଶ ସମ୍ପର୍କରେ ରାମ ଜାଣିବାପାଇଁ ଚାହିଁଲେ । ବିଶ୍ୱାମିତ୍ର ସାଗର ମନ୍ଥନର ଗଳ୍ପ ଆରମ୍ଭ କଲେ ।

ପୂର୍ବେ ସତ୍ୟଯୁଗରେ ଅଦିତିଙ୍କର ପୁତ୍ର ଦେବତାମାନେ ଓ ଦିତିଙ୍କର ପୁତ୍ର ଅସୁରମାନେ କିପରି ଚିରଦିନ ଜରା ଓ ମୃତ୍ୟୁକୁ ଅତିକ୍ରମ କରି ସୁସ୍ଥ ସୁନ୍ଦର ଶରୀର ଧାରଣ କରି

ରହିପାରିବେ, ସେଥିପାଇଁ ଉପାୟ ଚିନ୍ତା କଲେ । ଅମୃତ ପାନ କଲେ ତାହା ସମ୍ଭବ ହେବ ଜାଣି ସେମାନେ ମନ୍ଦର ପର୍ବତକୁ ମନ୍ଥନଦଣ୍ଡ ଓ ବାସୁକିଙ୍କୁ ରଜ୍ଜୁରୂପେ ବ୍ୟବହାର କରି ସମୁଦ୍ର ମନ୍ଥନ କଲେ । ଦୀର୍ଘକାଳ ମନ୍ଥନ କରିବା ପରେ ଦଣ୍ଡକମଣ୍ଡଳୁ ଧାରଣ କରି ବୈଦ୍ୟରାଜ ଧନ୍ୱନ୍ତରୀ ବାହାରିଲେ ଏବଂ ତାଙ୍କପରେ ହଜାର ହଜାର ଅପ୍‌ସରା ସମୁଦ୍ର ଭିତରୁ ଆବିର୍ଭୂତା ହେଲେ । ସେମାନଙ୍କୁ ଦେବତା ବା ଅସୁର କେହି ଗ୍ରହଣ ନ କରିବାରୁ ସେମାନେ ସର୍ବସାଧାରଣ ସ୍ତ୍ରୀ ରୂପେ ଗଣ୍ୟ ହେଲେ । ଏହି ସମୟରେ ବରୁଣଙ୍କର କନ୍ୟା ସୁରା ଉତ୍ପନ୍ନ ହେଲେ । ତାଙ୍କୁ ଦୈତ୍ୟମାନେ ଗ୍ରହଣ କଲେ ନାହିଁ, ମାତ୍ର ଦେବତାମାନେ ଗ୍ରହଣ କଲେ । ତେଣୁ ଦେବତାଙ୍କର ଏକ ନାମ ହେଲା ସୁର ଓ ଦୈତ୍ୟମାନେ ହେଲେ ଅସୁର ।

ସମୁଦ୍ର ମନ୍ଥନରୁ ଉଚ୍ଚୈଶ୍ରବା ଅଶ୍ୱ, କୌସ୍ତୁଭ ମଣି ଏବଂ ଅମୃତ ଉତ୍‌ଥିତ ହେଲା । ଅମୃତ ଲାଗି ଦେବତା ଓ ଅସୁରମାନଙ୍କ ମଧ୍ୟରେ ଭୟାନକ ବିବାଦ ଆରମ୍ଭ ହୋଇଗଲା । ଘୋର ଯୁଦ୍ଧ ହୋଇ ଯେତେବେଳେ କୌଣସି ମୀମାଂସା ହୋଇପାରିଲା ନାହିଁ, ସେତେବେଳେ ବିଷ୍ଣୁ ମୋହିନୀମୂର୍ତ୍ତି ଧାରଣ କରି ଅମୃତକୁ ହରଣ କରିନେଲେ । ଯୁଦ୍ଧରେ ଅସୁରମାନଙ୍କୁ ପରାଜିତ କରି ଇନ୍ଦ୍ର ରାଜ୍ୟ ଲାଭ କଲେ ।

ଏଥିରେ ଅସୁରମାନଙ୍କ ମାତା ଅତିଶୟ ଦୁଃଖିତ ହୋଇ ତାଙ୍କର ସ୍ୱାମୀ କଶ୍ୟପ ଋଷିଙ୍କୁ କହିଲେ, ତୁମେ ମୋତେ ଏପରି ଏକ ପୁତ୍ର ଦାନ କର, ଯେ କି ଇନ୍ଦ୍ରଙ୍କୁ ନିହତ କରିପାରିବ । କଶ୍ୟପ ସେଥିରେ ସମ୍ମତ ହୋଇ ଦିତିଙ୍କୁ ତପସ୍ୟା କରିବାପାଇଁ ପରାମର୍ଶ ଦେଲେ । କଶ୍ୟପଙ୍କ ଔରସରୁ ଏକ ପୁତ୍ରକୁ ଗର୍ଭରେ ଧାରଣ କରି ଦିତି କଠୋର ତପସ୍ୟାରେ ବସିଗଲେ । ଇନ୍ଦ୍ରଙ୍କର ଆସନ ହଲଚଲ ହେଲା । ଇନ୍ଦ୍ର ସମ୍ଭାଳି ନ ପାରି ଦିତିଙ୍କର ଶରଣାଗତ ହୋଇ ତାଙ୍କର ସେବା ଶୁଶ୍ରୂଷା କରିବାକୁ ଲାଗିଲେ । ଦିତି କହିଲେ, ମୋର ବ୍ରତ ପୂର୍ଣ୍ଣ ହେବାପାଇଁ ଅଳ୍ପକାଳ ବାକି ଅଛି । ତାହା ଗତ ହେବାପରେ ମୋର ଏକ ତ୍ରିଲୋକବିଜୟୀ ପୁତ୍ର ଜାତ ହେବ । କିନ୍ତୁ ତୋତେ ନିହତ ନ କରି ତୋ' ସହିତ ରାଜ୍ୟ ଭୋଗ କରିବ ।

କିନ୍ତୁ ଇନ୍ଦ୍ର ଏପରି ଏକ ପୁତ୍ର ଜନ୍ମ ହେଲେ ନିଶ୍ଚୟ ସେ ତାଙ୍କର କଣ୍ଟକ ହେବ ବୋଲି ମନେକରି ଦିତିଙ୍କର ତପଶ୍ଚର୍ଯ୍ୟାରେ ଛିଦ୍ର ଅନ୍ୱେଷଣ କରିବାକୁ ଲାଗିଲେ । ଦିନେ ମଧ୍ୟାହ୍ନ କାଳରେ ଦିତିଙ୍କୁ ନିଦ୍ରା ଆସିବାରୁ ସେ ଶୋଇଗଲେ । ମାତ୍ର ତାଙ୍କର ବ୍ରତର ନିୟମ ଅନୁସାରେ ଯେଉଁଆଡ଼େ ମୁଣ୍ଡକରି ଶୋଇବା କଥା ସେଆଡ଼କୁ ଗୋଡ଼ କରି ଶୋଇଗଲେ । ଇନ୍ଦ୍ରଙ୍କୁ ଛିଦ୍ର ମିଳିଗଲା । ଇନ୍ଦ୍ର ଏହି ବ୍ରତଭଙ୍ଗର ସୁଯୋଗ ନେଇ କ୍ଷୁଦ୍ରାତିକ୍ଷୁଦ୍ର ଆକାରରେ ତାଙ୍କର ଶରୀର ବିବର ମଧ୍ୟରେ ପ୍ରବେଶ କରି ବଜ୍ରାସ୍ତ୍ର ଦ୍ୱାରା ଗର୍ଭସ୍ଥ ଶିଶୁକୁ ସାତ ଖଣ୍ଡ କରିଦେଲେ । ଶିଶୁର କ୍ରନ୍ଦନ ଧ୍ୱନି ଶୁଣି ଦିତି ଇନ୍ଦ୍ରଙ୍କୁ ମାର ନାହିଁ ମାର ନାହିଁ ବୋଲି କହିବାକୁ ଲାଗିଲେ । ଇନ୍ଦ୍ର ବାହାରକୁ ଆସି କହିଲେ– ମାତା, ଏହି ଶିଶୁ ମୋର ସଂହାରକାରୀ ହୋଇଥାନ୍ତା । ମୋର ପ୍ରାଣରକ୍ଷା କରିବାକୁ ଯାଇ ମୁଁ ତୁମର ବ୍ରତଭଙ୍ଗର ସୁଯୋଗ ନେଇ ଏହା କରିଚି । ମୋତେ କ୍ଷମାକର ।

ଦିତି ଦୁଃଖିତ ହୋଇ କହିଲେ, ମୋର ଦୋଷରୁ ଏହା ଘଟିଚି । ତୁମର ଅପରାଧ ନାହିଁ । ଏଇ ସାତଖଣ୍ଡ ଗର୍ଭ ସାତୋଟି ପୁଅ ହୋଇ ଜନ୍ମ ହେବେ । ସେମାନେ ମରୁତଗଣ ବା ଅଣଚାଶ ସଂଖ୍ୟକ ବାୟୁଦେବତାଙ୍କର ସ୍ଥାନପାଳ ହୋଇ ମାରୁତ ନାମରେ ବିଖ୍ୟାତ ହେବେ ।

ବିଶ୍ୱାମିତ୍ର କହିଲେ, ପୃଥିବୀରେ ଯେଉଁ ସ୍ଥାନରେ ଦୈତ୍ୟମାନଙ୍କର ମାତା ତପସ୍ୟା କରୁଥିଲେ, ଏହା ହେଉଚି ସେଇ ସ୍ଥାନ । ଇକ୍ଷ୍ୱାକୁଙ୍କର ବିଶାଳ ନାମକ ପୁତ୍ର ଏଠାରେ ରାଜପଣ କରି ବିଶାଳା ନଗରୀ ସ୍ଥାପନ କଲେ । ବର୍ତ୍ତମାନ ବିଶାଳଙ୍କର ଉତ୍ତରାଧିକାରୀମାନେ ଏଠାରେ ରାଜପଣ କରୁଛନ୍ତି । ଏଠାରେ ରାତ୍ରିଯାପନ କରି କାଲି ଆମେ ମିଥିଳାରେ ପହଞ୍ଚିବା ଏବଂ ରାଜା ଜନକଙ୍କର ଦର୍ଶନ ଲାଭ କରିବା ।

## ୧୧ ।। ଅହଲ୍ୟା

ପରଦିନ ବିଶ୍ୱାମିତ୍ର ରାମ ଲକ୍ଷ୍ମଣଙ୍କୁ ଧରି ମିଥିଳାରେ ପହଞ୍ଚିଲେ । ମିଥିଳାର ଉପକଣ୍ଠରେ ଏକ ମନୋରମ ଅଥଚ ପରିତ୍ୟକ୍ତ ଆଶ୍ରମକୁ ଦେଖି ରାମ ବିଶ୍ୱାମିତ୍ରଙ୍କୁ ତାହା କାହାର ଆଶ୍ରମ ବୋଲି ପଚାରିଲେ । ବିଶ୍ୱାମିତ୍ର କହିଲେ, ଏହି ଆଶ୍ରମ ଗୌତମ ଋଷିଙ୍କର ଥିଲା ଏବଂ ଏହାର ଯଶ ଓ ଗୌରବରେ ଦେବଲୋକ ମଧ୍ୟ ମ୍ଳାନ ପଡ଼ିଯାଇଥିଲା । ଦେବତାମାନେ ଗୌତମଙ୍କ ଦର୍ଶନପାଇଁ ଏଠାକୁ ଆସୁଥିଲେ । କିନ୍ତୁ ଏପରି ଏକ ଘଟଣା ଘଟିଲା, ଯାହାଫଳରେ ଏହି ଆଶ୍ରମ ଅଭିଶପ୍ତ ହୋଇ ପରିତ୍ୟକ୍ତ ହୋଇଗଲା ।

ଗୌତମଙ୍କର ପତ୍ନୀ ଅନିନ୍ଦ୍ୟସୁନ୍ଦରୀ ଅହଲ୍ୟା ବ୍ରହ୍ମାଙ୍କର କନ୍ୟା ଥିଲେ ଏବଂ ପତିଙ୍କ ସହିତ ଏହି ଆଶ୍ରମରେ ତପସ୍ୟା କରୁଥିଲେ । ଦେବରାଜ ଇନ୍ଦ୍ର ଅହଲ୍ୟାଙ୍କ ପ୍ରତି ଆକୃଷ୍ଟ ହୋଇ କିପରି ତାଙ୍କ ସହିତ ମିଳିତ ହେବେ ସେଥିପାଇଁ ଉପାୟ ଖୋଜୁଥିଲେ । ଦିନେ ଗୌତମଋଷି ଆଶ୍ରମ ବାହାରକୁ ଯାଇଥିଲେ । ଇନ୍ଦ୍ର ଗୌତମଙ୍କ ରୂପ ଗ୍ରହଣ କରି ଆଶ୍ରମରେ ପହଞ୍ଚି କହିଲେ – ସୁନ୍ଦରୀ, ମୁଁ ରତିପ୍ରାର୍ଥୀ, ଶୀଘ୍ର ମୋତେ ସଙ୍ଗମସୁଖ ଦାନ କର ।

କାମାସକ୍ତା ଅହଲ୍ୟା ଗୌତମବେଶଧାରୀ ଦେବରାଜ ଇନ୍ଦ୍ରଙ୍କୁ ଚିହ୍ନିପାରି ମଧ୍ୟ ତାଙ୍କ ସହିତ ସହବାସ କରିବା ଲୋଭ ସମ୍ବରଣ କରିପାରିଲେ ନାହିଁ । ସହବାସ ପରେ ସେ ଇନ୍ଦ୍ରଙ୍କୁ କହିଲେ, ଦେବେନ୍ଦ୍ର, ମୁଁ କୃତାର୍ଥ ହୋଇଚି । ଗୌତମଋଷି ଆସିବା ପୂର୍ବରୁ ତୁମେ ଶୀଘ୍ର ଏଠାରୁ ଚାଲିଯାଅ । ତାଙ୍କର କ୍ରୋଧରୁ ନିଜକୁ ରକ୍ଷାକର । ମୋର ଅବସ୍ଥା କଣ ହେବ, ତାହା ମଧ୍ୟ ଚିନ୍ତା କର । ଇନ୍ଦ୍ର ହସି କହିଲେ – ନିତମ୍ବିନୀ, ମୁଁ ପରିତୁଷ୍ଟ ହୋଇଚି । ଏବେ ଶୀଘ୍ର ଏ ସ୍ଥାନ ଛାଡ଼ି ଚାଲିଯାଉଚି । କିନ୍ତୁ ଇନ୍ଦ୍ର ଯାଉ ଯାଉ ପ୍ରଦୀପ୍ତ ଅଗ୍ନିପରି ତେଜୀୟାନ ମହାମୁନି ଗୌତମ ସମିଧ ଓ କୁଶ ଧରି ଆଶ୍ରମରେ ପ୍ରବେଶ କଲେ । ଗୌତମଙ୍କ ହାବୁଡ଼ରେ ପଡ଼ି ଛଦ୍ମବେଶୀ ଇନ୍ଦ୍ର ଭୟଭୀତ ହୋଇପଡ଼ିଲେ ଓ ତାଙ୍କର ମୁଖ

ବିବର୍ଣ୍ଣ ହୋଇଗଲା । ସମସ୍ତ ବିଷୟ ଜାଣିପାରି କ୍ରୁଦ୍ଧ ଗୌତମ ଅଭିଶାପ ଦେଇ ଇନ୍ଦ୍ରଙ୍କୁ କହିଲେ – ଦୁରାଚାରୀ, ତୁମେ ଯେଉଁ ଅପକର୍ମ କରିଚ, ତାର ଫଳସ୍ୱରୂପ ତୁମେ ନପୁଂସକ ହୋଇଯିବ । ଗୌତମ ଏହା କହିବା ମାତ୍ରେ ଇନ୍ଦ୍ରଙ୍କର ଅଣ୍ଡକୋଷ ଦୁଇଟି ସଙ୍ଗେ ସଙ୍ଗେ ଖସିପଡ଼ିଲା । ଅହଲ୍ୟା ଭୟରେ ଥରୁଥିଲେ । ଗୌତମ ତାଙ୍କୁ ଅଭିଶାପ ଦେଲେ, ଋଷିପତ୍ନୀ ହୋଇ କାମବଶରେ ତୁମେ ଯେଉଁ ପାପାଚରଣ କରିଚ, ସେଥିପାଇଁ ଦୀର୍ଘକାଳ ଧରି ତୁମେ ଏହି ପରିତ୍ୟକ୍ତ ଆଶ୍ରମରେ ଭସ୍ମଶଯ୍ୟାରେ ପଡ଼ି ରହି ଅନୁତାପ କରିବ । ତୁମକୁ କିଛି ଖାଇବାକୁ ମିଳିବ ନାହିଁ । କେବଳ ପବନ ହେବ ତୁମର ଆହାର । ଏହିପରି ବହୁକାଳ ଅନୁତାପ କରିବା ପରେ ଦିନେ ଦଶରଥପୁତ୍ର ରାମଚନ୍ଦ୍ର ଏଠାକୁ ଆସିବେ । ଅତିଥିଭାବରେ ତାଙ୍କୁ ଗ୍ରହଣ କରି ତୁମେ ତାଙ୍କର ପୂଜା କରିବ । କେବଳ ତାଙ୍କ ପ୍ରସାଦରୁ ପବିତ୍ର ହୋଇ ତୁମେ ତୁମର ପୂର୍ବରୂପ ଲାଭ କରିବ ଏବଂ ମୋ' ସହିତ ମିଳିତ ହେବ । ଏହା କହି ଗୌତମଋଷି ତପସ୍ୟା କରିବାପାଇଁ ହିମାଳୟ ଚାଲିଗଲେ ।

ନପୁଂସକ ଇନ୍ଦ୍ର ଅଗ୍ନିପ୍ରମୁଖ ଦେବତାଗଣ, ସିଦ୍ଧ, ଗନ୍ଧର୍ବ, ଚାରଣମାନଙ୍କର ସମ୍ମୁଖରେ ବିଷଣ୍ଣ ଭାବରେ କହିଲେ, ଗୌତମ ଋଷିଙ୍କର ତପସ୍ୟାର ଫଳ ଅପହରଣ କରିବାଦ୍ୱାରା ମୁଁ ତୁମମାନଙ୍କର ଉପକାର କରିଚି । ମାତ୍ର ତାଙ୍କର ଅଭିଶାପ ଫଳରେ ମୁଁ ବର୍ତ୍ତମାନ ନପୁଂସକ । ଏବେ ତୁମେମାନେ ମୋତେ ସାହାଯ୍ୟ କରିବତ ? ଦେବତାମାନେ ମରୁତ୍‌ମାନଙ୍କୁ ଅଗ୍ରବର୍ତ୍ତୀ କରି ପିତୃଗଣଙ୍କ ପାଖକୁ ଗଲେ ଏବଂ ସେମାନଙ୍କୁ ସମସ୍ତ ବିଷୟ ନିବେଦନ କଲେ । ପିତୃଗଣ ମେଷର ଅଣ୍ଡ ଛିନ୍ନ କରି ଇନ୍ଦ୍ରଙ୍କ ଶରୀରରେ ସଂଲଗ୍ନ କଲେ । ସେହିଦିନଠାରୁ ଇନ୍ଦ୍ର 'ମେଷାଣ୍ଡଚିହ୍ନ' ହୋଇ ରହିଲେ ।

ଏହି ଆଖ୍ୟାୟିକା ଶେଷ କରି ବିଶ୍ୱାମିତ୍ର ରାମଚନ୍ଦ୍ରଙ୍କୁ କହିଲେ – ରାଘବ, ଏହି ପବିତ୍ର ଆଶ୍ରମ ମଧ୍ୟରେ ପ୍ରବେଶ କର ଓ ଦେବୀସ୍ୱରୂପିଣୀ ଅହଲ୍ୟାଙ୍କୁ ଉଦ୍ଧାର କରି ମହର୍ଷି ଗୌତମଙ୍କ ଭବିଷ୍ୟତ୍‌ବାଣୀ ସଫଳ କର । ରାମ ଲକ୍ଷ୍ମଣ ବିଶ୍ୱାମିତ୍ର ଗୌତମଙ୍କ ଆଶ୍ରମ ମଧ୍ୟରେ ପ୍ରବେଶ କଲେ । ପୂର୍ବରୁ ଅହଲ୍ୟା ଅଦୃଶ୍ୟ ହୋଇ ରହିଥିଲେ । ମାତ୍ର ଆଶ୍ରମରେ ରାମଙ୍କର ପାଦ ପଡ଼ିବାକ୍ଷଣି ଅହଲ୍ୟାଙ୍କର ତପୋଦୀପ୍ତ ଦିବ୍ୟ ମୂର୍ତ୍ତି ଜାଗରିତ ହୋଇ ଉଠିଲା । ସେ ଜଳ ମଧ୍ୟରେ ପ୍ରତିବିମ୍ବିତ ସୂର୍ଯ୍ୟର ପ୍ରଭାପରି, ଧୂମବେଷ୍ଟିତ ଅଗ୍ନିର ତେଜ ପରି ଏବଂ ତୁଷାରାବୃତ୍ତ ମେଘବେଷ୍ଟିତ ଚନ୍ଦ୍ରମାପରି ଦେଖାଯାଉଥିଲେ । ରାମ ଲକ୍ଷ୍ମଣ ତାଙ୍କର ପାଦ ବନ୍ଦନା କଲେ । ଅହଲ୍ୟା ଗୌତମ ଋଷିଙ୍କ ବାକ୍ୟ ସ୍ମରଣ କରି ଭକ୍ତିର ସହିତ ପାଦ୍ୟ ଓ ଅର୍ଘ୍ୟ ଦାନ କରି ସେମାନଙ୍କର ପୂଜା କଲେ । ଆକାଶରୁ ପୁଷ୍ପ ବୃଷ୍ଟିହେଲା । ଦେବଲୋକରୁ ଦୁନ୍ଦୁଭି ଧ୍ୱନି ଶୁଣାଗଲା । ଅପ୍‌ସରା ଓ ଗନ୍ଧର୍ବମାନଙ୍କର ନୃତ୍ୟଗୀତ ମଧ୍ୟରେ ଦେବତାମାନେ 'ସାଧୁ ସାଧୁ' ବୋଲି କହି ଅହଲ୍ୟାଙ୍କୁ ସମ୍ମାନିତ କଲେ । ମହାମୁନି ଗୌତମ ଅହଲ୍ୟାଙ୍କ ସହିତ ପୁନର୍ବାର ମିଳିତ ହେଲେ । ସେମାନଙ୍କର ଆତିଥ୍ୟ ଗ୍ରହଣ କରି ରାମ, ଲକ୍ଷ୍ମଣ, ବିଶ୍ୱାମିତ୍ର ମିଥିଳା ନଗରୀରେ ପ୍ରବେଶ କଲେ ।

ଜନକଙ୍କ ଯଜ୍ଞସ୍ଥଳରେ ପହଞ୍ଚି ସେମାନେ ଦେଖିଲେ ହଜାର ହଜାର ସଂଖ୍ୟାରେ ବେଦଜ୍ଞ ବ୍ରାହ୍ମଣ ସେଠାରେ ଉପସ୍ଥିତ ଅଛନ୍ତି । ଋଷିମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଆବାସସ୍ଥଳୀ

ଗୁଡ଼ିକ ଶହ ଶହ ଶଗଡ଼ରେ ପୂର୍ଣ୍ଣ ହୋଇଚି । ରାମଙ୍କ ଇଚ୍ଛା ଅନୁଯାୟୀ ସେମାନେ ଏକ ଜଙ୍ଗଲଥିବା ନିର୍ଜନ ସ୍ଥାନରେ ରହିବାର ବ୍ୟବସ୍ଥା କଲେ ।

## ୧୨ ॥ ବଶିଷ୍ଠ ଓ ବିଶ୍ୱାମିତ୍ର

ବିଶ୍ୱାମିତ୍ରଙ୍କ ଆସିବା ଖବର ଚାରିଆଡ଼େ ବ୍ୟାପିଗଲା । ରାଜା ଜନକ ପୁରୋହିତ ଶତାନନ୍ଦ ଓ ଅନ୍ୟ ଋତ୍ୱିକମାନଙ୍କ ସହିତ ଆସି ସବିନୟ ତାଙ୍କର ପାଦପୂଜା କରି କହିଲେ – ଋଷିଶ୍ରେଷ୍ଠ, ଆପଣଙ୍କର ଆଗମନରେ ମୁଁ ଧନ୍ୟ ହୋଇଚି ଓ ଆଜି ମୋର ଯଜ୍ଞ ସଫଳ ହେଲା ବୋଲି ମୁଁ ବିଚାର କରୁଚି । ଖଡ୍‌ଗ ତୂଣୀର ଓ ଧନୁ ଧାରଣ କରିଥିବା ଆସନ୍ନଯୌବନ ରୂପବାନ କୁମାର ଦୁହିଁଙ୍କୁ ଦେଖି ଜନକ ତାଙ୍କର ପରିଚୟ ପଚାରିଲେ ଏବଂ ବିଶ୍ୱାମିତ୍ର ଦୁହିଁଙ୍କର ପରିଚୟ ଦେଇ ଅଯୋଧ୍ୟାଠୁ ମିଥିଳା ପର୍ଯ୍ୟନ୍ତ ଯାହା ଯାହା ଘଟିଯାଇଚି, ତାର ବର୍ଣ୍ଣନା କଲେ । ଜନକଙ୍କର ପୁରୋହିତ ଶତାନନ୍ଦ ଥିଲେ ଗୌତମ ଓ ଅହଲ୍ୟାଙ୍କର ପୁତ୍ର । ଅହଲ୍ୟାଙ୍କର ଉଦ୍ଧାର ଓ ଗୌତମଙ୍କ ଆଶ୍ରମରେ ରାମଙ୍କର ଉପଯୁକ୍ତ ସତ୍କାର ସମ୍ବାଦ ପାଇ ସେ ଅତିଶୟ ଖୁସି ହୋଇଗଲେ ।

ବିଶ୍ୱାମିତ୍ରଙ୍କ ଯୋଗୁଁ ରାମଚନ୍ଦ୍ର ଆସିଲେ ଏବଂ ତାଙ୍କ ମାତାଙ୍କର ଉଦ୍ଧାର ସମ୍ଭବ ହେଲା ବୋଲି ଜାଣି ସେ ମୁନିଙ୍କର ଭୂୟସୀ ପ୍ରଶଂସା କରିବାକୁ ଲାଗିଲେ । ଶତାନନ୍ଦ ରାମଙ୍କୁ ସମ୍ବୋଧନ କରି କହିଲେ, ରାଘବ, ତୁମେ ବିଶ୍ୱାମିତ୍ରଙ୍କ ସହିତ ଏଠାକୁ ଆସିଥିବାରୁ ତୁମକୁ ସ୍ୱାଗତ ଜଣାଉଚି । ଋଷିଶ୍ରେଷ୍ଠ ବିଶ୍ୱାମିତ୍ର ଅସାଧ୍ୟ ସାଧନ କରି ସମସ୍ତ ସଂସାରର ପୂଜ୍ୟ ହୋଇଛନ୍ତି । ସେ ଯେତେବେଳେ ତୁମର ରକ୍ଷକ ହୋଇଛନ୍ତି, ତୁମ ପ୍ରତି ତାଙ୍କର ଆଶୀର୍ବାଦ ଅଛି, ଆଉ ତୁମର ଚିନ୍ତା ନାହିଁ । ତୁମଠାରୁ ବଳି ଧନ୍ୟ ଆଉ କୌଣସି ବ୍ୟକ୍ତି ନାହାନ୍ତି । ବର୍ତ୍ତମାନ ମୁଁ ଋଷି ବିଶ୍ୱାମିତ୍ରଙ୍କ ମହାନ୍ ଜୀବନ ଚରିତ ବର୍ଣ୍ଣନା କରୁଚି, ଶୁଣ ।

ଗାଧିପୁତ୍ର ବିଶ୍ୱାମିତ୍ର ଜଣେ ମହାତେଜସ୍ୱୀ ରାଜା ଭାବରେ ଦୀର୍ଘକାଳ ନିପୁଣତାର ସହିତ ରାଜ୍ୟ ଶାସନ କରୁଥିଲେ । ଦିନେ ସେ ବିପୁଳ ସେନା ସହିତ ବିଭିନ୍ନ ଦେଶ ପରିଭ୍ରମଣ କରି ମହର୍ଷି ବଶିଷ୍ଠଙ୍କ ଆଶ୍ରମରେ ପହଞ୍ଚିଲେ । ବଶିଷ୍ଠ ତାଙ୍କୁ ସ୍ୱାଗତ ଜଣାଇ ଫଳମୂଳ ଦେଇ ଆପ୍ୟାୟିତ କଲେ । ବିଶ୍ୱାମିତ୍ର କୃତକୃତ୍ୟ ହୋଇ ବଶିଷ୍ଠଙ୍କୁ କହିଲେ, ମୁଁ ବର୍ତ୍ତମାନ ବିଦାୟ ନେଉଚି । କେବଳ ଆପଣଙ୍କର ସ୍ନେହ ଓ ବନ୍ଧୁତା ମୁଁ କାମନା କରେ । ବଶିଷ୍ଠ କହିଲେ, ଆପଣଙ୍କ ସହିତ ବହୁସଂଖ୍ୟାରେ ସୈନ୍ୟ ଓ କର୍ମଚାରୀ ଆସିଛନ୍ତି । ସେମାନେ ବିନା ସତ୍କାରରେ ଚାଲିଯିବାଟା ଠିକ୍ ହେବ ନାହିଁ । ତେଣୁ ସସୈନ୍ୟ ଆପଣ ମୋର ଆତିଥ୍ୟ ଗ୍ରହଣ କରନ୍ତୁ । ବଶିଷ୍ଠ ବିଶେଷ ଭାବରେ ବଳାଇବାରୁ ବିଶ୍ୱାମିତ୍ର ସମ୍ମତି ପ୍ରଦାନ କଲେ । ବଶିଷ୍ଠ ତାଙ୍କର ଆଶ୍ରମର କାମଧେନୁ ଶବଳାଙ୍କୁ ଡାକି କହିଲେ – ମା, ତୁମେ ସସୈନ୍ୟ ରାଜାଙ୍କର ଅତିଥି ସତ୍କାର କର ।

କାମଧେନୁ ଶବଳା ମୁହୂର୍ତ୍ତକ ମଧ୍ୟରେ ଉତ୍କୃଷ୍ଟ ଅନ୍ନ ଓ ପାନୀୟର ବ୍ୟବସ୍ଥା କରିଦେଲେ । ଇକ୍ଷୁ, ମଧୁ, ଲାଜା (ଖଇ), ଉତ୍କୃଷ୍ଟ ମଦ୍ୟ, ପିଠା, ଦହି, ଦୁଧ, ପାୟସ ଓ

ମିଷ୍ଟାନ୍ନ ପ୍ରଭୃତି ସହସ୍ର ସହସ୍ର ପାତ୍ରରେ ସଙ୍ଗେ ସଙ୍ଗେ ପରଷା ହୋଇଗଲା । ବିଶ୍ୱାମିତ୍ର ତାଙ୍କର ମନ୍ତ୍ରୀ, ଭୃତ୍ୟ ଓ ସୈନ୍ୟମାନେ ଭୂରିଭୋଜନ କରି ଆପ୍ୟାୟିତ ହେଲେ । କିନ୍ତୁ କାମଧେନୁ ଶବଳା ଇଚ୍ଛା କରିବାମାତ୍ରେ ଏସବୁ ଆହାର୍ଯ୍ୟଦ୍ରବ୍ୟ ବ୍ୟବସ୍ଥା କରି ଦେଇଛନ୍ତି ଜାଣି କାମଧେନୁକୁ ନେବାପାଇଁ ବିଶ୍ୱାମିତ୍ରଙ୍କର ଅତିଶୟ ଲୋଭ ହେଲା । ସେ ବଶିଷ୍ଠଙ୍କୁ କହିଲେ, ଆପଣଙ୍କର ସତ୍କାରରେ ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଚି । କିନ୍ତୁ ମୋର ଗୋଟିଏ ଅନୁରୋଧ, ଆପଣ ଶତସହସ୍ର ଧେନୁର ବିନିମୟରେ ଶବଳାକୁ ମୋତେ ଦାନ କରନ୍ତୁ । ଆପଣଙ୍କର ଏହି ଧେନୁ ଏକ ଅମୂଲ୍ୟ ରତ୍ନ ଏବଂ ରାଜା ହେଉଛନ୍ତି ରତ୍ନହାରୀ । ଧର୍ମ ଅନୁଯାୟୀ ସମସ୍ତ ରତ୍ନ ରାଜାଙ୍କର ପ୍ରାପ୍ୟ ।

ବଶିଷ୍ଠ କହିଲେ – ରାଜା, ଶତସହସ୍ର ବା ଶତକୋଟି ଧେନୁ କିମ୍ବା ବିପୁଳ ଧନରତ୍ନ ବିନିମୟରେ ମୁଁ ଶବଳାକୁ ଦେବି ନାହିଁ । ଏହି ଶବଳା ଯୋଗୁଁ ମୋର ଆଶ୍ରମ ପରିଚାଳିତ ହେଉଛି । ଆଶ୍ରମର ସମସ୍ତ ହୋମ ଯଜ୍ଞ ଓ ଅଗ୍ନିହୋତ୍ର ଆଦି କାର୍ଯ୍ୟ ତାହାରି ଯୋଗୁଁ ସମ୍ଭବ ହେଉଛି । ଏହି ଧେନୁହିଁ ମୋର ସର୍ବସ୍ୱ, ମୋର ପ୍ରାଣ । ଅଶ୍ୱ, ଗଜ, ରଥ, ଧନ, ରତ୍ନ ବା ରାଜ୍ୟସମ୍ପଦ ମୋର ଦରକାର ନାହିଁ । ତେଣୁ ମୁଁ ଏହି ଧେନୁକୁ ଦେଇପାରିବି ନାହିଁ ।

ବଶିଷ୍ଠ ଯେତେ ବୁଝାଇଲେ ମଧ ବିଶ୍ୱାମିତ୍ର ବୁଝିବାପାଇଁ ପ୍ରସ୍ତୁତ ନ ଥିଲେ । ସେ ବଳପୂର୍ବକ ଶବଳାଙ୍କୁ ଅପହରଣ କରିବାପାଇଁ ଚାହିଁଲେ । ରାଜକର୍ମଚାରୀମାନେ ଶବଳାଙ୍କୁ ବାନ୍ଧି ଟାଣିଓଟାରି ନେବାବେଳେ ଶବଳା ସାଶ୍ରୁନୟନରେ ଚିନ୍ତାକଲେ, ମୁଁ ତ ବଶିଷ୍ଠଙ୍କର କୌଣସି ଅପରାଧ କରି ନାହିଁ, ସେ କାହିଁକି ମୋତେ ଏପରି ଦୁର୍ବୃତ୍ତଙ୍କ ହାତରେ ଛାଡ଼ି ଦେଉଛନ୍ତି ? ଋଷିଙ୍କୁ ପଚାରିବାପାଇଁ ଶବଳା ଭୃତ୍ୟମାନଙ୍କୁ ଛାଟି ପୋପାଡ଼ି ଦେଇ ବଶିଷ୍ଠଙ୍କ ପାଖରେ ଯାଇ ପହଞ୍ଚିଲେ ଏବଂ ତାଙ୍କର ପାଦତଳେ ପଡ଼ି କହିଲେ – ଭଗବନ୍, କେଉଁ ଦୋଷରେ ଆପଣ ମୋତେ ପରିତ୍ୟାଗ କରିଛନ୍ତି ଏବଂ ସେମାନେ ମୋତେ ବଳପୂର୍ବକ ନେଇଯାଉଛନ୍ତି ? ବଶିଷ୍ଠ କହିଲେ, କ୍ଷମତା ଓ ବଳରେ ମଦମତ୍ତ ଏହି ରାଜା ବଳପୂର୍ବକ ତୁମକୁ ଅପହରଣ କରି ନେଉଛନ୍ତି । ସେ ରାଜା, ବଳଶାଳୀ ଓ ସମସ୍ତ ପୃଥିବୀର ଅଧୀଶ୍ୱର । ତାଙ୍କ ସହିତ ବିଶାଳ ଚତୁରଙ୍ଗସେନା ରହିଛନ୍ତି । ମୁଁ କ'ଣ କରିପାରିବି ? ଶବଳା ବିନୀତ ହୋଇ କହିଲେ, ଆପଣ ଅମିତତେଜା ପୁରୁଷ । କ୍ଷତ୍ରିୟର ବଳ ବଳ ନୁହେଁ । କ୍ଷାତ୍ରତେଜ ଅପେକ୍ଷା ବ୍ରହ୍ମତେଜ ଶ୍ରେଷ୍ଠ । ଆପଣ ମୋତେ ଅନୁମତି ଦେଲେ ମୁଁ ଏହି ଦୁରାତ୍ମା ରାଜାର ସମସ୍ତ ବଳ ଓ ଦର୍ପକୁ ନଷ୍ଟ କରିଦେବି । ବଶିଷ୍ଠ କହିଲେ, ତୁମେ ଶୀଘ୍ର ଏହି ଶତ୍ରୁର ବଳକୁ ଚୂର୍ଣ୍ଣ କର । ତତ୍‌କ୍ଷଣାତ୍ କାମଧେନୁ ହମ୍ବାରଡ଼ି କରିବାରୁ ଶହ ଶହ ସଂଖ୍ୟାରେ ସୈନ୍ୟ ସୃଷ୍ଟି ହୋଇଗଲେ । ଏହି ସୈନ୍ୟମାନଙ୍କ ମଧରେ ଥିଲେ କାମ୍ବୋଜ, ଯବନ, ଶକ, କିରାତ, ହାରୀତ, ବର୍ବରାଦି ସୈନ୍ୟଗଣ । ସେମାନେ ବିଶ୍ୱାମିତ୍ରଙ୍କର ଚତୁରଙ୍ଗ ସୈନ୍ୟଙ୍କୁ ନଷ୍ଟ କରିଦେଲେ । ବିଶ୍ୱାମିତ୍ରଙ୍କର ଶତପୁତ୍ର ନାନାବିଧ ଅସ୍ତ୍ର ଶସ୍ତ୍ର ଧରି ବଶିଷ୍ଠଙ୍କ ପ୍ରତି ଧାବମାନ ହେଲେ । ବଶିଷ୍ଠ ହୁଙ୍କାର ଶବ୍ଦ କରି ସେମାନଙ୍କୁ ଭସ୍ମ କରିଦେଲେ ।

ସମସ୍ତ ସୈନ୍ୟଙ୍କର ବିନାଶ ଓ ପୁତ୍ରମାନଙ୍କର ନିଧନ ଦେଖି ବିଶ୍ୱାମିତ୍ର ଛିନ୍ନପକ୍ଷ ବିହଙ୍ଗ, ତରଙ୍ଗହୀନ ସମୁଦ୍ର, ଭଗ୍ନଦନ୍ତ ସର୍ପ ଏବଂ ରାହୁଗ୍ରସ୍ତ ସୂର୍ଯ୍ୟଙ୍କ ପରି ହତୋତ୍ସାହ ଓ ନିସ୍ତେଜ ହୋଇପଡ଼ିଲେ । ସେ ତାଙ୍କର ରହିଯାଇଥିବା ଜଣେ ପୁତ୍ରକୁ କ୍ଷତ୍ରିୟ ଧର୍ମରେ ରାଜ୍ୟପାଳନ କର ବୋଲି କହି ତପସ୍ୟା କରିବାପାଇଁ ଚାଲିଗଲେ । ତାଙ୍କର କଠୋର ତପସ୍ୟାରେ ମହାଦେବ ସନ୍ତୁଷ୍ଟ ହୋଇ କହିଲେ, ରାଜା, ତୁମେ କି ବର ମାଗିବ ମାଗ । ବିଶ୍ୱାମିତ୍ର ମହାଦେବଙ୍କୁ ପ୍ରଣାମ କରି କହିଲେ— ଦେବଦେବ, ଯଦି ତୁମେ ତୁଷ୍ଟ ହୋଇଥାଅ, ତାହାହେଲେ ଦେବ, ଦାନବ, ଯକ୍ଷ, ରକ୍ଷ, ଗନ୍ଧର୍ବ ପ୍ରଭୃତିଙ୍କର ଯେତେ ଯାହା ଅସ୍ତ୍ର ଅଛି ସବୁ ମୋତେ ଦାନ କର । ମହାଦେବ କହିଲେ — ଏହି ସବୁ ଅସ୍ତ୍ର ତୁମର ଆୟତ୍ତ ହେବ ।

ବିଶ୍ୱାମିତ୍ର କାଳାଗ୍ନି ପରି ଏହିସବୁ ଅସ୍ତ୍ରଶସ୍ତ୍ର ଧାରଣ କରି ବଶିଷ୍ଠଙ୍କ ଆଶ୍ରମରେ ପହଞ୍ଚିଲେ ଏବଂ ବଶିଷ୍ଠଙ୍କ ସହିତ ତାଙ୍କର ଆଶ୍ରମକୁ ଧ୍ୱଂସ କରିଦେବାପାଇଁ ଏହିସବୁ ଭୟଙ୍କର ଅସ୍ତ୍ରମାନଙ୍କର ପ୍ରୟୋଗ କଲେ । ଅସ୍ତ୍ର ତେଜରେ ବଶିଷ୍ଠଙ୍କର ଆଶ୍ରମ ଦଗ୍ଧ ହେବାକୁ ଲାଗିଲା । ପଶୁପକ୍ଷୀମାନେ ଭୀତତ୍ରସ୍ତ ହୋଇ ଚାରିଆଡ଼େ ପଳାଇଗଲେ । ଆଶ୍ରମବାସୀ ମୁନିମାନେ ମଧ ଭୟରେ ପଳାଇବାକୁ ଲାଗିଲେ । ବଶିଷ୍ଠ ଶିଷ୍ୟମାନଙ୍କୁ କହିଲେ, ତୁମେ ଭୟ କର ନାହିଁ । ସୂର୍ଯ୍ୟ ତେଜରେ କୁହୁଡ଼ି ନଷ୍ଟ ହୋଇଯିବା ପରି ମୁଁ ଏହି ଗାଧିପୁତ୍ରକୁ ବିନାଶ କରିବି । ଧୂମହୀନ ଅଗ୍ନି ଯେପରି ଜଳିଉଠେ, ବଶିଷ୍ଠ କ୍ରୋଧରେ ସେପରି ଜଳିଉଠି ତାଙ୍କର ବ୍ରହ୍ମଦଣ୍ଡକୁ ଉତ୍ତୋଳନ କରି ଠିଆହେଲେ । ବିଶ୍ୱାମିତ୍ର ବଶିଷ୍ଠଙ୍କୁ ରହ ରହ ବୋଲି କହି ଆଗ୍ନେୟାସ୍ତ୍ର ନିକ୍ଷେପ କଲେ । ବଶିଷ୍ଠ କହିଲେ, କ୍ଷତ୍ରିୟ କୁଳକଳଙ୍କ ବିଶ୍ୱାମିତ୍ର, ତୁମେ ଅଳ୍ପ ସମୟ ମଧରେ ବୁଝିପାରିବ, ଏହି ବ୍ରହ୍ମଦଣ୍ଡ ଆଗରେ ଅସ୍ତ୍ରଶସ୍ତ୍ରର କୌଣସି ମୂଲ୍ୟ ନାହିଁ । କ୍ଷଣକ ମଧରେ ବିଶ୍ୱାମିତ୍ରଙ୍କ ଆଗ୍ନେୟାସ୍ତ୍ର ବ୍ରହ୍ମଦଣ୍ଡଦ୍ୱାରା ନିବାରିତ ହେଲା । ବିଶ୍ୱାମିତ୍ର ଅତ୍ୟନ୍ତ କ୍ରୁଦ୍ଧହୋଇ ବଜ୍ର, କାଳ ପାଶ, ବାୟବ୍ୟ, ବାରୁଣ, ପାଶୁପତ ଆଦି ସମସ୍ତ ଅସ୍ତ୍ର ପ୍ରୟୋଗ କରି ଯେତେବେଳେ ବିଫଳ ହେଲେ, ବଶିଷ୍ଠଙ୍କର ବିନାଶପାଇଁ ବ୍ରହ୍ମାସ୍ତ୍ର ପ୍ରୟୋଗ କଲେ । ଦେବ, ଋଷି, ଗନ୍ଧର୍ବ, ନର, ନାଗ ସମସ୍ତେ ବିଚଳିତ ହୋଇପଡ଼ିଲେ । କିନ୍ତୁ ବଶିଷ୍ଠ ଟିକିଏ ମାତ୍ର ବିଚଳିତ ନ ହୋଇ ବ୍ରହ୍ମଦଣ୍ଡ ଦ୍ୱାରା ବ୍ରହ୍ମାସ୍ତ୍ରକୁ ନିବାରିତ କରି ସେହି ଦଣ୍ଡକୁ ଧରି ଠିଆହୋଇ ରହିଲେ । କାଳାଗ୍ନି ପରି ଏହି ପ୍ରଜ୍ୱଳିତ ବ୍ରହ୍ମଦଣ୍ଡର ଜ୍ୱାଳାରେ ତ୍ରିଲୋକ ଥରହର ହେବାକୁ ଲାଗିଲା । ଋଷିମାନେ ବଶିଷ୍ଠଙ୍କୁ ସ୍ତୁତି କରି କହିଲେ, ସଂସାରର କଲ୍ୟାଣପାଇଁ ଆପଣ ଶୀଘ୍ର ଏହି ତେଜକୁ ସମ୍ବରଣ କରନ୍ତୁ । ବିଶ୍ୱାମିତ୍ର ବର୍ତ୍ତମାନ ଆପଣଙ୍କ ଦ୍ୱାରା ସମ୍ପୂର୍ଣ୍ଣ ପରାସ୍ତ ହୋଇଛନ୍ତି ।

ବିଶ୍ୱାମିତ୍ର ଦୀର୍ଘଶ୍ୱାସ ଛାଡ଼ି କହିଲେ, କ୍ଷତ୍ରିୟ ବଳକୁ ଧିକ୍, ବ୍ରହ୍ମତେଜର ବଳହିଁ ପ୍ରକୃତ ବଳ । ଗୋଟିଏ ମାତ୍ର ବ୍ରହ୍ମଦଣ୍ଡ ଧରି ବଶିଷ୍ଠ ମୋର ସମସ୍ତ ଅସ୍ତ୍ରକୁ ନଷ୍ଟ କରି ଦେଇଛନ୍ତି ।

**ଧିଗ୍‌ବଳଂ କ୍ଷତ୍ରିୟବଳଂ ବ୍ରହ୍ମତେଜୋବଳଂ ବଳମ୍**
**ଏକେନ ବ୍ରହ୍ମଦଣ୍ଡେନ ସର୍ବାସ୍ତ୍ରାଣି ହତାନି ମେ ।**

ବ୍ରହ୍ମତ୍ୱ ଲାଭ ନ କରିବା ପର୍ଯ୍ୟନ୍ତ ସେ ଆଉ ଫେରିବେ ନାହିଁ ବୋଲି କହି ନିରସ୍ତ ବିଶ୍ୱାମିତ୍ର ପୁଣି ତପସ୍ୟା କରିବାପାଇଁ ଚାଲିଗଲେ ।

## ୧୩ ।। ତ୍ରିଶଙ୍କୁ

ନିଜର ପରାଭବ ଦୁଃଖରେ ସନ୍ତପ୍ତ ହୋଇ ବିଶ୍ୱାମିତ୍ର ଦକ୍ଷିଣ ଦିଗକୁ ଗଲେ ଏବଂ ସେଠାରେ ବହୁକାଳ ଧରି ଅତି କଠୋର ତପସ୍ୟା କରିବାକୁ ଲାଗିଲେ । ତପସ୍ୟାରେ ତୁଷ୍ଟ ହୋଇ ବ୍ରହ୍ମା ଆସି କହିଲେ, ରାଜର୍ଷି ବିଶ୍ୱାମିତ୍ର, ତୁମେ ତପୋବଳରେ ତ୍ରିଲୋକ ଜୟ କରିଛ । ବର୍ତ୍ତମାନ ତୁମେ ରାଜର୍ଷି ହେଲ । ବିଶ୍ୱାମିତ୍ର ଏଥିରେ ଆଦୌ ଆନନ୍ଦିତ ହେଲେ ନାହିଁ । ଏତେ କଠୋର ତପସ୍ୟା କରିବା ପରେ ମଧ୍ୟ ସେ ରାଜର୍ଷି ହୋଇ ରହିଗଲେ, ବ୍ରହ୍ମର୍ଷି ହୋଇପାରିଲେ ନାହିଁ । ସେ ତପସ୍ୟାରୁ ଉଠିବେ କଣ, ଆହୁରି କଠୋର ତପସ୍ୟା କରିବାକୁ ଲାଗିଲେ ।

ଏହି ସମୟରେ ଇକ୍ଷ୍ୱାକୁ ବଂଶରେ ତ୍ରିଶଙ୍କୁ ନାମରେ ଜଣେ ରାଜା ଥିଲେ । ତାଙ୍କର ଇଚ୍ଛା ହେଲା, ଯଜ୍ଞ କରି ସେ ସଶରୀରେ ସ୍ୱର୍ଗଲୋକରେ ପ୍ରବେଶ କରିବେ । କୁଳଗୁରୁ ବଶିଷ୍ଠଙ୍କୁ ଡାକି ସେ ତାଙ୍କ ଇଚ୍ଛା ପ୍ରକାଶ କଲେ । ବଶିଷ୍ଠ କହିଲେ, ତାହା ସମ୍ଭବ ନୁହେଁ । ତ୍ରିଶଙ୍କୁ ଦକ୍ଷିଣ ଦିଗକୁ ଯାଇ ଯେଉଁଠି ବଶିଷ୍ଠଙ୍କର ପୁତ୍ରମାନେ ତପସ୍ୟା କରୁଥିଲେ, ସେଠାରେ ପହଞ୍ଚି କହିଲେ – ସଶରୀରେ ସ୍ୱର୍ଗକୁ ଯିବାପାଇଁ ମୁଁ ଏକ ଯଜ୍ଞ କରିବାକୁ ଇଚ୍ଛା କରୁଛି, କିନ୍ତୁ କୁଳଗୁରୁ ବଶିଷ୍ଠ ମୋର ଅନୁରୋଧ ପ୍ରତ୍ୟାଖ୍ୟାନ କରିଛନ୍ତି । ଆପଣମାନେ ଗୁରୁଙ୍କର ପୁତ୍ର, ତପସ୍ୱୀ । ଆପଣମାନେ ମୋତେ ସାହାଯ୍ୟ କରନ୍ତୁ । ବଶିଷ୍ଠଙ୍କର ପୁତ୍ରମାନେ କହିଲେ – ଦୁର୍ବୁଦ୍ଧି ରାଜା, କୁଳଗୁରୁ ବଶିଷ୍ଠ ମନା କରିଦେବା ପରେ ତୁମେ ତାଙ୍କ ଇଚ୍ଛା ବିରୋଧରେ କିପରି ଅନ୍ୟମାନଙ୍କର ସାହାଯ୍ୟ ଲୋଡୁଛ ? ସତ୍ୟବାଦୀ ବଶିଷ୍ଠ ଯାହାକୁ ଅସମ୍ଭବ ବୋଲି କହିଛନ୍ତି, ସେଥିରେ ଆମେ ତୁମକୁ କେବେ ସାହାଯ୍ୟ କରିପାରିବୁ ନାହିଁ । ତୁମେ ଫେରିଯାଅ ।

ତ୍ରିଶଙ୍କୁ ବିରକ୍ତ ହୋଇ କହିଲେ – ଠିକ୍ ଅଛି, ଗୁରୁ ଓ ଗୁରୁପୁତ୍ରମାନେ ମୋତେ ଯେତେବେଳେ ପ୍ରତ୍ୟାଖ୍ୟାନ କଲେ, ମୁଁ ନିଶ୍ଚୟ ଅନ୍ୟ ଉପାୟ ଖୋଜି ବାହାର କରିବି । ଋଷିପୁତ୍ରମାନେ କ୍ରୁଦ୍ଧହୋଇ ତ୍ରିଶଙ୍କୁ ରାଜା ହେବାପାଇଁ ଯୋଗ୍ୟ ନୁହନ୍ତି, ସେ ଶୀଘ୍ର ଚଣ୍ଡାଳ ହୋଇ ବୁଲନ୍ତୁ ବୋଲି ଅଭିଶାପ ଦେଲେ । ରାତି ପାହିବାରୁ ରାଜା ଚଣ୍ଡାଳ ହୋଇଗଲେ । ତାଙ୍କର ଦେହ କଳା ପଡ଼ିଗଲା, ମୁଣ୍ଡର ବାଳ ଉପୁଡ଼ି ଗଲା । ସେ ହାଡ଼ମାଳ ଓ ମଳିନ ବସ୍ତ୍ର ପିନ୍ଧି ଏକ ବିକୃତ ରୂପ ଧାରଣ କରିବାରୁ ତାଙ୍କର ମନ୍ତ୍ରୀ ଓ ପୁରବାସୀମାନେ ତାଙ୍କୁ ଛାଡ଼ି ପକାଇଲେ । ତ୍ରିଶଙ୍କୁ ସଙ୍ଗେ ସଙ୍ଗେ ଯାଇ ବିଶ୍ୱାମିତ୍ରଙ୍କର ଶରଣାପନ୍ନ ହୋଇ କହିଲେ – ମହାତ୍ମନ୍, ଗୁରୁ ବଶିଷ୍ଠ ଓ ତାଙ୍କର ପୁତ୍ରମାନେ ମୋତେ ପ୍ରତ୍ୟାଖ୍ୟାନ କରିଛନ୍ତି । ମୁଁ ସଶରୀରେ ସ୍ୱର୍ଗକୁ ଯିବାପାଇଁ ଇଚ୍ଛା କରିଥିଲି, କିନ୍ତୁ ତାହା ସଫଳ ନ ହୋଇ ମୋର ଏହି ଅବସ୍ଥା ଘଟିଛି । ହେ ସୌମ୍ୟଦର୍ଶନ ଋଷି, ମୋର କୌଣସି ଅପରାଧ ନାହିଁ । ମୁଁ ବହୁ

ଯଜ୍ଞ କରି ଧର୍ମରେ ପ୍ରଜାମାନଙ୍କୁ ପାଳନ କରିଛି । କେବଳ ସଶରୀରେ ସ୍ୱର୍ଗକୁ ଯିବାପାଇଁ ଇଚ୍ଛା କରି ଗୁରୁ ଓ ଗୁରୁପୁତ୍ରମାନଙ୍କର ବିରାଗଭାଜନ ହେଲି । ବର୍ତ୍ତମାନ ମୋର କି ଅବସ୍ଥା ହୋଇଛି, ଦେଖନ୍ତୁ । ମୁଁ ଆପଣଙ୍କର ଶରଣାଗତ, ମୋତେ ଆଶ୍ରୟ ଦିଅନ୍ତୁ ।

ବିଶ୍ୱାମିତ୍ର ତ୍ରିଶଙ୍କୁଙ୍କୁ ଆଶ୍ରୟ ଦେଇ କହିଲେ, ଭୟ କର ନାହିଁ । ମୁଁ ତୁମର ଯଜ୍ଞର ପୁରୋଧା ହେବି । ଯେଉଁ ରୂପ ତୁମେ ଧାରଣ କରିଛ, ସେଥିରେ କିଛି ଯାଏଆସେ ନାହିଁ । ତୁମେ ସେହି ରୂପରେ ସଶରୀରେ ସ୍ୱର୍ଗକୁ ଯିବ । ଏହା କହି ବିଶ୍ୱାମିତ୍ର ଯଜ୍ଞର ଆୟୋଜନ କଲେ ଏବଂ ଏଥିରେ ଯୋଗ ଦେବାପାଇଁ ଚତୁର୍ଦ୍ଦିଗରୁ ଋଷି ଓ ଋତ୍ୱିକମାନଙ୍କୁ ନିମନ୍ତ୍ରଣ କଲେ । କେବଳ ମହୋଦୟ ଦେଶର ବ୍ରାହ୍ମଣମାନେ ଓ ବଶିଷ୍ଠଙ୍କର ପୁତ୍ରମାନେ ଅବଜ୍ଞା କଲେ । ବିଶ୍ୱାମିତ୍ର ରୁଷ୍ଟ ହୋଇ ଅବଜ୍ଞାକାରୀମାନଙ୍କୁ ଅଭିଶାପ ଦେଲେ, ସେମାନେ ସାତଜନ୍ମ ପର୍ଯ୍ୟନ୍ତ ନିର୍ଦ୍ଦୟ, କଦାଚାରୀ ଓ କୁକ୍କୁର-ମାଂସଭୋଜୀ ହୋଇ ଚଣ୍ଡାଳମାନଙ୍କ ପରି ବିଚରଣ କରିବେ ।

ବିଶ୍ୱାମିତ୍ରଙ୍କର ଯଜ୍ଞ ଆରମ୍ଭ ହେଲା । ସମସ୍ତ ଋତ୍ୱିକ ଓ ଋଷିମାନେ ବିଶ୍ୱାମିତ୍ରଙ୍କୁ ଭୟ କରି ଯଜ୍ଞରେ ଯାଜକ ହେଲେ । ବିଶ୍ୱାମିତ୍ର ଯଜ୍ଞଭାଗ ଗ୍ରହଣ କରିବାପାଇଁ ଦେବତାମାନଙ୍କୁ ଆହ୍ୱାନ କରି ଆହୁତି ଦେଲେ, କିନ୍ତୁ ଦେବତାମାନେ କେହି ଆସିଲେ ନାହିଁ । କ୍ରୁଦ୍ଧ ବିଶ୍ୱାମିତ୍ର ସ୍ରୁବ(ଆହୁତି ଦଣ୍ଡ)କୁ ଉପରକୁ ଉଠାଇ ତ୍ରିଶଙ୍କୁଙ୍କୁ କହିଲେ – ରାଜା, ସଶରୀରରେ ସ୍ୱର୍ଗକୁ ଯିବା ଦୁର୍ଲଭ ହେଲେ ମଧ୍ୟ ମୋର ତପୋବଳରେ ତୁମେ ଏହିକ୍ଷଣି ସ୍ୱର୍ଗକୁ ଯିବ, ଏଥିରେ ସନ୍ଦେହ ନାହିଁ । ବର୍ତ୍ତମାନ ତୁମେ ନିଃସଙ୍କୋଚରେ ଉପରକୁ ଉଠି ସ୍ୱର୍ଗକୁ ଯାଅ । ତ୍ରିଶଙ୍କୁ ସମସ୍ତ ମୁନିଗଣଙ୍କର ସମ୍ମୁଖରେ ସ୍ୱର୍ଗକୁ ଉଠିଲେ । ସେ ସ୍ୱର୍ଗଦ୍ୱାରରେ ପହଞ୍ଚିଛନ୍ତି, ଇନ୍ଦ୍ର ଦେବତାମାନଙ୍କ ସହିତ ଆସି କହିଲେ, ତ୍ରିଶଙ୍କୁ ଫେରିଯାଅ । ତୁମେ ସ୍ୱର୍ଗରେ ବାସ କରିବା ପାଇଁ ଅଯୋଗ୍ୟ । ମୂଢ଼, ତୁମେ ଗୁରୁଶାପଗ୍ରସ୍ତ, ତେଣୁ ତଳକୁ ମୁଣ୍ଡ କରି ଭୂମିରେ ଯାଇ ପଡ଼ । ତ୍ରିଶଙ୍କୁ ତ୍ରାହି ତ୍ରାହି ଶବ୍ଦକରି ତଳକୁ ପଡ଼ିବାକୁ ଲାଗିଲେ ।

ବିଶ୍ୱାମିତ୍ର କ୍ରୋଧାବିଷ୍ଟ ହୋଇ କହିଲେ – ରାଜା, ଯେଉଁଠି ଅଛ, ସେଇଠାରେ ରହ । ମୁଁ ଶୀଘ୍ର ଏକ ନୂତନ ସ୍ୱର୍ଗ ସୃଷ୍ଟି କରୁଛି । ଏହା କହି ଦକ୍ଷିଣ ଦିଗରେ ସେ ସପ୍ତର୍ଷିମଣ୍ଡଳ ସୃଷ୍ଟି କଲେ ଏବଂ ନକ୍ଷତ୍ରମାନଙ୍କୁ ମଧ୍ୟ ସୃଷ୍ଟି କରିବାକୁ ଲାଗିଲେ । ତା'ପରେ ଉଚ୍ଚସ୍ୱରରେ କହିଲେ, ମୁଁ ଦେବତାମାନଙ୍କୁ ଓ ଅନ୍ୟ ଇନ୍ଦ୍ରଙ୍କୁ ମଧ୍ୟ ସୃଷ୍ଟି କରିବି, ଯେପରିକି ସ୍ୱର୍ଗ ଇନ୍ଦ୍ରଶୂନ୍ୟ ହୋଇଯିବ । ସୁରାସୁର ଓ ଋଷିମାନେ ଭୟଗ୍ରସ୍ତ ହୋଇ ବିଶ୍ୱାମିତ୍ରଙ୍କ ପାଖକୁ ଆସି ବିନୀତ ଭାବରେ କହିଲେ – ମୁନିଶ୍ରେଷ୍ଠ, ଆପଣଙ୍କର ଇଚ୍ଛା ପୂର୍ଣ୍ଣହେବ । ଯେଉଁଠାରେ ତ୍ରିଶଙ୍କୁ ରହିଛନ୍ତି, ସେଇଠାରେ ରହିବେ ଏବଂ ଏକ ଜ୍ୟୋତିର୍ମୟ ଜ୍ୟୋତିଷର ରୂପ ଧାରଣ କରିବେ । ଆପଣଙ୍କ ସୃଷ୍ଟ ଅନ୍ୟ ନକ୍ଷତ୍ରମାନେ ମଧ୍ୟ ସୂର୍ଯ୍ୟଙ୍କ ଯାତ୍ରାପଥର ବାହାରରେ ରହି ଆଲୋକ ବିକିରଣ କରିବେ । ବିଶ୍ୱାମିତ୍ର ଦେବତାମାନଙ୍କର ବିନୟପୂର୍ଣ୍ଣ ବାକ୍ୟ ଗ୍ରହଣ କଲେ ।

# ୧୪ ।। ଶୁନଃଶେପ

ତ୍ରିଶଙ୍କୁଙ୍କୁ ସାହାଯ୍ୟ କରିବାକୁ ଯାଇ ବିଶ୍ୱାମିତ୍ରଙ୍କର ତପୋଭଙ୍ଗ ହୋଇଗଲା । ସେ ଯେଉଁ ତପୋବଳ ସଞ୍ଚୟ କରିଥିଲେ, ତ୍ରିଶଙ୍କୁଙ୍କୁ ସ୍ୱର୍ଗକୁ ପଠାଇବାରେ ଓ ଏକ ନୂତନ ଜ୍ୟୋତିଷମଣ୍ଡଳ ସୃଷ୍ଟି କରିବାରେ ତାହା ସରିଗଲା । କିନ୍ତୁ ଏହି ଅନମନୀୟ ଋଷି ତାଙ୍କର ସଙ୍କଳ୍ପରୁ ଆଦୌ ବିଚ୍ୟୁତ ହେଲେ ନାହିଁ । ସେ ପଶ୍ଚିମ ଦିଗକୁ ଯାଇ ପୁଷ୍କର ତୀର୍ଥ ନିକଟରେ କଠୋର ତପସ୍ୟା କଲେ ।

ଅଯୋଧ୍ୟାର ରାଜା ଅମ୍ବରୀଷ ଏକ ଯଜ୍ଞ କରୁଥିଲେ । ତାଙ୍କର ଯଜ୍ଞ ଶେଷ ହେବା ପୂର୍ବରୁ ଇନ୍ଦ୍ର ଯଜ୍ଞପଶୁକୁ ଅପହରଣ କରିନେଲେ । ଏଥିରେ ଯଜ୍ଞକାରୀ ବ୍ରାହ୍ମଣମାନେ ବିବ୍ରତ ହୋଇ କହିଲେ – ରାଜା, ତୁମ ଦୋଷରୁ ଯଜ୍ଞ ନଷ୍ଟ ହେବାକୁ ବସିଚି । ଯେଉଁ ରାଜା ଯଜ୍ଞ କରି ଯଜ୍ଞ ରକ୍ଷା କରିବାକୁ ଅସମର୍ଥ, ସେ ନିଜେ ବିନଷ୍ଟ ହୁଏ । ବର୍ତ୍ତମାନ ଏହାର ଏକମାତ୍ର ପ୍ରାୟଶ୍ଚିତ୍ତ ହେଉଚି, ଜଣେ ମନୁଷ୍ୟକୁ ଆଣି ଏ ଯଜ୍ଞରେ ବଳି ଦେବାକୁ ହେବ ।

ରାଜା ଅମ୍ବରୀଷ ଏକସହସ୍ର ଗାଭୀ ଦାନ କରି ଗୋଟିଏ ମନୁଷ୍ୟ ପାଇବା ପାଇଁ ଚେଷ୍ଟା କଲେ । ମାତ୍ର କେହି ରାଜି ହେଲେ ନାହିଁ । ଶେଷରେ ବହୁ ଦେଶ, ନଗର, ଜନପଦ ବୁଲି ବୁଲି ସେ ଋଷି ଋଚୀକଙ୍କର ଆଶ୍ରମରେ ପହଞ୍ଚିଲେ ଏବଂ ଲକ୍ଷେ ଧେନୁ ବିନିମୟରେ ତାଙ୍କର ତିନୋଟି ପୁତ୍ରରୁ ଜଣକୁ ଦେବା ପାଇଁ ଅନୁରୋଧ କଲେ । ଋଚୀକ କହିଲେ, ମୁଁ ଜ୍ୟେଷ୍ଠପୁତ୍ରକୁ କେବେହେଲେ ଦେଇପାରିବି ନାହିଁ । ପୁତ୍ରମାନଙ୍କ ଜନନୀ ଋଷିପତ୍ନୀ କହିଲେ, କନିଷ୍ଠପୁତ୍ର ମୋର ଅତି ପ୍ରିୟ । ମୁଁ ତାକୁ ଦେଇପାରିବି ନାହିଁ । ଏହା ଶୁଣି ମଧ୍ୟମ ପୁତ୍ର ଶୁନଃଶେପ ଭାବିଲେ, ଜ୍ୟେଷ୍ଠପୁତ୍ର ପିତାଙ୍କର ପ୍ରିୟ । କନିଷ୍ଠପୁତ୍ର ମାତାଙ୍କର ପ୍ରିୟ । ତେଣୁ ସେ ଦୁହେଁ ସୁରକ୍ଷିତ ହେଲେ । ମୁଁ ତା' ହେଲେ କାହାର ନୁହେଁ । ସେ ସଙ୍ଗେ ସଙ୍ଗେ କହିଉଠିଲେ – ରାଜା, ପିତାମାତାଙ୍କର କଥାରୁ ଯାହା ମୁଁ ବୁଝିଲି, ଜ୍ୟେଷ୍ଠ ଓ କନିଷ୍ଠ ବିକ୍ରୟଯୋଗ୍ୟ ନୁହନ୍ତି, ମୁଁ କେବଳ ବିକ୍ରୟର ଯୋଗ୍ୟ । ବର୍ତ୍ତମାନ ମୁଁ ବିକ୍ରୀ ହୋଇଗଲି ବୋଲି ଜାଣନ୍ତୁ । ଚାଲନ୍ତୁ, ମୁଁ ଆପଣଙ୍କର ବଳି ସ୍ୱରୂପ ଯିବି । ରାଜା ଲକ୍ଷେ ଧେନୁ; ବହୁ ସୁବର୍ଣ୍ଣ ଓ ଧନ ଦାନ କରି ଶୁନଃଶେପଙ୍କୁ ସାଙ୍ଗରେ ଧରି ଆନନ୍ଦରେ ଚାଲିଲେ ।

ମଧ୍ୟାହ୍ନ ହେବାରୁ ସେମାନେ ପୁଷ୍କର ତୀର୍ଥରେ ବିଶ୍ରାମ କଲେ । ସେଠାରେ ବିଶ୍ୱାମିତ୍ର ତପସ୍ୟା କରୁଥିବାର ଦେଖି, ଶୁନଃଶେପ ଶୋକବିହ୍ୱଳ ହୋଇ ଋଷିଙ୍କର ପାଦତଳେ ପଡ଼ିଗଲେ । ବିଶ୍ୱାମିତ୍ର ତାଙ୍କର ମାତୁଳ ଥିଲେ । ସେ କାତର ସ୍ୱରରେ କହିଲେ, ମୋର ପିତା, ମାତା, ଜ୍ଞାତି ବା ସ୍ୱଜନ କେହି ନାହାନ୍ତି । ମୁଁ ଅନାଥ । ଆପଣ ମୋତେ ରକ୍ଷା କରନ୍ତୁ । ଶୁନଃଶେପ ଯଜ୍ଞପଶୁ ରୂପେ ବଳି ପଡ଼ିବାକୁ ଯାଉଛନ୍ତି ବୋଲି ଶୁଣି ବିଶ୍ୱାମିତ୍ରଙ୍କର ହୃଦୟ କରୁଣାରେ ଭରିଗଲା । ସେ ଶୁନଃଶେପଙ୍କୁ ସାନ୍ତ୍ୱନା ଦେଇ ତାଙ୍କର ପୁତ୍ରମାନଙ୍କୁ ଡାକି କହିଲେ – ଦେଖ, ଏହି ଶରଣାଗତ ବାଳକକୁ ମୁଁ ରକ୍ଷା କରିବାକୁ ଚାହେଁ । ତେଣୁ ତୁମ ମଧ୍ୟରୁ ଜଣେ ଯଜ୍ଞପଶୁ ହୋଇ ଏହାଙ୍କର ପ୍ରାଣ ରକ୍ଷା କର ।

ବିଶ୍ୱାମିତ୍ରଙ୍କ ପୁତ୍ରମାନେ ପିତାଙ୍କ ବାକ୍ୟକୁ ଉପେକ୍ଷା କରି କହିଲେ, ଯେଉଁ ପିତା ଅନ୍ୟର ପୁତ୍ର ପାଇଁ ନିଜ ପୁତ୍ରକୁ ତ୍ୟାଗ କରିବାକୁ ଚାହେଁ, ତା'ର ଏହି କାର୍ଯ୍ୟ କୁକୁରମାଂସ ଭକ୍ଷଣ ପରି ନିନ୍ଦନୀୟ । ପୁତ୍ରମାନଙ୍କର ଏହି ଅବଜ୍ଞାପୂର୍ଣ୍ଣ ବାକ୍ୟ ଶୁଣି ବିଶ୍ୱାମିତ୍ର ସେମାନଙ୍କୁ ଅଭିଶାପ ଦେଇ କହିଲେ, ତୁମେମାନେ ଏଣିକି ବଶିଷ୍ଠ ପୁତ୍ରମାନଙ୍କ ପରି ପତିତ ଜାତି ହୋଇ କୁକ୍କୁରମାଂସ ଭୋଜନ କରିବ । ସେ ଶୁନଃଶେପଙ୍କୁ କହିଲେ, ତୁମକୁ ମୁଁ ଦୁଇଟି ମନ୍ତ୍ର ଦେଉଚି । ଯଜ୍ଞସ୍ଥଳରେ ତୁମେ ତାହା ଗାନ କର । ତୁମର ମଙ୍ଗଳ ହେବ ।

ଯଜ୍ଞସ୍ଥଳରେ, ଶୁନଃଶେପଙ୍କୁ ରକ୍ତବସ୍ତ୍ର ପିନ୍ଧାଇ କୁଶ ଦଉଡ଼ିରେ ଯୂପକାଠରେ ବାନ୍ଧି ଦିଆଗଲା । ଋଷିପୁତ୍ର ବିଶ୍ୱାମିତ୍ରଙ୍କ ପ୍ରଦତ୍ତ ମନ୍ତ୍ର ଦୁଇଟି ପାଠ କରିବାକୁ ଲାଗିଲେ । ଏହି ମନ୍ତ୍ରବଳରେ ଇନ୍ଦ୍ର ସେଠାରେ ଉପସ୍ଥିତ ହୋଇ ରାଜାଙ୍କୁ ଯଜ୍ଞର ଫଳ ଏବଂ ଶୁନଃଶେପଙ୍କୁ ଯୂପକାଷ୍ଠରୁ ମୁକ୍ତି ଦେଇ ଦୀର୍ଘ ଆୟୁ ଦାନ କଲେ ।

## ୧୫ ॥ ମେନକା, ରମ୍ଭା, ବ୍ରହ୍ମର୍ଷି ପଦଲାଭ

ବିଶ୍ୱାମିତ୍ର ପୁଣି ତପସ୍ୟାରେ ମଗ୍ନ ହୋଇଗଲେ । ତାଙ୍କର କଠୋର ତପସ୍ୟାରେ ସନ୍ତୁଷ୍ଟ ହୋଇ ବ୍ରହ୍ମା ଆସି କହିଲେ, ତୁମର ଅର୍ଜିତ ପୁଣ୍ୟ ବଳରେ ବର୍ତ୍ତମାନ ତୁମେ ଋଷି ହେଲ । ବିଶ୍ୱାମିତ୍ର ଏଥିରେ ସନ୍ତୁଷ୍ଟ ହେଲେ ନାହିଁ । ରାଜର୍ଷି ଥିଲେ, ଋଷି ହେଲେ । ଏଥିରେ ବିଶେଷ କ'ଣ ଲାଭ ହେଲା ? ସେ ସଙ୍କଳ୍ପବଦ୍ଧ ହୋଇ ଆହୁରି କଠୋର ତପସ୍ୟା କରିବାକୁ ଲାଗିଲେ । ଏହିପରି ବହୁକାଳ ବିତିଗଲା ।

ଦିନେ ସ୍ୱର୍ଗର ରୂପସୀ ମେନକା ପୁଷ୍କର ତୀର୍ଥରେ ସ୍ନାନ କରିବାକୁ ଆସିଥିଲେ । ତାଙ୍କର ଅପୂର୍ବ ରୂପଲାବଣ୍ୟରେ ମୋହିତ ହୋଇ ବିଶ୍ୱାମିତ୍ର ତାଙ୍କୁ କହିଲେ – ଅପ୍ସରା, ତୁମକୁ ସ୍ୱାଗତ । ତୁମେ ମୋର ଆଶ୍ରମରେ ବାସ କର । ମୁଁ କାମଦଗ୍ଧ । ମୋତେ ଅନୁଗ୍ରହ କର । ବରବର୍ଣ୍ଣିନୀ ମେନକା ସମ୍ମତ ହୋଇ ବିଶ୍ୱାମିତ୍ରଙ୍କ ଆଶ୍ରମରେ ବାସ କଲେ ।

ଦଶବର୍ଷ ସୁଖରେ ବିତିଯିବା ପରେ ବିଶ୍ୱାମିତ୍ରଙ୍କ ମନରେ ଅନୁତାପ ଆସିଲା । ଦୁଃଖ ଓ ଲଜ୍ଜାରେ ସଢ଼ିଯାଇ ସେ ଭାବିଲେ, ଏହା ହେଉଚି ଦେବତାମାନଙ୍କର କୌଶଳ । ସେମାନେ ମୋର ତପସ୍ୟାକୁ ଅପହରଣ କରିନେବାକୁ ଚାହାନ୍ତି । ସେ କ୍ରୋଧରେ ଦୀର୍ଘନିଃଶ୍ୱାସ ଛାଡ଼ିବାକୁ ଲାଗିଲେ । ଏହା ଦେଖି ମେନକାଙ୍କର ଭୟ ହେଲା । ସେ ଥରି ଥରି ତାଙ୍କ ପାଖରେ ଠିଆ ହୋଇଥିବାର ଦେଖି ବିଶ୍ୱାମିତ୍ର ମଧୁର ବାକ୍ୟରେ ତାଙ୍କୁ ବିଦାୟ ଦେଲେ ଏବଂ ତପସ୍ୟା କରିବା ପାଇଁ ଉତ୍ତର ଦିଗକୁ ଚାଲିଗଲେ । କୌଶିକୀ ନଦୀକୂଳରେ ପୁଣି ଅନେକ ବର୍ଷ ଧରି ସେ ତପସ୍ୟା କରିବାପରେ ଦେବତାମାନେ ତାଙ୍କୁ ମହର୍ଷି ପଦ ଦେବା ପାଇଁ ବ୍ରହ୍ମାଙ୍କୁ ନିବେଦନ କଲେ । ବ୍ରହ୍ମା ବିଶ୍ୱାମିତ୍ରଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ – ମହର୍ଷି, ମୁଁ ତୁମକୁ ଅଭିବାଦନ କରୁଚି । ତୁମର ତପସ୍ୟାରେ ମୁଁ ସନ୍ତୁଷ୍ଟ ହୋଇଚି । ଋଷିମାନଙ୍କର ଶ୍ରେଷ୍ଠ ପଦବୀ ମହର୍ଷି ପଦ ମୁଁ ତୁମକୁ ଦାନ କଲି । ବିଶ୍ୱାମିତ୍ର

ଏଥିରେ ଦୁଃଖିତ ନ ହେଲେ ମଧ ସନ୍ତୁଷ୍ଟ ହେଲେ ନାହିଁ । ସେ ବ୍ରହ୍ମାଙ୍କୁ ବିନୀତ ଭାବରେ କହିଲେ – ଭଗବନ୍, ଆପଣ ମୋତେ ବ୍ରହ୍ମର୍ଷି ବୋଲି କହିଲେ ନାହିଁ । ମୁଁ ବୁଝିଚି, ମୋର କିଛି ତ୍ରୁଟି ରହିଯାଇଚି । ଆପଣ ମୋତେ ଜିତେନ୍ଦ୍ରିୟ ବୋଲି ମନେ କରୁନାହାନ୍ତି । ବ୍ରହ୍ମା କହିଲେ – ମୁନିଶ୍ରେଷ୍ଠ, ଏପର୍ଯ୍ୟନ୍ତ ତୁମେ ଜିତେନ୍ଦ୍ରିୟ ହୋଇ ନାହଁ । ଆହୁରି ଉଦ୍ୟମ କର ।

ବିଶ୍ୱାମିତ୍ର ପୁଣି ଘୋରତର ତପସ୍ୟା କରିବାକୁ ଲାଗିଲେ । ତାଙ୍କର ତପସ୍ୟା ଏପରି କଠୋର ହେଲା ଯେ ଇନ୍ଦ୍ର ଭୟଭୀତ ହୋଇ ମରୁତମାନଙ୍କ ସହିତ ଅପ୍ସରା ରମ୍ଭାଙ୍କୁ ଡାକି କହିଲେ, ଦେବତାମାନଙ୍କ କାର୍ଯ୍ୟ ପାଇଁ ତୁମକୁ ବିଶ୍ୱାମିତ୍ରଙ୍କ ପାଖକୁ ଯିବାକୁ ହେବ । କାମବଶରେ ତୁମେ ତାଙ୍କୁ ମୋହିତ କର । ରମ୍ଭା କହିଲେ – ବିଶ୍ୱାମିତ୍ର ଉଗ୍ର ସ୍ୱଭାବର ଋଷି, ସେଥିପାଇଁ ମୋର ଭୟ ଜାତ ହେଉଚି । ଇନ୍ଦ୍ର କହିଲେ – ରମ୍ଭା, ଭୟ କର ନାହିଁ । ମୁଁ କନ୍ଦର୍ପକୁ ଧରି ତୁମର ସାଙ୍ଗେ ସାଙ୍ଗେ ରହିଥିବି ।

ରମ୍ଭା ମୁନିମନମୋହନ ଅତି ସୁନ୍ଦର ରୂପ ଧାରଣ କରି ମଧୁର ସଙ୍ଗୀତ, ସଲଜ୍ଜ ହାସ୍ୟ ଓ ଅଙ୍ଗଭଙ୍ଗୀରେ ବିଶ୍ୱାମିତ୍ରଙ୍କୁ ପ୍ରଲୋଭିତ କରିବାପାଇଁ ଚେଷ୍ଟା କଲେ । ବସନ୍ତକାଳର ପୁଷ୍ପିତ କାନନ ଓ ପକ୍ଷୀମାନଙ୍କର କୂଜନରେ ପରିବେଶ ଆହୁରି କାମୋଦ୍ଦୀପକ ହୋଇ ଉଠିଲା । ହଠାତ୍ ବନ ମଧ୍ୟରେ ଏପରି ମଧୁର ପରିବେଶ ଅନୁଭବ କରି ବିଶ୍ୱାମିତ୍ର ହୃଷ୍ଟ ଚିତ୍ତରେ ଅପ୍ସରାଙ୍କ ଆଡ଼କୁ ଚାହିଁଲେ । ମାତ୍ର ପରମୁହୂର୍ତ୍ତରେ ତାଙ୍କ ମନରେ ସନ୍ଦେହ ଜାତ ହେଲା । ଏହା ଇନ୍ଦ୍ରଙ୍କର କାର୍ଯ୍ୟ ବୋଲି ଜାଣିପାରି ସେ କ୍ରୁଦ୍ଧହୋଇ ରମ୍ଭାଙ୍କୁ ଅଭିଶାପ ଦେଲେ – ମୁଁ କାମକ୍ରୋଧକୁ ଜୟକରି ଜିତେନ୍ଦ୍ରିୟ ହେବାକୁ ଚେଷ୍ଟିତ ଥିବାବେଳେ ତୁ ମୋର ତପୋଭଙ୍ଗ କରିବାକୁ ବସିଚୁ । ଅଭାଗିନୀ, ତୁ ପାଷାଣୀ ହୋଇ ରହିବୁ । ଦଶହଜାର ବର୍ଷପରେ ଜଣେ ମହାତେଜା ତପସ୍ୱୀ ବ୍ରାହ୍ମଣଙ୍କ ଅନୁଗ୍ରହରୁ ତୁ ଉଦ୍ଧାର ପାଇବୁ । ଏହି ନିଦାରୁଣ ଶାପରେ ରମ୍ଭା ତତ୍କ୍ଷଣାତ୍ ପାଷାଣୀ ହୋଇଗଲେ । ଏହା ଦେଖି ଇନ୍ଦ୍ର ଓ କନ୍ଦର୍ପ ସେଠାରୁ ଭୟରେ ପଳାଇଗଲେ ।

ବିଶ୍ୱାମିତ୍ର ଅନୁଭବ କଲେ, ସେ କ୍ରୋଧକୁ ଜୟ କରିପାରି ନାହାନ୍ତି । ପୁଣି ତାଙ୍କୁ କଠୋର ତପସ୍ୟା କରିବାକୁ ହେବ । ଏଥର ପୂର୍ବଦିଗକୁ ଯାଇ ମୌନବ୍ରତ ଅବଲମ୍ବନପୂର୍ବକ ସେ ଦୁଷ୍କର ତପସ୍ୟା ଆରମ୍ଭ କଲେ । ତପୋବଳରେ ସେ କ୍ରୋଧକୁ ଜୟକରି ବ୍ରତପୂର୍ଣ୍ଣ ହେବାପରେ ଯେତେବେଳେ ଅନ୍ନ ଭୋଜନ କରିବାକୁ ଯାଉଛନ୍ତି, ଜଣେ ବ୍ରାହ୍ମଣ ଆସି ତାଙ୍କୁ ଏହି ଅନ୍ନ ଭିକ୍ଷାକଲେ । ସେ ସାନନ୍ଦ ଚିତ୍ତରେ ବ୍ରାହ୍ମଣଙ୍କୁ ଅନ୍ନଦାନ କଲେ ଏବଂ ଉପବାସରେ ମୌନବ୍ରତ ଅବଲମ୍ବନ କରି ତପସ୍ୟା କରିବାକୁ ଲାଗିଲେ । ଇନ୍ଦ୍ର ହିଁ ବ୍ରାହ୍ମଣ ବେଶରେ ତାଙ୍କୁ ପରୀକ୍ଷା କରିବାକୁ ଆସିଥିଲେ ।

ସମସ୍ତ ଇନ୍ଦ୍ରିୟକୁ ଜୟ କରିଥିବା ବିଶ୍ୱାମିତ୍ରଙ୍କର ଦୁଷ୍କର ତପସ୍ୟାରେ ଦେବାସୁର, ଗନ୍ଧର୍ବ, ନର, ନାଗ ସମସ୍ତେ ଥରହର ହେବାକୁ ଲାଗିଲେ । ବ୍ରହ୍ମା ଦେଖିଲେ, ନାନା ଉପାୟରେ କାମ, କ୍ରୋଧ, ଲୋଭ ଆଦି ଜନ୍ମାଇ ବିଶ୍ୱାମିତ୍ରଙ୍କୁ ମୋହିତ କରିବାପାଇଁ ଚେଷ୍ଟା କରାଯାଇଚି । ମାତ୍ର ସେ ସମସ୍ତ ଜୟ କରିପାରିଛନ୍ତି । ତାଙ୍କର ତେଜରେ ଚନ୍ଦ୍ର, ସୂର୍ଯ୍ୟ

ମଧ୍ୟ ମଳିନ ହେବାକୁ ବସିଛନ୍ତି । ଯଦି ବିଶ୍ୱାମିତ୍ରଙ୍କୁ ତାଙ୍କର ପ୍ରାପ୍ୟ ବର ଦିଆ ନ ଯାଏ, ତା' ହେଲେ ସମସ୍ତ ସଂସାର ଧ୍ୱଂସ ହୋଇଯିବ । ବ୍ରହ୍ମା ଦେବତାମାନଙ୍କୁ ସାଙ୍ଗରେ ଧରି ବିଶ୍ୱାମିତ୍ରଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ – ବ୍ରହ୍ମର୍ଷି ବିଶ୍ୱାମିତ୍ର, କଠୋର ତପସ୍ୟା ଦ୍ୱାରା ତୁମେ ବ୍ରାହ୍ମଣତ୍ୱ ଲାଭ କରିଚ । ତୁମର ଈପ୍ସିତ ବର ତୁମକୁ ମୁଁ ଦାନ କଲି । ତୁମର ମଙ୍ଗଳ ହେଉ । ବିଶ୍ୱାମିତ୍ର ଏଥର ସନ୍ତୁଷ୍ଟ ହେଲେ । ମାତ୍ର ବ୍ରହ୍ମା ଓ ଦେବତାମାନଙ୍କୁ କହିଲେ – ଯଦି ମୁଁ ବ୍ରହ୍ମର୍ଷି ହେଲି, ତା' ହେଲେ କ୍ଷାତ୍ରବିଦ୍ୟା ଓ ବ୍ରହ୍ମବିଦ୍ୟାରେ ଶ୍ରେଷ୍ଠ ବଶିଷ୍ଠ ମୋତେ ବ୍ରହ୍ମର୍ଷି ବୋଲି ସ୍ୱୀକାର କରନ୍ତୁ । ଦେବତାମାନଙ୍କ ଅନୁରୋଧରେ ଋଷିଶ୍ରେଷ୍ଠ ବଶିଷ୍ଠ ଆସି କହିଲେ – ବିଶ୍ୱାମିତ୍ର, ତୁମେ ନିଃସନ୍ଦେହରେ ବ୍ରହ୍ମର୍ଷିପଦ ଲାଭ କରିଚ ।

ବ୍ରହ୍ମର୍ଷି ବିଶ୍ୱାମିତ୍ର ବଶିଷ୍ଠଙ୍କୁ ସମ୍ମାନ ଜଣାଇ ତାଙ୍କ ସହିତ ଚିରସଖ୍ୟ ସ୍ଥାପନ କଲେ ।

## ୧୬ ॥ ହରଧନୁ ଭଙ୍ଗ

ବିଶ୍ୱାମିତ୍ରଙ୍କର ବୃତ୍ତାନ୍ତ ଶୁଣି ରାମ ଲକ୍ଷ୍ମଣ ତାଙ୍କ ସହିତ ଜନକଙ୍କ ରାଜଧାନୀରେ ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଆବାସ ଗୃହରେ ବାସକଲେ । ପରଦିନ ପ୍ରଭାତରେ ରାଜା ସେମାନଙ୍କୁ ଡକାଇଆଣି ବିଶ୍ୱାମିତ୍ରଙ୍କୁ କହିଲେ – ମୁନିବର, ବର୍ତ୍ତମାନ ଆପଣଙ୍କ ପାଇଁ ମୋତେ କ'ଣ କରିବାକୁ ହେବ ଆଦେଶ ଦିଅନ୍ତୁ । ବିଶ୍ୱାମିତ୍ର କହିଲେ, ଆପଣଙ୍କ ପାଖରେ ଯେଉଁ ଶ୍ରେଷ୍ଠ ଶିବଧନୁ ଅଛି, ତାହା ଅଯୋଧ୍ୟାର ରାଜକୁମାରମାନେ ଦେଖିବାକୁ ଚାହାନ୍ତି । ଏହାକୁ ଦେଖିବା ପରେ ସଫଳକାମ ହୋଇ ସେମାନେ ଅଯୋଧ୍ୟା ଫେରିଯିବେ ।

ଜନକ ସେଥିରେ ରାଜି ହୋଇ ଶିବଧନୁ ସମ୍ପର୍କରେ ଯେଉଁ ଆଖ୍ୟାୟିକା ଅଛି, ତାହା ଶୁଣାଇଲେ । ଜନକ କହିଲେ, ପୂର୍ବକାଳରେ ଦକ୍ଷଯଜ୍ଞ ଭଙ୍ଗ କରିବା ସମୟରେ କ୍ରୁଦ୍ଧ ମହାଦେବ ଦେବତାମାନଙ୍କୁ କହିଥିଲେ, ତୁମେମାନେ ସମସ୍ତେ ଯଜ୍ଞର ଭାଗ ଗ୍ରହଣ କରି ମୋତେ ମୋର ଭାଗ ଦେଇ ନାହଁ । ଏହି ଧନୁ ସାହାଯ୍ୟରେ ମୁଁ ଗୋଟି ଗୋଟି କରି ତୁମ ସମସ୍ତଙ୍କ ମସ୍ତକ ଛେଦନ କରିବି । ଏହା ଶୁଣି ଦେବତାମାନେ ଭୟରେ ମହାଦେବଙ୍କୁ ସନ୍ତୁଷ୍ଟ କରିବା ପାଇଁ ତାଙ୍କର ସ୍ତୁତିଗାନ କରିବାକୁ ଲାଗିଲେ । ମହାଦେବ ସନ୍ତୁଷ୍ଟ ହୋଇ ସେମାନଙ୍କୁ ଏହି ଧନୁଟି ଦେଇଥିଲେ । ଦେବତାମାନଙ୍କଠାରୁ ମୋର ପୂର୍ବପୁରୁଷମାନଙ୍କ ପାଖକୁ ଏହି ଧନୁ ଆସିଥିଲା । ବଂଶାନୁକ୍ରମେ ଏହି ଧନୁ ପୂଜାପାଇ ଆସୁଛି ।

ଜନକ କହିଲେ, ଆଉଦିନେ ମୁଁ ଯଜ୍ଞଭୂମି କର୍ଷଣ କରୁଥିଲି, ଲଙ୍ଗଳ ସିଆରରୁ ଗୋଟିଏ କନ୍ୟାରତ୍ନ ଲାଭକଲି । ହଳ କରାଯିବା ସମୟରେ, ହଳ ଆଗରେ ଭୂମି ମଧ୍ୟରୁ ଏହି କନ୍ୟାଟି ଜାତ ହୋଇଥିବା ଯୋଗୁଁ ଏହାର ନାମ ମୁଁ ସୀତା ରଖିଥିଲି । ଏହି କନ୍ୟା ଅଯୋନିସମ୍ଭୂତା ଏବଂ ବୀର୍ଯ୍ୟଶୁଳ୍‌କା, ଅର୍ଥାତ୍ କେବଳ ବୀରତ୍ୱର ପରୀକ୍ଷା ଦ୍ୱାରା ହିଁ ଏହି କନ୍ୟାକୁ ଲାଭ କରାଯାଇପାରେ । ବହୁ ରାଜା ଏବଂ ରାଜପୁତ୍ର ଏହି କନ୍ୟାର ପାଣିଗ୍ରହଣ କରିବାକୁ ମିଥିଳାକୁ ଆସିଛନ୍ତି ଏବଂ ନିଜ ବଳର ପରୀକ୍ଷା ଦେବାକୁ ଯାଇଛନ୍ତି । ମୁଁ ସେମାନଙ୍କ ପାଇଁ ଯେଉଁ ଗୋଟିଏ ପରୀକ୍ଷା ରଖିଛି, ସେଥିରେ କେହି ସଫଳ ହୋଇ

ନାହାନ୍ତି । ଏହି ପରୀକ୍ଷା ହେଉଚି, ଶିବଧନୁରେ ଯେ ଗୁଣ ଚଢ଼ାଇପାରିବ, ସେ ହିଁ ବଳର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମୋର କନ୍ୟାର ପାଣି ଗ୍ରହଣ କରିବ । ରାଜାମାନେ ବିଫଳ ହୋଇ କ୍ରୋଧରେ ଥରେ ଏକତ୍ର ମିଥିଳା ନଗରୀକୁ ଅବରୋଧ କରିଥିଲେ । କିନ୍ତୁ ଦେବତାମାନଙ୍କ ପ୍ରସାଦରୁ ମୋର ଚତୁରଙ୍ଗ ବଳ ସେମାନଙ୍କୁ ପରାସ୍ତ କରି ତଡ଼ି ଦେଇଥିଲେ । ଏବେ ରାମ ଲକ୍ଷ୍ମଣଙ୍କୁ ମୁଁ ସେ ଧନୁ ଦେଖାଇବି । ଯଦି ରାମ ଧନୁରେ ଗୁଣ ଚଢ଼ାଇପାରିବେ, ତେବେ ମୁଁ ମୋର ପରମକଲ୍ୟାଣୀୟା କନ୍ୟା ସୀତାଙ୍କୁ ତାଙ୍କ ହସ୍ତରେ ଅର୍ପଣ କରିବି ।

ଏହାପରେ ଜନକ ଗନ୍ଧମାଲ୍ୟ ଦ୍ୱାରା ପୂଜିତ ସେହି ବିଶାଳ ଧନୁକୁ ଆଣିବା ପାଇଁ ଅମାତ୍ୟମାନଙ୍କୁ ଆଦେଶ ଦେଲେ । ଆଠୋଟି ଚକବିଶିଷ୍ଟ ଏକ ବିଶାଳ ସିନ୍ଦୁକ ମଧ୍ୟରେ ଏହି ଧନୁକୁ ରଖାଯାଇଥିଲା ଏବଂ ପାଞ୍ଚହଜାର ହୃଷ୍ଟପୁଷ୍ଟ ଲୋକ କଷ୍ଟେମଷ୍ଟେ ସେହି ପେଡ଼ି ସହିତ ଧନୁକୁ ଟାଣି ଟାଣି ଆଣିଲେ । ଜନକ କହିଲେ, ଏହି ସେହି ଧନୁ ଯାହାକୁ ଦେବ, ଦାନବ, ଯକ୍ଷ, ରକ୍ଷ, ଗନ୍ଧର୍ବ, ଉରଗ କେହି ଏଥିରେ ଗୁଣ ଚଢ଼ାଇବା ଦୂରର କଥା, ଏହାକୁ ହଲାଇ ପାରି ନାହାନ୍ତି । ରାମଚନ୍ଦ୍ର ବିଶ୍ୱାମିତ୍ରଙ୍କର ଅନୁମତି ନେଇ ସେହି ଧନୁରେ ହାତଦେଇ କହିଲେ ବ୍ରହ୍ମନ୍, ମୁଁ ଏହି ଦିବ୍ୟଧନୁକୁ ଉଠାଇ ଗୁଣ ଚଢ଼ାଇବାକୁ ଚେଷ୍ଟା କରୁଚି । ଏହା କହି କ୍ରୀଡ଼ା କରିବାପରି ଧନୁକୁ ମଝିରୁ ଧରି ଉଠାଇ ଆଣି ହଜାର ହଜାର ଲୋକଙ୍କ ସମ୍ମୁଖରେ ସେଥିରେ ଗୁଣ ଚଢ଼ାଇବାପାଇଁ ବାହାରିଲେ । ଗୁଣ ଚଢ଼ାଇବାପାଇଁ ସେ ଧନୁକୁ ନୁଆଁଇ ଟାଣିବାବେଳେ ବଜ୍ରପାତ ପରି ଭୟଙ୍କର ଶବ୍ଦକରି ଧନୁ ଭାଙ୍ଗିଗଲା । ପର୍ବତ ବିଦୀର୍ଣ୍ଣ ହେଲେ ଯେପରି ଭୂମିକମ୍ପ ହୁଏ, ସେହିପରି ପୃଥିବୀ ଥରିଗଲା । ବିଶ୍ୱାମିତ୍ର, ଜନକ, ରାମ ଓ ଲକ୍ଷ୍ମଣଙ୍କୁ ଛାଡ଼ି ସେଇ ଶବ୍ଦରେ ଅନ୍ୟ ସମସ୍ତଙ୍କ ଚେତା ବୁଡ଼ିଗଲା । ଜନକ ହାତଯୋଡ଼ି ବିଶ୍ୱାମିତ୍ରଙ୍କୁ କହିଲେ– ମୁନିଶ୍ରେଷ୍ଠ, ମୋର ପ୍ରତିଜ୍ଞା ପୂର୍ଣ୍ଣ ହୋଇଚି । ପ୍ରାଣଠାରୁ ବଳି ଅଧିକ ମୋର କନ୍ୟା ସୀତାକୁ ମୁଁ ଦଶରଥଙ୍କ ପୁତ୍ର ରାମଙ୍କୁ ପ୍ରଦାନ କରିବି । ରାମଙ୍କୁ ସ୍ୱାମୀରୂପେ ପାଇ ମୋର କନ୍ୟା ମିଥିଳା ରାଜବଂଶର ଯଶକୀର୍ତ୍ତି ବଢ଼ାଇବ । ଆପଣ ଅନୁମତି ଦେଲେ ବର୍ତ୍ତମାନ ମୋର ମନ୍ତ୍ରୀମାନେ ଅଯୋଧ୍ୟା ଯାଇ ଦଶରଥଙ୍କୁ ନିମନ୍ତ୍ରଣ କରି ଆଣିବେ ।

## ୧୭ ॥ ସୀତା ବିବାହ

ବିଶ୍ୱାମିତ୍ରଙ୍କ ଅନୁମତିକ୍ରମେ ଜନକଙ୍କର ବାର୍ତ୍ତା ନେଇ ଦୂତମାନେ ଦ୍ରୁତଗାମୀ ବାହନମାନଙ୍କ ସହିତ ଅଯୋଧ୍ୟା ନଗରୀରେ ପ୍ରବେଶ କଲେ । ଦୂତମାନଙ୍କ ମୁହଁରୁ ସମସ୍ତ କଥା ଶୁଣି ଦଶରଥ ଆନନ୍ଦିତ ହେଲେ । ତାଙ୍କର ପୁତ୍ରମାନେ ବିଶ୍ୱାମିତ୍ରଙ୍କ ଦ୍ୱାରା ସୁରକ୍ଷିତ ହୋଇ ଅସାଧ୍ୟ କାର୍ଯ୍ୟ ସାଧନ କରିଛନ୍ତି ଏବଂ ରାମଚନ୍ଦ୍ର ବୀର୍ଯ୍ୟଶୁଳ୍କା ଜନକରାଜନନ୍ଦିନୀଙ୍କୁ ବୀରତ୍ୱ ଦ୍ୱାରା ଲାଭ କରିଛନ୍ତି ଜାଣି ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ତାର ପରଦିନ ପ୍ରଭାତରୁ ସେ ପ୍ରଚୁର ଧନରତ୍ନ ଓ ଚତୁରଙ୍ଗ ସେନା ସହିତ ମିଥିଳା ଯାତ୍ରା କଲେ ।

ତାଙ୍କ ସହିତ କୁଳଗୁରୁ ବଶିଷ୍ଠ, ବାମଦେବ ଓ ଜାବାଳି ପ୍ରଭୃତି ଋଷିମାନେ ମଧ୍ୟ ଯାତ୍ରା କଲେ । ମିଥିଳାରେ ପହଞ୍ଚିବାକୁ ସେମାନଙ୍କୁ ଚାରିଦିନ ଲାଗିଗଲା ।

ଜନକ ଅତିଶୟ ଆନନ୍ଦିତ ହୋଇ ଦଶରଥଙ୍କୁ ଅଭିବାଦନ ଜଣାଇ କହିଲେ, ମିଥିଳାକୁ ମୁଁ ଆପଣଙ୍କୁ ସ୍ୱାଗତ କରୁଛି । ଋଷିଶ୍ରେଷ୍ଠ ମହାତେଜା ବଶିଷ୍ଠ ମଧ୍ୟ ଆସିଛନ୍ତି, ସେଥିପାଇଁ ମୁଁ ନିଜକୁ ଆହୁରି ଭାଗ୍ୟବାନ ମନେକରୁଛି । ଭାଗ୍ୟବଳରେ ସମସ୍ତ ବିଘ୍ନ ଦୂର ହୋଇଛି ଏବଂ ପରାକ୍ରମୀ ରଘୁକୁଳ ସହିତ ମୋର ସମ୍ପର୍କ ସ୍ଥାପିତ ହେବାକୁ ଯାଉଛି । ରାଜା, କାଲି ପ୍ରଭାତରେ ଋଷିମାନଙ୍କ ଉପସ୍ଥିତିରେ ଯଜ୍ଞ ଶେଷ କରି ରାମ ଓ ସୀତାଙ୍କର ବିବାହ ସମ୍ପାଦନ କରନ୍ତୁ ।

ଶାସ୍ତ୍ରଜ୍ଞ ରାଜା ଦଶରଥ ଉତ୍ତର ଦେଲେ, ଦାନ ପ୍ରତିଗ୍ରହ ଦାତାର ଅଧୀନ । ଆପଣ ଧର୍ମଜ୍ଞ; କେତେବେଳେ କନ୍ୟାଦାନ କରିବେ ତାହା ନିଜେ ସ୍ଥିର କରିବେ । ଆପଣଙ୍କ ଇଚ୍ଛାନୁଯାୟୀ ଆମେ କାର୍ଯ୍ୟ କରିବୁ ।

ମୁନିମାନେ ପରସ୍ପର ସହିତ ମିଳିତ ହୋଇ ଆନନ୍ଦରେ ବାର୍ତ୍ତାଳାପ କରିବାକୁ ଲାଗିଲେ । ରାମ ଓ ଲକ୍ଷ୍ମଣ ବିଶ୍ୱାମିତ୍ରଙ୍କ ସହିତ ଯାଇ ଦଶରଥଙ୍କର ପାଦ ବନ୍ଦନା କଲେ । ବହୁଦିନ ପରେ ପୁଅମାନଙ୍କୁ ଦେଖି ଦଶରଥ ତୃପ୍ତ ହେଲେ ଓ ଜନକଙ୍କ ଦ୍ୱାରା ଆଦୃତ ହୋଇ ମିଥିଳାରେ ସୁଖରେ ରାତ୍ରିଯାପନ କଲେ । ପରଦିନ ପ୍ରଭାତରେ ବିବାହର ଆୟୋଜନ ହେଲା । ଜନକ ଏବଂ ତାଙ୍କର ଭ୍ରାତା କୁଶଧ୍ୱଜ ଦୁଇଟି ଆସନରେ ବସି ମନ୍ତ୍ରୀ ସୁଦାମନ୍‌ଙ୍କୁ ଆଦେଶ ଦେଲେ— ରାଜା ଦଶରଥ, ତାଙ୍କର ପୁତ୍ର ଓ ମନ୍ତ୍ରୀମାନଙ୍କୁ ଏଠାକୁ ନିମନ୍ତ୍ରଣ କର । ଦଶରଥ ସଦଳବଳ ଉପସ୍ଥିତ ହୋଇ କହିଲେ, ମହାରାଜ, ବଶିଷ୍ଠ ଆମର କୁଳଗୁରୁ । ସେ ଆମର ଇକ୍ଷ୍ୱାକୁ ବଂଶର ପରିଚୟ ଦେବାପାଇଁ ମୁଁ ନିବେଦନ କରୁଛି । କାରଣ, ବିବାହବେଳେ ଉଭୟ ପକ୍ଷର କୁଳ, ଗୋତ୍ର ଉଭୟଙ୍କୁ ବିଦିତ ହେବା ଆବଶ୍ୟକ ।

ବଶିଷ୍ଠ କହିଲେ, ଇକ୍ଷ୍ୱାକୁଙ୍କ ଠାରୁ ଇକ୍ଷ୍ୱାକୁ ବଂଶର ଉତ୍ପତ୍ତି । ଇକ୍ଷ୍ୱାକୁ ମନୁଙ୍କର ପୁତ୍ର ଓ ବିବସ୍ୱାନଙ୍କର ବଂଶଧର । ଇକ୍ଷ୍ୱାକୁଙ୍କର ଚାରିପୁରୁଷ ପରେ ରାଜା ପୃଥୁ ପ୍ରସିଦ୍ଧ ହେଲେ । ତାର ଚାରିପୁରୁଷ ପରେ ସଗର ଓ ସଗରଙ୍କର ତିନିପୁରୁଷ ପରେ ଭଗୀରଥ ଗଙ୍ଗାଙ୍କୁ ଆଣିଥିଲେ । ଭଗୀରଥଙ୍କ ପରେ ତାଙ୍କର ପୌତ୍ର ରଘୁ ଚକ୍ରବର୍ତ୍ତୀ ରାଜା ଥିଲେ । ତାଙ୍କର ନାମାନୁସାରେ ତାଙ୍କ ବଂଶର ଅନ୍ୟ ନାମ ହେଉଚି ରଘୁବଂଶ । ଏହାର ଛଅପୁରୁଷପରେ ଅମ୍ବରୀଷ, ନହୁଷ, ନଯାତି, ନାଭାଗ, ଅଜ ଓ ଦଶରଥ । ତେଣୁ ଏହି ବଂଶରୁ ଜାତ ଦଶରଥଙ୍କର ପୁତ୍ର ରାମ ଓ ଲକ୍ଷ୍ମଣଙ୍କ ପାଇଁ ମୁଁ ଆପଣଙ୍କର କନ୍ୟା ସୀତା ଏବଂ ଉର୍ମିଳାଙ୍କୁ ପ୍ରାର୍ଥନା କରୁଛି । ଆପଣ ଯୋଗ୍ୟ ପାତ୍ରଙ୍କୁ କନ୍ୟାଦାନ କରନ୍ତୁ ।

ଜନକ ତାଙ୍କର ବଂଶ ପରିଚୟ ଦେଇ କହିଲେ, ରାଜା ନିମିଙ୍କଠାରୁ ଆମର ବଂଶର ଆରମ୍ଭ । ନିମି ତ୍ରିଭୁବନରେ ବିଖ୍ୟାତ ଥିଲେ । ତାଙ୍କର ପୁତ୍ର ମିଥି, ଯାହାଙ୍କ ନାମରୁ ରାଜ୍ୟର ନାମ ମିଥିଳା ହୋଇଛି । ତାଙ୍କର କୋଡ଼ିଏପୁରୁଷ ପରେ ଆମେ ଦୁଇଭାଇ ଜନ୍ମହେଲୁ । ମୁଁ ଜ୍ୟେଷ୍ଠ । ମୋର ପିତା ହର୍ଷରୋମା ମୋତେ ରାଜ୍ୟଭାର ଅର୍ପଣ କରି ବନକୁ ଯାଇଥିଲେ । ସାନଭାଇର ଭାର ସେ ମୋତେ ଦେଇଥିଲେ । ଥରେ ସାଙ୍କାସ୍ୟାର

ରାଜା ସୁଧନ୍ୱା ମିଥିଳା ଅବରୋଧ କରି ବଳପୂର୍ବକ ଶିବଧନୁ ଓ ସୀତାଙ୍କୁ ନେବାପାଇଁ ଇଚ୍ଛାକଲେ । ସେ ଯୁଦ୍ଧରେ ପରାଜିତ ହୋଇ ନିହତ ହେବାପରେ ମୁଁ ମୋର ବୀରଭ୍ରାତା କୁଶଧ୍ୱଜଙ୍କୁ ସାଙ୍କାସ୍ୟା ନଗରୀର ରାଜାରୂପେ ଅଭିଷିକ୍ତ କରିଛି । ବର୍ତ୍ତମାନ ମୋର ଜ୍ୟେଷ୍ଠାକନ୍ୟା ସୀତାଙ୍କୁ ରାମଙ୍କ ସହିତ ବିବାହ ଦେବି । ବିବାହ ପୂର୍ବରୁ ଯେଉଁ ଗୋଦାନ ଓ ପିତୃକାର୍ଯ୍ୟ କରାଯାଏ, ତାହା ରାମ, ଲକ୍ଷ୍ମଣ ସମ୍ପନ୍ନ କରନ୍ତୁ । ଆଜିଠାରୁ ତୃତୀୟ ଦିନରେ ଉତ୍ତରା ଫାଲଗୁନୀ ନକ୍ଷତ୍ରରେ ବିବାହ ହେବ ।

ମହାମୁନି ବିଶ୍ୱାମିତ୍ର କହିଲେ, ଇକ୍ଷ୍ୱାକୁ ଓ ବିଦେହବଂଶ ଉଭୟ ପ୍ରସିଦ୍ଧ । ଏମାନଙ୍କ ସହିତ ଅନ୍ୟ କୌଣସି ବଂଶ ତୁଳନୀୟ ହୋଇପାରିବ ନାହିଁ । ତେଣୁ ରାମ, ଲକ୍ଷ୍ମଣଙ୍କ ସହିତ ସୀତା ଓ ଉର୍ମିଳାଙ୍କର ବିବାହ ଯଥାର୍ଥ ଓ ଧର୍ମଯୁକ୍ତ ହୋଇଛି । ତୁମର ସାନଭାଇ ରାଜା କୁଶଧ୍ୱଜ ଏଠାରେ ବସିଛନ୍ତି । ତାଙ୍କର ମଧ ରୂପଗୁଣରେ ଅନୁପମା ଦୁଇଟି କନ୍ୟା ଅଛନ୍ତି । ଭରତ ଓ ଶତ୍ରୁଘ୍ନଙ୍କ ସହିତ ଏହି ଦୁଇ କନ୍ୟାଙ୍କୁ ବିବାହ ଦେବାପାଇଁ ମୁଁ ତୁମକୁ ପ୍ରସ୍ତାବ ଦେଉଛି_। ବଶିଷ୍ଠ ମଧ ଏହାକୁ ସମର୍ଥନ କଲେ । ଜନକ କହିଲେ, ମୁନିଶ୍ରେଷ୍ଠ ବିଶ୍ୱାମିତ୍ର ଓ ବଶିଷ୍ଠ ଯେଉଁ ପ୍ରସ୍ତାବ ଦେଲେ, ମୁଁ ଏବଂ ମୋର ଭାଇ ତାହାକୁ ଗ୍ରହଣ କରୁଛୁ । ଏହା କାର୍ଯ୍ୟକାରୀ ହୋଇ ଦୁଇ ରାଜବଂଶ ମଧ୍ୟରେ ସମ୍ପର୍କ ଅତୁଟ ରହୁ । ଦଶରଥ ପ୍ରତି ପୁତ୍ରଙ୍କ ପାଇଁ ଲକ୍ଷେ ସଂଖ୍ୟକ ସବତ୍ସା ଧେନୁ ଦାନ କଲେ ।

ବିବାହଦିନ ରାମ ଓ ତାଙ୍କର ତିନିଭାଇ, ଦଶରଥ ଓ ଋଷିଗଣଙ୍କ ସହିତ ଯଜ୍ଞସ୍ଥଳରେ ଉପସ୍ଥିତ ହେଲେ । ଜନକ ଓ କୁଶଧ୍ୱଜଙ୍କର କନ୍ୟାମାନେ ମଙ୍ଗଳାଚରଣ ପରେ ବେଦୀମୂଳରେ ମଧ ଉପସ୍ଥିତ ଥିଲେ । ଦଶରଥଙ୍କର କୁଳଗୁରୁ ବଶିଷ୍ଠ ବେଦୀ ଉପରେ ଦୂର୍ବା ଓ କୁଶ ଆଦି ବିଛାଇ ହୋମ ଆରମ୍ଭ କଲେ ।

ସର୍ବାଳଙ୍କାରଯୁକ୍ତା ସୀତାଙ୍କୁ ଅଗ୍ନିର ସମ୍ମୁଖରେ ରାମଙ୍କ ଅଭିମୁଖରେ ବସାଇ ରାଜା ଜନକ କହିଲେ,ହେ କୌଶଲ୍ୟାନନ୍ଦନ ରାମ, ମୋର କନ୍ୟା ସୀତା ତୁମର ସହଧର୍ମିଣୀ ହେଲା । ତୁମେ ଏହାର ହାତରେ ହାତରଖି ଏହାକୁ ଗ୍ରହଣ କର । ଏହି ପତିବ୍ରତା ସୀତା ସବୁବେଳେ ଛାୟାପରି ତୁମର ଅନୁଗାମିନୀ ହେବ ।

**ଅବ୍ରଵୀଜ୍ଜନକୋରାଜା କୌଶଲ୍ୟାନନ୍ଦବର୍ଦ୍ଧନମ୍**
**ଇୟଂ ସୀତା ମମ ସୁତା ସହଧର୍ମଚରୀ ତବ ।**
**ପ୍ରତୀଚ୍ଛ ଚୈନାଂ ଭଦ୍ରଂ ତେ ପାଣିଂ ଗୃହୀଷ୍ୱ ପାଣିନା**
**ପତିବ୍ରତା ମହାଭାଗା ଛାୟେବାନୁଗତା ସଦା ॥**

ଏହା କହି ଜନକ ମନ୍ତ୍ରପୂତ ଜଳ ନିକ୍ଷେପ କଲେ । ସ୍ୱର୍ଗରୁ ପୁଷ୍ପବୃଷ୍ଟି ହେଲା । ଦେବତା ଋଷିମାନେ ସାଧୁ ସାଧୁ ବୋଲି କହିବାକୁ ଲାଗିଲେ । ଏହାପରେ ଲକ୍ଷ୍ମଣଙ୍କ ସହିତ ଉର୍ମିଳାଙ୍କର, ଭରତଙ୍କ ସହିତ ମାଣ୍ଡବୀ ଓ ଶତ୍ରୁଘ୍ନଙ୍କ ସହିତ ରାଜକନ୍ୟା ଶ୍ରୁତକୀର୍ତ୍ତିଙ୍କର ବିବାହ ହେଲା । ଦଶରଥଙ୍କର ପୁତ୍ରମାନେ ସପତ୍ନୀକ ଅଗ୍ନିକୁ, ବେଦୀକୁ, ରାଜା ଓ ଋଷିମାନଙ୍କୁ ପ୍ରଦକ୍ଷିଣ କରି ଶାସ୍ତ୍ରୋକ୍ତ ବିଧାନରେ ବିବାହକାର୍ଯ୍ୟ ଶେଷ କଲେ । ଗୀତ, ବାଦ୍ୟ ଓ ନୃତ୍ୟରେ ମିଥିଳାନଗରୀ ଉତ୍ସବ- ମୁଖରିତ ହୋଇ ଉଠିଲା ।

# ୧୮ ॥ ପରଶୁରାମଙ୍କର ତେଜୋହରଣ

ପରଦିନ ପ୍ରଭାତରେ ବିଶ୍ୱାମିତ୍ର ରାଜକୁମାରମାନଙ୍କୁ ଆଶୀର୍ବାଦ କରି ଏବଂ ରାଜା ଦଶରଥ ଓ ଜନକଙ୍କଠାରୁ ବିଦାୟନେଇ ହିମାଳୟ ଯାତ୍ରାକଲେ । ବିଦେହରାଜ ଜନକ ବହୁସଂଖ୍ୟାରେ ଗାଭୀ, ଉତ୍କୃଷ୍ଟ କମ୍ବଳ ଓ ପଟ୍ଟବସ୍ତ୍ର ଏବଂ ଅନ୍ୟାନ୍ୟ ବସ୍ତ୍ର, ହସ୍ତୀ, ଅଶ୍ୱ, ରଥ, ପଦାତି ପ୍ରଭୃତି ଚତୁରଙ୍ଗ ବଳ, ଦାସ ଦାସୀ, ସୁବର୍ଣ୍ଣ ମୁକ୍ତାଦି ବହୁ ରତ୍ନ ସ୍ତ୍ରୀଧନ ସ୍ୱରୂପ ଦାନକଲେ । ସେ ଦଶରଥଙ୍କ ସହିତ କିଛିବାଟ ଯାଇ ତାଙ୍କୁ ବାଟେଇ ଦେବା ପରେ ତାଙ୍କଠାରୁ ବିଦାୟନେଇ ଫେରିଆସିଲେ ।

ଦଶରଥ ଚତୁରଙ୍ଗବଳ ଓ ଋଷିମାନଙ୍କ ସହିତ ତାଙ୍କର ପୁତ୍ର ଓ ପୁତ୍ରବଧୂମାନଙ୍କୁ ସାଙ୍ଗରେ ଧରି ଯାଉଥିବା ବେଳେ ପକ୍ଷୀମାନେ ଘୋର କଳରବ କରି ଆକାଶରେ ଉଡ଼ିବାକୁ ଲାଗିଲେ ଓ ମୃଗମାନେ ପ୍ରଦକ୍ଷିଣ କରି ଚାଲିଗଲେ । ଦଶରଥ ଏହାର କାରଣ ପଚାରିବାରୁ ବଶିଷ୍ଠ କହିଲେ, ପକ୍ଷୀମାନଙ୍କର ଏପରି ବିକଟ କଳରବକରି ଉଡ଼ିବା ଦ୍ୱାରା ଅମଙ୍ଗଳର ସୂଚନା ମିଳୁଛି । ବିପଦ ଉପସ୍ଥିତ ବୋଲି ସେମାନେ ଜଣାଇ ଦେଉଛନ୍ତି । ମୃଗମାନେ ପ୍ରଦକ୍ଷିଣ କରି ଯିବା ଦ୍ୱାରା ଏହି ବିପଦ ଦୂର ହୋଇ ଶାନ୍ତି ଆସିଯିବ ବୋଲି ଜଣାଯାଉଛି । ତେଣୁ ରାଜା ଆଉ ତୁମର ଉଦ୍‌ବିଗ୍ନ ହେବା ଉଚିତ ନୁହେଁ ।

ଏହି ସମୟରେ ପ୍ରବଳ ବେଗରେ ବାୟୁ ବହିବାକୁ ଲାଗିଲା । ମେଦିନୀ କମ୍ପିତ ହେଲା । ମହାଦ୍ରୁମମାନେ ଟଳିପଡ଼ିଲେ । ଅନ୍ଧାରରେ ସୂର୍ଯ୍ୟମଣ୍ଡଳ ଅଦୃଶ୍ୟ ହୋଇଗଲା । ପ୍ରବଳ ଧୂଳି ଉଡ଼ିବା ଫଳରେ ସୈନ୍ୟବାହିନୀ କିଂକର୍ତ୍ତବ୍ୟବିମୂଢ଼ ହୋଇ ରହିଗଲେ । କେତେକ ମଧ ସଂଜ୍ଞାହୀନ ହୋଇପଡ଼ିଲେ । ଏହି ସମୟରେ ଦଶରଥ ଦେଖିଲେ, କ୍ଷତ୍ରିୟକୁଳନାଶନ ଜଟାମଣ୍ଡଳଧାରୀ ଭୀମମୂର୍ତ୍ତି ପରଶୁରାମ ଆସୁଛନ୍ତି । ତାଙ୍କର ସ୍କନ୍ଧରେ ପରଶୁ ଏବଂ ହସ୍ତରେ ବିଦ୍ୟୁତ୍‌ପରି ତେଜୀୟାନ୍ ଧନୁଶର । କୈଳାସପର୍ବତ ପରି ଦୁର୍ଦ୍ଧର୍ଷ ଓ କାଳାନଳ ପରି ଦୁଃସହ ସେହି ଭୃଗୁପୁତ୍ରଙ୍କୁ ଚାହିଁହେଉ ନାହିଁ । ବଶିଷ୍ଠ ପ୍ରଭୃତି ମୁନିମାନେ ଚିନ୍ତାକଲେ ଏ କ'ଣ ପୁଣି କ୍ଷତ୍ରିୟମାନଙ୍କୁ ବଧ କରିବାକୁ ଆସିଛନ୍ତି ? ପୃଥିବୀକୁ ବାରମ୍ବାର ନିକ୍ଷତ୍ରିୟ କରି ପୁଣି କ'ଣ ତାଙ୍କର କ୍ରୋଧ ଶାନ୍ତ ହୋଇ ନାହିଁ ? ଋଷିମାନେ ଭାର୍ଗବଙ୍କୁ ଅର୍ଘ୍ୟଦେଇ ତାଙ୍କୁ ରାମ ରାମ ବୋଲି କହି ମଧୁର ବାକ୍ୟରେ ପୂଜାକଲେ ।

ପରଶୁରାମ ଋଷିମାନଙ୍କର ପୂଜା ଗ୍ରହଣ କରି ରାମଙ୍କ ଆଡ଼କୁ ଚାହିଁ କହିଲେ, ଦଶରଥନନ୍ଦନ, ତୁମେ ଜନକଙ୍କର ଶିବଧନୁ ଭଙ୍ଗ କରିଥିବା ମୁଁ ଶୁଣିଛି । ତୁମେ ଏକ ଅଦ୍‌ଭୁତ କାର୍ଯ୍ୟ ସାଧନ କରିଛ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ମୁଁ ଆହୁରି ଏକ ଦିବ୍ୟଧନୁ ଧରି ଏଠାକୁ ଆସିଛି । ତୁମେ ଏହି ପ୍ରକାଣ୍ଡ ଧନୁରେ ଗୁଣ ଲଗାଇ ଶର ଦ୍ୱାରା ଯଦି ଆକର୍ଷଣ କରିପାରିବ, ତା' ହେଲେ ତୁମର ପ୍ରକୃତ ବଳ ଅଛି ବୋଲି ଜାଣିବି । ତା'ପରେ ତୁମର ବୀରତ୍ୱର ପୁରସ୍କାରସ୍ୱରୂପ ତୁମ ସହିତ ମୁଁ ଦ୍ୱନ୍ଦ୍ୱ ଯୁଦ୍ଧ କରିବି ।

ରାଜା ଦଶରଥ ବିଷଣ୍ଣ ହୋଇପଡ଼ିଲେ । ଅନୁନୟ ବିନୟ କରି କୃତାଞ୍ଜଳିପୁଟରେ କହିଲେ – ଭାର୍ଗବ, ଆପଣ ବ୍ରାହ୍ମଣ । ସଂସାରରେ ବହୁ ଯଶ ଅର୍ଜନ କରିଛନ୍ତି ।

କ୍ଷତ୍ରିୟମାନଙ୍କ ପ୍ରତି ଆପଣଙ୍କର କ୍ରୋଧଭାବ ଶାନ୍ତ ହୋଇଥିବା ମୁଁ ଜାଣେ । କାରଣ ଇନ୍ଦ୍ରଙ୍କ ନିକଟରେ ପ୍ରତିଜ୍ଞା କରି ଆପଣ ଶସ୍ତ୍ର ପରିତ୍ୟାଗ କରିଛନ୍ତି । ସମଗ୍ର ପୃଥିବୀକୁ ଦାନ କରିସାରିବା ପରେ ଆପଣ ମହେନ୍ଦ୍ର ପର୍ବତରେ ତପସ୍ୟା କରୁଛନ୍ତି । ଆପଣ ମୋର ପୁତ୍ର ରାମକୁ ନିହତ କଲେ, ଆମେ କେହି ଜୀବନ ଧରି ରହିପାରିବୁ ନାହିଁ ।

ପରଶୁରାମ ଦଶରଥଙ୍କର ବାକ୍ୟକୁ ଉପେକ୍ଷାକରି ରାମଚନ୍ଦ୍ରଙ୍କୁ ଲକ୍ଷ୍ୟକରି କହିଲେ, ରାମ, ଶିବଧନୁ ପରି ମୋର ଧନୁ ମଧ୍ୟ ମୁଖ୍ୟଧନୁ ଭାବରେ ସଂସାରରେ ବିଖ୍ୟାତ । ଦେବତାମାନେ ବିଶ୍ୱକର୍ମାଙ୍କଦ୍ୱାରା ଦୁଇଟି ଧନୁ ନିର୍ମାଣ କରାଇ ଗୋଟିଏ ଶିବଙ୍କୁ ଓ ଅନ୍ୟଟି ବିଷ୍ଣୁଙ୍କୁ ଦେଇଥିଲେ । ଏକ ସମୟରେ ଶିବ ଓ ବିଷ୍ଣୁଙ୍କ ମଧ୍ୟରେ ବିରୋଧ ଜାତ ହେବାରୁ ବିଷ୍ଣୁଙ୍କ ହୁଙ୍କାରରେ ଶିବଧନୁର ତେଜୋହାନି ଘଟିଥିଲା । ବିଷ୍ଣୁ ଏହି ଧନୁକୁ ଋଚିକଙ୍କୁ ଦେଇଥିଲେ । ଋଚିକ ମୋର ପିତା ଜମଦଗ୍ନିଙ୍କୁ ତାହା ଦାନ କରିଥିଲେ । ମୋର ପିତା ପରମ ତପସ୍ୱୀ ଭାବରେ ଅସ୍ତ୍ରତ୍ୟାଗ କରିଥିଲେ । ତାର ସୁଯୋଗ ନେଇ ବଳଗର୍ବରେ ଉନ୍ମତ୍ତ କାର୍ତ୍ତବୀର୍ଯ୍ୟାର୍ଜୁନ ତାଙ୍କୁ ହତ୍ୟା କଲେ । ସଂବାଦରେ ବ୍ୟଥିତ ହୋଇ ମୁଁ ପ୍ରତିଜ୍ଞା କଲି, ପିତୃହନ୍ତାକୁ ନିହତ କରି ପୃଥିବୀକୁ ନିକ୍ଷତ୍ରିୟ କରିବି । ସେଥିପାଇଁ ପୃଥିବୀ ମୋର ହସ୍ତଗତ ହେଲା । କିନ୍ତୁ ପୁଣ୍ୟାତ୍ମା କଶ୍ୟପ ଋଷିଙ୍କୁ ତାହା ଦାନ କରି ମୁଁ ମହେନ୍ଦ୍ର ପର୍ବତରେ ବର୍ତ୍ତମାନ ତପସ୍ୟା କରୁଛି । ତୁମେ ଶିବଧନୁ ଭଙ୍ଗ କରିଥିବାର ସଂବାଦପାଇ ତୁମ ବୀରତ୍ୱର ପରୀକ୍ଷା କରିବା ପାଇଁ ମୁଁ ଏଠାକୁ ଆସିଛି । ବର୍ତ୍ତମାନ ତୁମେ ଏହି ବୈଷ୍ଣବଧନୁକୁ ଗ୍ରହଣ କରି ତୁମର ବୀରତ୍ୱ ପ୍ରଦର୍ଶନ କର ।

ପିତା ଦଶରଥ ଉପସ୍ଥିତ ଥିବାରୁ ରାମଚନ୍ଦ୍ର କ୍ରୋଧ ସଂବରଣ କରି ଧୀର ସ୍ୱରରେ କହିଲେ– ଭାର୍ଗବ, ଆପଣଙ୍କର କୀର୍ତ୍ତିଗାଥା ମୁଁ ଶୁଣିଛି । ଆପଣ ମଧ୍ୟ ପିତୃଋଣ ପରିଶୋଧ କରିଛନ୍ତି । କିନ୍ତୁ ଆପଣ ଆମର ଶକ୍ତି ଜାଣି ନାହାନ୍ତି । ତେଣୁ ଏପରି ଅବଜ୍ଞାପୂର୍ବକ କଥାବାର୍ତ୍ତା କରୁଛନ୍ତି । ବର୍ତ୍ତମାନ ମୋର ପରାକ୍ରମ ଦେଖନ୍ତୁ ।

ଏହା କହି ରାମ ପରଶୁରାମଙ୍କର ହାତରୁ ଧନୁଟିକୁ ଗ୍ରହଣ କରି ଅନାୟାସରେ ସେଥିରେ ଗୁଣ ଚଢ଼ାଇ ଶର ସଂଯୋଗ କଲେ – ମାତ୍ର ଶର ନିକ୍ଷେପ ନ କରି କହିଲେ – ପରଶୁରାମ, ଆପଣ ଜମଦଗ୍ନିଙ୍କର ପୁତ୍ର, ବିଶ୍ୱାମିତ୍ରଙ୍କର ଭାଗିନେୟ । ତେଣୁ ଆପଣଙ୍କର ପ୍ରାଣନାଶ କରିବାକୁ ମୁଁ ଚାହେ ନାହିଁ । ମାତ୍ର ଏହି ବୈଷ୍ଣବ ଶରର ପ୍ରୟୋଗ ବ୍ୟର୍ଥ ହେବାର ନୁହେଁ । ହୁଏତ ଆପଣଙ୍କର ଗତିଶୀଳତା ଅଥବା ତପୋବଳରେ ଅର୍ଜିତ ଆପଣଙ୍କର ପୁଣ୍ୟ ଏହି ଦୁଇଟିରୁ ଗୋଟାଏ ମୋତେ ହରଣ କରିବାକୁ ହେବ । ଦେବତା, ଗନ୍ଧର୍ବ, ଯକ୍ଷ, ରକ୍ଷ, ସିଦ୍ଧ, ଚାରଣ ଓ ନାଗମାନେ ସେହି ଅଦ୍‌ଭୁତ ଦୃଶ୍ୟ ଦେଖିବାକୁ ଲାଗିଲେ । ଧନୁର୍ଦ୍ଧାରୀ ରାମଚନ୍ଦ୍ର ସମସ୍ତଙ୍କ ଉପସ୍ଥିତିରେ ପରଶୁରାମଙ୍କର ତେଜ ହରଣ କଲେ । ପରଶୁରାମ ନିର୍ବୀର୍ଯ୍ୟ ହୋଇ ରାମଙ୍କ ଆଡ଼କୁ ଚାହିଁରହିଲେ । ତାପରେ ଧୀରେ ଧୀରେ କହିଲେ, ରାଘବ, ମୋର ଗତିଶୀଳତାକୁ ତୁମେ ନାଶ କର ନାହିଁ । କାରଣ ସନ୍ଧ୍ୟା ପୂର୍ବରୁ ମୋତେ ମହେନ୍ଦ୍ରଗିରି ଫେରିଯିବାକୁ ହେବ । ମୁଁ ତପୋବଳରେ ଯେଉଁ ଅତୁଳନୀୟ ପୁଣ୍ୟଲାଭ କରିଛି, ତୁମେ ଏହି ଶରଦ୍ୱାରା ତାକୁ ସଂହାର କର । ଏହି ଧନୁକୁ ତୁମେ ଯେପରି

ଅନାୟାସରେ ଧାରଣ କରି ଶର ସଂଯୋଗ କଲ, ସେଥିରେ ମୋର ମନେହେଉଛି ତୁମେ ସ୍ୱୟଂ ମଧୁସୂଦନ । ତୁମ ନିକଟରେ ମୁଁ ପରାସ୍ତ ହେଲି, ଏଥିରେ ମୁଁ ଆଦୌ ଲଜ୍ଜିତ ନୁହେଁ । ବର୍ତ୍ତମାନ ମୁଁ ମନୋବେଗରେ ମହେନ୍ଦ୍ର ପର୍ବତକୁ ଫେରିଯାଇ ସେଠାରେ ତପସ୍ୟା କରିବି ।

ଏହାପରେ ରାଘବ ରାମଚନ୍ଦ୍ର ଶରମୋଚନ କଲେ । ଉପସ୍ଥିତ ଦେବତା ଓ ଋଷିମାନେ ତାଙ୍କର ପ୍ରଶଂସା କରିବାକୁ ଲାଗିଲେ । ଭକ୍ତିପୂର୍ବକ ରାମଙ୍କୁ ପ୍ରଦକ୍ଷିଣ କରି ପରଶୁରାମ ଚାଲିଯିବାପରେ ରାମ ସେହି ବୈଷ୍ଣବଧନୁକୁ ବରୁଣଙ୍କୁ ଦାନକଲେ ।

ଦଶରଥ ସଦଳବଳ ଅଯୋଧ୍ୟା ଫେରିଆସିଲେ । କୌଶଲ୍ୟା, ସୁମିତ୍ରା, କୈକେୟୀ ଏବଂ ଅନ୍ୟ ପୁରନାରୀଗଣ ନବବଧୂମାନଙ୍କୁ ବରଣ କରିନେଲେ । ମଙ୍ଗଳାଚରଣ ଓ ହୋମ ଆଦି ପରେ ସୀତା, ଊର୍ମିଳା, ମାଣ୍ଡବୀ ଓ ଶ୍ରୁତକୀର୍ତ୍ତି ପବିତ୍ରବସ୍ତ୍ର ପରିହିତ ହୋଇ ଅନ୍ତଃପୁରରେ ଗୃହଦେବତାଙ୍କର ପୂଜାକଲେ ଏବଂ ଗୁରୁଜନମାନଙ୍କୁ ବନ୍ଦନା କଲେ ।

ସମଗ୍ର ଅଯୋଧ୍ୟା ଆନନ୍ଦମୁଖରିତ ହୋଇଉଠିଲା । ନଗରବାସୀମାନେ ରାମଙ୍କର ବୀରତ୍ୱର ଗାଥା ଓ ରାଜକୁମାରମାନଙ୍କର ବିବାହ ସଂବାଦରେ ଆଗରୁ ଉଦ୍‌ଗ୍ରୀବ ଭାବରେ ସେମାନଙ୍କୁ ଦେଖିବା ପାଇଁ ଅପେକ୍ଷା କରି ରହିଥିଲେ । ଏବେ ସେମାନେ ଅଯୋଧ୍ୟା ଫେରି ଆସିବାରୁ ପୁଷ୍ପ ଓ ପତାକାରେ ଅଯୋଧ୍ୟା ଉତ୍ସବମୟ ହୋଇ ଉଠିଲା ।

ରାଜକନ୍ୟାମାନେ ଅତି ଆନନ୍ଦରେ ନିଜର ସ୍ୱାମୀମାନଙ୍କ ସହିତ ନିଭୃତରେ ବାସକଲେ । ରାଜକୁମାରମାନଙ୍କର କିଛି ଅଭାବ ନ ଥିଲା । ରୂପବତୀ ଓ ଗୁଣବତୀ ଭାର୍ଯ୍ୟା, ଅସ୍ତ୍ରଶସ୍ତ୍ର ଓ ଧନ ଓ ପରିଜନ ସବୁ କିଛି ଲାଭ କରି ସେମାନେ ରାଜକାର୍ଯ୍ୟରେ ବିଶେଷତଃ ପିତୃସେବାରେ ବ୍ରତୀ ହେଲେ ।

ରାମ ପିତାଙ୍କର ଆଦେଶ ପାଳନ କରି ନଗରବାସୀଙ୍କର ଯାହା ପ୍ରିୟ ଏବଂ ମାତୃଗଣ ଓ ଗୁରୁଜନମାନଙ୍କର ସନ୍ତୋଷବିଧାନ ପାଇଁ ଯାହା ଆବଶ୍ୟକ, ସେହିସବୁ କାର୍ଯ୍ୟ କରିବାକୁ ଲାଗିଲେ ଓ ଅଯୋଧ୍ୟାବାସୀଙ୍କର ଅଧିକରୁ ଅଧିକ ପ୍ରିୟ ହେଲେ ।

ରାମ ସୀତାଙ୍କ ସହିତ ବହୁ ଋତୁ ଆନନ୍ଦରେ କଟାଇଲେ । ସେ ଥିଲେ ସୀତାତଦ୍‌ଗତଚିତ୍ତ । ସୀତାଙ୍କୁ ସେ ନିଜର ହୃଦୟ ସମର୍ପଣ କରିଦେଇଥିଲେ । ତାଙ୍କର ଦାମ୍ପତ୍ୟପ୍ରେମ ଅନୁପମ ଥିଲା । ଜନକ ତାଙ୍କର ପରମ ଆଦରଣୀୟା କନ୍ୟାକୁ ଯେ ରାମଙ୍କୁ ଅର୍ପଣ କରିଥିଲେ, କେବଳ ସେଥିପାଇଁ ନୁହେଁ, ସୀତାଙ୍କର ଅନନ୍ୟ ରୂପଗୁଣ ରାମଙ୍କୁ ମୋହିତ କରିଥିଲା । ସୀତାଙ୍କର ହୃଦୟରେ ରାମଙ୍କ ପ୍ରତି ଦ୍ୱିଗୁଣ ପ୍ରୀତି ଜାଗରିତ ହେଲା । ସୀତାଙ୍କର ହୃଦୟନିହିତ ଅଭିପ୍ରାୟ ରାମ ନିଜ ହୃଦୟରେ ସ୍ପଷ୍ଟ ବୁଝିପାରୁଥିଲେ ଏବଂ ଦେବକନ୍ୟା ପରି ଲକ୍ଷ୍ମୀସ୍ୱରୂପିଣୀ ସୀତା ରାମଙ୍କ ହୃଦୟର କଥା ଆହୁରି ଭଲ ଭାବରେ ବୁଝିପାରୁଥିଲେ । ଏହିପରି ପରସ୍ପର ପ୍ରେମରେ ରାମ ଓ ସୀତା ଦିନୁ ଦିନ ଅଧିକ ଆବଦ୍ଧ ହେବାରେ ଲାଗିଲେ ।

## ୧୯ ।। ଦଶରଥଙ୍କ ସଙ୍କଳ୍ପ : ରାମ ରାଜା ହେବେ

କିଛି କାଳ ଗଲା ପରେ ଦଶରଥଙ୍କ ଅନୁମତି ନେଇ ଭରତ ଓ ଶତ୍ରୁଘ୍ନ ମାମୁଘରେ ଯାଇ ରହିଲେ । ରାଜା ଅଶ୍ୱପତି ନାତିମାନଙ୍କୁ ପୁତ୍ରସ୍ନେହରେ ଆଦର ଯତ୍ନ କରିବାକୁ ଲାଗିଲେ । କିନ୍ତୁ ସମସ୍ତ ସୁଖରେ ରହି ମଧ୍ୟ ବୃଦ୍ଧ ପିତା ଦଶରଥଙ୍କ କଥା ସେମାନଙ୍କର ମନେ ପଡୁଥିଲା । ଦଶରଥ ମଧ୍ୟ ସେମାନଙ୍କୁ ବହୁତ ମନେ ପକାଉଥିଲେ । ଚାରୋଟିଯାକ ପୁଅ ରାଜାଙ୍କର ଅତି ପ୍ରିୟ ଥିଲେ । ସେମାନଙ୍କୁ ସେ ତାଙ୍କ ଦେହର 'ଚାରୋଟି ବାହୁ ବୋଲି ମନେ କରୁଥିଲେ । କିନ୍ତୁ ରାମ ଥିଲେ ସମସ୍ତଙ୍କ ଅପେକ୍ଷା ଅଧିକ ପ୍ରିୟ ।

ରାମ ସନାତନ ବିଷ୍ଣୁ, ଯେ କି ଦେବତାମାନଙ୍କ ଅନୁରୋଧରେ ବଳଗର୍ବିତ ରାବଣର ନିଧନ ପାଇଁ ନରଲୋକରେ ଜନ୍ମ ଗ୍ରହଣ କରିଥିଲେ । ସେ ଅନୁପମ ଗୁଣାବଳୀର ଆଧାର ଥିଲେ । ସେ ରୂପବାନ୍, ବୀର୍ଯ୍ୟବାନ୍, ଅସୂୟାଶୂନ୍ୟ ପ୍ରଶାନ୍ତଚିତ୍ତ ଓ ମଧୁରଭାଷୀ ଥିଲେ । ତାଙ୍କୁ କେହି କଠୋର କଥା କହିଲେ, ସେ ଉତ୍ତର ଦେଉ ନ ଥିଲେ । କେହି ଯଦି ସାମାନ୍ୟ ଉପକାର କରେ, ସେ ତାହା ଆନନ୍ଦରେ ମନେ ରଖୁଥିଲେ । ମାତ୍ର ଶହେ ଅପକାର କଲେ ସେ ନିଜର ଉଦାରତାରେ ତାହା ଭୁଲି ଯାଉଥିଲେ । ସେ ଧର୍ମଜ୍ଞ, ସଂଯତ, କୁଳାଚାର ଓ କ୍ଷତ୍ରିୟ ଧର୍ମ ପ୍ରତି ଅନୁରକ୍ତ । ନୀରୋଗ, ତରୁଣ, ସୁବକ୍ତା, ଦେଶକାଳଜ୍ଞ ଓ ଅତ୍ୟନ୍ତ ନମ୍ର ଥିଲେ । ପ୍ରଜାମାନଙ୍କୁ ସେ ଅତିଶୟ ଭଲ ପାଉଥିଲେ । ପ୍ରଜାମାନେ ମଧ୍ୟ ପ୍ରାଣପରି ତାଙ୍କୁ ଶ୍ରଦ୍ଧା କରୁଥିଲେ । ଦେଶ କାଳ ପାତ୍ର ଜାଣି ସେ କାର୍ଯ୍ୟ କରୁଥିଲେ । ଅର୍ଥଶାସ୍ତ୍ର, ଧର୍ମଶାସ୍ତ୍ର ଓ ସମରବିଦ୍ୟାରେ ସେ ପାରଙ୍ଗମ ଥିଲେ । ତାଙ୍କର ସମସ୍ତ ଦେବଦୁର୍ଲ୍ଲଭ ଗୁଣାବଳୀ ପାଇଁ ମେଦିନୀ ଯେପରି ତାଙ୍କୁ ପତି ରୂପେ ପାଇବା ପାଇଁ ଅପେକ୍ଷା କରି ରହିଥିଲା ।

ପୁତ୍ରର ପ୍ରଶଂସା ଶୁଣି କୌଶଲ୍ୟାଙ୍କର ଛାତି ଗର୍ବରେ ଫୁଲିଉଠୁଥିଲା । ସେ ଇନ୍ଦ୍ରଙ୍କର ମାତା ଅଦିତିଙ୍କ ପରି ପ୍ରଶଂସିତ ହେଉଥିଲେ ।

ପୁତ୍ରର ଅନୁପମ ଗୁଣାବଳୀରେ ମୁଗ୍ଧ ହୋଇ ରାଜା ଦାଶରଥ ବଞ୍ଚି ଥାଉଁ ଥାଉଁ ତାଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କରିବାପାଇଁ ଚିନ୍ତାକଲେ । ନିଜର ବାର୍ଦ୍ଧକ୍ୟ ଅବସ୍ଥା, ଆକାଶ, ଅନ୍ତରୀକ୍ଷ ଓ ଭୂତଳରେ ବହୁ ଅଶୁଭ ଲକ୍ଷଣ ଦେଖି ସେ ଶୀଘ୍ର ରାମଙ୍କୁ ରାଜପଦରେ ପ୍ରତିଷ୍ଠିତ କରିବାପାଇଁ ଚିନ୍ତାକଲେ । ମନ୍ତ୍ରୀମାନଙ୍କୁ ଡାକି ସେ ପ୍ରସ୍ତାବ ଦେଲେ, ଶୀଘ୍ର ରାମଙ୍କର ଅଭିଷେକ ପାଇଁ ବ୍ୟବସ୍ଥା କର ।

ଏଥିପାଇଁ ପ୍ରଥମେ ଏକ ବିଶାଳ ସଭାର ଆୟୋଜନ କରାଗଲା । ରାଜ୍ୟର ବିଭିନ୍ନ ନଗର ଓ ଜନପଦରୁ ପ୍ରଧାନ ପ୍ରଧାନ ବ୍ୟକ୍ତି ନିମନ୍ତ୍ରିତ ହୋଇ ଏହି ସଭାରେ ଯୋଗ ଦେଲେ । ଜନକ ଓ ଅଶ୍ୱପତିଙ୍କୁ ସେହି ସଭାକୁ ନ ଡାକି ପରେ ଖବର ଦେବେ ବୋଲି ସେ ସ୍ଥିର କଲେ । ପାତ୍ର ମନ୍ତ୍ରୀ, ଋଷି, ବ୍ରାହ୍ମଣ, ସାମନ୍ତ ରାଜା, ନଗର ଓ ଗ୍ରାମବାସୀମାନଙ୍କର ସମାବେଶରେ ଅନୁଷ୍ଠିତ ଏହି ସଭାରେ ରାଜା ଦଶରଥ ଜଳଦଗମ୍ଭୀର ସ୍ୱରରେ କହିଲେ, ଆପଣମାନେ ଜାଣନ୍ତି ମୋର ପୂର୍ବପୁରୁଷ ଇକ୍ଷ୍ୱାକୁବଂଶୀୟ ରାଜାମାନେ ଏହି ବିଶାଳ ରାଜ୍ୟକୁ ପୁତ୍ରପରି ପାଳନ କରି ଆସିଛନ୍ତି । ମୁଁ ସେମାନଙ୍କର ପଦାଙ୍କ ଅନୁସରଣ କରି

ଯଥାଶକ୍ତି ପ୍ରଜାମାନଙ୍କୁ ପାଳନ କରି ଆସିଛି । ବିନା ନିଦ୍ରା ଓ ଆଳସ୍ୟରେ ଅହରହ କାର୍ଯ୍ୟକରି ଏହି ଶ୍ୱେତ ରାଜଛତ୍ରର ଛାୟାରେ ମୋର ଶରୀରକୁ ଜରାଜୀର୍ଣ୍ଣ କରିଚି । ବର୍ତ୍ତମାନ ଏହି ଗୁରୁଭାର ଆଉ ଅଧିକ ବହନ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ବର୍ତ୍ତମାନ ମୁଁ ଶାନ୍ତିରେ ବିଶ୍ରାମ କରିବାକୁ ଚାହେ । ସମସ୍ତ ଗୁଣରେ ଅଳଙ୍କୃତ ମୋର ଜ୍ୟେଷ୍ଠପୁତ୍ର ରାମଙ୍କୁ ମୁଁ ରାଜା କରିବାପାଇଁ ଚାହେ । ମୋର ପ୍ରସ୍ତାବକୁ ଯଦି ଆପଣମାନେ ଉପଯୁକ୍ତ ମନେକରନ୍ତି, ତା' ହେଲେ ଅନୁମୋଦନ କରନ୍ତୁ । ଏ ପ୍ରସ୍ତାବ ମୋ ପାଇଁ ଅତିଶୟ ପ୍ରିୟ ହେଲେ ମଧ୍ୟ ଆପଣମାନଙ୍କର ଯଦି ଅନ୍ୟ କିଛି ହିତକର ପ୍ରସ୍ତାବ ଥାଏ, ତା' ହେଲେ ତାହା ଚିନ୍ତା କରନ୍ତୁ । କାରଣ ନିରପେକ୍ଷ ମଧ୍ୟସ୍ଥମାନଙ୍କର ବିଚାର ହିଁ ଅଧିକ ଫଳପ୍ରଦ ହୋଇଥାଏ ।

ବର୍ଷୁକ ମେଘ ଦେଖିଲେ ମୟୂରମାନେ ଯେପରି ରବ କରି ତାର ସ୍ୱାଗତ କରନ୍ତି, ଉପସ୍ଥିତ ସଭାସଦ୍‌ବର୍ଗ ସେହିପରି ଆନନ୍ଦ ଧ୍ୱନି କରି ରାଜା ଦଶରଥଙ୍କୁ ସମର୍ଥନ ଜଣାଇଲେ । ସେମାନଙ୍କର ହର୍ଷୋଲ୍ଲାସରେ ସମସ୍ତ ପ୍ରାସାଦ ପ୍ରତିଧ୍ୱନିତ ହୋଇ ଉଠିଲା । ପୁରବାସୀ ଓ ଜନପଦବାସୀଙ୍କ ସହିତ ବ୍ରାହ୍ମଣ ଓ ମୁଖ୍ୟ ବ୍ୟକ୍ତିମାନେ ଏକତ୍ର ହୋଇ ଦଶରଥଙ୍କୁ କହିଲେ— ରାଜା, ଆପଣଙ୍କର ବହୁତ ବୟସ ହୋଇଯାଇଛି । ବର୍ତ୍ତମାନ ରାମଙ୍କୁ ଆପଣ ଯୁବରାଜ ପଦରେ ଅଭିଷିକ୍ତ କରନ୍ତୁ । ରାଜଛତ୍ର ତଳେ ହାତୀ ଉପରେ ବସି ସେ କିଭଳି ଯାତ୍ରା କରିବେ, ଆମେ ତାହା ଶୀଘ୍ର ଦେଖିବାକୁ ଚାହୁଁ ।

ରାଜା ସେମାନଙ୍କର ପ୍ରକୃତ ମନର କଥା ଜାଣି ନ ଜାଣିଲା ପରି କହିଲେ, ଆପଣମାନେ ମୋ କଥା ଶୁଣିବା ମାତ୍ରେ ରାମ ରାଜା ହୁଅନ୍ତୁ ବୋଲି କହିଲେ । ଆପଣମାନେ ଭଲ ଭାବରେ ଚିନ୍ତାକରି କହିଛନ୍ତି କି ନାହିଁ ସେଥିରେ ମୋର ସନ୍ଦେହ ଜାତ ହେଉଛି । ମୁଁ କହିଦେଲି ବୋଲି କ'ଣ ଆପଣମାନେ ରାଜି ହୋଇଗଲେ ! ମୁଁ କ'ଣ ଧର୍ମାନୁସାରେ ଏ ରାଜ୍ୟକୁ ଶାସନ କରୁ ନାହିଁ ? ଉପସ୍ଥିତ ରାଜନ୍ୟ ଓ ପୌରଜନବର୍ଗ ସମସ୍ୱରରେ କହିଲେ, ରାଜା ତୁମର ପୁତ୍ର ସତ୍ୟ ଧର୍ମପରାୟଣ ଏବଂ ଜଗତର ସମସ୍ତ ସାଧୁ ପୁରୁଷଙ୍କ ମଧ୍ୟରେ ଶ୍ରେଷ୍ଠ । ତାଙ୍କଠାରେ ଧର୍ମ ଓ ଅର୍ଥର ସମାହାର ଘଟିଛି । କ୍ଷମାରେ ପୃଥିବୀ, ବୁଦ୍ଧିରେ ବୃହସ୍ପତି ଓ ବୀରତ୍ୱରେ ସେ ଇନ୍ଦ୍ରଙ୍କ ସହିତ ସମାନ; ଶସ୍ତ୍ରଧାରୀଙ୍କ ମଧ୍ୟରେ ଶ୍ରେଷ୍ଠ ସମସ୍ତ ବିଦ୍ୟାରେ ପାରଙ୍ଗମ, ଗୁରୁ ବ୍ରାହ୍ମଣମାନଙ୍କର ସେବକ, ପ୍ରଜାଙ୍କର ପ୍ରିୟ, ରାମଚନ୍ଦ୍ରଙ୍କ ସହିତ କୌଣସି ବ୍ୟକ୍ତି ତୁଳନୀୟ ନୁହନ୍ତି । ଇକ୍ଷ୍ୱାକୁ ବଂଶରେ ଏପରି ବ୍ୟକ୍ତି କେବେ ଜନ୍ମ ଗ୍ରହଣ କରି ନ ଥିଲେ । ଆପଣଙ୍କର ଭାଗ୍ୟ, ଆପଣ ଏପରି ପୁତ୍ର ଲାଭ କରିଛନ୍ତି । ସେହି ଇନ୍ଦୀବରଶ୍ୟାମ ରାମଚନ୍ଦ୍ରଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କରି ଆପଣ ପ୍ରଜାମାନଙ୍କର ଆନନ୍ଦ ବର୍ଦ୍ଧନ କରନ୍ତୁ ।

ଦଶରଥ ଏଥିରେ ତୃପ୍ତ ହୋଇ କହିଲେ, ମୋର ଜ୍ୟେଷ୍ଠପୁତ୍ରକୁ ଯୁବରାଜ କରି ମୁଁ ଆପଣଙ୍କର ଅଭିଳାଷ ନିଶ୍ଚୟ ପୂରଣ କରିବି । ସଙ୍ଗେ ସଙ୍ଗେ ରାଜା ବଶିଷ୍ଠ ବାମଦେବ ପ୍ରଭୃତି ବ୍ରାହ୍ମଣମାନଙ୍କୁ ଡାକି କହିଲେ, ଏହି ମଧୁମୟ ମଙ୍ଗଳମୟ ଚୈତ୍ରମାସରେ ରାମଙ୍କର ଅଭିଷେକ ପାଇଁ ଆପଣମାନେ ଆୟୋଜନ କରନ୍ତୁ । କୁଳଗୁରୁ ବଶିଷ୍ଠ ଅଭିଷେକ ପାଇଁ

ଯାହା ସବୁ ସାମଗ୍ରୀ ଦରକାର ତାହା ଶୀଘ୍ର ସଂଗ୍ରହ କରିବାପାଇଁ ମନ୍ତ୍ରୀମାନଙ୍କୁ ଆଦେଶ ଦେଲେ । ସୁବର୍ଣ୍ଣ ପ୍ରଭୃତି ବିଭିନ୍ନ ରତ୍ନ, ପୂଜାଦ୍ରବ୍ୟ, ଶୁକ୍ଳମାଲ୍ୟ, ଲାଜା (ଖଇ), ମଧୁ, ଘୃତ, ନବବସ୍ତ୍ର, ଚତୁରଙ୍ଗ ସୈନ୍ୟସମେତ ବିଭିନ୍ନ ଅସ୍ତ୍ରଶସ୍ତ୍ର, ଶୁଭଲକ୍ଷଣଯୁକ୍ତ ହସ୍ତୀ, ଶ୍ୱେତଚାମର, ଆଲଟ, ପତାକା, ଶ୍ୱେତଛତ୍ର, ଶତସଂଖ୍ୟକ ସୁବର୍ଣ୍ଣ କୁମ୍ଭ, ସୁବର୍ଣ୍ଣଶୃଙ୍ଗ ବୃଷଭ, ଅଖଣ୍ଡ ବ୍ୟାଘ୍ରଚର୍ମ ଆଦି ସଂଗ୍ରହ ଏହା ମଧ୍ୟରେ ପ୍ରଧାନ ଥିଲା । ଯଜ୍ଞଶାଳା ଓ ଯଜ୍ଞ ପାଇଁ ଯାହା ଦରକାର ତାର ବ୍ୟବସ୍ଥା କରିବାପାଇଁ ମଧ ଋଷି ଆଦେଶ ଦେଲେ । ବଶିଷ୍ଠ କହିଲେ– ଚନ୍ଦନ, ପୁଷ୍ପମାଲ୍ୟ ଓ ବିଭିନ୍ନ ସୁବାସିତ ଧୂପ ଦ୍ୱାରା ରାଜାନ୍ତଃପୁର ଏବଂ ନଗରର ତୋରଣ ସବୁ ମଣ୍ଡିତ କର । ବ୍ରାହ୍ମଣମାନଙ୍କୁ ନିମନ୍ତ୍ରିତ କରି ସେମାନଙ୍କର ଉପଯୁକ୍ତ ସତ୍କାରର ବ୍ୟବସ୍ଥା କର । ଚାରିଆଡ଼େ ପତାକା ଉଡ଼ାଯାଉ ଓ ରାଜମାର୍ଗରେ ଜଳସେଚନ କରାଯାଉ । ଗାୟକ ଓ ଗଣିକାମାନେ ରାଜଭବନର ଦ୍ୱିତୀୟକକ୍ଷରେ ଅବସ୍ଥାନ କରନ୍ତୁ । ମଠ ଓ ଦେବାଳୟମାନଙ୍କରେ ଭୋଜିର ଆୟୋଜନ କରାଯାଉ । ଯୋଦ୍ଧାମନେ ଖଡ଼୍ଗ ଧାରଣ କରି ଓ ସାମରିକ ପୋଷାକ ପିନ୍ଧି ରାଜପ୍ରାସାଦର ଅଙ୍ଗନରେ ପ୍ରବେଶ କରନ୍ତୁ ।

ଦଶରଥଙ୍କର ଆଜ୍ଞାରେ ମନ୍ତ୍ରୀ ସୁମନ୍ତ ରାମଚନ୍ଦ୍ରଙ୍କୁ ଡକାଇ ଆଣିଲେ । ସମସ୍ତ ସଭା ପ୍ରିୟଦର୍ଶନ ରାମଚନ୍ଦ୍ରଙ୍କୁ ଦେଖି ମୁଗ୍ଧ ବିସ୍ମୟରେ ଚାହିଁରହିଲା । ରାମଚନ୍ଦ୍ର ରଥରୁ ଓହ୍ଲାଇ ପିତାଙ୍କର ଚରଣ ବନ୍ଦନା କଲେ । ଦଶରଥ ପୁତ୍ରଙ୍କୁ ଆଲିଙ୍ଗନପୂର୍ବକ ଉପଯୁକ୍ତ ଆସନରେ ବସାଇ କହିଲେ– ରାମ, ତୁମେ ମୋର ଜ୍ୟେଷ୍ଠା ମହିଷୀଙ୍କର ପୁତ୍ର ଏବଂ ମୋର ଜ୍ୟେଷ୍ଠପୁତ୍ର । ନିଜର ରୂପ ଓ ଗୁଣରେ ତୁମେ ମୋର ଓ ପ୍ରଜାମାନଙ୍କର ଅତ୍ୟନ୍ତ ପ୍ରିୟ ହୋଇପାରିଚ । ପୁଷ୍ୟା ନକ୍ଷତ୍ରରେ ତୁମେ ଯୁବରାଜ ରୂପେ ଅଭିଷିକ୍ତ ହୁଅ ଏବଂ ରାଜାର କର୍ତ୍ତବ୍ୟ ପାଳନ କର ।

ରାମଙ୍କର ପ୍ରିୟ ସୁହୃଦମାନେ ଦଉଡ଼ିଯାଇ ମାତା କୌଶଲ୍ୟାଙ୍କୁ ଏହା ଜଣାଇବାରୁ କୌଶଲ୍ୟା ଆନନ୍ଦରେ ସେମାନଙ୍କୁ ସୁବର୍ଣ୍ଣ ଆଦି ବିଭିନ୍ନ ରତ୍ନ ଉପହାର ଦେଲେ ଓ ରାମଙ୍କୁ ଦେଖିବାପାଇଁ ଉତ୍ସୁକ ହେଲେ । ରାମଚନ୍ଦ୍ର ଦଶରଥଙ୍କୁ ଅଭିବାଦନ କରି ଓ ସମସ୍ତ ସଭା ଦ୍ୱାରା ସମ୍ବର୍ଦ୍ଧିତ ହୋଇ ନିଜର ବାସଭବନକୁ ଫେରିଆସିଲେ ।

ପୁରବାସୀମାନେ ଚାଲିଯିବାପରେ ନିଜ ସଙ୍କଳ୍ପରେ ଦୃଢ଼ ରାଜା ଦଶରଥ ମନ୍ତ୍ରୀମାନଙ୍କ ସହିତ ପରାମର୍ଶ କରି ସ୍ଥିର କଲେ ଯେ ଆଗାମୀ କାଲି ପୁଷ୍ୟା ନକ୍ଷତ୍ରରେ ରାଜୀବଲୋଚନ ରାମଙ୍କର ଅଭିଷେକ ହେବ । ପରେ ପରେ ରାଜା ଅନ୍ତଃପୁରକୁ ଯାଇ ଏକାନ୍ତରେ ରାମଙ୍କ ସହିତ ଆଳାପ କରିବାପାଇଁ ସାରଥି ଦ୍ୱାରା ତାଙ୍କୁ ପୁଣି ଡକାଇ ପଠାଇଲେ । ରାମ ଆସିବାରୁ କହିଲେ– ପୁତ୍ର, ମୁଁ ବୃଦ୍ଧ; ଦୀର୍ଘାୟୁ ହୋଇ ସମସ୍ତ ଅଭିଳଷିତ ବିଷୟ ଭୋଗ କରିଚି । ପ୍ରଚୁର ଦାନ ଦକ୍ଷିଣା ଦେଇ ଶହ ଶହ ଯଜ୍ଞ ଅନୁଷ୍ଠାନ କରିଚି, ଯାହାର ଫଳସ୍ୱରୂପ ତୁମକୁ ପୁତ୍ରରୂପେ ଲାଭ କରିଚି । ଦେବତା, ଋଷି, ପିତୃ, ବିପ୍ର ତଥା ଆତ୍ମଋଣ ଏହି ପାଞ୍ଚଟି ଋଣ ମୁଁ ଯଥାବିଧି ପରିଶୋଧ କରିଚି । ବର୍ତ୍ତମାନ ମୋର ଏକମାତ୍ର କର୍ତ୍ତବ୍ୟ, ତୁମକୁ ରାଜପଦରେ ଅଭିଷିକ୍ତ କରିବା । ମୁଁ ଆଜି ଏକ ଭୟଙ୍କର ଅଶୁଭ ସ୍ୱପ୍ନ ଦେଖିଚି । ନିର୍ଘାତ

ଶବ୍ଦ କରି ପ୍ରବଳ ଉଲ୍‌କାପାତ ହେଉଚି । ବୈବଜ୍ଞ ଜ୍ୟୋତିଷମାନଙ୍କର ମତ, ମୋର ଜନ୍ମ ନକ୍ଷତ୍ରକୁ ସୂର୍ଯ୍ୟ, ମଙ୍ଗଳ, ରାହୁ – ଏହି ତିନୋଟି ଦାରୁଣ ଗ୍ରହ ଆକ୍ରମଣ କରିଛନ୍ତି । ଏପରି ଘଟିଲେ ହୁଏତ ରାଜାର ମୃତ୍ୟୁ ହୁଏ କିମ୍ବା ସେ ଘୋର ବିପଦ ବରଣ କରେ । ମନୁଷ୍ୟର ଚିତ୍ତ ଚଞ୍ଚଳ । ତେଣୁ ମୋର ମନ ସଙ୍କଳ୍ପବଦ୍ଧ ଥିବା ସମୟରେ ତୁମର ଅଭିଷେକ ହୋଇଯାଉ । ଆଜି ଚନ୍ଦ୍ର ପୁନର୍ବସୁ ନକ୍ଷତ୍ରକୁ ଆସିଛନ୍ତି । କାଲି ଚନ୍ଦ୍ର ପୁଷ୍ୟାନକ୍ଷତ୍ରରେ ଯୁକ୍ତ ହେବେ । ତାହାହିଁ ଅଭିଷେକର ପ୍ରକୃଷ୍ଟ ସମୟ ।

ଦଶରଥ ପୁଣି କହିଲେ – ଶତ୍ରୁନିସୂଦନ ରାମ, ତୁମେ ଆତ୍ମସଂଯମ ରହି ସୀତାଙ୍କ ସହିତ ଆଜି ରାତ୍ରି ନିୟମପୂର୍ବକ ଉପବାସ କର ଏବଂ କୁଶଶଯ୍ୟାରେ ଶୟନ କର । ଭରତ ପ୍ରବାସରେ ଥିବାବେଳେ ତୁମର ଅଭିଷେକ ହୋଇଯାଉ । ଅବଶ୍ୟ ଭରତ ଧର୍ମାତ୍ମା, ଜିତେନ୍ଦ୍ରିୟ ଏବଂ ଜ୍ୟେଷ୍ଠଭ୍ରାତା ଜ୍ଞାନରେ ତୁମକୁ ସେ ଅନୁସରଣ କରନ୍ତି । କିନ୍ତୁ ମନୁଷ୍ୟର ମନ ଅସ୍ଥିର । ଧର୍ମପରାୟଣ ସାଧୁଲୋକଙ୍କର ମନ ମଧ୍ୟ ବେଳେବେଳେ ବିଚଳିତ ଓ ବିକାରଗ୍ରସ୍ତ ହୋଇଯାଏ ।

ଦଶରଥଙ୍କୁ ଅଭିବାଦନ କରି ରାମଚନ୍ଦ୍ର ପ୍ରଥମେ ମାତାଙ୍କର ଦର୍ଶନ ପାଇଁ ଗଲେ । ସେ ଦେଖିଲେ – କୌଶଲ୍ୟା ପଟ୍ଟବସ୍ତ୍ର ପରିଧାନ କରି ମୌନଭାବରେ ଦେବାର୍ଚ୍ଚନ କରୁଛନ୍ତି । ସୀତା, ସୁମିତ୍ରା ଓ ଲକ୍ଷ୍ମଣ ତାଙ୍କ ପାଖରେ ବସିଛନ୍ତି । ରାମ ମାତାଙ୍କୁ ପ୍ରଣାମ କରି କହିଲେ, ପିତାଙ୍କ ଆଦେଶରେ କାଲି ମୋର ଅଭିଷେକ ହେବ । ଯେଉଁସବୁ ମଙ୍ଗଳ କାର୍ଯ୍ୟ ସୀତା ଓ ମୋତେ କରିବାକୁ ହେବ, ତୁମେ ଶୀଘ୍ର ତାର ବ୍ୟବସ୍ଥା କର । କୌଶଲ୍ୟା ଆନନ୍ଦରେ ବାଷ୍ପଗଦ୍‌ଗଦ କଣ୍ଠରେ କହିଲେ – ବତ୍ସ, ଦୀର୍ଘଜୀବୀ ହୁଅ । ତୋର ଶତ୍ରୁମାନେ ନିହତ ହୁଅନ୍ତୁ । ନିଜ ଗୁଣରେ ପିତାଙ୍କୁ ସନ୍ତୁଷ୍ଟ କରି ତୁ ଏହି ରାଜପଦ ଲାଭ କରିଚୁ । ଏଣିକି ଇକ୍ଷ୍ୱାକୁ ବଂଶର ରାଜଲକ୍ଷ୍ମୀ ତୋତେ ହିଁ ଆଶ୍ରୟ କରି ରହିବେ ।

ଲକ୍ଷ୍ମଣ ଚୁପଚାପ୍ ବସି ରହିଥିଲେ । ତାଙ୍କ ଆଡ଼କୁ ଅନାଇ ରାମ କହିଲେ, ସୌମିତ୍ରି, ତୁମେ ମୋର ଆତ୍ମାପରି । ତୁମେ ଅଭୀଷ୍ଟ ରାଜ୍ୟ ଭୋଗର ଫଳ ଲାଭ କର । ତୁମେ ଜାଣ ଯେ ତୁମପାଇଁ ଏହି ଜୀବନ ଓ ରାଜ୍ୟଭୋଗ ମୋର କାମ୍ୟ । ଏହା କହି ରାମ ଦୁଇ ମାତା ଓ ଲକ୍ଷ୍ମଣଙ୍କଠାରୁ ବିଦାୟ ନେଇ ବ୍ରତାଚରଣପାଇଁ ସୀତାଙ୍କ ସହିତ ସ୍ୱଭବନକୁ ଯାତ୍ରା କଲେ ।

ଦଶରଥଙ୍କ ଦ୍ୱାରା ପ୍ରେରିତ ହୋଇ କୁଳଗୁରୁ ବଶିଷ୍ଠ ରାମଙ୍କ ବାସଭବନରେ ପହଞ୍ଚିଲେ ଓ ରାମଙ୍କର ପୂଜା ଓ ଅଭ୍ୟର୍ଥନା ଗ୍ରହଣ କରି ତାଙ୍କୁ ଏବଂ ସୀତାଙ୍କୁ ମନ୍ତ୍ରୋଚ୍ଚାରଣ ପୂର୍ବକ ଉପବାସର ସଙ୍କଳ୍ପ କରାଇଲେ । ଫେରିବାବେଳେ ବଶିଷ୍ଠ ଦେଖିଲେ, ରାଜପଥ କୋଳାହଳମୟ । ରାଜପଥର ଚାରିଆଡ଼େ ଲୋକ ଜମା ହୋଇ ଆନନ୍ଦୋଲ୍ଲାସରେ ପରଦିନ ଅଭିଷେକର ଚର୍ଚ୍ଚା କରୁଛନ୍ତି । ବଶିଷ୍ଠ କଷ୍ଟରେ ସେହି ଜନସମୁଦ୍ର ଭେଦ କରି ଯାତ୍ରାକଲେ ଏବଂ ରାମଙ୍କର ଉପବାସ ସଙ୍କଳ୍ପ ଓ ଲୋକଙ୍କର ଆନନ୍ଦ ଉତ୍ସବ ବିଷୟ ଦଶରଥଙ୍କୁ ଜଣାଇଲେ । ରାଜା ଅନୁଭବ କଲେ ସେ ଭାବିଚିନ୍ତି ଯାହା ସ୍ଥିର କରିଛନ୍ତି,

ତାହା ଯଥାର୍ଥ ହୋଇଚି । ସେ ସନ୍ତୁଷ୍ଟ ଓ ଶାନ୍ତ ଚିତ୍ତରେ ନିଜ ଅନ୍ତଃପୁରରେ ପ୍ରବେଶ କଲେ ।

ରାମଚନ୍ଦ୍ର ସ୍ନାନ ଶେଷ କରି ନିୟମପୂର୍ବକ ସୀତାଙ୍କ ସହିତ ନାରାୟଣଙ୍କୁ ଉପାସନା କଲେ । ପ୍ରଦୀପ୍ତ ଅଗ୍ନିରେ ଘୃତାହୁତି ଦେଇ ହୋମଶେଷ ହବିକୁ ଭକ୍ଷଣ କଲେ ଏବଂ ଦେବମନ୍ଦିର ପ୍ରାଙ୍ଗଣରେ କୁଶଶଯ୍ୟା ବିଛାଇ ପତ୍ନୀଙ୍କ ସହିତ ଶୟନ କଲେ । ରାତ୍ରିର ଶେଷ ଯାମ ପୂର୍ବରୁ ସେ ଶଯ୍ୟା ତ୍ୟାଗ କରି ନିଜର ଆହ୍ନିକ କାର୍ଯ୍ୟ ଶେଷ କଲେ । ସୁତ ମାଗଧ ଓ ବନ୍ଦୀମାନେ ସୁମଧୁର ମଙ୍ଗଳ ସଙ୍ଗୀତ ଗାନ କରୁଥିଲେ । ବ୍ରାହ୍ମଣମାନଙ୍କ ସ୍ୱସ୍ତିବାଚନ ସହିତ ପ୍ରଭାତକାଳୀନ ତୂରୀର ଘୋଷ ମିଳିତ ହୋଇ ଅପୂର୍ବ ମୂର୍ଚ୍ଛନା ସୃଷ୍ଟି କରୁଥିଲା ।

ପ୍ରଭାତ ହେବାରୁ ସମଗ୍ର ଅଯୋଧ୍ୟା ଉତ୍ସବମୟ ହୋଇଉଠିଲା । ବିଭିନ୍ନ ସ୍ଥାନରେ ତୋରଣ, ଗୃହେ ଗୃହେ ପତାକା ଓ ମାଳା । ଦେବମନ୍ଦିର, ଚତୁଷ୍ପଥ, ମଠ, ଅଟ୍ଟାଳିକା, ବିପଣୀ, ସଭାଗୃହ, ଏପରିକି ବୃକ୍ଷମାନଙ୍କ ଉପରେ ନାନାରଙ୍ଗର ପତାକା ଉଡୁଥିଲା । ରାଜମାର୍ଗ ଧୂପପୁଷ୍ପ ଗନ୍ଧରେ ଆମୋଦିତ ହେଉଥିଲା । ସେଦିନ ସନ୍ଧ୍ୟାରେ ରାଜପଥକୁ ଆଲୋକିତ କରିବାପାଇଁ ରାସ୍ତାର ଉଭୟ କଡ଼ରେ ବୃକ୍ଷପରି ଦୀପସ୍ତମ୍ଭମାନ ପ୍ରତିଷ୍ଠା କରାଯାଇଥିଲା । ହଜାର ହଜାର ଲୋକ ଅଭିଷେକ ଖବର ପାଇ ଗ୍ରାମାଞ୍ଚଳରୁ ଆସି ଅଯୋଧ୍ୟାନଗରୀର ବିପଣୀ ଓ ରାଜପଥମାନ ମୁଖରିତ କରିବାକୁ ଲାଗିଲେ । ତାହା ପୂର୍ଣ୍ଣିମାରେ ବିକ୍ଷୁବ୍ଧ ସମୁଦ୍ରର ଗର୍ଜନ ପରି ଶୁଣାଯାଉଥିଲା । ରାମଙ୍କର ଅଭିଷେକ ଦେଖିବାପାଇଁ ସମସ୍ତେ ଉଦ୍‌ବିଗ୍ନ ହୋଇ ରହିଲେ ଓ ରାଜା ଦଶରଥଙ୍କର ଦୀର୍ଘ ଜୀବନ କାମନା କରିବାକୁ ଲାଗିଲେ ।

କିନ୍ତୁ ଏହି ସୁଖର ଚନ୍ଦ୍ରମା ଯେ ଶୀଘ୍ର ଅସ୍ତ ଯାଉଛନ୍ତି, ତାହା କେହି କଳ୍ପନା କରି ନ ଥିଲେ ।

## ୨୦ ।। ମନ୍ଥରା

କୈକେୟୀ ଶ୍ୱଶୁରାଳୟକୁ ଆସିବାବେଳେ ତାଙ୍କ ପିତୃଗୃହରୁ ଏକ କୁବ୍‌ଜା ଦାସୀକୁ ସାଙ୍ଗରେ ଆଣିଥିଲେ । ତାର ନାମ ଥିଲା ମନ୍ଥରା । ମନ୍ଥରା ରାଜପ୍ରାସାଦର ଉପରକୁ ଉଠି ଉତ୍ସବମୁଖର ଅଯୋଧ୍ୟାକୁ ଦର୍ଶନ କଲା । ପୁଷ୍ପ, ଚନ୍ଦନ, ମାଳା, ବାଦ୍ୟ, ସଙ୍ଗୀତ, ଆଡ଼ମ୍ବରପୂର୍ଣ୍ଣ ସାଜସଜ୍ଜା ଦେଖି ଏବଂ ଲୋକଙ୍କର ଆନନ୍ଦ କୋଳାହଳ ଶୁଣି କ'ଣ ହେଉଚି ପ୍ରଥମେ ସେ କିଛି ବୁଝିପାରିଲା ନାହିଁ । ଶୁକ୍ଳ ପଟ୍ଟବସ୍ତ୍ର ପରିହିତା ଜଣେ ଧାଈକି ଦେଖି ପଚାରିଲା, ଲୋକମାନେ କାହିଁକି ଏପରି ଆନନ୍ଦ ଉତ୍ସବ କରୁଛନ୍ତି ? ରାମଜନନୀ କୌଶଲ୍ୟା କାହିଁକି ଏପରି ଆନନ୍ଦ ବିଭୋର ହୋଇ ଧନ ବିତରଣ କରୁଛନ୍ତି ? ଧାଈ ଆନନ୍ଦରେ ଭାଙ୍ଗିପଡ଼ି କୁବ୍‌ଜାକୁ କହିଲା, ତୁମେ କ'ଣ ଜାଣି ନାହଁ, କାଲି ରାଜା ଦଶରଥ ନିଷ୍ପାପ ରାମଚନ୍ଦ୍ରଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କରୁଛନ୍ତି ।

କୈକେୟୀଙ୍କର ଦାସୀ ଈର୍ଷାରେ ଜଳିଗଲା । ସେ ଦ୍ରୁତ ବେଗରେ ପ୍ରାସାଦ ଉପରୁ ଓହ୍ଲାଇ ଆସି ଯେଉଁଘରେ କୈକେୟୀ ଶୋଇଥିଲେ, ସେଠାରେ ପହଞ୍ଚି କହିଲା, ଆରେ ମୂଢ଼ା, ଶୋଇ ରହିଚୁ କ'ଣ, ଶୀଘ୍ର ଉଠ, ତୋ' ପାଇଁ ମହାଭୟ ଉପସ୍ଥିତ ହେଲାଣି । ଘୋର ବିପଦ-ସମୁଦ୍ରରେ ବୁଡ଼ିବାକୁ ବସିଲୁଣି । ତଥାପି ତୋର ଜ୍ଞାନୋଦୟ ହୋଇ ନାହିଁ । ତୁ ରାଜାଙ୍କର ପ୍ରିୟା ନୋହୁଁ । କେବଳ ଉପରେ ଉପରେ ତୋତେ ସେପରି ବ୍ୟବହାର କରାଯାଏ । ଗ୍ରୀଷ୍ମକାଳୀନ ନଦୀସ୍ରୋତ ପରି ତୋର ସୌଭାଗ୍ୟ କ୍ଷଣସ୍ଥାୟୀ ମାତ୍ର ।

କୈକେୟୀ ପ୍ରଥମେ ବୁଝିପାରିଲେ ନାହିଁ । କୁବ୍‌ଜା କାହିଁକି କ୍ରୋଧରେ ଏପରି କଟୁକଥା କହିବାରେ ଲାଗିଛି, ଜାଣିବାପାଇଁ ପଚାରିଲେ । ମନ୍ଥରା, ତୋର କ'ଣ କିଛି ଅମଙ୍ଗଳ ଘଟିଚି ? ତୋର ମୁହଁ କାହିଁକି ଶୁଖିଯାଇଚି ? ତୁ କାହିଁକି ଏପରି ବିଷଣ୍ଣ ଦେଖାଯାଉଚୁ ?

କୈକେୟୀଙ୍କ ମଧୁର ବାକ୍ୟରେ ଅତିଶୟ କ୍ରୁଦ୍ଧ ହୋଇ ମନ୍ଥରା କହିଲା, ତୋ' ପାଇଁ ଯେଉଁ ବିନାଶର ସମ୍ବାଦ ଆଣିଚି, ଶୁଣ । ଦଶରଥ ରାମଙ୍କୁ ଯୁବରାଜ କରିବେ । କାଲି ଅଭିଷେକ ହେଉଛି । ତୋର ସ୍ୱାମୀ ମୁହଁରେ ମଧୁର କଥା କହନ୍ତି । କିନ୍ତୁ ସେ ଅତ୍ୟନ୍ତ ଶଠ ଏବଂ ନିଷ୍ଠୁର । ତୋର ସରଳତାର ସୁଯୋଗ ନେଇ ଆଜି ସେ ଏହା କରିବାକୁ ଯାଉଛନ୍ତି । ସେଥିପାଇଁ ଭରତକୁ ମାମୁଘର ପଠାଇଦେଇ ରାମଙ୍କୁ ନିଷ୍କଣ୍ଟକ ରାଜ୍ୟଭୋଗର ସୁଯୋଗ ଦେଉଛନ୍ତି । ଏହାଫଳରେ କେବଳ କୌଶଲ୍ୟାର ମନୋରଥ ପୂର୍ଣ୍ଣ ହେବ । ତୁ ଏ ପର୍ଯ୍ୟନ୍ତ ପତିନାମଧାରୀ ସର୍ପ ସଦୃଶ ଶତ୍ରୁକୁ କ୍ରୋଡ଼ରେ ଧାରଣ କରିଚୁ । ତାର ଫଳ ତୁ ଭୋଗିବାକୁ ଯାଉଚୁ । ଅବାକ୍ ହୋଇ ରହିଚୁ କ'ଣ, ବର୍ତ୍ତମାନ ଟିକିଏ ହେଲେ ଚିନ୍ତାକର, ତୁ ତୋର ପୁଅ ଭରତ ଓ ମୁଁ ଏ ଘୋର ବିପଦରୁ କିପରି ଉଦ୍ଧାର ପାଇବା ।

ସୁନ୍ଦରୀ କୈକେୟୀ ଶାରଦୀୟ ଚନ୍ଦ୍ରଲେଖା ପରି ହର୍ଷୋତ୍‌ଫୁଲ୍ଲ ହୋଇ ଶଯ୍ୟାରୁ ଉଠିବସିଲେ । ନିଜର ଦେହରୁ ଏକ ଅଳଙ୍କାର ବାହାର କରି କୁବ୍‌ଜାକୁ ଦେଇ କହିଲେ – ମନ୍ଥରା, ତୁ ଏପରି ଶୁଭସମ୍ବାଦ ଦେଇଥିବାରୁ ଏହି ପୁରସ୍କାର ଗ୍ରହଣ କର । ରାମ ଓ ଭରତ ମଧ୍ୟରେ ମୁଁ କୌଣସି ପ୍ରଭେଦ ଦେଖେ ନାହିଁ । ତେଣୁ ରାଜା ରାମଙ୍କୁ ରାଜ୍ୟରେ ଅଭିଷିକ୍ତ କରୁଛନ୍ତି, ତାହା ଶୁଣି ମୁଁ ଆନନ୍ଦିତ ।

**ରାମେ ବା ଭରତେ ବାହଂ ବିଶେଷଂ ନୋପଲକ୍ଷୟେ**
**ତସ୍ମାତ୍ତୁଷ୍ଟାସ୍ମି ଯଦ୍ରାଜା ରାମଂ ରାଜ୍ୟେଽଭିଷେକ୍ଷ୍ୟତି ।**

ହେ ପ୍ରିୟ ମନ୍ଥରା, ତୁ ମୋତେ ଯାହା କହିଲୁ, ଏହାଠାରୁ ବଳି ପ୍ରିୟ କଥା ମୋ' ପାଇଁ କିଛି ଥାଇ ନ ପାରେ । ତେଣୁ ତୁ କ'ଣ ବର ମାଗୁଚୁ ମାଗ । ମୁଁ ଦେବାପାଇଁ ପ୍ରସ୍ତୁତ ଅଛି ।

**ନ ମେ ପରଂ କିଞ୍ଚିଦିତସ୍ତ୍ୱୟା ପୁନଃ**
**ପ୍ରିୟଂ ପ୍ରିୟାର୍ହେ ସୁବଚଃ ବଚଃ ପରମ୍**
**ତଥାହ୍ୟବୋଚସ୍ତ୍ୱମତଃ ପ୍ରିୟୋତ୍ତରମ୍**
**ପରଂ ବରଂ ତେ ପ୍ରଦଦାମି ତଂ ବୃଣୁ ।**

ଦୁଃଖ ଓ କ୍ରୋଧରେ ମନ୍ଥରା ଅଳଙ୍କାରଙ୍କୁ ଫିଙ୍ଗିଦେଇ କହିଲା, ତୋର ମୂଢ଼ ବୁଦ୍ଧି ଯାଇ ନାହିଁ । ନ ହେଲେ ଦୁଃଖସାଗରରେ ବୁଡ଼ିବାବେଳେ ତୁ ହର୍ଷୋତ୍‌ଫୁଲ୍ଲ ହେଉ ନ ଥାନ୍ତୁ । ମହା ବିପଦରେ ପଡ଼ି ମଧ୍ୟ ତୁ ହୃଷ୍ଟ ହେବାର ଦେଖି ମୋତେ ମନେ ମନେ ହସ ଲାଗୁଛି । ମୃତ୍ୟୁପରି ଶତ୍ରୁ ସପତ୍ନୀପୁତ୍ରର ଶ୍ରୀବୃଦ୍ଧି ଦେଖି କେଉଁ ବୁଦ୍ଧିମତୀ ସ୍ତ୍ରୀ ଆନନ୍ଦିତ ହୁଏ ? ରାଜ୍ୟରେ ସବୁ ଭାଇଙ୍କର ସମାନ ଭାଗ । ତେଣୁ ରାମ ଭରତକୁ ଭୟ କରେ । ଭୀତ ବ୍ୟକ୍ତି ଅନିଷ୍ଟର କାରଣ ହୋଇଥାଏ । ଲକ୍ଷ୍ମଣ ରାମର ପ୍ରାଣ ପରି ଅନୁଗତ । ଶତ୍ରୁଘ୍ନ ଭରତର ଅନୁଗତ । କିନ୍ତୁ ବଡ଼ ସାନ ହିସାବରେ ରାମ ପଛକୁ ଭରତର ହିଁ ରାଜ୍ୟରେ ଅଧିକାର । ଲକ୍ଷ୍ମଣ ଶତ୍ରୁଘ୍ନ କନିଷ୍ଠ ହୋଇଥିବାରୁ ସେମାନଙ୍କର ରାଜା ହେବାର ପ୍ରଶ୍ନ ଉଠୁ ନାହିଁ । ଭରତ ରାଜ୍ୟର ଦାବିଦାର ହୋଇପାରେ, ତେଣୁ ରାମ ଭରତ ପ୍ରତି ଭୀତ ହୋଇ ଯେକୌଣସି କାର୍ଯ୍ୟ କରିପାରେ । ଜ୍ୟେଷ୍ଠାରାଣୀ କୌଶଲ୍ୟା ଭାଗ୍ୟବତୀ । କାରଣ ତାର ପୁତ୍ର ରାମ କାଲି ରାଜା ହେବାକୁ ଯାଉଚି । କୌଶଲ୍ୟା ରାଜମାତା ହେଲେ ତୁ ତା' ନିକଟରେ ଦାସୀ ପରି ଠିଆହେବୁ ଏବଂ ଭରତ ରାମର ଦାସ ହୋଇ ରହିବ ।

ରାମଙ୍କ ପ୍ରତି ମନ୍ଥରାର ଏହିସବୁ କଟୁ ମନ୍ତବ୍ୟ ଶୁଣି କୈକେୟୀ କହିଲେ – ରାମ ଧାର୍ମିକ, ଗୁଣବାନ, ସଂଯତ, ସତ୍ୟବାଦୀ ଓ ପବିତ୍ରମନା । ସେ ଭାଇ ଓ ଭୃତ୍ୟମାନଙ୍କୁ ପିତାପରି ପାଳନ କରିବ । କୁବ୍‌ଜା, ରାମଙ୍କର ଅଭିଷେକ ସମ୍ବାଦରେ ତୋର ଏପରି ସନ୍ତାପ କରିବାର କାରଣ ନାହିଁ । ରାମ ଦୀର୍ଘକାଳ ରାଜତ୍ୱ କରିବା ପରେ ଭରତ ନିଶ୍ଚୟ ରାଜ୍ୟଲାଭ କରିବ । ମୁଁ ଭରତକୁ ଯେଉଁ ଦୃଷ୍ଟିରେ ଦେଖେ, ରାମକୁ ମଧ୍ୟ ସେହି ଦୃଷ୍ଟିରେ ଦେଖେ । ରାମ ମଧ୍ୟ ନିଜ ମାତା ଅପେକ୍ଷା ମୋର ଅଧିକ ସେବା କରେ । ଭାଇମାନଙ୍କୁ ସେ ନିଜପରି ଦେଖେ । ତେଣୁ ଏ ରାଜ୍ୟ ରାମର ଯେପରି, ଭରତର ମଧ୍ୟ ସେହିପରି ।

ମନ୍ଥରା ଦୀର୍ଘନିଃଶ୍ୱାସ ପକାଇ କହିଲା, ଯେ ଅର୍ଥକୁ ଅନର୍ଥ କରି ଜାଣେ ସେପରି ମୂର୍ଖଲୋକକୁ କିଏ ବୁଝାଇପାରିବ ? ରାଜବଂଶର ନିୟମ ହେଉଚି, ରାଜାର ଅନ୍ତେ ତାର ପୁଅର ରାଜ୍ୟ । ରାମ ରାଜା ହେବା ପରେ ତାର ପୁଅ ରାଜା ହେବ । ତେଣୁ ତୋର ପୁଅ ରାଜା ନ ହୋଇ ଅନାଥ ପରି ବୁଲିବ । ରାମ ଭରତକୁ ହୁଏତ ନିର୍ବାସନ ଦଣ୍ଡଦେଇ ଅନ୍ୟ ରାଜ୍ୟକୁ ପଠାଇ ଦେଇପାରେ କିମ୍ବା ପରଲୋକକୁ ପଠାଇ ଦେଇପାରେ । କାରଣ ଭରତ ଥିବା ପର୍ଯ୍ୟନ୍ତ ସେ ନିଷ୍କଣ୍ଟକ ରାଜ୍ୟ ଶାସନ କରିପାରିବ ନାହିଁ । ଭରତକୁ ମାତୁଳାଳୟକୁ ବହୁଦିନୁଁ ପଠାଇ ଦେଇଥିବା ଯୋଗୁଁ ତୋର ତା' ପ୍ରତି ସ୍ନେହ ମମତା କମିଗଲାଣି । ତୁ ଏପରି କଥାଭାଷା କରୁଚୁ । ଭରତ ରାଜଭବନ ଛାଡ଼ି ବନକୁ ଯାଉ, ଏହା ବୋଧହୁଏ ତୋର ଇଚ୍ଛା । ତୁ ସ୍ୱାମୀ ସୌଭାଗ୍ୟବତୀ ହୋଇ କୌଶଲ୍ୟାକୁ ଅବଜ୍ଞା କରି ଆସିଚୁ । ଏଣିକି ସେ ନିଶ୍ଚୟ ଦାଉ ସାଧି ତୋତେ ହନ୍ତସନ୍ତ କରିବ । କୈକେୟୀ, ବର୍ତ୍ତମାନ ବି ସମୟ ଅଛି, ତୁ, ମୁଁ ଓ ଭରତ କିପରି ରକ୍ଷା ପାଇବା, ଚିନ୍ତାକର ।

ମନ୍ଥରାର ବାରମ୍ବାର ପ୍ରରୋଚନାରେ କୈକେୟୀ ଭୁଲିଗଲେ । ତାଙ୍କର ମୁଖ କ୍ରୋଧରେ ରକ୍ତବର୍ଣ୍ଣ ହୋଇଉଠିଲା । ସେ ଦୀର୍ଘନିଃଶ୍ୱାସ ପକାଇ କହିଲେ, ମୁଁ ସଙ୍ଗେ ସଙ୍ଗେ ରାମକୁ ବନକୁ ପଠାଇ ଭରତକୁ ଯୁବରାଜ ପଦରେ ବସାଇବି । ମନ୍ଥରା, ବର୍ତ୍ତମାନ

ତାର ଉପାୟ କର । ମନ୍ଥରା କହିଲା – ରାଣୀ, ଉପାୟ ତୋ ପାଖରେ ଅଛି । ଦିନେ ତୁ ମୋତେ ଯାହା କହୁଥିଲୁ, ତାହା କ'ଣ ଭୁଲିଗଲୁଣି ? ପୁଣି ମୋ ତୁଣ୍ଡରୁ ଶୁଣିବାକୁ ଇଚ୍ଛା କରୁଛୁ ? କ'ଣ କହିଥିଲେ କୈକେୟୀଙ୍କର ମନେପଡ଼ିଲା ନାହିଁ । ସେ ସ୍ପଷ୍ଟଭାବରେ କହିବାପାଇଁ ମନ୍ଥରାକୁ ଅନୁରୋଧ କଲେ ।

ମନ୍ଥରା କହିଲା, ପୂର୍ବେ ଦେବାସୁର ଯୁଦ୍ଧରେ ଦଶରଥ ଇନ୍ଦ୍ରଙ୍କୁ ସାହାଯ୍ୟ କରିବାପାଇଁ ଯାଇଥିଲେ ଏବଂ ତୋତେ ସାଙ୍ଗରେ ନେଇଥିଲେ । ତିମିଧ୍ୱଜ ନାମକ ଏକ ମାୟାବୀ ଅସୁର, ଯାହାର କି ଅନ୍ୟନାମ ଥିଲା ଶମ୍ବରାସୁର, ଇନ୍ଦ୍ରଙ୍କ ସହିତ ଲଢୁଥିଲା ଓ ଦେବତାମାନେ ତାକୁ ଜିଣି ପାରୁ ନ ଥିଲେ । ଦଶରଥ ସାହାଯ୍ୟ କରିବାକୁ ଯାଇ ଅସୁରମାନଙ୍କ ଦ୍ୱାରା କ୍ଷତବିକ୍ଷତ ହୋଇଥିଲେ । ଅସ୍ତ୍ର ଦ୍ୱାରା କ୍ଷତବିକ୍ଷତ, ଅଚେତନ ରାଜାଙ୍କୁ ତୁ ଯୁଦ୍ଧକ୍ଷେତ୍ରରୁ ନେଇଯାଇ ତାଙ୍କର ପ୍ରାଣରକ୍ଷା କରିଥିଲୁ । ସେତେବେଳେ ସନ୍ତୁଷ୍ଟ ହୋଇ ରାଜା ତୋତେ ଦୁଇଟି ବର ଦେବେ ବୋଲି କହିଥିଲେ । ତୁ କହିଲୁ ଯେତେବେଳେ ମୋର ଇଚ୍ଛାହେବ, ସେତେବେଳେ ଏହି ବର ମାଗିବି । ଏବେ ସେହି ବର ମାଗିବାର ବେଳ ଆସିଯାଇଛି । ଦୁଇଟି ବର ମାଗ – ରାମ ଚଉଦବର୍ଷ ବନକୁ ଯିବ ଏବଂ ଭରତ ଯୁବରାଜ ହେବ । ତୁ ରୁଷିବା ଘରକୁ ଯାଇ ମଇଳା ଲୁଗା ପିନ୍ଧି ଭୂଇଁରେ ଶୋଇରହ । ରାଜା ଆସିଲେ ତାଙ୍କ ଆଡ଼କୁ ଚାହିଁବୁ ନାହିଁ କି ତାଙ୍କୁ କଥା କହିବୁ ନାହିଁ । କେବଳ କାନ୍ଦୁଥିବୁ । ତୁ ସ୍ୱାମୀଙ୍କର ପ୍ରିୟତମା ରାଣୀ । ଦରକାର ପଡ଼ିଲେ ସେ ତୋ ପାଇଁ ହୁତାଶନରେ ପ୍ରବେଶ କରିବାପାଇଁ କୁଣ୍ଠାବୋଧ କରିବେ ନାହିଁ । ତୋର ପ୍ରିୟ କାର୍ଯ୍ୟ କରିବାପାଇଁ ସେ ନିଜର ପ୍ରାଣ ମଧ୍ୟ ଦେବାପାଇଁ ପ୍ରସ୍ତୁତ । ରାଜା ଦଶରଥ ତୋତେ ମଣି, ମୁକ୍ତା, ସୁବର୍ଣ୍ଣ ପ୍ରଭୃତି ଯେତେ ଯାହା ଧନରତ୍ନ ଦେବାକୁ ଚାହିଁବେ, ତୁ ତାହା ନେବୁ ନାହିଁ । ସେଇ ଦେବାସୁର ଯୁଦ୍ଧବେଳେ ତାଙ୍କର ଦୁଇଟି ବର କଥା ମନେପକାଇଦେବୁ । ଯେତେବେଳେ ଦଶରଥ ନିଜ ହାତରେ ତୋତେ ଉଠାଇ ବସାଇବେ ଓ ବର ମାଗିବାପାଇଁ କହିବେ, ସେତେବେଳେ ତୁ ତାଙ୍କୁ ପ୍ରତିଜ୍ଞା କରାଇ ଏହି ଦୁଇଟି ବର ମାଗିବୁ । ରାମ ଚଉଦବର୍ଷ ବନବାସରେ ରହିଲେ, ତୋର ପୁତ୍ର ଭରତ ନିଷ୍କଣ୍ଟକ ହୋଇ ରାଜ୍ୟଶାସନ କରିବ ଓ ପ୍ରଜାଙ୍କର ଅନୁରାଗ ଲାଭ କରି ରାଜପଦକୁ ଆହୁରି ଦୃଢ଼ କରିବ ।

ଅବିବାହିତା କିଶୋରୀ ବୃଦ୍ଧାବେଶ୍ୟାର କଥାରେ ପଡ଼ି ଯେପରି ବିପଥଗାମିନୀ ହୁଏ, କୈକେୟୀ ସେହିପରି ମନ୍ଥରାର ଅନର୍ଥକାରୀ ପ୍ରସ୍ତାବରେ ଭୁଲିଗଲେ । ସେ ମନ୍ଥରାକୁ କହିଲେ, ପୃଥିବୀରେ ଯେତେ କୁବ୍ଜା ଅଛନ୍ତି, ସମସ୍ତଙ୍କ ମଧ୍ୟରେ ତୁ ବୁଦ୍ଧିରେ ଶ୍ରେଷ୍ଠ । ତୁ ମୋର ଏକାନ୍ତ ହିତୈଷିଣୀ । ତୋତେ ଦେଖିଲେ, ପବନରେ ନଇଁ ପଡ଼ିଥିବା ପଦ୍ମଫୁଲଟିଏ ବୋଲି ମନେହୁଏ । ତୋର ଛାତି ଭିତରକୁ ପଶିଯିବା ସଙ୍ଗେ ସଙ୍ଗେ ଉପରକୁ ଉଠିଯାଇଛି । ଏହି ଉନ୍ନତ ସ୍କନ୍ଧକୁ ଦେଖି ତୋର ଉଦର ଯେପରି ଲଜ୍ଜାରେ କ୍ଷୀଣ ହୋଇଯାଇଚି । ତୁ ଚାଲିଲାବେଳେ ତୋର ସୁଗଠିତ ନିତମ୍ବ ଓ ପାଦ ଦୁଇଟି ବେଶ୍ ସୁନ୍ଦର ଦେଖାଯାଏ । ନିର୍ମଳ ଚନ୍ଦ୍ରପରି ତୋର ମୁହଁଟି ମଧ୍ୟ ସୁନ୍ଦର । ମାୟାବୀ ତିମିଧ୍ୱଜ ବା ଶମ୍ବରର କଥା ତୁ କହୁଥିଲୁ । ରାକ୍ଷସର ମାୟାଠାରୁ ତୋର ମାୟା ଓ ବିଦ୍ୟାବୁଦ୍ଧି ଯଥେଷ୍ଟ

ବେଶି । ରାମ ବନକୁ ଯାଇ ଭରତ ଯଦି ରାଜା ହୁଏ, ତାହେଲେ ତୋର କୁଜ ଉପରେ ମୁଁ ଏକ ସୁନାର ହାର ଲମ୍ୱାଇଦେବି । ଅନ୍ୟାନ୍ୟ ଦାସୀମାନେ ମଧ୍ୟ ତୋର ପଦସେବା କରିବେ ।

ମନ୍ଥରା କୈକେୟୀଙ୍କ ଦ୍ୱାରା ପ୍ରଶଂସିତ ହୋଇ ତାର ଉଦ୍ଦେଶ୍ୟ ସିଦ୍ଧ ହେଲାବୋଲି ଜାଣିଲା ।

କୈକେୟୀଙ୍କର ହୃଦୟ ଆହୁରି ବିଷାକ୍ତ ହେବାକୁ ଲାଗିଲା । ସେ ମନ୍ଥରାକୁ ପୁଣି ଡାକି କହିଲେ, ଦେଖ ମନ୍ଥରା, ମୋ ପାଇଁ ବର୍ତ୍ତମାନ ଦୁଇଟି ବାଟ । ହୁଏତ ରାମ ବନବାସକୁ ଯିବ ଓ ଭରତ ରାଜସମୃଦ୍ଧି ଲାଭ କରିବ କିମ୍ୱା ଚନ୍ଦନ, ଅଞ୍ଜନ, ପୁଷ୍ପହାର, ଅଳଙ୍କାର, ଏପରିକି ଶୟନ ଭୋଜନ ସବୁ କିଛି ପରିତ୍ୟାଗ କରି ମୁଁ ପ୍ରାଣ ବିସର୍ଜନ କରିବି । ତୁ ସେହି ଖବର ରାଜାଙ୍କୁ ଜଣାଇଦେବୁ ।

କୋପନସ୍ୱଭାବା କୈକେୟୀ ଏହା କହିବା ସଙ୍ଗେ ସଙ୍ଗେ ନିଜର ଅଳଙ୍କାର ସବୁ କାଢ଼ି ଥୋଇଦେଲେ ଏବଂ ଏକ ମଳିନବସ୍ତ୍ର ପରିଧାନ କରି ସ୍ୱର୍ଗଭ୍ରଷ୍ଟା କିନ୍ନରୀ ପରି ଭୂଇଁରେ ଶୋଇରହିଲେ । କ୍ରୁଦ୍ଧା ନାଗୁଣୀ ଯେପରି ଫୁତ୍କାର କରେ ସେ ସେହିପରି ଦୀର୍ଘ ଉଷ୍ଣ ନିଃଶ୍ୱାସ ପକାଇବାକୁ ଲାଗିଲେ ଏବଂ କ୍ରୋଧ ଓ ଅଭିମାନରେ ତାଙ୍କର ସୁନ୍ଦର ମୁଖମଣ୍ଡଳ ବିବର୍ଣ୍ଣ ଓ ଭ୍ରୂକୁଟିଦ୍ୱାରା କୁଟିଳ ଦେଖାଗଲା ।

## ୨୧ ।। ଦୁଇଟି ବର

କୈକେୟୀ ଥିଲେ ବୃଦ୍ଧ ରାଜା ଦଶରଥଙ୍କର ତରୁଣୀ ଭାର୍ଯ୍ୟା । ତେଣୁ ତାଙ୍କୁ ସନ୍ତୁଷ୍ଟ ରଖିବାପାଇଁ ସେ ସବୁ କିଛି କରୁଥିଲେ । କୈକେୟୀ ପୁଷ୍ପିତ ଉଦ୍ୟାନଶୋଭିତ ଏକ ମନୋରମ ପ୍ରାସାଦରେ ରହୁଥିଲେ । ଲତାକୁଞ୍ଜ, ଚିତ୍ରଗୃହ, ଅଶୋକ, ଚମ୍ପକ ଆଦି ପୁଷ୍ପିତ ବୃକ୍ଷ, ଗଜଦନ୍ତ, ରୌପ୍ୟ ଓ ସ୍ୱର୍ଣ୍ଣନିର୍ମିତ ରତ୍ନବେଦୀମାନ ସେଠାରେ ଶୋଭାପାଉଥିଲା । ଶୁକ, ମୟୂର, କ୍ରୌଞ୍ଚ ଓ ହଂସମାନେ କଳରବ କରୁଥିଲେ । ବାଦ୍ୟ ଓ ସଙ୍ଗୀତର ମଧୁର ଧ୍ୱନି ପବନରେ ଭାସି ଆସୁଥିଲା ।

ରାଜା ଦଶରଥ ସେଦିନ ମନର ଆନନ୍ଦରେ କୈକେୟୀଙ୍କ ବାସଭବନରେ ରାତ୍ରିଯାପନ କରିବାର ସ୍ଥିର କରି ତାଙ୍କର ପ୍ରିୟତମା ପତ୍ନୀଙ୍କୁ ରାମଙ୍କ ଅଭିଷେକର ଶୁଭ ସମ୍ୱାଦ ଦେବାପାଇଁ ଗଲେ । ମାତ୍ର କୈକେୟୀ ଯେପରି ତାଙ୍କୁ ସ୍ୱାଗତ କରିବାପାଇଁ ଚାଲିଆସନ୍ତି, ତାହା ଦେଖିଲେ ନାହିଁ । ଶୟନ କକ୍ଷରେ ପ୍ରବେଶ କରି ଦେଖନ୍ତି ଯେ କୈକେୟୀ ନାହାନ୍ତି । ରାଣୀ କୁଆଡ଼େ ଅଛନ୍ତି, ସେ ଖୋଜିବାକୁ ଲାଗିଲେ । ଜଣେ ପ୍ରତିହାରୀକୁ ଦେଖି ପଚାରିବାରୁ ସେ ହାତଯୋଡ଼ି ଥରି ଥରି କହିଲା— ମହାରାଜ, ରାଣୀ ଅତିଶୟ କ୍ରୁଦ୍ଧହୋଇ କ୍ରୋଧାଗାରେ ଯାଇ ଶୋଇଛନ୍ତି । ରାଜା ଧୂଳିଶଯ୍ୟାରେ ଦୀନହୀନଭାବରେ ଶୋଇଥିବା ନିଜର ପ୍ରିୟାପତ୍ନୀଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେ ତାଙ୍କୁ ହାତରେ ଉଠାଇ କୋମଳ

ସ୍ୱରରେ କହିଲେ, ଦେବୀ, ତୁମେ କାହିଁକି ଏପରି ଅନାଥ ଭାବରେ ଭୂଇଁରେ ଶୋଇଛ ? ତୁମର ଏହି କ୍ରୋଧ, ଦୁଃଖ ଓ ଅଭିମାନର କାରଣ କ'ଣ ? କିଏ ତୁମକୁ ଅପମାନିତ କରିଚି ? ଅଯୋଧ୍ୟା ରାଜ୍ୟର ଧନମାନ ଐଶ୍ୱର୍ଯ୍ୟ କ'ଣ ତୁମର ଦରକାର ? ମୁଁ ତୁମକୁ ସନ୍ତୁଷ୍ଟ କରିବାପାଇଁ ସବୁକିଛି କରିପାରେ ।

କୈକେୟୀ କିଛି ଉତ୍ତର ଦେଲେ ନାହିଁ । ରାଜାଙ୍କର ବହୁ ଅନୁନୟ ବିନୟ ଓ ଦୁଃଖ ଦେଖି ଶେଷରେ କହିଲେ – ମହାରାଜ, ମୁଁ କାହାରି ଦ୍ୱାରା ଅପମାନିତ ହୋଇ ନାହିଁ କିମ୍ବା କୌଣସି ଧନସମ୍ପତ୍ତି ପ୍ରତି ମୋର ଲାଳସା ନାହିଁ । କିନ୍ତୁ ମୋର ଏକ ମନୋଗତ ଅଭିଳାଷ ଅଛି, ଯାହା ତୁମେହିଁ କେବଳ ପୂରଣ କରିପାରିବ ।

ରାଜା ନିର୍ବିଚାରରେ କହିଲେ – ରାଣୀ, ତୁମର ଏପରି କ'ଣ ଅଭିଳାଷ ଅଛି, କହ । ମୁଁ ନିଶ୍ଚୟ ତାହା ପୂରଣ କରିବି ।

କୈକେୟୀ କହିଲେ, ନା, ସେପରି ହେବ ନାହିଁ । ତୁମକୁ ରୀତିମତ ଶପଥ କରିବାକୁ ହେବ ଯେ ତୁମେ ମୋର ଅଭିଳାଷ ପୂରଣ କରିବ ।

ସରଳମନା ରାଜା ଗର୍ବିଣୀ ପ୍ରିୟାଙ୍କୁ ସନ୍ତୁଷ୍ଟ କରିବାପାଇଁ କହିଲେ, ଠିକ୍ ଅଛି, ମୁଁ ପ୍ରତିଜ୍ଞା କରୁଚି, ମୁଁ ତୁମର ଇଚ୍ଛା ପୂରଣ କରିବି । ଏ ସଂସାରରେ ରାମଠାରୁ ବଳି ମୋର ଅଧିକ ପ୍ରିୟ କିଛି ନାହିଁ, ଯାହାକୁ ମୁହୂର୍ତ୍ତେ ନ ଦେଖିଲେ ମୁଁ ଜୀବିତ ରହିପାରେ ନାହିଁ । ସେହି ପ୍ରିୟ ପୁତ୍ର ରାମନାମରେ ମୁଁ ପ୍ରତିଜ୍ଞା କରୁଚି, ମୁଁ ନିଶ୍ଚୟ ତୁମର ଇଚ୍ଛା ପୂର୍ଣ୍ଣ କରିବି । ବର୍ତ୍ତମାନ ତୁମର ଅଭିଳାଷ ତୁମେ ନିଶ୍ଚିତ ଭାବରେ ବ୍ୟକ୍ତ କର ।

ପ୍ରଥମେ କୈକେୟୀଙ୍କୁ ଏକାକିନୀ ଭୂତଳଶଯ୍ୟାରେ ଶୋଇଥିବାର ଦେଖି ମନଦୁଃଖରେ ଦଶରଥ ତାଙ୍କୁ ଜାଲବିଦ୍ଧ ହରିଣୀ ସହିତ ତୁଳନା କରୁଥିଲେ । ବର୍ତ୍ତମାନ ଛଳନାମୟୀ ପ୍ରିୟାର କପଟଜାଲରେ ସେ ନିଜେ ଆବଦ୍ଧ ହୋଇଗଲେ । କୈକେୟୀ ଆନନ୍ଦରେ ଠିଆହୋଇପଡ଼ି କହିଲେ, ହେ ଦିଗପାଳଗଣ, ଚନ୍ଦ୍ର, ସୂର୍ଯ୍ୟ ଅଗ୍ନି ଆଦି ଦେବତାମାନେ, ଗ୍ରହ, ନକ୍ଷତ୍ର, ଆକାଶ, ପୃଥିବୀ, ଯକ୍ଷ, ରକ୍ଷ, ଗନ୍ଧର୍ବ ଓ ପ୍ରାଣୀଗଣ ସମସ୍ତେ ଶୁଣନ୍ତୁ, ଧର୍ମଜ୍ଞ ରାଜା ଆଜି ମୋତେ ବର ଦେଉଛନ୍ତି । ଯେଉଁ ରାଜା ନିଜ ସତ୍ୟରକ୍ଷାପାଇଁ ପ୍ରସିଦ୍ଧ, ସେହି ମହାତେଜା ସତ୍ୟସନ୍ଧ ଅଯୋଧ୍ୟାନରେଶ ଆଜି ମୋତେ ବର ଦେବାପାଇଁ ବଚନବଦ୍ଧ ।

ମୁଗ୍ଧ ହରିଣପରି କାମମୋହିତ ରାଜା ରାଣୀଙ୍କର ସେହି ବଚନବିଳାସରେ ମୁଗ୍ଧ ହୋଇ ତାଙ୍କ ଆଡ଼କୁ ବର ଦେବା ଇଚ୍ଛାରେ ଚାହିଁ ରହିଲେ । କୈକେୟୀ ମଧୁର ଅଥଚ ଦୃଢ଼ ସ୍ୱରରେ କହିଲେ – ରାଜା, ପୂର୍ବେ ଦେବାସୁର ଯୁଦ୍ଧରେ ଯାହା ଘଟିଥିଲା, ତୁମକୁ ମନେ ପକାଇ ଦେଉଚି । ଇନ୍ଦ୍ରଶତ୍ରୁ ଶମ୍ବରାସୁର ସହିତ ଲଢ଼ି ତୁମେ ଗୁରୁତର କ୍ଷତ-ବିକ୍ଷତ ଓ ଅଚେତନ ହୋଇପଡ଼ିଥିଲ । ସେତେବେଳେ ତୁମକୁ ସବୁବେଳେ ଜଗିରହି ବହୁ ଯତ୍ନ ଓ ସେବା ଶୁଶ୍ରୂଷା ପୂର୍ବକ ମୁଁ ତୁମକୁ ଆରୋଗ୍ୟ କରାଇଥିଲି । ସନ୍ତୁଷ୍ଟ ହୋଇ ସେତେବେଳେ ତୁମେ ଦୁଇଟି ବର ମାଗିବା ପାଇଁ ମୋତେ କହିଥିଲ । ମୁଁ କହିଲି, ସମୟ ଆସିଲେ ମୁଁ ସେ

ଦୁଇଟି ବର ମାଗିବି । ବର୍ତ୍ତମାନ ସେହି ସମୟ ଆସିଚି । ମୁଁ ନୂଆ କିଛି ତୁମକୁ ମାଗୁ ନାହିଁ । ତୁମର ସେହି ପୁରୁଣା ପ୍ରତିଶ୍ରୁତିକୁ ତୁମେ କାର୍ଯ୍ୟକାରୀ କର, ଏହା ମୁଁ ଚାହେଁ । ଧର୍ମଜ୍ଞ ରାଜା, ଯଦି ତୁମେ ପ୍ରତିଶ୍ରୁତି ପାଳନ ନ କର, ତା'ହେଲେ ମୁଁ ନିଶ୍ଚୟ ପ୍ରାଣତ୍ୟାଗ କରିବି ।

ବିମୁଗ୍ଧ ରାଜା ଉତ୍ତର ଦେଲେ, ମୋର ସେହି ପୂର୍ବ ପ୍ରତିଶ୍ରୁତି ମନେଅଛି । ମୁଁ ନିଶ୍ଚୟ ତାହା ପାଳନ କରିବି । ଯାହା ବର ମାଗିବାର କଥା ମାଗ । ପାଶବଦ୍ଧ ମୃଗ ମୃତ୍ୟୁକୁ ଅପେକ୍ଷା କରିବା ପରି ରାଜାଙ୍କ ପାଖରେ ଆଉ କୌଣସି ଉପାୟ ନ ଥିଲା ।

କୈକେୟୀ କହିଲେ, ଦୁଇଟି ବର ମାଗୁଚି ଶୁଣ । ପ୍ରଥମ ବର – ରାମର ଅଭିଷେକ ପାଇଁ ଯେଉଁସବୁ ଆୟୋଜନ ହେଉଚି, ତାହା ରାମ ପରିବର୍ତ୍ତେ ଭରତର ଅଭିଷେକ ପାଇଁ ହେଉ । ମୋର ଦ୍ୱିତୀୟ ବର ହେଉଚି, ରାମ ଜଟା, ବଳ୍କଳ ଓ ମୃଗଚର୍ମ ଧାରଣ କରି ତପସ୍ୱୀଭାବରେ ଚଉଦବର୍ଷ ଦଣ୍ଡକାରଣ୍ୟରେ ବନବାସ କରୁ । ଭରତ ନିଷ୍କଣ୍ଟକ ହୋଇ ଯୁବରାଜପଦ ଲାଭ କରୁ । ରାମ ଆଜି ଯେପରି ବନକୁ ଯିବ, ତାହା ମୁଁ ଦେଖିବାକୁ ଚାହେ । ମହାରାଜ, ତୁମେ ସତ୍ୟଭ୍ରଷ୍ଟ ହୁଅ ନାହିଁ । ଇକ୍ଷ୍ୱାକୁବଂଶର ମର୍ଯ୍ୟାଦାକୁ ଦୃଷ୍ଟିରେ ରଖି ନିଜର ବାକ୍ୟ ରକ୍ଷାକର ।

କୈକେୟୀଙ୍କର ନିଷ୍ଠୁର ବଚନ ଶୁଣି ଦଶରଥ ପ୍ରଥମେ କିଛି ଚିନ୍ତା କରିପାରିଲେ ନାହିଁ । ଦିବାସ୍ୱପ୍ନ ଦେଖୁଥିବା ପରି ତାଙ୍କର ମନେ ହେଲା । ବାଘୁଣୀର ମୁହାଁମୁହିଁ ହେଲେ ମୃଗର ଯେପରି ଅବସ୍ଥା ହୁଏ, ମନ୍ତ୍ରରୁଦ୍ଧ ବିଷଧର ସର୍ପ କ୍ରୁଦ୍ଧ ହେଲେ ମଧ ଯେପରି କିଛି କରିପାରେ ନାହିଁ, ରାଜା ଦଶରଥଙ୍କର ଠିକ୍ ସେଇ ଅବସ୍ଥା ହେଲା । ସେ ନିଜକୁ ଧିକ୍କାର କରି ଘୋରଶୋକରେ ମୂର୍ଚ୍ଛିତ ହୋଇ ପଡ଼ିଗଲେ ।

କିଛି ସମୟ ପରେ ରାଜା ସଂଜ୍ଞା ଲାଭ କରି କ୍ରୁଦ୍ଧ ସ୍ୱରରେ କୈକେୟୀଙ୍କୁ ଅନାଇ କହିଲେ, ନୃଶଂସ ଦୁଷ୍ଟଚରିତ୍ରା କୁଳନାଶିନୀ ପାପୀୟସୀ, ରାମ ତୋର କି ଦୋଷ କରିଚି ? ମୁଁ ବା ତୋର କି ଅପରାଧ କରିଚି ? ରାମ ସର୍ବଦା ଜନନୀତୁଲ୍ୟ ତୋର ସେବାକରେ । ତୁ ପୁଣି ତାର ଅନିଷ୍ଟ କରିବାପାଇଁ ବାହାରିଚୁ । ତୁ ରାଜକନ୍ୟା ନୁହଁ, ବିଷଧର ସର୍ପିଣୀ, ତୋତେ ଏ ଗୃହକୁ ଆଣି ମୋର ବିନାଶକୁ ମୁଁ ବରଣ କରି ଆଣିଚି । ସମସ୍ତ ଲୋକ ରାମର ଗୁଣକୀର୍ତ୍ତନ କରୁଥିବାବେଳେ କେଉଁ ଅପରାଧ ପାଇଁ ମୁଁ ମୋର ପ୍ରିୟପୁତ୍ରକୁ ପରିତ୍ୟାଗ କରିବି ? କୌଶଲ୍ୟା, ସୁମିତ୍ରା ବା ଅଯୋଧ୍ୟାର ରାଜଲକ୍ଷ୍ମୀକୁ ମୁଁ ଛାଡ଼ିଦେଇପାରେ, କିନ୍ତୁ ପିତୃବତ୍ସଳ ରାମକୁ ମୁଁ ଛାଡ଼ିପାରିବି ନାହିଁ । ସୂର୍ଯ୍ୟବିନା ସଂସାର ରହିପାରେ, ଜଳବିନା ଶସ୍ୟ ବଞ୍ଚିପାରେ; କିନ୍ତୁ ରାମବିହୁନରେ ମୁଁ ମୁହୂର୍ତ୍ତେ ବଞ୍ଚିପାରିବି ନାହିଁ ।

କିନ୍ତୁ ବରଦେବାପାଇଁ ପ୍ରତିଶ୍ରୁତିବଦ୍ଧ ହୋଇଥିବା ଯୋଗୁଁ ରାଜା ସଙ୍ଗେ ସଙ୍ଗେ ବିନୟ ହୋଇ କହିଲେ, କୈକେୟୀ, ତୋ ପାଦରେ ମୁଣ୍ଡ ରଖି ମୁଁ ତୋତେ ମୁଣ୍ଡିଆ ମାରୁଚି, ଏପରି ନିଷ୍ଠୁର କଥା ତୁ କହ ନାହିଁ । ସବୁବେଳେ ତୁ ମୋତେ କହିଆସିଚୁ, ତୋ' ପାଇଁ ରାମ ଓ ଭରତ ଉଭୟ ସମାନ । ଭରତ ଅପେକ୍ଷା ରାମ ସବୁବେଳେ ତୋର ଅଧିକ ସେବା କରେ । ତୋର ଆଜ୍ଞାବହ ହୋଇ ରହିଥାଏ । ସେହି ସୁକୁମାର ରାମକୁ ଶ୍ୱାପଦସଙ୍କୁଳ

ବନକୁ ପଠାଇବାପାଇଁ ତୁ କ'ଣ ପ୍ରକୃତରେ ଚାହୁଁଚୁ ? ନା ତୋର ମାନସିକ ବିକାର ଘଟିଚି ?

ଦଶରଥ ପୁଣି କହିଲେ – କୈକେୟୀ, ତୁ ମୋପ୍ରତି ସଦୟ ହୁଅ । ମୁଁ ବୃଦ୍ଧ, ମୋର ଶେଷକାଳ ଉପସ୍ଥିତ । ଏହି ସସାଗରା ପୃଥିବୀରେ ତୁ ଯାହା ଚାହିଁବୁ, ମୁଁ ଦେବାପାଇଁ ପ୍ରସ୍ତୁତ ଅଛି । ମୁଁ କୃତାଞ୍ଜଳି ହୋଇ ତୋର ପାଦସ୍ପର୍ଶ କରୁଚି । ତୁ ରାମକୁ ଆଶ୍ରୟ ଦେଇ ମୋତେ ଘୋର ଅଧର୍ମରୁ ରକ୍ଷାକର ।

ରାଜା ଏହିପରି ଦୀନଭାବରେ ବିଳାପ କରିବାକୁ ଲାଗିଲେ । ମଝିରେ ମଝିରେ ସେ ମୂର୍ଚ୍ଛା ହୋଇଯାଉଥାନ୍ତି । ପୁଣି କୈକେୟୀଙ୍କୁ ପ୍ରାର୍ଥନା କରିବାରେ ଲାଗୁଥାନ୍ତି । କିନ୍ତୁ କୈକେୟୀଙ୍କର ନିଷ୍ଠୁର ହୃଦୟରେ କୌଣସି ପରିବର୍ତ୍ତନ ହେଲା ନାହିଁ । ସେ ଆହୁରି କଠୋରଭାବରେ କହିଲେ – ରାଜା, ତୁମେ ଆଗରୁ ବରଦେଇ ବର୍ତ୍ତମାନ ଯଦି ଅନୁତାପ କରୁଥାଅ, ଏହି ଅଧର୍ମ ଆଚରଣ ପାଇଁ ଲୋକ ତୁମକୁ ନିନ୍ଦା କରିବେ । ଯେଉଁ କୈକେୟୀର ଅନୁଗ୍ରହରୁ ତାର ସେବା ଶୁଶ୍ରୂଷା ଫଳରେ ତୁମେ ଜୀବିତ ଅଛ, ତା' ପ୍ରତି ତୁମେ ମିଥ୍ୟାଚରଣ କରି ଦୁନିଆ ଆଗରେ କି ଉତ୍ତର ଦେବ, କହ ? ତୁମେ ନିଜ ବଂଶ ଓ ରାଜକୁଳର କଳଙ୍କ ହୁଅ ନାହିଁ । ଏ ସଂସାର ସତ୍ୟ ଓ ଧର୍ମରେ ଚାଲିଚି । ତା' ନ ହେଲେ ସମୁଦ୍ର ବେଳାଭୂମି ଲଂଘନ କରିଯାନ୍ତା । ତୁମର ପ୍ରତିଶ୍ରୁତିରେ ବ୍ୟତିକ୍ରମ ହୋଇ ନ ପାରେ । ମୁହୂର୍ତ୍ତକ ପାଇଁ ମଧ ମୁଁ କୌଶଲ୍ୟାକୁ ରାଜମାତା ରୂପେ ଦେଖିବାକୁ ଚାହେ ନାହିଁ । ରାମ ବନକୁ ଗଲେ ହିଁ ମୁଁ କେବଳ ସନ୍ତୁଷ୍ଟ ହେବି । ନଚେତ୍ ଭରତ ନାମରେ ମୁଁ ଶପଥ କରୁଚି, ତୁମରି ଆଗରେ ବିଷପାନ କରି ଆତ୍ମହତ୍ୟା କରିବି । ଏହା କହି କୈକେୟୀ ନୀରବ ହେଲେ ଓ ଶୋକାକୁଳ ରାଜାଙ୍କୁ ଆଉ କଥା କହିଲେ ନାହିଁ ।

ଦଶରଥ ନିଷ୍ଠୁର ରାଣୀର ମୁହଁକୁ କିଛି ସମୟ ଚାହିଁଲେ ଓ ଦୀର୍ଘନିଃଶ୍ୱାସ ପକାଇ ଛିନ୍ନମୂଳ ବୃକ୍ଷପରି ପୁଣି ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ପରେ ପୁଣି ସଂଜ୍ଞା ଲାଭ କରି ଅତି ଦୀନ ଓ ଆତୁର ଭାବରେ କହିଲେ – କୈକେୟୀ, ପୁଣି ଥରେ ଚିନ୍ତା କର, ତୋର ଇଚ୍ଛା ପୂର୍ଣ୍ଣ ହେଲେ ତୋର ସ୍ୱାମୀର, ଭରତର, ଜନସାଧାରଣଙ୍କର – କାହାର ଲାଭ ହେବ ? ରାମକୁ ବାଦ ଦେଇ ଭରତ କେବେହେଲେ ରାଜ୍ୟ ଗ୍ରହଣ କରିବ ନାହିଁ । କାରଣ ଧର୍ମାଚରଣରେ ସେ ରାମଠାରୁ ଅଧିକ ବୋଲି ମୁଁ ମନେ କରେ । ସମସ୍ତଙ୍କ ପରାମର୍ଶରେ ରାମକୁ ରାଜା କରିବାପାଇଁ ମୁଁ ମୋର ନିଷ୍ପତ୍ତିର ଯଦି ପରିବର୍ତ୍ତନ କରେ, ତା' ହେଲେ ଲୋକେ ମୋତେ ବାଳକଠାରୁ ମଧ ହୀନ ବୋଲି କହିବେ । ସେମାନେ କହିବେ, ଦଶରଥ ସ୍ତ୍ରୈଣ, କାମୁକ, ସ୍ତ୍ରୀ କଥାରେ ପ୍ରିୟପୁତ୍ରକୁ ବନକୁ ପଠାଇଲା । ଯେଉଁ କୌଶଲ୍ୟା ମୋତେ ଦାସୀ, ସଖୀ, ଭାର୍ଯ୍ୟା, ଭଗିନୀ ଓ ମାତାପରି ସେବାକରି ଆସିଚି, ତାକୁ ମୁଁ କ'ଣ କହି ସାନ୍ତ୍ୱନା ଦେବି ? ରାମ ବନକୁ ଗଲେ ଏକାକିନୀ ଜନକନନ୍ଦିନୀର କି ଅବସ୍ଥା ହେବ ? ତୋର କାର୍ଯ୍ୟଫଳରେ ସ୍ତ୍ରୀଜାତିକୁ ଲୋକେ ଶଠ ଓ ସ୍ୱାର୍ଥପର ବୋଲି ନିନ୍ଦା କରିବେ । ତୁ କ'ଣ କରିବାକୁ ଯାଉଚୁ, ଆହୁରି ଥରେ ଚିନ୍ତାକର ।

କୈକେୟୀ ଉତ୍ତର ଦେଲେ – ରାଜା, ତୁମେ ନିଜକୁ ସତ୍ୟସନ୍ଧ ଓ ଦୃଢ଼ବ୍ରତ ବୋଲି କହ, ବର୍ତ୍ତମାନ କ'ଣ ବର ଦେଇ ଫେରାଇ ନେବାକୁ ଚାହ ? ଦଶରଥ ଦୀନ ଭାବରେ କହିଲେ, ମୁଁ ଅପୁତ୍ରକ ଥିଲି । ବହୁ କଷ୍ଟରେ ମୁଁ ରାମକୁ ଲାଭ କରିଛି । ସେହି ଶୂର, ବୀର, କୃତବିଦ୍ୟ, ଜିତକ୍ରୋଧ, କ୍ଷମାଶୀଳ, କମଳପତ୍ରାକ୍ଷ, ଇନ୍ଦୀବରଶ୍ୟାମ, ନୟନାଭିରାମ ରାମକୁ ମୁଁ କିପରି ଦଣ୍ଡକାରଣ୍ୟରେ ନିର୍ବାସିତ କରିବି ?

ଏହିପରି ଦଶରଥ ଶୋକ କରୁ କରୁ ସୂର୍ଯ୍ୟାସ୍ତ ହୋଇଗଲା ଏବଂ ରାତ୍ରି ଚନ୍ଦ୍ରମଣ୍ଡଳରେ ମଣ୍ଡିତ ହେଲା । କିନ୍ତୁ ରାଜାଙ୍କୁ ତାହା ସୁଖକର ବୋଧ ହେଲାନାହିଁ । ସେ ଆଗାମୀ ପ୍ରଭାତର କଥା ଚିନ୍ତାକରି ବ୍ୟଥିତ ହେବାକୁ ଲାଗିଲେ । ତାଙ୍କର ହୃଦୟ ଏପରି ଶୋକାର୍ତ୍ତ ଓ ମନ ବିକ୍ଷୁବ୍ଧ ଥିଲା ଯେ ନକ୍ଷତ୍ରଖଚିତ ନଭୋମଣ୍ଡଳକୁ ଅନାଇ କହିଲେ, ହେ ରାତ୍ରି, ତୁମେ ଶୀଘ୍ର ପ୍ରଭାତ ହୁଅ, ଏହା ମୁଁ ଚାହେଁ ନାହିଁ । ମୁଁ କରଯୋଡ଼ି ନିବେଦନ କରୁଛି, ତୁମେ ମୋତେ ଦୟାକର । ପର ମୁହୂର୍ତ୍ତରେ ବାତାଳଙ୍କପରି ପୁଣି କହିଲେ, ନା, ନା, ରଜନୀ, ତୁମେ ଶୀଘ୍ର ଚାଲିଯାଅ । ମୁଁ ଏହି ନିର୍ଦ୍ଦୟ ନାରୀର ମୁଖ ଆଉ ଦେଖିବାକୁ ଚାହେ ନାହିଁ ।

କିଛି ସମୟ ପରେ ପୁଣି କରୁଣଭାବରେ ବିଳାପ କରି କୈକେୟୀଙ୍କୁ ସମ୍ବୋଧନ କରି କହିଲେ, ଭଦ୍ରେ, ତୁମେ ପ୍ରସନ୍ନ ହୁଅ । ମୁଁ ଏତେ କରି କହୁଛି, ମୋ କଥା ଟିକିଏ ଶୁଣ । ଏ ରାଜ୍ୟ ତୁମର ହେଲା । କିନ୍ତୁ ରାମକୁ ଏହା ଦାନ କରି ତୁମେ ଅକ୍ଷୟ ଯଶ ଅର୍ଜନ କର । ମୋର, ରାମର, ସମଗ୍ର ପୃଥିବୀର, ଗୁରୁଜନମାନଙ୍କର ତଥା ଭରତର ତୁମେ ପ୍ରିୟ ହୁଅ ।

କାନ୍ଦି କାନ୍ଦି ଦଶରଥଙ୍କର ଚକ୍ଷୁ ରକ୍ତବର୍ଣ୍ଣ ହୋଇଗଲା । କିନ୍ତୁ କୈକେୟୀ କୌଣସି ଉତ୍ତର ଦେଲେ ନାହିଁ । କ୍ରମେ ରାତ୍ରି ଶେଷ ହୋଇ ପ୍ରଭାତ ହେବାକୁ ବସିଲା । ବନ୍ଦୀ (ଭାଟ) ମାନେ ରାଜାଙ୍କର ନିଦ ଭାଙ୍ଗିବାପାଇଁ ଉଚ୍ଚସ୍ୱରରେ ସ୍ତୁତିପାଠ କରିବାରୁ ରାଜା ସେମାନଙ୍କୁ ନିବାରଣ କଲେ ।

କୈକେୟୀ କହିଲେ – ମହାରାଜ, ତୁମେ ମୋତେ ପ୍ରତିଶ୍ରୁତି ଦେଇ କାହିଁକି ତାହା ପାଳନ ନ କରି ଏପରି ଭୂଇଁରେ ଗଡୁଛ ? ତୁମେ ଧର୍ମଜ୍ଞ ବୋଲି ଗର୍ବ କର । କିନ୍ତୁ ଧର୍ମ ସତ୍ୟ ଉପରେ ପ୍ରତିଷ୍ଠିତ । ସତ୍ୟପାଳନ ନ କରି କେହି ଧର୍ମରକ୍ଷା କରିପାରେ ନାହିଁ । ତୁମେ ସତ୍ୟ ଭଙ୍ଗ କଲେ, ମୁଁ ପୁଣି ଥରେ କହୁଛି, ତୁମରି ଆଗରେ ପ୍ରାଣତ୍ୟାଗ କରିବି ।

ଦଶରଥଙ୍କ ସମସ୍ତ କ୍ରୋଧ, ଅନୁନୟ-ବିନୟ ବ୍ୟର୍ଥ ହେଲା । ବରରୂପକ ନାଗପାଶରୁ ସେ ନିଜକୁ ମୁକ୍ତ କରିପାରିଲେ ନାହିଁ । ସେ ଦୁଃଖରେ କହିଲେ, ପାପିନୀ, ମୁଁ ଅଗ୍ନି ଆଗରେ ମନ୍ତ୍ର ଉଚ୍ଚାରଣ କରି ତୋର ପାଣି ଗ୍ରହଣ କରିଥିଲି । ବର୍ତ୍ତମାନ ମୁଁ ତୋତେ ଓ ତୋର ପୁତ୍ରକୁ ପରିତ୍ୟାଗ କରୁଛି । ରାତ୍ରି ଶେଷ ହୋଇ ପ୍ରଭାତ ହେଲାଣି । ଅଭିଷେକ ପାଇଁ ଯେଉଁସବୁ ଉପକରଣ ସଂଗୃହୀତ ହୋଇଛି, ତାହା ମୋର ମୃତାହ କ୍ରିୟାରେ ଲାଗିବ ।

କୈକେୟୀ କଠୋର ଭାବରେ କହିଲେ – ମହାରାଜ, ଯାହା ତୁମର କରିବାର କଥା ନ କରି ଏଣୁ ତେଣୁ କହିବାର କୌଣସି ମୂଲ୍ୟ ନାହିଁ । ଶୀଘ୍ର ରାମଙ୍କୁ ଡକାଇ ବନକୁ ପଠାଇ

ଦିଅ । ମୋର ପୁତ୍ରକୁ ଯୁବରାଜ ପଦରେ ପ୍ରତିଷ୍ଠିତ କରି ନିଷ୍କଣ୍ଟକ ରାଜ୍ୟ ଭୋଗର ସୁଯୋଗ ଦିଅ ।

ଅଶ୍ୱ ଯେପରି ତୀକ୍ଷ୍ଣ କଶାଘାତ ଦ୍ୱାରା ବଶୀଭୂତ ହୁଏ, ସେହିପରି ରାଜା ଦଶରଥ କୈକେୟୀଙ୍କ କଠୋର ବାକ୍ୟବାଣରେ ଅନନ୍ୟୋପାୟ ହୋଇ କହିଲେ, ମୁଁ ଧର୍ମବନ୍ଧନରେ ଆବଦ୍ଧ । ମୋର ଚେତନା ନଷ୍ଟ ହୋଇଛି । ବର୍ତ୍ତମାନ ମୋର ପ୍ରିୟ ରାମଙ୍କୁ ମୁଁ ଦେଖିବାକୁ ଇଚ୍ଛାକରେ ।

ପ୍ରଭାତ ହେବାରୁ ଅଭିଷେକର ମୁହୂର୍ତ୍ତକୁ ଆଖି ଆଗରେ ରଖି ମହର୍ଷି ବଶିଷ୍ଠ, ଋଷି ଓ ବ୍ରାହ୍ମଣମାନଙ୍କ ସହ ରାଜପୁରୀରେ ଉପସ୍ଥିତ ହେଲେ । ରାମାଭିଷେକ ଦେଖିବା ପାଇଁ ସମଗ୍ର ଅଯୋଧ୍ୟା ଯେପରି ଉଦ୍‌ଗ୍ରୀବ ଭାବରେ ଅପେକ୍ଷା କରି ରହିଥିଲା । ବିଶାଳ ଜନସମୁଦ୍ରକୁ ଅତିକ୍ରମ କରି ବଶିଷ୍ଠ ସୁମନ୍ତ୍ରଙ୍କୁ ଡାକି କହିଲେ, ରାଜାଙ୍କୁ ଖବର ଦିଅ, ଶୀଘ୍ର ଅଭିଷେକ ପାଇଁ ପ୍ରସ୍ତୁତ ହୋଇଯିବେ, ଯେପରିକି ଶୁଭ ମୁହୂର୍ତ୍ତ ଗଡ଼ି ନ ଯାଏ ।

## ୨୨ ।। ପିତୃସତ୍ୟ ପାଳନ

ରାଜଭବନରେ ସୁମନ୍ତ୍ରଙ୍କର ଅବାରିତ ପ୍ରବେଶ ଥିଲା । ସେ କୈକେୟୀଙ୍କ ଭବନକୁ ଯାଇ କୃତାଞ୍ଜଳି ହୋଇ କହିଲେ– ମହାରାଜ, ସୂର୍ଯ୍ୟୋଦୟରେ ଯେପରି ସାଗର ଆଲୋକିତ ହୋଇ ଆନନ୍ଦ ବର୍ଦ୍ଧନ କରେ, ଆପଣ ସେହିପରି ପ୍ରଜାମାନଙ୍କୁ ଦର୍ଶନ ଦେଇ ଆନନ୍ଦିତ କରାନ୍ତୁ । ଅଭିଷେକର ଆୟୋଜନ ସଂପୂର୍ଣ୍ଣ ହୋଇଚି । ବେଦଜ୍ଞ ବ୍ରାହ୍ମଣମାନଙ୍କ ସହିତ ସ୍ୱୟଂ ବଶିଷ୍ଠ ଅପେକ୍ଷା କରି ରହିଛନ୍ତି । ପୁର ଓ ଜନପଦବାସୀମାନେ ସମସ୍ତେ ଆପଣଙ୍କୁ ଅପେକ୍ଷା କରିଛନ୍ତି ।

ଶୋକାର୍ତ୍ତ ଆରକ୍ତନୟନ ଦଶରଥ ଉତ୍ତର ଦେଲେ, ସୁମନ୍ତ୍ର ତୁମର କଥା ମୋର ମର୍ମସ୍ଥଳ ଛେଦନ କରୁଚି । ରାଜାଙ୍କର ଦୁଃଖ ଦେଖି ଓ ତାଙ୍କର କରୁଣ ସ୍ୱର ଶୁଣି ସୁମନ୍ତ୍ର ଅବାକ୍ ହୋଇ ଅଳ୍ପ ଦୂରରେ ଠିଆ ହୋଇ ରହିଲେ ।

ବାକ୍‌ପଟୁ କୈକେୟୀ ସୁମନ୍ତ୍ରଙ୍କୁ ଅଧିକ ଭାବିବାକୁ ନ ଦେଇ କହିଲେ, ରାଜା ରାମଙ୍କର ଅଭିଷେକ ପାଇଁ ଉତ୍ସୁକ ହୋଇ ସମସ୍ତ ରାତ୍ରି ସେହି ବିଷୟ ଆଲୋଚନା କରୁଥିଲେ । ତେଣୁ ଜାଗ୍ରତ ଥିବା ଯୋଗୁଁ ସେ କ୍ଳାନ୍ତି ଅନୁଭବ କରୁଛନ୍ତି । ତୁମେ ରାଜକୁମାର ରାମଙ୍କୁ ଏଠାକୁ ଡାକିଆଣ । ଅପେକ୍ଷାକରି ଆଉ ବିଳମ୍ବ କର ନାହିଁ ।

ସୁମନ୍ତ୍ର ଭାବିଲେ, ଅଭିଷେକ ସଂପର୍କରେ କିଛି କହିବାକୁ ଅଛି, ସେଥିପାଇଁ ରାଜା ରାମଙ୍କୁ ଡକାଇଛନ୍ତି । ତେଣୁ ସେ ଶୀଘ୍ର ବାହାରି ଆସିଲେ । ଦେଖିଲେ, ଦ୍ୱାରଦେଶରେ ବିପୁଳ ଜନସମାଗମ ହୋଇଚି । ଋଷି, ବ୍ରାହ୍ମଣ, ମନ୍ତ୍ରୀ, ଅମାତ୍ୟ, ମୁଖ୍ୟ ସେନାପତି ଏବଂ ଶ୍ରେଷ୍ଠୀ ଓ ବଣିକମାନେ ଅଭିଷେକ ଦେଖିବା ପାଇଁ ସେହି ଜନଗହଳି ମଧ୍ୟରେ ଉପସ୍ଥିତ ଅଛନ୍ତି । ଅଭିଷେକ ପାଇଁ ସମସ୍ତ ବସ୍ତୁ ଆୟୋଜିତ ହୋଇ ରହିଚି । ବ୍ୟାଘ୍ରଚର୍ମରେ

ଆଚ୍ଛାଦିତ ରଥ, ସୁବର୍ଣ୍ଣ କୁମ୍ଭ, ପ୍ରୟାଗରୁ ଆନୀତ ପବିତ୍ର ଜଳ ଓ ପ୍ରସିଦ୍ଧ ହ୍ରଦ, ନଦୀ, କୂପ, ପୁଷ୍କରିଣୀ, ତିର୍ଯ୍ୟକବାହିନୀ ନିର୍ଝରିଣୀ ଓ ବିଭିନ୍ନ ସମୁଦ୍ରରୁ ଜଳ ଅଣାଯାଇଛି । ସୁବର୍ଣ୍ଣ ଓ ରୌପ୍ୟନିର୍ମିତ ଜଳକୁମ୍ଭମାନଙ୍କରେ ପଦ୍ମ ଓ ନୀଳୋତ୍ପଳମାନ ଶୋଭାପାଉଚି । ମଧୁ, ଦଧି, ଘୃତ, ଲାଜା, କୁଶ, ପୁଷ୍ପ, ରତ୍ନନିର୍ମିତ ଶ୍ୱେତଚାମର, ଶ୍ୱେତଛତ୍ରମାନ ରଖାଯାଇଚି । ଶୁକ୍ଳବର୍ଣ୍ଣ ବୃଷଭ ଓ ଶ୍ୱେତ ଅଶ୍ୱମାନେ ସଜ୍ଜିତ ହୋଇ ରହିଛନ୍ତି । ରାମଙ୍କୁ ନେବାପାଇଁ ଏକ ସୁନ୍ଦର ଆସ୍ତରଣ ଶୋଭିତ ହସ୍ତୀ ମଧ ଅପେକ୍ଷା କରି ରହିଚି । ବନ୍ଦୀ, ଚାରଣ, ଗାୟିକା, ଗଣିକାମାନେ ବିଭିନ୍ନ ବାଦ୍ୟ ସହ ସମବେତ ହୋଇଛନ୍ତି ।

ସୁମନ୍ତ୍ରଙ୍କୁ ଫେରିଆସିବା ଦେଖି ବଶିଷ୍ଠ କହିଲେ, ସୂର୍ଯ୍ୟୋଦୟ ହେଲାଣି । ଅଭିଷେକ ସାମଗ୍ରୀ ପ୍ରସ୍ତୁତ ହୋଇ ରହିଚି । ଏ ପର୍ଯ୍ୟନ୍ତ ରାଜାଙ୍କର ଦେଖା ନାହିଁ । ସୁମନ୍ତ୍ର, ତୁମେ ରାଜାଙ୍କୁ ଡାକୁନାହଁ କାହିଁକି ? ସୁମନ୍ତ୍ର ଦ୍ୱିଧାରେ ପଡ଼ିଲେ । ସେ କୈକେୟୀଙ୍କ ମୁହଁରୁ ରାଜାଙ୍କ ଅଭିପ୍ରାୟ ଜାଣି ରାମଙ୍କୁ ଡାକିବାକୁ ଯାଉଥିଲେ, ଏଣେ ଉଦ୍‌ଗ୍ରୀବ ପୁରବାସୀମାନେ ରାଜାଙ୍କୁ ଦେଖିବା ପାଇଁ ବ୍ୟାକୁଳ ହେଉଥା'ନ୍ତି । ସେ ପୁଣି ଥରେ କୈକେୟୀଙ୍କ କକ୍ଷକୁ ଯାଇ ଦଶରଥଙ୍କୁ ଉଠିବା ପାଇଁ ନିବେଦନ କଲେ । ଏଥର ନିଜେ ରାଜା ଶେଯରୁ ଉଠି କହିଲେ– ସୁମନ୍ତ୍ର, କୈକେୟୀ ତୁମକୁ କହିଥିଲେ ରାମଙ୍କୁ ଡାକି ଆଣିବା ପାଇଁ । ମୁଁ ଶୋଇ ନାହିଁ । ମୁଁ ରାମଙ୍କୁ ଦେଖିବାକୁ ଚାହେଁ । ତୁମେ ବିଳମ୍ବ ନ କରି ମୋର ଆଜ୍ଞା ପାଳନ କର ।

ସୁମନ୍ତ୍ର ରଥ ଘେନି ଦ୍ରୁତବେଗରେ ରାମଙ୍କ ଭବନରେ ପହଞ୍ଚିଲେ । ରାମଙ୍କର ଭବନ ଅତ୍ୟନ୍ତ ସୁନ୍ଦର ଥିଲା । ଏବେ ଅଭିଷେକ ପାଇଁ ତାହା ଅଧିକ ସୁସଜ୍ଜିତ ହୋଇ ଆନନ୍ଦ ବର୍ଦ୍ଧନ କରୁଥିଲା । ଅଗୁରୁ ଓ ଧୂପରେ ଆମୋଦିତ, ମଣିମାଣିକ୍ୟ ଖଚିତ ରାମଙ୍କ ଭବନ ସମ୍ମୁଖରେ ଅଯୋଧ୍ୟାନଗର ଓ ଦୂରଦୂରାନ୍ତରରୁ ଗ୍ରାମବାସୀ ଓ ନଗରବାସୀ ବୃନ୍ଦ ବିଭିନ୍ନ ଉପହାରମାନ ଧରି ରାମଙ୍କର ଦର୍ଶନ ପାଇଁ ଉପସ୍ଥିତ ଥିଲେ । ଅନ୍ତଃପୁର ଦ୍ୱାର ଅତିକ୍ରମ କରି ସୁମନ୍ତ୍ର ଦେଖିଲେ ଯେ ଉଜ୍ଜ୍ୱଳ କୁଣ୍ଡଳଶୋଭିତ ବର୍ଚ୍ଛା ଓ କାର୍ମୁକଧାରୀ ଯୁବକଗଣ ସେଠାରେ ଜଗି ରହିଛନ୍ତି । ସେମାନଙ୍କ ପରେ ଅଳଙ୍କାର ଓ ଗୈରିକ ବସ୍ତ୍ର ପରିଧାନ କରିଥିବା ବେତ୍ରହସ୍ତ ବୃଦ୍ଧମାନେ ପହରା ଦେଉଛନ୍ତି । ସେମାନେ ସସଂଭ୍ରମ ସୁମନ୍ତ୍ରଙ୍କୁ ନେଇ ରାମଙ୍କ କକ୍ଷରେ ପହଞ୍ଚାଇ ଦେଲେ । ସେଠାରେ ବରାହରୁଧିର ପରି ରକ୍ତବର୍ଣ୍ଣ ଚନ୍ଦନ ଲେପିତ, ହାରମାଲ୍ୟଭୂଷିତ ରାମଚନ୍ଦ୍ର ଚାମରଧାରିଣୀ ସୁନ୍ଦରୀ ସୀତାଙ୍କ ସହିତ ଏକ ସୁବର୍ଣ୍ଣ ପଲଙ୍କ ଉପରେ ବସି ସ୍ୱାତୀ ନକ୍ଷତ୍ରଯୁକ୍ତ ଚନ୍ଦ୍ରମାପରି ଶୋଭା ପାଉଥିଲେ । ସୁମନ୍ତ୍ର ବିନୀତ ଭାବରେ ଦଶରଥଙ୍କର ଆଜ୍ଞା ରାମଙ୍କୁ ଜଣାଇଲେ । ସୁମନ୍ତ୍ରଙ୍କର କଥା ଶୁଣି ରାମ ସୀତାଙ୍କୁ କହିଲେ– ଦେବୀ, ରାଜାମାତା କୈକେୟୀଙ୍କ ସହିତ ମୋର ଅଭିଷେକ ବିଷୟରେ ବୋଧହୁଏ ଆଲୋଚନା କରୁଛନ୍ତି । ମୁଁ ଶୀଘ୍ର ଯାଇ ତାଙ୍କୁ ଦେଖା କରୁଚି । ତୁମେ ସହଚରୀମାନଙ୍କ ସହିତ ଏଠାରେ ବସି ଅପେକ୍ଷା କର । ସୀତା ଦ୍ୱାର ପର୍ଯ୍ୟନ୍ତ ରାମଙ୍କ ପଛେ ପଛେ ଆସି କହିଲେ, ଇନ୍ଦ୍ରାଦି ଦେବତା ଓ ଦିଗପାଳଗଣ ତୁମକୁ ରକ୍ଷା କରନ୍ତୁ । ତୁମେ ବ୍ରତରେ ଦୀକ୍ଷିତ ହୋଇ ମୃଗଚର୍ମ ପରିଧାନ ଓ ମୃଗଶୃଙ୍ଗ ଧାରଣ କରିବ,

ଏହି ଅଭିଷେକ ବେଶରେ ମୁଁ ତୁମକୁ ଦେଖିବାକୁ ଚାହେଁ । ରାଜା ରାଜସୂୟ ଯଜ୍ଞବିଧିରେ ତୁମକୁ ଶୀଘ୍ର ଅଭିଷିକ୍ତ କରନ୍ତୁ ।

ଦ୍ୱାରଦେଶରେ ନିଜର ଅନୁଗତ ଭ୍ରାତା ଲକ୍ଷ୍ମଣ ଠିଆ ହୋଇଥିଲେ । ତାଙ୍କୁ ସାଙ୍ଗରେ ଧରି ରଥାରୋହୀ ରାମଚନ୍ଦ୍ର ଆନନ୍ଦପୂର୍ଣ୍ଣ ଲୋକଗହଳି ମଧ୍ୟରେ ଯାଇ କୈକେୟୀଙ୍କ ଭବନରେ ପହଞ୍ଚିଲେ । ଦଶରଥଙ୍କ ମୁହଁ ଶୁଖିଯାଇଥିଲା । ସେ ଅତି ବିଷଣ୍ଣ ଦେଖାଯାଉଥିଲେ । ରାମ ପିତା ଓ ମାତା କୈକେୟୀଙ୍କ ଚରଣ ବନ୍ଦନା କରି ଠିଆ ହେବାମାତ୍ରେ ରାଜା ସାଶ୍ରୁନୟନରେ 'ରାମ' କହି ଚୁପ୍ ହୋଇ ରହିଗଲେ । ଆଉ ତାଙ୍କ ମୁହଁରୁ ବାକ୍ୟ ସ୍ଫୁରିଲା ନାହିଁ । ସେ ରାମଙ୍କ ଆଡ଼କୁ ଚାହିଁପାରିଲେ ନାହିଁ । ପଦାହତ ଭୁଜଙ୍ଗ ପରି ରାଜାଙ୍କର ଏହି ଭୟାବହ ଅବସ୍ଥା ଦେଖି ରାମଙ୍କର ଭୟ ସୃଷ୍ଟି ହେଲା । ରାହୁଗ୍ରସ୍ତ ସୂର୍ଯ୍ୟ ଓ ଉର୍ମିମାଳାବିକ୍ଷୁବ୍ଧ ସମୁଦ୍ରତୁଲ୍ୟ ରାଜା ଅତ୍ୟନ୍ତ ମ୍ଳାନ ଓ ଅବସନ୍ନ ଦେଖାଯାଉଥିଲେ ଏବଂ ବାରମ୍ବାର ଦୀର୍ଘନିଃଶ୍ୱାସ ଛାଡୁଥିଲେ ।

ପିତୃଭକ୍ତ ରାମ ଚିନ୍ତାକଲେ, ମୁଁ ଅଭିବାଦନ କରିବା ପରେ ପିତା କାହିଁକି ମୋତେ କିଛି ଆଦରରେ ସମ୍ଭାଷଣ କରୁନାହାନ୍ତି ? ଅନ୍ୟ ଦିନମାନଙ୍କରେ ସେ କ୍ରୁଦ୍ଧ ହେଲେ ମଧ୍ୟ ମୋତେ ଦେଖିଲେ ପ୍ରସନ୍ନ ହୋଇଯାନ୍ତି । କିନ୍ତୁ ଆଜି ମୋତେ ଦେଖି କାହିଁକି ତାଙ୍କର ଏପରି ଦୁଃଖ ହେଉଚି ? ସେ କୈକେୟୀଙ୍କୁ ଚାହିଁ ପଚାରିଲେ – ମାତା, ଅଜାଣତରେ ମୁଁ କ'ଣ ଏପରି କିଛି ଦୋଷ କରିଚି, ଯେଉଁଥିପାଇଁ ପିତା ମୋ' ଉପରେ ରୁଷ୍ଟ ହୋଇଛନ୍ତି ? କାହିଁକି ଏପରି ବିଷଣ୍ଣ ଦେଖାଯାଉଛନ୍ତି ଓ କଥା କହୁନାହାନ୍ତି ? କୌଣସି ଶାରୀରିକ ରୋଗ ବା ମାନସିକ ପୀଡ଼ାରେ ସେ ବ୍ୟଥିତ ହେଉ ନାହାଁନ୍ତି ତ ? ଆପଣ କ'ଣ କ୍ରୋଧରେ ଏବଂ ଅଭିମାନରେ ତାଙ୍କୁ କିଛି କଠୋର କଥା କହି ମନରେ କଷ୍ଟ ଦେଇଛନ୍ତି ?

ଦଶରଥ କ'ଣ କହିବେ ସେଥିପାଇଁ ଅପେକ୍ଷା ନ କରି କୈକେୟୀ ମୁଖଲଜ୍ଜା ପରିତ୍ୟାଗ କରି କହିଲେ – ରାମ, ରାଜା ରୁଷ୍ଟ ହୋଇ ନାହାନ୍ତି କି ତାଙ୍କର କୌଣସି ଶାରୀରିକ ବା ମାନସିକ ପୀଡ଼ା ହୋଇ ନାହିଁ । ତାଙ୍କର କିଛି ମନର କଥା ଅଛି; କିନ୍ତୁ ତୁମେ ତାଙ୍କର ପ୍ରିୟପୁତ୍ର ହୋଇଥିବା ଯୋଗୁଁ ତୁମକୁ କଷ୍ଟ ହେବ ବୋଲି ଅପ୍ରିୟ କଥା ତାଙ୍କ ତୁଣ୍ଡରୁ ସ୍ଫୁରୁ ନାହିଁ । ସେ ମୋତେ ଯେଉଁ ପ୍ରତିଶ୍ରୁତି ଦେଇଛନ୍ତି, ତାହା ତୁମେ ନ ଚାହିଲେ ସେ ପାଳନ କରିପାରିବେ ନାହିଁ । ମୋର ଅନୁରୋଧରେ ପ୍ରଥମେ ସେ ବର ଦେବେ ବୋଲି କହି ଏବେ ଇତର ବ୍ୟକ୍ତି ପରି ସେଥିରୁ ଓହରି ଯାଉଛନ୍ତି । ବର୍ତ୍ତମାନ ଖାଲି ଅନୁତାପ କରିବାରେ ଲାଗିଛନ୍ତି । ପାଣି ବୋହିଯିବାପରେ କ'ଣ ବନ୍ଧ ବାନ୍ଧିବାକୁ ଚେଷ୍ଟା କରାଯାଏ ? ସାଧୁମାନେ ଜାଣନ୍ତି ଯେ ଧର୍ମର ମୂଳ ହେଉଚି ସତ୍ୟ । ତେଣୁ ତୁମର ପ୍ରରୋଚନାରେ କ୍ରୁଦ୍ଧ ହୋଇ ରାଜା ଯେପରି ସତ୍ୟ ତ୍ୟାଗ ନ କରନ୍ତି । ଶୁଭ ହେଉ ବା ଅଶୁଭ ହେଉ, ରାଜା ଯାହା କହିବେ, ତୁମେ ତାହା କରିବ ବୋଲି କହିଲେ, ମୁଁ ତାହା ପ୍ରକାଶ କରିବି । ରାଜା ତୁମକୁ ନିଜେ କିଛି କହିବେ ନାହିଁ, କିନ୍ତୁ ତାଙ୍କର ଆଦେଶ ଯଦି ତୁମେ କାର୍ଯ୍ୟକାରୀ କରିବ ବୋଲି କହିବ, ତା' ହେଲେ ମୁଁ କହିବି ।

କୈକେୟୀଙ୍କ କଥାରେ ଅତିଶୟ ବ୍ୟଥିତ ହୋଇ ରାମଚନ୍ଦ୍ର କହିଲେ, ଧିକ୍ ଦେବୀ, ତୁମେ ଏପରି କଥା ମୋତେ କହିବା ଉଚିତ ନୁହେଁ । ରାଜାଙ୍କ କଥାରେ ମୁଁ ଅଗ୍ନିରେ ପ୍ରବେଶ କରିବାକୁ ପ୍ରସ୍ତୁତ । ସେ ମୋର ପିତା, ଗୁରୁପ୍ରତିମ, ପୁଣି ରାଜା, ତାଙ୍କର ମଙ୍ଗଳ ପାଇଁ ଦରକାର ପଡ଼ିଲେ ମୁଁ ତୀବ୍ର ବିଷପାନ କରିବି କିମ୍ବା ସାଗରରେ ନିମଜ୍ଜିତ ହୋଇ ପ୍ରାଣ ବିସର୍ଜନ କରିବି । ତେଣୁ ମାତା, ରାଜାଙ୍କର ଯାହା ଅଭିପ୍ରେତ, ତାହା ମୋତେ ବ୍ୟକ୍ତ କର । ମୁଁ ନିଶ୍ଚୟ ପାଳନ କରିବି । ରାମ କେବେ ଦୁଇ ପ୍ରକାର କଥା କହେ ନାହିଁ । 'ରାମୋ ଦ୍ୱି ର୍ନାଭିଭାଷତେ' ।

ଏହା ଶୁଣିବା ପରେ ସରଳସ୍ୱଭାବ ସତ୍ୟନିଷ୍ଠ ରାମଙ୍କୁ କୈକେୟୀ ଏହି ନିଦାରୁଣ ବାକ୍ୟ କହିଲେ – ରାଘବ, ପୂର୍ବେ ଦେବାସୁର ଯୁଦ୍ଧ ବେଳେ ଇନ୍ଦ୍ରଙ୍କୁ ସାହାଯ୍ୟ କରିବାକୁ ଯାଇ ତୁମ ପିତା ଶସ୍ତ୍ରାହତ ହୋଇଥିବାବେଳେ ମୁଁ ତାଙ୍କୁ ରକ୍ଷା କରିଥିଲି ଏବଂ ସେତେବେଳେ ସେ ପ୍ରୀତ ହୋଇ ମୋତେ ଦୁଇଟି ବର ଦେଇଥିଲେ । ମୁଁ ସେତେବେଳେ ତାହା ନ ମାଗି ବର୍ତ୍ତମାନ ମାଗିଲି । ତାହା ହେଉଛି, ତୁମ ପରିବର୍ତ୍ତେ ଭରତର ରାଜ୍ୟାଭିଷେକ ହେବ ଏବଂ ତୁମେ ଚଉଦ ବର୍ଷ ବନବାସ କରିବ । ତୁମର ପିତୃସତ୍ୟ ଯଦି ତୁମେ ରକ୍ଷା କରିବାକୁ ଚାହଁ, ତା' ହେଲେ ମୁଁ ଯାହା କହୁଚି ଶୁଣ । ତୁମେ ଏହି ଅଭିଷେକ ଓ ରାଜପୋଷାକ ଛାଡ଼ି ଜଟା ବଳ୍କଳ ପିନ୍ଧି ଚଉଦ ବର୍ଷ ଦଣ୍ଡକାରଣ୍ୟରେ ବାସ କର ଏବଂ ଏହି ଅଭିଷେକର ଆୟୋଜନ ଅନୁସାରେ ଭରତ ରାଜା ହୋଇ ରଥଅଶ୍ୱଗଜସମେତ ଧନଧାନ୍ୟପୂର୍ଣ୍ଣ ଏହି କୋଶଳ ଦେଶକୁ ଶାସନ କରୁ । ବର ଦେଇଥିବା ଯୋଗୁଁ ରାଜା ଶୋକାର୍ତ୍ତ ହୋଇ ତୁମ ଆଡ଼କୁ ଚାହିଁ ପାରୁନାହାନ୍ତି । ତୁମେ ସେ ସତ୍ୟପାଳନ କରି ରାଜାଙ୍କୁ ଉଦ୍ଧାର କର ।

ଏପରି ମରଣତୁଲ୍ୟ ଦୁଃଖଦାୟକ କଥା ଶୁଣି ମଧ ରାମ ଟିକିଏ ହେଲେ ବ୍ୟଥିତ ହେଲେ ନାହିଁ । ସେ କହିଲେ – ମାତା, ତାହାହିଁ ହେବ । ମୁଁ ରାଜାଙ୍କର ପ୍ରତିଜ୍ଞା ରକ୍ଷା କରି ଜଟା ବଳ୍କଳଧାରଣପୂର୍ବକ ବନଗମନ କରିବି । କିନ୍ତୁ ମୁଁ ଏତିକି ଜାଣିବାକୁ ଚାହେଁ, ରାଜା ମୋତେ କାହିଁକି କିଛି କଥା କହୁ ନାହାନ୍ତି ? ଭରତର ରାଜ୍ୟାଭିଷେକ କଥା ରାଜା ନିଜେ ମୋତେ କାହିଁକି କହିଲେ ନାହିଁ ? ଭରତକୁ ମୁଁ ରାଜ୍ୟ, ଧନ, ନିଜର ପ୍ରିୟ ପ୍ରାଣ ସବୁ କିଛି ଦେଇପାରେ । ରାଜାଙ୍କୁ ଆପଣ ସାନ୍ତ୍ୱନା ଦିଅନ୍ତୁ । ସେ ଅଧୋମୁଖ ହୋଇ ଅଶ୍ରୁପାତ କରନ୍ତୁ ନାହିଁ । ମାତୁଳାଳୟରୁ ଭରତକୁ ଆଣିବାପାଇଁ ଦୂତମାନେ ଦ୍ରୁତଗାମୀ ଅଶ୍ୱରେ ଆରୋହଣ କରି ଶୀଘ୍ର ଚାଲିଯା'ନ୍ତୁ । ମୁଁ ନିର୍ବିଚାରରେ ପିତାଙ୍କର ଆଦେଶ ପାଳନ କରି ଆଜି ଦଣ୍ଡକାରଣ୍ୟ ଯାତ୍ରା କରୁଚି ।

ରାମଙ୍କ ଠାରୁ ଏହା ଶୁଣି ମଧ କୈକେୟୀଙ୍କର ନିଷ୍ଠୁରତା ଦୂର ହେଲା ନାହିଁ । ସେ କହିଲେ – ରାମ, ତୁମେ ଯାହା କହିଲ ଠିକ୍ କଥା । ଭରତକୁ ଆଣିବା ପାଇଁ ଶୀଘ୍ର ଦୂତମାନଙ୍କୁ ପଠାଯିବ । କିନ୍ତୁ ତୁମେ ବନକୁ ଯିବାରେ ଆଉ ବିଳମ୍ବ କର ନାହିଁ । ରାଜା ଲଜ୍ଜା ଆଉ ଦୁଃଖରେ ତୁମ୍ଭାଙ୍କୁ କିଛି କହୁ ନାହାନ୍ତି । ସେ ବିଷୟ ଚିନ୍ତା ନ କରି ତୁମେ ଚାଲିଯାଅ । ତୁମେ ଯେପର୍ଯ୍ୟନ୍ତ ଅଯୋଧ୍ୟା ନ ଛାଡ଼ିଛ, ସେ ପର୍ଯ୍ୟନ୍ତ ତୁମର ପିତା ସ୍ନାନ ଭୋଜନ କରିବେ ନାହିଁ ।

କୈକେୟୀଙ୍କ କଥା ଶୁଣି ରାଜା ଦୀର୍ଘନିଃଶ୍ୱାସ ପକାଇ ଓ ନିଜକୁ ଧିକ୍କାର କରି ପୁଣି ପଲଙ୍କ ଉପରେ ମୂର୍ଚ୍ଛିତ ହୋଇ ପଡ଼ିଗଲେ । ରାମ ବ୍ୟସ୍ତ ହୋଇ ରାଜାଙ୍କୁ ଉଠାଇ ବସାଇଲେ । କିନ୍ତୁ କଶାହତ ଅଶ୍ୱପରି କୈକେୟୀଙ୍କ ବାକ୍ୟବାଣରେ ଅସ୍ଥିର ହୋଇ ଶୀଘ୍ର ବନକୁ ବାହାରିଯିବା ପାଇଁ ବ୍ୟସ୍ତ ହେଲେ । ସେ କୈକେୟୀଙ୍କୁ ଚାହିଁ କହିଲେ – ମାତା, ମୁଁ ଅର୍ଥଲୋଭୀ ହୋଇ ଏହି ପୃଥିବୀରେ ବାସ କରିବାକୁ ଚାହେଁ ନାହିଁ । ମୁଁ ଋଷିମାନଙ୍କ ଆଚରିତ ଧର୍ମକୁ ଆଶ୍ରୟ କରି ରହିବାକୁ ଚାହେଁ । ମୁଁ ପ୍ରାଣ ବିନିମୟରେ ପୂଜ୍ୟ ପିତାଙ୍କର ପ୍ରିୟକାର୍ଯ୍ୟ କରିବା ପାଇଁ ପ୍ରସ୍ତୁତ । ପିତାଙ୍କର ସେବା ଓ ତାଙ୍କର ବାକ୍ୟ ପାଳନ ଠାରୁ ଉତ୍କୃଷ୍ଟତର ଧର୍ମ କିଛି ନାହିଁ । ଦେବୀ, ତୁମର ମୋ' ଉପରେ ସମସ୍ତ ଅଧିକାର ଥିବାବେଳେ ତୁମେ ଏ ବିଷୟରେ ରାଜାଙ୍କୁ କାହିଁକି କହିବାକୁ ଗଲ ? ତୁମ କଥାରେ ତ ମୁଁ ଚଉଦ ବର୍ଷ ବନବାସ କରିଥାନ୍ତି । ରାଜାଙ୍କ ପର୍ଯ୍ୟନ୍ତ ଯିବା ଦରକାର ନ ଥିଲା । ଏଥିରୁ ମୁଁ ଜାଣିପାରୁଚି ଯେ ମୋର କୌଣସି ସଦ୍‌ଗୁଣ ଅଛି ବୋଲି ତୁମେ ବିଶ୍ୱାସ କର ନାହିଁ । ମୋର ବନକୁ ଯିବାର କୌଣସି ବିଳମ୍ବ ହେବ ନାହିଁ । କେବଳ ମା'ଙ୍କୁ ଜଣାଇଦେଇ ଓ ସୀତାଙ୍କୁ ଅନୁନୟ କରି ମୁଁ ଚାଲିଯିବି । ବର୍ତ୍ତମାନ କେବଳ ଏହି ରାଜ୍ୟଶାସନ ନୁହେଁ, ପିତାଙ୍କର ସେବା ଶୁଶ୍ରୂଷାର ଭାର ଭରତ ଉପରେ ପଡ଼ିଲା । ଏଥିରେ ଯେପରି ତ୍ରୁଟି ନ ହୁଏ, ତୁମେ ତାହା ଦେଖିବ ।

ଶୋକାର୍ତ୍ତ ଦଶରଥ କିଛି କହିପାରିଲେ ନାହିଁ । ତାଙ୍କର ଆଖିରୁ ଅବିରତ ଲୁହ ବହୁଥିଲା । ବର୍ତ୍ତମାନ ରାମଙ୍କର ବିଦାୟ ବାକ୍ୟ ଶୁଣି ସେ ଉଚ୍ଚସ୍ୱରରେ ରୋଦନ କରିବାକୁ ଲାଗିଲେ । ରାମ ପିତାଙ୍କର ଚରଣ ବନ୍ଦନା କରି ଏବଂ କୈକେୟୀଙ୍କୁ ପ୍ରଣିପାତ କରି ଅନ୍ତଃପୁରରୁ ବାହାରିଆସିଲେ । ଲକ୍ଷ୍ମଣ ଅତିଶୟ କ୍ରୁଦ୍ଧ ହୋଇ ଲୋତକପୂର୍ଣ୍ଣ ଚକ୍ଷୁରେ ରାମଙ୍କର ଅନୁଗମନ କଲେ । ଅଭିଷେକ ପାଇଁ ଆସିଥିବା କଳସମାନଙ୍କ ପ୍ରତି ରାମ ଦୃଷ୍ଟିପାତ ନ କରି ଧୀର ପାଦରେ ଚାଲିବାକୁ ଲାଗିଲେ । ରଜନୀ ଯେପରି ରମଣୀୟ ଚନ୍ଦ୍ରମାର ସୌନ୍ଦର୍ଯ୍ୟ ହ୍ରାସ କରିପାରେ ନାହିଁ, ସେହିପରି ରାଜ୍ୟନାଶ ରାମଙ୍କର କମନୀୟ କାନ୍ତିକୁ ମ୍ଳାନ କରିପାରିଲା ନାହିଁ । ଲୋକୋତ୍ତର ଚରିତ୍ର ରାମଙ୍କର ଟିକିଏ ହେଲେ ଚିତ୍ତବିକାର ଲକ୍ଷିତ ହେଲା ନାହିଁ । ସେ ଶୁଭ୍ରଛତ୍ର ଓ ଚାମର ଉତ୍ତୋଳନ ନ କରିବା ପାଇଁ ଆଦେଶ ଦେଲେ । ସମଗ୍ର ବସୁନ୍ଧରା, ଆତ୍ମୀୟସ୍ୱଜନ, ପୁରବାସୀ ଓ ରାଜ୍ୟର ଅନ୍ୟ ଲୋକମାନଙ୍କୁ ଛାଡ଼ି ଚାଲିଯାଉଥିଲେ ମଧ୍ୟ ସେ ଅତ୍ୟନ୍ତ ସଂଯତ ଚିତ୍ତରେ ଏହି ଅପ୍ରିୟ ସଂବାଦ ଜଣାଇବା ପାଇଁ ମାତା କୌଶଲ୍ୟାଙ୍କ ଗୃହରେ ପ୍ରବେଶ କଲେ ।

ରାମ କୃତାଞ୍ଜଳି ହୋଇ ବିଦାୟ ନେବା ମାତ୍ରେ, ଅନ୍ତଃପୁରରେ ମହା ଆର୍ତ୍ତନାଦ ଉତ୍ଥିତ ହେଲା । କ୍ରୋଧବିବର୍ଜିତ ଶରଣରକ୍ଷଣ ରାଘବ ରାଜପଦ ଛାଡ଼ି ବନକୁ ଯାଉଛନ୍ତି, ଏହି ସମ୍ବାଦରେ ରାଜମହିଷୀମାନେ ବିବତ୍ସା ଧେନୁ ପରି ବିଳାପ କରିବାକୁ ଲାଗିଲେ । କୌଶଲ୍ୟାଙ୍କ କକ୍ଷରେ ପ୍ରବେଶ କରି ରାମ ଦେଖିଲେ, ବିଭିନ୍ନ ପୂଜାନୈବେଦ୍ୟ ସହିତ ତାଙ୍କର ମାତା ବିଷ୍ଣୁଙ୍କର ପୂଜା ଓ ହୋମ କରିବାରେ ବ୍ୟସ୍ତ ଅଛନ୍ତି । ବ୍ରତ ଯୋଗୁଁ ତାଙ୍କର ଶରୀର କ୍ଷୀଣ ଦେଖାଯାଉଚି । ପୂଜାରେ ଏକାଗ୍ରଚିତ୍ତ କୌଶଲ୍ୟାଙ୍କ ପାଖରେ ଏ ପର୍ଯ୍ୟନ୍ତ

ରାମଙ୍କର ବନବାସ ଦୁଃସମ୍ବାଦ ପହଞ୍ଚି ନ ଥିଲା । ତେଣୁ ସେ ରାମଙ୍କ ପାଖକୁ ଦଉଡ଼ିଆସି ଆନନ୍ଦରେ ତାଙ୍କୁ କୋଳାଗ୍ରତ କଲେ ଏବଂ ପୁତ୍ରଙ୍କର ବନ୍ଦନା ଗ୍ରହଣ କରି ତାଙ୍କୁ ଉପଯୁକ୍ତ ଆସନରେ ବସିବାପାଇଁ କହିଲେ ।

ରାମ କହିଲେ – ମାତା, ଏ ଆସନ ବର୍ତ୍ତମାନ ମୋ'ପାଇଁ ନୁହେଁ । ମୁଁ ତ ଦଣ୍ଡକାରଣ୍ୟ ଯାଉଚି । ସେଠାରେ ଚଉଦ ବର୍ଷ ପର୍ଯ୍ୟନ୍ତ ଫଳ-ମୂଳ ଖାଇ ଓ ତାପସବୃତ୍ତିକୁ ଆଶ୍ରୟ କରି କଟାଇବି । ମୁନିମାନଙ୍କ ପରି କୁଶର ଆସନ ମୋର ଆସନ ହେବ । ବର୍ତ୍ତମାନ ତୁମର, ସୀତା ଓ ଲକ୍ଷ୍ମଣଙ୍କର ଏକ ଭୟ ଓ ଦୁଃଖର ସମୟ ଉପସ୍ଥିତ ହୋଇଚି । ରାଜା ଭରତକୁ ରାଜପଦରେ ଅଭିଷିକ୍ତ କରିବେ ଏବଂ ମୋତେ ଚଉଦ ବର୍ଷ ଦଣ୍ଡକାରଣ୍ୟର ବିଜନବନରେ ନିର୍ବାସନ ଭୋଗିବାକୁ ହେବ ।

କୁଠାରାଘାତରେ ଶାଳଗଛର ଶାଖା ପରି ଏହି ସମ୍ବାଦରେ ପୁତ୍ରପ୍ରାଣା କୌଶଲ୍ୟା ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ରାମ ତାଙ୍କୁ ଭୂଇଁରୁ ଉଠାଇ ଧୂଳି ଝାଡ଼ିଦେଇ ସୁସ୍ଥ କରାଇଲେ । କୌଶଲ୍ୟା ସଂଜ୍ଞା ଲାଭ କରି କହିଲେ, ବହୁକାଳ ଅପୁତ୍ରକ ଥିଲି, ଥିଲି । କିନ୍ତୁ ତୋତେ ପୁତ୍ରରୂପେ ଲାଭକରି ଏବେ ମୋତେ ଏପରି କଷ୍ଟ ଦେଖିବାକୁ ହେଉଚି । ବନ୍ଧ୍ୟାନାରୀର ପୁଅ ନାହିଁ ବୋଲି ଏକମାତ୍ର ଦୁଃଖ ହୋଇଥାଏ, କିନ୍ତୁ ତାର ଆଉ କିଛି ଦୁଃଖ ନ ଥାଏ । ମୁଁ ପୁତ୍ରବତୀ ହୋଇ ମଧ୍ୟ ପତିସୋହାଗିନୀ ହୋଇ ପାରି ନ ଥିଲି । ସବୁବେଳେ ସ୍ୱାମୀ ମୋତେ ଅବହେଳିତ ଓ ଅପମାନିତ କରିଛନ୍ତି । ସେଥିପାଇଁ ସମସ୍ତେ ମୋତେ କୈକେୟୀର ଦାସୀ ପରିବାରୀଠାରୁ ହୀନ ଦୃଷ୍ଟିରେ ଦେଖିଥାନ୍ତି । କେବଳ ତୋର ମୁହଁକୁ ଚାହିଁ ମୋର ଦୁଃଖ ମେଣ୍ଟି ଯାଉଥିଲା ଓ ତୋର ସୁଖରେ ମୁଁ ସୁଖୀ ହୋଇ ରହିବି ବୋଲି ଆଶା କରିଥିଲି । ବର୍ତ୍ତମାନ ତୁ ବନକୁ ଯାଇ ଭରତ ରାଜା ହେଲେ କୋପନସ୍ୱଭାବା ମୁଖରା କୈକେୟୀର ମୁହଁକୁ ମୁଁ କିପରି ଚାହିଁପାରିବି ? ତୁ ଥାଉ ଥାଉ ମୋତେ ବହୁ କଠୋର ବାକ୍ୟ ଶୁଣିବାକୁ ପଡୁଥିଲା ଏବଂ କର୍କଶ ବ୍ୟବହାର ସହିବାକୁ ପଡୁଥିଲା । ତୁ ଚାଲିଗଲେ ଏହି ବୃଦ୍ଧ ବୟସରେ ମୋର ଅବସ୍ଥା କଣ ହେବ ? ଏହା ଅପେକ୍ଷା ମରଣ ଶତଗୁଣେ ଶ୍ରେୟସ୍କର । କିନ୍ତୁ ମୋର ହୃଦୟ ଏପରି କଠିନ ଯେ ମୋତେ ମରଣ ମଧ୍ୟ ହେଉ ନାହିଁ ।

କୌଶଲ୍ୟା ପୁଣି ବିଳାପ କରି କହିଲେ, ପୁତ୍ର ଲାଗି ମୁଁ ବ୍ରତ, ଉପବାସ, ଦାନ, ସଂଯମ, କଠୋର ତପସ୍ୟା ଆଦି ସବୁ କିଛି କଲି । କିନ୍ତୁ ମରୁଭୂମିରେ ବୀଜବପନ ପରି ତାହା ନିଷ୍ଫଳ ଓ ନିରର୍ଥକ ହୋଇଗଲା । କାହିଁକି ଯମ ମୋର ପ୍ରାଣ ହରଣ କରୁ ନାହିଁ ? ଏହା କହି କୌଶଲ୍ୟା ରାମଙ୍କୁ ଧରି ଉଚ୍ଚ ସ୍ୱରରେ କାନ୍ଦିବାକୁ ଲାଗିଲେ ।

ଲକ୍ଷ୍ମଣ କ୍ରୁଦ୍ଧ ଓ ଶୋକାର୍ତ୍ତ ହୋଇ କହିଲେ – ଜନନୀ, ରାଘବ ଜଣେ ସ୍ତ୍ରୀଲୋକ କଥାରେ ରାଜ୍ୟଶ୍ରୀ ପରିତ୍ୟାଗ କରି ବନଯାତ୍ରା କରିବେ, ଏହା ମୋତେ ଯଥାର୍ଥ ମନେ ହେଉ ନାହିଁ । ରାଜା ବୃଦ୍ଧ ଓ ସ୍ତ୍ରୈଣ, ତେଣୁ ତାଙ୍କର ବୁଦ୍ଧିମାନ୍ଦ୍ୟ ଘଟିଚି । ମୁଁ ରାମଙ୍କର କୌଣସି ଦୋଷତ୍ରୁଟି ଦେଖୁ ନାହିଁ, ଯେଉଁଥିପାଇଁ କି ତାଙ୍କୁ ବନବାସ ଦୁଃଖ ଭୋଗ କରିବାକୁ ହେବ । ଧର୍ମଜ୍ଞ ବ୍ୟକ୍ତି କେବେ ତାର ଦେବୋପମ ପୁତ୍ରକୁ ପରିତ୍ୟାଗ କରିପାରେ ? ତେଣୁ

ହେ ରାଘବ, ତୁମେ ମୋ ସାହାଯ୍ୟରେ ଏହି ରାଜ୍ୟକୁ କରାୟତ୍ତ କର । ମୁଁ ଧନୁ ଧରିଥିଲେ କେହି ତୁମ ପାଖରେ ପଶିପାରିବ ନାହିଁ । କାଳାନ୍ତକ ଯମ ପରି ମୁଁ ଶତ୍ରୁ ସଂହାର କରି ତୁମ ପାଇଁ ଅଯୋଧ୍ୟାପୁରୀକୁ ରକ୍ଷା କରିବି । ଭରତ ହୁଅନ୍ତୁ ବା କୈକେୟୀଙ୍କ ଦ୍ୱାରା ପ୍ରରୋଚିତ ଆମର ସ୍ତ୍ରୈଣ ପିତା ହୁଅନ୍ତୁ, ଶତ୍ରୁତା କଲେ ତାଙ୍କୁ ବାଦ ଦିଆଯିବ ନାହିଁ । ମୁଁ ସତ୍ୟ, ଧର୍ମ, ମୋର ଇଷ୍ଟଦେବତାଙ୍କ ନାମରେ ଏହି ଶରମୁନକୁ ଛୁଇଁ ଶପଥ କରୁଚି ଯେ ରାମ ଯଦି ଅରଣ୍ୟରେ ଓ ଜ୍ୱଳନ୍ତ ଅଗ୍ନିରେ ପ୍ରବେଶ କରନ୍ତି, ତା' ହେଲେ ତାଙ୍କ ଆଗରୁ ମୁଁ ସେଥିରେ ପ୍ରବେଶ କରିସାରିଥିବି । ଦେବୀ, ତୁମର ଦୁଃଖ ମୋଚନ ପାଇଁ ମୋର ବୀର୍ଯ୍ୟବଳରେ ମୁଁ କୈକେୟୀଙ୍କଠାରେ ଆସକ୍ତ ବାଳକୋଚିତ, ଚପଳମତି ମୋର ବୃଦ୍ଧ ପିତାଙ୍କ ପ୍ରାଣ ହରଣ କରିବାକୁ ପଛାଇବି ନାହିଁ । ତୁମେ ଏବଂ ରାଘବ ରାମଚନ୍ଦ୍ର ତାହା ଦେଖିବେ ।

କୌଶଲ୍ୟା କହିଲେ – ରାମ, ତୋର ଭାଇ ଲକ୍ଷ୍ମଣ ଯାହା କହିଲା ଶୁଣିଲୁ । ମୋତେ ଦୁଃଖ ଦେଇ ତୁ ମୋର ସପତ୍ନୀର ଅନ୍ୟାୟ ଆଦେଶ ପାଳନ କରିବାକୁ ଯାଉଚୁ । ଜନନୀର ସେବା କ'ଣ ପୁତ୍ରର କର୍ତ୍ତବ୍ୟ ନୁହେଁ ? ରାଜା ଯେପରି ତୋର ପୂଜ୍ୟ, ମୁଁ ମଧ ସେହିପରି ତୋର ସମ୍ମାନର ଯୋଗ୍ୟ । ମୁଁ ତ ତୋତେ ଅନୁମତି ଦେଉ ନାହିଁ । ମୋତେ ଅବଜ୍ଞା କରି ତୁ କିପରି ବନକୁ ଯାତ୍ରା କରିବୁ ? ତୁ ଛାଡ଼ି ଚାଲିଗଲେ ମୁଁ ଅନଶନ ଦ୍ୱାରା ପ୍ରାଣତ୍ୟାଗ କରିବି ।

ରାମ ଉତ୍ତର ଦେଲେ, ପିତାଙ୍କ ଆଜ୍ଞା ଲଂଘନ କରିବାର ଶକ୍ତି ମୋର ନାହିଁ । ମାତା, ତୁମେ ପ୍ରସନ୍ନ ହୁଅ, ମୁଁ ତୁମର ଚରଣ ବନ୍ଦନା କରୁଚି, ମୋତେ ବନକୁ ଯିବା ପାଇଁ ଅନୁମତି ଦିଅ । ଧର୍ମଜ୍ଞ କଣ୍ଡୁଋଷି ପିତାଙ୍କ ଆଦେଶରେ ଗୋବଧ କରିଥିଲେ । ସଗରଙ୍କ ଆଦେଶରେ ତାଙ୍କର ପୁତ୍ରମାନେ ପୃଥିବୀର ଗର୍ଭ ବିଦାରଣ କରି ବିନଷ୍ଟ ହୋଇଥିଲେ । ପରଶୁରାମ ପିତା ଜମଦଗ୍ନିଙ୍କ ଆଦେଶ ପାଳନ କରି ମାତା ରେଣୁକାଙ୍କର ଶିରଚ୍ଛେଦନ କରିଥିଲେ । ତେଣୁ ପିତାଙ୍କର ଆଦେଶ ମୁଁ ଅମାନ୍ୟ କରିପାରିବି ନାହିଁ ।

ରାମ ଲକ୍ଷ୍ମଣଙ୍କୁ କହିଲେ, ସୌମିତ୍ରି, ମୋ ପ୍ରତି ତୁମର ସ୍ନେହ, ତୁମର ବଳ, ବୀର୍ଯ୍ୟ ଓ ଅମିତ ତେଜ ବିଷୟ ମୁଁ ଜାଣେ । କିନ୍ତୁ ଲକ୍ଷ୍ମଣ, ସଂସାରରେ ଧର୍ମ ହିଁ ଶ୍ରେଷ୍ଠ । ସତ୍ୟ ଉପରେ ଧର୍ମ ପ୍ରତିଷ୍ଠିତ । ଧର୍ମକୁ ଆଶ୍ରୟ କରିଥିବା ବ୍ୟକ୍ତି ପିତାମାତା ବା ବ୍ରାହ୍ମଣଙ୍କୁ ଦେଇଥିବା ତାର ବାକ୍ୟ କେବେ ଲଂଘନ କରେ ନାହିଁ । ତେଣୁ ବୀର, ତୁମେ ତୁମର କ୍ରୋଧ ଓ କ୍ରୋଧଜନିତ ଦୁର୍ବୁଦ୍ଧି ପରିତ୍ୟାଗ କର ।

ପୁଣି ରାମ କୃତାଞ୍ଜଳି ହୋଇ କୌଶଲ୍ୟାଙ୍କୁ କହିଲେ – ମାତା, ତୁମେ ଶୋକ କର ନାହିଁ ।

ମୋତେ ଅନୁମତି ଦିଅ, ମୁଁ ବନକୁ ଯାଏଁ । ମୋ ପାଇଁ ସ୍ୱସ୍ତ୍ୟୟନାଦି କର, ଯେପରିକି ତୁମର ଆଶୀର୍ବାଦରେ ମୁଁ ପିତୃସତ୍ୟ ପାଳନ କରି ଚଉଦ ବର୍ଷ ପରେ ପୁଣି ଅଯୋଧ୍ୟାକୁ ଫେରିଆସିବି ।

କିନ୍ତୁ କୌଶଲ୍ୟାଙ୍କ ମନ ମାନିଲା ନାହିଁ । ସେ କହିଲେ – ପୁତ୍ର, ଧର୍ମତଃ ବିଚାର କଲେ ପିତା ଯେପରି ତୋର ଗୁରୁ ମୁଁ ମଧ୍ୟ ସେହିପରି ଗୁରୁ । ତୁ ମୋତେ ଏପରି ଦୁଃଖରେ ଛାଡ଼ି ଚାଲିଯିବା କେତେଦୂର ନ୍ୟାୟସଙ୍ଗତ ହେଉଛି ?

ରାମ ଲକ୍ଷ୍ମଣଙ୍କୁ କହିଲେ – ଲକ୍ଷ୍ମଣ, ତୁମେ ମୋର ସଂକଳ୍ପବଦ୍ଧ ମନର କଥା ଜାଣ । ତୁମେ ମାତାଙ୍କ ସହିତ ମିଶି କାହିଁକି ମୋତେ ଦୁଃଖ ଦେଉଛ ? ପିତା ବୃଦ୍ଧ ହୋଇପାରନ୍ତି । କିନ୍ତୁ ସେ ଗୁରୁ । ସେ କାମ ବା କ୍ରୋଧବଶରେ ଯାହା ଆଦେଶ ଦେବେ ତାହା କେବେ ଉପେକ୍ଷା କରାଯାଇ ନ ପାରେ । ଜୀବନ ଓ ରାଜ୍ୟ କ୍ଷଣସ୍ଥାୟୀ । ଧର୍ମ ପଥରେ ଅର୍ଜିତ ଚିରସ୍ଥାୟୀ ଯଶକୁ ପରିତ୍ୟାଗ କରି ମୁଁ ଏହି କ୍ଷୁଦ୍ର ସ୍ୱାର୍ଥକୁ ବରଣ କରିପାରିବି ନାହିଁ । ପୁଣି ସ୍ୱାମୀଙ୍କର ଯେଉଁଥିରେ ମଙ୍ଗଳ ହେବ, ତାହା କରିବା ମାତା କୌଶଲ୍ୟା ଓ ସୁମିତ୍ରାଙ୍କର କର୍ତ୍ତବ୍ୟ ।

ଲକ୍ଷ୍ମଣ ଅତ୍ୟନ୍ତ କ୍ରୁଦ୍ଧ ଓ ବ୍ୟଥିତ ଦେଖାଯାଉଥିଲେ । ଗଜରାଜ ପରି ସେ ଘନ ଘନ ନିଃଶ୍ୱାସ ଛାଡୁଥିଲେ । ଲକ୍ଷ୍ମଣ କେବଳ ଭାଇ ନୁହନ୍ତି, ସେ ରାମଙ୍କର ପ୍ରିୟ ସୁହୃଦ । ସେହି ଦୃଷ୍ଟିରୁ ରାମଚନ୍ଦ୍ର ତାଙ୍କୁ ବୁଝାଇ କହିଲେ – ବତ୍ସ, ତୁମେ କ୍ରୋଧ, ଶୋକ, ଅପମାନ ମନରୁ ଦୂର କରି ଧୈର୍ଯ୍ୟ ସହକାରେ କାର୍ଯ୍ୟକର । ମୋର ଅଭିଷେକ ପାଇଁ ଯାହାସବୁ ଆୟୋଜନ କରାଯାଇଛି, ତାହା ବିସର୍ଜନ କରି ମାତା କୈକେୟୀଙ୍କ ମନରୁ ଆଶଙ୍କା ଦୂର କର । ପିତାଙ୍କ ମନରୁ ଭୟ ଦୂର କରିବାପାଇଁ ମୋର ବନକୁ ଯିବାର ପ୍ରସ୍ତୁତି ଶୀଘ୍ର କରାଅ । ମୁଁ କଷାୟ ବସ୍ତ୍ର ଓ ମୃଗଚର୍ମ ପରିଧାନପୂର୍ବକ ମସ୍ତକରେ ଜଟାରାଶି ଧାରଣ କରି ବନକୁ ଚାଲିଗଲେ ମାତା କୈକେୟୀ ସୁଖୀ ହେବେ ଓ ସତ୍ୟପ୍ରତିଜ୍ଞ ପିତାଙ୍କର ସତ୍ୟ ରକ୍ଷା ହେବ । ସୌମିତ୍ରି, ରାଜ୍ୟନାଶ ଓ ବନଗମନ ଏ ଦୁଇଟି ଯେ ଦୈବବଶରେ ଘଟିଛି, ଏଥିରେ ସନ୍ଦେହ କର ନାହିଁ । ଯେଉଁ କୈକେୟୀ ଭରତ ଓ ମୋ ମଧ୍ୟରେ କୌଣସି ଭେଦଭାବ ଦେଖନ୍ତି ନାହିଁ, ସେହି ଗୁଣବତୀ କେକୟ ରାଜନନ୍ଦିନୀ ରାଜାଙ୍କ ଆଗରେ ମୋ ସହିତ ଯେପରି ଏକ ନୀଚମନା ସ୍ତ୍ରୀ ଲୋକ ପରି ବ୍ୟବହାର କଲେ, ତାହା ଦୈବଦ୍ୱାରା ଅଭିପ୍ରେତ ଛଡ଼ା ଆଉ କ'ଣ ହୋଇପାରେ ? ତେଣୁ ଦୈବ ହିଁ ପ୍ରବଳ ଓ ପ୍ରଧାନ । ଦୈବ ସହିତ କେହି ଲଢ଼ିବାକୁ ସାହସ କରିବା ଉଚିତ ନୁହେଁ ।

ଲକ୍ଷ୍ମଣଙ୍କର କ୍ରୋଧ ତଥାପି ଦୂର ହେଲା ନାହିଁ । ସେ କହିଲେ, ପିତା ଦଶରଥ ଧର୍ମବୁଦ୍ଧିରେ କାର୍ଯ୍ୟ କରୁଛନ୍ତି ନା ଶଠତା ଅବଲମ୍ବନ କରିଛନ୍ତି, ତାହା ତୁମେ ବୁଝୁନାହଁ କାହିଁକି ? ମୋର ମନେହେଉଛି ଏକ ପୂର୍ବକଳ୍ପିତ ଚକ୍ରାନ୍ତ ଅନୁଯାୟୀ ଲୋକଦେଖାଣିଆ ଭାବରେ ତୁମ ଅଭିଷେକର ଆୟୋଜନ କରାଯାଇ ପରେ ତୁମକୁ ପ୍ରତାରିତ କରାଯାଉଛି । ଏପରି ଅନ୍ୟାୟକୁ ତୁମେ ସତ୍ୟ, ଧର୍ମ ସହିତ ଯୋଡ଼ିବା ଠିକ୍ ହେଉ ନାହିଁ କି ମୁଁ ଏପରି ନିନ୍ଦନୀୟ ବ୍ୟାପାରକୁ ସମର୍ଥନ କରିପାରୁ ନାହିଁ । ଏହାକୁ ପୁଣି ଦୈବାଧୀନ କହି ମାନିନେବା ମଧ୍ୟ ମୋର ମନୋମତ ନୁହେଁ । ନିର୍ବୀର୍ଯ୍ୟ କାପୁରୁଷମାନେ ଦୈବର ଦ୍ୱାହି ଦେଇଥାନ୍ତି । ପୁରୁଷକାର ଦ୍ୱାରା ଯେ ଦୈବକୁ ଖଣ୍ଡନ କରାଯାଇପାରେ, ତୁମର ଅଭିଷେକ କରାଇ ତାହା ମୁଁ ଦେଖାଇଦେବି । କାହାର ସାହସ ଅଛି ଆସୁ, ମୋର ବିରୋଧ କରିବ ।

ବନବାସ ଯେତେବେଳେ କରିବାର କଥା ତୁମେ କରିବ, କେହି ମନା କରୁନାହିଁ । ଦୀର୍ଘକାଳ ଧରି ପ୍ରଜାମାନଙ୍କୁ ପୁତ୍ରପରି ପାଳନ କରିବା ପରେ ବାର୍ଦ୍ଧକ୍ୟ ଅବସ୍ଥାରେ ନିଜ ପୁତ୍ରମାନଙ୍କଠାରେ ରାଜ୍ୟଭାର ଅର୍ପଣ କରି ବନବାସ କର । ବର୍ତ୍ତମାନ କଦାପି ନୁହେଁ ।

କ୍ରୁଦ୍ଧ ଲକ୍ଷ୍ମଣଙ୍କର ଅଶ୍ରୁଜଳ ପୋଛିଦେଇ ରାମ ବହୁ ପ୍ରବୋଧନା ଦେଇ କହିଲେ – ସୌମ୍ୟ, ତୁମେ ଜାଣ, ଯାହା ହୋଇଯାଉନା କାହିଁକି, ମୁଁ ପିତୃସତ୍ୟ ପାଳନ କରିବାପାଇଁ ସଂକଳ୍ପ କରିଚି । ତାହାହିଁ ମୋର ସତ୍‌ପଥ ।

ମାତା କୌଶଲ୍ୟା ଅତିଶୟ ଦୁଃଖରେ ବାରମ୍ବାର ବିଳାପ କରି ଯେତେବେଳେ ପୁତ୍ରଙ୍କୁ ନିବୃତ୍ତ କରିପାରିଲେ ନାହିଁ, ସେତେବେଳେ କହିଲେ – ବତ୍ସ, କାଳର ଗତିକୁ କେହି ବାଧା ଦେଇପାରିବ ନାହିଁ । ବନରୁ ତୋର ଫେରିଆସିବା ବାଟକୁ ଚାହିଁ ମୁଁ କେବଳ ଜୀବନ ଧରି ରହିବି । ତୋର ମଙ୍ଗଳ ହେଉ । ତୁ କୃତକାର୍ଯ୍ୟ ହୋଇ ଫେରିଆସ ।

## ୨୩ ।। 'ମୁଁ ମଧ୍ୟ ବନକୁ ଯିବି'

କୌଶଲ୍ୟାଙ୍କୁ ପ୍ରଣାମ କରି ରାମ ନିଜ ଭବନରେ ପ୍ରବେଶ କଲେ । ସୀତା ଦେବାର୍ଚ୍ଚନ କରି ସାନନ୍ଦ ଚିତ୍ତରେ ରାମଙ୍କୁ ଅପେକ୍ଷା କରି ରହିଥିଲେ । ବର୍ତ୍ତମାନ ରାମ ଅଧୋମୁଖ ଓ ଚିନ୍ତାକୁଳ ଭାବରେ ଆସୁଥିବାର ଦେଖି ତାଙ୍କର ହୃଦୟ କମ୍ପିତ ହେବାକୁ ଲାଗିଲା । ରାମ ମଧ୍ୟ ସୀତାଙ୍କୁ କିପରି ଏହି ସମ୍ବାଦ ଦେବେ, ତାହାହିଁ ଚିନ୍ତା କରୁଥିଲେ ।

ସୀତା ଉଠିଯାଇ ବ୍ୟାକୁଳ ଭାବରେ ସ୍ୱାମୀଙ୍କୁ ପଚାରିଲେ– ରାଘବ, ଆଜି ଅଭିଷେକର ଦିନରେ ତୁମେ କାହିଁକି ଏପରି ଚିନ୍ତିତ ଦେଖାଯାଉଚ ? ଶତଶଲାକାଯୁକ୍ତ ଫେନନିଭ ଶ୍ୱେତ ରାଜଛତ୍ର କାହିଁକି ତୁମ ମୁଣ୍ଡ ଉପରେ ଶୋଭା ପାଉ ନାହିଁ ? ପଦ୍ମପଳାଶଲୋଚନ ତୁମର ମୁଖମଣ୍ଡଳର କ୍ଳାନ୍ତି ଦୂର କରିବା ପାଇଁ ହଂସ ଓ ଚନ୍ଦ୍ର ପରି ଶୁଭ୍ରଚାମରମାନ କାହିଁକି ଚାଳନା କରାଯାଉ ନାହିଁ ? ସୂତ, ମାଗଧ ଓ ବନ୍ଦୀମାନେ କାହିଁକି ମାଙ୍ଗଳିକ ସ୍ତୁତିଗାନ କରୁନାହାନ୍ତି ? ସୁବର୍ଣ୍ଣମଣ୍ଡିତ ଅଶ୍ୱମାନଙ୍କ ଦ୍ୱାରା ସଂଯୋଜିତ ହୋଇ ପୁଷ୍ପିତ ରଥ ତୁମର ଆଗେ ଆଗେ କାହିଁକି ଚାଲୁ ନାହିଁ ? କୃଷ୍ଣମେଘବର୍ଣ୍ଣ ପର୍ବତତୁଲ୍ୟ ଗଜରାଜକୁ ମଧ୍ୟ ତୁମ ସମ୍ମୁଖରେ ଚାଲୁଥିବାର ମୁଁ ଦେଖୁ ନାହିଁ । କେବଳ ତୁମକୁ ଏକାକୀ ଏପରି ବିଷଣ୍ଣ ଅବସ୍ଥାରେ ଆସୁଥିବାର ଦେଖୁଚି ।

ରାମ କହିଲେ, ସୀତା, ଆଜି ମୋର ଅଭିଷେକ ହେଉ ନାହିଁ । ପିତା ମୋତେ ଚଉଦ ବର୍ଷ ଦଣ୍ଡକାରଣ୍ୟର ବିଜନ ବନକୁ ନିର୍ବାସନ କରିଛନ୍ତି ଓ ଭରତକୁ ଯୁବରାଜ ରୂପେ ନିଯୁକ୍ତ କରିଛନ୍ତି । କିପରି କୈକେୟୀଙ୍କ ବଳରେ ଏହି ଭୀଷଣ ଘଟଣା ଘଟିଛି ତାହା ବର୍ଣ୍ଣନା କରି ରାମ କହିଲେ, ବର୍ତ୍ତମାନ ମୋର ବନଗମନର ବେଳ । ତା ପୂର୍ବରୁ ତୁମକୁ ସାକ୍ଷାତ୍ କରିବାକୁ ଆସିଚି । ତୁମେ ଏହିଠାରେ ରହି ବ୍ରତ ଉପବାସ ଆଦି ପାଳନ କର । ପ୍ରତ୍ୟହ ପ୍ରତ୍ୟୁଷରୁ ଉଠି ପିତାଙ୍କର ପାଦବନ୍ଦନା କରିବ ଓ ମୋର ବୃଦ୍ଧା ଜନନୀ କୌଶଲ୍ୟାଙ୍କର

ସେବା କରିବ । ଭରତ ଓ ଶତ୍ରୁଘ୍ନ ମୋର ପ୍ରାଣଠାରୁ ପ୍ରିୟ । ତାଙ୍କୁ ତୁମେ ଭ୍ରାତା ଓ ପୁତ୍ରତୁଲ୍ୟ ବ୍ୟବହାର କରିବ । ବିଶେଷତଃ ଭରତ ରାଜା ହେବା ଦୃଷ୍ଟିରୁ ତୁମେ ତା ଆଗରେ କେବେ ମୋର ପ୍ରଶଂସା କରିବ ନାହିଁ । କାରଣ ଐଶ୍ୱର୍ଯ୍ୟଶାଳୀ ପୁରୁଷମାନେ ଅନ୍ୟର ପ୍ରଶଂସା ସହିପାରନ୍ତି ନାହିଁ । ରାଜାର ମନ ନେଇ ତାକୁ ସନ୍ତୁଷ୍ଟ ରଖିବା ତୁମର କର୍ତ୍ତବ୍ୟ ।

ରାମଙ୍କର ବନଗମନ ସମ୍ବାଦ ସୀତାଙ୍କୁ ଯେତେ ବାଧିଲା ନାହିଁ, ବେଶି ବାଧିଲା ତାଙ୍କୁ ସାଙ୍ଗରେ ନ ନେଇ ଅଯୋଧ୍ୟାରେ ରହି କିପରି ଚଳିବାକୁ ହେବ, ସେ ସମ୍ପର୍କରେ ପତିଙ୍କର ଉପଦେଶ । ରାମତଦ୍‌ଗତପ୍ରାଣା ଜାନକୀ ରୁଦ୍ଧ ଅଭିମାନରେ କହିଲେ – ରାଜପୁତ୍ର, ତୁମେ ତୁଚ୍ଛଜ୍ଞାନରେ ମୋତେ ଯାହା କହିଗଲ, ତାହା ଉପହାସର ଯୋଗ୍ୟ । ପିତା, ମାତା, ଭ୍ରାତା, ପୁତ୍ର ଓ ପୁତ୍ରବଧୂ ଏମାନେ ନିଜ ନିଜର ପୁଣ୍ୟଫଳ ଓ ଭାଗ୍ୟ ଭୋଗ କରନ୍ତି । ତୁମେ ଧର୍ମଜ୍ଞ । ତୁମେ କ'ଣ ଜାଣ ନାହିଁ, ପତିର ଭାଗ୍ୟ ପତ୍ନୀ ଲାଭ କରେ । ସ୍ତ୍ରୀ ସ୍ୱାମୀର ଛାୟାସ୍ୱରୂପ । ସ୍ୱାମୀ ପ୍ରାସାଦ ଶିଖରରେ ରହୁ ବା ଆକାଶରେ ଗତି କରୁ କିମ୍ବା ଶ୍ୱାପଦସଂକୁଳ ବିଜନ ଅରଣ୍ୟରେ ବିଚରଣ କରୁ ସହଧର୍ମିଣୀ ସ୍ତ୍ରୀ ତାହାର ହିଁ ଅନୁସରଣ କରିବ । ତେଣୁ ତୁମ ସହିତ ମୋର ବନକୁ ଯିବା ସୁନିଶ୍ଚିତ । ପିତୃଗୃହରେ ମୁଁ ଯେପରି ସୁଖରେ ଥିଲି, ତୁମ ସହିତ ବନବାସ କରି ସେହିପରି ସୁଖରେ ରହିବି । ତୁମକୁ ମୁଁ କିଛି କଷ୍ଟ ଦେବି ନାହିଁ । ମୁଁ ତୁମ ଆଗେ ଆଗେ ଯିବି । ତୁମେ ଖାଇସାରିଲେ ଖାଇବି । ତୁମ ସହିତ ବନର ଫଳମୂଳ ଭକ୍ଷଣ ଅମୃତତୁଲ୍ୟ ମନେ କରିବି । ମୁଁ ବ୍ରହ୍ମଚାରୀବ୍ରତ ଅବଲମ୍ବନ କରି ତୁମର ସେବା ଶୁଶ୍ରୂଷାରେ ରହି ଆନନ୍ଦରେ ଦିନ କଟାଇବି । ମୁଁ ତୁମ ସହିତ ଶୈଳ, ନଦୀ, ପଲ୍ୱଳଶୋଭିତ ବନରେ ବିଚରଣ କରି ସନ୍ତୋଷ ଲାଭ କରିବି । ମାତ୍ର ତୁମ ବିନା ମୁହୂର୍ତ୍ତେ ହେଲେ ସୁଖରେ ରହିପାରିବି ନାହିଁ । ବର୍ତ୍ତମାନ ମୋତେ କିପରି ଏଠାରେ ଚଳିବାକୁ ହେବ, ସେ ଉପଦେଶ ନ ଦେଇ ମୋତେ ସାଙ୍ଗରେ ନେଇ ବନଯାତ୍ରା କର ।

ରାମ ସୀତାଙ୍କୁ ନିବର୍ତ୍ତାଇବା ପାଇଁ ବନବାସର କଷ୍ଟ ବୁଝାଇ କହିଲେ – ସୀତା, ଶ୍ରେଷ୍ଠ କୁଳୀନ ବଂଶରେ ତୁମର ଜନ୍ମ । ବନବାସ କରିବାକୁ ହେଲେ ଶ୍ୱାପଦସଂକୁଳ ଦୁର୍ଗମ ଅରଣ୍ୟରେ କୁଶକାଶକଣ୍ଟକପୂର୍ଣ୍ଣ ପଥରେ ଯିବାକୁ ହେବ ଓ ଭୂମିରେ ପତ୍ରଶଯ୍ୟାରେ ଶୋଇବାକୁ ହେବ । ବଳ୍କଳ ଓ ଜଟାଭାର ବହନ କରି ଅଧିକାଂଶ ସମୟ ଉପବାସ ରହିବାକୁ ହେବ । କ୍ଷୁଧା, ତୃଷା, ବର୍ଷା, ପବନ, ଅନ୍ଧକାର, ସର୍ପ ଓ ଶ୍ୱାପଦମାନଙ୍କ ଭୟ ମଧ୍ୟରେ ରହିବାକୁ ପଡ଼ିବ । ତେଣୁ ମୋର କଥା ମାନ । ତୁମେ ଏହିଠାରେ ରହି ଧର୍ମାଚରଣ କର ।

ସୀତା ସଜଳନୟନରେ ଉତ୍ତର ଦେଲେ, ତୁମର ସ୍ନେହ ଥିଲେ ବନବାସର ଯେଉଁ ଦୋଷସବୁ ତୁମେ ବର୍ଣ୍ଣନା କଲ, ତାହା ମୋ ପକ୍ଷରେ ଗୁଣ ବୋଲି ଗଣ୍ୟ ହେବ । ରାଘବ, ହିଂସ୍ର ଶ୍ୱାପଦମାନେ ତୁମକୁ ଦେଖି ଭୟରେ ପଳାଇବେ । ତୁମେ ଥିଲେ କଣ୍ଟକିତ ବନପଥ ମୋ ପାଇଁ କୋମଳ ଦୂର୍ବାଦଳ ହେବ । ପତ୍ରଶଯ୍ୟା ସହିତ ତୂଳିତଳ୍ପ ମଧ୍ୟ ତୁଳନୀୟ ହେବ ନାହିଁ । ମୁଁ କନ୍ୟା ଅବସ୍ଥାରେ ଥିବା ବେଳେ ଜଣେ ସାଧ୍ୱୀ ତପସ୍ୱିନୀ ମୋର

ମାତାଙ୍କ ଆଗରେ କହିଥିଲେ ଯେ ମୋର ବନବାସ ଯୋଗ ଅଛି । ତେଣୁ ବନବାସ ପାଇଁ ମୁଁ ସବୁବେଳେ ପ୍ରସ୍ତୁତ ହୋଇ ରହିଚି । ବନବାସରେ ପ୍ରିୟତମ ପତିଙ୍କ ସହିତ ରହି ତାଙ୍କର ପରିଚର୍ଯ୍ୟା କରିବାର ସୁଯୋଗ ପାଇଲେ, ତାହାଠାରୁ ବଳି ଆନନ୍ଦ କଣ ଥାଇପାରେ ? ତୁମର ସୁଖଦୁଃଖଭାଗିନୀ, ଅନୁରକ୍ତା ଓ ଏକାନ୍ତ ଭକ୍ତ ପତ୍ନୀକୁ ଦୁଃଖିନୀ ଅବସ୍ଥାରେ ଏଠାରେ ଛାଡ଼ିଦେଇ ତୁମେ କିପରି ବନବାସର କଳ୍ପନା କରୁଚ ? ଏହା କହିବା ସଙ୍ଗେ ସଙ୍ଗେ ସୀତାଙ୍କ ଚକ୍ଷୁରୁ ଉଷ୍ଣ ଲୋତକ ଧାରା ବହିବାକୁ ଲାଗିଲା । ସେ କହିଲେ – ରାଘବ, ତୁମେ ମୋତେ ସାଙ୍ଗରେ ନ ନେଲେ ମୁଁ ମୃତ୍ୟୁ ପାଇଁ ଜଳ, ଅଗ୍ନି ବା ବିଷର ଆଶ୍ରୟ ନେବି ।

ରାମ ସୀତାଙ୍କୁ ନିରସ୍ତ କରିବାପାଇଁ ବହୁ ଯୁକ୍ତି ଓ ଅନୁନୟ କଲେ । ମାତ୍ର ମୈଥିଳୀ ନିଜର ସଂକଳ୍ପରେ ଦୃଢ଼ ରହି ଶେଷକୁ ପତିଙ୍କୁ ଭର୍ତ୍ସନାଯୁକ୍ତ ବାକ୍ୟରେ କହିଲେ – ମୋର ପିତା ଜନକ ପୁରୁଷରୂପ ଧାରଣ କରିଥିବା ଜଣେ ସ୍ତ୍ରୀକୁ ଜାମାତାରୂପେ ଲାଭ କରିଥିବାର ଜାଣିଥିଲେ କ'ଣ ମନେ କରିଥାନ୍ତେ ? କୁମାରୀ ଅବସ୍ଥାରୁ ଯେଉଁ ସତୀ ସ୍ତ୍ରୀ ଭାର୍ଯ୍ୟାରୂପେ ଏତେ ଦିନ ଚଳି ଆସିଲା, କେଉଁ ସ୍ୱାମୀ ନଟ ଭଳି ତାକୁ ଅନ୍ୟ ହାତରେ ଛାଡ଼ିଦେଇ ଚାଲିଯିବାର ଚିନ୍ତା କରିବ ? ଯେଉଁ ଭରତ ପାଇଁ ତୁମର ଅଭିଷେକରେ ବ୍ୟାଘାତ ହେଲା, ତୁମେ ତାର ବଶୀଭୂତ ହୋଇ ତାର ଆଦେଶ ପାଳନ କର । କିନ୍ତୁ ମୋତେ ତାର ଅନୁଗ୍ରହରେ ରହିବାପାଇଁ ଉପଦେଶ ଦିଅ ନାହିଁ । ତୁମେ ଯେଉଁଠି ରହିବ, ତାହା ମୋ ପାଇଁ ସ୍ୱର୍ଗ । ପିତାମାତା, ଗୃହ, ତୁମ ବିନା କିଛି ନୁହେଁ । ତୁମ ବିନା ସେ ଗୃହ ନରକରେ ବାସକରିବାଠାରୁ ମଧ୍ୟ ଦୁଃଖଦାୟକ । ତାହା ଅପେକ୍ଷା ବିଷପାନ କରି ପ୍ରାଣନାଶ କରିବା ଶ୍ରେୟସ୍କର । ଏହା କହି ସୀତା ରାମଙ୍କୁ ଆଲିଙ୍ଗନ କରି କରୁଣ ଭାବରେ ବିଳାପ କରିବାକୁ ଲାଗିଲେ ।

ଦୁଃଖରେ ଅଚେତନପ୍ରାୟ ନିଜର ପ୍ରିୟପତ୍ନୀକୁ ଆଶ୍ୱାସନା ଦେଇ ରାମ କହିଲେ, ଦେବୀ, ତୁମକୁ ଦୁଃଖ ଦେଇ ସ୍ୱର୍ଗସୁଖ ଲାଭ ମୋର ଲୋଡ଼ା ନାହିଁ । ତୁମର ଆନ୍ତରିକ ଅଭିପ୍ରାୟ ନ ଜାଣି ମୁଁ ତୁମକୁ କିପରି ବନକୁ ଯିବାକୁ କହିଥାନ୍ତି ? ତୁମେ ଯେତେବେଳେ ମୋ ସହିତ ବନକୁ ଯିବାକୁ ସ୍ଥିର କରିଚ, ତୁମର ଏହି ଅଭିଳାଷ ଅନ୍ୟଥା ହେବ ନାହିଁ । ସହଧର୍ମଚାରିଣୀ ଭାବରେ ତୁମେ ମୋ ସହିତ ବନଗମନ କର । ମନୁଷ୍ୟ ନିଜର ସୁଗୁଣ ବା କୀର୍ତ୍ତିକୁ ଯେପରି ପରିତ୍ୟାଗ କରିପାରେ ନାହିଁ, ମୁଁ ସେହିପରି ତୁମକୁ ଛାଡ଼ି ବନବାସ କରିପାରିବି ନାହିଁ । କଲ୍ୟାଣୀ, ବନଯାତ୍ରା ପୂର୍ବରୁ ବ୍ରାହ୍ମଣମାନଙ୍କୁ ମହାମୂଲ୍ୟ ବସ୍ତ୍ର, ଅଳଙ୍କାର, ଶଯ୍ୟା, ଯାନ, କ୍ରୀଡ଼ନକ ଦ୍ରବ୍ୟ ଆଦି ଦାନ କରି ଅବଶିଷ୍ଟ ଯାହା ରହିବ ଭୃତ୍ୟମାନଙ୍କ ମଧ୍ୟରେ ବିତରଣ କର ।

ଏହିପରି ବ୍ୟକ୍ତିଗତ ନିଜର କୌଣସି ସଂପତ୍ତି ନ ରଖି ନିଃସ୍ୱ ସନ୍ନ୍ୟାସୀ ଭାବରେ ରାମ ବନକୁ ଯାତ୍ରା କରିବାପାଇଁ ପ୍ରସ୍ତୁତ ହେଲେ ।

## ୨୪ ।। ଭ୍ରାତା, ସୁହୃଦ୍, ଅନୁଚର

ଯଶସ୍ୱୀ ଲକ୍ଷ୍ମଣ ଏହି ଦୃଶ୍ୟ ଦେଖି ନିଜର ଶୋକକୁ ଚାପି ରଖିପାରିଲେ ନାହିଁ । ତାଙ୍କ ଚକ୍ଷୁରୁ ଅଶ୍ରୁଧାର ବହିବାକୁ ଲାଗିଲା । ସେ ରାମଙ୍କର ଚରଣଯୁଗଳକୁ ଦୃଢ଼ଭାବରେ ଧାରଣ କରି କହିଲେ, ତୁମେ ଯଦି ବନକୁ ଯାତ୍ରା କରିବା ସ୍ଥିର କରିଚ, ତା' ହେଲେ ମୋତେ ମଧ୍ୟ ସାଙ୍ଗରେ ନିଅ । ମୁଁ ଧନୁ ଧରି ତୁମ ଆଗେ ଆଗେ ଯିବି । ମୁଁ ତୁମକୁ ଛାଡ଼ି ଦେବଲୋକ, ଅମରତ୍ୱ କିମ୍ବା ଏହି ସଂସାରର କୌଣସି ଐଶ୍ୱର୍ଯ୍ୟ କାମନା କରେ ନାହିଁ ।

ରାମ ଲକ୍ଷ୍ମଣଙ୍କୁ ବାରଣ କଲେ । ସେ କହିଲେ ସୌମିତ୍ରି, ତମେ ଯଦି ମୋ ସାଙ୍ଗରେ ବନକୁ ଚାଲିଯିବ, ତା' ହେଲେ କୌଶଲ୍ୟା ଓ ସୁମିତ୍ରାଙ୍କୁ କିଏ ପାଳନ କରିବ ? କୈକେୟୀ ରାଜ୍ୟଲାଭ କରି ନିଜର ସପତ୍ନୀମାନଙ୍କ ପ୍ରତି ଦୁର୍ବ୍ୟବହାର କରିବେ । ଭରତ ମଧ୍ୟ କୈକେୟୀଙ୍କ ଯୋଗୁଁ ରାଜ୍ୟ ପାଇଥିବା ଦୃଷ୍ଟିରୁ ବିମାତାମାନଙ୍କ କଥା ଆଦୌ ଚିନ୍ତା କରିବେ ନାହିଁ । ସମସ୍ତଙ୍କ ବିରହରେ ମନସ୍ୱିନୀ କୌଶଲ୍ୟାଙ୍କର କି ଅବସ୍ଥା ହେବ ? ତେଣୁ ତୁମେ ଏଠାରେ ରହି ଏମାନଙ୍କର ସେବା କର । ଲକ୍ଷ୍ମଣ କହିଲେ – ବୀର, ତୁମ ପ୍ରତାପରେ ଶଂକିତ ହୋଇ ଭରତ ନିଶ୍ଚୟ କୌଶଲ୍ୟା ଓ ସୁମିତ୍ରାଙ୍କର ଯତ୍ନ ନେବେ । ଯଦି ସେ କୁପଥଗାମୀ ଓ ଉଚ୍ଛୃଙ୍ଖଳ ହୋଇ ସେମାନଙ୍କୁ ଅନାଦର କରନ୍ତି, ତା' ହେଲେ ମୁଁ ଭରତଙ୍କୁ ନିଶ୍ଚିତ ଭାବରେ ହତ୍ୟା କରିବି । ତା' ଛଡ଼ା ମାତା କୌଶଲ୍ୟା ସମ୍ବଳହୀନା ନୁହନ୍ତି । ତାଙ୍କ ଉପରେ ନିର୍ଭରଶୀଳ ଭୃତ୍ୟମାନଙ୍କ ପାଇଁ ତାଙ୍କ ହାତରେ ଏକସହସ୍ର ଗ୍ରାମ ଅଛି । ତେଣୁ ତାଙ୍କ ନିଜର ଭରଣପୋଷଣ, ସୁମିତ୍ରାଙ୍କର ଭରଣପୋଷଣ ଏବଂ ମୋପରି ଲୋକର ପୋଷଣ ପାଇଁ ତାଙ୍କର ଯଥେଷ୍ଟ ସମ୍ବଳ ଅଛି । ତେଣୁ ତୁମେ ମୋତେ ଅନୁଚର ରୂପେ ଗ୍ରହଣ କର । ମୁଁ ଧନୁଶର. ଖଣତି ଓ ପେଡ଼ି ଧରି ବାଟ ଦେଖାଇ ତୁମ ଆଗେ ଆଗେ ଯିବି । ପ୍ରତିଦିନ ତପସ୍ୱୀମାନଙ୍କର ଆହାରଯୋଗ୍ୟ ଫଳମୂଳ ତୁମପାଇଁ ଆହରଣ କରିବି । ତୁମେ ଓ ବୈଦେହୀ ପର୍ବତର ସାନୁଦେଶରେ ବିହାର କରୁଥିବା ବେଳେ ମୁଁ ତୁମକୁ ଜଗି ରହିବି । ଜାଗ୍ରତ ଓ ନିଦ୍ରିତ, ଯେଉଁ ଅବସ୍ଥାରେ ତୁମେ ଥାଅନା କାହିଁକି, ମୁଁ ତୁମର ପ୍ରହରୀ ରୂପେ କାର୍ଯ୍ୟ କରିବି ।

ରାମ ଲକ୍ଷ୍ମଣଙ୍କ କଥାରେ ଅତ୍ୟନ୍ତ ପ୍ରୀତ ହୋଇ କହିଲେ – ଲକ୍ଷ୍ମଣ, ତୁମେ ମୋର ପ୍ରାଣ ପରି ପ୍ରିୟ, ସଖା, ସୁହୃଦ୍, ଭ୍ରାତା ଓ ଅନୁଚର । ବର୍ତ୍ତମାନ ଆତ୍ମୀୟସ୍ୱଜନଙ୍କ ଅନୁମତି ନେଇ ମୋ ସହିତ ଯିବା ପାଇଁ ପ୍ରସ୍ତୁତ ହୁଅ । ରାଜର୍ଷି ଜନକଙ୍କ ଯଜ୍ଞରେ ଯେଉଁ ଦୁଇଟି ଭୟାନକ ଧନୁ, ଅଭେଦ୍ୟ କବଚ, ଦିବ୍ୟ ତୂଣ, ଅକ୍ଷୟ ଶର, ତେଜୋମୟ ଖଡ଼୍‌ଗ ବରୁଣ ଦାନ କରିଥିଲେ, ରାଜର୍ଷି ତାହା ଆମକୁ ଦେଇଛନ୍ତି ଏବଂ ତାହା ଆଚାର୍ଯ୍ୟଙ୍କ ଗୃହରେ ରଖା ହୋଇଚି । ତାହା ଶୀଘ୍ର ସଂଗ୍ରହ କରି ନେଇଆସ ।

ଲକ୍ଷ୍ମଣ ଗୁରୁ ଗୃହରୁ ମାଲ୍ୟଭୂଷିତ ସମସ୍ତ ଆୟୁଧ ଘେନି ଆସିଲେ । ରାମଚନ୍ଦ୍ର ପ୍ରୀତ ହୋଇ କହିଲେ – ସୌମ୍ୟ, ପୂର୍ବରୁ ମୁଁ ସୀତାଙ୍କୁ ସମସ୍ତ ଧନ ବାଣ୍ଟିଦେବାପାଇଁ କହିଥିଲି । ବର୍ତ୍ତମାନ ମୋର ଯାହା ସବୁ ଧନ ରତ୍ନ ଅଛି, ତୁମ ସହିତ ମିଶି ମୁଁ ତପସ୍ୱୀ ଓ ବ୍ରାହ୍ମଣମାନଙ୍କ

ମଧ୍ୟରେ ବିତରଣ କରିବା ପାଇଁ ଇଚ୍ଛା ପ୍ରକାଶ କରୁଚି । ତୁମେ ବଶିଷ୍ଠଙ୍କ ପୁତ୍ର ଆର୍ଯ୍ୟ ସୁଯଜ୍ଞଙ୍କୁ ଡାକି ଆଣ ।

ସୁଯଜ୍ଞ ଆସିବା ପରେ ରାମ କହିଲେ, ସଖେ, ମୁଁ ତୁମକୁ ଏହି ସ୍ୱର୍ଣ୍ଣମୟ କୁଣ୍ଡଳ, ମଣିମୟ ହାର, କେୟୂର ଓ ବଳୟ ଆଦି ଦାନ କରୁଚି । ସୀତା ବର୍ତ୍ତମାନ ବନକୁ ଯାଉଥିବା ଯୋଗୁଁ ସେ ତୁମର ଭାର୍ଯ୍ୟାଙ୍କ ପାଇଁ ତାଙ୍କର ସ୍ୱର୍ଣ୍ଣ ଓ ରତ୍ନ ଅଳଙ୍କାରମାନ ଉପହାର ଦେଉଛନ୍ତି । ଏହା ସହିତ ଆସ୍ତରଣଯୁକ୍ତ ରତ୍ନଭୂଷିତ ପଲଙ୍କଟି ମଧ୍ୟ ସେ ଦେଉଛନ୍ତି । ଶତ୍ରୁଞ୍ଜୟ ନାମକ ଯେଉଁ ସୁନ୍ଦର ହସ୍ତୀକୁ ମୋର ମାତୁଳ ମୋତେ ଉପହାର ଦେଇଥିଲେ, ତାହା ମୁଁ ତୁମକୁ ଦାନ କରୁଚି ଏବଂ ତା' ସହିତ ଦେଉଚି ଦକ୍ଷିଣାସ୍ୱରୂପ ଦଶସହସ୍ର ସ୍ୱର୍ଣ୍ଣମୁଦ୍ରା । ସୁଯଜ୍ଞ ସେ ସମସ୍ତ ଗ୍ରହଣ କରି ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ଆଶୀର୍ବାଦ କଲେ ।

ରାମଙ୍କ ଆଦେଶରେ ଲକ୍ଷ୍ମଣ ଦ୍ୱିଜଶ୍ରେଷ୍ଠ ଅଗସ୍ତ୍ୟ ଓ କୌଶିକଙ୍କୁ ସହସ୍ର ଗାଭୀ, ସୁବର୍ଣ୍ଣ, ରଜତ ଓ ମହାମୂଲ୍ୟ ମଣି ଆଦି ଦାନ କଲେ ଏବଂ ଯେଉଁ ବେଦଜ୍ଞ ବ୍ରାହ୍ମଣମାନେ ସୁମିତ୍ରା ଓ କୌଶଲ୍ୟାଙ୍କ ପାଖରେ ରହି ତାଙ୍କର ବିଭିନ୍ନ କ୍ରିୟା କର୍ମ ଆଦି କରନ୍ତି, ସେମାନଙ୍କୁ ଏବଂ ବହୁ ସଂଖ୍ୟକ ବେଦାଧ୍ୟାୟୀ ବ୍ରାହ୍ମଣ ଓ ବ୍ରହ୍ମଚାରୀଙ୍କୁ ବିଭିନ୍ନ ଯାନ, ବାହନ, ମୂଲ୍ୟବାନ ଦ୍ରବ୍ୟ, ଖାଦ୍ୟପଦାର୍ଥ ଆଦି ମୁକ୍ତ ହସ୍ତରେ ଦାନ କଲେ । ଶୋକାକୁଳ ଭୃତ୍ୟମାନଙ୍କୁ ପ୍ରଚୁର ଧନ ଦାନ କରି ରାମ କହିଲେ, ତୁମେମାନେ ମୁଁ ଫେରିଆସିବା ପର୍ଯ୍ୟନ୍ତ ଲକ୍ଷ୍ମଣଙ୍କର ଓ ମୋର ଘରକୁ ଜଗି ରହିଥିବ ।

ଏହି ସମୟରେ ତ୍ରିଜଟ ନାମରେ ଜଣେ ଗାର୍ଗଗୋତ୍ରୀୟ ପିଙ୍ଗଳବର୍ଣ୍ଣ ବୃଦ୍ଧ ବ୍ରାହ୍ମଣ, ଯେକି ବନରେ ଭୂମି ଖନନ କରି ଓ ଉଞ୍ଛବୃତ୍ତି ଅବଲମ୍ବନ କରି କଷ୍ଟରେ ତାଙ୍କର ଯୁବତୀ ଭାର୍ଯ୍ୟା ଓ ଶିଶୁପୁତ୍ରମାନଙ୍କୁ ପାଳନ କରୁଥିଲେ, ସେ ସେମାନଙ୍କୁ ଧରି ସେଠାରେ ଆସି ପହଞ୍ଚିଗଲେ । ରାମ ଏହି ଦରିଦ୍ର ବୃଦ୍ଧ ବ୍ରାହ୍ମଣଙ୍କୁ ଦେଖି କହିଲେ, ମୁଁ ଏକସହସ୍ର ଗାଭୀ ଛଡ଼ା ବାକି ସମସ୍ତ ଦାନ କରିସାରିଛି । ତମେ ସେହି ଗୋରୁ ଗୋଠ ମଧ୍ୟରେ ଯେତେ ଦୂର ପର୍ଯ୍ୟନ୍ତ ତୁମର ବାଡ଼ିକୁ ଫିଙ୍ଗିଦେଇପାରିବ, ସେ ସମସ୍ତ ଗାଭୀ ତୁମର ହେବ । ତ୍ରିଜଟ ଅଣ୍ଟାରେ ଲୁଗାକୁ ଭିଡ଼ି ବାଡ଼ିକୁ ବୁଲାଇ ବୁଲାଇ ତାଙ୍କର ସମସ୍ତ ଜୋର ଲଗାଇ ଦୂରକୁ ଫିଙ୍ଗି ଦେଲେ । ତାଙ୍କର ବାଡ଼ି ସରଯୂ ନଦୀର ଅନ୍ୟ ପଟରେ ଯାଇ ପଡ଼ିଲା । ରାମ କହିଲେ, ଦ୍ୱିଜ ଶ୍ରେଷ୍ଠ ମୁଁ ପରିହାସରେ ତୁମକୁ ତୁମର ଯଷ୍ଟି ନିକ୍ଷେପ କରିବା ପାଇଁ କହିଥିଲି । ତୁମର ଶକ୍ତି ଦେଖି ମୁଁ ପ୍ରୀତ ହୋଇଛି । ତୁମେ ଏ ସମସ୍ତ ଧେନୁ ଓ ବୃଷଭଙ୍କୁ ଗ୍ରହଣ କର । ତ୍ରିଜଟ ରାମଙ୍କୁ ଆଶୀର୍ବାଦ କରି ସମସ୍ତ ଧେନୁ ସହିତ ନିଜର ଆଶ୍ରମକୁ ଆନନ୍ଦରେ ଯାତ୍ରା କଲେ ।

ଏହିପରି ଋଷି, ବ୍ରାହ୍ମଣ, ସଖା, ସୁହୃଦ, ଭୃତ୍ୟ, ଦରିଦ୍ର ବ୍ୟକ୍ତି, ଭିକ୍ଷୁକମାନଙ୍କୁ ସମସ୍ତ ଧନ ଦାନ କରି ରାମ ଲକ୍ଷ୍ମଣ ଓ ସୀତାଙ୍କ ସହିତ ପିତା ଦଶରଥଙ୍କୁ ଦେଖିବା ପାଇଁ ଗଲେ ।

## ୨୫ ।। ବନବାସ ପାଇଁ ପ୍ରସ୍ତୁତି

ରାମ, ଲକ୍ଷ୍ମଣଙ୍କର ଯେଉଁସବୁ ଆୟୁଧ ସୀତା ମାଲ୍ୟଦ୍ୱାରା ଅଳଂକୃତ କରିଥିଲେ, ସେ ଦୁହେଁ ତାହା ଧାରଣ କରି ବେଶ ସୁନ୍ଦର ଓ ତେଜୀୟାନ୍ ଦେଖାଯାଉଥିଲେ । ଲୋକମାନେ ନିଜ ନିଜ ପ୍ରାସାଦ ଓ ହର୍ମ୍ମ୍ୟ ଉପରେ ରହି ରାମ, ଲକ୍ଷ୍ମଣ, ସୀତା ପାଦରେ ଚାଲି ଚାଲି ଯାଉଥିବାର ଦେଖି ଅତ୍ୟନ୍ତ ଦୁଃଖ ଅନୁଭବ କଲେ । ଯେଉଁ ରାମ ଯିବା ବେଳେ ତାଙ୍କ ପଛେ ପଛେ ବିଶାଳ ଚତୁରଙ୍ଗ ସେନା ଯାତ୍ରା କରୁଥିଲା, ବର୍ତ୍ତମାନ ସେ ଏକାକୀ ଲକ୍ଷ୍ମଣ ଓ ସୀତାଙ୍କ ସହିତ ଯାଉଛନ୍ତି । ଯେଉଁ ଅସୂର୍ଯ୍ୟଂପଶ୍ୟା ସୀତାଙ୍କୁ ଆକାଶଚାରୀ ପକ୍ଷୀମାନେ ମଧ ଦେଖି ପାରୁ ନ ଥିଲେ, ସେ ଆଜି ରାଜମାର୍ଗରେ ଜଣେ ସାଧାରଣ ନାରୀ ପରି ଯାତ୍ରା କରୁଛନ୍ତି । ଏହା ଦେଖି ଲୋକମାନେ ଭାବିଲେ, ବୋଧହୁଏ ଦଶରଥଙ୍କ ଦେହରେ ଭୂତ ପ୍ରବେଶ କରିଛି । ତା' ନ ହେଲେ ସମସ୍ତ ଗୁଣରେ ଭୂଷିତ ଅତୁଳନୀୟ ରାଘବଙ୍କୁ ସେ କେବେ ବନବାସ ଦଣ୍ଡ ଦେଇ ନ ଥାନ୍ତେ । ଚାଲ, ଆମ୍ଭେମାନେ ସମସ୍ତ ଉଦ୍ୟାନ, ଶସ୍ୟକ୍ଷେତ୍ର, ଆମର ପ୍ରିୟ ଗୃହ ଓ ସମସ୍ତ ଧନସଂପତ୍ତି ଛାଡ଼ି ରାମଙ୍କର ଅନୁଗମନ କରିବା । ଆମ୍ଭେମାନେ ରାମଙ୍କ ସହିତ ଚାଲିଗଲେ ଏହି ଅଯୋଧ୍ୟା ପରିତ୍ୟକ୍ତ ହୋଇ ବନରେ ପରିଣତ ହେବ ଏବଂ ରାମ ଯେଉଁଠାରେ ରହିବେ, ତାହାହିଁ ହେବ ଅଯୋଧ୍ୟା ନଗରୀ । କୈକେୟୀ ତା'ର ପୁତ୍ର ଓ ବନ୍ଧୁବାନ୍ଧବଙ୍କ ସହିତ ଏହି ଜନଶୂନ୍ୟ ଅଯୋଧ୍ୟା ନଗରୀରେ ରାଜପଣ କରୁ ।

ରାମ ପ୍ରହରୀବେଷ୍ଟିତ ଦଶରଥଙ୍କର ପ୍ରାସାଦରେ ପ୍ରବେଶ କଲେ । ରାମ ସେଠାରେ ଉପସ୍ଥିତ ଶୋକାକୁଳ ଆତ୍ମୀୟ ଓ ସୁହୃଦ୍‌ମାନଙ୍କୁ ଦେଖି ଈଷତ୍ ହାସ୍ୟପୂର୍ବକ ସୁମନ୍ତ୍ରଙ୍କୁ ନିଜ ଆଗମନ ବାର୍ତ୍ତା ଜଣାଇଲେ । ସୁମନ୍ତ୍ର ରାହୁଗ୍ରସ୍ତ ସୂର୍ଯ୍ୟ ପରି ବ୍ୟାକୁଳଚିତ୍ତ ରାଜାଙ୍କୁ ତାହା ଜଣାଇବାରୁ ଦଶରଥ କହିଲେ, ତୁମେ ମୋର ପତ୍ନୀମାନଙ୍କୁ ଏଠାକୁ ଡକାଇ ଆଣ । ମୁଁ ସେମାନଙ୍କ ସହିତ ମୋର ପ୍ରିୟ ପୁତ୍ର ରାମଙ୍କୁ ଦେଖିବାକୁ ଚାହେ । ସମସ୍ତେ ଉପସ୍ଥିତ ହେବା ପରେ ସୁମନ୍ତ୍ର ରାମ ଓ ଲକ୍ଷ୍ମଣଙ୍କୁ ଡାକି ଆଣିଲେ ।

ରାମ କୃତାଞ୍ଜଳି ହୋଇ ଆସୁଥିବାର ଦେଖି ରାଜା ତାଙ୍କ ଆଡ଼କୁ ଦ୍ରୁତ ବେଗରେ ଦୌଡ଼ିଗଲେ । ମାତ୍ର ସେ ଅତ୍ୟନ୍ତ ଦୁଃଖାର୍ତ୍ତ ହୋଇଥିବାରୁ ମୂର୍ଚ୍ଛିତ ହୋଇ ଭୂତଳରେ ପଡ଼ିଗଲେ । ସହସା ରାଜପୁରୀରୁ ଅଳଙ୍କାରର ଧ୍ୱନି ସହ ସହସ୍ରସଂଖ୍ୟକ ସ୍ତ୍ରୀଲୋକଙ୍କ କଣ୍ଠରୁ 'ହା ରାମ' ଧ୍ୱନି ଉତ୍‌ଥିତ ହେଲା । ରାମ, ଲକ୍ଷ୍ମଣ ଓ ସୀତା ଦଶରଥଙ୍କୁ ଚେତା କରି ଉଠାଇ ଆସନରେ ବସାଇଲେ । ରାମ କହିଲେ – ମହାରାଜ, ବର୍ତ୍ତମାନ ମୁଁ ଦଣ୍ଡକାରଣ୍ୟ ଯାତ୍ରା କରୁଛି । ଆପଣ ମୋତେ ଶୁଭଦୃଷ୍ଟିରେ ଦେଖନ୍ତୁ । ଯେତେ ମନାକଲେ ମଧ ସୀତା ଓ ଲକ୍ଷ୍ମଣ ମୋ ସହିତ ଯାଉଛନ୍ତି । ମୁଁ ବିଦାୟ ମାଗୁଛି, ଆପଣ ମୋ ସହିତ ଯିବାକୁ ସେମାନଙ୍କୁ ଅନୁମତି ଦିଅନ୍ତୁ ।

ଦଶରଥ ସାଶ୍ରୁ ନୟନରେ ରାମଙ୍କୁ ଚାହିଁ କହିଲେ, କୈକେୟୀଙ୍କୁ ବରଦାନ କରି ମୁଁ ମୋହଗ୍ରସ୍ତ ହୋଇଛି । ତୁମେ ମୋତେ ଅବଜ୍ଞା କରି ଅଯୋଧ୍ୟାର ରାଜା ହୁଅ । ଧର୍ମଜ୍ଞ

ରାମ ପିତାଙ୍କୁ କହିଲେ – ମହାରାଜ, ଆପଣ ଏକହଜାର ବର୍ଷ ରାଜପଣ କରନ୍ତୁ, ମୁଁ ବନବାସ କରିବି । ଆପଣଙ୍କୁ କେବେହେଲେ ଅସତ୍ୟବାଦୀ ହେବାପାଇଁ ଦେବି ନାହିଁ । ଚଉଦବର୍ଷ ବନବାସ ଶେଷରେ ମୁଁ ଫେରିଆସି ପୁଣି ଆପଣଙ୍କର ଚରଣ ବନ୍ଦନା କରିବି ।

କୈକେୟୀ ଅନ୍ତରାଳରେ ରହି ରାମ କିପରି ଶୀଘ୍ର ବନକୁ ଯିବେ ସେଥିପାଇଁ ଦଶରଥଙ୍କୁ ପ୍ରବର୍ତ୍ତାଉଥାନ୍ତି । ଦଶରଥ ଦୁଃଖରେ ବିଳାପ କରି କହିଲେ – ବତ୍ସ, ଶ୍ରେୟ ଲାଭ ଓ ଶ୍ରୀବୃଦ୍ଧି ପାଇଁ ତୁମେ ବନକୁ ଯାଅ । ନିର୍ବିଘ୍ନ ଓ ନିର୍ଭୀକ ଭାବରେ ତୁମେ ଯାତ୍ରା କର । ତୁମର ପଥ ମଙ୍ଗଳମୟ ହେଉ । କିନ୍ତୁ ପୁତ୍ର, ଆଜି ରାତିଟା ରହିଯାଇ କାଲି ସକାଳେ ଯାଅ । ଅନ୍ତତଃ ଆଉ ଗୋଟିଏ ଦିନ ଯେପରି ମୁଁ ତୁମ ସହିତ ରହିପାରିବି ।

ରାମ କହିଲେ – ପିତା, ଆପଣ ଶୋକ କରନ୍ତୁ ନାହିଁ । ମୋତେ ବର୍ତ୍ତମାନ ଯିବାପାଇଁ ଅନୁମତି ଦିଅନ୍ତୁ । ମୁଁ ଆଜି ଯିବାଦ୍ୱାରା ଯେଉଁ ସଦ୍‌ଗୁଣ ଅର୍ଜନ କରିବି, କାଲି ଗଲେ ତାହା ମୋତେ ମିଳିବ ନାହିଁ । ତେଣୁ ମହାରାଜ, କୈକେୟୀଙ୍କୁ ଆପଣ ଦେଇଥିବା ବର ଏହି ମୁହୂର୍ତ୍ତରେ ପାଳିତ ହେଉ । ଆଜି ହିଁ ବନଯାତ୍ରା କରିବା ପାଇଁ ମୁଁ ମାତା କୈକେୟୀଙ୍କ ନିକଟରେ ବଚନବଦ୍ଧ ।

ଦଶରଥ ପୁତ୍ରକୁ ଆଲିଙ୍ଗନ କରି ଘୋର ଦୁଃଖରେ ପୁଣି ମୂର୍ଚ୍ଛିତ ହୋଇ ପଡ଼ିଲେ । କେବଳ କୈକେୟୀଙ୍କୁ ଛାଡ଼ି ସମସ୍ତେ ସେଠାରେ ରୋଦନ କରୁଥିଲେ ।

ଶୋକାର୍ତ୍ତ ସୁମନ୍ତ୍ରଙ୍କର ଚକ୍ଷୁ କ୍ରୋଧରେ ରକ୍ତବର୍ଣ୍ଣ ହୋଇଗଲା । ସେ ଘନ ଘନ ଦୀର୍ଘନିଃଶ୍ୱାସ ତ୍ୟାଗ କରି କୈକେୟୀଙ୍କୁ କହିଲେ – ଦେବୀ, ସ୍ଥାବର ଜଙ୍ଗମ ସମସ୍ତ ପୃଥିବୀର ଅଧିପତି ତୁମର ପ୍ରିୟ ସ୍ୱାମୀକୁ ତୁମେ ପରିତ୍ୟାଗ କରିଛ । ତୁମ୍ଭେ ପତିଘାତିନୀ ହୋଇ କୁଳନାଶର କାରଣ ହୋଇଛ । ତୁମର ପୁତ୍ର ରାଜା ହୋଇ ପୃଥିବୀକୁ ଶାସନ କରୁ । ମାତ୍ର ରାମ ଯେଉଁଆଡ଼େ ଯିବେ ଆମେ ସମସ୍ତେ ସେଇଆଡ଼େ ଚାଲିଯିବୁ । ସମସ୍ତ ବନ୍ଧୁବାନ୍ଧବ, ଆଚାର୍ଯ୍ୟ, ବ୍ରାହ୍ମଣଙ୍କ ଦ୍ୱାରା ପରିତ୍ୟକ୍ତ ହୋଇ ସ୍ୱାମୀଙ୍କର ଘୋର ଶୋକ ଓ ଦୁଃଖର କାରଣ ହୋଇ ତୁମେ ମୁହୂର୍ତ୍ତେ ମଧ୍ୟ ସୁଖରେ ଓ ଶାନ୍ତିରେ ରହିପାରିବ ନାହିଁ । ତୁମେ କ'ଣ ବ୍ରହ୍ମର୍ଷିମାନଙ୍କର ଧିକ୍‌କାର ଭର୍ତ୍ସନା ଶୁଣିପାରୁ ନାହଁ ? ମୁଁ ଜାଣେ ତୁମର ମାତାଙ୍କର ଗୁଣ ତୁମେ ଗ୍ରହଣ କରିଛ । ମୁଁ ଶୁଣିଛି ତୁମର ପିତା କେକୟରାଜ ଜଣେ ବରଦାତା ମହର୍ଷିଙ୍କ ଠାରୁ ବର ପାଇଥିଲେ ଯେ ସେ ସବୁ ଜୀବଜନ୍ତୁଙ୍କର ଭାଷା ବୁଝି ପାରିବେ । ଦିନେ ସେ ଶୟନ କକ୍ଷରେ ଏକ ଜୃମ୍ଭ ପକ୍ଷୀର ରାବ ଶୁଣି ତାହା ବୁଝିପାରି ହସିଦେଲେ । ତୁମ୍ଭର ମାତା ଏପରି ହସିବାର କାରଣ କ'ଣ ବୋଲି ପଚାରିବାରୁ ରାଜା କହିଲେ – ଦେବୀ, ଏ ପକ୍ଷୀ ଯାହା କହୁଛି ତୁମକୁ ଯଦି ତାହା ମୁଁ କହିଦିଏ, ତା' ହେଲେ ମୋର ମୃତ୍ୟୁ ସୁନିଶ୍ଚିତ । ତୁମର ମାତା କହିଲେ, ତୁମେ ବଞ୍ଚ ବା ମର ମୋତେ ତାହା କହିବାକୁ ହେବ । କାରଣ ତୁମେ ଏପରି ମୋ ପାଖରେ ବିନା କାରଣରେ ହସିପାରିବ ନାହିଁ । କେକୟରାଜ ବରଦାତା ଋଷିଙ୍କୁ ପଚାରିବାରୁ ସେ କହିଲେ, ସ୍ତ୍ରୀକୁ ଛାଡ଼ିଦିଅ, କ୍ଷତି ନାହିଁ, କିନ୍ତୁ ସ୍ତ୍ରୀବୁଦ୍ଧିରେ ତୁମେ କେବେ ତାହା ପ୍ରକାଶ କର ନାହିଁ । ରାଜା ତୁମର ମାତାଙ୍କୁ ଦୂର କରିବାରେ ଆଦୌ କୁଣ୍ଠାବୋଧ କରି ନ ଥିଲେ । କୈକେୟୀ, ତୁମେ ସେହି ମାତୃଗୁଣ

ବା ଦୁର୍ଗୁଣ ଲାଭ କରିଛ । ରାମ ବନକୁ ଗଲେ ଏ ସଂସାର ତୁମର ନିନ୍ଦା ରଟନା କରିବ । ଏବେ ମଧ୍ଯ ତୁମର ମତି ପରିବର୍ତ୍ତନ କର ଏବଂ ଧର୍ମରକ୍ଷକ ରାମଙ୍କୁ ରାଜପଦରେ ଅଭିଷିକ୍ତ କରାଅ ।

ସୁମନ୍ତଙ୍କର କଠୋର ବାକ୍ୟ କୈକେୟୀଙ୍କ ମନରେ କୌଣସି ପରିବର୍ତ୍ତନ ଆଣିଲା ନାହିଁ ।

ରାଜା ଦଶରଥ ସଜଳ ନୟନରେ ସୁମନ୍ତଙ୍କୁ ଆଦେଶ ଦେଲେ, ରାମଙ୍କର ଅନୁଗମନ କରିବା ପାଇଁ ଚତୁରଙ୍ଗ ସେନା ସଜ୍ଜିତ କର । ବାକ୍‌ଚତୁରା ବେଶ୍ୟା ଓ ଧନଶାଳୀ ବଣିକମାନଙ୍କୁ ତାଙ୍କ ସହିତ ପଠାଅ । ଅରଣ୍ୟ ପଥ ଜାଣିଥିବା ବ୍ୟାଧମାନେ ଓ ମଲ୍ଲବୀରମାନେ ତାଙ୍କର ଅନୁଗମନ କରନ୍ତୁ । ଉତ୍ତମ ଅସ୍ତ୍ର ଶସ୍ତ୍ର ଧନ ଧାନ୍ୟ ପୂର୍ଣ୍ଣ ଶକଟମାନ ତାଙ୍କ ସହିତ ପଠାଇବାର ବ୍ୟବସ୍ଥା କର । ଅଯୋଧ୍ୟାର ସମସ୍ତ ଭୋଗ୍ୟ ବସ୍ତୁ ରାମର ଅନୁଗମନ କରୁ । ଭରତ ଏହି ଶୂନ୍ୟ ଅଯୋଧ୍ୟାରେ ଆସି ରାଜା ହେଉ । ଏହା ଶୁଣି କୈକେୟୀଙ୍କର ମୁହଁ ଶୁଖିଗଲା । ସେ ରାଜାଙ୍କୁ ଚାହିଁ କହିଲେ – ରାଜା ! ସମସ୍ତେ ଚାଲିଯିବା ପରେ ସ୍ୱାଦହୀନ ମଦ୍ୟ ପରି ଭରତ କାହିଁକି ଏହି ନିରର୍ଥକ ରାଜ୍ୟ ଶାସନ କରିବ ?

ଦଶରଥ ନିର୍ଲଜ୍ଜା କୈକେୟୀଙ୍କୁ କହିଲେ, ଅମଙ୍ଗଳକାରିଣୀ, ତୁ ମୋତେ ଯେଉଁ ଭାର ବୋହିବାକୁ ଦେଇଛୁ ତାହା ମୋ ପକ୍ଷରେ କଷ୍ଟକର । ଯେଉଁ କାର୍ଯ୍ୟ ଆରମ୍ଭ କରିଛୁ ତା'ର ପରିଣାମ କ'ଣ ହେବ ତାହା ନ ବୁଝି ନ ଶୁଝି କାହିଁକି କରୁଥିଲୁ ?

ରାଜାଙ୍କର କ୍ରୋଧର ଦୁଇଗୁଣ କ୍ରୋଧରେ କୈକେୟୀ କହିଲେ – ତୁମର ବଂଶରେ ସଗର ରାଜା ତାଙ୍କର ଜ୍ୟେଷ୍ଠପୁତ୍ର ଅସମଞ୍ଜସଙ୍କୁ ରାଜ୍ୟରୁ ବିତାଡ଼ିତ କରିଥିଲେ । ରାମ ମଧ୍ଯ ସେହିପରି ବନବାସ କରୁ ।

ସେଠାରେ ଉପସ୍ଥିତ ସିଦ୍ଧାର୍ଥ ନାମରେ ଜଣେ ବୃଦ୍ଧ ମହାମାତ୍ର ଏହା ଶୁଣି କହିଲେ – ରାମଙ୍କ ସହିତ ଅସମଞ୍ଜସଙ୍କ ତୁଳନା ହାସ୍ୟାସ୍ପଦ । ଦୁର୍ବୁଦ୍ଧି ଅସମଞ୍ଜସ ପ୍ରଜାପୀଡ଼କ ଥିଲା । ରାମ ସମସ୍ତଙ୍କର ପ୍ରିୟ । ଚନ୍ଦ୍ରଙ୍କଠାରେ କଳଙ୍କ ଦେଖାଯାଏ, କିନ୍ତୁ ରାମ ନିଷ୍କଳଙ୍କ । ରାମଙ୍କ ସହିତ ଆମେ ସମସ୍ତେ ବନକୁ ଯିବାପାଇଁ ପ୍ରସ୍ତୁତ ।

ଏହିପରି ବାଦାନୁବାଦ ଦେଖି ରାମ କହିଲେ, ମୁଁ ସମସ୍ତ ରାଜଭୋଗ ଓ ଐଶ୍ୱର୍ଯ୍ୟ ତ୍ୟାଗକରି ବନକୁ ଯିବାକୁ ପ୍ରସ୍ତୁତ । ସେଠାରେ ବନ୍ୟ ଫଳମୂଳ ଖାଇ ମୁଁ ଜୀବନ ଧାରଣ କରିବି । ଏ ସମସ୍ତ ଧନଜନରେ ମୋର କି ପ୍ରୟୋଜନ ଅଛି ? ଉତ୍ତମ ହସ୍ତୀଙ୍କୁ ଦାନ କରିସାରି ତା'ର ବନ୍ଧନରଜ୍ଜୁ ପ୍ରତି କେହି ମମତା ରଖେ ନାହିଁ । ମହାରାଜ, ମୋର ଚତୁରଙ୍ଗ ବଳ ଲୋଡ଼ା ନାହିଁ । ମୋପାଇଁ ବଲ୍କଳ ବସନ ଅଣାଯାଉ ।

ନିର୍ଲଜ୍ଜା କୈକେୟୀ ସଙ୍ଗେ ସଙ୍ଗେ ବଲ୍କଳ ବସନ ଆଣି ରାମଙ୍କୁ ପିନ୍ଧିବା ପାଇଁ କହିଲେ । ରାମ କ୍ଷଣେମାତ୍ର ବିଳମ୍ବ ନ କରି ନିଜର ସୂକ୍ଷ୍ମ ବସ୍ତ୍ର ତ୍ୟାଗ କରି ବଲ୍କଳ ଗ୍ରହଣ କଲେ । ଲକ୍ଷ୍ମଣ ମଧ୍ଯ ବଲ୍କଳ ବସ୍ତ୍ର ପରିଧାନ କଲେ । ଧର୍ମଦର୍ଶିନୀ ଜାନକୀ କୈକେୟୀଙ୍କ ଦ୍ୱାରା

ଅଣାଯାଇଥିବା ବଳ୍କଳ ବସ୍ତ୍ରକୁ ଖଣ୍ଡିଏ କାନ୍ଧରେ ଓ ଖଣ୍ଡିଏ ହାତରେ ଧରି ଶାଶ୍ରୁନୟନରେ ନିଜର ପ୍ରିୟ ପତିଙ୍କୁ ପଚାରିଲେ, ବନବାସୀ ମୁନିମାନେ କିପରି ବଳ୍କଳ ପରିଧାନ କରନ୍ତି ? ରାମଚନ୍ଦ୍ର ସୀତାଙ୍କ ପାଖକୁ ଆସି ତାଙ୍କର ପାଟଶାଢ଼ି ଉପରେ ବଳ୍କଳ ବାନ୍ଧିଦେଲେ । ଏହି ଦୃଶ୍ୟ ଦେଖି ଉପସ୍ଥିତ ଅନ୍ତଃପୁରବାସିନୀଙ୍କର ଆଖିରେ ଲୁହ ରହିଲା ନାହିଁ ।

ବଶିଷ୍ଠ କହିଲେ, କୁଳକଳଙ୍କିନୀ କୈକେୟୀ, ରାଜାଙ୍କୁ ପ୍ରତାରିତ କରି ତୁମେ ସୀମା ଲଂଘନ କରିଛ । ସୀତା ବନକୁ ଯିବା ସଙ୍ଗତ ହେଉ ନାହିଁ । ସେ ରାମଙ୍କର ଅର୍ଦ୍ଧାଙ୍ଗିନୀ ରୂପେ ରହି ପୃଥିବୀ ପାଳନ କରିବେ । ସେ ଯଦି ରାମଙ୍କ ସାଙ୍ଗରେ ବନକୁ ଯାଆନ୍ତି, ତାହାହେଲେ ଆମେ ମଧ ତାଙ୍କ ସହିତ ଯିବୁ ଏବଂ ସମସ୍ତ ଅଯୋଧ୍ୟାନଗରୀ ଯିବ । ରାମଙ୍କ ବିନା ରାଜ୍ୟର କଳ୍ପନା କରାଯାଇ ନ ପାରେ । ରାମ ବନରେ ରହିଲେ ବନ ହେବ ରାଷ୍ଟ୍ର । 'ତଦ୍‌ବନଂ ଭବିତା ରାଷ୍ଟ୍ରଂ ଯତ୍ର ରାମୋ ନିବତ୍ସ୍ୟତି' । କୈକେୟୀ, ସୀତାଙ୍କୁ ତୁମେ ବଳ୍କଳ ଦିଅ ନାହିଁ । ସେ ସର୍ବାଳଙ୍କାରଭୂଷିତା ହୋଇ ଓ ପରିଚାରିକାମାନଙ୍କ ଗହଣରେ ରହି ରାମଙ୍କ ସହିତ ବନରେ ବାସ କରନ୍ତୁ ।

କୁଳଗୁରୁ ବଶିଷ୍ଠ ଏପରି କହିଲେ ମଧ ବନଚାରିଣୀ ତପସ୍ୱୀରୂପେ ରହିବାପାଇଁ ସୀତା ତାଙ୍କ ସଙ୍କଳ୍ପରୁ ବିରତ ହେଲେ ନାହିଁ । ସୀତାଙ୍କର ଏ ଅବସ୍ଥା ଦେଖି ଲୋକେ କୈକେୟୀ ଓ ଦଶରଥଙ୍କୁ ଧିକ୍କାର କରିବାକୁ ଲାଗିଲେ । ଦଶରଥ ଉଷ୍ଣ ଦୀର୍ଘଶ୍ୱାସ ପକାଇ କହିଲେ, ସୀତା ବଳ୍କଳଧାରିଣୀ ହେବାର ଯୋଗ୍ୟ ନୁହନ୍ତି । ପାପୀୟସୀ କୈକେୟୀ, ନିଷ୍ପାପା ଜନକନନ୍ଦିନୀ ତୁମର କି ଅପକାର କରିଛନ୍ତି ଯେ ତୁମେ ତାଙ୍କୁ ବଳ୍କଳ ପିନ୍ଧାଇବାକୁ ବସିଅଛ ? ତୁମେ ମୋର ପ୍ରତିଶ୍ରୁତିର ସୀମାଲଂଘନ କରିଯାଇଛ । ଏ କାର୍ଯ୍ୟ ପାଇଁ ତୁମେ ନରକକୁ ଯିବାର ଯୋଗ୍ୟ ।

ରାମଚନ୍ଦ୍ର କହିଲେ – ପିତା, ବର୍ତ୍ତମାନ ମୁଁ ବନକୁ ଯାତ୍ରା ପାଇଁ ବାହାରିଲି । ମୋର ଅନୁରୋଧ, ମୋର ଯଶସ୍ୱିନୀ ବୃଦ୍ଧାମାତା କୌଶଲ୍ୟା ଯେପରି ଆପଣଙ୍କର ବିରାଗଭାଜନ ନ ହୁଅନ୍ତି । ସେ ତାଙ୍କର ପୂଜ୍ୟ ସ୍ୱାମୀଙ୍କ ଦ୍ୱାରା ଆଦୃତ ହୋଇ ଯେପରି ମୋର ବନଗମନର ଦୁଃଖ ଭୁଲିଯାଆନ୍ତି ତାହା ଦେଖିବା ଆପଣଙ୍କର କର୍ତ୍ତବ୍ୟ । ମୋର ପୁତ୍ରବତ୍ସଳା ଜନନୀ ଉପଯୁକ୍ତ ଆଦର ଓ ସମ୍ମାନ ଲାଭ କରି ଅନ୍ତତଃ ଜୀବିତ ରହନ୍ତୁ, ଏହାହିଁ ମୋର କାମନା ।

## ୨୬ ॥ ବନଯାତ୍ରା

ମୁନିବେଶଧାରୀ ରାମ ପିତାଙ୍କଠାରୁ ବିଦାୟ ନେବା ପରେ ଦଶରଥଙ୍କର ଦୁଃଖର ସୀମା ରହିଲା ନାହିଁ । ସେ ଦୁଃଖରେ ବହୁ ସମୟ ପଡ଼ି ରହିବା ପରେ ଚେତନା ଲାଭ କରି ବିଳାପ କରିବାକୁ ଲାଗିଲେ । ସେ ନିଜକୁ ନିଜେ କହିବାକୁ ଲାଗିଲେ, ମୁଁ ଘୋର ପାପ କରି ନ ଥିଲେ ମୋର ଏପରି ଅବସ୍ଥା ହୋଇ ନ ଥାନ୍ତା । ବୋଧହୁଏ ମୁଁ ଅନେକ ପ୍ରାଣୀଙ୍କୁ ବଧ କରିଛି । ଅନେକ ଗାଭୀଙ୍କୁ ବତ୍ସହୀନ କରିଛି । ଏପରି ଘୋର ଦୁଃଖରେ ମୋର ମଧ

ମୃତ୍ୟୁ ହେଉ ନାହିଁ । କୈକେୟୀର ପ୍ରତାରଣା ଫଳରେ ଆଜି ସାରା ଅଯୋଧ୍ୟା କି ଦୁଃଖ ଭୋଗ ନ କରୁଛି ! 'ରାମ ରାମ' ବୋଲି କହି ପୁଣି ରାଜା ସଂଜ୍ଞାହୀନ ହୋଇ ପଡ଼ିଗଲେ ଓ ସଂଜ୍ଞାଲାଭ ପରେ ସୁମନ୍ତ୍ରଙ୍କୁ ଡାକି କହିଲେ – ରାମଙ୍କୁ କୋଶଳ ରାଜ୍ୟ ସୀମା ପାର କରିବା ପାଇଁ ତୁମେ ଉତ୍କୃଷ୍ଟ ଅଶ୍ୱଯୁକ୍ତ ରଥର ବ୍ୟବସ୍ଥା କର । ସୀତାଙ୍କ ପାଇଁ ମୂଲ୍ୟବାନ ବସ୍ତ୍ର ଓ ଅଳଙ୍କାର ଆଣିଦିଅ । ସେ ସୁନ୍ଦର ଅଳଙ୍କାରରେ ଭୂଷିତା ହୋଇ ବନ ଯାତ୍ରା କରନ୍ତୁ ।

ସାଳଙ୍କୃତା ସୀତା ମାତା କୌଶଲ୍ୟାଙ୍କର ପାଦବନ୍ଦନା କଲେ । ସୀତାଙ୍କୁ ଦୁଇବାହୁରେ ଆଲିଙ୍ଗନ କରି ଓ ତାଙ୍କ ମସ୍ତକ ଆଘ୍ରାଣ କରି କୌଶଲ୍ୟା କହିଲେ – ଜାନକୀ, ତୁ ନିର୍ବାସିତ ରାମର ସହଧର୍ମିଣୀ ଭାବରେ ବନଯାତ୍ରା କରୁଛୁ । ତୁ କେବେ ତାର ଅବମାନନା ନ କରି ତା'ର ସେବା କରିବୁ । ସାଧ୍ୱୀ ସ୍ତ୍ରୀମାନେ ବିପଦ୍‌ଗ୍ରସ୍ତ ସ୍ୱାମୀଙ୍କୁ କେବେହେଲେ ଅବଜ୍ଞା କରନ୍ତି ନାହିଁ ।

ସୀତା କୃତାଞ୍ଜଳି ହୋଇ ଉତ୍ତର ଦେଲେ – ମାତା, ଆପଣଙ୍କର ଆଦେଶ ନିଶ୍ଚୟ ପାଳନ କରିବି । ଚନ୍ଦ୍ରଠାରୁ ଯେପରି ତା'ର ପ୍ରଭା ବିଚ୍ୟୁତ ହୁଏ ନାହିଁ, ସେହିପରି ମୁଁ ମୋର ଧର୍ମରୁ ବିଚଳିତ ହେବି ନାହିଁ । ପିତା, ଭ୍ରାତା ଓ ପୁତ୍ରଙ୍କ ଠାରୁ ଯାହା ଲାଭ କରାଯାଏ, ତାହା ସୀମିତ । ମାତ୍ର ଭର୍ତ୍ତାର ଦାନ ଅପରିମେୟ, ଏଣୁ ସ୍ତ୍ରୀମାନଙ୍କ ପାଇଁ ସ୍ୱାମୀହିଁ ଦେବତା ।

ରାମ କହିଲେ – ମାତା, ତୁମେ ଶୋକ କର ନାହିଁ । ଚାହୁଁ ଚାହୁଁ ଚଉଦବର୍ଷ କଟିଯିବ । ମୁଁ ପୁଣି ବନ୍ଧୁମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଏଠାକୁ ଫେରିଆସିବି ।

ଲକ୍ଷ୍ମଣ କୌଶଲ୍ୟାଙ୍କୁ ଅଭିବାଦନ କରି ନିଜର ଜନନୀ ସୁମିତ୍ରାଙ୍କ ପଦବନ୍ଦନା କଲେ । ମଙ୍ଗଳମୟୀ ମାତା ତାଙ୍କର ମସ୍ତକ ଆଘ୍ରାଣ କରି ସାଶ୍ରୁ ନୟନରେ କହିଲେ – ବତ୍ସ, ଜାଣିରଖ, ଏହି ବନବାସ ପାଇଁ ତୁ ଜନ୍ମ ହୋଇଛୁ । ତୁ ତୋର ଜ୍ୟେଷ୍ଠଭ୍ରାତାର ବଶବର୍ତ୍ତୀ ହୋଇ ତାର ସେବାରେ କୌଣସି ତ୍ରୁଟି କରିବୁ ନାହିଁ । ତୁ ରାମଙ୍କୁ ଦଶରଥ, ଜନକାତ୍ମଜା ସୀତାଙ୍କୁ ମୁଁ ଓ ଅରଣ୍ୟକୁ ଅଯୋଧ୍ୟା ପରି ଜ୍ଞାନ କରିବୁ । ବତ୍ସ, ଏବେ ଆନନ୍ଦରେ ଯାତ୍ରା କର ।

ରାମଂ ଦଶରଥଂ ବିଦ୍ଧି ମାଂ ବିଦ୍ଧି ଜନକାତ୍ମଜାମ୍ ।
ଅଯୋଧ୍ୟାମଟବୀଂ ବିଦ୍ଧି ଗଚ୍ଛ ତାତ ଯଥାସୁଖମ୍ ।।

ସୁମନ୍ତ୍ର ରାମଙ୍କୁ କହିଲେ – ଆୟୁଷ୍ମାନ୍, ରଥ ସଜ୍ଜିତ ହୋଇ ରହିଛି । ତୁମେ ଯେଉଁଠି କହିବ ମୁଁ ସେଠାରେ ତୁମକୁ ପହଞ୍ଚାଇଦେବି । ଆଜିଠାରୁ ତୁମର ଚତୁର୍ଦ୍ଦଶ ବର୍ଷ ବନବାସର ଆରମ୍ଭ ହେଲା । ସୂର୍ଯ୍ୟପରି ଦୀପ୍ତିମାନ୍ ରଥରେ ସୀତା ପ୍ରଥମେ ଆରୋହଣ କଲେ । ଏହି ରଥରେ ଦଶରଥଙ୍କର ପ୍ରଦତ୍ତ ସୀତାଙ୍କର ବସନ ଭୂଷଣ, ରାମ ଓ ଲକ୍ଷ୍ମଣଙ୍କର ଆୟୁଧ ଏବଂ ଚମଡ଼ାର ପେଡ଼ି ଓ ଖଣତି ଆଦି ରଖି ରାମ ଓ ଲକ୍ଷ୍ମଣ ରଥରେ ଆରୋହଣ କଲେ । ସୁମନ୍ତ୍ର ବେଗଗାମୀ ଅଶ୍ୱମାନଙ୍କୁ ତ୍ୱରାନ୍ୱିତ କଲେ । ଶୋକାକୁଳ ଜନତାର କ୍ରନ୍ଦନରୋଳରେ ଅଯୋଧ୍ୟା କୋଳାହଳମୟ ହୋଇପଡ଼ିଲା । ରାମଙ୍କ ରଥର ଦୁଇ ପାଖରେ ଓ ପଛରେ ଘେରି ରହି ଲୋକେ ବିଳାପ କରିବାକୁ ଲାଗିଲେ । ସେମାନେ

ସାରଥିଙ୍କୁ କହୁଥାନ୍ତି, ତୁମେ ଘୋଡ଼ାର ଲଗାମ ଟାଣିଧରି ଆସ୍ତେ ଆସ୍ତେ ଚାଲ । ଆମେ ଟିକିଏ ରାମଙ୍କର ମୁହଁ ଦେଖିବୁ, କାରଣ ଆଉ ସେ ମୁହଁ ଦେଖିପାରିବୁ ନାହିଁ । ଜନକନନ୍ଦିନୀ ଧନ୍ୟା, କାରଣ ସେ ଛାୟାପରି ପତିଙ୍କର ଅନୁସରଣ କରୁଛନ୍ତି । ଲକ୍ଷ୍ମଣ ଧନ୍ୟ, କାରଣ ସେ ଦେବୋପମ ଜ୍ୟେଷ୍ଠଭ୍ରାତାଙ୍କର ସେବାପାଇଁ ତାଙ୍କର ଅନୁଗମନ କରୁଛନ୍ତି ।

ରାଜା ଦଶରଥ ରାମଚନ୍ଦ୍ରଙ୍କୁ ଦେଖିବା ପାଇଁ ବାହାରକୁ ଚାଲିଆସିଲେ ଏବଂ ଅନ୍ତଃପୁରବାସିନୀ ସ୍ତ୍ରୀଲୋକମାନେ ଆର୍ତ୍ତନାଦ କରି ବିଳାପ କରିବାକୁ ଲାଗିଲେ । ରାମ ଶୀଘ୍ର ରଥ ଚଳାଇବା ପାଇଁ ସାରଥିଙ୍କୁ ଆଦେଶ ଦେଲେ । ସେ ଚାଲ ଚାଲ ବୋଲି କହିବାବେଳେ ରାଜା ଓ ଲୋକେ ରହ ରହ ବୋଲି କହୁଥାନ୍ତି । ତେଣୁ ସାରଥି କ'ଣ କରିବ ବୋଲି ଜାଣିପାରୁ ନ ଥାଏ । ଚାରିଆଡ଼େ ହାହାକାର ଓ ଆର୍ତ୍ତନାଦ । ପ୍ରିୟବତ୍ସାର ପଛରେ ଧେନୁ ଧାବିତ ହେବାପରି କୌଶଲ୍ୟା 'ହା ରାମ' 'ହା ରାମ' କହି ଧାଉଁଥାନ୍ତି ।

ଶୋକାକୁଳ ପିତାମାତା ଓ ପୁରବାସୀଙ୍କର ମମତା ଧର୍ମଜ୍ଞ ରାମଙ୍କୁ ଆବଦ୍ଧ କରିପାରିଲା ନାହିଁ । ସେ ସେମାନଙ୍କର ଦୁରବସ୍ଥା ଦେଖି ମଧ୍ୟ ଉପସ୍ଥିତ କର୍ତ୍ତବ୍ୟପଥରୁ ବିଚଳିତ ହେଲେ ନାହିଁ ଏବଂ ଶୀଘ୍ର ରଥ ଚଳାଇବା ପାଇଁ ସାରଥିଙ୍କୁ ଆଦେଶ ଦେଲେ ।

ଯେପର୍ଯ୍ୟନ୍ତ ରାମଙ୍କ ରଥର ଧୂଳି ଦେଖାଯାଉଥିଲା, ସେପର୍ଯ୍ୟନ୍ତ ଦଶରଥ ସେଆଡ଼କୁ ଚାହିଁ ରହିଥିଲେ । ଯେତେବେଳେ ତାହା ଦେଖାଗଲା ନାହିଁ, ସେତେବେଳେ ଶୋକାର୍ତ୍ତ ରାଜା ମୂର୍ଚ୍ଛିତ ହୋଇ ପଡ଼ିଗଲେ । କୌଶଲ୍ୟା ତାଙ୍କୁ ଉଠାଇ ତାଙ୍କ ଡାହାଣ ବାହୁ ଧରିଲେ । କୈକେୟୀ ବାମ ବାହୁ ଧରି ଚାଲିଲେ । ପୁତ୍ରଶୋକରେ ବିଷଣ୍ଣ ରାଜା କୈକେୟୀଙ୍କୁ ଦେଖି କହିଲେ – ଦୁଷ୍ଟା କୈକେୟୀ, ତୁ ମୋର ଅଙ୍ଗସ୍ପର୍ଶ କର ନାହିଁ । ତୋତେ ମୁଁ ଦେଖିବାକୁ ଚାହେନା । ତୁ ମୋର ଭାର୍ଯ୍ୟା ନୋହୁଁ, ବନ୍ଧୁ ନୋହୁଁ । ଯେଉଁମାନେ ତୋତେ ଆଶ୍ରୟ କରି ଜୀବିକାନିର୍ବାହ କରନ୍ତି ସେମାନେ ମଧ୍ୟ ମୋର କେହି ନୁହନ୍ତି । ତୁ କେବଳ ସ୍ୱାର୍ଥକୁ ହିଁ ଚିହ୍ନିଛୁ । ତେଣୁ ଏପରି ଧର୍ମବର୍ଜିତ ସ୍ତ୍ରୀଲୋକକୁ ମୁଁ ତ୍ୟାଗ କଲି । ଅଗ୍ନିକୁ ସାକ୍ଷୀ ରଖି ମୁଁ ତୋର ପାଣି ଗ୍ରହଣ କରିଥିଲି, ତେଣୁ ଇହ ପରଲୋକରେ ସେ ସଂପର୍କ ମଧ୍ୟ ପରିତ୍ୟାଗ କଲି । ଯଦି ଏ ଅକ୍ଷୟ ରାଜ୍ୟ ଲାଭ କରି ଭରତ ସନ୍ତୁଷ୍ଟ ହୁଏ, ତା' ହେଲେ ତା'ଦ୍ୱାରା ମୋର ପ୍ରେତକାର୍ଯ୍ୟ ହେବା ମୁଁ ଚାହେ ନାହିଁ ।

ଦଶରଥ ଏହିପରି ବିଳାପ କରି ଚାଲିଲେ । ସେ କହିଲେ, ମୁଁ ଅଶ୍ୱମାନଙ୍କର ପଦଚିହ୍ନ ଦେଖୁଛି, କିନ୍ତୁ ରାମକୁ ଦେଖୁ ନାହିଁ । ଆଜି ମୋର ପ୍ରିୟପୁତ୍ର ବୃକ୍ଷମୂଳକୁ ଆଶ୍ରୟ କରି ଧୂଳିଧୂସରିତ ହୋଇ ନିଦ୍ରାଯିବ । ସୁଖଭୋଗରେ ଅଭ୍ୟସ୍ତ ଜନକନନ୍ଦିନୀ କଣ୍ଟକପୂର୍ଣ୍ଣ ପଥରେ ଚାଲି କ୍ଲାନ୍ତି ଅନୁଭବ କରିବ । କୈକେୟୀ, ତୋର କାମନା ପୂର୍ଣ୍ଣ ହେଲା । ଏବେ ତୁ ବିଧବା ହୋଇ ଏ ରାଜ୍ୟରେ ବାସ କର । ନରୋତ୍ତମ ରାମକୁ ଛାଡ଼ି ମୁଁ ଜୀବନ ଧରି ରହିପାରିବି ନାହିଁ । ଦୁଃଖପୂର୍ଣ୍ଣ ରାଜଭବନରେ ପ୍ରବେଶ କରି ରାଜା କହିଲେ – ରାମଙ୍କର ଜନନୀ କୌଶଲ୍ୟାଙ୍କର ଗୃହକୁ ମୋତେ ନେଇଯାଅ । ଅନ୍ୟ କୌଣସିଠାରେ ମୋତେ ସାନ୍ତ୍ୱନା ମିଳିବ ନାହିଁ । କୌଶଲ୍ୟାଙ୍କ ଗୃହରେ ପହଞ୍ଚି ଦଶରଥଙ୍କର ବିଳାପ ଶେଷ ହେଲା

ନାହିଁ । ଦଶରଥ କହିଲେ – କୌଶଲ୍ୟେ, ମୁଁ ତୁମକୁ ଦେଖିପାରୁ ନାହିଁ । ରାମ ଚାଲିଯିବା ସଙ୍ଗେ ସଙ୍ଗେ ମୋର ଦୃଷ୍ଟିଶକ୍ତି ଚାଲିଯାଇଛି । ତୁମେ ହସ୍ତଦ୍ୱାରା ମୋତେ ଭଲଭାବେ ସ୍ପର୍ଶକର ।

କୌଶଲ୍ୟା ନିଜେ ଶୋକାତୁରା ଥିଲେ । ସେ ଦଶରଥଙ୍କୁ କ'ଣ ସାନ୍ତ୍ୱନା ଦେବେ ? ସେ ବିଳାପ କରି କହିଲେ, କୈକେୟୀ ରାମ ଉପରେ ତା'ର ବିଷ ବର୍ଷା କରି ବର୍ତ୍ତମାନ କାତିଛଡ଼ା ସାପ ପରି ବୁଲିବାକୁ ଲାଗିବ ଏବଂ ମୋତେ ହିଁ କଷ୍ଟ ଦେବ । ବନକଷ୍ଟ ଜାଣି ନ ଥିବା ରାମ, ଲକ୍ଷ୍ମଣ ଓ ସୀତାଙ୍କ ସହିତ ବନମଧ୍ୟରେ ପ୍ରବେଶ କରିବ । ତୁମେ କୈକେୟୀ କଥାରେ ପଡ଼ି ତୁମର ପୁତ୍ର ଓ ପୁତ୍ରବଧୂଙ୍କୁ ପରିତ୍ୟାଗ କରିଛ । ସେମାନଙ୍କର କି ଅବସ୍ଥା ହେବ ? କେବେ ସେ ସୁଦିନ ଆସିବ, ଯେତେବେଳେ ରାମ, ଲକ୍ଷ୍ମଣ, ସୀତାଙ୍କୁ ଦେଖି ମୋର ଓ ଅଯୋଧ୍ୟାବାସୀଙ୍କର ଶୋକ ଦୂର ହେବ, ଅଯୋଧ୍ୟାନଗରୀ ପୌର୍ଣ୍ଣମାସୀର ସମୁଦ୍ର ପରି ଆନନ୍ଦରେ ଉଚ୍ଛୁଳି ପଡ଼ିବ !

କୌଶଲ୍ୟାଙ୍କର ବିଳାପ ଶୁଣି ଧର୍ମଜ୍ଞା ସୁମିତ୍ରା ତାଙ୍କୁ ସାନ୍ତ୍ୱନା ଦେଇ କହିଲେ, ଆର୍ଯ୍ୟେ, ତୁମର ପୁତ୍ର ସଦ୍‌ଗୁଣର ଆଧାର । ସେ ପୁରୁଷୋତ୍ତମ । ସେ ଧର୍ମରକ୍ଷା କରିବା ପାଇଁ ପିତୃସତ୍ୟ ପାଳନ କରି ବନଯାତ୍ରା କରିଛି । ଉଭୟ ଲକ୍ଷ୍ମଣ ଓ ସୀତା ବନବାସର ଦୁଃଖ ଜାଣି ମଧ୍ୟ ରାମର ସେବା କରିବା ପାଇଁ ବନକୁ ଯାଇଛନ୍ତି । ରାମ ବୀର ଏବଂ ସମସ୍ତ ଦିବ୍ୟାସ୍ତ୍ରମାନଙ୍କର ଜ୍ଞାତା । ତେଣୁ ତାଙ୍କ ପାଇଁ ତୁମର ଭୟ କରିବାର କୌଣସି କାରଣ ନାହିଁ । କଲ୍ୟାଣୀ, ତୁମେ ଶୋକ କର ନାହିଁ । ପୁଣି ତୁମର ପୁତ୍ର ଲକ୍ଷ୍ମଣ ଓ ସୀତାଙ୍କ ସହିତ ଆସି ତୁମର ପଦବନ୍ଦନା କରିବ । ତୁମର ଶୋକର ଅଶ୍ରୁ ଆନନ୍ଦାଶ୍ରୁରେ ପରିଣତ ହେବ । ଏହିପରି ସୁମିତ୍ରାଙ୍କର ସାନ୍ତ୍ୱନାବାଣୀ ଶୁଣି କୌଶଲ୍ୟା ଆଶ୍ୱସ୍ତ ହେଲେ ।

ରାମଙ୍କ ପ୍ରତି ଅନୁରକ୍ତ ଅଯୋଧ୍ୟାର ପୁରବାସୀମାନେ ରାମଙ୍କ ପଛେ ପଛେ ଚାଲିଥିଲେ । ଦଶରଥ ଫେରିଆସିଲେ ମଧ୍ୟ ସେମାନେ ଫେରିଲେ ନାହିଁ । ପୂର୍ଣ୍ଣିମାର ଚନ୍ଦ୍ରପରି ଯେଉଁ ରାମ ସେମାନଙ୍କର ଆନନ୍ଦ ବର୍ଦ୍ଧନ କରୁଥିଲେ, ସେ ଅଯୋଧ୍ୟା ଛାଡ଼ି ଚାଲି ଯାଉଛନ୍ତି, ଏହା ସେମାନେ ବିଶ୍ୱାସ କରିପାରୁ ନ ଥିଲେ । ତେଣୁ ସେମାନେ ରହ ରହ ବୋଲି ରାମଙ୍କୁ ଅନୁରୋଧ କରିବାରେ ଲାଗିଲେ । ଅତ୍ୟନ୍ତ ସ୍ନେହଶୀଳ ଅଯୋଧ୍ୟାର ଜନଗଣଙ୍କୁ ସମ୍ବୋଧନ କରି ରାମଚନ୍ଦ୍ର କହିଲେ, ତୁମେମାନେ ମୋ ପ୍ରତି ଯେଉଁ ପ୍ରୀତି ଓ ସମ୍ମାନ ଦେଖାଇଚ ଭରତକୁ ତାହାଠାରୁ ଅଧିକ ଦେଖାଇବ । ସେ ବୟସରେ ବାଳକ ହେଲେ ମଧ୍ୟ ବୀର, ଅଥଚ କୋମଳସ୍ୱଭାବ । ବହୁ ଉତ୍ତମ ଗୁଣ ଥିବା ଯୋଗୁଁ ଭରତ ଯୁବରାଜ ହେବାପାଇଁ ଉପଯୁକ୍ତ । ସେ ନିଶ୍ଚୟ ତୁମମାନଙ୍କର ପ୍ରିୟ ଓ ମଙ୍ଗଳସାଧନରେ ବ୍ରତୀ ହେବ । ତୁମେମାନେ ମୋର ପ୍ରିୟକାମୀ । ତେଣୁ ପିତୃସତ୍ୟ ପାଳନରେ ମୋତେ ସାହାଯ୍ୟ କର ।

ଯେଉଁସବୁ ଜ୍ଞାନବୃଦ୍ଧ ଓ ବୟୋବୃଦ୍ଧ ତେଜସ୍ୱୀ ବ୍ରାହ୍ମଣ ରାମଙ୍କର ପଛେ ପଛେ ଯାଉଥିଲେ, ରାମଙ୍କୁ ସମ୍ବୋଧନ କରି କଥା କହିବା ବେଳେ ସେମାନଙ୍କର ମୁଣ୍ଡ ଥରୁଥିଲା । ସେମାନେ ଅଶ୍ୱମାନଙ୍କୁ କହିଲେ, ବେଗଗାମୀ ତୁରଙ୍ଗମଗଣ, ତୁମେ ରାମଙ୍କୁ

ବହନ କରି ଯାଉଛ । ତାଙ୍କର ମଙ୍ଗଳ ପାଇଁ ନିବୃତ୍ତ ହୁଅ, ଯାଅ ନାହିଁ । ପ୍ରାଣୀମାନଙ୍କର କର୍ଣ୍ଣ ଅଛି । ତୁମେମାନେ ବିଶେଷତଃ ଶ୍ରବଣଶକ୍ତିସଂପନ୍ନ । ତୁମେ ଆମର ପ୍ରାର୍ଥନା ଶୁଣି ନିବୃତ୍ତ ହୁଅ । ଏହିପରି ଶୋକାକୁଳ ବୃଦ୍ଧ ବ୍ରାହ୍ମଣମାନଙ୍କୁ ଦେଖି ଲକ୍ଷ୍ମଣ ଓ ସୀତାଙ୍କ ସହିତ ରାମ ରଥରୁ ଓହ୍ଲାଇ ପଡ଼ିଲେ । ରାମଙ୍କୁ ଦେଖି ବ୍ରାହ୍ମଣମାନଙ୍କର ବ୍ୟାକୁଳତା ବଢ଼ିବାକୁ ଲାଗିଲା । ସେମାନେ କହିଲେ – ରାମ, ତୁମେ ବ୍ରାହ୍ମଣମାନଙ୍କର ହିତକାମୀ, ତେଣୁ ସେମାନେ ତୁମର ଅନୁଗାମୀ ହୋଇ ଚାଲିଛନ୍ତି । ସେମାନେ ତାଙ୍କର ଯଜ୍ଞଲବ୍ଧ ଛତ୍ର ତୁମର ମୁଣ୍ଡ ଉପରେ ଦେଖାଇ ଚାଲିବେ, ଯେପରିକି ତୁମକୁ ରୌଦ୍ରକଷ୍ଟ ନ ହୁଏ । ସେମାନେ ସ୍ଥିର କରିଛନ୍ତି, ତୁମେ ଗୃହକୁ ନ ଫେରିଲେ ତୁମ ସହିତ ସେମାନେ ବନଯାତ୍ରା କରିବେ । କାରଣ ତୁମ ବିନା ସମସ୍ତ ଧର୍ମକାର୍ଯ୍ୟ ଓ ଯଜ୍ଞକର୍ମ ଅପୂର୍ଣ୍ଣ ରହିଯିବ ।

ଅତି ଆତୁର ଭାବରେ ବ୍ରାହ୍ମଣମାନେ କହିଲେ, ଆମର ହଂସଶୁଭ୍ର ପକ୍ୱକେଶ ମସ୍ତକ ଆମେ ଭୂଲୁଣ୍ଠିତ କରି ତୁମକୁ ନିବେଦନ କରୁଛୁ, ତୁମେ ବନକୁ ଯାଅ ନାହିଁ । ଆଜି ସମସ୍ତ ପ୍ରକୃତି ତୁମକୁ ଯିବାପାଇଁ ବାରଣ କରୁଛି । ବୃକ୍ଷମାନେ ଚଳତ୍‌ଶକ୍ତିବିହୀନ୍, କିନ୍ତୁ ବାୟୁ ପ୍ରବାହରେ ଯେଉଁସବୁ ପତ୍ର ସଂଚାଳିତ ହେଉଛି, ତାର ଶବ୍ଦ ତୁମେ ଶୁଣି ପାରୁଥିବ । ସେହି ଶବ୍ଦଦ୍ୱାରା ବୃକ୍ଷମାନେ ତୁମକୁ ବନକୁ ଯାଅ ନାହିଁ ବୋଲି କହୁଛନ୍ତି । ବୃକ୍ଷମାନଙ୍କ ଉପରେ ଯେଉଁ ପକ୍ଷୀମାନେ ବସିଛନ୍ତି, ସେମାନଙ୍କୁ ଦେଖ, ତୁମକୁ ବନକୁ ଯିବାର ଦେଖି କିପରି ନିଶ୍ଚଳ ଶୋକାତୁର ଭାବରେ ବସିରହିଛନ୍ତି । ଏହିପରି ପ୍ରାଜ୍ଞ ବ୍ରାହ୍ମଣମାନେ ମଧ୍ୟ ଅତ୍ୟନ୍ତ ଭାବବିହ୍ୱଳ ହୋଇପଡ଼ିଲେ ।

ଶୋକାକୁଳ ଜନତା ମଧ୍ୟରେ ରାମ, ଲକ୍ଷ୍ମଣ, ସୀତା ଯାଉଥିବାବେଳେ ତମସା ନଦୀ ସେମାନଙ୍କର ଦୃଷ୍ଟିପଥାରୂଢ଼ ହେଲା । ମନେହେଲା, ଯେପରି ସମସ୍ତ ପ୍ରକୃତି ଓ ଅଯୋଧ୍ୟାର ଜନସାଧାରଣଙ୍କ ସହିତ ଯୋଗ ଦେଇ ତମସାନଦୀ ମଧ୍ୟ ରାମଙ୍କର ପଥରୋଧ କରୁଛି ।

ନଦୀ କୂଳରେ ପହଞ୍ଚିବା ପରେ ସୁମନ୍ତ ପରିଶ୍ରାନ୍ତ ଅଶ୍ୱମାନଙ୍କୁ ରଥରୁ ଫିଟାଇଦେଇ ସେମାନଙ୍କୁ ନଦୀରେ ପାଣି ପିଆଇଲେ ଓ ଗାଧୋଇଦେଲେ । ନଦୀକୂଳରେ ଥିବା ଘାସ ଭୂମିରେ ସେମାନଙ୍କୁ ଚରିବାପାଇଁ ଛାଡ଼ିଦେଲେ ।

ତମସାକୂଳରେ ରାତ୍ରିଯାପନ କରିବାପାଇଁ ରାମ ସ୍ଥିର କଲେ । ସେ ଲକ୍ଷ୍ମଣଙ୍କୁ କହିଲେ, ଆଜି ଆମ ବନବାସର ପ୍ରଥମ ରାତ୍ରି । ତେଣୁ ରାତ୍ରିରେ କିଛି ନ ଖାଇ ଖାଲି ପାଣି ପିଇ ଶୋଇଯିବା । ଲକ୍ଷ୍ମଣ, ଏ ବନବାସ କଷ୍ଟ ଆମକୁ ସେତେ ବାଧୁ ନାହିଁ । କିନ୍ତୁ ବେଶି ଦୁଃଖ ହେଉଛି, ପିତାମାତା ଓ ଅଯୋଧ୍ୟାର ନରନାରୀଙ୍କ ପାଇଁ । ମୁଁ ବୃଦ୍ଧପିତା ଓ ଯଶସ୍ୱିନୀ ମାତାଙ୍କ କଥା ବିଶେଷଭାବରେ ଚିନ୍ତା କରୁଛି । ସେମାନେ ତ ଆମପାଇଁ ଅନବରତ କାନ୍ଦି କାନ୍ଦି ଅନ୍ଧ ହୋଇଯିବେ । ଏକମାତ୍ର ଆଶ୍ୱାସନା ହେଉଚି ଭରତ । ସେ ଧର୍ମଜ୍ଞ ଏବଂ ତାର ଆଚରଣରେ କୌଣସି ନିଷ୍ଠୁରତା ଦେଖାଯାଏ ନାହିଁ । ସେ ନିଶ୍ଚୟ ପିତାମାତାଙ୍କୁ ସାନ୍ତ୍ୱନା ଦେଇ ପାଳନ କରିବ ।

ରାମ ପୁଣି କହିଲେ – ଲକ୍ଷ୍ମଣ, ମୁଁ ତୁମକୁ ବାରଣ କରୁଥିଲି, ସତ । କିନ୍ତୁ ତୁମେ ମୋ ସହିତ ଆସି ବହୁତ ଭଲ କରିଚ । ତା' ନ ହେଲେ ସୀତାଙ୍କର ରକ୍ଷଣାବେକ୍ଷଣ ପାଇଁ ମୋତେ ଅନ୍ୟ ସହାୟତା ଲୋଡ଼ିବାକୁ ପଡ଼ିଥାନ୍ତା ।

ସନ୍ଧ୍ୟା ବନ୍ଦନାଦି ଶେଷ କରି ଲକ୍ଷ୍ମଣ ଓ ସୁମନ୍ତ ରାମଙ୍କ ପାଇଁ ପର୍ଣ୍ଣଶଯ୍ୟା ପ୍ରସ୍ତୁତ କରିଦେଲେ । ତୂଳିତଳ୍ପ ଛାଡ଼ି ମଧ ରାମ ଓ ସୀତା ଘାସଶଯ୍ୟାରେ ଅତ୍ୟନ୍ତ ଆନନ୍ଦରେ ଶୋଇଗଲେ । ଅଯୋଧ୍ୟାର ପ୍ରଜାବୃନ୍ଦ, ଯେଉଁମାନେ ରାମଙ୍କର ଅନୁସରଣ କରିଥିଲେ, ସେମାନେ ମଧ ପଥଶ୍ରାନ୍ତ ହୋଇ ଶୋଇପଡ଼ିଲେ । କେବଳ ଜାଗ୍ରତ ଥିଲେ ଲକ୍ଷ୍ମଣ । ସୁମନ୍ତଙ୍କ ସହିତ ରାମଙ୍କର ଗୁଣାବଳୀ ଆଲୋଚନା କରି ତାଙ୍କର ଉନ୍ନିଦ୍ର ରଜନୀ ପାହିଗଲା ।

ଖୁବ୍ ଭୋରବେଳେ ରାମ ଉଠିପଡ଼ି ଲକ୍ଷ୍ମଣଙ୍କୁ କହିଲେ – ଦେଖ ଲକ୍ଷ୍ମଣ, ଅଯୋଧ୍ୟାର ଏହି ପ୍ରଜାମାନେ କିପରି ନିଜର ଘରଦ୍ୱାର ଛାଡ଼ି ଆମର ଅନୁସରଣ କରି ଦୁଃଖରେ ଏଠାରେ ଶୋଇଯାଇଛନ୍ତି । ସକାଳ ହେଲେ ସେମାନେ ଆମକୁ କେବେ ଛାଡ଼ିବେ ନାହିଁ । ମୋର ମମତାରେ ଆବଦ୍ଧ ହୋଇ ସେମାନେ ଅଧିକ ଦୁଃଖ ପା'ନ୍ତୁ, ମୁଁ ଏହା ଚାହେ ନାହିଁ । ତେଣୁ ସେମାନେ ନିଦରେ ଶୋଇଥିବାବେଳେ ଆମେ ଶୀଘ୍ର ରଥ ନେଇ ପଳାଇବା ଉଚିତ ହେବ । ଲକ୍ଷ୍ମଣଙ୍କ ସମ୍ମତିକ୍ରମେ ସୁମନ୍ତ୍ର ଶୀଘ୍ର ରଥ ପ୍ରସ୍ତୁତ କଲେ ଏବଂ ନିଦ୍ରିତ ପୁରବାସୀଙ୍କୁ ଛାଡ଼ି ରାମ, ଲକ୍ଷ୍ମଣ ଓ ସୀତା ତମସାନଦୀ ପାର ହୋଇଗଲେ । ରାମଙ୍କ ପରାମର୍ଶକ୍ରମେ ସୁମନ୍ତ ପୁଣି ଖାଲି ରଥକୁ ଫେରାଇଆଣି ନଦୀ କୂଳରେ ଉତ୍ତର ଦକ୍ଷିଣ ବିଭିନ୍ନ ଦିଗକୁ ବୁଲାଇଲେ, ଯେପରିକି ଚାରିଆଡ଼େ ରଥର ଗୁଳା ପଡ଼ିଥିବ । ପରେ ସେ ପୁଣି ରାମଙ୍କ ପାଖକୁ ଫେରିଗଲେ । ପୁରବାସୀମାନେ ଉଠି ଦେଖନ୍ତି ତ ରାମ ନାହାନ୍ତି । ତାଙ୍କର ରଥ କୌଣସି ନିର୍ଦ୍ଦିଷ୍ଟ ଦିଗରେ ଯିବା ଜଣାଯାଉ ନାହିଁ କାରଣ ରଥର ଗୁଳା ଚାରିଆଡ଼େ ପଡ଼ିଛି । ପ୍ରଜାମାନେ ନିଜର ନିଦ୍ରାକୁ ଦୋଷ ଦେଇ ରାମଙ୍କ ବିରହରେ ଅତି ଦୁଃଖରେ ଅଯୋଧ୍ୟାକୁ ଫେରିଆସିଲେ ।

ଅଯୋଧ୍ୟାର ଅବସ୍ଥା ବର୍ଣ୍ଣନାତୀତ ଥିଲା । ଚନ୍ଦ୍ରମାଶୂନ୍ୟ ଆକାଶ ଓ କ୍ଷୀଣୋଦକ ସମୁଦ୍ର ପରି ଅଯୋଧ୍ୟାନଗରୀ ଏକାନ୍ତ ଶ୍ରୀହୀନ ଦେଖାଯାଉଥିଲା । ଲୋକଙ୍କ ମନରେ ଲେଶମାତ୍ର ଆନନ୍ଦ ନ ଥିଲା । ରାମଙ୍କୁ ନ ଆଣି ରିକ୍ତ ହସ୍ତରେ ଫେରି ଆସିଥିବାର ଦେଖି ପୁରବାସିନୀମାନେ ତାଙ୍କର ସ୍ୱାମୀମାନଙ୍କୁ ଗାଳି ଦେବାକୁ ଲାଗିଲେ । ସେମାନେ କହିଲେ, ସୁମିତ୍ରାଙ୍କର ସତ୍‌ପୁତ୍ର ଲକ୍ଷ୍ମଣ ଧନ୍ୟ, ଯେକି ରାମଙ୍କ ପରିଚର୍ଯ୍ୟାରେ ନିଜକୁ ସମ୍ପୂର୍ଣ୍ଣ ନିୟୋଜିତ କରି ତାଙ୍କ ସହିତ ବନଗମନ କରିଛନ୍ତି । ଜନକନନ୍ଦିନୀ ଧନ୍ୟା, ଯେକି ବନବାସ ଦୁଃଖକୁ ତିଳେମାତ୍ର ଖାତିର ନ କରି ସ୍ୱାମୀଙ୍କର ଅନୁଗମନ କରିଛନ୍ତି । ରାମଙ୍କ ବାଟରେ ଯେଉଁସବୁ ନଦୀ ସରୋବର ଶୈଳ କାନନ ଓ ପୁଷ୍ପିତ ବୃକ୍ଷରାଜି ପଡ଼ିବ, ସେମାନେ ଧନ୍ୟ, କାରଣ ସେମାନେ ପ୍ରିୟଦର୍ଶନ ରାଘବଙ୍କର ସମ୍ପର୍କରେ ଆସି ତାଙ୍କର ତୃପ୍ତି ବିଧାନ କରିପାରିବେ ।

ଦୁଃଖ ଓ କ୍ରୋଧରେ ପୁରନାରୀମାନେ କୈକେୟୀଙ୍କର ନିନ୍ଦା କରିବାକୁ ଲାଗିଲେ । ସେମାନେ କହିଲେ, ଏହି କୁଳକଳଙ୍କିନୀ ନାରୀ ନିଜର ସ୍ୱାର୍ଥପାଇଁ ସ୍ୱାମୀ ଓ ପୁତ୍ରଙ୍କୁ ତ୍ୟାଗ କଲା । ସେ ଜୀବିତ ଥିବା ଯାଏଁ ତାର ଅଧର୍ମ ଓ ଦୁରାଚାରକୁ ପ୍ରଶ୍ରୟ ଦେଇ ଆମେ ଏ ରାଜ୍ୟରେ ରହିପାରିବୁ ନାହିଁ । ଘାତକ ପାଖରେ ପଶୁପରି ଆମେ କ'ଣ ଭରତରାଜ୍ୟରେ ବନ୍ଧା ହୋଇ ରହିବୁ ? ଏଣିକି ଅଯୋଧ୍ୟାର ବିନାଶର ସମୟ ଆସିଗଲା ।

## ୨୭ ॥ ଶୃଙ୍ଗବେରପୁର : ନିଷାଦରାଜ ଗୁହ

ରାତି ପାହିଲା ବେଳକୁ ରାମ ବହୁ ଦୂର ବାଟ ଚାଲି ଯାଇଥିଲେ । ରାଜ୍ୟର ସୀମାନ୍ତ ଗ୍ରାମମାନଙ୍କର କୃଷିକ୍ଷେତ୍ର ଓ ପୁଷ୍ପିତ ବନ ସବୁ ଦେଖି ଦେଖି ସେ ଦ୍ରୁତବେଗରେ ଚାଲିଥିଲେ । ବାଟରେ ପଡୁଥିବା ବିଭିନ୍ନ ଗ୍ରାମର ଲୋକମାନେ ରାଜା ଦଶରଥ ଓ କୈକେୟୀଙ୍କର ନିନ୍ଦା ରଟନା କରୁଥିଲେ । ସେମାନେ କହୁଥିଲେ, କାମୁକ ରାଜା ଦଶରଥଙ୍କୁ ଧିକ୍, ପାପୀୟସୀ କୈକେୟୀଙ୍କୁ ଧିକ୍, ସେମାନେ ଏପରି ଗୁଣବାନ୍ ଧାର୍ମିକ ପୁତ୍ରକୁ ଅତି ନିଷ୍ଠୁର ଭାବରେ ବନକୁ ନିର୍ବାସିତ କରିଛନ୍ତି । ଏହିପରି ଲୋକଙ୍କ କଥା ଶୁଣି ଶୁଣି ବହୁ ନଦୀ ଅତିକ୍ରମ କରିବା ପରେ ରାମ କୋଶଳ ରାଜ୍ୟର ସୀମା ପାର ହୋଇଗଲେ । ସରଯୂନଦୀ କୂଳର ପୁଷ୍ପିତ କାନନ ତାଙ୍କର ମନେପଡ଼ିଲା । ସେ ସୁମନ୍ତ୍ରଙ୍କୁ କହିଲେ, ମୃଗୟା ପ୍ରତି ମୁଁ ଆକୃଷ୍ଟ ନୁହେଁ, ତଥାପି ଧନୁର୍ଦ୍ଧାରୀ ରାଜର୍ଷିମାନଙ୍କ ଅନୁମୋଦିତ ଏହି ମୃଗୟାର ଆନନ୍ଦ ମୁଁ ଆଉ କେବେ ଉପଭୋଗ କରିପାରିବି, ଜାଣେ ନାହିଁ ।

ରାମ ଅଯୋଧ୍ୟା ଆଡ଼କୁ ମୁହଁ କରି କୃତାଞ୍ଜଳି ହୋଇ କହିଲେ, ହେ ଇକ୍ଷ୍ୱାକୁବଂଶୀୟ ରାଜାମାନଙ୍କର ପରିପାଳିତ, ଦେବତାମାନଙ୍କର ବନ୍ଦିତ ନଗରୀଶ୍ରେଷ୍ଠ ଅଯୋଧ୍ୟା, ମୋତେ ବିଦାୟ ଦିଅ । ମୁଁ ଯେପରି ରାଜାଙ୍କ ଋଣରୁ ମୁକ୍ତ ହୋଇ ବନବାସରୁ ଫେରି ଆସେ ଏବଂ ତୁମକୁ ଓ ପିତାମାନଙ୍କୁ ପୁଣି ଥରେ ଦର୍ଶନ କରେ । ସୀମାନ୍ତର ଜନପଦବାସୀମାନଙ୍କୁ ସମ୍ବୋଧନ କଲାବେଳେ ରାମଙ୍କର ଚକ୍ଷୁରେ ଲୋତକ ଭରିଯାଇଥିଲା । ସେ କହିଲେ, ଅଯୋଧ୍ୟାର ଜନଗଣଙ୍କର ଅପାର ସ୍ନେହ ମୁଁ ଭୁଲିପାରିବି ନାହିଁ । ଆପଣମାନେ କଷ୍ଟକରି ଆଉ ମୋ ସହିତ ଆସନ୍ତୁ ନାହିଁ । ନିଜ ନିଜ ଗୃହକୁ ଫେରିଯା'ନ୍ତୁ । ସେମାନେ କାନ୍ଦି କାନ୍ଦି ରାମଙ୍କୁ ବିଦାୟ ଦେଲେ ଓ ତାଙ୍କର ରଥ ଅଦୃଶ୍ୟ ହେବା ପର୍ଯ୍ୟନ୍ତ ସେହିପରି ଠିଆ ହୋଇ ଚାହିଁ ରହିଲେ ।

ରାମଙ୍କର ରଥ ସମୃଦ୍ଧିଶାଳୀ କୋଶଳରାଜ୍ୟ ଅତିକ୍ରମ କରି ଗଙ୍ଗା ତୀରବର୍ତ୍ତୀ ଏକ ସୁରମ୍ୟ ପ୍ରଦେଶରେ ପ୍ରବେଶ କଲା । ଦେବତା ଓ ଋଷିମାନଙ୍କ ସେବିତ ବହୁ ଆଶ୍ରମ, ଉଦ୍ୟାନ, ଚୈତ୍ୟ, ଜଳାଶୟ ଓ କ୍ରୀଡ଼ାଭୂମିମାନ ସେ ଦେଖିବାକୁ ପାଇଲେ । ଲୋକେ ବେଶ୍ ସୁସ୍ଥ ସବଳ, ବ୍ରାହ୍ମଣମାନେ ବେଦାଧ୍ୟୟନରତ ଓ ଭୂମି ଶସ୍ୟଶାଳିନୀ । ବିହଙ୍ଗମୁଖରିତ ଗଙ୍ଗାର ନିର୍ମଳ ଜଳ ସେମାନଙ୍କୁ ମୋହିତ କଲା । କ୍ରୌଞ୍ଚ-ସାର-ସ-ନିନାଦିତ ଗଙ୍ଗା ତୀରବର୍ତ୍ତୀ ଏହି ରମଣୀୟ ପ୍ରଦେଶର ନାମ ଥିଲା

ଶୃଙ୍ଗବେରପୁର । ଗଙ୍ଗାନଦୀ କୂଳରେ ପହଞ୍ଚି ରାମ ସୁମନ୍ତଙ୍କୁ କହିଲେ, ଅଦୂରରେ ଦେଖା ଯାଉଥିବା ପତ୍ରପୁଷ୍ପଶୋଭିତ ବିଶାଳ ଇଙ୍ଗୁଦୀ ବୃକ୍ଷମୂଳରେ ପବିତ୍ର ଗଙ୍ଗାନଦୀକୁ ସମ୍ମାନ ଜଣାଇ ଆମେ ରାତ୍ରିଯାପନ କରିବା । ସୁମନ୍ତ ସେଇଠାରେ ରଥରୁ ଓହ୍ଲାଇ ଘୋଡ଼ାମାନଙ୍କୁ ଫିଟାଇଦେଲେ ।

ଗୁହ ନାମକ ନିଷାଦରାଜ ଏହି ରାଜ୍ୟର ରାଜା ଥିଲେ । ବଳବାନ୍ ନିଷାଦରାଜ ସ୍ଥାପତ୍ୟ ବିଦ୍ୟାରେ ମଧ୍ୟ ପାରଙ୍ଗମ ଥିଲେ । ରାମଙ୍କର ପ୍ରାଣତୁଲ୍ୟ ପ୍ରିୟ ସଖା ଗୁହ ଯେତେବେଳେ ଶୁଣିଲେ ଯେ ରାମ ତାଙ୍କ ରାଜ୍ୟକୁ ଆସିଛନ୍ତି, ସେ ତାଙ୍କର ବୃଦ୍ଧମନ୍ତ୍ରୀ ଓ ଜ୍ଞାତିମାନଙ୍କ ସହ ତାଙ୍କୁ ଭେଟିବାକୁ ଗଲେ ଏବଂ ଦୁଃଖରେ ତାଙ୍କୁ ଆଲିଙ୍ଗନ କରି କହିଲେ – ରାମ, ତୁମପାଇଁ ମୁଁ କ'ଣ କରିପାରିବି କହ, ଅଯୋଧ୍ୟା ଯେପରି, ଏହି ସ୍ଥାନକୁ ତୁମେ ସେହିପରି ବିଚାର କର । ମହାବାହୁ, ତୁମପରି ପ୍ରିୟ ଅତିଥି କାହାକୁ ମିଳନ୍ତି ? ମୁଁ ତୁମକୁ ସ୍ୱାଗତ କରୁଛି । ଏହି ସମସ୍ତ ରାଜ୍ୟ ତୁମର । ଆମେମାନେ ଭୃତ୍ୟ, ତୁମେ ହିଁ ଭର୍ତ୍ତା । ତୁମେ ଏହି ରାଜ୍ୟ ଶାସନ କର । ତୁମପାଇଁ ସମସ୍ତ ଖାଦ୍ୟପେୟ ଓ ଉତ୍ତମ ଶଯ୍ୟା ଆଦି ପ୍ରସ୍ତୁତ ହୋଇ ରହିଛି ।

ରାମ କହିଲେ – ଗୁହ, ତୁମେ ସବାନ୍ଧବ ପାଦରେ ଚାଲି ଚାଲି ଆସି ଆମକୁ ଯେଉଁ ସ୍ନେହପୂର୍ଣ୍ଣ ସ୍ୱାଗତ କଲ, ସେଥିରେ ଆମେ ବେଶ୍ ହୃଷ୍ଟ ଓ ପରିତୃପ୍ତ ହୋଇଛୁ । ନିଜର ସୁଗୋଲ ବାହୁଯୁଗଳଦ୍ୱାରା ଗୁହଙ୍କୁ ଗାଢ଼ ଆଲିଙ୍ଗନ କରି ସେ କହିଲେ, ତୁମକୁ ଓ ତୁମର ବନ୍ଧୁବାନ୍ଧବଙ୍କୁ ନୀରୋଗ ଦେଖି ମୁଁ ଆନନ୍ଦିତ । ତୁମେ ଜାଣ, ମୁଁ ଏବେ ଫଳମୂଳଭୋଜୀ, ବଳ୍କଳ ଓ ମୃଗଚର୍ମ ଧାରଣ କରି ବନବାସୀ ତାପସବ୍ରତ ଗ୍ରହଣ କରିଛି । ତେଣୁ ଅନ୍ୟାନ୍ୟ ଆତିଥ୍ୟରେ ମୋର ପ୍ରୟୋଜନ ନାହିଁ । କେବଳ ରାଜା ଦଶରଥଙ୍କର ପ୍ରିୟ ଏଇ ଘୋଡ଼ାଗୁଡ଼ିକଙ୍କର ସୁବ୍ୟବସ୍ଥା କରିଦେଲେ ମୁଁ ଖୁସି ହେବି ।

ଘୋଡ଼ାମାନଙ୍କର ଖାଦ୍ୟପାନୀୟର ବ୍ୟବସ୍ଥା କରିବାପାଇଁ ନିଷାଦରାଜ ଭୃତ୍ୟମାନଙ୍କୁ ଆଦେଶ ଦେଲେ । ରାମ ସନ୍ଧ୍ୟା ଶେଷ କରି ଲକ୍ଷ୍ମଣ ଆଣିଥିବା ଜଳମାତ୍ର ପାନ କଲେ । ସେ ସୀତାଙ୍କ ସହିତ ଭୂମିରେ ଶୋଇବା ପରେ ଲକ୍ଷ୍ମଣ ତାଙ୍କର ପାଦ ଧୋଇଦେଇ ଅଳ୍ପ ଦୂରରେ ବୃକ୍ଷ ମୂଳରେ ଆଶ୍ରୟ ନେଲେ ।

ଗୁହ ଲକ୍ଷ୍ମଣଙ୍କୁ କହିଲେ – ରାଜପୁତ୍ର, ତୁମପାଇଁ ଏହି ସୁଖକର ଶଯ୍ୟା ପ୍ରସ୍ତୁତ ହୋଇଛି । ତୁମେ ସେଥିରେ ଶାନ୍ତିରେ ଶୟନ କର । ମୁଁ ଧନୁ ଧରି ମୋର ଜ୍ଞାତିମାନଙ୍କ ସହ ପ୍ରିୟସଖା ରାମ ଓ ସୀତାଙ୍କୁ ରକ୍ଷା କରିବି । ବିଶାଳ ଚତୁରଙ୍ଗସେନା ଆସିଲେ ମଧ୍ୟ ମୁଁ ତାର ପ୍ରତିରୋଧ କରିପାରିବି । ମୁଁ ଶପଥ କରି କହୁଛି, ଏ ପୃଥିବୀରେ ରାମଙ୍କଠାରୁ ପ୍ରିୟତର ମୋର କେହି ନାହିଁ । ତାଙ୍କର ପ୍ରସାଦରୁ ସଂସାରରେ ମୁଁ ସମସ୍ତ ଧନ, ମାନ, ଯଶ ଲାଭ କରିପାରିବି ବୋଲି ଆଶା କରେ ।

ଲକ୍ଷ୍ମଣ କହିଲେ – ନିଷ୍ପାପ ରାଜା, ତୁମେ ଧର୍ମରେ ଚକ୍ଷୁଛ । ତୁମେ ରକ୍ଷା କଲେ ଆମର କୌଣସି ଭୟ ନାହିଁ । କିନ୍ତୁ ଦାଶରଥି ସୀତାଙ୍କ ସହିତ ଭୂମି ଶଯ୍ୟାରେ ଶୋଇଥିବା ବେଳେ ମୁଁ କିପରି ସୁଖରେ ନିଦ୍ରା ଯିବି ? ଆଜି ରାଜା ଦଶରଥ, ମାତା କୌଶଲ୍ୟା ଓ

ସୁମିତ୍ରା ଏବଂ ଅଯୋଧ୍ୟାର ରାଜପୁରୀ ଓ ପ୍ରଜାମାନଙ୍କର କଥା ମୁଁ ଚିନ୍ତା କରୁଚି । ସେମାନେ କି ଦୁଃଖରେ ନ ଥିବେ । ରାଜା ଦଶରଥ କ'ଣ ରାମଙ୍କର ବିରହରେ ବେଶିଦିନ ବଞ୍ôପାରିବେ ? ସେ ଚାଲିଗଲେ ମାତା କୌଶଲ୍ୟାଙ୍କର କି ଅବସ୍ଥା ହେବ ? ମୋର ଜନନୀ ମଧ କିପରି ଜୀବନ ଧରି ରହିବେ ? ଐଶ୍ୱର୍ଯ୍ୟଶାଳିନୀ ଅଯୋଧ୍ୟାନଗରୀର ପ୍ରଜାମାନେ କି ଦୁଃଖ ଭୋଗ ନ କରିବେ ? ଆମେ କ'ଣ ବନବାସ ଶେଷ କରି ପୁଣି ଅଯୋଧ୍ୟା ଫେରିଆସିବୁ ଓ ପିତାମାତାଙ୍କୁ ଦେଖିପାରିବୁ ? ଏହିପରି ଲକ୍ଷ୍ମଣ ଦୁଃଖାର୍ତ୍ତଭାବରେ ନିଷାଦରାଜଙ୍କ ସହିତ ଉଜାଗର ରହି କଥୋପକଥନରେ ରାତିଟି କଟାଇଦେଲେ ।

ପ୍ରଭାତ ହେବାରୁ ରାମ ଲକ୍ଷ୍ମଣଙ୍କୁ ଆଦେଶ ଦେଲେ, ଶୀଘ୍ର ଗଙ୍ଗାନଦୀ ପାର ହେବାର ବ୍ୟବସ୍ଥା କର । ରାମଙ୍କ ଇଚ୍ଛା ଜାଣି ଗୁହ ଏକ ସୁନ୍ଦର ସୁଦୃଢ଼ ନୌକାର ବ୍ୟବସ୍ଥା କଲେ ଓ ନୌକାରେ ଚଢ଼ିବାପାଇଁ ରାମ ଲକ୍ଷ୍ମଣ ଓ ସୀତାଙ୍କୁ ଅନୁରୋଧ କଲେ । ଏହାଦେଖି ସୁମନ୍ତ ପଚାରିଲେ, ବର୍ତ୍ତମାନ ମୋତେ କ'ଣ କରିବାକୁ ହେବ । ରାମ କହିଲେ – ସୁମନ୍ତ, ଆମ ପ୍ରତି ତୁମର କର୍ତ୍ତବ୍ୟ ଶେଷ ହେଲା । ଏଣିକି ରଥ ଛାଡ଼ି ମହାବନରେ ଆମକୁ ପାଦରେ ଚାଲି ଚାଲି ଯିବାକୁ ହେବ । ତୁମେ ଶୀଘ୍ର ରାଜାଙ୍କ ନିକଟକୁ ଫେରିଯାଇ ତାଙ୍କ ପାଖେ ପାଖେ ରହି ତାଙ୍କ ପ୍ରତି ତୁମର କର୍ତ୍ତବ୍ୟ ପାଳନ କର । ସୁମନ୍ତ କହିଲେ, ତୁମକୁ ଯଦି ବନବାସ ଯୋଗ ହେଲା, ତା' ହେଲେ ଧର୍ମାଚରଣ, ବେଦାଧ୍ୟୟନ, ନମ୍ରତା, ସରଳତା ଆଦି ଗୁଣାବଳୀର କୌଣସି ମୂଲ୍ୟ ନାହିଁ । ତୁମେ ବନକୁ ଯିବ ଓ ତୁମକୁ ଛାଡ଼ି ମୁଁ ଯାଇ ପାପିନୀ କୈକେୟୀର ସେବା କରିବି, ଏହା ଭାବିବାକ୍ଷଣି ମୋର କୋହ ଉଠୁଛି । ସୁମନ୍ତ ନିଜକୁ ଆଉ ସମ୍ଭାଳି ନ ପାରି ଉଚ୍ଚସ୍ୱରରେ ରୋଦନ କରିବାକୁ ଲାଗିଲେ ।

ରାମ ସୁମନ୍ତଙ୍କୁ ସାନ୍ତ୍ୱନା ଦେଇ କହିଲେ, ଇକ୍ଷ୍ୱାକୁ ବଂଶରେ ଜଣେ ହେଲେ ତୁମପରି ବନ୍ଧୁ ନାହିଁ । ତେଣୁ ତୁମକୁ ହିଁ ଗୁରୁଦାୟିତ୍ୱ ସମ୍ଭାଳିବାକୁ ହେବ । ଶୋକାର୍ତ୍ତ ବୃଦ୍ଧରାଜାଙ୍କୁ ତୁମେ ହିଁ ସାନ୍ତ୍ୱନା ଦେବ । କୈକେୟୀଙ୍କୁ ସନ୍ତୁଷ୍ଟ କରିବାପାଇଁ ସେ ଯେତେବେଳେ ଯାହା ଆଦେଶ ଦେବେ, ତୁମେ ତାହା ଅବିଚଳିତ ଭାବରେ ପାଳନ କରିବ । ତୁମେ ରାଜାଙ୍କୁ କହିବ, ମୁଁ ଲକ୍ଷ୍ମଣ ଓ ସୀତା ଅଯୋଧ୍ୟାରୁ ନିର୍ବାସିତ ହୋଇ ବନବାସ କରିବାରେ ଅଣୁମାତ୍ର ଦୁଃଖିତ ନୋହୁଁ । ଚଉଦବର୍ଷ ଗତ ହେବା ପରେ ରାଜା ପୁଣି ଆମକୁ ଦେଖିପାରିବେ । ମହାରାଜାଙ୍କୁ କହିବ ଯେ ଭରତକୁ ଶୀଘ୍ର ଆଣି ରାଜପଦରେ ଅଭିଷିକ୍ତ କରିବେ । ମୋର ଜନନୀ କୌଶଲ୍ୟାଙ୍କର ମୁଁ ପଦ ବନ୍ଦନା କରୁଛି ବୋଲି ଜଣାଇଦେବ । ଆମେ ବନବାସ କଲୁ, ଏହା କୈକେୟୀଙ୍କୁ ମଧ ବାରମ୍ଭାର ଜଣାଇବ । ଭରତ ରାଜା ହେଲେ କୈକେୟୀଙ୍କ ପରି ସୁମିତ୍ରା ଓ କୌଶଲ୍ୟାଙ୍କୁ ନିଜର ମାତା ଦୃଷ୍ଟିରେ ଦେଖିବ ବୋଲି ତାକୁ ପରାମର୍ଶ ଦେବ ।

ସୁମନ୍ତ ଶୋକାକୁଳ ହୋଇ କହିଲେ – ରାମ, ପୁତ୍ରବିରହଣୀ ଜନନୀ ପରି ତୁମ ବିଚ୍ଛେଦରେ ଶୋକାକୁଳା ଅଯୋଧ୍ୟା ନଗରୀ କି ଦୁଃଖ ଭୋଗ କରୁ ନ ଥିବ ? ଏହି ଶୂନ୍ୟ ରଥକୁ ଘେନି ମୁଁ ଅଯୋଧ୍ୟାରେ ପ୍ରବେଶ କଲେ ଶୋକାର୍ତ୍ତ ପୁରବାସୀମାନେ କ'ଣ

କହିବେ ? ମୁଁ ଦେବୀ କୌଶଲ୍ୟାଙ୍କୁ ଯାଇ କ'ଣ କହିବି, ତୁମ ପୁଅକୁ ମୁଁ ମାମୁଘରେ ନେଇ ଛାଡ଼ିଦେଇଛି, ତୁମେ ଦୁଃଖ କର ନାହିଁ ? ଏପରି ମିଥ୍ୟା ତ ମୁଁ କହିପାରିବି ନାହିଁ । ତେଣୁ ମୋତେ ଅନୁମତି ଦିଅ, ମୁଁ ତୁମ ସହିତ ବନବାସ କରିବି ଏବଂ ବନବାସ ସମୟ ଶେଷ ହେଲେ ତୁମକୁ ପୁଣି ରଥରେ ବସାଇ ଅଯୋଧ୍ୟା ଫେରିଆସିବି । ମୁଁ ତୁମର ଭୃତ୍ୟ ଓ ଭକ୍ତ । ତୁମେ ମୋତେ ନିରାଶ କର ନାହିଁ ।

ରାମ କହିଲେ – ସୁମନ୍ତ୍ର, ତୁମକୁ ମୁଁ କାହିଁକି ଅଯୋଧ୍ୟା ପଠାଉଛି, ତାହା ଭଲ ଭାବରେ ଶୁଣ । ତୁମେ ଫେରିଗଲେ ମୋର କନିଷ୍ଠା ମାତା କୈକେୟୀଙ୍କର ବିଶ୍ୱାସ ହେବ ଯେ ରାମ ବଣକୁ ଗଲା । ତା ହେଲେ ସେ ତୁଷ୍ଟହୋଇ ଧାର୍ମିକ ରାଜାଙ୍କୁ ମିଥ୍ୟାବାଦୀ ବୋଲି ଦୋଷ ଦେବେ ନାହିଁ ଓ ସମୃଦ୍ଧିଶାଳୀ କୋଶଳରାଜ୍ୟ ତାଙ୍କର ପୁତ୍ରର ରାଜ୍ୟ ହେଲା ବୋଲି ଅନୁଭବ କରିବେ । ତେଣୁ ମୋର ଓ ରାଜାଙ୍କର ପ୍ରିୟ ସାଧନ ପାଇଁ ତୁମେ ଶୀଘ୍ର ରଥ ନେଇ ଅଯୋଧ୍ୟାକୁ ଫେରିଯାଅ ।

ସୁମନ୍ତ୍ରଙ୍କୁ ବାରମ୍ବାର ସାନ୍ତ୍ୱନା ଦେଇ ରାମ ନିଷାଦରାଜ ଗୁହଙ୍କୁ କହିଲେ, ତୁମେ ମୋର ପ୍ରିୟସୁହୃଦ୍ ହେଲେ ମଧ୍ୟ ବନବାସ ପାଇଁ ବଚନବଦ୍ଧ ହୋଇଥିବା ଯୋଗୁଁ ମୁଁ ତୁମ ରାଜ୍ୟ ଛାଡ଼ିଯିବାପାଇଁ ବାଧ୍ୟ ହେଉଛି । ଏଣିକି ଅରଣ୍ୟ ମଧ୍ୟରେ ଆଶ୍ରମବାସୀ ତପସ୍ୱୀ ଭାବରେ ମୋତେ ସୀତା ଓ ଲକ୍ଷ୍ମଣଙ୍କ ସହିତ ରହିବାକୁ ହେବ । ତେଣୁ ଏହି କେଶରାଶିକୁ ଜଟା କରି ବାନ୍ଧିବାପାଇଁ ମୋର କିଛି ବଟକ୍ଷୀର ଦରକାର ।

ଗୁହଙ୍କ ନିର୍ଦ୍ଦେଶରେ ବଟକ୍ଷୀର ଅଣାଗଲା ଏବଂ ରାମ ଓ ଲକ୍ଷ୍ମଣ ଜଟାଧାରୀ ହୋଇ ବଲ୍କଳ ପରିଧାନ କଲେ । କାନ୍ଧରେ ଧନୁ ଓ ତୂଣୀର ଏବଂ କଟିରେ ଖଡ୍‌ଗ ଧାରଣ କରି ରାମ ଓ ଲକ୍ଷ୍ମଣ ସୀତାଙ୍କ ସହ ନୌକା ଆରୋହଣ କଲେ । ସୁମନ୍ତ୍ର ଓ ଗୁହଙ୍କୁ ବିଦାୟ ଦେଇ ଶୀଘ୍ର ନୌକା ଚଳାଇବାପାଇଁ ରାମ ନାବିକମାନଙ୍କୁ ଆଦେଶ ଦେଲେ ।

ଦ୍ରୁତବେଗରେ ଚାଲିଥିବା ନୌକା ନଦୀ ମଝିରେ ପହଞ୍ଚିବାବେଳେ ସୀତା କୃତାଞ୍ଜଳି ହୋଇ ଗଙ୍ଗାଙ୍କୁ ପ୍ରଣାମ କରି କହିଲେ, ଦେବୀ ଗଙ୍ଗେ, ଦଶରଥଙ୍କ ପୁତ୍ର ଆପଣଙ୍କ ଦ୍ୱାରା ରକ୍ଷିତ ହୋଇ ପିତୃସତ୍ୟ ପାଳନପୂର୍ବକ ଚଉଦବର୍ଷ ପରେ ଲକ୍ଷ୍ମଣ ଓ ମୋ ସହିତ ଫେରି ଆସନ୍ତୁ । ସମସ୍ତେ ସୁରୁଖୁରରେ ଫେରିଆସିଲେ ମୁଁ ତୁମର ପ୍ରିୟ ସାଧନ ପାଇଁ ବ୍ରାହ୍ମଣମାନଙ୍କୁ ଏକଲକ୍ଷ ଗାଭୀ, ବସ୍ତ୍ର ଓ ସୁମିଷ୍ଟ ଅନ୍ନ ପ୍ରଦାନ କରିବି ଓ ତୁମ ତୀରରେ ଥିବା ସମସ୍ତ ତୀର୍ଥ ଓ ଦେବ ମନ୍ଦିରରେ ପୂଜା କରିବି ।

ଗଙ୍ଗାପାର ହେବା ପରେ ରାମ ଲକ୍ଷ୍ମଣଙ୍କୁ କହିଲେ, ବର୍ତ୍ତମାନ ଆମର କେହି ସହାୟକ ନାହାନ୍ତି । ଏହି ବନବାସ କାଳରେ ସୀତାଙ୍କୁ ରକ୍ଷା କରିବା ତୁମର କର୍ତ୍ତବ୍ୟ ହେବ । ବନବାସ ଦୁଃଖ କ'ଣ ଏ ପର୍ଯ୍ୟନ୍ତ ବୈଦେହୀ ଜାଣି ନାହାନ୍ତି । ଏଣିକି ଜନମାନବଶୂନ୍ୟ, ଉଦ୍ୟାନ ଓ ଶସ୍ୟକ୍ଷେତ୍ରବିରହିତ ବିଷମ ଅରଣ୍ୟବାସର ଦୁଃଖ ସେ ଅନୁଭବ କରିବେ । ତୁମେ ଆଗେ ଆଗେ ଚାଲ । ତୁମ ପଛରେ ସୀତା ଚାଲନ୍ତୁ ଓ ମୁଁ ତାଙ୍କ ପଛରେ ତୁମ ଦୁହିଁଙ୍କୁ ଜଗି ଜଗି ଚାଲିବି ।

ଗଙ୍ଗାର ଆରପାରିରେ ରହି ସୁମନ୍ତ ଏହି ଦୃଶ୍ୟ ଦେଖୁଥିଲେ । ଯେତେବେଳେ ପଦଚାରୀ ଅଯୋଧ୍ୟାର ରାଜପୁତ୍ର ଓ ଜନକନନ୍ଦିନୀ ଆଉ ଦେଖାଗଲେ ନାହିଁ, ସେତେବେଳେ ସଜଳ ନୟନରେ ଶୂନ୍ୟରଥକୁ ଧରି ସେ ଅଯୋଧ୍ୟା ଫେରିଗଲେ ।

## ୨୮ ।। ପ୍ରୟାଗ, ଚିତ୍ରକୂଟ

କିଛି ସମୟ ପଦଯାତ୍ରା କରିବାପରେ ରାମ ସମୃଦ୍ଧ ଶସ୍ୟସମ୍ପନ୍ନ ବତ୍ସଦେଶରେ ପହଞ୍ଚିଲେ । ସେମାନେ ସେତେବେଳେ କ୍ଷୁଧାର୍ତ୍ତ । ବନରେ ଚାରିପ୍ରକାର ମୃଗ ବଧ କରି ପବିତ୍ର ମୃଗମାଂସରେ କ୍ଷୁଧା ମେଣ୍ଟାଇବାପାଇଁ ଏକ ବୃକ୍ଷମୂଳରେ ଆଶ୍ରୟ ନେଲେ ।

ସନ୍ଧ୍ୟା ଉପାସନା ଶେଷ କରିବା ପରେ ରାମ ଲକ୍ଷ୍ମଣଙ୍କୁ କହିଲେ, ପ୍ରଥମ କରି ଲୋକବସତି ବାହାରେ କୌଣସି ଭୃତ୍ୟ ସହାୟକ ବା ପରିଚାରକ ନ ଥାଇ ଆମକୁ ରାତ୍ରି କଟାଇବାକୁ ହେବ । କେବଳ ଆଜି ନୁହେଁ, ଏହିପରି ବନବାସ ସମୟରେ ସବୁଦିନ ଆମକୁ ରହିବାକୁ ହେବ । ଭୂମି ଉପରେ ତୃଣାଦି ଶଯ୍ୟା ଆମେ ପ୍ରସ୍ତୁତ କରିବା ଓ ସୀତାଙ୍କୁ ରକ୍ଷା କରିବାପାଇଁ ସବୁବେଳେ ସାବଧାନ ରହିବା । ଲକ୍ଷ୍ମଣ, ରାଜା ଦଶରଥ ନିଶ୍ଚୟ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଥିବେ ଏବଂ କୈକେୟୀ ମହା ଆନନ୍ଦରେ ସମୟ କଟାଉଥିବେ । କେବଳ ମୋର ଆଶଙ୍କା, ଭରତର ରାଜ୍ୟପ୍ରାପ୍ତି ପାଇଁ ସେ ରାଜାଙ୍କୁ ପ୍ରାଣରେ ନ ମାରିଦେଲେ ହେଲା । ଧର୍ମ ଅପେକ୍ଷା କାମ ହିଁ ଅଧିକ ବଳବାନ୍ । ତା ନ ହୋଇଥିଲେ କୈକେୟୀଙ୍କର ବଶବର୍ତ୍ତୀ ହୋଇ ରାଜା ମୋତେ ଯେପରି ପରିତ୍ୟାଗ କଲେ କେଉଁ ମୂର୍ଖବ୍ୟକ୍ତି ନାରୀର ବଶୀଭୂତ ହୋଇ ସେପରି କାର୍ଯ୍ୟ କରନ୍ତା । ରାଜାଙ୍କର ମୃତ୍ୟୁ ହେଲେ କୈକେୟୀ ଆହୁରି ସୁଖୀ ହେବେ । କାରଣ ତାଙ୍କର ପୁତ୍ର ଭରତ ଏକାଙ୍ଗଚକ୍ରବର୍ତ୍ତୀ ଭାବରେ ସମୁଦିତ କୋଶଳରାଜ୍ୟ ଉପଭୋଗ କରିବ । ହେ ସୌମ୍ୟ ଲକ୍ଷ୍ମଣ, ମୋର ମନେହୁଏ କ୍ଷମତାଗର୍ବରେ କୈକେୟୀ କୌଶଲ୍ୟା ଓ ସୁମିତ୍ରାଙ୍କ ପ୍ରତି ଦ୍ରୋହ ଆଚରଣ କରିବେ । ମୋ ଲାଗି ସୁମିତ୍ରା ଦୁଃଖ ନ ଭୋଗନ୍ତୁ, ସେଥିପାଇଁ କାଲି ଭୋରରୁ ତୁମେ ଯାଇ ଅଯୋଧ୍ୟାରେ ପହଞ୍ଚିଯାଅ ।

ଦୁଃଖିନୀ ମାତାଙ୍କର କଥା ଚିନ୍ତା କରି ରାମ ଆହୁରି ଶୋକବିହ୍ୱଳ ହୋଇପଡ଼ିଲେ । ସେ କହିଲେ– ସୌମିତ୍ରି, ଜନନୀ କୌଶଲ୍ୟା ମୋତେ ପାଳି ପୋଷି ବଢ଼ାଇଲେ, ମାତ୍ର ଯେତେବେଳେ ମୋ' ଠାରୁ ସେ କିଛି ସୁଖ ପାଇବେ ବୋଲି ଆଶା କରିଥିଲେ, ଫଳବାନ୍ ବୃକ୍ଷରୁ ଫଳ ଛଡ଼ାଇନେବା ପରି ତାଙ୍କର ଅବସ୍ଥା ହେଲା । ଯେଉଁ ଧନୁର୍ବାଣ ଦ୍ୱାରା ମୁଁ ଅଯୋଧ୍ୟା କ'ଣ, ସମସ୍ତ ପୃଥିବୀକୁ କରଗତ କରିପାରେ, ଆଜି ସେହି ଧନୁ ଧାରଣ କରି ଏକ ସାମାନ୍ୟ କାର୍ଯ୍ୟ, ମୋ ଜନନୀଙ୍କର ଦୁଃଖ ମୁଁ ମୋଚନ କରିପାରୁ ନାହିଁ । ମୋର ବୀରତ୍ୱ ନିଷ୍ଫଳ ହୋଇଛି, ଏହାଠାରୁ ବଳି ବିଡ଼ମ୍ବନା କ'ଣ ଥାଇପାରେ ? କିନ୍ତୁ ସୌମିତ୍ରି, ଧର୍ମ ଭୟରେ ମୋତେ ଭୀତ ହୋଇ ରହିବାକୁ ପଡୁଛି । ଏହିପରି ଶିଖାହୀନ ଅଗ୍ନି ଓ ବେଗହୀନ ସମୁଦ୍ର ପରି ରାମ ବିଳାପ କରି କରି ନୀରବ ହେଲେ ।

ଲକ୍ଷ୍ମଣ ରାମଙ୍କୁ ସାନ୍ତ୍ୱନାଦେଇ କହିଲେ – ବୀରଶ୍ରେଷ୍ଠ, ତୁମେ ଚାଲିଆସିବା ପରେ ଆଜି ଅଯୋଧ୍ୟାନଗରୀ ନିଶ୍ଚୟ ଚନ୍ଦ୍ରହୀନ ରାତ୍ରି ପରି ନିଷ୍ପ୍ରଭ ଦେଖାଯାଉଥିବ । କିନ୍ତୁ ଆର୍ଯ୍ୟ, ତୁମେ ଯେପରି ପରିତାପ କରି ସୀତାଙ୍କୁ ଏବଂ ମୋତେ ଦୁଃଖ ଦେଉଛ, ତାହା ତୁମ ପକ୍ଷରେ ଠିକ୍ ହେଉ ନାହିଁ । ରାଘବ, ତୁମେ ଜାଣ ଯେ ସୀତା ଏବଂ ମୁଁ ତୁମଠାରୁ ବିଚ୍ଛିନ୍ନ ହେଲେ ଜଳରୁ ପୃଥକ୍ ହୋଇଥିବା ମତ୍ସ୍ୟ ପରି ମୁହୂର୍ତ୍ତେ ହେଲେ ବଞ୍ଚିପାରିବୁ ନାହିଁ । ତୁମକୁ ଛାଡ଼ି କି ପିତା, କି ଶତ୍ରୁଘ୍ନ କି ସୁମିତ୍ରା ଏପରିକି ସ୍ୱର୍ଗକୁ ମଧ ମୁଁ ଦେଖିବାକୁ ଇଚ୍ଛା କରେ ନାହିଁ । ଲକ୍ଷ୍ମଣଙ୍କର ଉତ୍ତମ ଯୁକ୍ତିଯୁକ୍ତ ବାକ୍ୟରେ ରାମ ସନ୍ତୁଷ୍ଟ ହେଲେ ଏବଂ ତଦ୍ୱାରା ବନବାସର ସଙ୍କଳ୍ପ ତାଙ୍କର ଦୃଢ଼ୀଭୂତ ହେଲା ।

ପରଦିନ ପ୍ରଭାତରେ ବିଶାଳ ବନ ମଧ୍ୟରେ ପ୍ରୟାଗ ଅଭିମୁଖରେ ସେମାନଙ୍କର ଯାତ୍ରା ଆରମ୍ଭ ହେଲା । ବିବିଧ ପୁଷ୍ପିତ ବୃକ୍ଷମାନଙ୍କୁ ଦେଖି ଯାଉ ଯାଉ ଦିନ ଶେଷ ହେବାବେଳକୁ ସେମାନେ ଧୂଆଁ ସବୁ ଉଠୁଥିବାର ଦେଖିପାରିଲେ । ରାମ ଲକ୍ଷ୍ମଣଙ୍କୁ କହିଲେ, ବର୍ତ୍ତମାନ ସେମାନେ ଗଙ୍ଗା-ଯମୁନାର ସଙ୍ଗମ ନିକଟରେ ପହଞ୍ଚିଗଲେଣି । ସେଠାରେ ପ୍ରସିଦ୍ଧ ଭରଦ୍ୱାଜ ମୁନିଙ୍କର ଆଶ୍ରମ ଏବଂ ସେଇଠାରୁ ହିଁ ଏହି ଧୂମରାଶି ଉତ୍ଥିତ ହେଉଛି । ଦୁଇନଦୀର ଜଳ ମିଶୁଥିବା ଯୋଗୁଁ ତାର ସଂଘର୍ଷର ଧ୍ୱନି ମଧ ଶୁଣାଯାଉଛି ।

ରାମ, ଲକ୍ଷ୍ମଣ ଓ ସୀତା ଆଶ୍ରମରେ ପହଞ୍ଚି କୃତାଞ୍ଜଳି ହୋଇ ମହାମୁନି ଭରଦ୍ୱାଜଙ୍କୁ ଅଭିବାଦନ କଲେ ଏବଂ ନିଜର ପରିଚୟ ଦେଲେ । ଭରଦ୍ୱାଜ ସେମାନଙ୍କୁ ସ୍ୱାଗତ ଜଣାଇ ଅର୍ଘ୍ୟ ଜଳ ଓ ଫଳମୂଳ ଆଦି ପ୍ରଦାନ କଲେ । ସେ ରାମଚନ୍ଦ୍ରଙ୍କୁ କହିଲେ – କାକୁତ୍ସ୍ଥ, ମୁଁ ତୁମକୁ ବହୁଦିନ ପରେ ଏହି ଆଶ୍ରମକୁ ଆସିବାର ଦେଖୁଛି । ତୁମର ଅକାରଣ ନିର୍ବାସନର ସମ୍ବାଦ ମୁଁ ଆଗରୁ ପାଇଛି । ଦୁଇ ପବିତ୍ର ନଦୀର ସଙ୍ଗମସ୍ଥଳ ଏହି ନିର୍ଜନ ଓ ରମଣୀୟ ସ୍ଥାନରେ ତୁମେ ସୁଖରେ ବାସକର । ରାମ ଉତ୍ତର ଦେଲେ – ଭଗବନ୍, ଏଠାରେ ଖୁବ ନିକଟରେ ନଗର ଓ ଜନପଦ ସବୁ ଅଛି । ଏହି ଆଶ୍ରମରେ ମୁଁ ରହୁଥିବାର ଜାଣିଲେ ମୋତେ ଓ ସୀତାଙ୍କୁ ଦେଖିବାପାଇଁ ବହୁ ଲୋକ ଆସିବେ । ଏପରି ଏକ ସ୍ଥାନ କହନ୍ତୁ, ଯେଉଁଠିକି ଗଲେ ଆମକୁ କେହି ଦେଖିପାରିବେ ନାହିଁ ଓ ବୈଦେହୀ ଆନନ୍ଦରେ ରହିପାରିବେ । ଭରଦ୍ୱାଜ କହିଲେ – ବତ୍ସ, ଏ ସ୍ଥାନରୁ ଦଶକ୍ରୋଶ ଦୂରରେ ଏକ ପର୍ବତ ଅଛି, ଯାହାକି ମହର୍ଷିମାନଙ୍କ ଅଧ୍ୟୁଷିତ ଏକ ପବିତ୍ର ରମଣୀୟ ସ୍ଥାନ । ସେଠାରେ ଗୋଲାଙ୍ଗୁଳ (କୃଷ୍ଣମୁଖଯୁକ୍ତ ଗୋଲାଙ୍ଗୁଳ ପରି ଲାଙ୍ଗୁଳ ଥିବା ବାନର), ବାନର ଓ ଭଲ୍ଲୁକମାନେ ବିଚରଣ କରନ୍ତି । ସେଠାରେ ବହୁସଂଖ୍ୟକ ଶୁଭ୍ରକେଶ ଋଷି ଦୀର୍ଘକାଳ ତପସ୍ୟା କରି ତପୋବଳରେ ସ୍ୱର୍ଗାରୋହଣ କରିଛନ୍ତି । ଚିତ୍ରକୂଟ ନାମକ ସେହି ପ୍ରସିଦ୍ଧ ପର୍ବତରେ ରହିଲେ ତୁମେ ନିର୍ଜନତା ଓ ପବିତ୍ରତା ଅନୁଭବ କରିପାରିବ । ନଚେତ୍ ଏଠାରେ ମୋ' ସହିତ ସମଗ୍ର ବନବାସ ସମୟ ତୁମେ ଆନନ୍ଦରେ ରହିପାର ।

ରାମ, ଲକ୍ଷ୍ମଣ ଓ ସୀତା ଋଷିଙ୍କ ଦ୍ୱାରା ଅଭ୍ୟର୍ଥିତ ହୋଇ ଭରଦ୍ୱାଜ ଆଶ୍ରମରେ ରାତ୍ରିଯାପନ କଲେ । ସକାଳ ହେବାରୁ ରାମ ଭରଦ୍ୱାଜଙ୍କଠାରୁ ବିଦାୟ ନେବାକୁ ଗଲେ । ମହାମୁନି ଭରଦ୍ୱାଜ ପୁଣି ଚିତ୍ରକୂଟର ଗୁଣ ବର୍ଣ୍ଣନା କରି କହିଲେ, ବିଭିନ୍ନ ଫଳମୂଳ ଓ

ମଧୁପୂର୍ଣ୍ଣ ଚିତ୍ରକୂଟ ପର୍ବତ ତୁମର ଉପଯୁକ୍ତ ବାସସ୍ଥଳୀ ହୋଇପାରିବ । ବିଭିନ୍ନ ନଦୀ, ନିର୍ଝରିଣୀ, ପ୍ରପାତ ଓ ପ୍ରସ୍ରବଣ ସେହି ସ୍ଥାନକୁ ମୁଖରିତ କରୁଛି । ମୟୂର, କୋକିଳମାନଙ୍କ କଳରବ, ମୃଗ ଓ ହସ୍ତୀଯୂଥମାନଙ୍କ ଦୃଶ୍ୟ ତୁମକୁ ଆମୋଦିତ କରିବ । ସେମାନଙ୍କ ଯାତ୍ରାର ସ୍ୱସ୍ତ୍ୟୟନ କରି ଓ ସେମାନଙ୍କୁ କିଛିଦୂର ବିଦାୟ ଦେବାକୁ ଯାଇ ମହର୍ଷି କହିଲେ, ତୁମେ ଗଙ୍ଗା-ଯମୁନାର ସଙ୍ଗମସ୍ଥଳରେ ପହଞ୍ଚି ଯମୁନା ଯେଉଁଆଡୁ ଆସି ମିଶିଚି – କୂଳେ କୂଳେ କିଛି ଦୂର ସେହି ଦିଗକୁ ଯାତ୍ରା କରିବା ପରେ ନଦୀରେ ବହୁ ଲୋକଙ୍କ ଦ୍ୱାରା ବ୍ୟବହୃତ ଏକ ପୁରୁଣା ଘାଟ ଦେଖିପାରିବ ଏବଂ ସେଠାରେ ଏକ ଭେଳା ତିଆରି କରି ଯମୁନା ନଦୀ ପାର ହେବ । ପରେ ପରେ ତୁମେ ଦେଖିବ ବହୁ ବୃକ୍ଷ ପରିବେଷ୍ଟିତ ଶ୍ୟାମଳପତ୍ର ଯୁକ୍ତ ଏକ ବିଶାଳ ବଟବୃକ୍ଷ । ସୀତା ସେହି ବଟମୂଳରେ ପ୍ରଣାମ କରି ଆଶୀର୍ବାଦ ଭିକ୍ଷା କରିବେ । ସେଠାରୁ କୋଶେ ବାଟ ଗଲେ ବହୁଳ ବରକୋଳି ଓ ବାଉଁଶ ଗଛ ପୂରି ରହିଥିବା ଏକ ନୀଳବର୍ଣ୍ଣର ବନ ତୁମେ ଦେଖିପାରିବ । ସେଇ ବାଟେ ମୁଁ ବହୁଥର ଚିତ୍ରକୂଟ ଯାଇଛି । ତୁମର ଯିବାରେ କୌଣସି ଅସୁବିଧା ହେବ ନାହିଁ ।

ରାମ, ଲକ୍ଷ୍ମଣ ଓ ସୀତା ମୁନିଙ୍କ କଥିତ କାଳିନ୍ଦୀ କୂଳର ସେହି ଘାଟ ନିକଟରେ ପହଞ୍ଚି କାଠସବୁ ବାନ୍ଧି ଏକ ବଡ଼ ଭେଳା ପ୍ରସ୍ତୁତ କଲେ ଏବଂ ସେଥିରେ ଶୁଖିଲା ବାଉଁଶ ଓ ବେଣାଚେର ପକାଇ ସୀତାଙ୍କ ପାଇଁ ଏକ ସୁଖର ଆସନ ପ୍ରସ୍ତୁତ କଲେ । ରାମ ସଲଜ୍ଜା ସୀତାଙ୍କୁ ଟେକିନେଇ ସେହି ଭେଳା ଉପରେ ବସାଇଦେଲେ । ଭେଳାରେ ସୀତାଙ୍କର ବସ୍ତ୍ର ଓ ଅଳଙ୍କାର, ସେମାନେ ଆଣିଥିବା ଆୟୁଧ, ଖଣତି, ପେଡ଼ି ଆଦି ରଖି ଯମୁନା ପାର ହେବାକୁ ଲାଗିଲେ । ଭେଳା ନଦୀ ମଝିରେ ପହଞ୍ଚିବାରୁ ସୀତା କୃତାଞ୍ଜଳି ହୋଇ ଯମୁନା ନଦୀକୁ ପ୍ରାର୍ଥନା କରି କହିଲେ, ରାମ ବନବାସ ବ୍ରତ ପୂର୍ଣ୍ଣ କରି ଇକ୍ଷ୍ୱାକୁ ବଂଶପାଳିତ ଅଯୋଧ୍ୟାକୁ ଶୁଭରେ ଫେରିଆସିଲେ ମୁଁ ଏକସହସ୍ର ଗାଭୀ ଓ ଏକଶତ ସୁରାଘଟ ଦ୍ୱାରା ତୁମର ପୂଜା କରିବି ।

ଯମୁନା ପାର ହୋଇ ଶୀତଳଛାୟା-ବିଶିଷ୍ଟ ଶ୍ୟାମଳ ପତ୍ରପୂର୍ଣ୍ଣ ଶ୍ୟାମ ବଟମୂଳରେ ସେମାନେ ପହଞ୍ଚିଲେ । ସେଠାରେ ବରବର୍ଣ୍ଣିନୀ ସୀତା ବୃକ୍ଷକୁ ପ୍ରଣାମ କରି କହିଲେ, ମୋର ପତି ତାଙ୍କର ବ୍ରତ ପାଳନରେ ସମର୍ଥ ହୁଅନ୍ତୁ ଓ ମୁଁ ଫେରିଆସି ଯଶସ୍ୱିନୀ କୌଶଲ୍ୟା ଓ ସୁମିତ୍ରାଙ୍କୁ ଦେଖେ । ରାମ ଲକ୍ଷ୍ମଣକୁ କହିଲେ, ତୁମେ ସୀତାଙ୍କୁ ନେଇ ଆଗେ ଆଗେ ଚାଲ । ମୁଁ ଅସ୍ତ୍ର ଧାରଣ କରି ପଛେ ପଛେ ଯିବି । ବାଟରେ ଗଲାବେଳେ ଜନକନନ୍ଦିନୀ ଯେଉଁ ଫଳ ବା ପୁଷ୍ପ କାମନା କରିବେ ତୁମେ ତାଙ୍କର ମନ ଖୁସି କରିବାପାଇଁ ତାଙ୍କୁ ଆଣିଦେବ । ବହୁ ପୁଷ୍ପିତ ଗୁଳ୍ମ, ଲତା ଓ ବୃକ୍ଷ ଦେଖି ସୀତା ଗୋଟି ଗୋଟି କରି ଚିହ୍ନିବା ପାଇଁ ରାମଙ୍କୁ ପଚାରିଲେ । ସୀତା ଇଚ୍ଛା କରୁଥିବା କେତେକ ପୁଷ୍ପସ୍ତବକ ଆଣି ଲକ୍ଷ୍ମଣ ତାଙ୍କୁ ଉପହାର ଦେଲେ । ଏହିପରି ଜନକରାଜତନୟା ବିଚିତ୍ର ବାଲୁକାଶୋଭିତ ହଂସସାରସନିନାଦିତ ଯମୁନାର ନୀଳବର୍ଣ୍ଣ ଜଳର ଶୋଭା ଦେଖି ଓ ହସ୍ତୀ ବାନର ମୟୂରପୂର୍ଣ୍ଣ ଅରଣ୍ୟରେ ବିହାର କରି ଆନନ୍ଦିତ ହେଲେ । ରାମ, ଲକ୍ଷ୍ମଣ ପବିତ୍ର ମୃଗ ବଧ

କରି ଭୋଜନର ବ୍ୟବସ୍ଥା କଲେ ଏବଂ ନଦୀ ତୀରବର୍ତ୍ତୀ ଏକ ସମତଳ ସ୍ଥାନରେ ରାତ୍ରିଯାପନ କଲେ ।

ରାତ୍ରି ପାହିବାରୁ ରାମ ଲକ୍ଷ୍ମଣଙ୍କୁ ଉଠାଇ ଚିତ୍ରକୂଟ ଯାତ୍ରା ପାଇଁ ପ୍ରସ୍ତୁତ ହେଲେ । ଯମୁନାର ପବିତ୍ର ଜଳ ସ୍ପର୍ଶପୂର୍ବକ ମୁଖାଦି ଧୌତ କରି ସେମାନେ ଚିତ୍ରକୂଟ ପଥରେ ଆଗେଇଗଲେ । ଅରଣ୍ୟର ଅପୂର୍ବ ଶୋଭା ସେମାନଙ୍କୁ ମୋହିତ କଲା । ରାମ ସୀତାଙ୍କୁ କହିଲେ– ବୈଦେହୀ, ଦେଖ, ଚାରିଆଡ଼େ ପୁଷ୍ପିତ ବୃକ୍ଷମାନେ କିପରି ସୁନ୍ଦର ଦେଖାଯାଉଛନ୍ତି । ଭଲ୍ଲାତକ ଓ ବିଲ୍ୱବୃକ୍ଷ ସବୁ ଫଳପୁଷ୍ପ ଭାରରେ ନଇଁ ପଡ଼ିଛନ୍ତି । ପ୍ରତି ବୃକ୍ଷରେ ବଡ଼ ବଡ଼ ମହୁଫେଣା ସବୁ ତଳକୁ ଲମ୍ୱିଯାଇଛି । ଡାହୁକ ଓ ମୟୂରମାନେ ଡାକୁଛନ୍ତି । ବନଭୂମି ଯେପରିକି ପୁଷ୍ପଶଯ୍ୟାରେ ସଜ୍ଜିତ ହୋଇ ରହିଛି । ଏଇ ଦେଖ ଚିତ୍ରକୂଟ ପର୍ବତ । ଏଠାରେ ସମସ୍ତ ପ୍ରକାର ଫଳ ମୂଳ, ମୃଗ ପଶୁ, ସୁସ୍ୱାଦୁ ଜଳ ଆଦି ପରିପୂର୍ଣ୍ଣ ହୋଇ ରହିଛି । ଏହାର ରମଣୀୟ ସମତଳ ଭୂମିରେ ଆମେ ଆନନ୍ଦରେ ବିହାର କରିବା ।

ଚିତ୍ରକୂଟପର୍ବତରେ ରାମ, ଲକ୍ଷ୍ମଣ, ସୀତା ବାଲ୍ମୀକିଙ୍କ ଆଶ୍ରମକୁ ଗଲେ ଓ ଋଷିଙ୍କୁ ଅଭିବାଦନ କରି ନିଜର ପରିଚୟ ଦେଲେ । ମହର୍ଷି ସେମାନଙ୍କୁ ଆନନ୍ଦରେ ସ୍ୱାଗତ ଜଣାଇ ସେମାନଙ୍କର ସତ୍କାର କଲେ ।

ଚିତ୍ରକୂଟର ପ୍ରାଚୁର୍ଯ୍ୟ ଓ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ରାମ ସେଠାରେ ଏକ ଆଶ୍ରମ ନିର୍ମାଣ କରିବାପାଇଁ ସ୍ଥିର କଲେ । ରାମଙ୍କର ଇଚ୍ଛାକୁ ଆଦେଶ ବୋଲି ଗ୍ରହଣ କରି ଲକ୍ଷ୍ମଣ ଉପଯୁକ୍ତ କାଠ ବାଉଁଶ ଆଦି ସଂଗ୍ରହ କରି ଏହି ଆଶ୍ରମ ନିର୍ମାଣରେ ଲାଗିଗଲେ । ଅଳ୍ପ ସମୟ ମଧ୍ୟରେ ଦ୍ୱାର-ବାତାୟନ-ଯୁକ୍ତ ଏକ ସୁନ୍ଦର ପର୍ଣ୍ଣଶାଳା ନିର୍ମିତ ହେଲା । ହରିଣ ମାଂସ ସଂଗ୍ରହ କରି ଶାସ୍ତ୍ରୋକ୍ତ ବିଧି ଅନୁଯାୟୀ ମନ୍ତ୍ର ଉଚ୍ଚାରଣପୂର୍ବକ ରାମଚନ୍ଦ୍ର ଦେବତାମାନଙ୍କ ଉଦ୍ଦେଶ୍ୟରେ ଯଜ୍ଞ କଲେ । ବନ୍ୟ ପୁଷ୍ପମାଳା, ଫଳ, ମୂଳ, ସିଦ୍ଧ ମାଂସ, ମନ୍ତ୍ରିତ ଜଳ, କୁଶ ସମିଧାଦି ଦ୍ୱାରା ବାସ୍ତୁ ଶାନ୍ତି, ଗୃହ ପ୍ରତିଷ୍ଠା ଓ ଗୃହ ପ୍ରବେଶ କରାଗଲା । ଅତ୍ୟନ୍ତ ରମଣୀୟ ଚିତ୍ରକୂଟ ପର୍ବତ, ମୃଗପକ୍ଷୀସେବିତ ପୁଷ୍ପିତ କାନନ ଓ ସୁନ୍ଦର ଘାଟ ବିଶିଷ୍ଟ ମାଲ୍ୟବତୀ ନଦୀ ଏବଂ ଏକ ରମଣୀୟ ପର୍ଣ୍ଣକୁଟୀରକୁ ଲାଭ କରି ରାମ, ଲକ୍ଷ୍ମଣ ଓ ସୀତା ନିର୍ବାସନ ଦୁଃଖ ଭୁଲିଗଲେ ।

## ୨୯ ॥ ପୁତ୍ର-ବିରହିଣୀ ମାତାର ଶୋକ

ରାମଙ୍କୁ ବିଦାୟ ଦେବାପରେ ସୁମନ୍ତ ନିଷାଦରାଜ ଗୁହଙ୍କ ସହିତ ରହି ରାମଙ୍କ ଖବର ବୁଝୁଥିଲେ । ରାମଙ୍କର ପ୍ରୟାଗରେ ଭରଦ୍ୱାଜଙ୍କ ନିକଟକୁ ଯିବା ଓ ସେଠାରୁ ଚିତ୍ରକୂଟ ଯିବାର ସମ୍ୱାଦ ସେ ସଂଗ୍ରହ କରିଥିଲେ । ସେଠାରେ ରାମ, ସୀତା ଓ ଲକ୍ଷ୍ମଣଙ୍କ ସହ ଆନନ୍ଦରେ ଅଛନ୍ତି ଜାଣି ସେ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କଲେ ।

ଯେତେବେଳେ ତାଙ୍କର ରଥ ନିଃଶବ୍ଦ ନିରାନନ୍ଦ ଅଯୋଧ୍ୟା ନଗରୀରେ ପହଞ୍ଚିଲା, ଲୋକେ ଶତ ସହସ୍ର ସଂଖ୍ୟାରେ ରଥକୁ ବେଢ଼ିଗଲେ ଓ ରାମ କାହାନ୍ତି ବୋଲି ପଚାରିଲେ । ସୁମନ୍ତ୍ର ରାମଙ୍କୁ ଗଙ୍ଗାକୂଳରେ ବିଦାୟ ଦେଇ ଶୂନ୍ୟରଥ ଘେନି ଫେରି ଆସିଥିବା ଜାଣି ଲୋକେ ରାମଙ୍କୁ ସ୍ମରଣ କରି ବିଳାପ କରିବାକୁ ଲାଗିଲେ । ଗୃହର ବାତାୟନମାନଙ୍କରୁ ନାରୀମାନଙ୍କର କ୍ରନ୍ଦନଧ୍ୱନି ଶୁଣାଗଲା । ସୁମନ୍ତ୍ର ଲୁଗାରେ ମୁହଁ ଲୁଚାଇ କୌଣସିମତେ ରାଜପ୍ରାସାଦ ପାଖରେ ପହଞ୍ଚିଲେ । ସେଠାରେ ମଧ୍ୟ ବହୁଲୋକ ଜମା ହୋଇଥିଲେ । ପ୍ରାସାଦବାସିନୀ ମହିଳାମାନେ କହୁଥିଲେ, ସାରଥି ରାମଙ୍କ ସଙ୍ଗରେ ଯାଇଥିଲେ, ଏବେ ରାମଙ୍କ ବିନା ଫେରିଆସିଛନ୍ତି । ସେ ମାତା କୌଶଲ୍ୟାଙ୍କୁ କି ଉତ୍ତର ଦେବେ ? ପୁତ୍ରବତ୍ସଳା କୌଶଲ୍ୟା ଯେ ଜୀବନ ଧରି ରହିଛନ୍ତି, ସେଥିରୁ ଜଣାଯାଏ ସେ ଜୀବନ ରଖିବା ଯେପରି ସୁଖସାଧ୍ୟ ନୁହେଁ, ମୃତ୍ୟୁ ମଧ ସେହିପରି ସହଜଲଭ୍ୟ ନୁହେଁ ।

ସୁମନ୍ତ୍ର ଶୋକବିହ୍ୱଳା ନାରୀମାନଙ୍କର ହାହାକାର ଶୁଣି ଦଶରଥ ରହୁଥିବା ଅଷ୍ଟମ କକ୍ଷରେ ପ୍ରବେଶ କଲେ । ସେଠାରେ ଦେଖିଲେ, ରାଜା ଏକ ଅଳ୍ପ ଆଲୋକିତ ଗୃହରେ ଅତ୍ୟନ୍ତ ଦୀନ ଭାବରେ ବସିଛନ୍ତି । ସେ ରାଜାଙ୍କୁ ଅଭିବାଦନ କରି ରାମ ଯାହା ଯାହା କହିଥିଲେ ତାହା ତାଙ୍କୁ ନିବେଦନ କଲେ । ଦଶରଥ ଅତି ଦୁଃଖରେ ନୀରବରେ ତାହା ଶୁଣିଲେ, ମାତ୍ର ଶେଷକୁ ନିଜର ଶୋକ ସମ୍ଭାଳି ନ ପାରି ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ ।

କୌଶଲ୍ୟା ସୁମିତ୍ରାଙ୍କ ସାହାଯ୍ୟରେ ତାଙ୍କୁ ଉଠାଇ କହିଲେ, ଦୁଷ୍କର କାର୍ଯ୍ୟ କରିଥିବା ତୁମର ଦୂତ ଫେରିଆସିଛନ୍ତି । ତୁମର ଆଦେଶ ପାଳନ କରି ରାମଙ୍କୁ ସେ ନିର୍ଜନ ବନବାସରେ ଛାଡ଼ି ଦେଇ ଆସିଛନ୍ତି । ତାଙ୍କ ସହିତ କାହିଁକି କଥା ହେଉ ନାହଁ ? ଅନ୍ୟାୟ କାର୍ଯ୍ୟ କରି କ'ଣ ଲଜ୍ଜିତ ହେଉଛ ? ତୁମେ ଯାହା ଭୟରେ ରାମ ବିଷୟରେ ସାରଥିଙ୍କୁ ପଚାରୁ ନାହିଁ, ସେ କୈକେୟୀ ଏଠାରେ ନାହିଁ । ତେଣୁ ନିଃଶଙ୍କ ଭାବରେ ଏହାଙ୍କ ସହିତ କଥାବାର୍ତ୍ତା କର ।

ଦଶରଥ କାତରଭାବରେ ରାମଙ୍କ ବିଷୟରେ ନାନା ପ୍ରଶ୍ନ ପଚାରିଲେ । ସୁଖରେ ଅଭ୍ୟସ୍ତ ରାମ ଓ ଲକ୍ଷ୍ମଣ ବୃକ୍ଷମୂଳକୁ ଆଶ୍ରୟ କରି କିପରି ଚଳୁଛନ୍ତି, ସୁକୁମାରୀ ଜନକନନ୍ଦିନୀ କିପରି କଷ୍ଟ ସହି ରହୁଛନ୍ତି, ରାଜା ଜାଣିବାପାଇଁ ଯାହା ଯାହା ପଚାରିଲେ ସୁମନ୍ତ୍ର ବିସ୍ତାରିତ ଭାବରେ ତାର ଉତ୍ତର ଦେଲେ ଏବଂ ରାମଶୂନ୍ୟ ଅଯୋଧ୍ୟାର ଅବସ୍ଥା ତାଙ୍କୁ ବର୍ଣ୍ଣନା କଲେ ।

ଦଶରଥ ବାଷ୍ପରୁଦ୍ଧ କଣ୍ଠରେ କହିଲେ, ମୁଁ ପାପବୁଦ୍ଧି କୈକେୟୀର କଥାରେ ପଡ଼ି ମୋହଗ୍ରସ୍ତ ହୋଇଗଲି । ମନ୍ତ୍ରକୁଶଳ ବୃଦ୍ଧ ଅମାତ୍ୟ, ସୁହୃଦ୍ ବା ଅଯୋଧ୍ୟାର ନାଗରିକମାନଙ୍କ ସହିତ ପରାମର୍ଶ କଲି ନାହିଁ । ରାମ ବ୍ୟତୀତ ମୁଁ ମୁହୂର୍ତ୍ତେ ହେଲେ ଜୀବନ ଧାରଣ କରିପାରିବି ନାହିଁ ।

କୌଶଲ୍ୟା ଭୂତାବିଷ୍ଟା ପରି ହୋଇ ସାରଥିଙ୍କୁ କହିଲେ, ଯେଉଁଠାରେ ରାମ, ସୀତା ଓ ଲକ୍ଷ୍ମଣ ଅଛନ୍ତି, ସେହି ଦଣ୍ଡକାରଣ୍ୟକୁ ମୋତେ ଶୀଘ୍ର ନେଇ ଚାଲ । ସେମାନଙ୍କ ପାଖକୁ ନ ଗଲେ ମୋର ମରିବା ନିଶ୍ଚିତ ବୋଲି ଜାଣ ।

ସୁମନ୍ତ କୃତାଞ୍ଜଳି ହୋଇ କହିଲେ, ଦେବୀ, ତୁମେ ଶୋକ ତ୍ୟାଗ କର । ରାମ ବନରେ ବାସ କରି ଆଦୌ ସନ୍ତପ୍ତ ନୁହନ୍ତି । ଧର୍ମଜ୍ଞ ଲକ୍ଷ୍ମଣ ତାଙ୍କର ପରିଚର୍ଯ୍ୟା କରୁଛନ୍ତି । ରାମଙ୍କଠାରେ ନିଜର ହୃଦୟ ଅର୍ପଣ କରି ସୀତା ବିଜନ ବନରେ ରହି ମଧ୍ୟ ନିଜ ଘରେ ରହିବା ପରି ଅନୁଭବ କରୁଛନ୍ତି । ନଗର ଉପବନରେ ଯେପରି, ସେହିପରି ନିର୍ଜନ ବନରେ ଚନ୍ଦ୍ରାନନା ସୀତା ବାଳିକା ପରି ଆନନ୍ଦରେ ବିଚରଣ କରୁଛନ୍ତି । ରାମବିରହରେ ରାମତଦ୍‌ଗତପ୍ରାଣା ହୋଇ ବୈଦେହୀ ଅଯୋଧ୍ୟାରେ ରହିପାରି ନ ଥାନ୍ତେ । ଅଯୋଧ୍ୟା ତାଙ୍କପାଇଁ ବନଠାରୁ ଦୁଃଖଦାୟକ ହୋଇଥାନ୍ତା । ତେଣୁ ସେ ରାମଙ୍କ ସହିତ ଯାଇ ଭଲରେ ଅଛନ୍ତି । ବାଟରେ ଗଲାବେଳେ ସୀତା ବିଭିନ୍ନ ନଗର, ଗ୍ରାମ, ନଦୀ ଓ ବୃକ୍ଷମାନଙ୍କ ବିଷୟରେ ଜାଣିବାପାଇଁ କୁତୂହଳୀ ହୋଇ ରାମ ଓ ଲକ୍ଷ୍ମଣଙ୍କୁ ପଚାରୁଛନ୍ତି । ଅଯୋଧ୍ୟାଠାରୁ କୋଶେ ମାତ୍ର ଦୂରରେ ରହିବା ପରି ସେମାନେ ରହିଛନ୍ତି । ସୀତାଙ୍କର ମୁଖକାନ୍ତିର କୌଣସି ପରିବର୍ତ୍ତନ ଘଟି ନାହିଁ । ଅଳତା ନ ଲଗାଉଥିଲେ ମଧ୍ୟ ତାଙ୍କର ରକ୍ତିମ ପାଦଯୁଗଳ ସେହିପରି ରହିଛି ଏବଂ ବିନା ନୂପୁରରେ ମଧ୍ୟ ସେ ଖେଳିଲା ପରି ଯାଉଛନ୍ତି । ସୀତା ଓ ଲକ୍ଷ୍ମଣଙ୍କ ସାଙ୍ଗରେ ରାମ ଆନନ୍ଦରେ ବନରେ ରହି ପିତୃସତ୍ୟ ପାଳନ କରୁଛନ୍ତି । ତେଣୁ ସେମାନଙ୍କ ପାଇଁ ତୁମେ ଶୋକ କର ନାହିଁ ।

କିନ୍ତୁ କୌଶଲ୍ୟାଙ୍କର ଶୋକ ଦୂର ହେଲା ନାହିଁ । ସେ କ୍ରୁଦ୍ଧ ହୋଇ କହିଲେ – ରାଜା, ତୁମେ ଜଗତର ପ୍ରିୟବାଦୀ ଓ ବଦାନ୍ୟ ବୋଲାଉଥିବାବେଳେ କିପରି ନିଷ୍ଠୁର ଭାବରେ ତୁମର ପୁତ୍ର ଓ ପୁତ୍ରବଧୂକୁ ନିର୍ବାସିତ କଲ ? ସୁକୁମାରୀ ଅନିନ୍ଦିତା ସୀତା କିପରି ଅରଣ୍ୟରେ ଶୀତ ତାପ କଷ୍ଟ ସହି ବନ୍ୟଜାତ ନୀବାରଧାନ୍ୟର ଅନ୍ନ ଭୋଜନ କରି ରହିପାରିବ ? ମୁଁ ପଦ୍ମଲୋଚନ ରାମର ମୁଖ କ'ଣ ଆଉ ସତେ ଦେଖିପାରିବି ? ରାମ ଫେରିଆସିଲେ ମଧ୍ୟ ଭରତ କେବେହେଲେ ତାକୁ ଏ ରାଜ୍ୟସମ୍ପଦ ଛାଡ଼ିଦେବ ନାହିଁ । ରାମ ନିଜେ ମଧ୍ୟ ତାହା ଗ୍ରହଣ କରିବ ନାହିଁ । କାରଣ କନିଷ୍ଠଭ୍ରାତାର ଉପଭୁକ୍ତ ରାଜ୍ୟକୁ ଗ୍ରହଣ କରିବା ଉଚ୍ଛିଷ୍ଟ ଭୋଜନ ସଙ୍ଗେ ସମାନ । ବଳବାନ୍ ବ୍ୟାଘ୍ର ଯେମିତି ତାର ଲାଙ୍ଗୁଳ ମର୍ଦ୍ଦନକୁ ସହିପାରେ ନାହିଁ, ରାମ ସେହିପରି ଏହି ଅପମାନକୁ ସହିପାରିବ ନାହିଁ । ତାର ଶକ୍ତି ଅଛି, ଏକମାତ୍ର କାଞ୍ଚନମୟ ଶରରେ ସେ ସମୁଦ୍ରକୁ ଶୁଖାଇ ଦେଇପାରେ ଓ ସମସ୍ତ ସଂସାରକୁ ଦଗ୍ଧ କରିଦେଇପାରେ । ମାତ୍ର ସେହିପରି ବଳବାନ୍ ପୁତ୍ରର ଧାର୍ମିକତାର ସୁଯୋଗ ନେଇ ତୁମେ ତାକୁ ନଷ୍ଟ କରିଦେଲ । ମୋର ଅବସ୍ଥା ଦେଖ । ସ୍ତ୍ରୀଲୋକମାନଙ୍କର ପ୍ରଥମ ଗତି ସ୍ୱାମୀ, ଦ୍ୱିତୀୟ ପୁତ୍ର, ତୃତୀୟ ଜ୍ଞାତିବର୍ଗ । ତୁମେ ତ ମୋର ହେଲ ନାହିଁ । ପୁତ୍ର ରାମ ବନବାସ କଲା । ମୁଁ ତୁମକୁ ଛାଡ଼ି ମଧ୍ୟ ବନକୁ ଯାଇପାରୁ ନାହିଁ । କି ଦୁଃଖରେ ପଡ଼ି ମୁଁ ଜଳବଳ ନ ହେଉଛି । ହେ ରାଜା, ତୁମ ଯୋଗୁଁ ସମସ୍ତ ରାଜ୍ୟ ନଷ୍ଟ ହେଲା, ମନ୍ତ୍ରୀମାନଙ୍କ ସହିତ ତୁମର ନିଜର ବିନାଶ ହେଲା ଏବଂ ପୁତ୍ର ସହିତ ମୁଁ ମଧ୍ୟ ବିନଷ୍ଟ ହେଲି । କେବଳ ତୁମର ପୁଅ ଭରତ ଓ କୈକେୟୀ ସୁଖରେ ରହିଲେ ।

## ୩୦ ।। ମୁନିକୁମାର ବଧ ଉପାଖ୍ୟାନ

ଦଶରଥ କୌଶଲ୍ୟାଙ୍କଠାରୁ କେବେ ଏପରି କଠୋର ବାକ୍ୟ ଶୁଣି ନ ଥିଲେ । ସେ କିଛି ସମୟ ସ୍ତମ୍ଭିତ ହୋଇ ରହିଯାଇ ଅଧୋମୁଖ ହୋଇ ହାତଯୋଡ଼ି କହିଲେ – କୌଶଲ୍ୟେ, ମୁଁ କୃତାଞ୍ଜଳି ହୋଇ ପ୍ରାର୍ଥନା କରୁଛି, ତୁମେ ମୋତେ ଅଧିକ ଦୁଃଖ ଦିଅ ନାହିଁ । ତୁମେ ସତତ ଧର୍ମପରାୟଣା । ଧର୍ମ, ଅଧର୍ମ, ଭଲ, ମନ୍ଦ ତୁମେ ବିଚେଚନା କରିପାର । ଶତ୍ରୁ ପ୍ରତି ମଧ୍ୟ ତୁମେ ନିଷ୍ଠୁର ନୁହଁ । ମୁଁ ବର୍ତ୍ତମାନ ଶୋକାର୍ତ୍ତ । ଏପରି ଅପ୍ରିୟ କଥା ମୋତେ କହିବା ତୁମର ଉଚିତ ହେଉ ନାହିଁ ।

କୌଶଲ୍ୟା କ୍ରୋଧରେ ସିନା କହି ପକାଇଲେ, ସ୍ୱାମୀଙ୍କର ଦୁଃଖ ଓ ଅନୁନୟ ଶୁଣି ସେ ତାଙ୍କର ହାତ ଦୁଇଟିକୁ ଆଣି ନିଜ ମୁଣ୍ଡ ଉପରେ ରଖି କହିଲେ, ମୁଁ ପୁତ୍ରଶୋକାତୁରା; ବହୁ ଅନୁଚିତ କଥା କହିଗଲି, ତୁମେ ତାହା ମନରେ ଧର ନାହିଁ । କାରଣ ଶୋକ ମନୁଷ୍ୟର ବୁଦ୍ଧିକୁ ନଷ୍ଟ କରିଦିଏ । ରାମ ଯିବାର ପାଞ୍ଚ ଦିନ ହେଲେ ମଧ୍ୟ ମୋତେ ପାଞ୍ଚ ବର୍ଷ ପରି ଲାଗୁଛି । ଶତ୍ରୁର ପ୍ରହାର ସହିହେବ, କିନ୍ତୁ ସାମାନ୍ୟ ମାତ୍ର ଶୋକ ସହିବା କଷ୍ଟକର ।

ଶୋକାକୁଳ ଦଶରଥ କୌଶଲ୍ୟାଙ୍କୁ କହିଲେ – କଲ୍ୟାଣୀ, ମନୁଷ୍ୟ ଶୁଭ ବା ଅଶୁଭ ଯେଉଁ କାର୍ଯ୍ୟ କରେ, ତଦନୁଯାୟୀ ଶୁଭ ବା ଅଶୁଭ ଫଳ ଭୋଗ କରେ । ମୁଁ କୁମାର ଅବସ୍ଥାରେ ଶବ୍ଦ ଶୁଣି ଲକ୍ଷ୍ୟ ଭେଦ କରି ପାରୁଥିଲି । ତେଣୁ ମୋତେ ଶବ୍ଦଭେଦୀ ବୋଲି ଲୋକେ କହୁଥିଲେ । ସେହି ସମୟରେ ମୁଁ ଏକ ପାପକର୍ମ କରିଥିଲି, ଯାହାର ଫଳ ଏବେ ମୋତେ ଭୋଗ କରିବାକୁ ହେଉଛି । ସେତେବେଳେ ମୁଁ ଯୁବରାଜ ଥିଲି । ଆମର ବିବାହ ହୋଇ ନ ଥିଲା । ଏକ ବର୍ଷାମୁଖର ରାତ୍ରିରେ ମୁଁ ସରଯୂ ନଦୀ କୂଳକୁ ମୃଗୟା କରିବାକୁ ଯାଇଥିଲି । ରାତିରେ ନଦୀ ନିକଟ ଜଳାଶୟରେ କୌଣସି ଶ୍ୱାପଦ, ବନ୍ୟଜନ୍ତୁ ପାଣି ପିଇବାକୁ ଆସିଲେ ମୁଁ ତାକୁ ବଧ କରିବି ବୋଲି ସ୍ଥିର କରି ଅପେକ୍ଷା କରିଥିଲି । ରାତିର ଅନ୍ଧକାର ମଧ୍ୟରେ କିଛି ଦେଖାଯାଉ ନ ଥିଲା । ମାଠିଆରେ ପାଣି ଭର୍ତ୍ତିକଲେ ଯେପରି ଶବ୍ଦ ହୁଏ ସେହିପରି ଶବ୍ଦ ମୋତେ ଶୁଣାଗଲା ଏବଂ ମୋର ମନେହେଲା, ହାତୀ ବା ଅନ୍ୟ କେହି ବନ୍ୟଜନ୍ତୁ ସେଠାରେ ପାଣି ପିଉଛି । ଶବ୍ଦ ଯେଉଁଆଡୁ ଆସୁଥିଲା ମୁଁ ସଙ୍ଗେ ସଙ୍ଗେ ଏକ ତୀକ୍ଷ୍ଣ ନାରାଚ ସେଇ ଆଡ଼କୁ ଲକ୍ଷ୍ୟ କରି ନିକ୍ଷେପ କଲି । ତତ୍‌କ୍ଷଣାତ୍ ଶରାହତ ଏକ ମନୁଷ୍ୟ କଣ୍ଠରୁ ନିର୍ଗତ ହା ହା ଆର୍ତ୍ତଧ୍ୱନି ଶୁଣାଗଲା । ଶରାହତ ବ୍ୟକ୍ତିଟି କହୁଥିଲା, ମୁଁ ତପସ୍ୱୀ । ରାତ୍ରିରେ ଜଳ ନେବାପାଇଁ ଏହି ନିର୍ଜନ ନଦୀକୁ ଆସିଥିଲି । ମୁଁ ତ କାହାରି କିଛି ଅପକାର କରି ନାହିଁ । ଜଟା ବଲ୍କଳ ଓ ମୃଗଚର୍ମ ପରିଧାନ କରି ବନ୍ୟ ଫଳ ମୂଳ ଭକ୍ଷଣ କରି ମୁଁ ଏକ ହିଂସାଶୂନ୍ୟ ମୁନି ଜୀବନଯାପନ କରେ । ମୋତେ ମାରି କାହାର କି ଲାଭ ହୋଇପାରେ ? ମୋର ମୃତ୍ୟୁ ପାଇଁ ଶୋଚନା ନାହିଁ, କିନ୍ତୁ ମୋର ଅନ୍ଧ ପିତା ମାତା ମୋ ଉପରେ ସଂପୂର୍ଣ୍ଣ ନିର୍ଭର କରି ଚଳନ୍ତି । ତେଣୁ ମୁଁ ମରିଗଲେ ସେମାନେ ମଧ୍ୟ ବଞ୍ଚିପାରିବେ ନାହିଁ । ଆହା, ବାଳକ ବୁଦ୍ଧିରେ କେଉଁ ଅସଂଯତ ବ୍ୟକ୍ତି ଆମର ମୃତ୍ୟୁର କାରଣ ହେଲା ।

ଦଶରଥ କହିଲେ, ସେହି କରୁଣ ବିଳାପ ଶୁଣି ମୁଁ ଚମକିପଡ଼ିଲି । ମୁଁ ସେଠାକୁ ଯାଇ ଦେଖିଲି, ଧୂଳି ଓ ରକ୍ତରେ ଆଚ୍ଛନ୍ନ ଜଣେ ଶରାହତ ତପସ୍ୱୀ ଭୂଇଁରେ ପଡ଼ି ରହିଛନ୍ତି ।

ତାଙ୍କର ଜଟାଜୁଟ ଖୋଲିଯାଇଛି । କଳସ ପଡ଼ିଯାଇ ପାଣି ଢାଳିଯାଇଛି । ସେ ମୋ ଆଡ଼କୁ ଚାହିଁ ତାଙ୍କର ତେଜରେ ମୋତେ ଦଗ୍ଧ କଲାଭଳି କହିଲେ – ରାଜା, ମୁଁ ବନବାସୀ । ମୁଁ ଗୁରୁଜନଙ୍କ ପାଇଁ ଜଳ ଆହରଣ କରିବା ପାଇଁ ଆସିଥିଲି । ମୁଁ ତୁମର କି ଅପକାର କରିଥିଲି, ତୀକ୍ଷଣ ଶରରେ ମୋତେ ଓ ମୋର ବୃଦ୍ଧ ପିତାମାତାଙ୍କୁ ହତ୍ୟା କଲ । ଦୁର୍ବଳ ଏବଂ ଅନ୍ଧ ମୋର ପିତାମତା ତୃଷାର୍ତ୍ତ ହୋଇ ଆକୁଳ ନୟନରେ ମୋତେ ଅପେକ୍ଷା କରିଥିବେ । ତୁମେ ଶୀଘ୍ର ଯାଇ ମୋର ଅସମର୍ଥ ପିତାମାତାଙ୍କୁ ଏହି ସମ୍ବାଦ ଦିଅ ଏବଂ ସେମାନଙ୍କୁ ପ୍ରସନ୍ନ କରାଇବାକୁ ଚେଷ୍ଟା କର । ମୋର ମର୍ମସ୍ଥଳରୁ ଏହି ତୀକ୍ଷ୍ଣ ଶରକୁ ଶୀଘ୍ର ଉଦ୍ଧାର କର ।

ରାଜା କହି ଚାଲିଲେ, ଶରବିଦ୍ଧ ହେଲେ ଘୋର ଯନ୍ତ୍ରଣା ଭୋଗ କରିବେ ଏବଂ ଶରକୁ ବାହାର କରି ଆଣିଲେ ତାଙ୍କର ମୃତ୍ୟୁ ହେବ ଏହି ସଂଶୟ ମଧ୍ୟରେ ରହି ମୁଁ ଶୋକାକୁଳ ଚିତ୍ତରେ କ'ଣ କରିବି ଠିକ୍ କରିପାରିଲି ନାହିଁ । ମୋର ଏହି କାତର ଅବସ୍ଥା ଦେଖି ଘୋର ଯନ୍ତ୍ରଣା ଭୋଗ କରୁଥିବା ମୁନିପୁତ୍ର କହିଲେ, ରାଜା, ତୁମେ ବ୍ରହ୍ମହତ୍ୟା କରିଛ ବୋଲି ଭୟ କର ନାହିଁ । ମୁଁ ଦ୍ୱିଜ ନୁହେଁ । ବୈଶ୍ୟର ଔରସରେ ଶୂଦ୍ରା ଗର୍ଭରୁ ଜନ୍ମ ହୋଇଛି । ଦଶରଥ କହିଲେ, ସଙ୍ଗେ ସଙ୍ଗେ ମୁଁ ଶରକୁ ମୁନିକୁମାରଙ୍କ ବକ୍ଷରୁ ଉଦ୍ଧାର କରିନେଲି । ତପସ୍ୱୀ ଭୂଇଁରେ ଲୋଟିଯାଇ ମୋ ଆଡ଼କୁ ଚାହିଁ ପ୍ରାଣତ୍ୟାଗ କଲେ । ମୁଁ ଘଟରେ ଜଳ ପୂର୍ଣ୍ଣ କରି ଆଶ୍ରମରେ ଯାଇ ଦେଖେ ତ ତାଙ୍କର ବୃଦ୍ଧ ଅନ୍ଧ ପିତାମାତା ଛିନ୍ନପକ୍ଷ ବିହଙ୍ଗମ ପରି ବସିରହିଛନ୍ତି । ମୋର ପାଦ ଶବ୍ଦ ଶୁଣି ମୁନି କହିଲେ – ପୁତ୍ର, କାହିଁକି ବିଳମ୍ବ କରୁଛୁ, ଶୀଘ୍ର ପାଣି ଆଣିଦେ । ତୋର ବିଳମ୍ବ ହେବାର ଦେଖି ତୋ ମା' ବଡ଼ ବ୍ୟସ୍ତ ହୋଇ ପଡ଼ିଛନ୍ତି । ବତ୍ସ, ତୁ ଅଗତିର ଗତି ଏବଂ ଚକ୍ଷୁହୀନଙ୍କର ଚକ୍ଷୁ । ତୁ କାହିଁକି କଥା କହୁ ନାହୁଁ ? ମୁଁ ଅତିଶୟ ଭୟଭୀତ ହୋଇ ଉତ୍ତର ଦେଲି – ମହାତ୍ମା, ମୁଁ ତୁମର ପୁତ୍ର ନୁହେଁ । ମୁଁ କ୍ଷତ୍ରିୟ ଦଶରଥ । ଜଳାଶୟରେ ଜଳପାନ ପାଇଁ ଆସିଥିବା କୌଣସି ହସ୍ତୀ ବା ଶ୍ୱାପଦ ପ୍ରାଣୀଙ୍କୁ ମାରିବା ପାଇଁ ମୁଁ ସରଯୂ କୂଳକୁ ଆସିଥିଲି । ଅନ୍ଧକାରରେ କିଛି ଦେଖା ଯାଉ ନ ଥିଲା ଏବଂ ଘଟରେ ଜଳପୂର୍ଣ୍ଣ ହେଉଥିବା ଶବ୍ଦ ଶୁଣି ଏକ ହାତୀ ପାଣି ପିଉଚି ବୋଲି ବିଚାର କରି ଶରାଘାତ କରିଛି । ଏପରି ଗର୍ହିତ କାର୍ଯ୍ୟ କରି ମୁଁ ଅତ୍ୟନ୍ତ ତ୍ରସ୍ତ ଓ ଅନୁତପ୍ତ ।

ମୋ ମୁହଁରୁ ପୁତ୍ରର ମୃତ୍ୟୁ ସମ୍ବାଦ ଶୁଣି ମୁନି ଶୋକରେ ମୂର୍ଚ୍ଛିତ ହୋଇ ପଡ଼ିଲେ । ସେ ବିଳାପ କରି କହିଲେ, ତୁମେ ଯେଉଁ ଦୁଷ୍କର୍ମ କରିଛ, ତାହା ତୁମେ ନିଜେ ମୋତେ ଆସି କହି ନ ଥିଲେ ତୁମର ମସ୍ତକ ଶତଧା ବିଭକ୍ତ ହୋଇଯାଇଥାନ୍ତା । ତୁମେ ଅଜ୍ଞାନତାବଶତଃ ଏହି ଅପକାର୍ଯ୍ୟ କରିଚ ବୋଲି ଏପର୍ଯ୍ୟନ୍ତ ବଞ୍ଚିରହିଛ । ତୁମେ ଶୀଘ୍ର ଆମକୁ ସେ ସ୍ଥାନକୁ ନେଇ ଚାଲ । ମୁଁ ସେମାନଙ୍କୁ ଧରି ତାଙ୍କର ପୁତ୍ରର ମୃତଦେହ ପାଖକୁ ନେଇଗଲି । ପୁତ୍ରର ମୃତଦେହ ଉପରେ ପଡ଼ିଯାଇ ଅନ୍ଧମୁନି ବିଳାପ କରିବାକୁ ଲାଗିଲେ । ସେ କହିଲେ – ବତ୍ସ, ଆଜି ତୁ ଆମକୁ ଅଭିବାଦନ କରୁ ନାହୁଁ କି କଥା କହୁ ନାହୁଁ । କାହିଁକି ଏପରି ଭୂଇଁରେ ଶୋଇ ରହିଚୁ ? ହେ ଧାର୍ମିକ ପୁତ୍ର, ମୁଁ ତୋର ଅପ୍ରିୟ ହୋଇପାରେ, ମାତ୍ର ତୋର ମା'କୁ ଚାହିଁ ତୁ ପଦେ ସୁକୁମାର କଥା ଆମକୁ କହ । କିଏ ଆଉ ଆମକୁ ଶାସ୍ତ୍ର ପଢ଼ି ଶୁଣାଇବ ? କାହା ମୁହଁରୁ ଆମେ ପଦେ ସୁକୁମାର ଓ କୋମଳ ବଚନ ଶୁଣିବାକୁ ପାଇବୁ ? ହେ ନିଷ୍ପାପ

ପୁତ୍ର, ଏକ ପାପାଚାରୀର ଶସ୍ତ୍ରରେ ତୋର ମୃତ୍ୟୁ ହୋଇଥିବା ଯୋଗୁଁ ଶସ୍ତ୍ରଯୋଦ୍ଧା ବୀରମାନେ ଯେଉଁ ଗତି ଲାଭ କରନ୍ତି, ତୁ ସେହି ବୀରଗତି ଲାଭ କର । ସବୁ ସଜ୍ଜନଙ୍କର ଯେଉଁ ଗତି ହୁଏ, ବେଦାଧ୍ୟାୟୀ, ତପସ୍ୱୀ, ଅଗ୍ନିହୋତ୍ରୀ, ଏକପତ୍ନୀବ୍ରତ, ସହସ୍ର ଗୋଦାନକାରୀ, ଗୁରୁସେବକ ବା ସତ୍‌ଉଦ୍ଦେଶ୍ୟରେ ଦେହତ୍ୟାଗୀମାନଙ୍କର ଯେଉଁ ଗତି ହୁଏ, ତୁ ସେଇ ଗତି ଲାଭ କର ।

ରାଜା କହିଲେ – ନିଜ ପତ୍ନୀଙ୍କ ସହିତ ଅନ୍ଧମୁନି ପୁତ୍ର ଉଦ୍ଦେଶ୍ୟରେ ଜଳ ତର୍ପଣ କଲେ । ସଙ୍ଗେ ସଙ୍ଗେ ମୁନିପୁତ୍ର ଦିବ୍ୟ ରୂପ ଧାରଣ କରି ସ୍ୱର୍ଗରେ ଇନ୍ଦ୍ରଙ୍କ ସହିତ ମିଳିତ ହେଲେ । ମୋ ଆଡ଼କୁ ଚାହିଁ ମୁନି ଅଭିଶାପ ଦେଲେ, ତୁମେ ଅକାରଣରେ ମୋ ପୁତ୍ରକୁ ନିହତ କଲ । ମୋ ପରି ଦିନେ ଘୋର ପୁତ୍ରଶୋକ ଭୋଗ କରି ତୁମେ ପ୍ରାଣତ୍ୟାଗ କରିବ ।

ଦଶରଥ କହିଲେ – କୌଶଲ୍ୟା, ମୋ ପ୍ରତି ମୁନିଙ୍କର ସେହି ଅଭିଶାପ ବର୍ତ୍ତମାନ ଫଳୁଛି । ତେଣୁ ପୁତ୍ରଶୋକରେ ମୁଁ ପ୍ରାଣତ୍ୟାଗ କରିବି । ରାଜା ପୁଣି ବିଳାପ କରି କହିଲେ – କୌଶଲ୍ୟା, ମୁଁ ତୁମକୁ ଦେଖିପାରୁ ନାହିଁ । ମୋର ମୃତ୍ୟୁ ନିକଟ ହୋଇ ଆସିଲାଣି । ତୁମେ ମୋତେ ସ୍ପର୍ଶ କର । ମୁଁ ଆଉ ମୋର ପୁତ୍ରର ସେଇ ଲୋକଦୁର୍ଲ୍ଲଭ ମୁଖମଣ୍ଡଳ ଦେଖିପାରିବି ନାହିଁ । ହା ମହାବାହୁ ରାଘବ, ମୋର ଦୁଃଖନାଶନ, ପିତୃବତ୍ସଳ, ଅନାଥର ନାଥ, ପୁତ୍ର, ତୁ କୁଆଡ଼େ ଗଲୁ ? ହା କୌଶଲ୍ୟା, ଦୁଃଖିନୀ ସୁମିତ୍ରା, ମୁଁ ବର୍ତ୍ତମାନ ବିଦାୟ ନେଉଛି । ହା ନୃଶଂସ କୁଳକଳଙ୍କିନୀ କୈକେୟୀ, ଏହିପରି କହି କହି ରାଜା ଦଶରଥ ନିଶାର୍ଦ୍ଧରେ ପ୍ରାଣତ୍ୟାଗ କଲେ ।

## ୩୧ ॥ ଦଶରଥଙ୍କ ପରଲୋକ : ଭରତଙ୍କ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ

ପ୍ରଭାତ ହେବାରୁ ବନ୍ଦୀ ମାଗଧ ଓ ଗାୟକମାନେ ରାଜାଙ୍କୁ ନିଦରୁ ଉଠାଇବା ପାଇଁ ପ୍ରତ୍ୟହ ଯେପରି ସ୍ତୁତି ପାଠ କରନ୍ତି, ସେହିପରି ଉଚ୍ଚସ୍ୱରରେ ବନ୍ଦନା କରିବାକୁ ଲାଗିଲେ । ବୃକ୍ଷଶାଖାରେ ପକ୍ଷୀମାନଙ୍କର କଳରବ ଶୁଣାଗଲା । ପରିଚାରକମାନେ ରାଜାଙ୍କର ସ୍ନାନ ପାଇଁ ଚନ୍ଦନମିଶ୍ରିତ ଜଳପୂର୍ଣ୍ଣ କଳସମାନ ଆଣି ରଖିଦେଲେ । କୁମାରୀମାନେ ପ୍ରସାଧନ ଓ ପ୍ରାତଃଭୋଜନ ପାଇଁ ବିଭିନ୍ନ ଦ୍ରବ୍ୟ ଆଣି ପହଞ୍ଚାଇଲେ । ସୂର୍ଯ୍ୟୋଦୟ ହେଲା । ତଥାପି ରାଜା ଉଠିଲେ ନାହିଁ ଦେଖି କ'ଣ ହେଲା, କ'ଣ ହେଲା ବୋଲି ସମସ୍ତେ ଶଙ୍କାକୁଳ ହୋଇଉଠିଲେ ।

ଦଶରଥଙ୍କର ସେବାକାରିଣୀ ଦାସୀମାନେ ଶୟନକକ୍ଷକୁ ରାଜାଙ୍କୁ ଉଠାଇବାକୁ ଯାଇ ଦେଖିଲେ, ତାଙ୍କ ଦେହରେ କୌଣସି ସ୍ପନ୍ଦନ ଲକ୍ଷିତ ହେଉ ନାହିଁ । ସ୍ରୋତର ବିପରୀତ ମୁଖରେ ଲାଖି ରହିଥିବା ତୃଣର ଅଗ୍ରଭାଗ ପରି ସେମାନେ କମ୍ପିବାକୁ ଲାଗିଲେ । ରାଜା ଆଉ ଜୀବିତ ନାହାନ୍ତି ବୋଲି ସେମାନଙ୍କର ଆଶଙ୍କା ବିଶ୍ୱାସରେ ପରିଣତ ହେଲା । ପୂର୍ବରାତ୍ରିରେ ଶୋକରେ ବିବଶ ହୋଇ କୌଶଲ୍ୟା ଓ ସୁମିତ୍ରା ରାଜାଙ୍କ ପାଖରେ

ଶୋଇପଡ଼ିଥିଲେ । ଦାସୀମାନଙ୍କର କ୍ରନ୍ଦନ ରୋଳ ଶୁଣାଯିବାରୁ ସେମାନଙ୍କର ନିଦ୍ଦ ଭାଙ୍ଗିଗଲା ଏବଂ ସେମାନେ ଉଚ୍ଚସ୍ୱରରେ ରୋଦନ କରି ମୂର୍ଚ୍ଛିତ ହୋଇ ଭୂମିରେ ପଡ଼ିଗଲେ । କୈକେୟୀ ପ୍ରଭୃତି ଅନ୍ୟ ମହିଷୀମାନେ ମଧ ବିଳାପ କରିବାକୁ ଲାଗିଲେ ।

କୌଶଲ୍ୟା ଚେତନା ଲାଭ କରି ରାଜାଙ୍କର ମସ୍ତକକୁ ନିଜର କ୍ରୋଡ଼ରେ ରଖି କୈକେୟୀଙ୍କ ଆଡ଼କୁ ଚାହିଁ କହିଲେ – ନୃଶଂସ କୈକେୟୀ, ତୋର ମନସ୍କାମନା ପୂର୍ଣ୍ଣ ହେଲା । ରାଜାଙ୍କୁ ତ୍ୟାଗ କରି ଏବେ ନିଷ୍କଣ୍ଟକ ରାଜ୍ୟ ଭୋଗ କର । ମୁଁ ବର୍ତ୍ତମାନ ପତିହୀନା ଓ ପୁତ୍ରଦ୍ୱାରା ତ୍ୟକ୍ତା ହୋଇ ଅସହାୟା ହୋଇଗଲି । ଦେବତାସ୍ୱରୂପ ସ୍ୱାମୀର ମୃତ୍ୟୁପରେ କୈକେୟୀ ଛଡ଼ା ଅନ୍ୟ କେଉଁ ନାରୀ ଜୀବନ ଧରି ରହିପାରିବ ? ମୁଁ ପତିବ୍ରତା । ଆଜି ସ୍ୱାମୀଙ୍କର ଶରୀରକୁ ଆଲିଙ୍ଗନ କରି ଅଗ୍ନିରେ ପ୍ରବେଶ କରିବି । କୌଶଲ୍ୟା ଏହିପରି ଶୋକ କରିବାକୁ ଲାଗିଲେ । ଶୋକବିହ୍ୱଳା କୌଶଲ୍ୟାଙ୍କୁ ସ୍ୱାମୀଙ୍କର ମୃତଦେହରୁ ଅଲଗା କରି ମନ୍ତ୍ରୀମାନେ ଅନ୍ୟତ୍ର ନେଇଗଲେ ।

ଯେତେବେଳେ ରାଜାଙ୍କର ଦାହକ୍ରିୟାର ପ୍ରଶ୍ନ ଉଠିଲା, ମନ୍ତ୍ରୀମାନେ ପୁତ୍ରମାନଙ୍କର ଅନୁପସ୍ଥିତିରେ ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା କରିବା ପାଇଁ ମତ ଦେଲେ ନାହିଁ । ତୈଳପୂର୍ଣ୍ଣ ଆଧାରରେ ରାଜାଙ୍କର ମୃତଦେହ ରକ୍ଷିତ ହେଲା । ମାର୍କଣ୍ଡେୟ, ମୌଦ୍‌ଗଲ୍ୟ, ବାମଦେବ, କାଶ୍ୟପ, ଗୌତମ ଓ ଜାବାଳି ଏବଂ ଅନ୍ୟାନ୍ୟ ଋଷି ଓ ବ୍ରାହ୍ମଣମାନେ ରାଜପୁରୋହିତ ବଶିଷ୍ଠଙ୍କୁ କହିଲେ, ରାଜା ପୁତ୍ରଶୋକରେ ଦେହତ୍ୟାଗ କଲେ । ରାମ ଓ ଲକ୍ଷ୍ମଣ ବନଗମନ କରିଛନ୍ତି । ଭରତ ଓ ଶତ୍ରୁଘ୍ନ ମାତୁଳାଳୟରେ ଅଛନ୍ତି । ରାଜା ବିହୁନରେ ରାଜ୍ୟ ଅରାଜକ ହୋଇ ନଷ୍ଟ ହୋଇଯାଏ । ମତ୍ସ୍ୟନ୍ୟାୟ ପରି ପ୍ରବଳ ଦୁର୍ବଳକୁ ଗ୍ରାସ କରେ । ଦଣ୍ଡ ଭୟ ନ ଥିବାରୁ ପରିବାର ଓ ସମାଜରେ କୌଣସି ନୀତିନିୟମ କେହି ମାନନ୍ତି ନାହିଁ । ଗୋପାଳହୀନ ଗୋରୁଗୋଠ, ତୃଣହୀନ ବନ, ଜଳହୀନ ନଦୀପରି ବର୍ତ୍ତମାନ ଅଯୋଧ୍ୟାର ଅବସ୍ଥା । ଦ୍ୱିଜଶ୍ରେଷ୍ଠ, ଭରତ ବା ଇକ୍ଷ୍ୱାକୁ ବଂଶର କାହାରିକୁ ରାଜପଦରେ ଅଭିଷିକ୍ତ କରିବାର ବ୍ୟବସ୍ଥା କରନ୍ତୁ ।

ବଶିଷ୍ଠ କହିଲେ, ରାଜା ଯାହାକୁ ରାଜ୍ୟ ଦେଇ ଯାଇଛନ୍ତି, ସେଇ ଭରତ ହିଁ ବର୍ତ୍ତମାନ ରାଜପଦରେ ଅଭିଷିକ୍ତ ହେବେ । ତେଣୁ ଦ୍ରୁତଗାମୀ ଅଶ୍ୱାରୋହୀ ଦୂତମାନଙ୍କୁ ପଠାଇ ଭରତଙ୍କୁ ମାତୁଳାଳୟରୁ ଶୀଘ୍ର ଏଠାକୁ ଆଣିବାକୁ ହେବ । ସମସ୍ତେ ସମ୍ମତ ହେବାରୁ ବଶିଷ୍ଠ ବିଜୟ, ଜୟନ୍ତ, ଅଶୋକ ଓ ନନ୍ଦନ ନାମକ ଚାରିଜଣ ବିଶ୍ୱସ୍ତ ରାଜକର୍ମଚାରୀଙ୍କୁ ଡକାଇ କହିଲେ – ତୁମେମାନେ ଦ୍ରୁତଗାମୀ ଅଶ୍ୱମାନଙ୍କରେ ଶୀଘ୍ର କେକୟରାଜ୍ୟର ରାଜଧାନୀ ରାଜଗୃହକୁ ଯାତ୍ରା କର । ତୁମର ଆଚରଣରେ ଶୋକର କୌଣସି ଲକ୍ଷଣ ପ୍ରକାଶ ପାଇବ ନାହିଁ । ରାମ ବନକୁ ଯାଇଛନ୍ତି, ଦଶରଥଙ୍କର ମୃତ୍ୟୁ ଘଟିଛି କିମ୍ବା ରଘୁକୁଳକୁ ବିପଦ ପଡ଼ିଛି, ଏ ସବୁ କୌଣସି କଥା ତୁମେ କହିବ ନାହିଁ । ତୁମେ କେକୟରାଜଙ୍କୁ ଉତ୍‌କୃଷ୍ଟ ବସ୍ତ୍ର ଏବଂ ଅଳଙ୍କାର ଉପହାର ଦେବ ଏବଂ ଭରତଙ୍କୁ କହିବ, ତୁମର କୁଳପୁରୋହିତ ବଶିଷ୍ଠ ଓ ମନ୍ତ୍ରୀମାନେ ଜରୁରୀ ଖବର ଦେଇ ଆମକୁ ପଠାଇଛନ୍ତି, ତୁମକୁ ଶୀଘ୍ର ଅଯୋଧ୍ୟା ଫେରିଯିବାକୁ ହେବ ।

ଦୂତମାନେ ଉତ୍କୃଷ୍ଟ ଦ୍ରୁତଗାମୀ ଅଶ୍ୱ ଆରୋହଣ କରି କେକୟ ଅଭିମୁଖରେ ଯାତ୍ରା କଲେ । ସେମାନେ ହସ୍ତିନାପୁରରେ ପହଞ୍ଚି ଗଙ୍ଗା ପାର ହେଲେ ଏବଂ ପାଞ୍ଚାଳ ରାଜ୍ୟରେ ପଦାର୍ପଣପୂର୍ବକ କୁରୁଜାଙ୍ଗଳ ପ୍ରଦେଶ ଦେଇ ପଶ୍ଚିମ ଅଭିମୁଖେ ଯାତ୍ରା କଲେ । ବହୁ ଜଳପୂର୍ଣ୍ଣ ପୁଷ୍କରିଣୀ, ସ୍ୱଚ୍ଛତୋୟା ନଦୀ, ନଗର ଓ ଜନପଦ ଅତିକ୍ରମ କରି ବାହ୍ଲୀକ ଦେଶରେ ସେମାନେ ପ୍ରବେଶ କଲେ ଏବଂ ସେଠାରୁ ଯାଇ ଚିରସ୍ରୋତା ବିପାଶାନଦୀ ପାର ହୋଇ ଗିରିବ୍ରଜରେ ପହଞ୍ଚିଲେ । ସେମାନେ ଅଯୋଧ୍ୟାରୁ ଉପହାରସ୍ୱରୂପ ଆଣିଥିବା ବହୁମୂଲ୍ୟ ବସ୍ତ୍ର ଓ ଅଳଙ୍କାର ରାଜା ଓ ରାଜପୁତ୍ରଙ୍କୁ ଭେଟି ଦେଲେ ଏବଂ ଭରତଙ୍କୁ ବଶିଷ୍ଠଙ୍କର ବାର୍ତ୍ତା ଦେଇ ଅଯୋଧ୍ୟା ଫେରିଯିବା ପାଇଁ ଅନୁରୋଧ କଲେ ।

ପୂର୍ବରାତ୍ରିରେ ଭରତ ଏକ ଦୁଃସ୍ୱପ୍ନ ଦେଖି ଅତିଶୟ ବିବ୍ରତ ଓ ଚିନ୍ତିତ ଅବସ୍ଥାରେ ରହିଥିଲେ । ଏହି ଦୁଃସ୍ୱପ୍ନ ହେଉଛି, ରାଜା ଦଶରଥ ଆଲୁଳାୟିତକେଶ ହୋଇ ଓ ମଳିନ ବସ୍ତ୍ର ପରିଧାନ କରି ପର୍ବତଶିଖରରୁ ଗୋମୟ ହ୍ରଦରେ ପଡ଼ିଯାଇଛନ୍ତି । ସେଠାରେ ଭାସି ଭାସି ଆଞ୍ଜୁଳିରେ ତୈଳପାନ କରୁଛନ୍ତି ଏବଂ ତୈଳମିଶ୍ରିତ ଅନ୍ନ ଭୋଜନ କରି ବାରମ୍ବାର ହସୁଛନ୍ତି । ସାଗର ଶୁଷ୍କ, ଚନ୍ଦ୍ର ଭୂପତିତ ଓ ଜଗତ ଅନ୍ଧକାରାଚ୍ଛନ୍ନ ହୋଇଛି । ରାଜହସ୍ତୀ ଭଗ୍ନଦନ୍ତ, ଅଗ୍ନି ନିର୍ବାପିତ, ବୃକ୍ଷ ପତ୍ରହୀନ ଓ ପର୍ବତ ବିଧ୍ୱସ୍ତ ହୋଇଛି । ରାଜା ଟରଟର ହୋଇ ରକ୍ତମାଲ୍ୟ ଧାରଣ କରି ଗର୍ଦ୍ଦଭଯୁକ୍ତ ରଥ ଉପରେ ବସି ଦକ୍ଷିଣ ଅଭିମୁଖରେ ଯାତ୍ରା କରୁଛନ୍ତି ଏବଂ ଏକ ଭୟଙ୍କର ରାକ୍ଷସୀ ରକ୍ତବସ୍ତ୍ର ପରିଧାନ କରି ତାଙ୍କୁ ଟାଣିଆଣୁଛି । ଏହି ସ୍ୱପ୍ନ ଦେଖି ଭରତ ମନେକଲେ ଯେ ରଘୁକୁଳକୁ ଘୋର ବିପଦ ପଡ଼ିଛି । ସେ କିମ୍ବା ରାଜା ଦଶରଥ କିମ୍ବା ରାମ ଓ ଲକ୍ଷ୍ମଣ କାହାର ହେଲେ ମୃତ୍ୟୁ ଆସନ୍ନ । ତେଣୁ ଦୂତମାନଙ୍କୁ ଦେଖି ସେ ରାଜା ଓ ରାମଚନ୍ଦ୍ରଙ୍କର କୁଶଳ ଜିଜ୍ଞାସା କଲେ । କୌଶଲ୍ୟା, ସୁମିତ୍ରା, ସୀତା ଓ ଲକ୍ଷ୍ମଣ କିପରି ଅଛନ୍ତି ବୋଲି ପଚାରିଲେ । କୋପନସ୍ୱଭାବା ତାଙ୍କର ମାତା କୈକେୟୀଙ୍କ ବିଷୟରେ ମଧ ଜାଣିବା ପାଇଁ ଇଚ୍ଛା କଲେ । ଦୂତମାନେ କହିଲେ— ରାଜକୁମାର, ଆପଣ ଯେଉଁମାନଙ୍କର କୁଶଳ ଜିଜ୍ଞାସା କରୁଛନ୍ତି, ସେମାନେ ସମସ୍ତେ ଭଲରେ ଅଛନ୍ତି । ତାପରେ ସେମାନେ ଦୁଇଟି ଅର୍ଥ ବୁଝାଉଥିବା ବାକ୍ୟରେ କହିଲେ, ପଦ୍ମାଳୟା ଲକ୍ଷ୍ମୀ ଆପଣଙ୍କୁ ବରଣ କରିଛନ୍ତି । ଆପଣ ଶୀଘ୍ର ଦ୍ରୁତଗାମୀ ରଥରେ ଯାତ୍ରା କରନ୍ତୁ ।

ଭରତ ମାତାମହ କେକୟରାଜ ଅଶ୍ୱପତି ଓ ମାତୁଳ ଯୁଧାଜିତ୍‌ଙ୍କ ଅନୁମତି ଭିକ୍ଷା କରି ଅଯୋଧ୍ୟା ଯିବା ପାଇଁ ପ୍ରସ୍ତୁତ ହେଲେ । ରାଜା ଅଶ୍ୱପତିଙ୍କ ଆଦେଶରେ ଶତାଧିକ ରଥ, ସହସ୍ର ସହସ୍ର ଅଶ୍ୱ, ଉଷ୍ଟ୍ର, ଗଜ ଓ ଭୃତ୍ୟମାନେ ବହୁ ସହସ୍ର କମ୍ବଳ, ଅଜିନ, ସ୍ୱର୍ଣ୍ଣମୁଦ୍ରାଦି ଉପହାରସ୍ୱରୂପ ଧରି ଭରତଙ୍କ ସହିତ ଅଯୋଧ୍ୟା ଯାତ୍ରା କଲେ । ବହୁ ନଗର, ଜନପଦ, ନଦନଦୀ, ଉଦ୍ୟାନ, ଅରଣ୍ୟ ପାର ହୋଇ ସାତ ଦିନ ସାତ ରାତି ଯାତ୍ରା ପରେ ଭରତ ସୂର୍ଯ୍ୟୋଦୟ ସମୟରେ ଅଯୋଧ୍ୟାନଗରୀରେ ପଦାର୍ପଣ କଲେ । କିନ୍ତୁ ବିଷଣ୍ଣ ଅଯୋଧ୍ୟାକୁ ଦେଖି ତାଙ୍କର ମନ ଶଙ୍କିତ ହେବାକୁ ଲାଗିଲା । ବିପଣୀ ଓ ଉଦ୍ୟାନମାନ ଶୂନ୍ୟ । ଲୋକଙ୍କ ମୁଖରେ ପ୍ରସନ୍ନତା ନାହିଁ । ପବନରେ ଚନ୍ଦନ ଅଗୁରୁ ମିଶ୍ରିତ ଧୂପଗନ୍ଧ ଆସୁ ନାହିଁ ଏବଂ ଭେରୀ, ମୃଦଙ୍ଗ, ବୀଣାର ମୂର୍ଚ୍ଛନା ନୀରବିତ । ସେ ବୈଜୟନ୍ତ ଦ୍ୱାର

ଦେଇ ରାଜପୁରୀରେ ପ୍ରବେଶ କରି ଦେଖିଲେ, ସମସ୍ତ ରାଜପୁରୀ ନିଷ୍ପ୍ରଭ ଓ ଶ୍ରୀହୀନ ଦେଖାଯାଉଛି ।

ଭରତ ପିତାଙ୍କ ଗୃହରେ ପ୍ରବେଶ କରି ପିତାଙ୍କୁ ଦେଖିଲେ ନାହିଁ । କୈକେୟୀଙ୍କ ଗୃହରେ ପ୍ରବେଶ କରି ମାତାଙ୍କର ଚରଣବନ୍ଦନା କଲେ । ମାତା ଭରତଙ୍କର ମସ୍ତକ ଆଘ୍ରାଣ କରି ତାଙ୍କୁ ଆଲିଙ୍ଗନ କରି ପାଖରେ ବସାଇଲେ ଏବଂ ପିତୃଗୃହର ସୁସଂବାଦ ପଚାରିଲେ । ଅଜା ଏବଂ ମାମୁ କିପରି ଅଛନ୍ତି ଓ ଅଯୋଧ୍ୟାରେ ପହଞ୍ଚିବା ପାଇଁ କେତେଦିନ ଲାଗିଲା ଓ ବାଟରେ କିଛି ଅସୁବିଧା ହୋଇଛି କି ନାହିଁ ବୋଲି ପଚାରିଲେ । ଭରତ ଉତ୍ତର ଦେଲେ, ତୁମର ପିତା ଅଶ୍ୱପତି ଓ ଭାଇ ଯୁଧାଜିତ୍ କୁଶଳରେ ଅଛନ୍ତି । କେକୟରୁ ବାହାରି ଅଯୋଧ୍ୟା ପହଞ୍ଚିବାପାଇଁ ସାତ ରାତି ଲାଗିଲା ଓ ବାଟରେ ଆମର କୌଣସି ଅସୁବିଧା ହୋଇ ନାହିଁ । କିନ୍ତୁ ଏଠାରେ ଆସି ମୁଁ ଦେଖୁଚି, କୌଣସି ବ୍ୟକ୍ତି ପ୍ରସନ୍ନ ନୁହନ୍ତି । ତୁମର ହେମମୟ ପଲଙ୍କ ଶୂନ୍ୟ । ପିତାଙ୍କ ଗୃହରେ ପ୍ରବେଶ କରି ମୁଁ ତାଙ୍କୁ ସେଠାରେ ଦେଖିଲି ନାହିଁ । ଭାବିଲି ଏଠାରେ ଆସି ତାଙ୍କୁ ଦର୍ଶନ କରିବି । କିନ୍ତୁ ଏଠାରେ ମଧ୍ୟ ତାଙ୍କୁ ଦେଖୁ ନାହିଁ । ମୁଁ ଶୀଘ୍ର ତାଙ୍କର ଚରଣ ବନ୍ଦନା କରିବାକୁ ଚାହେ । ସେ କେଉଁଠାରେ ଅଛନ୍ତି, କହ । ସେ ଜ୍ୟେଷ୍ଠମାତା କୌଶଲ୍ୟାଙ୍କ ଘରେ ନାହାନ୍ତି ତ ?

ରାଜ୍ୟଲୋଭରେ ମୋହିତ କୈକେୟୀ ଭରତଙ୍କୁ ପ୍ରିୟ ସଂବାଦ ଦେଉଛନ୍ତି ବୋଲି ମନେ କରି ନିଦାରୁଣ ଅପ୍ରିୟ ସଂବାଦ ଦେଇ କହିଲେ – ବତ୍ସ, ସମସ୍ତ ପ୍ରାଣୀଙ୍କର ଯେଉଁ ଗତି ହୁଏ, ଯଜ୍ଞକାରୀ ସଜ୍ଜନମାନଙ୍କର ପାଳକ, ତୋର ଧାର୍ମିକ ପିତାଙ୍କର ସେହି ଗତି ହୋଇଛି । ଏହି ସଂବାଦ ଶୁଣିବାମାତ୍ରେ ଭରତ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ ଏବଂ କିଛି ସମୟ ପରେ ବସ୍ତ୍ର ଦ୍ୱାରା ମୁଖକୁ ଆବୃତ କରି କରୁଣ ସ୍ୱରରେ ବିଳାପ କରିବାକୁ ଲାଗିଲେ । କୈକେୟୀ ଶୋକାକୁଳ ପୁତ୍ରଙ୍କୁ ଉଠାଇ କହିଲେ – ଯଶସ୍ୱୀ ପୁତ୍ର, ଏପରି ଭୂଇଁରେ ଶୋଇ ଶୋକ କରିବା ତୋ ପକ୍ଷରେ ଉଚିତ ହେଉ ନାହିଁ । ତୁ ରାଜାର ପୁତ୍ର । ଦାନ ଓ ଯଜ୍ଞର ଅଧିକାରୀ । ସୂର୍ଯ୍ୟ ପୃଥିବୀରେ ପ୍ରଭା ବିସ୍ତାର କରିବା ପରି ବର୍ତ୍ତମାନ ତୋର ସମସ୍ତ ରାଜୋଚିତ ଗୁଣ ପ୍ରକାଶ କରିବାର ବେଳ ।

ରୋଦନଶୀଳ ଭରତ ସେହିପରି ଭୂଇଁରେ ଶୋଇରହି କୈକେୟୀଙ୍କୁ ପଚାରିଲେ, ରାଜା ଯଜ୍ଞାନୁଷ୍ଠାନପୂର୍ବକ ରାମଙ୍କର ଅଭିଷେକ କରିବେ, ଏହା ଦେଖିବା ପାଇଁ ମୁଁ ଆନନ୍ଦରେ ମାତୁଳାଳୟରୁ ଅଯୋଧ୍ୟା ଆସିଲି । କିନ୍ତୁ ଆଜି ସେହି ପ୍ରିୟ ଓ ହିତକାମୀ ପିତାଙ୍କୁ ନ ଦେଖି ମୋର ହୃଦୟ ବିଦୀର୍ଣ୍ଣ ହେଉଚି । କିପରି ପିତାଙ୍କର ମୃତ୍ୟୁ ହେଲା ? କ'ଣ ରୋଗ ତାଙ୍କୁ ହୋଇଥିଲା ? ପିଲାବେଳେ ଧୂଳିଧୂସରିତ ହେଲେ ସେ ମୋତେ କୋଳକୁ ନେଇ ଝାଡ଼ି ଦିଅନ୍ତି । ଆଉ ସେ ସ୍ନେହଶୀଳ ପିତାଙ୍କର ହସ୍ତର ସୁଖସ୍ପର୍ଶ ମୁଁ ଲାଭ କରିପାରିବି ନାହିଁ । ଜ୍ୟେଷ୍ଠଭ୍ରାତା ତାଙ୍କର ସେବା ଶୁଶ୍ରୂଷା ଓ ସତ୍କାର କରି ନିଶ୍ଚୟ ଧନ୍ୟ ହୋଇଛନ୍ତି । ମୃତ୍ୟୁ ପୂର୍ବରୁ ପିତା ମୋ' ପାଇଁ କିଛି କହିଯାଇଛନ୍ତି କି ? ମୋର ପିତୃପ୍ରତିମ ଜ୍ୟେଷ୍ଠଭ୍ରାତା ରାମ କେଉଁଠି ଅଛନ୍ତି ? ମୁଁ ତାଙ୍କର ପାଦବନ୍ଦନା କରିବାକୁ ଚାହେଁ ।

ପିତାଙ୍କର ଶେଷ କଥା ଲୁଚାଇ ନ ପାରି କୈକେୟୀ କହିଲେ – 'ହା ରାମ, ହା ସୀତା, ହା ଲକ୍ଷ୍ମଣ' ଏହିପରି ବିଳାପ କରି ମହାରାଜ ମୃତ୍ୟୁ ବରଣ କରିଛନ୍ତି । ତାଙ୍କର ଶେଷ କଥା, ସୀତାଙ୍କ ସହିତ ରାମ ଲକ୍ଷ୍ମଣ ଫେରିଆସିବା ମୁଁ ଆଉ ଦେଖିପାରିବି ନାହିଁ । ଯେଉଁମାନେ ଦେଖିବେ, ସେଇମାନେ ହିଁ ଧନ୍ୟ ହେବେ ।

ଭରତଙ୍କ ପାଇଁ ଏହି ସଂବାଦ ଆହୁରି ଦୁଃଖଦାୟକ ହେଲା । ସେ ପଚାରିଲେ, ସୀତା ଓ ଲକ୍ଷ୍ମଣଙ୍କ ସହିତ କୌଶଲ୍ୟାଙ୍କର ଆନନ୍ଦବର୍ଦ୍ଧନକାରୀ ରାମ କୁଆଡ଼େ ଯାଇଛନ୍ତି ? କୈକେୟୀ କହିଲେ – ପୁତ୍ର, ରାମ ବଲ୍କଳ ପରିଧାନ କରି ଦଣ୍ଡକ ନାମକ ମହାବନକୁ ଯାଇଛନ୍ତି ।

ଭରତ ରଘୁକୁଳର ମାହାତ୍ମ୍ୟ ଜାଣନ୍ତି । ସେ ନିର୍ମଳଚରିତ୍ର ରାମଙ୍କ ବିଷୟରେ ତ୍ରସ୍ତ ଓ ଶଙ୍କିତ ହୋଇ ପଚାରିଲେ, 'କେଉଁ ଅପରାଧରେ ରାମ ବନବାସ କରିବାକୁ ଯାଇଛନ୍ତି ? ସେ କ'ଣ କୌଣସି ବ୍ରାହ୍ମଣର ଧନ ଅପହରଣ କରିଛନ୍ତି ? ନିଷ୍ପାପ ଧନୀ ବା ଦରିଦ୍ର କୌଣସି ବ୍ୟକ୍ତି ପ୍ରତି ହିଂସାଚରଣ କରିଛନ୍ତି ? କୌଣସି ପରସ୍ତ୍ରୀ ପ୍ରତି ଆସକ୍ତ ହୋଇଛନ୍ତି ବା ଭ୍ରୂଣହତ୍ୟା କରିଛନ୍ତି ? କେଉଁଥିପାଇଁ ତାଙ୍କୁ ନିର୍ବାସନ ଦଣ୍ଡ ଭୋଗ କରିବାକୁ ପଡ଼ିଚି ?

ଚପଳସ୍ୱଭାବା କୈକେୟୀ ସମସ୍ତ କଥା ପ୍ରକାଶ କରି କହିଲେ, ଧୀମାନ୍ ରାମ କୌଣସି ବ୍ରାହ୍ମଣର ଧନ ହରଣ କରି ନାହାନ୍ତି, କୌଣସି ନିଷ୍ପାପ ଧନୀ ବା ଦରିଦ୍ର ପ୍ରତି ହିଂସା କରି ନାହାନ୍ତି । ପରସ୍ତ୍ରୀକୁ ସେ ଅନାଇବା ପାଇଁ ଚାହାନ୍ତି ନାହିଁ, ତାଙ୍କର ଆସକ୍ତ ହେବାର ପ୍ରଶ୍ନ ଉଠୁନାହିଁ । ରାମର ଅଭିଷେକ କଥା ଶୁଣି ମୁଁ ତୋର ପିତାଙ୍କୁ ଦୁଇଟି ବର ମାଗିଲି । ରାମକୁ ବନକୁ ପଠାଇବେ ଓ ତୋତେ ରାଜା କରିବେ । ତୋର ପିତା ମୋତେ ଏହି ବର ଦେଇ ତାଙ୍କର ସତ୍ୟରକ୍ଷା କରିଛନ୍ତି । ମାତ୍ର ପୁତ୍ରଶୋକରେ ତାଙ୍କର ମୃତ୍ୟୁ ଘଟିଛି । ବର୍ତ୍ତମାନ ଅଯୋଧ୍ୟା ନାୟକଶୂନ୍ୟ । ତୁ ବଶିଷ୍ଠ ଓ ବିଧିଜ୍ଞ ବ୍ରାହ୍ମଣମାନଙ୍କ ସାହାଯ୍ୟରେ ପିତାଙ୍କର ଶେଷକୃତ୍ୟ ସମାପନ କର ଓ ରାଜାରୂପେ ଅଭିଷିକ୍ତ ହୋଇ ଏହି ବିଶାଳ ରାଜ୍ୟକୁ ଶାସନ କର ।

## ୩୨ ।। କୈକେୟୀଙ୍କୁ ଭର୍ତ୍ସନା

କୈକେୟୀଙ୍କ କଥା ଶୁଣି ଭରତ ଦୁଃଖରେ କ୍ରୁଦ୍ଧ ଓ ସଂତପ୍ତ ହୋଇ କହିଲେ, ପିତା ଓ ପିତୃସମ ଭ୍ରାତାଙ୍କ ବିହୁନରେ ମୋର ଏ ରାଜ୍ୟରେ କି ପ୍ରୟୋଜନ ଅଛି ? ମୋର ପିତାଙ୍କୁ ବିନଷ୍ଟ କରି ଓ ଭ୍ରାତାଙ୍କୁ ବନକୁ ପଠାଇ ତୁ କଟା ଘା'ରେ ଚୂନ ଦେବାପରି ଦୁଃଖ ଉପରେ ଦୁଃଖ ଆଣି ଦେଇଛୁ । କୁଳନାଶ ପାଇଁ ତୁ କାଳରାତ୍ରି ହୋଇ ଆସିଥିଲୁ । ପିତା ତୋତେ ବିବାହ କରି ନ ଥିଲେ ଯେ ଜାଣି ନ ପାରି ଜ୍ୱଳନ୍ତ ଅଙ୍ଗାରକୁ ଆଲିଙ୍ଗନ କରିଥିଲେ । କୁଳକଳଙ୍କିନୀ, ରାଜ୍ୟଲୋଭରେ ତୁ ଏ ବଂଶର ସମସ୍ତ ସୁଖ ହରଣ କଲୁ । ପୁତ୍ର ଶୋକରେ ତୋର ଆଶ୍ରୟରେ କୌଶଲ୍ୟା ଓ ସୁମିତ୍ରାଙ୍କର ଜୀବନ ଧାରଣ ଦୁଷ୍କର ହେବ । ତାଙ୍କର

ନିଜ ମା' ପରି ରାମ ତୋତେ ବ୍ୟବହାର କରନ୍ତି । ଧର୍ମଦର୍ଶିନୀ କୌଶଲ୍ୟା ତୋତେ ଭଗିନୀପରି ବ୍ୟବହାର କରନ୍ତି । ତୁ ସେହି ରାମଙ୍କୁ ବଲ୍କଳଧାରୀ ବନବାସୀ କରାଇ ଓ କୌଶଲ୍ୟାଙ୍କୁ ଅଶେଷ ଦୁଃଖ ଦେଇ ଟିକିଏ ହେଲେ ଅନୁତାପ କଲୁ ନାହୁଁ । ରାମଙ୍କ ପ୍ରତି ମୋର ଯେଉଁ ସ୍ନେହ ଓ ଭକ୍ତି ଅଛି, ସାମାନ୍ୟ ରାଜ୍ୟ ତା' ତୁଳନାରେ କିଛି ନୁହେଁ । ଲୋଭ ଓ ମୋହଗ୍ରସ୍ତ ହୋଇ ତାହା ତୁ ବୁଝିପାରିଲୁ ନାହିଁ ଏବଂ ଘୋର ଅନିଷ୍ଟ ଘଟାଇଲୁ । ରାଜା ଦଶରଥ ଯେଉଁ ବଳଶାଳୀ ରାମଙ୍କୁ ଆଶ୍ରୟ କରିଥିଲେ, ତାଙ୍କର ଓ ଲକ୍ଷ୍ମଣଙ୍କ ବିନା ମୁଁ କିପରି ଏହି ରାଜ୍ୟକୁ ରକ୍ଷା କରିବି ? ହୁଏତ ଏହି ରାଜ୍ୟର ଭାର ବୋହିବାକୁ ମୋର ସାମର୍ଥ୍ୟ ଥାଇପାରେ । କିନ୍ତୁ ପୁତ୍ରମୋହରେ ତୁ ଯେଉଁ ଲୋଭ କରିଛୁ, ମୁଁ ତାହା କେବେ ସଫଳ ହେବାକୁ ଦେବି ନାହିଁ । ରାମ ତୋତେ ମା' ବୋଲି ଶ୍ରଦ୍ଧା କରୁ ନ ଥିଲେ ତୋତେ ପରିତ୍ୟାଗ କରିବା ପାଇଁ ମୁଁ କେବେ କୁଣ୍ଠାବୋଧ କରନ୍ତି ନାହିଁ ।

ଭରତ ପୁଣି କହିଲେ, ସଦାଚାର ପାଇଁ ଶ୍ରେଷ୍ଠ ଆମର ଏହି ବଂଶରେ ଜ୍ୟେଷ୍ଠ ହିଁ ରାଜା ହୁଅନ୍ତି । ଅନ୍ୟମାନେ ତାଙ୍କର ଅନୁରକ୍ତ ହୋଇ ରହନ୍ତି । କିନ୍ତୁ ତୁ ନୃଶଂସ ବୁଦ୍ଧିରେ ରାଜଧର୍ମ ଓ ଇକ୍ଷ୍ୱାକୁ କୁଳର ପ୍ରଚଳିତ ନିୟମ ଲଂଘନ କରିଛୁ । ପାପୀୟସୀ, ତୁ ଯେପରି ମୋର ପ୍ରାଣାନ୍ତକ ଦାରୁଣ ଦୁଃଖ ଘଟାଇଚୁ, ମୁଁ କେବେହେଲେ ତୋର ଅଭିଳାଷ ପୂରଣ କରିବି ନାହିଁ । ଏହିକ୍ଷଣି ମୁଁ ସ୍ୱଜନବତ୍ସଳ ମୋର ଜ୍ୟେଷ୍ଠଭ୍ରାତା ନିଷ୍ପାପ ରାମଚନ୍ଦ୍ରଙ୍କୁ ବନରୁ ଫେରାଇ ଆଣିବି ଏବଂ ସେହି ଦୀପ୍ତତେଜା ରାମଙ୍କର ଦାସ ହୋଇ ରହି ତାଙ୍କର ସେବା କରିବି । ତୁ ମୋର ମାତୃରୂପୀ ଶତ୍ରୁ । ତୁ ଧୀମାନ୍ ଅଶ୍ୱପତିଙ୍କର କନ୍ୟା ନୋହୁ । ତୁ ଆମର କୁଳନାଶ କରିବା ପାଇଁ ତାଙ୍କ ଔରସରେ ରାକ୍ଷସୀ ହୋଇ ଜନ୍ମ ହୋଇଥିଲୁ ।

ଭରତଙ୍କର ଶୋକ ଓ କ୍ରୋଧ ବଢ଼ିବାକୁ ଲାଗିଲା । ସେ କୈକେୟୀଙ୍କୁ ପୁଣି ଭର୍ତ୍ସନା କରି କହିଲେ, ଦୁରାଚାରିଣୀ କୈକେୟୀ, ମୃତ ସ୍ୱାମୀଙ୍କ ପାଇଁ ରୋଦନ କରିବାର ତୋର କୌଣସି ଅଧିକାର ନାହିଁ । କାରଣ ତୁ ଜାଣି ଜାଣି ତାଙ୍କର ମୃତ୍ୟୁର କାରଣ ହୋଇଛୁ । ସର୍ବଲୋକପ୍ରିୟ ରାମଙ୍କୁ ନିର୍ବାସନ କରି ଏହି କୁଳର ବିନାଶ ସାଧନ ଦ୍ୱାରା ତୁ ଭ୍ରୂଣହତ୍ୟା ପାପ ଅର୍ଜନ କରିଛୁ । ତେଣୁ ନରକର ଗତି ଛଡ଼ା ତୋର ଅନ୍ୟ ଗତି ନାହିଁ । କୌଶଲ୍ୟାଙ୍କ ପ୍ରତି ତୁ ଯେଉଁ ପାପାଚରଣ କରିଛୁ, ତାର କୌଣସି ପଟାନ୍ତର ନାହିଁ । ଦିନେ ଦେବତାମାନଙ୍କର ପୂଜ୍ୟା କାମଧେନୁ ତାଙ୍କର ଦୁଇଟି ପୁତ୍ର (ବଳଦ) ଲଙ୍ଗଳରେ ଯୋଚାହୋଇ ମଧ୍ୟାହ୍ନ ପର୍ଯ୍ୟନ୍ତ କଠିନ ପରିଶ୍ରମ କରୁଥିବାର ଦେଖି ତାଙ୍କର ଚକ୍ଷୁ ଲୋତକାର୍ଦ୍ର ହୋଇଗଲା ଏବଂ ତାଙ୍କ ନିମ୍ନଦେଶରେ ଇନ୍ଦ୍ର ଯାଉଥିବାବେଳେ ସେହି ଲୋତକବିନ୍ଦୁ ଆସି ତାଙ୍କ ଉପରେ ପଡ଼ିଲା । ଇନ୍ଦ୍ର ସନ୍ତପ୍ତ କାମଧେନୁଙ୍କୁ କାରଣ ପଚାରିବାରୁ ସେ କହିଲେ, ଭୂମି କର୍ଷଣରତ ସୂର୍ଯ୍ୟତାପଗ୍ରସ୍ତ ମୋର ଏଇ ଦୁଇପୁତ୍ରଙ୍କର ପୀଡ଼ା ଦେଖି ମୁଁ ଅତିଶୟ ଦୁଃଖିତ । ଯେଉଁ କାମଧେନୁଙ୍କର ହଜାର ହଜାର ପୁତ୍ର ଏହି ସଂସାରରେ ଅଛନ୍ତି, ସେ ଦୁଇଜଣଙ୍କର ଦୁଃଖରେ ଏପରି ବିଳାପ କରୁଛନ୍ତି, ତାହା ଦେଖି ଇନ୍ଦ୍ର ମନେକଲେ ଯେ ପୁତ୍ର ଠାରୁ ବଳି ପ୍ରିୟ କିଛି ନାହିଁ । ସହସ୍ରପୁତ୍ରବତୀ କାମଧେନୁଙ୍କର ଯଦି ଏହି ଅବସ୍ଥା, ଏକମାତ୍ର ପୁତ୍ର ବିହୁନରେ କୌଶଲ୍ୟା କି ଦୁଃଖ ଭୋଗ କରିବେ, ତାହା

ତୁ ବୁଝିଲୁ ନାହିଁ । ମୁଁ ମୁନିଜନସେବିତ ଅରଣ୍ୟ ମଧ୍ୟରୁ ନିଶ୍ଚୟ କୌଶଲ୍ୟାଙ୍କ ପୁତ୍ରଙ୍କୁ ଫେରାଇ ଆଣିବି । ତୁ ବନକୁ ଯା, ଅଗ୍ନିରେ ପ୍ରବେଶ କର ବା ଗଳାରେ ଫାଶି ଲଗାଅ, ମୁଁ ସେଥିପାଇଁ ଚିନ୍ତିତ ନୁହେଁ । ତୋର ପାପରେ ମୁଁ ଭାଗୀ ହେବାକୁ ଚାହେ ନାହିଁ । ସମସ୍ତ ଅଳଙ୍କାର ଫିଙ୍ଗିଦେଇ ଶିଥିଳବସନ ଭରତ ଉତ୍ସବ ଶେଷରେ ପତାକାପରି ଭୂମି ଉପରେ ପଡ଼ିଗଲେ ।

କିଛି ସମୟ ପରେ ସଂଜ୍ଞାଲାଭ କରି ଭରତ କହିଲେ, ମୁଁ ରାଜ୍ୟକାମନା କରେ ନାହିଁ । ମୁଁ ମାତାଙ୍କୁ ପ୍ରରୋଚିତ କରି ନାହିଁ, ମୁଁ ରାମଙ୍କର ଅଭିଷେକ ବା ବନବାସ କିଛି ଜାଣେ ନାହିଁ । ମୁଁ ଶତ୍ରୁଘ୍ନ ସହିତ ବିଦେଶରେ ରହୁଥିଲି । ତେଣୁ ଏ ଘଟଣାବଳୀ ସହିତ ମୋର କୌଣସି ସଂପର୍କ ନାହିଁ ।

ଭରତଙ୍କର ସ୍ୱର ଶୁଣି କୌଶଲ୍ୟା ସୁମିତ୍ରାଙ୍କ ସହିତ ତାଙ୍କୁ ଦେଖିବା ପାଇଁ ଆସୁଥିଲେ ଏବଂ ଭରତ ମଧ୍ୟ ଶତ୍ରୁଘ୍ନଙ୍କ ସହିତ କୌଶଲ୍ୟାଙ୍କ ପ୍ରାସାଦକୁ ଯାଉଥିଲେ । ଜୀର୍ଣ୍ଣଶୀର୍ଣ୍ଣ ଶୋକାକୁଳା କୌଶଲ୍ୟାଙ୍କୁ ଦେଖି ଶତ୍ରୁଘ୍ନ ଓ ଭରତ ଅତିଶୟ ଦୁଃଖିତ ହେଲେ । କୌଶଲ୍ୟା ସେମାନଙ୍କୁ ଆଲିଙ୍ଗନ କରି ବାଷ୍ପଗଦ୍‌ଗଦ କଣ୍ଠରେ କହିଲେ – ଭରତ, ତୁ ଯାହା ଚାହୁଁଥିଲୁ, ସେହି ନିଷ୍କଣ୍ଟକ ରାଜ୍ୟ ଏବେ ଲାଭ କଲୁ । ମାତ୍ର କ୍ରୂରବୁଦ୍ଧି କୈକେୟୀ ମୋର ପୁତ୍ରକୁ ବଲ୍କଳ ପିନ୍ଧାଇ ବନକୁ ପଠାଇବା ଦ୍ୱାରା କି ଲାଭ ପାଇଲା, ମୁଁ ବୁଝିପାରୁ ନାହିଁ । ରାମ ଯେଉଁଠି ଅଛି, ମୋତେ ଏବଂ ସୁମିତ୍ରାଙ୍କୁ ସେଠାକୁ ନେଇଚାଲ ।

ନିରପରାଧ ଭରତ କ୍ଷତସ୍ଥାନରେ ସୂଚୀବିଦ୍ଧ ହେବାପରି କଷ୍ଟ ପାଇ କୌଶଲ୍ୟାଙ୍କ ପାଦତଳେ ପଡ଼ିଗଲେ । ତାଙ୍କର ପାଦ ଦୁଇଟିକୁ ଧରି କହିଲେ – ମାତା, ମୁଁ କିଛି ଜାଣେ ନାହିଁ । ମୋର କୌଣସି ଦୋଷ ନାହିଁ । ରାମଙ୍କ ପ୍ରତି ମୋର ଯେଉଁ ଅଚଳା ଭକ୍ତି ଓ ପ୍ରୀତି ଅଛି, ତାହା କ'ଣ ତୁମେ ଜାଣ ନାହିଁ ? ମୋତେ ଏପରି ଭର୍ତ୍ସନା କରିବା ତୁମର ଉଚିତ ହେଉ ନାହିଁ । କୌଶଲ୍ୟାଙ୍କ ମନରେ ଦୃଢ଼ ବିଶ୍ୱାସ ଜନ୍ମାଇବା ପାଇଁ ପୁଣି ଭରତ ବିଳାପ କରି କହିଲେ, ରାମଙ୍କର ବନଗମନକୁ ଯେ ଅନୁମୋଦନ କରିବ, ତାହାଠାରୁ ବଳି ପାପୀ ଏ ସଂସାରରେ ନାହିଁ । ଯେଉଁସବୁ ଅପରାଧ ଘୃଣ୍ୟ ବୋଲି କଥିତ ଯଥା – ସୂର୍ଯ୍ୟ ଆଡ଼କୁ ମୁହଁ କରି ମୂତ୍ରତ୍ୟାଗ କରିବା, ନିଦ୍ରିତା ଗାଭୀକୁ ପଦାଘାତ କରିବା, ଦେବତାଙ୍କର ନୈବେଦ୍ୟକୁ ଅଇଁଠା କରିବା, ଗୁରୁନିନ୍ଦା, ଗୁରୁପତ୍ନୀ ଗମନ, ମିତ୍ର ଦ୍ରୋହ, କୃତଘ୍ନତା, ମଧୁମାଂସ, ଲୌହ, ବିଷଦ୍ରବ୍ୟ ବିକ୍ରୟ କରି ଭରଣ ପୋଷଣ କରିବା, ସ୍ତ୍ରୀ, ମଦ୍ୟ, ଦ୍ୟୂତକ୍ରୀଡ଼ାରେ ଆସକ୍ତ ହେବା, ଗୃହଦାହ କରିବା, ପାନୀୟ ଜଳକୁ ଦୂଷିତ କରିବା ଆଦି ସେ ସମସ୍ତ ଅପରାଧରେ ଭାଗୀ ହେବ । ଏହିପରି ଶୋକରେ ବିଳାପ କରି ଭରତ ମୂର୍ଚ୍ଛିତ ହୋଇ ପଡ଼ିଗଲେ ।

ଭରତଙ୍କ ଶପଥ ଶୁଣି କୌଶଲ୍ୟା କହିଲେ – ପୁତ୍ର, ତୋ' କଥା ଶୁଣି ମୋ ମନରେ ଆହୁରି କଷ୍ଟ ହେଉଛି । ଭାଗ୍ୟବଶରୁ ତୋର ମନ ଧର୍ମରୁ ବିଚଳିତ ହୋଇ ନାହିଁ । ସେ ଭରତଙ୍କୁ କୋଳକୁ ଟାଣି ଆଣି ରୋଦନ କରିବାକୁ ଲାଗିଲେ ।

ଶୋକସନ୍ତପ୍ତ ଭରତଙ୍କୁ ବଶିଷ୍ଠ କହିଲେ, ମହାଯଶା ରାଜପୁତ୍ର, ତୁମର ମଙ୍ଗଳ ହେଉ । ଆଉ ଶୋକ ନ କରି ଉପସ୍ଥିତ କର୍ତ୍ତବ୍ୟ ଶେଷ କର । ରାଜାଙ୍କର ଅନ୍ତ୍ୟେଷ୍ଟିକ୍ରିୟା କରିବାର ସମୟ ଉପସ୍ଥିତ । ତାହା ଭଲରୂପେ ସଂପାଦନ କର ।

ତୈଳପୂର୍ଣ୍ଣ କଟାହରୁ ଦଶରଥଙ୍କ ମୃତଦେହକୁ ବାହାର କରି ରତ୍ନଭୂଷିତ ଉତ୍କୃଷ୍ଟ ଶଯ୍ୟାରେ ସ୍ଥାପନ କରି ଶିବିକାରେ ବହନ କରାଗଲା । ପରିଚାରକଗଣ ସୁବର୍ଣ୍ଣ ଓ ରୌପ୍ୟ ଆଦି ବିଞ୍ଚି ବିଞ୍ଚି ଆଗରେ ଚାଲିଲେ । ଚନ୍ଦନ ଓ ଦେବଦାରୁକାଠରେ ଚିତା ପ୍ରସ୍ତୁତ ହେଲା । ଅଗୁରୁରସ ଓ ଅନ୍ୟାନ୍ୟ ସୁଗନ୍ଧ ଦ୍ରବ୍ୟ ପ୍ରଦାନ କରାଯିବା ପରେ ରାଜାଙ୍କ ଚିତାରେ ଭରତ ଅଗ୍ନିସଂଯୋଗ କଲେ ଓ ସାମଗାନ ମଧ୍ୟରେ ଋତ୍ୱିକମାନେ ଆହୁତି ଦେଲେ । ରାଜମହିଷୀମାନେ ବିଳାପ କରି କରି ଚିତା ପ୍ରଦକ୍ଷିଣ କଲେ । ମନ୍ତ୍ରୀ, ପୁରୋହିତ ଓ ରାଜମହିଷୀମାନଙ୍କ ସହିତ ରାଜାଙ୍କ ତର୍ପଣ କ୍ରିୟା ଶେଷ କରି ଭରତ ଅଯୋଧ୍ୟା ନଗରୀ ମଧ୍ୟରେ ପ୍ରବେଶ କଲେ ।

ଦଶଦିନ ଭରତ ଭୂମିଶଯ୍ୟାରେ ଶୋଇ ଶୋକ ପାଳନ କଲେ । ଶୌଚ ହେବା ପରେ ଦ୍ୱାଦଶଦିନ ଶ୍ରାଦ୍ଧକାର୍ଯ୍ୟ ସଂପାଦନପୂର୍ବକ ବ୍ରାହ୍ମଣମାନଙ୍କୁ ଅନ୍ନ, ଗାଭୀ, ସ୍ୱର୍ଣ୍ଣ, ରୌପ୍ୟ, ଯାନବାହନ, ବାସଗୃହ ଆଦି ଦାନ କଲେ । ତ୍ରୟୋଦଶ ଦିବସରେ ଅସ୍ଥି ସଞ୍ଚୟନ ପାଇଁ ଶ୍ମଶାନରେ ପିତାଙ୍କ ଚିତାସ୍ଥାନ ନିକଟରେ ପହଞ୍ଚି ଭରତ ନିଜକୁ ସମ୍ବରଣ କରିପାରିଲେ ନାହିଁ । ସେ ଶୋକରେ ମୂର୍ଚ୍ଛାହୋଇ ତଳେ ପଡ଼ିଗଲେ ।

ବଶିଷ୍ଠ ଶୋକାର୍ତ୍ତ ଭରତଙ୍କୁ ଉଠାଇ କହିଲେ, ରାଜକୁମାର, ତୁମେ ଶୋକରେ ଭାଙ୍ଗିପଡ଼ିବା ଉଚିତ ନୁହେଁ । କ୍ଷୁଧା, ତୃଷା, ଶୋକ ମୋହ, ଜରା ମୃତ୍ୟୁ ଏହି ତିନୋଟି ଦ୍ୱନ୍ଦ୍ୱ ବସ୍ତୁକୁ କେହି ଏଡ଼ାଇ ପାରିବେ ନାହିଁ । ପ୍ରତ୍ୟେକ ବ୍ୟକ୍ତିଙ୍କୁ ଏହା ଭୋଗ କରିବାକୁ ହେବ । ଅନ୍ୟ ଋଷି ଓ ଅମାତ୍ୟମାନେ ଭରତ ଶତ୍ରୁଘ୍ନଙ୍କୁ କାଳର ଅଲଂଘନୀୟ ଶକ୍ତି ବିଷୟରେ ବୁଝାଇ ସାନ୍ତ୍ୱନା ଦେଲେ ।

ଶୋକସନ୍ତପ୍ତ ଭରତ ନିଜର ସଂକଳ୍ପରେ ଅଟଳ ରହିଲେ । ସେ ରାମଙ୍କୁ ଫେରାଇ ଆଣିବା ଉଦ୍ଦେଶ୍ୟରେ ବନଯାତ୍ରା ପାଇଁ ପ୍ରସ୍ତୁତ ହେଲେ । ଶତ୍ରୁଘ୍ନ କହିଲେ, ସମସ୍ତଙ୍କ ଦୁଃଖରେ ଓ ସଙ୍କଟ ବେଳରେ ଯାହାଙ୍କୁ ଏକମାତ୍ର ଆଶ୍ରୟସ୍ଥଳ ବୋଲି ମନେକରାଯାଏ, ସ୍ତ୍ରୀର କଥାରେ ସେହି ରାମଙ୍କୁ ବନକୁ ପଠାଗଲା । ବଳବୀର୍ଯ୍ୟସମନ୍ୱିତ ଲକ୍ଷ୍ମଣ ଥାଉ ଥାଉ ଏହା କିପରି ହେଲା ? ସେ କ'ଣ ବଳପୂର୍ବକ ରାଜାଙ୍କୁ ନିଗୃହୀତ କରି ତାଙ୍କୁ ରକ୍ଷାକରି ପାରିଲେ ନାହିଁ ?

ଏହି ସମୟରେ କୁବ୍ଜା ମନ୍ଥରା ଦ୍ୱାରଦେଶରେ ଆସି ପହଞ୍ଚିଲା । ସେ ରାଜକୀୟ ବସ୍ତ୍ର ପିନ୍ଧି ଦେହରେ ଚନ୍ଦନ ଲେପନ କରି ଓ ବହୁ ଅଳଙ୍କାର ପରିଧାନ କରି ରଜ୍ଜୁବଦ୍ଧ ବାନରୀପରି ଦେଖାଯାଉଥିଲା । ସେଇ ପାପିନୀକୁ ଦ୍ୱାରପାଳମାନେ ନିର୍ଦ୍ଦୟଭାବରେ ଧରିଆଣି ଶତ୍ରୁଘ୍ନଙ୍କ ପାଖରେ ପହଞ୍ଚାଇଦେଇ କହିଲେ, ଯାହା ଲାଗି ରାମ ବନକୁ ଯାଇଛନ୍ତି ଓ ତୁମର ପିତା ପରଲୋକ ଯାତ୍ରା କରିଛନ୍ତି, ସେଇ କୁବ୍ଜାକୁ ଯାହା ଦଣ୍ଡ ଦେବାର କଥା ଦିଅ ।

ସଖୀପରିବୃତା କୁବ୍‌ଜାକୁ ଶତ୍ରୁଘ୍ନ ବଳପୂର୍ବକ ଧରି ଘୋଷାଡ଼ି ଆଣିଲେ । ତାର ଅଳଙ୍କାର ସବୁ ଛିଣ୍ଡିଯାଇ ଇତସ୍ତତଃ ପଡ଼ିଲା ଓ ସେ ଚିତ୍କାର କରିବାକୁ ଲାଗିଲା । ତାର ସଖୀମାନେ ଭୟରେ ପଳାଇଯାଇ କୌଶଲ୍ୟାଙ୍କ ଆଶ୍ରୟ ନେଲେ । ଶତ୍ରୁଘ୍ନ କୁବ୍‌ଜାକୁ ଧରି କୈକେୟୀଙ୍କୁ କଟୁମନ୍ତବ୍ୟ ପୂର୍ବକ ତିରସ୍କାର କରିବାକୁ ଲାଗିଲେ । କୈକେୟୀ ଅତିଶୟ ଭୟରେ ଭରତଙ୍କର ଶରଣ ପଶିଲେ । ଭରତ କ୍ରୁଦ୍ଧ ଶତ୍ରୁଘ୍ନଙ୍କୁ କହିଲେ, ନାରୀମାନେ ଅବଧ୍ୟ, ତେଣୁ ଏହାଙ୍କୁ କ୍ଷମା ଦିଅ । ଧାର୍ମିକ ରାମ ମୋତେ ମାତୃହନ୍ତା କହିବେ, ଏଥିପାଇଁ ମୁଁ ପାପାଚାରିଣୀ କୈକେୟୀଙ୍କୁ ହତ୍ୟା ନ କରି ଛାଡ଼ିଦେଉଛି । କୁବ୍‌ଜାକୁ ମାରିଦେବା ଯଦି ରାଘବ ଜାଣନ୍ତି, ତା' ହେଲେ ସେ ତୁମ ସହିତ ବା ମୋ ସହିତ କଥାଭାଷା କରିବେ ନାହିଁ । ଶତ୍ରୁଘ୍ନ ଭରତଙ୍କ କଥା ଶୁଣି ମନ୍ଥରାକୁ ଛାଡ଼ିଦେଲେ । ସେ ଦୌଡ଼ିଯାଇ କୈକେୟୀଙ୍କ ଗୋଡ଼ତଳେ ପଡ଼ି କାନ୍ଦିବାକୁ ଲାଗିଲା ।

## ୩୩ ।। 'କୈକେୟୀର ଉଦ୍ଦେଶ୍ୟ ବିଫଳ ହେବ'

ଦଶରଥଙ୍କ ମୃତ୍ୟୁର ଚତୁର୍ଦ୍ଦଶ ଦିବସରେ ରାଜକର୍ମଚାରୀ ଓ ଅମାତ୍ୟମାନେ ଭରତଙ୍କୁ କହିଲେ, ରାଜା ଦଶରଥ ସ୍ୱର୍ଗବାସୀ । ରାମ ଓ ଲକ୍ଷ୍ମଣ ବନବାସରେ ଅଛନ୍ତି । ବର୍ତ୍ତମାନ ନାୟକଶୂନ୍ୟ ଅଯୋଧ୍ୟାର ରାଜା ହୋଇ ତୁମେ ନେତୃତ୍ୱ ନିଅ । ଅଭିଷେକର ସମସ୍ତ ସାମଗ୍ରୀ ଗଚ୍ଛିତ ହୋଇ ରହିଚି । ଅଭିଷେକ କାର୍ଯ୍ୟ ସଂପୂର୍ଣ୍ଣ ହେଉ ।

ସଂକଳ୍ପବଦ୍ଧ ଭରତ ଅଭିଷେକପାତ୍ର ସବୁ ପ୍ରଦକ୍ଷିଣ କରି ଅମାତ୍ୟମାନଙ୍କୁ କହିଲେ, ଆପଣମାନଙ୍କର ଏହା କରିବା ଉଚିତ ହେଉ ନାହିଁ । ଆମ ବଂଶର ରୀତି ହେଉଚି ରାଜ୍ୟ ଜ୍ୟେଷ୍ଠପୁତ୍ରର । ମୁଁ ନିଶ୍ଚୟ କରିଚି ଯେ ରାମ ରାଜା ହେବେ ଏବଂ ମୁଁ ତାଙ୍କ ସ୍ଥାନରେ ଚଉଦବର୍ଷ ବନବାସ କରିବି । ବର୍ତ୍ତମାନ ଚତୁରଙ୍ଗ ସେନା ସଜ୍ଜିତ କର । ସମସ୍ତ ସଂଗୃହୀତ ଅଭିଷେକ ଦ୍ରବ୍ୟ ଧରି ମୁଁ ବନରେ ଯାଇ ରାମଙ୍କୁ ଅଭିଷିକ୍ତ କରାଇବି । କୈକେୟୀର ଉଦ୍ଦେଶ୍ୟ ବିଫଳ ହେବ । ବର୍ତ୍ତମାନ ଶିଳ୍ପୀମାନେ ବିଷମ ପଥକୁ ସମତଳ କରି ପଥ ପ୍ରସ୍ତୁତ କରନ୍ତୁ ଏବଂ ଅଭିଜ୍ଞ ରକ୍ଷୀମାନେ ଆଗରେ ବାଟ ଦେଖାଇ ଚାଲନ୍ତୁ ।

ବନଯାତ୍ରାର ପଥ ପ୍ରସ୍ତୁତ କରିବା ପାଇଁ ଭୂତତ୍ତ୍ୱଜ୍ଞ, ସୂତ୍ରକର୍ମବିଶାରଦ ବା ଜରିପମାପ କରୁଥିବା ଅମୀନମାନେ, ଖନନ ଯନ୍ତ୍ରବିତ୍ ସ୍ଥପତି, ବର୍ଦ୍ଧକି (ବଢ଼େଇ), ବୃକ୍ଷଚ୍ଛେଦକ, ମାର୍ଗରକ୍ଷକ, ସୂପକାର, ମିସ୍ତ୍ରୀ ଆଦି କାରିଗର ଓ ଭୃତ୍ୟମାନେ ସେମାନଙ୍କ କାର୍ଯ୍ୟରେ ଲାଗିଗଲେ । ସେମାନେ ଗୁଳ୍ମ ଲତା, ବୃକ୍ଷ ଓ ପ୍ରସ୍ତର କାଟି ମାର୍ଗ ନିର୍ମାଣ କଲେ । ବୃକ୍ଷହୀନ ସ୍ଥାନରେ ଛାୟାପ୍ରଦ ବୃକ୍ଷ ରୋପଣ କଲେ । ଗର୍ତ୍ତପୂରଣ, ସେତୁ ନିର୍ମାଣ, କୂପ ପୁଷ୍କରିଣୀ ଖନନ ଓ ଜଳପ୍ରବାହକୁ ବାନ୍ଧି ଜଳଭଣ୍ଡାର ଆଦି ନିର୍ମାଣ କଲେ । ସୈନ୍ୟମାନଙ୍କ ଯାତ୍ରାପଥରେ ବିଶ୍ରାମ ପାଇଁ ପକ୍କା ଚଟାଣ, ପ୍ରାସାଦ, ସୌଧ ଓ ପ୍ରଶସ୍ତ ପଥମାନ ପ୍ରସ୍ତୁତ କଲେ । ଅଯୋଧ୍ୟାରୁ ଗଙ୍ଗାନଦୀ ପର୍ଯ୍ୟନ୍ତ ଏକ ସୁବିସ୍ତୃତ ରାଜପଥ ପ୍ରସ୍ତୁତ ହେଲା ।

ଏହି ସମସ୍ତ ପ୍ରସ୍ତୁତ ହୋଇସାରିବା ପରେ ଦିନେ ରାତ୍ରିଶେଷକୁ ସୂତ ମାଗଧମାନେ ଭରତଙ୍କ ସ୍ତୁତିଗାନ କରିବାକୁ ଲାଗିଲେ । ତୂରୀ, ଶଙ୍ଖ, ଦୁନ୍ଦୁଭି ଆଦି ବାଦ୍ୟ ବାଜିବାକୁ ଲାଗିଲା । ଭରତ ନିଦରୁ ଉଠି କହିଲେ, ମୁଁ ରାଜା ନୁହେଁ, କାହିଁକି ଏ ସବୁ ବାଦ୍ୟ ବାଜୁଛି ? ସେ ବାଦ୍ୟକାରମାନଙ୍କୁ ବାଦ୍ୟ ବନ୍ଦ କରିବାପାଇଁ ଆଦେଶ ଦେଲେ । ଶତ୍ରୁଘ୍ନଙ୍କୁ ଡାକି କହିଲେ, ଆମକୁ ବହୁ ଦୁଃଖ ଦେଇସାରିବା ପରେ ପୁଣି କୈକେୟୀ ଚକ୍ରାନ୍ତ କରି ଏହା ସବୁ କରାଉଛନ୍ତି ।

ବଶିଷ୍ଠ ମଣିରତ୍ନମୟ ରାଜସଭାଗୃହରେ ପ୍ରବେଶ କରି କାଞ୍ଚନମୟ ଆସନରେ ଉପବେଶନ କଲେ ଓ ରାଜପୁତ୍ର ଓ ତାଙ୍କର ଆତ୍ମୀୟସ୍ୱଜନଙ୍କୁ ସଭାଗୃହକୁ ଅଣାଇବା ପାଇଁ ଦୂତମାନଙ୍କୁ ଆଦେଶ ଦେଲେ । ସେହି ସଭାରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏବଂ ବିଭିନ୍ନ ଗୋଷ୍ଠୀର ନେତା ଓ ବିଦ୍ୱାନ୍‌ମାନେ ନିମନ୍ତ୍ରିତ ହୋଇ ଉପସ୍ଥିତ ଥିଲେ । ବିଦ୍ୱାନମଣ୍ଡଳୀପୂର୍ଣ୍ଣ ସେହି ରମଣୀୟ ସଭାଗୃହ ଭରତଙ୍କ ଉପସ୍ଥିତିରେ ପୂର୍ଣ୍ଣଚନ୍ଦ୍ରଯୁକ୍ତ ଶାରଦୀୟ ରଜନୀ ପରି ଦେଖାଯାଉଥିଲା । ଧର୍ମଜ୍ଞ ବଶିଷ୍ଠ ଭରତଙ୍କୁ ସମ୍ବୋଧନ କରି କହିଲେ – ବତ୍ସ, ରାଜା ଦଶରଥ ଧନଧାନ୍ୟପୂର୍ଣ୍ଣ ଏହି ସମୃଦ୍ଧିଶାଳୀ ଅଯୋଧ୍ୟାରାଜ୍ୟକୁ ତୁମକୁ ପ୍ରଦାନ କରି ପରଲୋକ ଗମନ କରିଛନ୍ତି । ବର୍ତ୍ତମାନ ତୁମେ ପିତୃଦତ୍ତ ଏହି ଅକଣ୍ଟକ ରାଜ୍ୟକୁ ଗ୍ରହଣ କରି ପ୍ରଜା ଓ ଅମାତ୍ୟଗଣଙ୍କୁ ଆନନ୍ଦ ପ୍ରଦାନ କର ।

ବଶିଷ୍ଠଙ୍କର ପରାମର୍ଶକୁ ଭରତ ଆଦୌ ଗ୍ରହଣ କଲେ ନାହିଁ ଏବଂ ମଧୁର ଅଥଚ ଦୃଢ଼ ସ୍ୱରରେ କହିଲେ, ଦଶରଥଙ୍କଠାରୁ ଜନ୍ମ ଗ୍ରହଣ କରି ମୁଁ କିପରି ଅନ୍ୟର ରାଜ୍ୟ ଅପହରଣ କରିବି ? ରାଜ୍ୟ ରାମଙ୍କର । ମୁଁ ମଧ ରାମଙ୍କର । ବ୍ରହ୍ମର୍ଷି, ଆପଣ ଧର୍ମାନୁସାରେ କଥା କହନ୍ତୁ । ମୁଁ ଯଦି ଅନାର୍ଯ୍ୟୋଚିତ ଦେବତାମାନଙ୍କ ବିରୁଦ୍ଧ ଏହି ପାପକାର୍ଯ୍ୟ କରେ, ତା' ହେଲେ ସଂସାରରେ ଇକ୍ଷ୍ୱାକୁବଂଶର କୁଳାଙ୍ଗାର ବୋଲି ପରିଚିତ ହେବି । ମୋର ମାତା ଯେଉଁ ପାପକାର୍ଯ୍ୟ କରିଛନ୍ତି, ତାହା ମୁଁ କେବେ ଅନୁମୋଦନ କରିପାରିବି ନାହିଁ । ବନଦୁର୍ଗବାସୀ ମୋର ଜ୍ୟେଷ୍ଠଭ୍ରାତା ରାମଚନ୍ଦ୍ରଙ୍କୁ ଏହିଠାରୁହିଁ ମୁଁ କୃତାଞ୍ଜଳି ହୋଇ ନମସ୍କାର କରୁଛି । ନରୋତ୍ତମ ରାମଚନ୍ଦ୍ର ତ୍ରିଲୋକର ରାଜା ହେବାପାଇଁ ଯୋଗ୍ୟ । ମୁଁ ତାଙ୍କର ଅନୁଚର ମାତ୍ର ।

ଭରତଙ୍କର ଧର୍ମଯୁକ୍ତ ବାକ୍ୟ ଶୁଣି ରାମଙ୍କଠାରେ ହୃଦୟ ଅର୍ପଣ କରିଥିବା ସଭାସଦ୍‌ଗଣ ଆନନ୍ଦାଶ୍ରୁ ବିସର୍ଜନ କଲେ । ଭରତ ପୁଣି କହିଲେ, ମୁଁ ଯଦି ରାମଚନ୍ଦ୍ରଙ୍କୁ ବନରୁ ଫେରାଇ ଆଣିପାରିବି ନାହିଁ, ତା' ହେଲେ ଲକ୍ଷ୍ମଣଙ୍କ ପରି ତାଙ୍କ ସହିତ ବନବାସ କରିବି । ସୁମନ୍ତ୍ର, ବନଯାତ୍ରା ପାଇଁ ଶୀଘ୍ର ସୈନ୍ୟମାନଙ୍କୁ ପ୍ରସ୍ତୁତ କର ।

## ୩୪ ।। ରାମମିତ୍ର ଗୁହଙ୍କର ସନ୍ଦେହ

ପରଦିନ ପ୍ରଭାତରେ ଚତୁରଙ୍ଗ ସେନା ସହ ରଥରେ ବସି ଭରତ ଯାତ୍ରା ଆରମ୍ଭ କଲେ । କୈକେୟୀ, ସୁମିତ୍ରା ଓ ଯଶସ୍ୱିନୀ କୌଶଲ୍ୟା ଦୀପ୍ତିମନ୍ତ ଯାନରେ ଚଢ଼ି ଆନନ୍ଦରେ

ଯାତ୍ରା କଲେ । ବଶିଷ୍ଠାଦି କୁଳପୁରୋହିତ ଓ ଅମାତ୍ୟଗଣ ରଥରେ ବସି ଚାଲିଲେ । ଅଯୋଧ୍ୟାର ନାଗରିକମାନେ ସୌମ୍ୟମୂର୍ତ୍ତି ରାମଙ୍କର ଦର୍ଶନ ପାଇଁ ଆଗଭର ହୋଇ ବାହାରିଲେ । କମାର, କୁମ୍ଭାର, ବୁଣାକାର, ସ୍ୱର୍ଣ୍ଣକାର, ଅସ୍ତ୍ରକାର ଆଦି କାରିଗରଗଣ, ଗୋପାଳ, କୈବର୍ତ୍ତ, ନର୍ତ୍ତକ, ବୈଦ୍ୟ ଓ ବେଦଜ୍ଞ ବ୍ରାହ୍ମଣମାନେ ଭରତଙ୍କର ଅନୁଗମନ କଲେ ।

ଭରତଙ୍କର ଚତୁରଙ୍ଗ ସେନା ଶୃଙ୍ଗବେରପୁରରେ ପହଞ୍ଚି ଗଙ୍ଗାକୂଳରେ ନିଜର ଛାଉଣି ପକାଇଲେ । ନିଷାଦରାଜ ଗୁହ ନିଜ ଜ୍ଞାତିମାନଙ୍କୁ ଡାକି କହିଲେ, ଭରତ ସାଗର ସଦୃଶ ଯେଉଁ ବିଶାଳ ସେନା ଧରି ଏଠାକୁ ଆସିଛି, ସେଥିରୁ ମୋର ସନ୍ଦେହ ହେଉଛି ଯେ ସେ ରାମଙ୍କୁ ହତ୍ୟାକରି ଦୁର୍ଲ୍ଲଭ ରାଜ୍ୟସଂପଦ ସଂପୂର୍ଣ୍ଣ ଅଧିକାର କରିବ । ରାମ ଆମର ସଖା ଏବଂ ପ୍ରଭୁ । ଜାଲ ଧରି ନୌକାବାହୀ ଶତ ଶତ କୈବର୍ତ୍ତ ଓ କବଚଧାରୀ ଶତ ଶତ ଯୋଦ୍ଧା ଗଙ୍ଗାକୂଳରେ ଅବସ୍ଥାନ କରନ୍ତୁ । ଭରତ ଯଦି ରାମଙ୍କ ପ୍ରତି ଅନୁରକ୍ତ ରହି ଏଠାକୁ ଆସୁଛନ୍ତି, ତା' ହେଲେ ଆମେ ତାଙ୍କୁ ଶାନ୍ତିରେ ଗଙ୍ଗାପାର କରାଇଦେବା ।

ଏହିପରି ଆଲୋଚନା କରି ନିଷାଦରାଜ ଗୁହ ମାଛ, ମାଂସ ଓ ମହୁ ପ୍ରଭୃତି ଭେଟି ଧରି ଭରତଙ୍କ ଆଡ଼କୁ ଅଗ୍ରସର ହେଲେ । ତାଙ୍କୁ ଦେଖି ସାରଥି ସୁମନ୍ତ ଭରତଙ୍କୁ କହିଲେ, ନିଷାଦରାଜ ଗୁହ ତୁମ ରାମଙ୍କର ସଖା । ଦଣ୍ଡକାରଣ୍ୟ ସଂପର୍କରେ ସେ ସମସ୍ତ ତଥ୍ୟ ଜାଣନ୍ତି । ରାମ ଓ ଲକ୍ଷ୍ମଣ କେଉଁଠି ଅଛନ୍ତି, ସେ ନିଶ୍ଚୟ କହିପାରିବେ ।

ଗୁହଙ୍କୁ ପାଛୋଟି ଆଣିବା ପାଇଁ ଭରତ ସୁମନ୍ତଙ୍କୁ ଆଦେଶ ଦେଲେ । ଗୁହ ଭରତଙ୍କ ପାଖରେ କୃତାଞ୍ଜଳି ହୋଇ କହିଲେ, ନିଷାଦମାନେ ସରଳ ଓ ନିଷ୍କପଟ । ଆଗରୁ ଖବର ନ ଦେଇ ଏଠାକୁ ଆସି ତୁମେ ସେମାନଙ୍କୁ ବଞ୍ଚିତ କରିଚ । ଯାହାହେଉ, ସେମାନେ ଆଣିଥିବା ଏହି ସବୁ ଫଳ ମୂଳ, ଆର୍ଦ୍ର ଓ ଶୁଷ୍କ ମାଂସ ଓ ବିଭିନ୍ନ ବନଜାତ ଦ୍ରବ୍ୟ ଗ୍ରହଣ କର । ଏ ରାଜ୍ୟ ତୁମର । ଆମକୁ ତୁମର ଅନୁଗତ ବୋଲି ମନେକରି ଏଠାରେ ଅବସ୍ଥାନ କର ଓ ଆମମାନଙ୍କର ଆତିଥ୍ୟ ଗ୍ରହଣ କରି ଆଜି ରାତି ଏଠାରେ ଯାପନ କର ।

ଭରତ କହିଲେ— ମୋର ଗୁରୁସମ ଜ୍ୟେଷ୍ଠଭ୍ରାତାଙ୍କର ତୁମେ ବନ୍ଧୁ । ତା ନ ହୋଇଥିଲେ ତୁମେ ଏକାକୀ ଏହି ବିଶାଳ ସେନାର ଚର୍ଚ୍ଚା କରିବାକୁ ବାହାରି ନ ଥାନ୍ତ । ସେ ନିଷାଦରାଜଙ୍କର ଉଚ୍ଚ ହୃଦୟର ପ୍ରଶଂସା କରି କେଉଁ ବାଟରେ ଗଲେ ସେମାନେ ଭରଦ୍ୱାଜ ଆଶ୍ରମରେ ପହଞ୍ଚି ପାରିବେ, ତାହା ଦେଖାଇ ଦେବାପାଇଁ ତାଙ୍କୁ ଅନୁରୋଧ କଲେ । ଦୁର୍ଗମ ବନପ୍ରଦେଶ ସଂପର୍କରେ ଅଭିଜ୍ଞ ଗୁହ ଭରତଙ୍କୁ କହିଲେ— ଯଶସ୍ୱୀ ରାଜପୁତ୍ର, ଧନୁର୍ଦ୍ଧର କୈବର୍ତ୍ତମାନେ ତୁମର ଅନୁସରଣ କରିବେ ଏବଂ ମୁଁ ମଧ ନିଜେ ତୁମ ସଙ୍ଗେ ଯିବି । କିନ୍ତୁ ଏହି ବିଶାଳ ସେନା ଦେଖି ମୋ ମନରେ ସନ୍ଦେହ ଜାତ ହେଉଛି ଯେ କୌଣସି ମନ୍ଦ ଅଭିସନ୍ଧି ରଖି ତୁମେ ପୁଣ୍ୟଶ୍ଳୋକ ରାମଙ୍କ ପାଖକୁ ଯାଉ ନାହଁ ତ ? ଭରତ କହିଲେ, ରାମ ମୋର ଜ୍ୟେଷ୍ଠଭ୍ରାତା, ପିତୃତୁଲ୍ୟ । ତୁମ ମନରେ ରାମଙ୍କ ବିଷୟରେ ମୋ ପ୍ରତି କୌଣସି ସନ୍ଦେହ ରହିବା ଉଚିତ ନୁହେଁ । ତୁମକୁ ସତ୍ୟ କହୁଛି, ବନବାସୀ କାକୁତ୍ସ୍ଥ ରାମଙ୍କୁ ମୁଁ ଫେରାଇଆଣିବା ପାଇଁ ଯାଉଛି ।

ଭରତଙ୍କ କଥା ଶୁଣି ନିଷାଦରାଜଙ୍କ ମୁଖମଣ୍ଡଳ ପ୍ରସନ୍ନ ହୋଇ ଉଠିଲା । ସେ କହିଲେ, ତୁମେ ଧନ୍ୟ, ସଂସାରରେ ତୁମ ପରି ଲୋକ ମୁଁ ଦେଖି ନାହିଁ । ଅଯତ୍ନଲବ୍ଧ ରାଜ୍ୟକୁ ତ୍ୟାଗ କରି ତୁମେ ନିର୍ବାସିତ ରାମଙ୍କୁ ଫେରାଇଆଣିବାକୁ ଯାଉଛ, ଏ ସଂସାରରେ ତୁମର କୀର୍ତ୍ତି ଅକ୍ଷୟ ରହିବ ।

ଭରତ ସସୈନ୍ୟ ଗୁହଙ୍କ ଆତିଥ୍ୟ ଗ୍ରହଣ କରି ଭଲଭାବରେ ସତ୍କୃତ ହେଲେ । ରାମଙ୍କ ବିଷୟରେ ଆଲୋଚନା କରି ସେମାନଙ୍କର ରାତି କଟିଗଲା । ଭରତ ରାମଙ୍କ ବିଷୟରେ ଯେତେ କହିଲେ ଏବଂ ଶୁଣିଲେ ତାଙ୍କର ମନ ସେତିକି ଶୋକସନ୍ତପ୍ତ ହେଲା । କୋଟରଗତ ଅଗ୍ନି ଯେପରି ମହାବୃକ୍ଷକୁ ଦହନ କରେ, ସେହିପରି ତାଙ୍କର ମନର ସନ୍ତାପ ତାଙ୍କୁ ଦଗ୍ଧ କରିବାକୁ ଲାଗିଲା । ନିଷାଦରାଜ ତାଙ୍କୁ ଆଶ୍ୱାସନା ଦେବାପାଇଁ ବହୁ ଯତ୍ନ କଲେ ।

ପ୍ରଭାତ ହେବାରୁ ଗୁହଙ୍କ ଆଦେଶରେ ଭରତ, ଶତ୍ରୁଘ୍ନ ଓ ତାଙ୍କ ସହିତ ଆସିଥିବା ବିଶାଳ ସେନା ଓ ଜନତାକୁ ନଦୀପାର କରିବା ପାଇଁ ପାଞ୍ଚଶହ ନୌକା ସହ ନାବିକମାନେ ପ୍ରସ୍ତୁତ ହୋଇଗଲେ । ସେ ମଧ୍ୟରେ ଏକ ପାଲଯୁକ୍ତ ନୌକାରେ ସ୍ୱସ୍ତିକ ଚିହ୍ନ ଓ ବୃହତ୍ ଘଣ୍ଟା ସହ ପତାକା ଶୋଭା ପାଉଥିଲା ଏବଂ ଶୁକ୍ଳବର୍ଣ୍ଣ କମ୍ବଳର ଆସ୍ତରଣ ଦ୍ୱାରା ତାହା ସଜ୍ଜିତ ହୋଇଥିଲା । ଭରତ, ଶତ୍ରୁଘ୍ନ, କୌଶଲ୍ୟା, ସୁମିତ୍ରା ଓ ଅନ୍ୟାନ୍ୟ ମହିଷୀମାନେ ସେହି ନୌକା ଆରୋହଣ କଲେ । ସେଥିରେ ମଙ୍ଗଳବାଦ୍ୟ ବାଜିବାକୁ ଲାଗିଲା । ବଶିଷ୍ଠ ଓ ତାଙ୍କ ସହିତ ଅନ୍ୟାନ୍ୟ ବ୍ରାହ୍ମଣଗଣ ଅନ୍ୟ ନୌକାରେ ବସିଲେ । ସ୍ତ୍ରୀଲୋକମାନେ, ସୈନ୍ୟବାହିନୀ, ବିଭିନ୍ନ ରସଦ ସାମଗ୍ରୀ ଆଦି ଧରି ଭୃତ୍ୟ ଓ ଅନୁଚରବର୍ଗ ଏବଂ ନାଗରିକବୃନ୍ଦ ବିଭିନ୍ନ ନୌକାରେ ବସି ଗଙ୍ଗା ପାର ହେଲେ । ଗଜାରୋହୀ ସୈନ୍ୟମାନେ ହାତୀ ପିଠିରେ ବସି ନଦୀ ପାର ହେଲେ । ଦିବସର ତୃତୀୟ ଘଡ଼ିରେ ସମସ୍ତ ସେନା ଗଙ୍ଗା ପାର ହୋଇ ଗଲେ ଏବଂ ଭରତ ଭରଦ୍ୱାଜ ଆଶ୍ରମରେ ପହଞ୍ଚିବା ପାଇଁ ତ୍ୱରାନ୍ୱିତ ହେଲେ ।

## ୩୫ ।। ଅଦ୍ଭୁତ ଆତିଥ୍ୟ

ଭରଦ୍ୱାଜ ଆଶ୍ରମର କୋଶେ ଦୂରରେ ଭରତ ସୈନ୍ୟମାନଙ୍କୁ ରଖାଇଦେଇ ନିଜେ ଦେହରୁ ରାଜପରିଚ୍ଛଦ ଓ ଅସ୍ତ୍ର ଓହ୍ଲାଇ ଦେଲେ । ପବିତ୍ର ପଟ୍ଟବସ୍ତ୍ର ପରିଧାନ କରି ପାଦରେ ଚାଲି ଚାଲି ସେ ଋଷି ଭରଦ୍ୱାଜଙ୍କ ଦର୍ଶନପାଇଁ ଗଲେ । ଭରଦ୍ୱାଜ ବଶିଷ୍ଠଙ୍କୁ ଦେଖିବା ମାତ୍ରେ ଆସନରୁ ଉଠିପଡ଼ି ତାଙ୍କୁ ଅର୍ଘ୍ୟଦାନପୂର୍ବକ ଅଭିବାଦନ କଲେ ଓ ଭରତଙ୍କ ଦ୍ୱାରା ନିଜେ ଅଭ୍ୟର୍ଥିତ ହୋଇ ତାଙ୍କର କୁଶଳ ଜିଜ୍ଞାସା କଲେ । ବଶିଷ୍ଠ ଓ ଭରତ ମଧ୍ୟ ଭରଦ୍ୱାଜଙ୍କର ସ୍ୱାସ୍ଥ୍ୟ, ଆଶ୍ରମର ଯଜ୍ଞାଦି କର୍ମ ଓ ଆଶ୍ରମବାସୀଙ୍କ ସଂପର୍କରେ କୁଶଳ ପ୍ରଶ୍ନ କଲେ ।

ଏପରି ଚତୁରଙ୍ଗ ସେନା ଧରି ଭରତ କାହିଁକି ଆସିଛନ୍ତି, ସେ ସଂପର୍କରେ ଋଷି ଭରଦ୍ୱାଜଙ୍କର ସନ୍ଦେହ ହେଲା । ସେ ଭରତଙ୍କୁ ପଚାରିଲେ, ତୁମେ ତ ରାଜ୍ୟ ଶାସନ କରୁଥିଲ ବର୍ତ୍ତମାନ ଏଠାକୁ ଆସିବାର ଉଦ୍ଦେଶ୍ୟ କ'ଣ ? ସ୍ତ୍ରୀ ପରବଶ ହୋଇ ରାଜା ଦଶରଥ ରାମଙ୍କୁ ଚଉଦବର୍ଷ ବନବାସ କରିବା ପାଇଁ ଆଦେଶ ଦେବାରୁ ନିଷ୍ପାପ ରାମ ତାହା ପାଳନ କରି ବନବାସ କରୁଛନ୍ତି । ତୁମେ କ'ଣ ତୁମର ରାଜ୍ୟକୁ ଆହୁରି ନିଷ୍କଣ୍ଟକ କରିବା ପାଇଁ ରାମ ଓ ଲକ୍ଷ୍ମଣଙ୍କର ଅନିଷ୍ଟ କରିବା ପାଇଁ ଆସିଛ ?

ଋଷିଙ୍କର ବାକ୍ୟ ଶୁଣି ଭରତ ସାଶ୍ରୁନୟନରେ ଉତ୍ତର ଦେଲେ – ଭଗବନ୍, ଆପଣ ମୋତେ ଭୁଲ ବୁଝନ୍ତୁ ନାହିଁ । ମୋ ଅନୁପସ୍ଥିତିରେ ମୋ ମା' ଯାହା କରିଛନ୍ତି, ତାହା ମୋର ସଂପୂର୍ଣ୍ଣ ଇଚ୍ଛାବିରୁଦ୍ଧରେ ହୋଇଛି । ମୁଁ ପୁରୁଷସିଂହ ରାମଙ୍କର ଚରଣବନ୍ଦନା କରି ତାଙ୍କର ସନ୍ତୋଷ ବିଧାନ ନିମନ୍ତେ ଆସିଛି, ଯେପରିକି ସେ ପ୍ରସନ୍ନ ହୋଇ ଅଯୋଧ୍ୟା ଫେରିଯିବେ । ଆପଣ ମୋତେ ଅନୁଗ୍ରହ କରନ୍ତୁ ଏବଂ ରାମ କେଉଁଠାରେ ଅଛନ୍ତି କହନ୍ତୁ ।

ଭରଦ୍ୱାଜ ପ୍ରସନ୍ନ ହୋଇ କହିଲେ – ଭରତ, ପ୍ରସିଦ୍ଧ ରଘୁକୁଳରେ ତୁମର ଜନ୍ମ । ତୁମେ ଜିତେନ୍ଦ୍ରିୟ, ସାଧୁ ଓ ଗୁରୁଜନମାନଙ୍କର ସେବକ । ତୁମର ମନୋଗତ ଭାବ ଜାଣି ମଧ୍ୟ ତୁମର ସଂକଳ୍ପକୁ ଆହୁରି ସୁଦୃଢ଼ କରିବା ପାଇଁ ଏପରି ପ୍ରଶ୍ନ କରୁଥିଲି । ରାମ, ଲକ୍ଷ୍ମଣ ଓ ସୀତାଙ୍କ ସହିତ ଏବେ ଚିତ୍ରକୂଟ ପର୍ବତରେ ବାସ କରୁଛନ୍ତି । ମୋର ଅନୁରୋଧ ରକ୍ଷା କରି ତୁମେ ଆଜି ଏଠାରେ ରହ । କାଲି ସକାଳୁ ଚିତ୍ରକୂଟ ଯାତ୍ରା କରିବ । ବର୍ତ୍ତମାନ ତୁମର ସେନା ଓ ଅନ୍ୟାନ୍ୟ ସହଯାତ୍ରୀମାନଙ୍କୁ ଏଠାକୁ ଆସିବାକୁ କହ । ସମସ୍ତଙ୍କୁ ମୁଁ ଉପଯୁକ୍ତ ଆତିଥ୍ୟଦ୍ୱାରା ତୃପ୍ତ କରିବାକୁ ଚାହେଁ ।

ଭରତ କହିଲେ, ରାଜା ବା ରାଜପୁତ୍ର ହୁଅନ୍ତୁ, ତପସ୍ୱୀମାନଙ୍କର ଆଶ୍ରମ ପରିହାର କରିବା ଉଚିତ । ମୋ ସହିତ ଯେଉଁ ବହୁସଂଖ୍ୟକ ହସ୍ତୀ, ଅଶ୍ୱ ଆଦି ଆସିଛନ୍ତି, ସେମାନେ ଆପଣଙ୍କ ଆଶ୍ରମରେ ପ୍ରବେଶ କରି ବୃକ୍ଷ ଲତା, ପର୍ଣ୍ଣଶାଳା ଆଦି ନଷ୍ଟ ନ କରନ୍ତୁ, ଆପଣଙ୍କ ମନରେ କଷ୍ଟ ନ ହେଉ, ସେଥିପାଇଁ ମୁଁ ସେମାନଙ୍କୁ ଦୂରରେ ରଖିଛି ।

ଭରଦ୍ୱାଜଙ୍କ ଅନୁରୋଧକ୍ରମେ ଭରତ ତାଙ୍କର ସମସ୍ତ ସେନା ଓ ସହଯାତ୍ରୀମାନଙ୍କୁ ସେଠାକୁ ଅଣାଇଲେ । ମହର୍ଷି ସ୍ନାନାଦି ଶେଷ କରି ଅଗ୍ନିଶାଳାରେ ପ୍ରବେଶ କରି ବିଶ୍ୱକର୍ମାଙ୍କୁ ଆହ୍ୱାନ କରି କହିଲେ, ମୁଁ ଭରତ ଓ ତାଙ୍କ ସହିତ ଆସିଥିବା ସମସ୍ତଙ୍କର ଆତିଥ୍ୟ ସତ୍କାର କରିବାକୁ ଚାହେଁ । ସେଥିପାଇଁ ଆବଶ୍ୟକ ଗୃହାଦି ନିର୍ମାଣ କରିବାର ବ୍ୟବସ୍ଥା କର । ଇନ୍ଦ୍ରାଦି ଦେବତା, ଲୋକପାଳଗଣ, ନଦୀସମୂହ, ଗନ୍ଧର୍ବ, ଅପସରା, ଉତ୍ତରକୁରୁରେ ଥିବା ବୃକ୍ଷ ଓ ଫଳସମ୍ଭାରପୂର୍ଣ୍ଣ କୁବେରଙ୍କର ବନ ଆଦି ସମସ୍ତଙ୍କୁ ଖାଦ୍ୟପେୟ, ନୃତ୍ୟ ସଙ୍ଗୀତ ଓ ଆମୋଦ ଯୋଗାଇବା ପାଇଁ ଋଷି ଭରଦ୍ୱାଜ ଆହ୍ୱାନ କଲେ । ସଙ୍ଗେ ସଙ୍ଗେ ଆମୋଦିତ ସୁଶୀତଳ ମଳୟ ସମୀର ବହିବାକୁ ଲାଗିଲା । ଚତୁର୍ଦ୍ଦିଗରେ ସ୍ୱର୍ଗୀୟ ସଙ୍ଗୀତର ମୂର୍ଚ୍ଛନା ଭାସି ଆସିଲା । ଅଶ୍ୱଶାଳା, ଗଜଶାଳା, ହର୍ମ୍ୟ, ପ୍ରାସାଦ ଓ ତୋରଣ ଶୋଭିତ ରାଜଭବନମାନ ନିର୍ମିତ ହେଲା । ନିର୍ଝରିଣୀମାନ କୁଳୁ କୁଳୁ

ନାଦରେ ପ୍ରବାହିତ ହେଲା । ପୁଷ୍ପିତ ଉପବନ ଓ ସୁନ୍ଦର ଘାସଭୂମି ସବୁ ଗଢ଼ିଉଠିଲା । ସୁନ୍ଦରୀ ଅପ୍‌ସରାମାନେ ନୃତ୍ୟ କରିବାକୁ ଲାଗିଲେ । ଯଥେଷ୍ଟ ପରିମାଣରେ ଖାଦ୍ୟପେୟ ପ୍ରସ୍ତୁତ ହୋଇଗଲା । ରସପୂର୍ଣ୍ଣ ଝୋଳଯୁକ୍ତ ଛାଗଳ, ବରାହ, ମୃଗ, ମୟୂର ଓ କୁକ୍କୁଟ ମାଂସ ଉତ୍‌କୃଷ୍ଟ ବ୍ୟଞ୍ଜନ, ସୁସ୍ୱାଦୁ ପାୟସ ଓ ଶୁଭ୍ରବର୍ଣ୍ଣ ରାଶି ରାଶି ଅନ୍ନ ସୁବର୍ଣ୍ଣ ଓ ରଜତ ପାତ୍ରମାନଙ୍କରେ ସଜ୍ଜିତ ହୋଇ ରହିଗଲା । ଆମ୍ର ଆଦି ଫଳରସ, ଦଧି, ଦୁଗ୍ଧ, ଶର୍କରା ଏବଂ ଉତ୍‌କୃଷ୍ଟ ମଦିରା ସବୁ ଲୋଭନୀୟ ପାତ୍ରମାନଙ୍କରେ ସଜାହୋଇ ରହିଲା ।

ଭରତଙ୍କର ଲୋକମାନେ ପ୍ରଚୁର ପରିମାଣରେ ଖାଦ୍ୟ ଓ ପାନୀୟ ଲାଭ କରି ପରିତୃପ୍ତ ହେଲେ । ଏପରିକି ଅଶ୍ୱ, ଗଜ, ଗୋ, ଗର୍ଦ୍ଦଭ, ମୃଗ ଓ ପକ୍ଷୀମାନେ ପ୍ରଚୁର ପରିମାଣରେ ଖାଇବାକୁ ପାଇଲେ । ସାତ ଆଠ ଜଣ ସୁନ୍ଦରୀ ଯୁବତୀ ଜଣେ ଜଣେ ପୁରୁଷଙ୍କୁ ନେଇ ନଦୀତୀରରେ ତୈଳମର୍ଦ୍ଦନ କରି ସ୍ନାନ କରାଇଲେ ଓ ସ୍ନାନାନ୍ତେ ସେମାନଙ୍କୁ ମଦ୍ୟପାନ ଦେଇ ସେମାନଙ୍କ ମନୋରଞ୍ଜନ କଲେ । ଦନ୍ତମାର୍ଜନ ପାଇଁ ସମସ୍ତ ଉପକରଣ, ମନୋରମ ବସ୍ତ୍ର, କଠଉ, ଜୋତା, ଦର୍ପଣ, ପାନିଆଁ ଆଦି ସମସ୍ତ ଆବଶ୍ୟକ ଦ୍ରବ୍ୟ ସୁନ୍ଦର ଶଯ୍ୟା ବିଶିଷ୍ଟ ପ୍ରକୋଷ୍ଠମାନଙ୍କରେ ଆବଶ୍ୟକ ପରିମାଣରେ ରଖାଗଲା । ସେଦିନ ସେହି ଉପଭୋଗ୍ୟ ବସ୍ତୁମାନଙ୍କରେ ପରିପୂର୍ଣ୍ଣ ଭରଦ୍ୱାଜଙ୍କ ଆଶ୍ରମକୁ ଦେଖି ଦେବତାମାନଙ୍କର ନନ୍ଦନକାନନ ମଧ୍ୟ ନିନ୍ଦିତ ଅନୁଭବ କଲା ।

ପରିତୃପ୍ତ ଭରତଙ୍କ ସୈନ୍ୟମାନେ କହିଲେ, ଆମେ ଏଇଠି ରହିବୁ । ଅଯୋଧ୍ୟା ଯିବୁ ନାହିଁ କି ଦଣ୍ଡକାରଣ୍ୟ ଯିବୁ ନାହିଁ । ଭରତ ଓ ରାମ କୁଶଳରେ ରହନ୍ତୁ । କିନ୍ତୁ ରାତି ପାହିବା ପରେ ନଦୀ, ଉପବନ, ଗନ୍ଧର୍ବ, ନର୍ତ୍ତକୀ ଓ ପ୍ରମଦାଗଣ ଭରଦ୍ୱାଜଙ୍କ ଅନୁମତି ନେଇ ଯେ ଯେଉଁଠୁ ଆସିଥିଲେ, ସେ ସବୁ ସ୍ଥାନକୁ ଫେରିଗଲେ । ପୁଣି ଆଶ୍ରମ ତାର ପୂର୍ବ ଅବସ୍ଥାକୁ ଫେରିଆସିଲା ।

ଭରତ ଋଷିଙ୍କ ଆତିଥ୍ୟରେ କୃତକୃତ୍ୟ ହୋଇ କୃତାଞ୍ଜଳି ପୂର୍ବକ କହିଲେ, ଭଗବନ୍, ମୋର ଓ ମୋ' ଲୋକମାନଙ୍କର ସମସ୍ତ ସନ୍ତାପ ଓ କ୍ଳାନ୍ତି ଦୂର ହୋଇଛି । ବର୍ତ୍ତମାନ ମୋତେ ମିତ୍ରଦୃଷ୍ଟିରେ ଦେଖି ବିଦାୟ ଦିଅନ୍ତୁ । କେଉଁ ବାଟରେ ଗଲେ ଆମେ ରାମଙ୍କ ଆଶ୍ରମରେ ପହଞ୍ଚିପାରିବୁ, ତାହା ଆମକୁ ନିର୍ଦ୍ଦେଶ ଦିଅନ୍ତୁ । ଭରଦ୍ୱାଜ କେଉଁ ରାସ୍ତାରେ ଗଲେ ଚିତ୍ରକୂଟ ପଡ଼ିବ ତାହା ଭରତଙ୍କୁ ବତାଇଦେଲେ । ସେ କହିଲେ, ଏଠାରୁ ଅଢ଼େଇ ଯୋଜନ ଦୂରରେ ମନ୍ଦାକିନୀ ନଦୀର ଦକ୍ଷିଣ ତଟରେ ଚିତ୍ରକୂଟ ପଡ଼ିବ । ରମଣୀୟ ପୁଷ୍ପିତକାନନ ମଧ୍ୟରେ ସେହି ନଦୀ ପ୍ରବାହିତ ହେଉଛି । ନଦୀର ପରପାରରେ ଏହି ଚିତ୍ରକୂଟ ପର୍ବତରେ ରାମଙ୍କର ପର୍ଣ୍ଣକୁଟୀର ଅବସ୍ଥିତ ।

ଋଷିଙ୍କଠାରୁ ବିଦାୟ ନେବାବେଳେ ରାଜମହିଷୀମାନେ ମଧ୍ୟ ଋଷିଙ୍କର ପଦବନ୍ଦନା କଲେ । ଭରତ ସେମାନଙ୍କୁ ଜଣ ଜଣ କରି ଚିହ୍ନାଇଦେଇ କହିଲେ – ଋଷିଶ୍ରେଷ୍ଠ ଏହି ଶୋକାର୍ତ୍ତା ଜୀର୍ଣ୍ଣଶରୀରା ଦେବୀପ୍ରତିମା ନାରୀ ହେଉଛନ୍ତି କୌଶଲ୍ୟା, ଯେ କି ପୁରୁଷୋତ୍ତମ ରାମଙ୍କର ଜନନୀ । ଏହାଙ୍କ ବାମବାହୁକୁ ଧରି ବିଷଣ୍ଣ ଭାବରେ ଠିଆ

ହୋଇଥିବା ଦେବୀ ହେଉଛନ୍ତି ଦଶରଥଙ୍କ ମଧ୍ୟମପତ୍ନୀ, ଲକ୍ଷ୍ମଣ ଓ ଶତ୍ରୁଘ୍ନଙ୍କର ମାତା ସୁମିତ୍ରା । ଏ ହେଉଛନ୍ତି ମୋର ମାତା ମାନିନୀ କୈକେୟୀ, ଯାହାଙ୍କ ପାଇଁ ଦଶରଥଙ୍କର ମୃତ୍ୟୁ ହେଲା ଓ ରାମ ବନବାସ କଲେ; ଯେକି ଐଶ୍ୱର୍ଯ୍ୟ ଲୋଭରେ ଆର୍ଯ୍ୟସ୍ତ୍ରୀ ହେଲେ ମଧ୍ୟ ଅନାର୍ଯ୍ୟ ପରି ନୃଶଂସ କାର୍ଯ୍ୟ କରି ମୋର ସମସ୍ତ ଦୁଃଖର କାରଣ ହେଲେ ।

ଏହା ଶୁଣି ଭରଦ୍ୱାଜ କହିଲେ – ଭରତ, ତୁମର କୈକେୟୀଙ୍କୁ ଦୋଷ ଦେବା ଠିକ୍ ହେଉ ନାହିଁ । କାରଣ ରାମଙ୍କର ନିର୍ବାସନ ପରିଣାମରେ ସମସ୍ତଙ୍କର ସୁଖର କାରଣ ହେବ । ତାଙ୍କର ବନଗମନ ଦେବତା ଓ ଋଷିମାନଙ୍କର ମଙ୍ଗଳପାଇଁ ଉଦ୍ଦିଷ୍ଟ ।

ଭରଦ୍ୱାଜଙ୍କୁ ପ୍ରଣାମ ଓ ପ୍ରଦକ୍ଷିଣ କରି ବିପୁଳ ଦଳବଳ ସହ ଭରତ ଚିତ୍ରକୂଟ ଅଭିମୁଖରେ ପ୍ରସ୍ଥାନ କଲେ ।

## ୩୬ ॥ ରାମ ଭରତ ମିଳନ

ବହୁଦୂର ପଥ ଯିବା ପରେ ଭରତ ବଶିଷ୍ଠଙ୍କୁ କହିଲେ, ଭରଦ୍ୱାଜ ଯେଉଁ ସ୍ଥାନର ବର୍ଣ୍ଣନା କରିଥିଲେ, ବର୍ତ୍ତମାନ ଆମେ ସେହି ଅଭିଳଷିତ ସ୍ଥାନରେ ପହଞ୍ଚି ଗଲେଣି । ଏହି ସେ ଚିତ୍ରକୂଟ ପର୍ବତ ଓ ମନ୍ଦାକିନୀ ନଦୀ । ନୀଳମେଘ ସଦୃଶ ଦୂରସ୍ଥ ସେହି ବନ । ମେଘରୁ ବର୍ଷା ହେବା ପରି ପର୍ବତସ୍ଥ ବୃକ୍ଷମାନଙ୍କ ଉପରୁ ପୁଷ୍ପବୃଷ୍ଟି ହେଉଛି । କିନ୍ନରସେବିତ ଏହି ଅଞ୍ଚଳରେ ମୃଗମାନେ ଆମର ସେନାର ଭୟରେ ଦ୍ରୁତବେଗରେ ପଳାଇଯାଉଛନ୍ତି । ଚମଡ଼ାର ଢାଲ ଧରି ମୁକୁଟଧାରୀ ଦାକ୍ଷିଣାତ୍ୟର ବ୍ୟକ୍ତିମାନେ ଯେପରି ଦେଖାଯାନ୍ତି, ଶାଖାମଣ୍ଡିତ ଏହି ବୃକ୍ଷମାନେ ଶିଖରରେ କୁସୁମସ୍ତବକମାନ ଧାରଣ କରି ସେହିପରି ଦେଖା ଯାଉଛନ୍ତି । ଚତୁର୍ଦ୍ଦିଗରେ ଚିତ୍ରମୃଗ ଓ ମୟୂରମାନଙ୍କୁ ଦେଖିବାକୁ ମିଳୁଛି ।

ଭରତଙ୍କ ଦ୍ୱାରା ନିୟୋଜିତ ହୋଇ ଶସ୍ତ୍ରଧାରୀ ବୀର ପୁରୁଷମାନେ ଅରଣ୍ୟ ମଧ୍ୟରେ ବିଚରଣ କରି ଆସି ସମ୍ବାଦ ଦେଲେ, ଆମେ ଧୂମଶିଖା ଦେଖିବାକୁ ପାଇଛୁ । ରାମ, ଲକ୍ଷ୍ମଣ ନିଶ୍ଚୟ ଏଠାରେ ଅଛନ୍ତି । ଭରତ ସୈନ୍ୟମାନଙ୍କୁ ଆଉ ଆଗକୁ ନ ଯିବାପାଇଁ ଆଦେଶ ଦେଲେ । ସୁମନ୍ତ୍ର ଓ ଧୃତିଙ୍କ ସହିତ ଧୂମ ଦେଖାଯାଉଥିବା ସ୍ଥାନକୁ ଲକ୍ଷ୍ୟ କରି ସେ ଅଗ୍ରସର ହେଲେ । ଅବିଳମ୍ବେ ପରମପ୍ରିୟ ରାମଙ୍କ ସହିତ ତାଙ୍କର ସାକ୍ଷାତ ହେବ ଭାବି ସେ ଉତ୍‌ଫୁଲ୍ଲ ହେଲେ ।

ଏହି ସମୟରେ ରାମ ଚିତ୍ରକୂଟ ପର୍ବତ ଓ ବନର ସୌନ୍ଦର୍ଯ୍ୟରେ ଅଭିଭୂତ ହୋଇ ବୈଦେହୀଙ୍କୁ ଏହାର ନୈସର୍ଗିକ ଶୋଭା ବର୍ଣ୍ଣନା କରୁଥିଲେ । ସେ ସୀତାଙ୍କୁ କହୁଥିଲେ, ଏହି ରମଣୀୟ ଚିତ୍ରକୂଟ ପର୍ବତକୁ ଆସି ରାଜ୍ୟତ୍ୟାଗ ଓ ବନ୍ଧୁମାନଙ୍କର ଅଭାବ ମୋ ମନକୁ ବ୍ୟଥିତ କରୁ ନାହିଁ । ରକ୍ତ, ପୀତ, ଧବଳ ଓ ଇନ୍ଦ୍ରନୀଳ ପରି ପ୍ରଭାଯୁକ୍ତ ଏହି ପର୍ବତର ଶୃଙ୍ଗମାନଙ୍କୁ ଦେଖ, କିପରି ସୁନ୍ଦର ଦେଖାଯାଉଛି । ଏହାର ମୃଗ, ପଶୁ ଓ ବିହଙ୍ଗଗଣ, ମନୋହର ବୃକ୍ଷଲତା, ପ୍ରପାତ ଓ ନିର୍ଝରମାନ ଆମକୁ ଯେପରି ଆକୃଷ୍ଟ କରି ରଖିବାକୁ

ଚାହାନ୍ତି । ସୀତେ, ଏହି ବନବାସ ଦ୍ୱାରା ଆମର ଦୁଇଟି ଫଳ ଲାଭ ହୋଇଛି । ପ୍ରଥମତଃ, ପିତୃସତ୍ୟ ପାଳନ ଓ ଦ୍ୱିତୀୟ ଭରତ ରାଜା ହୋଇ ମୋର ଆନନ୍ଦ ବର୍ଦ୍ଧନ କରୁଛି । ରାଜର୍ଷିମାନେ ଯେଉଁ ବନବାସକୁ ଅମୃତତୁଲ୍ୟ ବୋଲି ବର୍ଣ୍ଣନା କରିଛନ୍ତି, ତାହା ବର୍ତ୍ତମାନ ମୁଁ ସତ୍ୟ ବୋଲି ଅନୁଭବ କରୁଛି ।

ସ୍ୱଚ୍ଛତୋୟା ମନ୍ଦାକିନୀ ନଦୀକୁ ଦେଖାଇ ରାମ ସୀତାଙ୍କୁ କହିଲେ – ବୈଦେହୀ, ପଦ୍ମ-ସାରସସମ୍ପୂର୍ଣ୍ଣ ମନ୍ଦାକିନୀ ନଦୀକୁ ଦେଖ । ପୁଷ୍ପିତ ବୃକ୍ଷମାନଙ୍କ ଦ୍ୱାରା ଶୋଭିତ ଏହାର ବାଲୁକାଯୁକ୍ତ ଘାଟ ଓ କୂଳମାନ କିପରି ସୁନ୍ଦର ଦେଖାଯାଉଛି ! ଏହାର ସ୍ୱଚ୍ଛ ଜଳରେ ବହୁ ଫୁଲସବୁ ପଡ଼ି ଭାସି ଆସୁଛି । ଚକ୍ରବାକ ପକ୍ଷୀ ମଧୁର ସ୍ୱରରେ ଡାକି କିପରି ନଦୀକୂଳରୁ ଉପରକୁ ଉଠିଯାଉଛନ୍ତି । ସୀତେ, ତୁମେ ଥିବାରୁ ଚିତ୍ରକୂଟ ଓ ମନ୍ଦାକିନୀ ମୋତେ ଆହୁରି ସୁନ୍ଦର ଓ ସୁଖକର ମନେହେଉଛି । ପ୍ରଚୁର ମଧୁ ଓ ଫଳମୂଳପୂର୍ଣ୍ଣ, ସିଂହ, ଗଜ, ମୃଗ ଓ ବାନର ସେବିତ ଏହି ରମଣୀୟ ବନ ଓ ପୁଣ୍ୟତୋୟା ନଦୀ କୂଳରେ ଆଜ୍ଞାବହ ଭ୍ରାତା ଲକ୍ଷ୍ମଣ ଓ ତୁମ ସହିତ ରହି ମୁଁ ଅଯୋଧ୍ୟାକୁ ସମ୍ପୂର୍ଣ୍ଣ ଭୁଲିଯାଇଛି । ରାଜ୍ୟ ବା ରାଜଭୋଗ ପାଇଁ ମୋର ଆଦୌ ସ୍ପୃହା ନାହିଁ ।

ସୀତାଙ୍କ ସହିତ ଏକ ଶିଳା ଉପରେ ବସି ରାମ ଚିତ୍ରକୂଟର ଶୋଭା ଉପଭୋଗ କରୁଥିବାବେଳେ ଦୂରରୁ ତୁମୁଳ କୋଳାହଳ ଶୁଣିପାରିଲେ । ବନ୍ୟହସ୍ତୀମାନେ ଦଳ ଦଳ ହୋଇ ପଳାଉଥିବାର ଦେଖାଗଲା । ରାମ ଲକ୍ଷ୍ମଣଙ୍କୁ ଡାକି କହିଲେ, ସୌମିତ୍ରି, ତୁମେ ଦେଖିଆସ କେଉଁଠାରୁ ଏପରି ତୁମୁଳ ଧ୍ୱନି ଶୁଣାଯାଉଛି । କୌଣସି ରାଜା ବା ରାଜପୁତ୍ର ମୃଗୟା ପାଇଁ ଦଳ ବଳ ଧରି ଆସି ନାହାନ୍ତି ତ ?

ଲକ୍ଷ୍ମଣ ଶୀଘ୍ର ଏକ କୁସୁମିତ ଶାଳବୃକ୍ଷ ଉପରେ ଚଢ଼ି ଚତୁର୍ଦ୍ଦିଗକୁ ଚାହିଁ କହିଲେ, ଚତୁରଙ୍ଗ ବଳଯୁକ୍ତ ଏକ ସୁସଜ୍ଜିତ ବିଶାଳ ସେନାକୁ ମୁଁ ଦେଖିପାରୁଛି । ଆପଣ ଶୀଘ୍ର ଆଶ୍ରମର ଅଗ୍ନି ନିଭାଇଦେଇ ଧନୁଶର ଓ କବଚରେ ସଜ୍ଜିତ ହୁଅନ୍ତୁ । ସୀତା କୁଟୀର ମଧ୍ୟରେ ପ୍ରବେଶ କରନ୍ତୁ । ରାମ କହିଲେ – ଲକ୍ଷ୍ମଣ, ତୁମେ ରଥଧ୍ୱଜାକୁ ଦେଖି ଏ ସେନା କାହାର, ତାହା ନିରୂପଣ କର । ଲକ୍ଷ୍ମଣ ଆହୁରି ଥରେ ନିରୀକ୍ଷଣ କରି କ୍ରୁଦ୍ଧ ହୋଇ କହିଲେ – ସ୍ପଷ୍ଟ ମନେହେଉଛି ଯେ ଭରତ ନିଷ୍କଣ୍ଟକ ରାଜ୍ୟଭୋଗ ଉଦ୍ଦେଶ୍ୟରେ ଆମକୁ ହତ୍ୟା କରିବାପାଇଁ ଆସୁଛି । ରଥରେ ଉଜ୍ଜ୍ୱଳ ସ୍କନ୍ଧବିଶିଷ୍ଟ କୋବିଦାର ଧ୍ୱଜା ମୁଁ ଦେଖିପାରୁଛି । ଭରତ ନିଶ୍ଚୟ ଆସୁଛି । ରାଘବ, ଆମମାନଙ୍କର ଶତ୍ରୁ ଭରତକୁ ବଧ କରିବାରେ ମୁଁ କୌଣସି ଦୋଷ ଦେଖିପାରୁ ନାହିଁ । କୈକେୟୀପୁତ୍ର ନିହତ ହେଲେ ନିର୍ବିଘ୍ନରେ ତୁମେ ଏହି ବସୁନ୍ଧରାକୁ ଭୋଗ କରିବ । ଅଗ୍ନି ତୃଣରାଶିକୁ ଦହନ କରିବା ପରି ଆଜି ବହୁଦିନରୁ ମୋର ସଞ୍ଚିତ କ୍ରୋଧର ଫଳସ୍ୱରୂପ କୈକେୟୀ, ତାର ଦାସଦାସୀ, ପରିଜନ ଓ ଅଯୋଧ୍ୟାର ସମସ୍ତ ସୈନ୍ୟ ସହିତ ମୁଁ ଭରତକୁ ନିହତ କରିବି । ବର୍ତ୍ତମାନ ଧନୁ, ଖଡ୍ଗ ଓ ଢାଲ ଧରି ଆମେ ପ୍ରସ୍ତୁତ ହୋଇଯିବା ଦରକାର ।

ରାମ କ୍ରୁଦ୍ଧ ଲକ୍ଷ୍ମଣଙ୍କୁ ଶାନ୍ତ ହେବାପାଇଁ ପରାମର୍ଶ ଦେଇ କହିଲେ, ଧାର୍ମିକ ଧନୁର୍ଦ୍ଧର ଭରତ ନିଜେ ଯଦି ଆସିଛନ୍ତି, ତା' ହେଲେ ଆମର ଧନୁ, ଢାଲ, ତରବାରି ଧରିବାର କି

ପ୍ରୟୋଜନ ଅଛି ? ସୀତା ଓ ତୁମ ସହିତ ମୁଁ ବନକୁ ନିର୍ବାସିତ ହୋଇଥିବାର ଶୁଣି ଶୋକାର୍ତ୍ତ ଭରତ ନିଶ୍ଚୟ ମୋତେ ଦେଖିବା ପାଇଁ ଆସିଛନ୍ତି । ଭରତ ପୂର୍ବେ କେବେ ତୁମର ବା ମୋର ଅନିଷ୍ଟ ଆଚରଣ କରି ନାହାନ୍ତି । ଭ୍ରାତୃବତ୍ସଳ ଭରତ ମୋର ପ୍ରାଣଠାରୁ ମଧ୍ୟ ପ୍ରିୟତର । ତାଙ୍କ ପ୍ରତି ନିଷ୍ଠୁର ବା ଅପ୍ରିୟ ବାକ୍ୟ ପ୍ରୟୋଗ କଲେ, ମୋତେ କୁହାଗଲା ବୋଲି ମୁଁ ମନେକରିବି । ମୁଁ ତ ପିତୃସତ୍ୟ ପାଳନ ପାଇଁ ବନକୁ ଆସିଛି । ମୋର ଏ ସସାଗରା ପୃଥିବୀ କ'ଣ ହେବ ? ଲକ୍ଷ୍ମଣ, ତୁମେ ଯଦି ରାଜ୍ୟ କାମନା କରୁଥାଅ, ତା' ହେଲେ ମୁଁ ଖାଲି କହିବାମାତ୍ରେ ଭରତ ତୁମକୁ ରାଜ୍ୟ ଦେଇଦେବ ।

ରାମଙ୍କ କଥା ଶୁଣି ଲକ୍ଷ୍ମଣ ଲଜ୍ଜାରେ ସଙ୍କୁଚିତ ହୋଇଗଲେ । ସେ କହିଲେ, ବୋଧହୁଏ, ପିତା ଦଶରଥ ନିଜେ ତୁମକୁ ଦେଖିବା ପାଇଁ ଆସିଛନ୍ତି । ଲକ୍ଷ୍ମଣଙ୍କର ସଙ୍କୋଚ ଦେଖି ରାମ କହିଲେ, ତାହା ହୋଇଥାଇପାରେ । ଆମ ଦୁହିଁଙ୍କର ବନବାସ ଦୁଃଖ କଥା ଚିନ୍ତା କରି ସେ ଆମକୁ ଫେରାଇ ନେବାପାଇଁ, ନଚେତ୍ ସୁକୁମାରୀ ଜନକନନ୍ଦିନୀଙ୍କୁ ଫେରାଇ ନେବାପାଇଁ ଆସିପାରିଥାନ୍ତି । କିନ୍ତୁ ଦୂରରୁ ପିତାଙ୍କର ଶତ୍ରୁଞ୍ଜୟ ନାମକ ବୃଦ୍ଧହସ୍ତୀକୁ ମୁଁ ଦେଖୁଥିଲେ ମଧ୍ୟ ହସ୍ତୀ ଉପରେ ତାଙ୍କର ଶ୍ୱେତ ରାଜଛତ୍ରକୁ ଦେଖିପାରୁ ନାହିଁ । ତେଣୁ ସେ ଆସିଥିବା ବିଷୟରେ ମୋ ମନରେ ସନ୍ଦେହ ହେଉଛି । ତୁମେ ଶୀଘ୍ର ଓହ୍ଲାଇଆସ ।

ଭରତ ତାଙ୍କର ରଥ, ଅଶ୍ୱ, ଗଜ, ପଦାତି ସମେତ ବିଶାଳ ଚତୁରଙ୍ଗ ବଳକୁ ଦୂରରେ ରଖି ପୁଷ୍ପିତବୃକ୍ଷମଣ୍ଡିତ ବନବୀଥିର ଦୃଶ୍ୟ ଉପଭୋଗ କରି ପଦବ୍ରଜରେ ଆସିବାକୁ ଲାଗିଲେ । ତାଙ୍କ ସଙ୍ଗରେ ଥିଲେ ଶତ୍ରୁଘ୍ନ ଓ ସୁମନ୍ତ । କିଛିବାଟ ଯିବାପରେ ସେମାନେ ଏକ ମନୋରମ ପର୍ଣ୍ଣଶାଳା ଦେଖିବାକୁ ପାଇଲେ । ପର୍ଣ୍ଣଶାଳା ଆଗରେ କାଠସବୁ ଭଙ୍ଗା ହୋଇ ଓ ଫୁଲ ତୋଳା ହୋଇ ରହିଛି । ଶୀତ ନିବାରଣ ପାଇଁ ମୃଗ ଓ ବନ୍ୟ ମହିଷମାନଙ୍କ ଗୋବରରେ ଘଷି ପରା ହୋଇ ରଖାଯାଇଛି । ବୃକ୍ଷମାନଙ୍କରେ ବଲ୍କଳ କନା ସବୁ ବନ୍ଧା ହୋଇ ରହିଛି । ପର୍ଣ୍ଣଶାଳାରେ ସୁବର୍ଣ୍ଣପୃଷ୍ଠ ଇନ୍ଦ୍ରଧନୁ ତୁଲ୍ୟ ବିଶାଳ କାର୍ମୁକ, ସୂର୍ଯ୍ୟ ରଶ୍ମିପରି ଦୀପ୍ତିମୟ ତୂଣୀର, ସ୍ୱର୍ଣ୍ଣମୟ କୋଷରେ ଖଡ୍‌ଗ, ସୁବର୍ଣ୍ଣବିନ୍ଦୁ ଚିତ୍ରିତ ଚର୍ମନିର୍ମିତ ଢାଲ ଆଦି ଶୋଭା ପାଉଛି । ପର୍ଣ୍ଣକୁଟୀର ମଧ୍ୟରେ ଅଗ୍ନିରେ ଦୀପ୍ତିମନ୍ତ, ପବିତ୍ର ଓ ପ୍ରଶସ୍ତ ଯଜ୍ଞବେଦୀ ନିର୍ମିତ ହୋଇଛି । ରାମଙ୍କର ପର୍ଣ୍ଣଶାଳା ଦେଖି ପୂର୍ବରୁ ଭରତ ସ୍ଥିର କରିଥିଲେ ଯେ ସେ ରାମଙ୍କୁ ଫେରାଇଆଣିବା ପାଇଁ ସୀତା ଓ ତାଙ୍କର ଗୋଡ଼ତଳେ ପଡ଼ିଯିବେ । ବର୍ତ୍ତମାନ କୁଟୀରରେ ରାମଙ୍କୁ ଦେଖି ତାଙ୍କର ଶୋକୋଚ୍ଛ୍ୱାସ ବଢ଼ିବାକୁ ଲାଗିଲା ।

ଭରତ ଦେଖିଲେ, ଅଗ୍ନିସମ ତେଜସ୍ୱୀ ଜଟା-ବଲ୍କଳ-କୃଷ୍ଣାଜିନଧାରୀ ପୁଣ୍ଡରୀକାକ୍ଷ ମହାବାହୁ ରାମ ଭୂତଳରେ ଏକ ତୃଣାଚ୍ଛାଦିତ ଆସନରେ ବସିଛନ୍ତି । ସୀତା ଓ ଲକ୍ଷ୍ମଣ ତାଙ୍କ ପାଖରେ ବସି ରହିଛନ୍ତି । ତାଙ୍କୁ ଦେଖି ଦୁଃଖାର୍ତ୍ତ କୈକେୟୀଙ୍କର ପୁତ୍ର ଦଉଡ଼ି ଯାଇ ବାଷ୍ପଗଦ୍‌ଗଦ ସ୍ୱରରେ କହିଲେ, ରାଜସଭାରେ ପ୍ରଜାମାନେ ଯାହାଙ୍କର ଉପାସନା କରନ୍ତି, ବର୍ତ୍ତମାନ ମୋର ସେହି ଅଗ୍ରଜ ବନ୍ୟମୃଗମାନଙ୍କ ସହିତ ବାସ କରୁଛନ୍ତି । ଯାହାଙ୍କର ବ୍ୟବହାର ପାଇଁ ବହୁ ମହାର୍ଘ୍ୟ ବସ୍ତ୍ର ଆସୁଥିଲା, ଯାହାଙ୍କ ଶରୀର ସୁଗନ୍ଧ ଚନ୍ଦନରେ ଚର୍ଚ୍ଚିତ

ହେଉଥିଲା, ବର୍ତ୍ତମାନ ସେ ଜଟାବଳ୍କଳ ଧାରଣ କରି ଧୂଳିଧୂସରିତ ହୋଇ ବସିଛନ୍ତି । ମୋ ପାଇଁ ରାମ ଆଜି କେତେ ଦୁଃଖ ନ ପାଉଛନ୍ତି ! ତେଣୁ ମୋର ଏହି ଲୋକନିନ୍ଦିତ ନୃଶଂସ ଜୀବନକୁ ଧିକ୍ । ଏହିପରି ବିଳାପ କରି 'ଆର୍ଯ୍ୟ' ବୋଲି ରାମଙ୍କୁ ସମ୍ବୋଧନ କରି ଆଉ କିଛି କହିପାରିଲେ ନାହିଁ ଏବଂ ତାଙ୍କ ପାଦତଳେ ପଡ଼ିଗଲେ । ଶତ୍ରୁଘ୍ନ ମଧ୍ୟ ରୋଦନ କରି ରାମଙ୍କର ଚରଣ ବନ୍ଦନା କଲେ ।

ଭରତ ଓ ଶତ୍ରୁଘ୍ନଙ୍କୁ ଆଲିଙ୍ଗନ କରି ରାମ ନୀରବରେ ଅଶ୍ରୁବର୍ଷଣ କରିବାକୁ ଲାଗିଲେ ।

ଜଟାଧାରୀ ବିଷଣ୍ଣବଦନ ଓ ଶୋକରେ ବିବର୍ଣ୍ଣ ଭରତଙ୍କୁ କୋଳ କରି ରାମ ପଚାରିଲେ – ବତ୍ସ, ତୁମେ କାହିଁକି ଏ ଘୋର ବନ ମଧ୍ୟକୁ ଆସିଲ ? ପିତା କିପରି ଅଛନ୍ତି ? ସେ ଜୀବିତ ଥାଉଁ ଥାଉଁ ତାଙ୍କର ସେବା-ଶୁଶ୍ରୂଷା ନ କରି ତୁମର ବନକୁ ଆସିବା ଠିକ୍ ହୋଇ ନାହିଁ । ମାତା କୌଶଲ୍ୟା, ସୁମିତ୍ରା ଓ କୈକେୟୀ କିପରି ଅଛନ୍ତି ? କୁଳଗୁରୁ ବଶିଷ୍ଠ ଏବଂ ଅନ୍ୟାନ୍ୟ ଗୁରୁଜନ, ଶାସ୍ତ୍ରଜ୍ଞ ବ୍ରାହ୍ମଣ ଓ ଋତ୍ୱିକମାନେ, ଅଯୋଧ୍ୟାର ପ୍ରଜାଗଣ କିପରି ଅଛନ୍ତି ? ତୁମେ ରାଜଧର୍ମ ଅନୁସାରେ ରାଜ୍ୟଶାସନ କରୁଛ ତ ?

ଭରତ କହିଲେ – ରାଘବ, ମୁଁ ମାତୁଳାଳୟ କେକୟ ରାଜ୍ୟରେ ଥିବାବେଳେ ଏବଂ ତୁମେ ଦଣ୍ଡକାରଣ୍ୟ ଉଦ୍ଦେଶ୍ୟରେ ବନବାସକୁ ଆସିଥିବା ସମୟରେ ଅତିଶୟ ଶୋକାର୍ତ୍ତ ହୋଇ ପିତା ସ୍ୱର୍ଗବାସ କଲେ । ମୁଁ ଓ ଶତ୍ରୁଘ୍ନ ପିତାଙ୍କର ଉଦକକ୍ରିୟା ଶେଷ କରିଛୁ । ତୁମେ ପିତାଙ୍କର ଜ୍ୟେଷ୍ଠ ଏବଂ ପ୍ରିୟତମ ପୁତ୍ର । ତୁମ ପ୍ରତି ତାଙ୍କର ଚିତ୍ତ ଏତେ ଅନୁରକ୍ତ ଥିଲା ଯେ ତୁମ କଥା ଚିନ୍ତା କରି କରି ସେ ଦେହତ୍ୟାଗ କଲେ । ପ୍ରିୟଜନ-ଦତ୍ତ ପିଣ୍ଡୋଦକ ପିତୃଲୋକରେ ଅକ୍ଷୟ ହୋଇଥିବା ଯୋଗୁଁ ତୁମେ ପିତାଙ୍କ ଉଦ୍ଦେଶ୍ୟରେ ପିଣ୍ଡୋଦକ ଦାନ କର । ପୁରୁଷୋତ୍ତମ, ତୁମେ ରାଜଧର୍ମ କଥା ପଚାରିଲ । ଜ୍ୟେଷ୍ଠପୁତ୍ର ଥାଉ ଥାଉ କନିଷ୍ଠ କେବେ ରାଜା ହୋଇଛି କି ? ତେଣୁ ଇକ୍ଷ୍ୱାକୁବଂଶର କଲ୍ୟାଣ ପାଇଁ ଅଯୋଧ୍ୟା ଫେରିଯାଇ ରାଜାରୂପେ ଅଭିଷିକ୍ତ ହୁଅ ।

ପିତାଙ୍କ ମୃତ୍ୟୁସମ୍ବାଦ ପାଇ ରାମ ଶୋକରେ ଅଚେତନ ହୋଇଗଲେ । କିଛି ସମୟ ପରେ ସଂଜ୍ଞା ଲାଭ କରି କହିଲେ, ପିତା ଚାଲିଯିବା ପରେ ଦଶରଥବିହୀନ ଅଯୋଧ୍ୟାକୁ ଯିବା ମୋର ଲୋଡ଼ା ନାହିଁ । ମୋର ଜନ୍ମ ବୃଥା, ମୁଁ ପିତାଙ୍କର ସତ୍କାର କରିପାରିଲି ନାହିଁ । ମୁଁ ଆଉ ସେହି ସ୍ନେହଶୀଳ ପିତାଙ୍କର କର୍ଣ୍ଣସୁଖକର ମନୋହର କଥା ଶୁଣିବାକୁ ପାଇବି ନାହିଁ । ଭରତ, ତୁମେ ଧନ୍ୟ, ତୁମେ ପିତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ଶେଷ କଲ । ରାମ ଚନ୍ଦ୍ରାନନା ସୀତାଙ୍କୁ କହିଲେ, ତୁମର ଶ୍ୱଶୁର ଦଶରଥ ଆଉ ନାହାନ୍ତି । ଲକ୍ଷ୍ମଣଙ୍କୁ କହିଲେ, ଲକ୍ଷ୍ମଣ, ତୁମେ ପିତୃହୀନ ହେଲ । ସୀତା ଏବଂ ଲକ୍ଷ୍ମଣ କରୁଣ ଭାବରେ ବିଳାପ କଲେ । ରାମ ନିଜର ଲୋତକ ସମ୍ବରଣ କରି ଉଭୟଙ୍କୁ ସାନ୍ତ୍ୱନା ଦେଇ କହିଲେ, ତୁମେ ଶୀଘ୍ର ଇଙ୍ଗୁଦୀ ଚୂର୍ଣ୍ଣରେ ପିଠଉ ପ୍ରସ୍ତୁତ କର ଏବଂ ମୋର ଉତ୍ତରୀୟ ପାଇଁ ବଳ୍କଳ ଆଣ । ମୁଁ ପିତାଙ୍କର ତର୍ପଣକ୍ରିୟା କରିବି ।

ମନ୍ଦାକିନୀ ନଦୀର ଏକ କର୍ଦ୍ଦମଶୂନ୍ୟ ସୁନ୍ଦର ତୁଠରେ ନଦୀ ଭିତରକୁ ଯାଇ ରାମ ସ୍ୱର୍ଗତ ପିତାଙ୍କ ଉଦ୍ଦେଶ୍ୟରେ ସଜଳ ନୟନରେ ଜଳାଞ୍ଜଳି ଦାନ କରି କହିଲେ, ହେ ପିତୃଲୋକଗତ

ନରଶାର୍ଦ୍ଦୁଳ, ମୋର ପ୍ରଦତ୍ତ ଜଳ ଗ୍ରହଣ କର । ତାହା ସ୍ୱର୍ଗଲୋକରେ ତୁମପାଇଁ ଅକ୍ଷୟ ହୋଇ ରହୁ । କୁଶ ଆସନରେ ବସି ବରକୋଳିଯୁକ୍ତ ଇଙ୍ଗୁଦୀ ପିଣ୍ଡ ଦାନ କରି, କହିଲେ – ମହାରାଜ, ବର୍ତ୍ତମାନ ଏହି ବନରେ ଏହାହିଁ ଆମର ଖାଦ୍ୟ । ତୁମେ ତାହା ଆନନ୍ଦରେ ଭୋଜନ କର ।

ଭରତଙ୍କ ସହିତ ଯେଉଁ ବିଶାଳ ସେନା, ଅନୁଚରବର୍ଗ ଓ ପ୍ରଜାମାନେ ଆସିଥିଲେ, ସେମାନେ ରାମଙ୍କୁ ଦେଖି ଶୋକାର୍ତ୍ତ ହେଲେ । ରାମ କାହାରିକୁ ଆଲିଙ୍ଗନ କରି ବା ଅଭିବାଦନ କରି ସମସ୍ତଙ୍କର କୁଶଳ ଜିଜ୍ଞାସା କଲେ ।

ବଶିଷ୍ଠ ରାଜମହିଷୀମାନଙ୍କୁ ଅଗ୍ରଗାମୀ କରି ରାମଙ୍କୁ ଦେଖିବାକୁ ଗଲେ । ମନ୍ଦାକିନୀ ନଦୀ କୂଳରେ ରାମ ଲକ୍ଷ୍ମଣ ବ୍ୟବହାର କରୁଥିବା ଘାଟଦେଖି କୌଶଲ୍ୟା ସୁମିତ୍ରାଙ୍କୁ କହିଲେ, ଏହି ହେଉଛି ବନବାସୀ ଅନାଥ ରାମ ଲକ୍ଷ୍ମଣ ସୀତାଙ୍କର ଘାଟ । ଏହିଠାରୁ ତୁମର ପୁତ୍ର ରାମ ପାଇଁ ଜଳ ନେଇଯାଏ । ଏହି ଯେଉଁ ଇଙ୍ଗୁଦୀପିଣ୍ଡ ଦେଖୁଛ, ତାହା ପିତାଙ୍କ ଉଦ୍ଦେଶ୍ୟରେ ରାମ ପିଣ୍ଡଦାନ କରିଛି । ଯେଉଁ ଦଶରଥ ସସାଗରା ମେଦିନୀ ଭୋଗ କରୁଥିଲେ, ବର୍ତ୍ତମାନ କ'ଣ ସେ ଇଙ୍ଗୁଦୀପିଣ୍ଡ ଭୋଜନ କରିବେ ?

ମହିଷୀମାନେ କୁଟୀରକୁ ଆସି ରାମଙ୍କୁ ଦେଖି କାନ୍ଦିବାକୁ ଲାଗିଲେ । ରାମ, ଲକ୍ଷ୍ମଣ ଓ ସୀତା ମାତାମାନଙ୍କର ଚରଣ ବନ୍ଦନା କଲେ । ସାଶ୍ରୁନୟନା ସୀତାଙ୍କୁ ସ୍ୱକନ୍ୟାତୁଲ୍ୟ ଆଲିଙ୍ଗନ କରି କୌଶଲ୍ୟା କହିଲେ – ବିଦେହରାଜାର କନ୍ୟା, ଦଶରଥଙ୍କ ବୋହୂ ଓ ରାମର ପତ୍ନୀ ହୋଇ ତୁ କାହିଁକି ଏ ବିଜନ ବନରେ ଦୁଃଖ ଭୋଗ କରୁଛୁ ? ବୈଦେହୀ, ଆତପରେ ଶୁଷ୍କ ପଦ୍ମ, ଧୂଳିରେ ମଳିନ କାଞ୍ଚନ ଓ ମେଘରେ ଆଚ୍ଛନ୍ନ ଚନ୍ଦ୍ରମାପରି ତୋର ମୁହଁକୁ ଦେଖି ଶୋକରେ ମୋର ହୃଦୟ ଦଗ୍ଧ ହୋଇଯାଉଛି ।

ରାମ କୁଳପୁରୋହିତ ବଶିଷ୍ଠଙ୍କର ପଦ ବନ୍ଦନା କରି ତାଙ୍କ ପାଖରେ ବସିଲେ ଏବଂ ଭରତ, ତାଙ୍କର ମନ୍ତ୍ରୀ, ସୈନିକ ଓ ପୁରବାସୀଗଣ ସେମାନଙ୍କ ପଛରେ ବସିଗଲେ । ଭରତ ରାମଙ୍କୁ କ'ଣ କହିବାପାଇଁ ଯାଉଛନ୍ତି, ତାହା ଶୁଣିବା ପାଇଁ ସମସ୍ତେ ଉଦ୍‌ବିଗ୍ନ ହେଲେ ।

## ୩୭ ॥ ମୁଁ ରାଜା ନୁହେଁ, ରାଜ୍ୟ ରାମଙ୍କର

ସେ ଜଟା ବଲ୍କଳ ଓ ମୃଗଚର୍ମ ଧାରଣ କରି ରାଜ୍ୟ ଛାଡ଼ି କାହିଁକି ଏଠାକୁ ଆସିଛନ୍ତି ବୋଲି ସମସ୍ତଙ୍କ ଆଗରେ ପୁଣି ଥରେ ରାମ ପଚାରିବାରୁ ଭରତ କହିଲେ – ମହାବାହୁ, ପିତାଙ୍କ ମୃତ୍ୟୁସମ୍ବାଦ ଓ ମୃତ୍ୟୁର କାରଣ ମୁଁ ଜଣାଇଛି । ମାତା କୈକେୟୀଙ୍କ ଅନୁରୋଧରେ ପିତା ଏହି ଅକୀର୍ତ୍ତିକର ମହାପାପ କଲେ । ତାର ଏହି ଫଳ ହେଲା ଯେ ରାଜ୍ୟଲାଭ ପରିବର୍ତ୍ତେ ମୋର ଜନନୀ ବୈଧବ୍ୟ ଦୁଃଖରେ ଶୋକାକୁଳା ହୋଇ ନରକ ଯନ୍ତ୍ରଣା ଭୋଗ କରୁଛନ୍ତି । କିନ୍ତୁ ଆଜି ମୁଁ, ମୋର ସମସ୍ତ ବିଧବା ମାତା ଓ ପ୍ରଜାମାନେ

ଆପଣଙ୍କ ପାଖକୁ ଆସିଛୁ । ଆପଣ ଆମକୁ ଅନୁଗ୍ରହ କରନ୍ତୁ । ମାନଦ, ଆପଣ ଜ୍ୟେଷ୍ଠ, ତେଣୁ ଅଯୋଧ୍ୟା ରାଜ୍ୟ ଆପଣଙ୍କର । ନିର୍ମଳ ଚନ୍ଦ୍ରମା ନ ଥିଲେ ଶାରଦୀୟ ରଜନୀ ଯେପରି ଅନାଥ ଦେଖାଯାଏ, ଆପଣଙ୍କ ବିନା ଏ ସସାଗରା ଧରା ସେହିପରି ହୋଇଛି । ମୁଁ ଆପଣଙ୍କର ଭ୍ରାତା, ଶିଷ୍ୟ ଏବଂ ଦାସ । ମୁଁ ମନ୍ତ୍ରୀମାନଙ୍କ ସହିତ ନତମସ୍ତକରେ ପ୍ରାର୍ଥନା କରୁଛି, ସମଗ୍ର ପ୍ରଜାବର୍ଗ ଆପଣଙ୍କୁ ପ୍ରାର୍ଥନା କରୁଛନ୍ତି । ଆପଣ ଆମମାନଙ୍କର ନିବେଦନ ଗ୍ରହଣ କରନ୍ତୁ, ଅବଜ୍ଞା କରନ୍ତୁ ନାହିଁ । ସଜଳନୟନ ଭରତ ପୁଣି ଥରେ ରାମଙ୍କର ପଦ ବନ୍ଦନା କରି କୃତାଞ୍ଜଳି ହୋଇ ଠିଆ ହେଲେ ।

ରାମ କହିଲେ – ଭରତ, ତୁମର ଅଣୁମାତ୍ର ଦୋଷ ନାହିଁ । ତୁମର ମାତା କୈକେୟୀଙ୍କୁ ମଧ୍ୟ ତୁମେ ଦୋଷ ଦେବା ଉଚିତ ନୁହେଁ । ସତ୍‌କୁଳରେ ଜାତ ହୋଇ ପିତାଙ୍କର ଆଦେଶ ପାଳନ ଆମର ଏକାନ୍ତ କର୍ତ୍ତବ୍ୟ । ପିତାଙ୍କର ପୁତ୍ର ଉପରେ ଅଧିକାର ଅଛି, ସେ ତାଙ୍କୁ ରାଜା କରିପାରନ୍ତି କିମ୍ବା ବଳ୍କଳ ଓ ମୃଗଚର୍ମ ପିନ୍ଧାଇ ବନକୁ ପଠାଇ ଦେଇପାରନ୍ତି । ପୁଣି ପିତାଙ୍କୁ ଯେତିକି ସମ୍ମାନ ଦେବା ଉଚିତ, ମାତାଙ୍କୁ ମଧ୍ୟ ସେହିପରି ସମ୍ମାନ ଦେବା ଦରକାର । ପିତା ଦଶରଥ ଓ ମାତା କୈକେୟୀ ମୋତେ ବନକୁ ଯିବାପାଇଁ ଆଦେଶ ଦେଲେ ଓ ତୁମକୁ ଅଯୋଧ୍ୟାର ରାଜପଦରେ ବସାଇବା ପାଇଁ ସ୍ଥିର କଲେ । ପିତା ଓ ମାତା ଆମର ଗୁରୁ । ରାଜା ଦଶରଥ ସବୁ ଲୋକଙ୍କ ସମ୍ମୁଖରେ ମୋର ଓ ତୁମର କ'ଣ କର୍ତ୍ତବ୍ୟ ତାହା ବାଣ୍ଟି ଦେଇଛନ୍ତି । ତଦନୁଯାୟୀ ମୁଁ ଚଉଦବର୍ଷ ବନବାସ କରିବି ଏବଂ ତୁମେ ରାଜ୍ୟଭୋଗ କରିବ । ଏହା କେବେହେଲେ ଅନ୍ୟଥା ହେବ ନାହିଁ । ପିତାଙ୍କ ଆଦେଶଙ୍କୁ ଲଂଘନ କରି ସମସ୍ତ ଜଗତର ଅକ୍ଷୟ ପ୍ରଭୁତ୍ୱ ମୁଁ କାମନା କରେ ନାହିଁ ।

ଭରତ ବିନୀତ ଭାବରେ କହିଲେ, ମାତା ରାଜ୍ୟ ଲାଭ କରି ମୋତେ ଦାନ କରିଛନ୍ତି । ବର୍ତ୍ତମାନ ସେ ରାଜ୍ୟ ମୁଁ ତୁମକୁ ଦେଉଛି । ତୁମେ ସେହି ନିଷ୍କଣ୍ଟକ ରାଜ୍ୟ ଭୋଗକର । ବର୍ଷାକାଳୀନ ପ୍ରବଳ ଜଳସ୍ରୋତରେ ଭଗ୍ନସେତୁ ପରି ବର୍ତ୍ତମାନ ଏହି ଅଯୋଧ୍ୟାକୁ ତୁମଛଡ଼ା କେହି ରକ୍ଷା କରିପାରିବେ ନାହିଁ । ଗର୍ଦ୍ଦଭ କେବେ ଅଶ୍ୱ ବା ଅନ୍ୟ ପକ୍ଷୀ କେବେ ଗରୁଡ଼ ହୋଇପାରିବ ନାହିଁ । ମୁଁ କେବେ ତୁମର ସ୍ଥାନ ନେଇପାରିବି ନାହିଁ । ବହୁ ପରିଶ୍ରମରେ ରୋପିତ ଓ ବର୍ଦ୍ଧିତ ମହାବୃକ୍ଷ ପୁଷ୍ପିତ ହୋଇ ଫଳପ୍ରସୂ ନ ହେଲେ, ତାହା ଯେପରି ଦୁଃଖର କାରଣ ହୋଇଥାଏ, ସମଗ୍ର ସଂସାରକୁ ପାଳନ କରିବାକୁ ସମର୍ଥ ହୋଇ ତୁମେ ଯଦି ଆମକୁ ପାଳନ ନ କର, ଆମର ଠିକ୍ ସେଇ ଅବସ୍ଥା ହେବ । କାକୁତ୍ସ୍ଥ, ତୁମେ ରାଜା ହୋଇ ସୂର୍ଯ୍ୟପରି ପ୍ରଭା ବିକିରଣ କର ଓ ଚତୁର୍ଦ୍ଦିଗରେ ଆନନ୍ଦ ଓ ମଙ୍ଗଳ ଧ୍ୱନି ଶୁଣାଯାଉ ।

ଭରତଙ୍କର କଥା ଶୁଣି ଉପସ୍ଥିତ ପୁରବାସୀମାନେ ସାଧୁବାଦ କଲେ । ରାମ ଉତ୍ତର ଦେଲେ – ଭରତ, ଜୀବ ପରାଧୀନ । କାଳର ବଶବର୍ତ୍ତୀ । ରାଜ୍ୟ, ସମ୍ପଦ, ଐଶ୍ୱର୍ଯ୍ୟ ଚିରସ୍ଥାୟୀ ନୁହେଁ । ସଞ୍ଚିତ ଦ୍ରବ୍ୟର କ୍ଷୟ, ଉନ୍ନତିର ପତନ, ମିଳନ ଶେଷରେ ବିଚ୍ଛେଦ ଓ ଜୀବନର ପରିଣତି ମୃତ୍ୟୁ । ଧର୍ମ ହିଁ କେବଳ ଚିରସ୍ଥାୟୀ । ତେଣୁ ଧର୍ମପଥରୁ ମୁଁ ବିଚ୍ୟୁତ ହେବି ନାହିଁ । ପିତାଙ୍କର ଆଦେଶ ମୋର ଓ ତୁମର ଉଭୟଙ୍କର ପାଳନୀୟ ।

ଭରତଙ୍କର ମନ ଏଥିରେ ମାନିଲା ନାହିଁ । ଭରତ କହିଲେ – ଅରିନ୍ଦମ, ତୁମ ପରି ଏ ପୃଥିବୀରେ କେହି ହୋଇପାରିବେ ନାହିଁ । ଦୁଃଖରେ ତୁମେ ବ୍ୟଥିତ ନୁହଁ କି ସୁଖରେ ଆନନ୍ଦିତ ନୁହଁ । ଦୁଃଖ ଯେତେ ଅସହ୍ୟ ହେଲ ମଧ ତୁମକୁ ଅଭିଭୂତ କରିପାରିବ ନାହିଁ । ତୁମେ ସତ୍ୟନିଷ୍ଠ ବୁଦ୍ଧିମାନ, ସର୍ବଦର୍ଶୀ । ମୁଁ ବୟସ, ଜ୍ଞାନ, ବୁଦ୍ଧିରେ କନିଷ୍ଠ ହେଲେ ମଧ ମୋର ନିବେଦନ, ତୁମେ ଧର୍ମବୁଦ୍ଧିରେ ରାଜା ଦଶରଥଙ୍କ କାର୍ଯ୍ୟର ବିଚାର କର । ଅବଶ୍ୟ ପିତା ଆମର ଗୁରୁ ଓ ଦେବତୁଲ୍ୟ । ସଭା ମଧରେ ମୁଁ ତାଙ୍କର ନିନ୍ଦା କରୁ ନାହିଁ । କିନ୍ତୁ କେଉଁ ଧର୍ମଜ୍ଞ ବ୍ୟକ୍ତି ସ୍ତ୍ରୀ କଥାରେ ପଡ଼ି ଏପରି ଧର୍ମାର୍ଥହୀନ ପାପକାର୍ଯ୍ୟ କରିପାରେ ? ପ୍ରବାଦ ଅଛି ଯେ ଅନ୍ତିମ କାଳ ଉପସ୍ଥିତ ହେଲେ ଲୋକର ବୁଦ୍ଧି ବାମ ହୋଇଯାଏ । ରାଜାଙ୍କର କାର୍ଯ୍ୟ ତାହାହିଁ ପ୍ରମାଣିତ କରୁଛି । ତେଣୁ ସୁପୁତ୍ରର କର୍ତ୍ତବ୍ୟ ପିତାର ଅଧର୍ମ କାର୍ଯ୍ୟକୁ ସମର୍ଥନ କରିବା ନୁହେଁ, ତାର ସଂଶୋଧନ କରି ଧର୍ମକୁ ପ୍ରତିଷ୍ଠା କରିବା । କାହିଁ କ୍ଷତ୍ରିୟ ଧର୍ମ ଓ ପ୍ରଜା ପାଳନ, କାହିଁ ଜଟାଧାରଣ ଓ ଅରଣ୍ୟବାସ ? ରାଜ୍ୟ ଓ ପ୍ରଜାମାନଙ୍କୁ ଛାଡ଼ିଦେଇ ବୃଦ୍ଧ ବୟସରେ ଯେଉଁ ବାନପ୍ରସ୍ଥ ଆଚରଣ କରାଯାଏ, ବର୍ତ୍ତମାନ ତୁମେ ତାହାଁହିଁ କରିବାକୁ ଯାଉଛ । ପୁଣି ମୁଁ କିଏ, ତୁମର ରାଜ୍ୟ ଶାସନ କରିବି ? ତୁମଠାରୁ ବିଛିନ୍ନ ହୋଇ ତ ମୁଁ ଜୀବନ ଧାରଣ କରିପାରିବି ନାହିଁ । ଧର୍ମଜ୍ଞ, ତୁମେ ସ୍ୱଧର୍ମ ରକ୍ଷାପୂର୍ବକ ଅଯୋଧ୍ୟାକୁ ଫେରିଯାଇ ରାଜା ରୂପେ ପ୍ରଜାପାଳନ କର । ତଦ୍ଦ୍ୱାରା ତୁମେ ଦେବ, ଋଷି, ପିତୃଋଣ ପରିଶୋଧ କରିପାରିବ । ପୁରୁଷୋତ୍ତମ, ମୁଁ ନତମସ୍ତକରେ ପ୍ରାର୍ଥନା କରୁଛି, ତୁମେ ମୋର ଜନନୀଙ୍କର କଳଙ୍କ କ୍ଷାଳନ କର ଓ ପିତାଙ୍କୁ ତାଙ୍କର କୃତ ପାପରୁ ମୁକ୍ତ କର । କରୁଣାମୟ, ତୁମେ ମୋ ପ୍ରତି ଏବଂ ସମସ୍ତ ଆତ୍ମୀୟସ୍ୱଜନ ଓ ପ୍ରଜାମାନଙ୍କ ପ୍ରତି ଦୟାକର । ଏହିପରି ଭରତ କାତର ଭାବରେ ରାମଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ ।

ରାମଙ୍କର ସଙ୍କଳ୍ପ ବଦଳିଲା ନାହିଁ । ସେ କହିଲେ – ଭରତ, ତୁମେ ଦଶରଥ ଓ କୈକେୟୀଙ୍କର ପୁତ୍ର । ତେଣୁ ତୁମେ ଯାହା କହିଛ ଯଥାର୍ଥ । କିନ୍ତୁ ମହାରାଜା ଦଶରଥ ଯଶସ୍ୱିନୀ କୈକେୟୀଙ୍କୁ ଦୁଇଟି ବର ଦେବାପାଇଁ ବହୁ ପୂର୍ବରୁ ସତ୍ୟ କରିଥିଲେ । ଯେଉଁ କାରଣରୁ ହେଉନା କାହିଁକି ତାହା ପିତାଙ୍କର ସତ୍ୟ । ପିତୃସତ୍ୟ ରକ୍ଷା କରିବା ପୁତ୍ରର କର୍ତ୍ତବ୍ୟ । ମୁଁ ସେହି ସତ୍ୟ ରକ୍ଷା କରିବା ନିମନ୍ତେ ଲକ୍ଷ୍ମଣ ଓ ସୀତାଙ୍କୁ ଧରି ଏହି ନିର୍ଜନ ବନକୁ ଆଶ୍ରୟ କରିଛି । ତେଣୁ ତୁମର ବର୍ତ୍ତମାନ କର୍ତ୍ତବ୍ୟ ତୁମେ କାହିଁକି ପାଳନ କରୁ ନାହଁ ? ତୁମେ ଅଯୋଧ୍ୟାରେ ରାଜପଣ କରି ପିତୃସତ୍ୟ ରକ୍ଷା କର ଓ ମାତାଙ୍କୁ ଆନନ୍ଦିତ କର । ରାମ ପୁଣି ସହାସ୍ୟ ବଦନରେ କହିଲେ – ଭରତ, ତୁମେ ଜନଗଣଙ୍କର ରାଜା ହୁଅ । ମୁଁ ବନ୍ୟପଶୁମାନଙ୍କର ରାଜାଧିରାଜ ହେଉଛି । ତୁମେ ହୃଷ୍ଟଚିତ୍ତରେ ଅଯୋଧ୍ୟା ଫେରିଯାଅ । ମୁଁ ଦଣ୍ଡକାରଣ୍ୟରେ ପ୍ରବେଶ କରିବି । ତୁମର ରାଜଛତ୍ର । ମୋର ସୁଶୀତଳ ବୃକ୍ଷଛାୟା । ଶତ୍ରୁଘ୍ନ ତୁମ ସହିତ ଓ ଲକ୍ଷ୍ମଣ ମୋ ସହିତ ରହିବେ । ଏହିପରି ଆମେ ଦଶରଥଙ୍କ ପୁତ୍ରମାନେ ନିଜ ନିଜର କର୍ତ୍ତବ୍ୟ ବାଣ୍ଟିନେବା ।

ଦ୍ୱିଜୋତ୍ତମ ଜାବାଳି ରାମ ଓ ଭରତଙ୍କ ମଧ୍ୟରେ ଆଲୋଚନା ହେଉଥିବାବେଳେ ରାମଙ୍କୁ ପ୍ରଭାବିତ କରିବାପାଇଁ କହିଲେ, ରାଘବ ! ଲୋକ ସଂସାରକୁ ଏକୁଟିଆ ଆସେ ଏବଂ ଏକୁଟିଆ ଯାଏ । ତା' ସହିତ କେହି ଯାଆନ୍ତି ନାହିଁ । ତେଣୁ ଇଏ ମୋର ପିତା, ଇଏ ମୋର ମାତା ବୋଲି ବିଚାର କରି କାହାରି ପ୍ରତି ଆସକ୍ତ ହେବା ଉଚିତ ନୁହେଁ । ଦୂରପଥ ଯିବାକୁ ହେଲେ ପଥିକକୁ କେଉଁଠି କେଉଁଠି ବସାଘରେ ରହିବାକୁ ପଡ଼େ । ସେହିପରି ମନୁଷ୍ୟର ପିତା, ମାତା, ଘର, ଦ୍ୱାର, ଧନ, ସମ୍ପତ୍ତି ଅସ୍ଥାୟୀ ବସାଘର ପରି । ଦଶରଥ ତୁମର କେହି ନୁହଁ କି ତୁମେ ତାଙ୍କର କେହି ନୁହଁ । ତାଙ୍କର ଗନ୍ତବ୍ୟ ସ୍ଥାନକୁ ସେ ଯାଇଛନ୍ତି । ପିତୃଶ୍ରାଦ୍ଧରେ ପିତାଙ୍କ ପାଇଁ ଅନ୍ନଭୋଜନ ପ୍ରସ୍ତୁତ କରାଯାଏ । କିନ୍ତୁ ମୃତ ବ୍ୟକ୍ତି କିପରି ଭୋଜନ କରିବ ସେହିପରି ଦାନ ସଂଗ୍ରହ ପାଇଁ ବୁଦ୍ଧିମାନ ଲୋକମାନେ ଅନ୍ନ, କାଞ୍ଚନ, ଗୋଦାନ, ଯଜ୍ଞ, ହୋମ ଆଦିର ବ୍ୟବସ୍ଥା କରିଛନ୍ତି । ପରଲୋକ କାଳ୍ପନିକ । ସେଥିରେ ବିଶ୍ୱାସ ନ କରି ପ୍ରତ୍ୟକ୍ଷ କଥାରେ ବିଶ୍ୱାସ କରିବା ଉଚିତ । ନରୋତ୍ତମ, ଏହି କଣ୍ଟକିତ କୁମାର୍ଗକୁ ପରିତ୍ୟାଗ କରି ଭରତଙ୍କ କହିବା ଅନୁସାରେ ତୁମେ ତୁମର ପ୍ରାପ୍ୟ ରାଜ୍ୟକୁ ଗ୍ରହଣ କର ।

ସତ୍ୟନିଷ୍ଠ ରାମ ଏହି ଯୁକ୍ତିରେ ବିଚଳିତ ନ ହୋଇ ଧୀର ଅଥଚ ଦୃଢ଼ ଭାବରେ କହିଲେ, ଆପଣ ମୋର ପ୍ରିୟ କାର୍ଯ୍ୟ କରିବାକୁ ଯାଇ ଅକର୍ମକୁ କର୍ମ ଓ ଅବାଟକୁ ବାଟ ବୋଲି କହିଲେ । ଲୋକର ଆଚାର ବ୍ୟବହାରରୁ ହିଁ ତାର ମର୍ଯ୍ୟାଦାଜ୍ଞାନ ବିଚାର କରାଯାଏ । ସତ୍ୟାଚରଣ ହିଁ ସନାତନ ଧର୍ମ । ମୁଁ ସତ୍ୟ କରି ନିଜର ପ୍ରତିଜ୍ଞାରୁ କିପରି ବିଚଳିତ ହେବି ? ମୁଁ ଯଦି ତାହା କରେ, ଲୋକମାନେ ମୋତେ କ'ଣ କହିବେ ? ମୁଁ ଯଦି ଆଦର୍ଶ ରକ୍ଷା ନ କରେ, ଜନସାଧାରଣ କାହାକୁ ଆଗରେ ରଖି ଚାଲିବେ ? ମୁଁ ସ୍ୱେଚ୍ଛାଚାରୀ ହେଲେ ଏ ଜଗତ ସ୍ୱେଚ୍ଛାଚାରୀ ହେବ । ମୁଁ ଏକ ନୀଚାଶୟ, ନୃଶଂସ, ଲୋଭପରାୟଣ ପାପାଚାରୀ ବ୍ୟକ୍ତି ପରି ରାଜ୍ୟ ଲୋଭରେ ସତ୍ୟକୁ ତ୍ୟାଗ କରିବି ନାହିଁ ।

ଜାବାଳିଙ୍କ ନାସ୍ତିକ ଯୁକ୍ତିରେ ରାମ କ୍ରୁଦ୍ଧ ହୋଇ କହିଲେ, ସତ୍ୟନିଷ୍ଠା, ପ୍ରିୟବାଦିତା, ଜୀବେ ଦୟା, ଦେବଦ୍ୱିଜ ଅତିଥିମାନଙ୍କର ସତ୍କାର, ପୁରୁଷକାର ଆଦି ଶ୍ରେୟ ପନ୍ଥା ବୋଲି ଶାସ୍ତ୍ରରେ କୁହାଯାଇଛି । ଆପଣ ସେଥିରୁ ବିଚ୍ୟୁତ ହୋଇ ନାସ୍ତିକ ପରି କଥାଭାଷା କରୁଛନ୍ତି । ଆପଣଙ୍କର ବୁଦ୍ଧିଭ୍ରଷ୍ଟ ହୋଇଛି । ଏପରି ବ୍ୟକ୍ତିଙ୍କୁ ରାଜା ଦଶରଥ କିପରି ମନ୍ତ୍ରୀ କରି ରଖିଥିଲେ, ମୁଁ ବୁଝିପାରୁ ନାହିଁ ।

ଜାବାଳିଙ୍କ ସ୍ୱର ସଙ୍ଗେ ସଙ୍ଗେ ବଦଳିଗଲା । ସେ କହିଲେ– ରାମ, ମୁଁ ନାସ୍ତିକ ନୁହେଁ । ପରଲୋକ ନାହିଁ, ଏହା ସତ୍ୟ ନୁହେଁ । ମୁଁ ସମୟ ଅନୁସାରେ ଆସ୍ତିକ ଓ ସମୟ ପଡ଼ିଲେ ନାସ୍ତିକ ହୁଏ । ଏପରି ସମୟ ପଡ଼ିଲା, ତୁମକୁ ନାସ୍ତିକ କଥା କହିଲି, କାରଣ ତୁମେ ପ୍ରସନ୍ନ ହୋଇ ବନବାସରୁ ନିବୃତ୍ତ ହେବ ।

ପରିସ୍ଥିତିକୁ ସମ୍ଭାଳିନେବାପାଇଁ ବଶିଷ୍ଠ କହିଲେ, କ'ଣ ଲୋକଙ୍କର କର୍ତ୍ତବ୍ୟ, କ'ଣ ନୁହେଁ, ତାହା ଜାବାଳି ଜାଣନ୍ତି । ସେ କେବଳ ତୁମକୁ ବନବାସରୁ ଫେରାଇନେବାପାଇଁ ଏପରି କହୁଥିଲେ । ରାମ, ମୁଁ ଇକ୍ଷ୍ୱାକୁ ବଂଶର ଦୃଷ୍ଟାନ୍ତ ଦେବାକୁ ଚାହେଁ । ମୂଳରୁ ଏ

ପର୍ଯ୍ୟନ୍ତ ଜ୍ୟେଷ୍ଠପୁତ୍ର ରାଜା ହେବାହିଁ ପରମ୍ପରା କ୍ରମେ ଗଡ଼ି ଆସୁଛି । ଜ୍ୟେଷ୍ଠ ଥାଉ ଥାଉ କନିଷ୍ଠ ପୁତ୍ର କେବେ ରାଜା ହୁଏ ନାହିଁ । ତେଣୁ ତୁମେ ରଘୁବଂଶର ଚିରନ୍ତନ କୁଳଧର୍ମକୁ ନଷ୍ଟ ହେବାକୁ ଦିଅ ନାହିଁ । ରାଘବ, ପିତା ଅବଶ୍ୟ ତୁମର ଗୁରୁ । କିନ୍ତୁ ପିତାଙ୍କ ଛଡ଼ା ଆଉ ଦୁଇଜଣ ଗୁରୁ ହେଉଛନ୍ତି ମାତା ଓ ଆଚାର୍ଯ୍ୟ । ମୁଁ ତୁମର ଆଚାର୍ଯ୍ୟ । କୌଶଲ୍ୟା ତୁମର ଧର୍ମଶୀଳା ବୃଦ୍ଧାମାତା । ତୁମେ ଆମମାନଙ୍କର ଅନୁରୋଧ ଅବଜ୍ଞା କର ନାହିଁ ।

କିନ୍ତୁ ରାମ ତାଙ୍କ ପ୍ରତିଜ୍ଞାରେ ଅଟଳ ରହି କହିଲେ, ମୋର ଜନକଙ୍କର ଆଜ୍ଞା ପାଳନ କରିବାପାଇଁ ମୁଁ ସତ୍ୟ କରିଚି । ବର୍ତ୍ତମାନ ମିଥ୍ୟାଚରଣ କରିପାରିବି ନାହିଁ ।

ଭରତ ସଙ୍ଗେ ସଙ୍ଗେ ଭୂତଳରେ କୁଶ ବିଛାଇ ଦେଇ ବସିପଡ଼ିଲେ । ସେ କହିଲେ, ଏହିଠାରେ ମୁଁ ପ୍ରାୟୋପବେଶନ କରିବି । ପୂଜ୍ୟ ଜ୍ୟେଷ୍ଠଭ୍ରାତା ଯେପର୍ଯ୍ୟନ୍ତ ମୋ ସହିତ ଫେରିଯାଇ ନାହାନ୍ତି ଏଇଠାରେ ନ ଖାଇ ନ ପିଇ ବସି ରହିବି । ରାମ କହିଲେ – ଭରତ, ମୁଁ କ'ଣ କଲି ଯେ ତୁମେ ପ୍ରାୟୋପବେଶନ କରିବ । କୌଣସି ବ୍ୟକ୍ତିକୁ ବାଧ୍ୟ କରିବାପାଇଁ ଆମରଣ ଅନଶନ ପରି ଦାରୁଣ ବ୍ରତ ବ୍ରାହ୍ମଣମାନେ କରିଥାନ୍ତି । କ୍ଷତ୍ରିୟମାନଙ୍କ ପକ୍ଷରେ ଏହା ବିଧେୟ ନୁହେଁ । ଭରତ ନିରୁପାୟ ହୋଇ ସମବେତ ଲୋକମାନଙ୍କୁ କହିଲେ, ତୁମେମାନେ ଚୁପ୍ ହୋଇ ରହିଛ, କିଛି କହୁ ନାହଁ କାହିଁକି ? ପୁରବାସୀ ଓ ଜନପଦବାସୀ ପ୍ରଜାମାନେ ଉତ୍ତର ଦେଲେ, ରାମଙ୍କୁ ତୁମେ ଯାହା କହୁଛ, ତାହା ସଙ୍ଗତ ବୋଲି ଆମେ ଅନୁଭବ କରୁଛୁ । ରାମ ମଧ୍ୟ ପିତୃସତ୍ୟ ପାଳନ ପାଇଁ ଯଥାର୍ଥରେ ଦୃଢ଼ ହୋଇ ରହିଛନ୍ତି । ତେଣୁ ଆମେ କ'ଣ କହିବୁ, ଠିକ୍ କରିପାରୁ ନାହିଁ । ରାମ କହିଲେ – ଭରତ, ଧର୍ମଦର୍ଶୀ ପ୍ରଜାମାନେ ଯାହା କହିଲେ, ବୁଝିଲ ତ ? ବର୍ତ୍ତମାନ ଉଠି ନିଜର କର୍ତ୍ତବ୍ୟ କର ।

ଭରତ କୁଶଶଯ୍ୟାରୁ ଉଠି ଜଳସ୍ପର୍ଶ କରି କହିଲେ, ହେ ମୋର ମନ୍ତ୍ରୀ ଓ ପ୍ରଜାଗଣ, ଶୁଣ, ମୁଁ କେବେ ପିତାଙ୍କୁ ରାଜ୍ୟ ମାଗି ନାହିଁ କି ମାତାଙ୍କୁ ସେଥିପାଇଁ ପ୍ରବର୍ତ୍ତାଇ ନାହିଁ । ପରମ ଧାର୍ମିକ ରାମଙ୍କର ସଙ୍କଳ୍ପ ବିଷୟ ମୁଁ ଜାଣେ ନାହିଁ । ତଥାପି ରାମ ଯଦି ପିତୃସତ୍ୟ ପାଳନ କରି ବନବାସ କରିବେ, ତା'ହେଲେ ମୁଁ ମଧ ଚଉଦ ବର୍ଷ ବନରେ ରହିବି ।

ଭରତଙ୍କ କଥାରେ ବିସ୍ମିତ ହୋଇ ରାମ ଉପସ୍ଥିତ ସମସ୍ତଙ୍କୁ କହିଲେ, ପିତା ଜୀବିତ ଥିବାବେଳେ ଯାହା କିଣାବିକା କରିଛନ୍ତି ବା ରଖି ଯାଇଛନ୍ତି, ମୁଁ ବା ଭରତ ତାହା ଅନ୍ୟଥା କରିପାରିବୁ ନାହିଁ । ତେଣୁ ପିତା ଯାହା କହିଛନ୍ତି ବା କରିଛନ୍ତି, ଠିକ୍ କରିଛନ୍ତି । କୈକେୟୀ ଯାହା କରିଛନ୍ତି, ତାହା ମଧ ଠିକ୍ କରିଛନ୍ତି । ତେଣୁ ପିତା ଦଶରଥ, ମାତା କୈକେୟୀଙ୍କୁ ଯେଉଁ ବର ଦେଇଛନ୍ତି, ମୁଁ ତାହା କେବେ ଅନ୍ୟଥା କରିପାରିବି ନାହିଁ । ଭରତ କ୍ଷମାଶୀଳ । ଗୁରୁଜନମାନଙ୍କୁ ଯଥାମାନ୍ୟ କରନ୍ତି । ମୁଁ ବନବାସ ଶେଷ କରି ନିଶ୍ଚୟ ଅଯୋଧ୍ୟାକୁ ଫେରିଆସି ପିତୃରାଜ୍ୟର ଅଧୀଶ୍ୱର ହେବି । ଭରତ ଏବେ ରାଜା ହୋଇ ପିତୃସତ୍ୟ ରକ୍ଷା କରନ୍ତୁ ।

ସିଦ୍ଧ ଓ ମହର୍ଷିଗଣ ରାମ ଓ ଭରତଙ୍କର ପ୍ରଶଂସା କଲେ । କିନ୍ତୁ ଦଶାନନ ରାବଣର ବଧ କଥା ଚିନ୍ତା କରି ସେମାନେ କହିଲେ – ଭରତ ଧର୍ମଜ୍ଞ, ସଚ୍ଚରିତ୍ର ଓ ଯଶସ୍ୱୀ । ପିତାଙ୍କ

କଥା ଚିନ୍ତା କରି ସେ ରାମଙ୍କ ପରାମର୍ଶ ଗ୍ରହଣ କରନ୍ତୁ । ରାମ ପିତୃଋଣ ପରିଶୋଧ କରି ବନବାସ କରନ୍ତୁ । ରାମଙ୍କ ଯୋଗୁଁ କୈକେୟୀଙ୍କ ଋଣରୁ ମୁକ୍ତ ହୋଇ ଦଶରଥ ସ୍ୱର୍ଗଲାଭ କରିଛନ୍ତି ।

ଭରତ କହିଲେ – ଆର୍ଯ୍ୟ ରାମଙ୍କ ବିନା ଅଯୋଧ୍ୟାକୁ କେହି ଚଳାଇପାରିବେ ନାହିଁ । ସେ ରାମଙ୍କ ପାଦତଳେ ପଡ଼ିଗଲେ ଓ ଫେରିଯିବାପାଇଁ ତାଙ୍କୁ ଅନୁରୋଧ କରି କ୍ରନ୍ଦନ କରିବାକୁ ଲାଗିଲେ ।

ଶ୍ୟାମବର୍ଣ୍ଣ ପଦ୍ମପଳାଶ ଲୋଚନ ରାମ ମତ୍ତହଂସପରି ସୁମଧୁର ସ୍ୱରରେ କହିଲେ, ଭରତ, ତୁମେ ସମଗ୍ର ପୃଥିବୀକୁ ଶାସନ କରିବାକୁ ସମର୍ଥ । ବର୍ତ୍ତମାନ ଅମାତ୍ୟ, ସୁହୃଦ୍ ଓ ବୁଦ୍ଧିମାନ୍ ମନ୍ତ୍ରୀମାନଙ୍କ ସହିତ ମନ୍ତ୍ରଣା କରି ରାଜ୍ୟ ଶାସନ କର । ଭରତ, ଚନ୍ଦ୍ରମା ତାର ଶୋଭାକୁ ଛାଡ଼ିଦେଇପାରେ, ହିମାଳୟ ହିମ ତ୍ୟାଗ କରିପାରେ, ସମୁଦ୍ର ବେଳାଭୂମି ଲଂଘନ କରିପାରେ, କିନ୍ତୁ ମୁଁ ପିତାଙ୍କର ପ୍ରତିଜ୍ଞା ଲଂଘନ କରିପାରିବି ନାହିଁ ।

ଭରତ କହିଲେ, ହଉ ଠିକ୍ ଅଛି । ଏହି ସ୍ୱର୍ଣ୍ଣଭୂଷିତ ପାଦୁକା ଦୁଇଟି ଉପରେ ପାଦ ରଖ । ତାକୁ ମୁଁ ସାଙ୍ଗରେ ନେଇ ଯାଉଚି । ରଘୁନନ୍ଦନ, ମୁଁ ଜଟା ବଲ୍କଳ ଧାରଣ କରି ଓ ଫଳ ମୂଳ ଆହାର କରି ତୁମ ଅପେକ୍ଷାରେ ରହିବି । ନଗର ବାହାରେ ରହିବି ଏବଂ ପାଦୁକାକୁ ନିବେଦନ କରି ରାଜ୍ୟ ଶାସନ କରିବି । ଯେଉଁଦିନ ଚଉଦବର୍ଷ ପୂର୍ଣ୍ଣ ହେବ, ସେ ଦିନ ଯଦି ତୁମକୁ ନ ଦେଖେ, ତା' ହେଲେ ଅନଳରେ ଝାସ ଦେବି ।

ରାମ ପାଦୁକା ଦୁଇଟିକୁ ସ୍ପର୍ଶ କରି କହିଲେ, ତାହାହିଁ ହେବ । ସେ ଭରତ ଓ ଶତ୍ରୁଘ୍ନଙ୍କୁ ଆଲିଙ୍ଗନ କରି କହିଲେ – ବତ୍ସ, ତୁମ ପ୍ରତି ମୋର ଓ ସୀତାଙ୍କର ରାଣ ରହିଲା, ତୁମେ ମାତା କୈକେୟୀଙ୍କୁ ପାଳନ କରିବ । ତାଙ୍କ ପ୍ରତି ରୁଷ୍ଟ ହେବ ନାହିଁ ।

ଭରତ ସ୍ୱର୍ଣ୍ଣମଣ୍ଡିତ ପାଦୁକା ଦୁଇଟିକୁ ସାଦରେ ଗ୍ରହଣ କରି ରାମଙ୍କୁ ପ୍ରଦକ୍ଷିଣ କଲେ ଓ ଏକ ଉତ୍ତମ ହସ୍ତୀର ମସ୍ତକ ଉପରେ ତାହା ସ୍ଥାପନ କଲେ । ରଘୁବଂଶବର୍ଦ୍ଧନ ରାମ ଗୁରୁଜନଙ୍କୁ ଅଭିବାଦନ କରି ମନ୍ତ୍ରୀ, ପ୍ରଜାଗଣ ଏବଂ ସାନଭାଇ ଦୁହିଁଙ୍କୁ ବିଦାୟ ଦେଲେ । ମାତାମାନେ ଲୋତକରେ ରୁଦ୍ଧକଣ୍ଠ ହୋଇ କିଛି କହିପାରିଲେ ନାହିଁ । ରାମ ସେମାନଙ୍କୁ ଅଭିବାଦନ ପୂର୍ବକ ବିଦାୟ ଦେବାବେଳେ ରୋଦନ କରି କରି କୁଟୀର ମଧ୍ୟରେ ପ୍ରବେଶ କଲେ ।

ଭରତ ପାଦୁକା ଦୁଇଟିକୁ ମୁଣ୍ଡରେ ଲଗାଇ ହୃଷ୍ଟଚିତ୍ତରେ ସଦଳବଳ ଅଯୋଧ୍ୟା ଫେରିଗଲେ । ବାଟରେ ଭରଦ୍ୱାଜଙ୍କ ଆଶ୍ରମ ପଡ଼ିଲା । ଚିତ୍ରକୂଟରେ ଯାହା ସବୁ ଘଟିଯାଇଛି, ତାହା ସେ ଋଷିଙ୍କୁ ନିବେଦନ କଲେ । ଭରଦ୍ୱାଜ କହିଲେ – ଭରତ, ତୁମପରି ଧର୍ମଜ୍ଞ ପୁତ୍ର ଲାଭ କରି ଦଶରଥ ଋଣମୁକ୍ତ ହୋଇଛନ୍ତି । ଋଷିଙ୍କଠାରୁ ବିଦାୟ ନେଇ ଭରତ ଗଙ୍ଗାପାର ହୋଇ ଶୃଙ୍ଗବେରପୁରରେ ପହଞ୍ଚିଲେ ଏବଂ ସେଠାରୁ ଅଯୋଧ୍ୟା ଗଲେ ।

ସ୍ନିଗ୍ଧ ଗମ୍ଭୀର ଧ୍ୱନିରେ ଭରତଙ୍କର ରଥ ଅଯୋଧ୍ୟାରେ ପ୍ରବେଶ କଲା । ରାହୁଗ୍ରସ୍ତ ଚନ୍ଦ୍ରମା ପରି ଜନମାନବଶୂନ୍ୟ ଅଯୋଧ୍ୟା ଶ୍ରୀହୀନ ଦେଖାଯାଉଥିଲା । କେବଳ ବିରାଡ଼ି ଓ

ପେଚାମାନେ ବୁଲୁଥିବାର ଦେଖାଗଲା । ଯୁଦ୍ଧ ବା ପ୍ରାକୃତିକ ବିପଦ ପଡ଼ିଲେ ଯେପରି ନଗର ବା ଜନପଦ ଧ୍ୱସ୍ତ ବିଧ୍ୱସ୍ତ ହୋଇଯାଏ, ଅଯୋଧ୍ୟା ଠିକ୍ ସେହିପରି ହୋଇଥିଲା । ଭରତ ମାତାମାନଙ୍କୁ ରାଜପ୍ରାସାଦରେ ଛାଡ଼ିଦେଇ ବଶିଷ୍ଠ, ମନ୍ତ୍ରୀଗଣ ଓ ଅନ୍ୟ ଗୁରୁଜନମାନଙ୍କୁ କହିଲେ, ମୁଁ ବର୍ତ୍ତମାନ ଆପଣମାନଙ୍କ ଠାରୁ ବିଦାୟ ନେଇ ନନ୍ଦୀଗ୍ରାମ ଯାତ୍ରା କରୁଛି । ମୁଁ ସେଇଠାରେ ରହି ରାମଙ୍କ ବିରହ ଅନୁଭବ କରିବି ଓ ତାଙ୍କପାଇଁ ରାଜ୍ୟ ଶାସନ କରିବି । ସେ ଫେରିଆସିବା ନିମନ୍ତେ ଅପେକ୍ଷା କରି ରହିବି । ଅଯୋଧ୍ୟାର ପୂର୍ବାଭିମୁଖରେ ନନ୍ଦୀଗ୍ରାମ ଅବସ୍ଥିତ । ବଶିଷ୍ଠ ଏବଂ ଅନ୍ୟାନ୍ୟ ଗୁରୁ ଓ ବ୍ରାହ୍ମଣମାନଙ୍କୁ ଅଗ୍ରବର୍ତ୍ତୀ କରି ଭରତ ରାମଙ୍କ ପାଦୁକା ଦୁଇଟିକୁ ମସ୍ତକରେ ଧାରଣ କରି ରଥରେ ବସି ଯାତ୍ରାକଲେ । ଭରତ ପ୍ରଜାମାନଙ୍କୁ କହିଲେ, ଏହା ରାମଙ୍କର ପାଦୁକା ନୁହେଁ, ଏହା ତାଙ୍କର ପାଦଦ୍ୱୟ । ଏହା ଉପରେ ଛତ୍ରଧାରଣ କର ।

ଭରତ ଜଟାବଲ୍କଳ ପ୍ରଭୃତି ମୁନିବେଶ ଧାରଣ କରି ସୈନ୍ୟମାନଙ୍କ ସହିତ ନନ୍ଦୀଗ୍ରାମରେ ବାସ କଲେ । ଏହି ଉଜ୍ଜ୍ୱଳ ପାଦୁକାଦୁଇଟିକୁ ଅଭିଷିକ୍ତ କରାଇ ସେ ତାହା ଉପରେ ଛତ୍ର ଚାମର ଧାରଣ କଲେ । ଶାସନ ସଂକ୍ରାନ୍ତ ସମସ୍ତ ବିଷୟ ସେହି ପାଦୁକାକୁ ଜଣାଇ ସେ ରାଜ୍ୟ ଶାସନ କରିବାକୁ ଲାଗିଲେ । ଯାହା ସବୁ ବହୁମୂଲ୍ୟ ଉପହାର ଆସୁଥିଲା, ତାହା ସେ ପ୍ରଥମେ ପାଦୁକାକୁ ନିବେଦନ କରୁଥିଲେ । ଏହିପରି ସେହି ପାଦୁକା ମଧ୍ୟରେ ସେ ରାମଙ୍କର ଚରଣ ଯୁଗଳ ଦର୍ଶନ କରୁଥିଲେ । ସେ ପ୍ରଜାମାନଙ୍କୁ କହୁଥିଲେ, ମୁଁ କେହି ନୁହେଁ । ଏ ରାଜ୍ୟ ରାମଙ୍କର । ସେ ମୋତେ ନ୍ୟାସ ସ୍ୱରୂପ ଦେଇଛନ୍ତି । ଏହି ପାଦୁକା ତାଙ୍କର ପ୍ରତିନିଧି । ସେ ଫେରିଆସିଲେ ଏହି ଶୁଭଲକ୍ଷଣଯୁକ୍ତ ସ୍ୱର୍ଣ୍ଣମଣ୍ଡିତ ପାଦୁକାଦୁଇଟିକୁ ତାଙ୍କୁ ମୁଁ ପିନ୍ଧାଇ ଦେବି ଏବଂ ଅଯୋଧ୍ୟା ରାଜ୍ୟକୁ ତାଙ୍କ ହସ୍ତରେ ସମର୍ପଣ କରି ସମସ୍ତ ପାପରୁ ମୁକ୍ତ ହେବି ।

ଏହିପରି ଭାବରେ ରାମଚନ୍ଦ୍ର ଚଉଦ ବର୍ଷ ବନବାସ କରୁଥିବାବେଳେ ନିଷ୍ପାପ ଭରତ ବିଶାଳ ଅଯୋଧ୍ୟା ରାଜ୍ୟର ଶାସନ ଦାୟିତ୍ୱରେ ରହି ତପସ୍ୱୀର କଠୋର ଜୀବନ ଯାପନ କଲେ ।

## ୩୮ ।। ସୀତାଙ୍କୁ ଅନସୂୟାଙ୍କ ଉପହାର

ଭରତ ଚାଲିଯିବା ପରେ ରାମ ଦେଖିଲେ ଯେ ଯେଉଁ ତପସ୍ୱୀମାନେ ତାଙ୍କୁ ଆଶ୍ରୟ କରି ଚିତ୍ରକୂଟରେ ରହୁଥିଲେ, ସେମାନେ ଅତ୍ୟନ୍ତ ବିଚଳିତ ଓ ଉଦ୍‌ବିଗ୍ନ ଦେଖାଯାଉଛନ୍ତି । ରାମଙ୍କୁ ଲକ୍ଷ୍ୟ କରି ସେମାନେ ପରସ୍ପର ମଧ୍ୟରେ କ'ଣ କୁହାକୁହି ହେଉଛନ୍ତି । ରାମ କୃତାଞ୍ଜଳିପୁଟରେ ସେମାନଙ୍କ କୁଳପତିଙ୍କୁ କହିଲେ, ଭଗବନ୍, ମୋର ବ୍ୟବହାରରେ ତପସ୍ୱୀମାନଙ୍କ ମନରେ କ'ଣ ପ୍ରତିକ୍ରିୟା ସୃଷ୍ଟି ହୋଇଛି କି ? କିମ୍ବା ମୋର ସାନଭାଇ ଲକ୍ଷ୍ମଣ କିଛି ଭୁଲ କରିଛି, ଯେଉଁଥିପାଇଁ ଆପଣମାନେ ଉଦ୍‌ବିଗ୍ନ ? ସେବାବ୍ରତରେ ଏକନିଷ୍ଠ ସୀତାର କୌଣସି ବ୍ୟବହାର ଆପଣମାନଙ୍କୁ କ୍ଷୁଣ୍ଣ କରି ନାହିଁ ତ ?

ଜରାଜୀର୍ଣ୍ଣ ତପସ୍ୱୀ କୁଳପତି ଥରି ଥରି କହିଲେ – ବତ୍ସ, ସେବାପରାୟଣା ବୈଦେହୀ କାହାରି ପ୍ରତି ବିଶେଷତଃ ତପସ୍ୱୀମାନଙ୍କ ପ୍ରତି କେବେ ଦୁର୍ବ୍ୟବହାର କରିବା ସମ୍ଭବ ନୁହେଁ । ତୁମର ବା ଲକ୍ଷ୍ମଣଙ୍କର ମଧ୍ୟ କୌଣସି ଭୁଲ ନାହିଁ । କିନ୍ତୁ ତୁମ ଯୋଗୁଁ ରାକ୍ଷସମାନେ ତପସ୍ୱୀମାନଙ୍କ ପ୍ରତି ଅତ୍ୟାଚାର କରୁଛନ୍ତି । ରାବଣର ଅନୁଜ ଖର ନାମକ ଏକ ଅତି ଦୁର୍ଦ୍ଦାନ୍ତ, ନୃଶଂସ, ନରମାଂସଭୋଜୀ ରାକ୍ଷସ ଜନସ୍ଥାନବାସୀ ଋଷିମାନଙ୍କୁ ଉତ୍ପୀଡ଼ନ କରୁଛି । ତୁମେ ରହିବା ଦିନୁ ଚିତ୍ରକୂଟବାସୀ ଋଷିମାନଙ୍କ ଉପରେ ତାର ଦୃଷ୍ଟି ରହିଲାଣି । ସେ ଏବଂ ତାର ଅନୁଚରମାନେ ଆମ ଉପରେ ନାନା ଅଶୁଚି ପଦାର୍ଥ ପକାଉଛନ୍ତି । ହୋମକାର୍ଯ୍ୟରେ ବିଘ୍ନ ଘଟାଉଛନ୍ତି ଓ ଅଜ୍ଞାତ ଭାବରେ ବିଚରଣ କରି ତପସ୍ୱୀମାନଙ୍କୁ ହତ୍ୟା କରୁଛନ୍ତି । ଏଠାରେ ରହିବା ଆଉ ଆମ ପକ୍ଷରେ ସମ୍ଭବ ନୁହେଁ । ଏହାର ନିକଟବର୍ତ୍ତୀ ଫଳମୂଳପୂର୍ଣ୍ଣ କଣ୍ୱମୁନିଙ୍କର ତପୋବନକୁ ଆମେ ଚାଲିଯାଉଛୁ । ଏଠାରେ ଆଉ ଜୀବନକୁ ବିପନ୍ନ କରି ରହିବା ଆମ ପକ୍ଷରେ ସମ୍ଭବ ନୁହେଁ । ରାମ ତାଙ୍କୁ ଯେତେ ନିର୍ଭର ପ୍ରତିଶ୍ରୁତି ଦେଲେ ମଧ୍ୟ କୁଳପତି ଓ ତାଙ୍କର ଗୋଷ୍ଠୀ ଚିତ୍ରକୂଟ ଆଶ୍ରମ ଛାଡ଼ି ଚାଲିଗଲେ । ଭରତ ଯିବାପରେ ତାଙ୍କର, ମାତାମାନଙ୍କର ଓ ଅଯୋଧ୍ୟାବାସୀଙ୍କର ସ୍ମୃତି ରାମଙ୍କ ମନକୁ ଆଲୋଡ଼ିତ କରୁଥିଲା । ଏବେ ତପସ୍ୱୀମାନଙ୍କର ପ୍ରସ୍ଥାନ ତାଙ୍କୁ ଆହୁରି ଚିନ୍ତିତ କଲା । ସେ ଚିତ୍ରକୂଟ ଛାଡ଼ିଦେଲେ ଏବଂ ସୀତା ଓ ଲକ୍ଷ୍ମଣଙ୍କ ସହିତ ଅଦୂରରେ ଥିବା ଅତ୍ରିଙ୍କ ଆଶ୍ରମରେ ପହଞ୍ଚି ଋଷିଙ୍କୁ ଅଭିବାଦନ କଲେ ।

ମହର୍ଷି ଅତ୍ରି ତାଙ୍କର ପତ୍ନୀ ବୃଦ୍ଧା ଅନସୂୟାଙ୍କୁ ଡାକି ସୀତାଙ୍କର ଯତ୍ନ ନେବାପାଇଁ ପରାମର୍ଶ ଦେଲେ । ରାମଙ୍କ ସହିତ ତାଙ୍କର ପରିଚୟ କରାଇ ଦେଇ ଅତ୍ରି କହିଲେ, ତପସ୍ୱିନୀ ଅନସୂୟା କଠୋର ତପୋବଳରେ ଦଶବର୍ଷ ଧରି ଅନାବୃଷ୍ଟି ପୀଡ଼ିତ ପୃଥିବୀରେ ଗଙ୍ଗାଙ୍କୁ ପ୍ରବାହିତ କରାଇଥିଲେ ଓ ପୁନର୍ବାର ଫଳମୂଳ ସୃଷ୍ଟି କରିଥିଲେ । ଦେବତାମାନଙ୍କ କାର୍ଯ୍ୟ ସାଧନ ପାଇଁ ଦଶ'ରାତିକୁ ଗୋଟିଏ ରାତିରେ ପରିଣତ କରିଥିଲେ । ଅସୂୟା ଶୂନ୍ୟ ଆଚରଣ ପାଇଁ ତାଙ୍କର ନାମ ଅନସୂୟା ହୋଇଛି । ସେହି ଅନସୂୟା ତୁମର ମାତୃବତ୍ ପୂଜନୀୟା ।

ବାର୍ଦ୍ଧକ୍ୟ ଯୋଗୁଁ ଅନସୂୟାଙ୍କର ଶରୀର ଶିଥିଳ, ଚର୍ମ ଶ୍ଲଥ ଓ କେଶ ଶୁକ୍ଳ ବର୍ଣ୍ଣ ଦେଖାଯାଉଥିଲା । ସୀତା ତପସ୍ୱିନୀଙ୍କୁ ଅଭିବାଦନ କରି ତାଙ୍କୁ ନିଜର ନାମ ଓ ପରିଚୟ ଦେଲେ ।

ଅନସୂୟା କହିଲେ – ସୀତା, ରାଜପ୍ରାସାଦର ସୁଖସମୃଦ୍ଧି ଓ ଜ୍ଞାତିବର୍ଗଙ୍କୁ ପରିତ୍ୟାଗ କରି ବନବାସୀ ସ୍ୱାମୀଙ୍କର ଅନୁଗମନ କରି ଯଥାର୍ଥ କାର୍ଯ୍ୟ କରିଛ । ସ୍ତ୍ରୀ ପକ୍ଷରେ ସ୍ୱାମୀଠାରୁ ବଳି ଆଉ ଜ୍ଞାତି ବା ବନ୍ଧୁ କେହି ନାହିଁ । ସୀତା କହିଲେ, ଆପଣ ସାବିତ୍ରୀଙ୍କ ପରି ସତୀ ଓ ପତିବ୍ରତାମାନଙ୍କ ମଧ୍ୟରେ ଶ୍ରେଷ୍ଠ । ବିବାହ କାଳରେ ଅଗ୍ନି ସମ୍ମୁଖରେ ମୋର ମାତା ମୋତେ ଯେଉଁ ଉପଦେଶ ଦେଇଥିଲେ ଏବଂ ଏହି ଘୋର ନିର୍ଜନ ବନକୁ ଆସିବା ପୂର୍ବରୁ ମୋର ଶାଶୁ କୌଶଲ୍ୟା ମୋତେ ଯାହା ଉପଦେଶ ଦେଇଥିଲେ, ଆଜି ଆପଣ ମୋତେ ସେହି ସଦୁପଦେଶ ଦେଇଛନ୍ତି । ପତିସେବା ହିଁ ନାରୀର ତପସ୍ୟା । ସ୍ୱାମୀ

ଦୁଃଶୀଳ ହେଲେ ବି ସ୍ତ୍ରୀ ତାଙ୍କର ସେବା କରିବା ଉଚିତ । କିନ୍ତୁ ମୋର ସ୍ୱାମୀ ସତ୍ୟନିଷ୍ଠ, ଧର୍ମଜ୍ଞ, ଜିତେନ୍ଦ୍ରିୟ, ପିତୃମାତୃପ୍ରିୟ ଏବଂ ମୋ ପ୍ରତି ଏକାନ୍ତ ଅନୁରାଗୀ । ତେଣୁ ପତି ମୋର ଜ୍ଞାତି, ଗୁରୁ ଓ ସବୁକିଛି । ଅନସୂୟା ପ୍ରୀତ ହୋଇ ସୀତାଙ୍କୁ ଈପ୍ସିତ ବର ମାଗିବା ପାଇଁ କହିଲେ । ମୃଦୁହାସିନୀ ବୈଦେହୀ ଉତ୍ତର ଦେଲେ, ଆପଣଙ୍କ ପ୍ରୀତି ହିଁ ମୋ' ପାଇଁ ଶ୍ରେଷ୍ଠ ବର । ଏଥିରେ ଅନସୂୟା ଆହୁରି ସନ୍ତୁଷ୍ଟ ହୋଇ ଦିବ୍ୟ ବରମାଲ୍ୟ, ମୂଲ୍ୟବାନ୍ ବସ୍ତ୍ର ଅଳଙ୍କାର, ଅଙ୍ଗରାଗ ଓ ସୁଗନ୍ଧ ଅନୁଲେପନ ଆଦି ଦାନ କଲେ । ସେ କହିଲେ – ମୈଥିଳୀ, ଏହା ତୁମ ଶରୀରର ଶୋଭା ବଢ଼ାଇବ । ବ୍ୟବହାର କଲେ ମଧ ସର୍ବଦା ଅମ୍ଳାନ ରହିବ । ତୁମେ ଏହି ଅଙ୍ଗରାଗ ଲେପନ କଲେ ଲକ୍ଷ୍ମୀ ଯେପରି ବିଷ୍ଣୁଙ୍କର ଶୋଭାବର୍ଦ୍ଧନ କରନ୍ତି, ତୁମେ ମଧ ସେହିପରି ତୁମର ସ୍ୱାମୀଙ୍କର ଶୋଭା ବଢ଼ାଇବ ।

ସୀତା ଅନସୂୟାଙ୍କର ପ୍ରୀତ୍ୟୁପହାରକୁ ଗ୍ରହଣ କରି ତାଙ୍କ ପାଖରେ କୃତାଞ୍ଜଳି ହୋଇ ବସିବାରୁ ତପସ୍ୱିନୀ ସୀତାଙ୍କର ଜନ୍ମ ଓ ସ୍ୱୟଂବର ଆଦି ବିଷୟ ଜାଣିବାକୁ ଇଚ୍ଛା ପ୍ରକାଶ କଲେ ଏବଂ ସୀତା ତାହା ବର୍ଣ୍ଣନା କଲେ । ଅନସୂୟା ସୀତାଙ୍କୁ ଆଲିଙ୍ଗନ କରି କହିଲେ – ମଧୁରଭାଷିଣୀ, ତୁମର କଥା ଶୁଣି ମୁଁ ଆନନ୍ଦିତ ହୋଇଛି । ବର୍ତ୍ତମାନ ସୂର୍ଯ୍ୟ ଅସ୍ତମିତ ଓ ଶୁଭ ରଜନୀ ଉପସ୍ଥିତ । ବଲ୍କଳଧାରୀ ମୁନିମାନେ କଳସୀ ଧରି ଆଶ୍ରମକୁ ଫେରି ଆସୁଛନ୍ତି । ଋଷିମାନଙ୍କ ହୋମରୁ ଉତ୍‌ଥିତ ଧୂମ କପୋତର ଦେହ ପରି ଅରୁଣ ବର୍ଣ୍ଣ ଦେଖାଯାଉଛି । ସାନ୍ଦ୍ର ବୃକ୍ଷ ଗହଳ ମଧ୍ୟରୁ ଦିଗ୍‌ବିଦିଗ ଦେଖାଯାଉ ନାହିଁ । ତପୋବନର ମୃଗଗଣ ବେଦୀ ଉପରେ ଶୋଇ ରହିଛନ୍ତି । ନକ୍ଷତ୍ରଭୂଷିତ ଆକାଶରେ ଜ୍ୟୋତ୍ସ୍ନାର ଆବରଣ ପିନ୍ଧି ଚନ୍ଦ୍ରମା ଉଠିଆସୁଛି । ବର୍ତ୍ତମାନ ତୁମେ ରାମଙ୍କ ପାଖକୁ ଯାଅ । କିନ୍ତୁ ଯିବାପୂର୍ବରୁ ଏହି ଦିବ୍ୟ ଅଳଙ୍କାରମାନ ପିନ୍ଧି ମୋର ଆନନ୍ଦ ବର୍ଦ୍ଧନ କର ।

ସୀତା ଅନସୂୟା ଦେଇଥିବା ଅଳଙ୍କାରମାନ ପିନ୍ଧି ଦେବକନ୍ୟା ପରି ଦେଖାଗଲେ । ସେ ତପସ୍ୱିନୀଙ୍କୁ ନମସ୍କାର କରି ରାମଙ୍କ ପାଖକୁ ଫେରିଆସିଲେ । ସୀତା ଅନସୂୟାଙ୍କ ଠାରୁ ମନୁଷ୍ୟମାନଙ୍କ ପକ୍ଷରେ ଦୁର୍ଲ୍ଲଭ ଆଶୀର୍ବାଦ ଓ ବର ଲାଭ କରି ଫେରିଆସିଥିବା ଦେଖି ରାମ ଓ ଲକ୍ଷ୍ମଣ ଅତିଶୟ ଆନନ୍ଦିତ ହେଲେ ।

ସେମାନେ ଅତ୍ରି ଆଶ୍ରମରେ ରାତ୍ରିଯାପନ କରି ପ୍ରଭାତ ହେବାରୁ ତପସ୍ୱୀମାନଙ୍କ ଠାରୁ ବିଦାୟ ନେଲେ । ଋଷିମାନେ କହିଲେ – ରାଘବ, ଏହି ବନରେ ନରମାଂସଭୋଜୀ ରାକ୍ଷସମାନେ ଏବଂ ରୁଧିରଲୋଭୀ ଶ୍ୱାପଦମାନେ ବିଚରଣ କରନ୍ତି । ତୁମେ ସେମାନଙ୍କୁ ନିବାରଣ କର । ଏହି ବାଟରେ ଗଲେ ତୁମେ ଦୁର୍ଗମ ବନ ମଧ୍ୟରେ ପ୍ରବେଶ କରିପାରିବ । ଏହା କହି ସେମାନେ ରାମଙ୍କ ଯାତ୍ରାର ଶୁଭକାମନା କରି ମଙ୍ଗଳାଚରଣ କଲେ । ସୂର୍ଯ୍ୟ ଯେପରି ମେଘମଣ୍ଡଳରେ ପ୍ରବେଶ କରନ୍ତି, ସେହିପରି ଲକ୍ଷ୍ମଣ ଓ ସୀତାଙ୍କ ସହିତ ଅରିନ୍ଦମ ରାମ ସେହି ନିବିଡ଼ ଅରଣ୍ୟ ମଧ୍ୟରେ ପ୍ରବେଶ କଲେ ।

# ୩୯ ॥ ଦଣ୍ଡକାରଣ୍ୟ, ବିରାଧ ବଧ

ରାମ ବହୁ ଋଷିସେବିତ ଦଣ୍ଡକାରଣ୍ୟରେ ପ୍ରବେଶ କଲେ । ସେ ତପସ୍ୱୀମାନଙ୍କର ଏକ ତେଜୋମୟ ଆଶ୍ରମମଣ୍ଡଳ ଦେଖି ଅଭିଭୂତ ହେଲେ । ଚାରିଆଡ଼େ ମୃଗଚର୍ମ, କୁଶ, ବଳ୍କଳ, ସମିଧ, ଜଳପୂର୍ଣ୍ଣ କଳସ ଏବଂ ବିସ୍ତୃତ ଅଗ୍ନିଶାଳା । ଏକ ପରିଷ୍କୃତ, ମାର୍ଜିତ ପ୍ରାଙ୍ଗଣ ଭୂମି । ମୃଗ ଓ ପକ୍ଷୀମାନେ ନିର୍ଭୟରେ ବିଚରଣ କରୁଛନ୍ତି । ଫଳମୂଳାହାରୀ, ବଳ୍କଳ ଓ କୃଷ୍ଣାଜିନଧାରୀ ତେଜସ୍ୱୀ ବୃଦ୍ଧ ତପସ୍ୱୀମାନେ ସେଠାରେ ବେଦଧ୍ୱନି କରୁଛନ୍ତି । ବହୁ ସୁସ୍ୱାଦୁ ଫଳଯୁକ୍ତ ବୃକ୍ଷ, ପୁଷ୍ପିତ ତରୁଲତା ଓ ପଦ୍ମପୂର୍ଣ୍ଣ ତଡ଼ାଗ ତାର ଶୋଭାବର୍ଦ୍ଧନ କରୁଛି । ଧନୁରୁ ଗୁଣ ଖୋଲିଦେଇ ରାମ ଆଶ୍ରମମଣ୍ଡଳ ଆଡ଼କୁ ଅଗ୍ରସର ହେଲେ । ସ୍ୱସ୍ତିବାଚନ ପୂର୍ବକ ଋଷିମାନେ ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ପାଛୋଟି ଆଣିଲେ । ରାମଙ୍କର ସୁକୁମାର ସୁନ୍ଦର ରୂପ ଦେଖି ସେମାନେ ମୋହିତ ହୋଇଗଲେ । ଲକ୍ଷ୍ମଣ ଓ ସୀତାଙ୍କୁ ଅନିମେଷ ନୟନରେ ଚାହିଁରହିଲେ ।

ତପସ୍ୱୀମାନେ ଏକ ସୁନ୍ଦର ପର୍ଣ୍ଣଶାଳା ମଧ୍ୟରେ ରାମ, ଲକ୍ଷ୍ମଣ, ସୀତାଙ୍କୁ ରଖାଇ ଫଳ ମୂଳ, ପୁଷ୍ପ ଓ ଜଳ ଆଦି ଅର୍ପଣ କରି ତାଙ୍କର ଚର୍ଚ୍ଚା କରିବାକୁ ଲାଗିଲେ । ମହାଯଶା ରାମ, ତୁମେ ଧର୍ମରକ୍ଷକ, ସର୍ବଲୋକର ଶରଣ୍ୟ, ସମସ୍ତଙ୍କର ପୂଜନୀୟ ଗୁରୁସଦୃଶ । ଦଣ୍ଡଧାରୀ ରାଜା ଦେବରାଜ ଇନ୍ଦ୍ରଙ୍କର ଅଂଶ ହୋଇ ପ୍ରଜାମାନଙ୍କୁ ରକ୍ଷା କରନ୍ତି । ତେଣୁ ଆମେମାନେ ତୁମର ରକ୍ଷଣୀୟ । ତୁମେ ନଗରରେ ଥାଅ ବା ବନରେ ଥାଅ, ତୁମେ ଆମର ରାଜା । ଦଣ୍ଡ ଆମର ଆଶ୍ରୟ ନୁହେଁ । ଆମେମାନେ ଜିତକ୍ରୋଧ ଓ ଜିତେନ୍ଦ୍ରିୟ । ଆମର ଏକମାତ୍ର ଧନ ହେଉଛି ତପଃ । ତେଣୁ ଗର୍ଭସ୍ଥ ଶିଶୁକୁ ଯେପରି ଯତ୍ନରେ ରକ୍ଷା କରାଯାଏ, ରାଜା ରୂପେ ତୁମେ ଆମକୁ ସେହିପରି ରକ୍ଷା କରିବା ଉଚିତ ।

ଋଷିମାନଙ୍କ ଆତିଥ୍ୟରେ ତୃପ୍ତ ହୋଇ ରାମ ସେଠାରେ ରାତ୍ରିଯାପନ କଲେ । ପ୍ରଭାତ ହେବାରୁ ଋଷିମାନଙ୍କ ଠାରୁ ବିଦାୟ ନେଇ ସେ ଗହନ ବନ ମଧ୍ୟରେ ପ୍ରବେଶ କଲେ । ସେହି ଅରଣ୍ୟ ମୃଗ, ବ୍ୟାଘ୍ର ଓ ବହୁ ହିଂସ୍ରଜନ୍ତୁମାନଙ୍କ ଦ୍ୱାରା ପରିପୂର୍ଣ୍ଣ ଥିଲା । ବୃକ୍ଷ, ଲତା ଗୁଳ୍ମ ଆଦି ଧ୍ୱସ୍ତ ବିଧ୍ୱସ୍ତ ଓ ଜଳାଶୟମାନ ଆବିଳ ଦେଖାଯାଉଥିଲା । ପକ୍ଷୀମାନଙ୍କର କାକଳି ପରିବର୍ତ୍ତେ କେବଳ ଝିଂକାରୀମାନଙ୍କର ରବ ଶୁଣାଯାଉଥିଲା ।

ସେହି ନିର୍ଜନ ଭୟାନକ ବନ ମଧ୍ୟରେ ରାମ ହଠାତ୍ ପର୍ବତ ପରି ଏକ ବିଶାଳ ଭୟଙ୍କର ନରଖାଦକ ରାକ୍ଷସକୁ ଦେଖିଲେ । ତାର ଚକ୍ଷୁ ଗଭୀର, ବଦନ ବିଶାଳ ଏବଂ ଉଦର ବିକଟାକାର ଦେଖାଯାଉଥିଲା । ସେହି ବୀଭତ୍ସ ବିକଟଦର୍ଶନ ରାକ୍ଷସ ବସାରୁଧିରଲିପ୍ତ ବ୍ୟାଘ୍ରଚର୍ମ ପରିଧାନ କରିଥିଲା । ସେ ତିନୋଟି ସିଂହ, ଚାରୋଟି ବାଘ, ଦୁଇଟି ଗଧିଆ, ଦଶଟି ମୃଗ ଏବଂ ଏକ ଦନ୍ତାହାତୀର ମୁଣ୍ଡକୁ ଲୌହଶୂଳରେ ବିଦ୍ଧ କରି ମୁଖବ୍ୟାଦାନପୂର୍ବକ ଭୟଙ୍କର ଗର୍ଜନ କରୁଥିଲା । ରାମ ଓ ଲକ୍ଷ୍ମଣ ତାକୁ ଦେଖି କ'ଣ କରିବେ ବୋଲି ଚିନ୍ତା କରୁଛନ୍ତି, ଏହି ସମୟରେ ସେହି ରାକ୍ଷସ ଘୋର ଗର୍ଜନରେ ମେଦିନୀ କମ୍ପିତ କରି ସେମାନଙ୍କ ଆଡ଼କୁ ଦଉଡ଼ି ଆସିଲା ଓ ସୀତାଙ୍କୁ ଉଠାଇନେଇ କହିଲା, ତୁମେ ଦୁଇଟା

ଅନ୍ତାୟୁ ଜଟାବଲ୍କଳ ପିନ୍ଧି ମୁନି ବୋଲାଉଛ । କିନ୍ତୁ ଧନୁଶର ଓ ଖଡ୍ଗ ଧାରଣ କରି ଏବଂ ଗୋଟାଏ ସ୍ତ୍ରୀଲୋକଙ୍କୁ ସାଙ୍ଗରେ ଧରି ଏହି ଦଣ୍ଡକାରଣ୍ୟରେ ପାପାଚରଣ କରିବାକୁ ଆସିଛ । ତୁମଦ୍ୱାରା ମୁନିଚରିତ୍ର ଦୂଷିତ ହୋଇଛି । ମୁଁ ବିରାଧ ରାକ୍ଷସ । ପ୍ରତିଦିନ ଋଷିମାଂସ ଭକ୍ଷଣ କରି ଏହି ଦୁର୍ଗମ ବନରେ ବିଚରଣ କରେ । ଏହି ବରାରୋହୀ ନାରୀ ମୋର ଭାର୍ଯ୍ୟା ହେବ । ମୁଁ ଯୁଦ୍ଧରେ ତୁମ ଦୁଇ ପାପୀଙ୍କର ରକ୍ତପାନ କରିବି ।

ରାକ୍ଷସଦ୍ୱାରା ଧୃତା ସୀତା ତାର ଏହି ଗର୍ବିତ ବାକ୍ୟ ଶ୍ରବଣ କରି ବାତାହତ କଦଳୀବୃକ୍ଷ ପରି ଥରିବାକୁ ଲାଗିଲେ । ରାମ ଶୋକାର୍ତ୍ତ ହୋଇ ଶୁଷ୍କ ମୁଖରେ ଲକ୍ଷ୍ମଣଙ୍କୁ କହିଲେ, ଶୁଭଲକ୍ଷଣା ଜନକନନ୍ଦିନୀଙ୍କୁ ରାକ୍ଷସଦ୍ୱାରା ଅପହୃତା ଦେଖି ମୋର ମନେହେଉଛି, କୈକେୟୀଙ୍କର ଅଭିଳାଷ ସଫଳ ହେଲା । ରାଜ୍ୟ ହରଣ, ପିତୃ ବିୟୋଗ ସହିତ ଏବେ ପରପୁରୁଷ ନିଷ୍ପାପା ବୈଦେହୀଙ୍କୁ ସ୍ପର୍ଶ କଲା । ଏହାଠାରୁ ଅଧିକ ଦୁଃଖ କ'ଣ ଥାଇପାରେ ?

ଲକ୍ଷ୍ମଣ ଫଣାହତ ନାଗସାପ ପରି ଗର୍ଜନ କରି ସାଶ୍ରୁନୟନ ରାମଙ୍କୁ କହିଲେ, କାକୁତ୍ସ୍ଥ, ତୁମେ ଇନ୍ଦ୍ରତୁଲ୍ୟ ଶକ୍ତିଶାଳୀ, ଅନାଥର ନାଥ । ମୁଁ ପୁଣି ତୁମର ପାଖେ ପାଖେ ରହିଛି । ଏପରି ଅବସ୍ଥାରେ ତୁମେ କାହିଁକି ଶୋକ କରୁଛ ? ମୁଁ ଶରାଘାତରେ ଶୀଘ୍ର ଏହି ରାକ୍ଷସକୁ ନିହତ କରିବି ଏବଂ ପୃଥିବୀ ତାର ରକ୍ତପାନ କରିବ ।

ବିରାଧ ପଚାରିଲା, ତୁମେ କିଏ ଏବଂ କୁଆଡ଼େ ଯାଉଛ ? ରାମ ଉତ୍ତର ଦେଲେ, ଆମେ ସଦାଚାରୀ କ୍ଷତ୍ରିୟ, ବର୍ତ୍ତମାନ ଏହି ବନରେ ବିଚରଣ କରୁଛୁ । ତୁମେ କିଏ ? ବିରାଧ କହିଲା, ମୋର ପିତା ଜୟ ନାମକ ରାକ୍ଷସ ଏବଂ ମାତା ଶତହ୍ରଦା । ରାକ୍ଷସମାନଙ୍କ ମଧ୍ୟରେ ମୁଁ ବିରାଧ ନାମରେ ପରିଚିତ । ମୁଁ ବ୍ରହ୍ମାଙ୍କୁ ତପସ୍ୟାରେ ସନ୍ତୁଷ୍ଟ କରି ବରଲାଭ କରିଛି ଯେ ମୁଁ ଅସ୍ତ୍ରଶସ୍ତ୍ରର ଅବଧ୍ୟ । କୌଣସି ଅସ୍ତ୍ର ମୋର କିଛି କ୍ଷତି କରିପାରିବ ନାହିଁ । ତେଣୁ ଜୀବନର ଆଶା ଥିଲେ ଏ ନାରୀକୁ ଛାଡ଼ିଦେଇ ଶୀଘ୍ର ଯେଉଁଠୁ ଆସିଛ, ସେଠାକୁ ପଳାଇଯାଅ । ରାମ କ୍ରୁଦ୍ଧ ହୋଇ କହିଲେ – ନୀଚ, ତୁ ମୃତ୍ୟୁକୁ ଲୋଡ଼ିବାପାଇଁ ଆସିଛୁ । ମୋ' ହାତରୁ କେବେ ରକ୍ଷା ପାଇବୁ ନାହିଁ । ଏହା କହି ରାମ ସ୍ୱର୍ଣ୍ଣପୁଙ୍ଖଯୁକ୍ତ ସାତୋଟି ଶର ନିକ୍ଷେପ କରି ବିରାଧର ଦେହକୁ ବିଦ୍ଧ କଲେ । ସେହି ଶର ରାକ୍ଷସକୁ ରକ୍ତାକ୍ତ କରି ଭୂମିରେ ପଡ଼ିଲା । ଶରବିଦ୍ଧ ହୋଇ ସୀତାଙ୍କୁ ପରିତ୍ୟାଗ କରି ବିରାଧ କ୍ରୋଧରେ ରାମ ଓ ଲକ୍ଷ୍ମଣଙ୍କ ଆଡ଼କୁ ଦଉଡ଼ିଆସିଲା । ରାମ ଶର ଦ୍ୱାରା ବିରାଧର ଉତ୍ତୋଳିତ ଶୂଳକୁ ଦ୍ୱିଖଣ୍ଡିତ କଲେ ଏବଂ ବହୁ ତୀକ୍ଷ୍ଣ ନାରାଚ ଦ୍ୱାରା ତାର ଶରୀରକୁ ଆଚ୍ଛନ୍ନ କଲେ । କିନ୍ତୁ ରାକ୍ଷସ ହାଇମାରିବା ମାତ୍ରେ ସେ ସବୁ ଶର ତଳକୁ ଖସିପଡ଼ିଲା । ରାମ, ଲକ୍ଷ୍ମଣ ଅସି ଉତ୍ତୋଳନ କରି ଜୋରରେ ରାକ୍ଷସକୁ ପ୍ରହାର କଲେ । ବିରାଧ କ୍ରୁଦ୍ଧ ହୋଇ ବାଳକମାନଙ୍କୁ ଧରି ଉଠାଇବା ପରି ରାମ ଓ ଲକ୍ଷ୍ମଣଙ୍କୁ କାନ୍ଧରେ ବସାଇ ନିବିଡ଼ ବନ ମଧ୍ୟରେ ଦ୍ରୁତ ବେଗରେ ଯିବାକୁ ବସିଲା ।

ସୀତା ଭୁଜଦ୍ୱୟ ଉତ୍ତୋଳନପୂର୍ବକ ଉଚ୍ଚସ୍ୱରରେ କ୍ରନ୍ଦନ କରି କହିଲେ – ଦେଖ, ରୁଦ୍ରମୂର୍ତ୍ତି ଧରି ଏହି ରାକ୍ଷସ ସତ୍ୟନିଷ୍ଠ ରାମ ଓ ଲକ୍ଷ୍ମଣଙ୍କୁ ହରଣ କରି ନେଇଯାଉଛି । ହିଂସ୍ର

ଶ୍ୱାପଦମାନେ ବର୍ତ୍ତମାନ ମୋତେ ଖାଇଯିବେ । ରାକ୍ଷସୋତ୍ତମ, ତୁମେ ରାମ ଓ ଲକ୍ଷ୍ମଣଙ୍କୁ ଛାଡ଼ିଦେଇ ମୋତେ ନେଇଯାଅ ।

ବୈଦେହୀଙ୍କର ବିଳାପ ଶୁଣି କ୍ରୁଦ୍ଧ ରାମ ଓ ଲକ୍ଷ୍ମଣ ବଳପୂର୍ବକ ରାକ୍ଷସର ଦୁଇବାହୁକୁ ଭାଙ୍ଗିଦେଲେ । ଭଗ୍ନବାହୁ ରାକ୍ଷସ ବଜ୍ରପାତ ପରି ଶବ୍ଦ କରି ଭୂପତିତ ହେଲା । ସେମାନେ ଜାନୁ ମୁଷ୍ଟି ଓ ପଦାଘାତ ଦ୍ୱାରା ବାରମ୍ବାର ନିପୀଡ଼ିତ କରିବାକୁ ଲାଗିଲେ । ତଥାପି ରାକ୍ଷସର ମୃତ୍ୟୁ ହେଲା ନାହିଁ । ରାମ କହିଲେ, ଲକ୍ଷ୍ମଣ, ଏହି ରାକ୍ଷସ ଶସ୍ତ୍ରଦ୍ୱାରା ଅବଧ୍ୟ । ଏହାର ଶରୀର ହସ୍ତୀ ତୁଲ୍ୟ । ଶୀଘ୍ର ଏକ ବିଶାଳ ଗର୍ତ୍ତ ଖୋଦନ କର । ଆମେ ତାକୁ ଗାତ ଭିତରେ ପକାଇ ପୋତିଦେବା । ନଚେତ୍ ଅନ୍ୟ କୌଣସିଥିରେ ସେ ମରିବ ନାହିଁ । ଏହା କହି ରାମ ପାଦଦ୍ୱାରା ରାକ୍ଷସର ଗଳାକୁ ଚାପିଧରି ଠିଆହୋଇ ରହିଲେ ।

ପରାଜିତ ମୃତକଳ୍ପ ବିରାଧ କହିଲା– ପୁରୁଷୋତ୍ତମ, ତୁମେ କିଏ ବର୍ତ୍ତମାନ ମୁଁ ଜାଣିପାରୁଛି । ତୁମେ କୌଶଲ୍ୟାନନ୍ଦନ ରାମ, ଏ ମହାଭାଗା ବୈଦେହୀ ଏବଂ ଏ ହେଉଛନ୍ତି ମହାଯଶା ଲକ୍ଷ୍ମଣ । ମୁଁ ତୁମ୍ବୁରୁ ନାମକ ଅଭିଶପ୍ତ ଗନ୍ଧର୍ବ, ଏହି ରାକ୍ଷସରୂପ ଧାରଣ କରିଛି । ମୁଁ ରମ୍ଭାଙ୍କ ପ୍ରତି ଆସକ୍ତ ହୋଇ କୁବେରଙ୍କ କାର୍ଯ୍ୟରେ ଅବହେଳା କରିବାରୁ ସେ ରାକ୍ଷସରୂପେ ଜନ୍ମ ନେବାପାଇଁ ମୋତେ ଅଭିଶାପ ଦେଇଥିଲେ ଏବଂ ତାଙ୍କର କ୍ରୋଧ ଶାନ୍ତ କରିବାପାଇଁ ବହୁ ଅନୁନୟ କରିବାରୁ ସେ କହିଥିଲେ, ଯୁଦ୍ଧରେ ଦାଶରଥି ରାମଙ୍କ ଦ୍ୱାରା ନିହତ ହୋଇ ତୁ ଶାପମୁକ୍ତ ହେବୁ । ପରନ୍ତପ, ବର୍ତ୍ତମାନ ମୁଁ ଶାପମୁକ୍ତ ହୋଇ ଗନ୍ଧର୍ବଲୋକକୁ ଫେରିଯିବି । ଏଠାରୁ ଅର୍ଦ୍ଧଯୋଜନ ଦୂରରେ ଶରଭଙ୍ଗ ଋଷିଙ୍କର ଆଶ୍ରମ । ତୁମେ ଶୀଘ୍ର ତାଙ୍କ ପାଖକୁ ଯାଅ, ତୁମର ମଙ୍ଗଳ ହେବ । ମୋତେ ଏହି ଗର୍ତ୍ତ ମଧ୍ୟରେ ନିକ୍ଷେପ କର । ମୃତ ରାକ୍ଷସମାନଙ୍କର ଏହାହିଁ ସଂସ୍କାରର ଚିରନ୍ତନ ରୀତି ।

ଲକ୍ଷ୍ମଣ ଏକ ବିଶାଳ ଗର୍ତ୍ତ ଖନନ କରି ବିରାଧକୁ ତାହା ମଧ୍ୟରେ ନିକ୍ଷେପ କଲେ । ସେ ଭୟାନକ ଗର୍ଜନରେ ସମସ୍ତ ଅରଣ୍ୟକୁ କମ୍ପିତ କରି ପ୍ରାଣତ୍ୟାଗ କଲା ।

## ୪୦ ॥ ଶରଭଙ୍ଗ ଓ ସୁତୀକ୍ଷ୍ଣ

ରାମ ସୀତାଙ୍କୁ ଆଲିଙ୍ଗନପୂର୍ବକ ସାନ୍ତ୍ୱନା ଦେଇ ଲକ୍ଷ୍ମଣଙ୍କୁ କହିଲେ, ଏହି ବନ ଅତିଶୟ ଦୁର୍ଗମ ଏବଂ ଏଥିସହିତ ଆମର ପରିଚୟ ନାହିଁ । ଚାଲ, ଋଷି ଶରଭଙ୍ଗଙ୍କ ଆଶ୍ରମକୁ ଯିବା ।

ଶରଭଙ୍ଗଙ୍କ ଆଶ୍ରମ ନିକଟରେ ପହଞ୍ଚି ସେମାନେ ଏକ ଅଦ୍‌ଭୁତ ଦୃଶ୍ୟ ଦେଖିବାକୁ ପାଇଲେ । ଜଣେ ତେଜସ୍ୱୀ ପୁରୁଷ ନିଜ ପ୍ରଭାରେ ଚତୁର୍ଦ୍ଦିଗକୁ ଆଲୋକିତ କରି ହରିଦ୍‌ବର୍ଣ୍ଣ ଅଶ୍ୱଯୋଜିତ ରଥରେ ଅବସ୍ଥାନ କରୁଛନ୍ତି । ତାଙ୍କର ରଥ ଭୂମିକୁ ସ୍ପର୍ଶ କରୁ ନାହିଁ ।

ତେଜସ୍ୱୀ ପୁରୁଷମାନଙ୍କ ଦ୍ୱାରା ସେ ପରିବୃତ । ତାଙ୍କର ଶ୍ୱେତବର୍ଣ୍ଣ ବିମଳ ଛତ୍ର ଚନ୍ଦ୍ରମଣ୍ଡଳ ପରି ଶୋଭା ପାଉଛି । ଦୁଇଜଣ ସୁନ୍ଦରୀ ସ୍ୱର୍ଣ୍ଣଦଣ୍ଡଯୁକ୍ତ ଆଲଟ ଓ ଚାମର ଧରି ତାଙ୍କୁ ବ୍ୟଜନ କରୁଛନ୍ତି । ସେ ମହର୍ଷି ଶରଭଙ୍ଗଙ୍କ ସହିତ ଆଳାପନାରତ । ରାମ କହିଲେ — ଲକ୍ଷ୍ମଣ, ଦେଖ, ଏହି ତେଜୋମୟ ରଥ କିପରି ଭୂମିକୁ ସ୍ପର୍ଶ ନ କରି ରହିଛି ! ପୂର୍ବେ ଇନ୍ଦ୍ରଙ୍କର ଅଶ୍ୱମାନଙ୍କ ସମ୍ପର୍କରେ ଯେଉଁ ବର୍ଣ୍ଣନା ଆମେ ଶୁଣିଥିଲୁ, ଏହି ଅଶ୍ୱମାନେ ସେହିପରି ଦେଖାଯାଉଛନ୍ତି । ରଥର ଉଭୟ ପଟେ ବହୁସଂଖ୍ୟାରେ ବଳଶାଳୀ ବିଶାଳବକ୍ଷ ଯୁବକମାନେ ରକ୍ତବର୍ଣ୍ଣ ବସ୍ତ୍ର ଓ କୁଣ୍ଡଳ ପରିଧାନ କରି ଓ ଖଡ୍ଗ ଧାରଣ କରି ଠିଆ ହୋଇଛନ୍ତି । ସେହି ପ୍ରିୟଦର୍ଶନ ଯୋଦ୍ଧାମାନେ ଅଖଣ୍ଡ ଯୌବନ ଲାଭ କରିଥିବା ପରି ଜଣାଯାଉଛି । ରଥାରୂଢ଼ ପୁରୁଷ ଦେବରାଜ ଇନ୍ଦ୍ର ଏବଂ ସେମାନେ ଦେବତା ନୁହନ୍ତି ତ ? ତୁମେ ଏହିଠାରେ ଅପେକ୍ଷା କର । ମୁଁ ଯାଇ ଦେଖିଆସେ ।

ଇନ୍ଦ୍ର ରାମଙ୍କୁ ଆସୁଥିବାର ଦେଖି ମହର୍ଷି ଶରଭଙ୍ଗଙ୍କଠାରୁ ବିଦାୟ ନେଇ କହିଲେ, ରାମ ଆସିବା ପୂର୍ବରୁ ଆମେ ଶୀଘ୍ର ଚାଲିଯିବା ଦରକାର । ବର୍ତ୍ତମାନ ତାଙ୍କ ସହିତ ମୋର ସାକ୍ଷାତ୍ ହେବ ନାହିଁ । ତାଙ୍କ ଦ୍ୱାରା ଅତି ଦୁଷ୍କର କାର୍ଯ୍ୟ ହେବା ପାଇଁ ଅଛି । ସେ ଶତ୍ରୁ ଜୟକରି କୃତକାର୍ଯ୍ୟ ହେବା ପରେ ମୁଁ ତାଙ୍କୁ ସାକ୍ଷାତ ଦେବି । ଇନ୍ଦ୍ର ଓ ଦେବତାମାନେ ଅନ୍ତର୍ହିତ ହୋଇଗଲେ ।

ରାମ, ଲକ୍ଷ୍ମଣ ଓ ସୀତା ଶରଭଙ୍ଗଙ୍କ ପାଦ ବନ୍ଦନା କରି ତାଙ୍କର ଆତିଥ୍ୟ ଗ୍ରହଣ କଲେ । ରାମ ଇନ୍ଦ୍ର ଆସିଥିବା କଥା ପଚାରିବାରୁ ମହର୍ଷି କହିଲେ — ରାମ, ମୁଁ ଉଗ୍ର ତପସ୍ୟା ବଳରେ ବ୍ରହ୍ମଲୋକ ଜୟ କରିଛି । ତେଣୁ ଇନ୍ଦ୍ର ମୋତେ ବ୍ରହ୍ମଲୋକକୁ ନେବା ପାଇଁ ଆସିଥିଲେ । ତୁମେ ଆସୁଥିବାର ଜାଣି ମୁଁ ସ୍ଥିର କଲି ଯେ ତୁମକୁ ନ ଦେଖି ବ୍ରହ୍ମଲୋକକୁ ଯିବି ନାହିଁ । କାରଣ, ତୁମେ ଧର୍ମଜ୍ଞ, ମହାତ୍ମା ଓ ପୁରୁଷମାନଙ୍କ ମଧ୍ୟରେ ଶ୍ରେଷ୍ଠ । ନରୋତ୍ତମ, ମୁଁ ତପୋବଳରେ ସ୍ୱର୍ଗ ଓ ବ୍ରହ୍ମଲୋକ ପ୍ରଭୃତି ସମସ୍ତ ଲୋକ ଜୟ କରିଛି । ମୁଁ ସେ ସମସ୍ତ ପୁଣ୍ୟ ତୁମକୁ ଦାନ କରିବାକୁ ଚାହେଁ ।

ରାମ କହିଲେ — ମହାମୁନି, ମୁଁ ନିଜ କାର୍ଯ୍ୟଦ୍ୱାରା ସେ ସମସ୍ତ ପୁଣ୍ୟ ଅର୍ଜନ କରିବି । ବର୍ତ୍ତମାନ ଏହି ଅରଣ୍ୟରେ ମୁଁ କେଉଁଠାରେ ରହିବି, ତାହା ଆପଣ ମୋତେ ପରାମର୍ଶ ଦିଅନ୍ତୁ । ଶରଭଙ୍ଗ କହିଲେ — ରାମ, ଏହି ବନରେ ସୁତୀକ୍ଷ୍ଣ ନାମରେ ଜଣେ ପରମତେଜସ୍ୱୀ ତପସ୍ୱୀ ଅଛନ୍ତି । ସେ ଏକ ମନୋରମ ବନପ୍ରଦେଶ ବାଛି ତୁମର ବାସସ୍ଥାନର ବ୍ୟବସ୍ଥା କରିଦେବେ । ତୁମେ ମନ୍ଦାକିନୀ ନଦୀ ସ୍ରୋତର ବିପରୀତ ଦିଗକୁ ଗଲେ ସେଠାରେ ପହଞ୍ଚିପାରିବ । ନରୋତ୍ତମ, ତୁମେ କିଛି ସମୟ ଅପେକ୍ଷା କର । ସାପ ତାର ପୁରୁଣା କାତି ଛାଡ଼ିବା ପରି ମୁଁ ବର୍ତ୍ତମାନ ମୋର ଶରୀର ତ୍ୟାଗ କରିବି । ଏହା କହି ଶରଭଙ୍ଗ ପ୍ରଜ୍ୱଳିତ ଅଗ୍ନିରେ ଘୃତାହୁତି ଦେଇ ସେଥିରେ ପ୍ରବେଶ କଲେ । ତାଙ୍କର ଲୋମ, କେଶ, ଚମଡ଼ା, ଅସ୍ଥି, ମାଂସ ଓ ରକ୍ତ ଦଗ୍ଧ ହୋଇଗଲା । ରାମ ବିସ୍ମିତ ହୋଇ ଦେଖିଲେ, ସେ ପାବକତୁଲ୍ୟ କୁମାର ରୂପ ଧାରଣ କରି ଋଷିଲୋକ ଓ ଦେବଲୋକକୁ ଅତିକ୍ରମ କରି ବ୍ରହ୍ମଲୋକ ଆରୋହଣ କଲେ ।

ଶରଭଙ୍ଗଙ୍କ ପରଲୋକ ପରେ ବୈଖାନସ, ବାଳଖିଲ୍ୟ, ଜଳାହାରୀ, ପଞ୍ଚତପା ପ୍ରଭୃତି ଋଷିମାନେ ରାମଙ୍କ ନିକଟରେ ସମବେତ ହୋଇ କହିଲେ, ତୁମେ ଧର୍ମଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଇକ୍ଷ୍ୱାକୁବଂଶ ଓ ପୃଥିବୀର ଈଶ୍ୱର । ତୁମର ଯଶ ଓ ବିକ୍ରମ ତ୍ରିଲୋକରେ ବିଖ୍ୟାତ । ତୁମେ ଧର୍ମବତ୍ସଳ ହୋଇଥିବା ଯୋଗୁଁ ତୁମକୁ ଆମେ କିଛି ନିବେଦନ କରିବାପାଇଁ ସାହସ କରୁଛୁ । ରାମ, ରାଜା ପ୍ରଜାମାନଙ୍କୁ ତାର ପ୍ରାଣାଧିକ ପୁତ୍ର ପରି ବିଚାର କରି ରକ୍ଷା କରିବା ଉଚିତ । ମୁନିମାନଙ୍କର ସଞ୍ଚିତ ପୁଣ୍ୟର ଏକ ଚତୁର୍ଥାଂଶ ପ୍ରଜାରକ୍ଷକ ରାଜାଙ୍କ ପାଖକୁ ଯାଏ । କିନ୍ତୁ ତୁମେ ଥାଉ ଥାଉ ଆଜି ବନବାସୀ ଋଷି ଓ ତପସ୍ୱୀ ବ୍ରାହ୍ମଣମାନେ ରାକ୍ଷସମାନଙ୍କ ଦ୍ୱାରା ନିପୀଡ଼ିତ ହେଉଛନ୍ତି । ରାକ୍ଷସମାନଙ୍କ ଦ୍ୱାରା ନିହତ ବହୁ ମୁନିଙ୍କର ଶରୀର ଇତସ୍ତତଃ ପଡ଼ିଥିବାର ତୁମେ ଦେଖିପାରୁଥିବ । ପମ୍ପା ଓ ମନ୍ଦାକିନୀ ତୀର ଓ ଚିତ୍ରକୂଟ ଅଞ୍ଚଳରେ ରହୁଥିବା ମୁନିମାନେ ଆଉ ରାକ୍ଷସମାନଙ୍କ ଅତ୍ୟାଚାର ସହି ଏଠାରେ ରହିପାରିବେ ନାହିଁ । ତୁମେ ହିଁ ଆମର ଶରଣ ରକ୍ଷକ ।

ରାମ କହିଲେ, ମୋ ନିକଟରେ ଆପଣମାନଙ୍କ ଅନୁନୟ କରିବା ଉଚିତ ନୁହେଁ । ମୁଁ ତ ଆପଣମାନଙ୍କର ଆଦେଶ ପାଳନ କରିବା ପାଇଁ ଆସିଚି । ରାକ୍ଷସମାନଙ୍କର ଅତ୍ୟାଚାର ଦୂର କରିପାରିଲେ ମୋର ବନବାସ ସାର୍ଥକ ହେବ । ମୁଁ ନିଜ ଇଚ୍ଛାରେ ପିତାଙ୍କର ଆଜ୍ଞା ପାଳନ କରି ବନବାସ କରୁଛି । ମୁଁ ଓ ମୋର ଭାଇ ରାକ୍ଷସମାନଙ୍କୁ ନିଶ୍ଚୟ ନିପାତ କରିବୁ । ତାହା ଆପଣମାନେ ସ୍ୱଚକ୍ଷୁରେ ଦେଖିବେ ।

ଏହିପରି ଋଷିମାନଙ୍କୁ ସାନ୍ତ୍ୱନା ଦେଇ ରାମ ସେମାନଙ୍କ ସାଙ୍ଗରେ ସୁତୀକ୍ଷ୍ଣଙ୍କ ଆଶ୍ରମକୁ ଯାତ୍ରାକଲେ । ବହୁଦୂର ଯିବାପରେ ଫୁଲଫଳଭରା ଏକ ସୁନ୍ଦର ବନ ମଧ୍ୟରେ ଜଟାବଲ୍କଳଧାରୀ ତପସ୍ୟାରତ ସୁତୀକ୍ଷ୍ଣଙ୍କୁ ଦେଖିପାରିଲେ । ମହର୍ଷି ରାମଙ୍କର ପରିଚୟ ପାଇ ତାଙ୍କୁ ଆଲିଙ୍ଗନ କରି କହିଲେ– ବୀର ରାମ, ତୁମେ ଧର୍ମଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ । ତୁମକୁ ପାଇ ଏ ଆଶ୍ରମ ସନାଥ ହେଲା । ତୁମେ ରାଜ୍ୟଭ୍ରଷ୍ଟ ହୋଇ ଚିତ୍ରକୂଟରେ ଥିବା କଥା ମୁଁ ଶୁଣିଥିଲି । ଏ ସଂସାରରେ ମୋର କାର୍ଯ୍ୟ ଶେଷ ହୋଇଥିଲେ ମଧ୍ୟ ତୁମକୁ ଦେଖିବା ପାଇଁ ମୁଁ ଅପେକ୍ଷା କରି ରହିଥିଲି । ମୁଁ ପୁଣ୍ୟବଳରେ ସମସ୍ତ ଲୋକ ଜୟ କରିଛି । ଦେବରାଜ ଇନ୍ଦ୍ର ମୋ ନିକଟକୁ ଆସି ତାହା ଘୋଷଣା କରିଛନ୍ତି । ଏବେ ସେ ସମସ୍ତ ତପସ୍ୟାର୍ଜିତ ପୁଣ୍ୟ ମୁଁ ତୁମକୁ ଦାନ କରିବାକୁ ଚାହେଁ ।

ରାମ କହିଲେ– ମହାମୁନି, ମୁଁ ନିଜେ ସେହି ପୁଣ୍ୟ ଅର୍ଜନ କରିବି । ବର୍ତ୍ତମାନ ଏହି ଅରଣ୍ୟରେ କେଉଁଠାରେ ମୋର ବାସସ୍ଥାନ ହେବ, ତାହା ଆଦେଶ କରନ୍ତୁ ।

ସୁତୀକ୍ଷ୍ଣ କହିଲେ– ରାମ, ଏହି ଆଶ୍ରମରେ ହିଁ ତୁମେ ବାସ କର । ଏଠାରେ ପ୍ରଚୁର ଫଳମୂଳ ଅଛି । ବହୁ ଋଷି ଏଠାରେ ବାସ କରୁଛନ୍ତି । ବହୁସଂଖ୍ୟକ ଲୋଭନୀୟ ମୃଗ ନିର୍ଭୟରେ ଏଠାରେ ବିଚରଣ କରନ୍ତି ।

ରାମ କହିଲେ– ମହର୍ଷି, ମୁଁ ଯଦି ସେହି ଲୋଭନୀୟ ମୃଗମାନଙ୍କୁ ତୀକ୍ଷ୍ଣ ଶରରେ ନିହତ କରେ, ତା' ହେଲେ ଆପଣଙ୍କ ମନରେ ଦୁଃଖ ହେବ । ତେଣୁ ବେଶି ଦିନ ଏଠାରେ ରହିବା ମୁଁ ପସନ୍ଦ କରିପାରୁ ନାହିଁ ।

ସୀତା ଓ ଲକ୍ଷ୍ମଣଙ୍କ ସହିତ ମୁନିଙ୍କଦ୍ୱାରା ଅଭ୍ୟର୍ଥିତ ରାମ ଗୋଟିଏ ରାତି ସେହି ଆଶ୍ରମରେ କଟାଇଲେ । ପରଦିନ ପ୍ରଭାତରୁ ଅଗ୍ନି ଓ ଦେବତାମାନଙ୍କର ଉପାସନା କରି ଏବଂ ନବୋଦିତ ସୂର୍ଯ୍ୟଙ୍କୁ ଦର୍ଶନ କରି ମୁନିଙ୍କଠାରୁ ବିଦାୟ ନେଲେ । ମୁନି ପୁଣି ଥରେ ରାମ ଓ ଲକ୍ଷ୍ମଣଙ୍କୁ ଆଲିଙ୍ଗନ କରି କହିଲେ, ଏହି ବାଟରେ ଯାଅ । ବହୁ ରମଣୀୟ ଆଶ୍ରମ, ମୃଗପକ୍ଷୀସେବିତ ଓ ପୁଷ୍ପିତ ତରୁଲତାଯୁକ୍ତ ବନପ୍ରଦେଶ ଏବଂ ପଦ୍ମମଣ୍ଡିତ ନିର୍ମଳ ଓ ସୁନ୍ଦର ଜଳାଶୟମାନ ଦେଖିପାରିବ । ଯେତେବେଳେ ଇଚ୍ଛା ହେବ, ମୋ ଆଶ୍ରମକୁ ଫେରିଆସିବ ।

## ୪୧ ।। ସୀତାଙ୍କର ଆଶଙ୍କା

ସୁତୀକ୍ଷ୍ଣଙ୍କ ଆଶ୍ରମରୁ ବିଦାୟ ନେଇ ବାଟରେ ଯିବାବେଳେ ସୀତା ରାମଙ୍କୁ କହିଲେ – ରାଘବ, ରାକ୍ଷସମାନଙ୍କ ନିଧନ ପାଇଁ ତୁମେ ଋଷିମାନଙ୍କ ନିକଟରେ ଯେଉଁ ପ୍ରତିଜ୍ଞା କଲ, ସେ ବିଷୟରେ ମୁଁ କିଛି କହିବାକୁ ଚାହେଁ । ଏଥିରେ ଅକାରଣ ହିଂସାର ଦୋଷ ଅଛି ବୋଲି ମୁଁ ମନେକରେ । ସଂସାରରେ ତିନି ପ୍ରକାର ଦୋଷ ଅଛି । ମିଥ୍ୟା କହିବା, ପରଦାର ଗମନ କରିବା ଓ ଅକାରଣ ହିଂସା କରିବା । ଏହି ତିନୋଟି ବ୍ୟସନରୁ ଲୋକ ଦୂରରେ ରହିବା ଦରକାର । ନରୋତ୍ତମ, ମୁଁ ଜାଣେ ତୁମେ କେବେ ମିଥ୍ୟା କହି ନାହଁ କି କହିବ ନାହିଁ । ଦ୍ୱିତୀୟ ବ୍ୟସନ ପ୍ରତି ତୁମର କେବେହେଲେ ପ୍ରବୃତ୍ତି ନାହିଁ । କାରଣ, ତୁମେ ନିଜ ପତ୍ନୀ ପ୍ରତି ଅତ୍ୟନ୍ତ ଅନୁରକ୍ତ । ତୁମେ ଜିତେନ୍ଦ୍ରିୟ, ଧର୍ମ ଓ ସତ୍ୟର ଜ୍ଞାତା । କିନ୍ତୁ ବିନା ଶତ୍ରୁତାରେ ହିଂସା କରିବାର ଯେଉଁ ତୃତୀୟ ବ୍ୟସନ, ତାହା ତୁମର ଉପସ୍ଥିତ ହୋଇଛି ।

ମଧୁରଭାଷିଣୀ ସୀତା ନିଜର ଆଶଙ୍କା ପ୍ରକାଶ କରି କହିଲେ – ରାଜକୁମାର, ରାକ୍ଷସମାନଙ୍କୁ ଯୁଦ୍ଧରେ ସଂହାର କରିବା ପାଇଁ ତୁମେ ଦଣ୍ଡକାରଣ୍ୟବାସୀ ଋଷିମାନଙ୍କ ନିକଟରେ ପ୍ରତିଜ୍ଞା କରିଛ । ରାକ୍ଷସମାନେ ତୁମ ପ୍ରତି କି ଶତ୍ରୁତା କରିଛନ୍ତି ଯେ ତୁମେ ତାଙ୍କୁ ସଂହାର କରିବ ? ଏହି କାରଣରୁ ଘୋର ଅନିଷ୍ଟ ସୃଷ୍ଟି ହେବ ଭାବି ଦଣ୍ଡକାରଣ୍ୟ ଯିବା ପାଇଁ ମୋର ମନ ବଳୁ ନାହିଁ । କ୍ଷତ୍ରିୟମାନେ ସ୍ୱଭାବତଃ ବଳ ପ୍ରୟୋଗର ପକ୍ଷପାତୀ । ପୁଣି ସେମାନଙ୍କ ହାତରେ ଧନୁଶର ରହିଲେ ଶୁଖିଲା କାଠଯୋଗୁଁ ନିଆଁ ଜଳିଉଠିଲା ପରି ସେମାନେ ଅଧିକ ଉତ୍ତେଜିତ ହୁଅନ୍ତି ।

ସୀତା କହିଲେ – ମୁଁ ଶୁଣିଛି, ମୃଗପକ୍ଷୀସେବିତ ବନରେ ଜଣେ ପବିତ୍ର ହୃଦୟ ସତ୍ୟନିଷ୍ଠ ଋଷି ତପସ୍ୟା କରୁଥିଲେ । ଇନ୍ଦ୍ର ତାଙ୍କର ତପସ୍ୟାରେ ବିଘ୍ନ ଘଟାଇବା ପାଇଁ ଜଣେ ଖଡ୍‌ଗଧାରୀ ଯୋଦ୍ଧାବେଶରେ ସେଠାରେ ଆସି ପହଞ୍ଚିଲେ ଏବଂ ତାଙ୍କର ଖଡ୍‌ଗକୁ ନ୍ୟାସରୂପେ ଯତ୍ନରେ ରଖିବା ପାଇଁ ତାଙ୍କୁ ଦେଇ ଚାଲିଗଲେ । କ୍ରମେ ଋଷି ତାଙ୍କର ତପସ୍ୟା ଭୁଲିଯାଇ ସେହି ଖଡ୍‌ଗର ଯତ୍ନ ନେବାକୁ ଲାଗିଲେ ଏବଂ ଶେଷରେ ପ୍ରମତ୍ତଭାବରେ ଅକାରଣ ସେହି ଖଡ୍‌ଗ ପ୍ରୟୋଗ କରି ସେ ହିଂସ୍ର ବୃତ୍ତି ଅବଲମ୍ବନ କଲେ । ବର୍ତ୍ତମାନ ସେହିପରି ତୁମେ ଗୋଟିଏ କାର୍ଯ୍ୟରେ ଆସି ଆଉ ଗୋଟିଏ କାର୍ଯ୍ୟରେ ମନ

ଦେଲଣି । କ୍ଷତ୍ରିୟମାନେ ଆର୍ତ୍ତମାନଙ୍କ ରକ୍ଷା ପାଇଁ ଧନୁ ଧାରଣ କରନ୍ତି ସତ୍ୟ, କିନ୍ତୁ ତୁମେ ବନବାସୀ ହୋଇ ତପସ୍ୱୀର ଜୀବନ ଯାପନ କରିବାକୁ ଆସିଛ । କ୍ଷତ୍ରିୟ ଧର୍ମ ଆଚରଣ କରିବାର ଥିଲେ ତୁମେ ବନବାସ ନ କରି ଶସ୍ତ୍ରର ଉପାସନା କରିଥାନ୍ତ । ତୁମେ ତପୋବନରେ ଧର୍ମ ଆଚରଣ କର । ବିନା ଶତ୍ରୁତାରେ ରାକ୍ଷସମାନଙ୍କ ସହିତ ଯୁଦ୍ଧ କରିବା ପାଇଁ ଇଚ୍ଛା କର ନାହିଁ । ସୌମ୍ୟ, ତୁମେ ଧର୍ମର ସମସ୍ତ ତତ୍ତ୍ୱ ଜାଣ । ତୁମକୁ ଉପଦେଶ ଦେବାର ଧୃଷ୍ଟତା ମୋର ନାହିଁ । କେବଳ ସ୍ତ୍ରୀସୁଲଭ ଚପଳତା ଯୋଗୁଁ ମୁଁ ତୁମକୁ କେତେ କଥା କହିପକାଇଲି ।

ରାମ କହିଲେ – ଦେବୀ, ତୁମେ ଯାହା କହିଲ, ତାହା ମଙ୍ଗଳକର ଓ ତୁମର କୁଳଧର୍ମର ଉପଯୁକ୍ତ । କିନ୍ତୁ ତୁମେ କହିଛ ଯେ ଆର୍ତ୍ତମାନଙ୍କ ରକ୍ଷା ପାଇଁ କ୍ଷତ୍ରିୟମାନେ ଧନୁର୍ଦ୍ଧାରଣ କରିଥାନ୍ତି । ଦଣ୍ଡକାରଣ୍ୟବାସୀ ମାନନୀୟ ଋଷିମାନେ ଆର୍ତ୍ତ ଭାବରେ ମୋର ଶରଣାପନ୍ନ ହୋଇଛନ୍ତି । ସେମାନେ ସ୍ୱଧର୍ମରେ ନିରତ, କିନ୍ତୁ ନିଜକୁ ରକ୍ଷା କରିବା ପାଇଁ ସମର୍ଥ ନୁହନ୍ତି । କ୍ରୁରକର୍ମା ରାକ୍ଷସମାନେ ସେମାନଙ୍କର ତପଶ୍ଚରଣରେ ନାନା ବିଘ୍ନ ଘଟାଇବା ସଙ୍ଗେ ସଙ୍ଗେ ସେମାନଙ୍କୁ ହତ୍ୟା କରି ଭକ୍ଷଣ କରୁଛନ୍ତି । ଏପରି ଅବସ୍ଥାରେ ମୁଁ ସେମାନଙ୍କୁ ରକ୍ଷା କରିବି ବୋଲି ପ୍ରତିଶ୍ରୁତି ଦେଇ କିପରି ନିଜର ସତ୍ୟଭଙ୍ଗ କରିବି ? ଜନକନନ୍ଦିନୀ, ମୁଁ ତୁମକୁ, ଲକ୍ଷ୍ମଣଙ୍କୁ, ଏପରିକି ନିଜର ପ୍ରାଣ ମଧ୍ୟ ବିସର୍ଜନ କରିଦେଇପାରେ, କିନ୍ତୁ କେବେହେଲେ ସତ୍ୟପଥରୁ ବିଚଳିତ ହେବି ନାହିଁ । ଅବଶ୍ୟ ତୁମେ ମୋର ପ୍ରାଣଠାରୁ ପ୍ରିୟ ସହଧର୍ମିଣୀ ଭାବରେ ମୋତେ ଯାହା କହିଲ, ତୁମ ପକ୍ଷରେ ତାହା ଆଦୌ ଅନ୍ୟାୟ ହୋଇ ନାହିଁ । କାରଣ, ପ୍ରିୟଜନଙ୍କୁ ହିଁ ହିତୋପଦେଶ ଦିଆଯାଏ, ଅପ୍ରିୟଜନକୁ ନୁହେଁ ।

## ୪୨ ॥ ଦଶବର୍ଷ କଟିଗଲା

ସୀତାଙ୍କୁ ଏହିପରି ଭାବରେ ଆଶ୍ୱାସନା ଦେଇ ରାମ ଋଷିମାନଙ୍କର ରମଣୀୟ ତପୋବନମାନଙ୍କ ଆଡ଼କୁ ଚାଲିଲେ । ଆଗରେ ରାମ, ମଝିରେ ସୁମଧ୍ୟମା ସୀତା ଓ ପଛରେ ଲକ୍ଷ୍ମଣ । ବହୁ ପର୍ବତ, ଅରଣ୍ୟ, ନଦୀ, ଜଳଚରପକ୍ଷୀଯୁକ୍ତ ପଦ୍ମ ସରୋବର ଏବଂ ମୃଗ, ବରାହ ଓ ହସ୍ତୀଯୂଥମାନ ସେମାନେ ଦେଖିବାକୁ ପାଇଲେ । ଏହିପରି ଯାଉ ଯାଉ ସେମାନେ ଏକ ବିଶାଳ ପୁଷ୍କରିଣୀ ଦେଖିଲେ । ଯୋଜନବିସ୍ତାରୀ ସେହି ପୁଷ୍କରିଣୀରେ ହଂସ ଓ ସାରସମାନେ ଖେଳୁଥିଲେ । ହାତୀମାନେ ଗାଧୋଉଥିଲେ । ଅସଂଖ୍ୟ ରକ୍ତପଦ୍ମ ଓ ଶ୍ୱେତପଦ୍ମ ଫୁଟି ତାର ସୌନ୍ଦର୍ଯ୍ୟ ବର୍ଦ୍ଧନ କରୁଥିଲା । କିନ୍ତୁ ସେହି ପୁଷ୍କରିଣୀ ଭିତରୁ ବାଦ୍ୟଗୀତର ମନୋହର ସଙ୍ଗୀତ ଶୁଣିପାରି ରାମ ଆଶ୍ଚର୍ଯ୍ୟ ହେଲେ । କୌତୂହଳବଶତଃ ଧର୍ମଭୃତ ନାମକ ଜଣେ ମୁନିଙ୍କୁ ପଚାରିବାରୁ ସେ କହିଲେ, ଏହି ତଡ଼ାଗର ନାମ ପଞ୍ଚାପ୍ସର । ମହାମୁନି ମାଣ୍ଡକର୍ଣ୍ଣି ବର୍ଷ ବର୍ଷ ଧରି ଏହି ଜଳାଶୟରେ ରହି ବାୟୁଭକ୍ଷଣ ପୂର୍ବକ କଠୋର ତପସ୍ୟା କରୁଥିଲେ । ଏଥିରେ ଅଗ୍ନିପ୍ରମୁଖ ଦେବତାମାନଙ୍କର ଆସନ ଟଳମଳ ହେଲା । ସେମାନେ ଋଷିଙ୍କର ତପୋଭଙ୍ଗ ପାଇଁ

ବିଦ୍ୟୁତ୍ ପରି ଦୀପ୍ତିମୟୀ ପାଞ୍ଚଜଣ ସୁନ୍ଦରୀ ଅପସ୍ୱରାଙ୍କୁ ପଠାଇଲେ । ଅପସ୍ୱରାମାନେ ମୁନିଙ୍କୁ ବଶୀଭୂତ କରି ତାଙ୍କର ପତ୍ନୀ ହୋଇ ରହିଲେ ଏବଂ ତପସ୍ୟାର ପ୍ରଭାବରେ ନବଯୌବନ ଲାଭ କରିଥିବା ମାଣ୍ଡକର୍ଣ୍ଣି ଋଷି ସରୋବର ମଧ୍ୟରେ ଏକ ଗୁପ୍ତ ପ୍ରାସାଦ ନିର୍ମାଣ କରି କଳାକୁଶଳା ଅପ୍‌ସରାମାନଙ୍କ ସହିତ ଗୀତ, ବାଦ୍ୟ ଓ ସଙ୍ଗୀତରେ ମଜ୍ଜି ରହିଲେ । ବର୍ତ୍ତମାନ ଅପସ୍ୱରାମାନଙ୍କ ସେହି ମନୋହର ସଙ୍ଗୀତର ସ୍ୱନ ତୁମେ ଶୁଣିପାରୁଛ ।

କିଛିବାଟ ଯିବା ପରେ ରାମ, ଲକ୍ଷ୍ମଣ ଓ ସୀତା ପୁଣି ଏକ ଆଶ୍ରମମଣ୍ଡଳ ଦେଖିବାକୁ ପାଇଲେ । ମୁନିମାନଙ୍କ ଦ୍ୱାରା ଅଭ୍ୟର୍ଥିତ ହୋଇ ରାମ ସେହି ଆଶ୍ରମମଣ୍ଡଳରେ ରହିବା ପାଇଁ ସ୍ଥିର କଲେ । କେଉଁ ଆଶ୍ରମରେ ଦଶମାସ, କେଉଁଠି ବରଷେ, କେଉଁଠି ଛ' ମାସ ଏହିପରି ଭାବରେ ବିଭିନ୍ନ ଆଶ୍ରମ ପର୍ଯ୍ୟଟନ କରି ମୁନିମାନଙ୍କ ସ୍ନେହ ଓ ଆଦର ଲାଭ କରି ତାଙ୍କର ଦଶବର୍ଷ କଟିଗଲା । ରାମ ସେଠାରୁ ସୁତୀକ୍ଷ୍ଣଙ୍କ ଆଶ୍ରମକୁ ଫେରିଯାଇ ସେଠାରେ କିଛିକାଳ ରହିବାପରେ ଦିନେ ମୁନିଙ୍କୁ କହିଲେ – ଭଗବନ୍, ଏହି ଅରଣ୍ୟରେ ମହାମୁନି ଅଗସ୍ତ୍ୟ ବାସ କରୁଥିବାର ମୁଁ ଶୁଣିପାରୁଛି । ବିଶାଳ ଘନ ଅରଣ୍ୟ ମଧ୍ୟରେ ସେ କେଉଁଠି ରହୁଛନ୍ତି, ତାହା ମୁଁ ଜାଣିପାରୁ ନାହିଁ । ମୁଁ ସୀତା ଓ ଲକ୍ଷ୍ମଣଙ୍କ ସହିତ ତାଙ୍କର ଦର୍ଶନ ପାଇଁ ଯିବାକୁ ଇଚ୍ଛା କରୁଛି । ସୁତୀକ୍ଷ୍ଣ କହିଲେ, ତୁମେ ଅଗସ୍ତ୍ୟଙ୍କ ଦର୍ଶନ ପାଇଁ ଯାଅ ବୋଲି ମୁଁ ମଧ୍ୟ ଚାହୁଥିଲି । ଏଠାରୁ ଦକ୍ଷିଣକୁ ଚାରିଯୋଜନ ବାଟ ଯିବାପରେ ତୁମେ ଅଗସ୍ତ୍ୟଙ୍କର ବିଶାଳ ମନୋରମ ଆଶ୍ରମ ଦେଖିପାରିବ । ସେଠାକୁ ଯିବା ପୂର୍ବରୁ ବାଟରେ ସରୋବରମାନଙ୍କ ଦ୍ୱାରା ଶୋଭିତ ବହୁ ଅଶ୍ୱତ୍ଥବୃକ୍ଷପୂର୍ଣ୍ଣ ଏକ ସୁନ୍ଦର ବନ ପଡ଼ିବ । ସେଠାରେ ଆଶ୍ରମରେ ରାତ୍ରିଯାପନ କରି ପ୍ରଭାତରେ ତୁମେ ଅଗସ୍ତ୍ୟଙ୍କ ଆଶ୍ରମକୁ ଯାଇ ମହାଯଶା ଋଷିଙ୍କର ଦର୍ଶନ କରିପାରିବ ।

ରାମ ସୁତୀକ୍ଷ୍ଣଙ୍କ ନିର୍ଦ୍ଧାରିତ ପଥରେ ଯାତ୍ରା କଲେ ଏବଂ ବହୁଦୂର ଯିବା ପରେ ଏପରି ଏକ ସ୍ଥାନରେ ପହଞ୍ଚିଲେ, ଯେଉଁଠାରେ ଅଶ୍ୱତ୍ଥବୃକ୍ଷମାନଙ୍କ ବନ, ବହୁ ପୁଷ୍ପ ଓ ଫଳଭରା ବୃକ୍ଷ ଓ ସୁନ୍ଦର ଜଳାଶୟମାନ ଦେଖିବାକୁ ପାଇଲେ । ରାମ ଲକ୍ଷ୍ମଣଙ୍କୁ କହିଲେ, ମୁଁ ଋଷି ସୁତୀକ୍ଷ୍ଣଙ୍କଠାରୁ ଯାହା ଶୁଣିଥିଲି, ଏହି ସେହି ସ୍ଥାନ ଆସିଗଲା । ଏଠାରେ ଆମେ ପୁଣ୍ୟକର୍ମା ଅଗସ୍ତ୍ୟଙ୍କ ଭ୍ରାତାଙ୍କ ଆଶ୍ରମରେ ରାତ୍ରିଯାପନ କରିବା । ପ୍ରାଣୀମାନଙ୍କ ମଙ୍ଗଳ ପାଇଁ ମହର୍ଷି ଅଗସ୍ତ୍ୟ ରାକ୍ଷସମାନଙ୍କୁ ବଧ କରି ଏହି ସ୍ଥାନକୁ ନିରାପଦ କରିଥିଲେ । ଏଠାରେ ଏକ ସମୟରେ ବାତାପି ଓ ଇଲ୍ୱଳ ନାମରେ ଦୁଇଜଣ ନିଷ୍ଠୁର ମହାରାକ୍ଷସ ବାସ କରୁଥିଲେ । ସେମାନେ ଦୁଇ ଭାଇ ଥିଲେ । ଇଲ୍ୱଳ ବ୍ରାହ୍ମଣବେଶ ଧରି ସଂସ୍କୃତ ଉଚ୍ଚାରଣ ପୂର୍ବକ ବ୍ରାହ୍ମଣମାନଙ୍କୁ ଶ୍ରାଦ୍ଧ ବାହାନାରେ ନିମନ୍ତ୍ରଣ କରି ଆଣୁଥିଲା । ବାତାପି ଏକ ମେଣ୍ଢା ହୋଇଯାଉଥିଲା । ଇଲ୍ୱଳ ତାକୁ କାଟି ରନ୍ଧନ କରି ନିମନ୍ତ୍ରିତ ବ୍ରାହ୍ମଣମାନଙ୍କୁ ଖାଇବାକୁ ଦେଉଥିଲା । ସେମାନେ ଖାଇସାରିବା ପରେ ଇଲ୍ୱଳ ଉଚ୍ଚସ୍ୱରରେ ଡାକୁଥିଲା – ବାତାପି, ବାହାରିଆସ । ବାତାପି ତତ୍‌କ୍ଷଣାତ୍ ମେଣ୍ଢାପରି ବୋବାଇ ବ୍ରାହ୍ମଣମାନଙ୍କ ଶରୀରକୁ ଚିରି ବାହାରି ଆସୁଥିଲା । ଏହିପରି ସହସ୍ର ସହସ୍ର ବ୍ରାହ୍ମଣ ନିହତ ହେଲେ । ଦିନେ

ଦେବତାମାନଙ୍କ ଅନୁରୋଧରେ ମହର୍ଷି ଅଗସ୍ତ୍ୟ ଶ୍ରାଦ୍ଧକୁ ନିମନ୍ତ୍ରିତ ହୋଇ ଯାଇ ମେଷରୂପୀ ବାତାପିର ମାଂସକୁ ଭୋଜନ କଲେ । ଇଲ୍ୱଳ ଅଗସ୍ତ୍ୟଙ୍କୁ ହାତ ଧୋଇବାକୁ ପାଣି ଦେଇସାରି ପୂର୍ବପରି ତାର ଭାଇକୁ ଡାକିଲା – ବାତାପି ବାହାରିଆସ । ଅଗସ୍ତ୍ୟ ହସି ହସି କହିଲେ – ଇଲ୍ୱଳ, ମୁଁ ତୋର ଭାଇକୁ ଖାଇ ଜୀର୍ଣ୍ଣ କରି ଦେଇଛି । ତାର ଆଉ ଫେରି ଆସିବାର ଶକ୍ତି ନାହିଁ । ସେ ଏବେ ଯମାଳୟରେ । ଇଲ୍ୱଳ କ୍ରୁଦ୍ଧ ହୋଇ ଋଷିଙ୍କୁ ଆକ୍ରମଣ କରିବାକୁ ଦୌଡ଼ି ଆସିଲା । କିନ୍ତୁ ଦୀପ୍ତତେଜା ମୁନିଙ୍କ ଦୃଷ୍ଟିନିର୍ଗତ ଅନଳରେ ଦଗ୍ଧ ହୋଇ ନିହତ ହେଲା । ସେହିଦିନଠାରୁ ହିଂସ୍ର ରାକ୍ଷସମାନେ ଏ ଆଡ଼କୁ ଭୟରେ ଆସି ପାରୁନାହାନ୍ତି ।

ରାମ କହିଲେ – ଲକ୍ଷ୍ମଣ, ମହର୍ଷି ନିଜ କାର୍ଯ୍ୟ ଦ୍ୱାରା ଅଗସ୍ତ୍ୟ ନାମରେ ବିଖ୍ୟାତ ହୋଇଛନ୍ତି । ଅଗ ଅର୍ଥାତ୍ ପର୍ବତକୁ ସେ ସ୍ତମ୍ଭନ କରିଥିଲେ । ଏକଦା ହିମାଳୟ ସହିତ ପ୍ରତିଯୋଗିତା କରି ବିନ୍ଧ୍ୟପର୍ବତ ନିଜର କଳେବର ବୃଦ୍ଧି କରିବା ଫଳରେ ସୂର୍ଯ୍ୟଙ୍କର ପଥରୋଧ ହେଲା । ଅଗସ୍ତ୍ୟ ବିନ୍ଧ୍ୟପର୍ବତଙ୍କର ଗୁରୁ ଥିଲେ । ତେଣୁ ସେ ତାଙ୍କ ପାଖରେ ପହଞ୍ଚିବାରୁ ବିନ୍ଧ୍ୟ ମୁଣ୍ଡ ନୁଆଁଇ ତାଙ୍କୁ ନମସ୍କାର କଲେ । ଅଗସ୍ତ୍ୟ କହିଲେ, ମୁଁ ଦକ୍ଷିଣ ଦିଗକୁ ଯାତ୍ରା କରୁଛି । ମୁଁ ନ ଫେରିବା ପର୍ଯ୍ୟନ୍ତ ତୁମେ ସେହିପରି ରହିଥାଅ ।

ଏହିପରି ଅଗସ୍ତ୍ୟଙ୍କ ଗୁଣ କୀର୍ତ୍ତନ କରି ଲକ୍ଷ୍ମଣ ଓ ସୀତାଙ୍କ ସହିତ ରାମ ମହର୍ଷିଙ୍କର ଭାଇଙ୍କ ଆଶ୍ରମରେ ରାତ୍ରିଯାପନ କଲେ ।

## ୪୩ ॥ ମହର୍ଷି ଅଗସ୍ତ୍ୟଙ୍କର ଆଶୀର୍ବାଦ

ସକାଳ ହେବାରୁ ମୁନିଙ୍କଠାରୁ ବିଦାୟ ନେଇ ସେମାନେ ଅଗସ୍ତ୍ୟଙ୍କ ଦର୍ଶନ ପାଇଁ ବ୍ୟଗ୍ରମନରେ ଯାତ୍ରା କଲେ । ଅଗସ୍ତ୍ୟଙ୍କର ମନୋରମ ବିଶାଳ ଆଶ୍ରମ ରାମଙ୍କୁ ମୋହିତ କଲା । ହସ୍ତୀ ଓ ମୃଗମାନଙ୍କର ସ୍ୱଚ୍ଛନ୍ଦ ବିହାର, ବିହଙ୍ଗମାନଙ୍କ କାକଳି, ମୁନିଗଣଙ୍କର ହୋମରୁ ଉତ୍‌ଥିତ ଧୂମରାଶି, ବିଶେଷତଃ ଏହି ତ୍ରିଲୋକବିଶ୍ରୁତ ଋଷିଙ୍କର ଅବସ୍ଥିତି ରାମଙ୍କ ମନରେ ଏପରି ଆକର୍ଷଣ ସୃଷ୍ଟି କଲା ଯେ ସେ ଲକ୍ଷ୍ମଣଙ୍କୁ କହିଲେ – ସୌମିତ୍ରି, ବନବାସର ଶେଷଭାଗ ଏହିଠାରେ ମୁଁ ଯାପନ କରିବି । କାରଣ, ଦେବଗନ୍ଧର୍ବମାନଙ୍କ ସେବିତ, ମିଥ୍ୟା, ଶଠତା, କ୍ରୂରତା ଆଦି ନ ଥିବା ଏପରି ସ୍ଥାନ ସଂସାରରେ ବିରଳ ।

ମୁନିଙ୍କର ଦର୍ଶନ ପାଇଁ ତାଙ୍କର ଅନୁମତି ନେବା ପାଇଁ ସେ ଲକ୍ଷ୍ମଣଙ୍କୁ ଆଗରୁ ପଠାଇଲେ । ଲକ୍ଷ୍ମଣ ଅଗସ୍ତ୍ୟଙ୍କର ଜଣେ ଶିଷ୍ୟଙ୍କୁ ଦେଖି କହିଲେ, ରାଜା ଦଶରଥଙ୍କର ଜ୍ୟେଷ୍ଠପୁତ୍ର ରାମ ମୁନିଙ୍କୁ ଦର୍ଶନ କରିବା ପାଇଁ ଆସିଛନ୍ତି । ତାଙ୍କ ସହିତ ତାଙ୍କର ସ୍ତ୍ରୀ ଓ ମୁଁ ତାଙ୍କର ସାନଭାଇ ଲକ୍ଷ୍ମଣ ଆସିଛୁ ।

ଶିଷ୍ୟ ଋଷିଙ୍କୁ ଜଣାଇବାରୁ ସେ ନିଜେ ରାମଙ୍କୁ ପାଛୋଟି ନେବା ପାଇଁ ଚାଲିଆସିଲେ । ରାମ, ଲକ୍ଷ୍ମଣ ଓ ସୀତା ମହର୍ଷିଙ୍କର ଚରଣ ବନ୍ଦନା କରି କୃତାଞ୍ଜଳି ହୋଇ

ଠିଆ ହୋଇ ରହିଲେ । ଅଗସ୍ତ୍ୟ ରାମଙ୍କର କୁଶଳ ଜିଜ୍ଞାସା କରି ପାଦ୍ୟ, ଅର୍ଘ୍ୟ ଓ ବାନପ୍ରସ୍ଥ ରୀତିରେ ତାଙ୍କର ଭୋଜନର ବ୍ୟବସ୍ଥା କଲେ ଏବଂ କହିଲେ – କାକୁତ୍ସ୍ଥ ଅତିଥିଙ୍କର ଉପଯୁକ୍ତ ସତ୍କାର ହେଉଛି ତପସ୍ୱୀର କର୍ତ୍ତବ୍ୟ । ତୁମେ ବୀର, ଧର୍ମଜ୍ଞ, ସମସ୍ତ ଲୋକର ରାଜା । ତୁମପରି ପ୍ରିୟ ଅତିଥି ସର୍ବଦା ପୂଜାର ଯୋଗ୍ୟ ।

ଫଳ, ମୂଳ, ପୁଷ୍ପ ଓ ଅନ୍ୟାନ୍ୟ ଅଭୀଷ୍ଟ ଦ୍ରବ୍ୟ ଆଦି ଉପହାର ଦେଇ ଋଷି ପୁଣି କହିଲେ – ନରୋତ୍ତମ, ସ୍ୱର୍ଣ୍ଣ ଓ ରତ୍ନଭୂଷିତ ଏହି ଦିବ୍ୟ ବୈଷ୍ଣବ ଧନୁ ମୁଁ ତୁମକୁ ଦାନ କରୁଛି । ବିଶ୍ୱକର୍ମାଙ୍କ ଦ୍ୱାରା ଏହା ନିର୍ମିତ ଓ ପୂର୍ବେ ବିଷ୍ଣୁ ଏହି ଧନୁ ଦ୍ୱାରା ଅସୁରମାନଙ୍କୁ ନିହତ କରିଥିଲେ । ସୂର୍ଯ୍ୟପରି ଦୀପ୍ତିମନ୍ତ ଏହି ଅମୋଘ ଶର, ସ୍ୱର୍ଣ୍ଣମୟ କୋଷ ଓ ସୁବର୍ଣ୍ଣମଣ୍ଡିତ ଖଡ଼୍‌ଗ, ବହୁ ତେଜୀୟାନ ନାରାଚରେ ପୂର୍ଣ୍ଣ ହୋଇଥିବା ଏହି ତୂଣୀର ପୂର୍ବେ ଇନ୍ଦ୍ର ମୋତେ ଦାନ କରିଥିଲେ । ମାନଦ, ଇନ୍ଦ୍ରଙ୍କର ଏହି ସମସ୍ତ ଶର, ଧନୁ, ତୂଣୀର ଓ ଖଡ଼୍‌ଗ ଗ୍ରହଣ କରି ବିଜୟ ଲାଭ କର ।

ସମସ୍ତ ଆୟୁଧ ରାମଙ୍କୁ ପ୍ରଦାନ କରିବା ପରେ ଅଗସ୍ତ୍ୟ ସୀତାଙ୍କର ପ୍ରଶଂସା କରି କହିଲେ – ରାମ, ସୀତା ଅନନ୍ୟା । ନାରୀମାନଙ୍କ ମଧ୍ୟରେ ତାଙ୍କର ତୁଳନା ନାହିଁ । ସ୍ତ୍ରୀମାନଙ୍କ ସମ୍ପର୍କରେ କୁହାଯାଏ ଯେ ସମ୍ପଦ ସମୟରେ ସେମାନେ ରହନ୍ତି, ବିପଦ ସମୟରେ ଛାଡ଼ି ଚାଲିଯାନ୍ତି । ସେମାନେ ବିଦ୍ୟୁତ୍ ପରି ଚଞ୍ଚଳା, ଶସ୍ତ୍ର ପରି ତୀକ୍ଷ୍ଣ ଓ ବାୟୁ ପରି ଶୀଘ୍ରଗତି । କିନ୍ତୁ ତୁମର ପତ୍ନୀ ଏ ସମସ୍ତ ଦୋଷରୁ ମୁକ୍ତ । ସେ ଅତି ସୁକୁମାରୀ । କେବେହେଲେ ଦୁଃଖ ଭୋଗ କରି ନାହାନ୍ତି । କିନ୍ତୁ ଭର୍ତ୍ତାଙ୍କର ସ୍ନେହରେ ପ୍ରଣୋଦିତ ହୋଇ ସେ ଘୋର ବନବାସ ଦୁଃଖକୁ ଆନନ୍ଦରେ ବରଣ କରୁଛନ୍ତି । ଅରୁନ୍ଧତୀଙ୍କ ପରି ସେ ଅଗ୍ରଗଣ୍ୟା ଓ ପ୍ରଶଂସନୀୟା । ଯେଉଁଠାରେ ଜନକନନ୍ଦିନୀ ଓ ସୁମିତ୍ରାଙ୍କ ପୁତ୍ର ସହିତ ତୁମେ ବାସ କରିବ, ତାହା ଧନ୍ୟ ହେବ ।

ରାମ କହିଲେ – ମୁନିଶ୍ରେଷ୍ଠ, ଆପଣ ମୋର ଭ୍ରାତା, ପତ୍ନୀ ଓ ମୋ ଉପରେ ସନ୍ତୁଷ୍ଟ ହୋଇଛନ୍ତି, ଏଥିରେ ମୁଁ ନିଜକୁ ଧନ୍ୟ ଓ ଅନୁଗୃହୀତ ମନେକରୁଛି । ଆପଣ ମୋତେ ଏପରି ଗୋଟିଏ ସ୍ଥାନ କହନ୍ତୁ, ଯେଉଁଠାରେ ଯଥେଷ୍ଟ ପରିମାଣରେ ଜଳ ଓ ସୁନ୍ଦର ବନପ୍ରଦେଶ ରହିଥିବ । ମୁଁ ସେଠାରେ ଏକ ଆଶ୍ରମ ନିର୍ମାଣ କରି ସୁଖରେ ବାସ କରିପାରିବି । ଅଗସ୍ତ୍ୟ କହିଲେ, ଏଠାରୁ ଦୁଇ ଯୋଜନ ଦୂରରେ ଫଳମୂଳ ଜଳପୂର୍ଣ୍ଣ ପଞ୍ଚବଟୀ ନାମରେ ଏକ ବିଖ୍ୟାତ ବନ ଅଛି । ସେଠାରେ ବହୁ ସଂଖ୍ୟାରେ ମୃଗ ଅଛନ୍ତି । ସେହିଠାରେ ଆଶ୍ରମ ନିର୍ମାଣ କରି ତୁମେ ପିତୃସତ୍ୟ ପାଳନପୂର୍ବକ ଆନନ୍ଦରେ ରହିପାରିବ । ରାଜା ଦଶରଥ ବନବାସପାଇଁ ଯେଉଁ ସମୟ ନିର୍ଦ୍ଦେଶ କରିଥିଲେ, ତାର ଅଧିକାଂଶ ସମୟ ତୁମର ବିତିଗଲାଣି । ଅବଶିଷ୍ଟ ସମୟ କଟାଇଦେଇ ତୁମେ ପ୍ରତିଜ୍ଞା ପାଳନ କରି ସୁଖରେ ରାଜଭୋଗ କରିବ । ପଞ୍ଚବଟୀ ଏହି ଆଶ୍ରମଠାରୁ ବେଶି ଦୂର ନୁହେଁ । ଗୋଦାବରୀ ତୀରବର୍ତ୍ତୀ ସେହି ସୁନ୍ଦର ବନରେ ରହି ମୈଥିଳୀ ମଧ୍ୟ ଆନନ୍ଦିତ ହେବେ । ଅଗସ୍ତ୍ୟ ପଞ୍ଚବଟୀକୁ ବାଟ ବତାଇଦେଇ କହିଲେ, ଯେଉଁ ଅଶୋକ ବୃକ୍ଷର ବନ

ଦେଖାଯାଉଛି, ତାହା ପାରି ହେଲେ ଏକ ବିଶାଳ ବଟବୃକ୍ଷକୁ ଲକ୍ଷ୍ୟ କରି ତୁମେ ଉତ୍ତର ଦିଗକୁ ଯାତ୍ରା କରିବ ଏବଂ ଅଳ୍ପ ସମୟ ପରେ ପୁଷ୍ପିତ ପଞ୍ଚବଟୀ ବନରେ ପ୍ରବେଶ କରିବ ।

ଋଷିପ୍ରଦତ୍ତ ଆୟୁଧମାନ ଗ୍ରହଣ କରି ରାମ ଅଗସ୍ତ୍ୟଙ୍କର ପଦବନ୍ଦନା କଲେ ଏବଂ ତାଙ୍କଠାରୁ ବିଦାୟ ନେଇ ପଞ୍ଚବଟୀ ଯାତ୍ରାକଲେ । ଗଲାବେଳେ ବାଟରେ ସେମାନେ ଏକ ଭୀମପରାକ୍ରମ ବିଶାଳକାୟ ଗୃଧ୍ରକୁ ବଟବୃକ୍ଷରେ ବସିଥିବାର ଦେଖିଲେ । ରାମ ଲକ୍ଷ୍ମଣ ସେହି ପକ୍ଷୀକୁ ଏକ ରାକ୍ଷସ ବୋଲି ମନେକରି 'ଆପଣ କିଏ' ବୋଲି ପଚାରିଲେ । ଗୃଧ୍ର ମଧୁର କଥାରେ ଉତ୍ତର ଦେଲା, ମୁଁ ତୁମର ପିତାଙ୍କର ସଖା । ରାମ ବିନୀତ ଭାବରେ ତାଙ୍କୁ ଅଭିବାଦନ କରି ବିଶେଷ ପରିଚୟ ଜିଜ୍ଞାସା କଲେ ।

ଗୃଧ୍ର ପ୍ରାଣିଜଗତର ବଂଶ ବର୍ଣ୍ଣନା କରି କହିଲା, ରାଘବ, ବିନତାଙ୍କର ଦୁଇ ପୁତ୍ର ଗରୁଡ଼ ଓ ଅରୁଣ । ମୁଁ ଅରୁଣଙ୍କ ବଂଶରେ ଜନ୍ମ ହୋଇଛି, ମୋର ନାମ ଜଟାୟୁ । ମୋର ବଡ଼ ଭାଇ ସଂପାତି । ଅରିନ୍ଦମ, ତୁମେ ଯଦି ଚାହ, ମୁଁ ତୁମର ସହାୟକ ହୋଇପାରିବି । ପଶୁ ଓ ରାକ୍ଷସସଙ୍କୁଳ ଏହି କାନ୍ତାର ମଧ୍ୟରେ ଲକ୍ଷ୍ମଣ ଓ ତୁମେ କୁଆଡ଼େ ଯାଇଥିବାବେଳେ ମୁଁ ସୀତାଙ୍କୁ ରକ୍ଷା କରିବି ।

ରାମ ଆନନ୍ଦରେ ଜଟାୟୁଙ୍କୁ ଆଲିଙ୍ଗନ କଲେ ଏବଂ ତାଙ୍କୁ ସାଙ୍ଗରେ ଧରି ପଞ୍ଚବଟୀରେ ପ୍ରବେଶ କଲେ ।

## ୪୪ ।। ପଞ୍ଚବଟୀରେ ପର୍ଣ୍ଣକୁଟୀ

ରାମ ପଞ୍ଚବଟୀକୁ ଆସି ଆଶ୍ରମ ନିର୍ମାଣ ପାଇଁ ଏକ ଉପଯୁକ୍ତ ସ୍ଥାନ ନିରୂପଣ କଲେ । ସେ ଲକ୍ଷ୍ମଣଙ୍କର ହାତ ଧରି କହିଲେ – ସୌମ୍ୟ, ଏ ସ୍ଥାନ ସମତଳ, ସୁନ୍ଦର ଓ ପୁଷ୍ପିତ ତରୁମାନଙ୍କ ଦ୍ୱାରା ବେଷ୍ଟିତ । ଏହିଠାରେ ଆଶ୍ରମ ନିର୍ମାଣ କର । ଅଳ୍ପ ଦୂରରେ ଏକ ନିର୍ମଳଜଳ-ବିଶିଷ୍ଟ ସୁନ୍ଦର ପଦ୍ମପୋଖରୀ ଶୋଭାପାଉଛି । ଦେଖ, ଋଷି ଅଗସ୍ତ୍ୟ ଯାହା କହିଥିଲେ, ନିକଟରେ ଗୋଦାବରୀ ନଦୀ ପ୍ରବାହିତ ହେଉଛି । ତାର କୂଳରେ ପୁଷ୍ପିତ ତରୁରାଜି । ଏହାର ଜଳ ହଂସ, କାରଣ୍ଡକ ଓ ଚକ୍ରବାକ ପକ୍ଷୀମାନଙ୍କ ଦ୍ୱାରା ପରିପୂର୍ଣ୍ଣ । ଅଦୂରରେ ମୃଗମାନେ ବିଚରଣ କରୁଛନ୍ତି । ବହୁ କନ୍ଦରଯୁକ୍ତ ପର୍ବତମାନ ରହିଛି । ଏହି ପର୍ବତର ସ୍ଥାନେ ସ୍ଥାନେ ସୁବର୍ଣ୍ଣ, ରଜତ ଓ ତାମ୍ର ପ୍ରଭୃତି ଥିବାରୁ ଚିତ୍ରିତ ହସ୍ତୀ ପରି ଦେଖାଯାଉଛି । ଶାଳ, ତାଳ, ତମାଳ, ଖର୍ଜୁର, ପନସ, ଆମ୍ର, ଚମ୍ପକ, ଅଶୋକ, ଚନ୍ଦନ, କଦମ୍ବ ଓ କିଂଶୁକ ପ୍ରଭୃତି ବହୁ ପ୍ରକାର ଫଳ ଓ ପୁଷ୍ପବୃକ୍ଷ ଏଠାରେ ପୂର୍ଣ୍ଣ ହୋଇ ରହିଛି । ମୟୂରନାଦିତ ଏହି ବନରେ ନାନା ମୃଗ ଓ ପକ୍ଷୀ ବହୁ ସଂଖ୍ୟାରେ ରହିଛନ୍ତି । ତେଣୁ ଜଟାୟୁଙ୍କ ସହିତ ଆମ୍ଭେମାନେ ଏହି ସ୍ଥାନରେ ବାସ କରିବା ।

ଆଶ୍ରମ ନିର୍ମାଣ ବିଷୟରେ ଲକ୍ଷ୍ମଣ ଅତ୍ୟନ୍ତ କ୍ଷିପ୍ରଗତି ଓ ସିଦ୍ଧହସ୍ତ ଥିଲେ । ସେ ମାଟି, ବାଉଁଶ, କୁଶ, କାଶ ଓ ଶରପତ୍ର ଏବଂ ଶମୀବୃକ୍ଷର ଶାଖାମାନଙ୍କ ସାହାଯ୍ୟରେ ଏକ

ସୁନ୍ଦର ଆଶ୍ରମ ନିର୍ମାଣ କଲେ । ରାମ, ଲକ୍ଷ୍ମଣ ଗୋଦାବରୀ ନଦୀରେ ସ୍ନାନ କରି ପଦ୍ମ ଆଦି ପୁଷ୍ପ ଓ ବିଭିନ୍ନ ଫଳ ଦ୍ୱାରା ଦେବତାମାନଙ୍କୁ ପୂଜା କରି ଶାନ୍ତିହୋମପୂର୍ବକ ସେହି ଆଶ୍ରମଗୃହରେ ପ୍ରବେଶ କଲେ । ରାମ ଅତ୍ୟନ୍ତ ପ୍ରୀତ ହୋଇ ଲକ୍ଷ୍ମଣଙ୍କୁ ଆଲିଙ୍ଗନ ପୂର୍ବକ କହିଲେ – ଲକ୍ଷ୍ମଣ, ତୁମପରି ଭାବଜ୍ଞ, କୃତଜ୍ଞ ଓ ଧର୍ମଜ୍ଞ ପୁତ୍ର ଲାଭକରି ମୋର ପିତା ଅମର ହୋଇଛନ୍ତି ।

ସୀତା ଓ ଲକ୍ଷ୍ମଣଙ୍କ ସହିତ ରାମ ପଞ୍ଚବଟୀରେ ଆନନ୍ଦରେ ବାସ କଲେ । ଶରତଋତୁ ଅତୀତ ହୋଇ ପ୍ରୀତିକର ହେମନ୍ତଋତୁ ଉପସ୍ଥିତ ହେଲା । ଦିନେ ପ୍ରଭାତରେ ରାମ, ଲକ୍ଷ୍ମଣ ଓ ସୀତା ଗୋଦାବରୀ ନଦୀରେ ସ୍ନାନ କରିବାକୁ ଗଲେ । ରାମଙ୍କ ପଛେ ପଛେ ସୀତା ଓ ତାଙ୍କ ପଛରେ କଳସ ହସ୍ତରେ ଲକ୍ଷ୍ମଣ । ଲକ୍ଷ୍ମଣ ରାମଙ୍କୁ କହିଲେ – ପ୍ରିୟମ୍ବଦ, ତୁମର ପ୍ରିୟ ହେମନ୍ତକାଳ ଉପସ୍ଥିତ । ଏହାର ଆଗମନରେ ନୂତନ ବର୍ଷ ସୁନ୍ଦର ଓ ମଙ୍ଗଳମୟ ହେବ ବୋଲି ଜଣାଯାଉଛି । ଅଳ୍ପ ଅଳ୍ପ ଶୀତ ପଡ଼ିଆସୁଛି । ପୃଥିବୀ ଶସ୍ୟଶ୍ୟାମଳା । ଶୀତଳତା ଯୋଗୁଁ ଜଳ ଉପଭୋଗ୍ୟ ନୁହେଁ, କିନ୍ତୁ ଅଗ୍ନି ଉପଭୋଗ୍ୟ । ଗ୍ରାମବାସୀମାନଙ୍କ ପାଇଁ ପ୍ରାଚୁର୍ଯ୍ୟ ଯୋଗୁଁ ଏହି ସମୟ ଆନନ୍ଦମୟ । ବିଜୟଲିପ୍ସୁ ରାଜାମାନଙ୍କ ପାଇଁ ମଧ୍ୟ ଏହି ସମୟ ଅନୁକୂଳ । ଚନ୍ଦ୍ରଜ୍ୟୋତ୍ସ୍ନା ମଳିନ ଏବଂ ରାତ୍ରି ଦୀର୍ଘ । ହେମବର୍ଣ୍ଣ ଶସ୍ୟକେଣ୍ଡାସବୁ ଶସ୍ୟପୂର୍ଣ୍ଣ ହୋଇ ଖଜୁରୀଫୁଲ ପରି ତଳକୁ ନଇଁ ପଡ଼ିଛନ୍ତି । ଶିଶିରପାତରେ ଆର୍ଦ୍ର ତୃଣଭୂମି ବାଳସୂର୍ଯ୍ୟ କିରଣରେ ସୁନ୍ଦର ଦେଖାଯାଉଛି । ଜଳଚର ପକ୍ଷୀମାନେ ଜଳ ନିକଟରେ ବସିଥିଲେ ମଧ୍ୟ ଭୀରୁ ବ୍ୟକ୍ତି ଯୁଦ୍ଧରେ ନ ପଶିବା ପରି ସେମାନେ ପାଣି ଭିତରକୁ ପଶୁ ନାହାନ୍ତି ।

ଲକ୍ଷ୍ମଣ ପୁଣି କହିଲେ, ବର୍ତ୍ତମାନ ମୁଁ ଭରତଙ୍କର କଥା ଚିନ୍ତା କରୁଛି । ତୁମ ପ୍ରତି ତାଙ୍କର ଗଭୀର ଭକ୍ତି ଯୋଗୁଁ ସେ ରାଜ୍ୟଭୋଗ ପରିହାର କରି ଅଳ୍ପାହାରପୂର୍ବକ ଭୂତଳରେ ଶୟନ କରି ତପସ୍ୱୀର ଜୀବନ ଯାପନ କରୁଛନ୍ତି । ବର୍ତ୍ତମାନ ଏହି ସମୟରେ ସେ ନିଶ୍ଚୟ ପ୍ରଜାପରିବେଷ୍ଟିତ ହୋଇ ସରଯୂ ନଦୀକୁ ସ୍ନାନ କରିବାକୁ ଯାଉଥିବେ । ସେହି ଧର୍ମଜ୍ଞ ସତ୍ୟବାଦୀ ପଦ୍ମପଳାଶଲୋଚନ, ଜିତେନ୍ଦ୍ରିୟ, ପ୍ରିୟ ଓ ମଧୁରଭାଷୀ ଅରିନ୍ଦମ ଭରତ ତୁମକୁ ହିଁ ଆଶ୍ରୟ କରି ରହିଛନ୍ତି । ପ୍ରବାଦ ଅଛି ଯେ ଲୋକେ ପିତୃସ୍ୱଭାବ ଅନୁକରଣ ନ କରି ମାତୃସ୍ୱଭାବ ଅନୁକରଣ କରନ୍ତି, ମାତ୍ର ଭରତଙ୍କ କ୍ଷେତ୍ରରେ ତାହା ବିପରୀତ ଦେଖାଯାଏ । ଦଶରଥ ଯାହାଙ୍କର ସ୍ୱାମୀ, ଭରତ ଯାହାଙ୍କର ପୁତ୍ର, ସେହି ମାତା କୈକେୟୀ କିପରି ଏପରି କ୍ରୂରମତି ହେଲେ ?

କୈକେୟୀଙ୍କର ନିନ୍ଦା ସହି ନ ପାରି ରାମ କହିଲେ, ବତ୍ସ, କୈକେୟୀଙ୍କୁ ତୁମର ନିନ୍ଦା କରିବା ଠିକ୍ ହେଉ ନାହିଁ । ଭରତଙ୍କ ସମ୍ପର୍କରେ ଯାହା କହିଲ, ଠିକ୍ କଥା । ବନବାସ ପାଇଁ ମୁଁ ଦୃଢ଼ନିଶ୍ଚୟ ହୋଇଥିଲେ ମଧ୍ୟ ଭରତଙ୍କ ସ୍ନେହରେ ସମ୍ପୂର୍ଣ୍ଣ ଅଭିଭୂତ ହୋଇ ମୋର ମନ ବିଚଳିତ ହୋଇପଡୁଛି । ଭରତ ଓ ଶତ୍ରୁଘ୍ନଙ୍କ ସହିତ ସତେ କେବେ ମୋର ମିଳନ ହେବ ?

ଏହିପରି ପରସ୍ପର ସ୍ନେହରେ ଆବଦ୍ଧ ହୋଇ ଓ ଆଳାପ କରି କରି ରାମ, ଲକ୍ଷ୍ମଣ ଓ ସୀତା ଗୋଦାବରୀ ନଦୀରେ ସ୍ନାନ ଶେଷ କଲେ । ପର୍ଣ୍ଣଶାଳାକୁ ଫେରିଆସି ରାମ ସୀତାଙ୍କ ସହିତ ବସି ଲକ୍ଷ୍ମଣଙ୍କ ସଙ୍ଗରେ ପୁଣି ନାନା ଆଲୋଚନା କରିବାକୁ ଲାଗିଲେ ।

## ୪୫ ।। ଶୂର୍ପଣଖାର ନାସାକର୍ଣ୍ଣ ଛେଦନ

ଏହି ସମୟରେ ଏକ ରାକ୍ଷସୀ ବନରେ ମନଇଚ୍ଛା ବୁଲୁଥିବାବେଳେ ସେଠାରେ ଆସି ପହଞ୍ଚିଗଲା । ସେ ଦଶଗ୍ରୀବ ରାବଣର ଭଉଣୀ ଶୂର୍ପଣଖା । ନୀଳପଦ୍ମ ପରି ଶ୍ୟାମବର୍ଣ୍ଣ କନ୍ଦର୍ପକାନ୍ତି ବିଶାଳବାହୁ ପ୍ରିୟଦର୍ଶନ ରାମଚନ୍ଦ୍ରଙ୍କୁ ଦେଖି କାମାତୁରା ଶୂର୍ପଣଖା କହିଲା, ତୁମେ କିଏ, ତପସ୍ୱୀ ବେଶରେ ଧନୁଶର ଧାରଣ କରି ଏହି ରାକ୍ଷସସେବିତ ବନଦେଶକୁ ଆସିଛ ? କୁରୂପା ତାମ୍ରକେଶୀ କର୍କଶଭାଷିଣୀ ରାକ୍ଷସୀକୁ ରାମ ତାଙ୍କର ବନବାସ ବୃତ୍ତାନ୍ତ ବର୍ଣ୍ଣନା କରି ଓ ନିଜର ପରିଚୟ ଦେଇ କହିଲେ – ତୁମେ କିଏ, କାହାର ପତ୍ନୀ ? କାହିଁକି ଏ ନିର୍ଜନ ବଣରେ ବିଚରଣ କରୁଛ ? ଶୂର୍ପଣଖା ଉତ୍ତର ଦେଲା, ମୁଁ ରାବଣର ଭଉଣୀ କାମରୂପିଣୀ ରାକ୍ଷସୀ । ସମସ୍ତଙ୍କ ମନରେ ଭୟ ସଞ୍ଚାର କରି ମୁଁ ଏକାକିନୀ ଏ ବନରେ ବିଚରଣ କରେ । ମୋର ଅନ୍ୟ ଦୁଇ ଭାଇ ହେଲେ ମହାବଳୀ କୁମ୍ଭକର୍ଣ୍ଣ ଓ ଧର୍ମାତ୍ମା ବିଭୀଷଣ । କୁମ୍ଭକର୍ଣ୍ଣ ନିଦ୍ରାସକ୍ତ । ବିଭୀଷଣଙ୍କଠାରେ ରାକ୍ଷସସ୍ୱଭାବ ଦେଖାଯାଏ ନାହିଁ । ପ୍ରଖ୍ୟାତ ଯୋଦ୍ଧା ଖର ଓ ଦୂଷଣ ନାମରେ ମୋର ଆଉ ଦୁଇଭାଇ ଅଛନ୍ତି । କିନ୍ତୁ ମୁଁ ସେମାନଙ୍କର କାହାର ଅଧୀନ ନୁହେଁ । ମୋର ନିଜ ଇଚ୍ଛା ଓ ପରାକ୍ରମ ବଳରେ ମୁଁ ସର୍ବତ୍ର ବିଚରଣ କରିପାରେ । ରାମ, ମୁଁ ତୁମକୁ ଦେଖିବା ପରଠାରୁ ତୁମ ପ୍ରତି ଆସକ୍ତ ହୋଇପଡ଼ିଛି । ତୁମର ଏହି କୁତ୍ସିତା ଭାର୍ଯ୍ୟାକୁ ଛାଡ଼ି ମୋତେ ଶୀଘ୍ର ବରଣ କର । ମୁଁ ଏହି ବିରୂପା ଅସତୀ ସୀତା ଓ ତୁମର ଭାଇ ଲକ୍ଷ୍ମଣଙ୍କୁ ଶୀଘ୍ର ଭକ୍ଷଣ କରିବି । ତୁମେ ମୋ ସହିତ ଏହି ମନୋହର ଦଣ୍ଡକାରଣ୍ୟର ବନ ଓ ପର୍ବତମାନଙ୍କରେ ଆନନ୍ଦରେ ବିଚରଣ କରିବ ।

ରାମ ସ୍ମିତହାସପୂର୍ବକ କାମାତୁରା ଶୂର୍ପଣଖାକୁ କହିଲେ – କଲ୍ୟାଣୀ, ମୁଁ ବିବାହ କରିସାରିଛି । ଏ ମୋର ଭାର୍ଯ୍ୟା, ମୋର ପ୍ରାଣର ଦୟିତା । ସପତ୍ନୀଙ୍କ ସହ ରହିବା ନାରୀମାନଙ୍କ ପକ୍ଷରେ ଦୁଃଖଦାୟକ । କିନ୍ତୁ ମୋର କନିଷ୍ଠଭ୍ରାତା ଲକ୍ଷ୍ମଣ ବୀର, ସଚ୍ଚରିତ୍ର ଓ ପ୍ରିୟଦର୍ଶନ । ସେ ତରୁଣ ଓ ସେ ତୁମର ଅନୁରୂପ ସ୍ୱାମୀ ହୋଇପାରିବେ । ବିଶାଳାକ୍ଷି, ତୁମେ ତାଙ୍କୁ ଭର୍ତ୍ତାରୂପେ ବରଣ କର ।

କାମାତୁରା ରାକ୍ଷସୀ ରାମଙ୍କୁ ଛାଡ଼ି ଲକ୍ଷ୍ମଣଙ୍କୁ କହିଲା, ତୁମେ ମୋର ଉପଯୁକ୍ତ ପାତ୍ର । ମୋତେ ବିବାହ କରି ସୁଖରେ ଦଣ୍ଡକାରଣ୍ୟରେ ବାସକର । ଲକ୍ଷ୍ମଣ ଅଳ୍ପ ହସି ଉତ୍ତର ଦେଲେ – ବରବର୍ଣ୍ଣିନୀ, ମୁଁ ମୋର ଭ୍ରାତାଙ୍କର ଅଧୀନ, ତାଙ୍କର ଦାସ । ତୁମେ ମୋର ସ୍ତ୍ରୀ ହୋଇ କାହିଁକି ଦାସୀ ହୋଇ ରହିବାକୁ ଇଚ୍ଛା କରୁଛ ? ତୁମେ ରାମଙ୍କର କନିଷ୍ଠ ଭାର୍ଯ୍ୟା ହୁଅ । ତାହାହେଲେ ତୁମେ ତାଙ୍କର ଯେଉଁ ବିରୂପା ଅସତୀ ବୃଦ୍ଧା ଭାର୍ଯ୍ୟା କଥା କହୁଛ, ସେ ତାଙ୍କୁ ଛାଡ଼ି ତୁମକୁ ଭଜିବେ ।

ଶୂର୍ପଣଖା ଲକ୍ଷ୍ମଣଙ୍କର ପରିହାସ ବୁଝି ନ ପାରି ରାମଙ୍କ ପାଖକୁ ଯାଇ କହିଲା, ତୁମେ ଏହି କୁରୂପା ଅସତୀ ସ୍ତ୍ରୀ ପ୍ରତି ଆସକ୍ତ ହୋଇ ମୋତେ ଆଦର କରୁ ନାହଁ । ଦେଖିବ, ତୁମ ସମ୍ମୁଖରେ ମୁଁ ଏହି ମାନବୀକୁ ଭକ୍ଷଣ କରିବି ଏବଂ ନିଃସପତ୍ନୀ ହୋଇ ସୁଖରେ ତୁମ ସହିତ ରହିବି । ଏହା କହି କୁମ୍ଭାରଚକ ପରି ବଡ଼ ବଡ଼ ଆଖି ଦେଖାଇ ସେହି ଭୀଷଣଦର୍ଶନା ରାକ୍ଷସୀ ବାଳମୃଗଲୋଚନା ସୀତାଙ୍କ ଆଡ଼କୁ ଧାବିତ ହେଲା । ରାମ କହିଲେ – ଲକ୍ଷ୍ମଣ, ଏହି କ୍ରୂରସ୍ୱଭାବା ଅନାର୍ଯ୍ୟା ସାଙ୍ଗରେ ପରିହାସ କରିବା ଉଚିତ ନୁହେଁ । ତୁମେ ଏହାକୁ ଶୀଘ୍ର ବିରୂପ କର ।

ଲକ୍ଷ୍ମଣ ସଙ୍ଗେ ସଙ୍ଗେ ଖଡ୍‌ଗାଘାତରେ ଶୂର୍ପଣଖାର ନାସାକର୍ଣ୍ଣ ଛେଦନ କଲେ । ବର୍ଷାଋତୁରେ ମେଘ ଗର୍ଜନ କଲାପରି ଭୟାନକ ଗର୍ଜନ କରି ସେହି ରାକ୍ଷସୀ ବନ ଭିତରେ ପ୍ରବେଶ କଲା ।

ଶୂର୍ପଣଖା ନିଜ ସ୍ଥାନକୁ ଯାଇ ରାକ୍ଷସଗଣ ପରିବେଷ୍ଟିତ ଉଗ୍ରଦର୍ଶନ ତା'ର ଭ୍ରାତା ଖର ଆଗରେ ଗଗନଚ୍ୟୁତ ଅଶନି ପରି ଗର୍ଜନ କରି ଭୂପତିତ ହେଲା । ନିଜର ଭଗିନୀକୁ ବିରୂପା ଓ ରକ୍ତାକ୍ତ ଦେଖି ଖର କ୍ରୁଦ୍ଧ ହୋଇ ପଚାରିଲା, ଉଠ, ମୋହ ତ୍ୟାଗ କରି କହ, କିଏ ତୋତେ ଏପରି ବିରୂପ କରିଛି ? କିଏ ସେ ସୁପ୍ତ ବିଷଧର କୃଷ୍ଣସର୍ପକୁ ଅଙ୍ଗୁଳି ଦ୍ୱାରା ଆହତ କରିଛି ? ଦେବ, ଗନ୍ଧର୍ବ, ଭୂତ, ଋଷିଙ୍କ ମଧ୍ୟରେ କିଏ ଏପରି ଅଛି ଯିଏ ତୋତେ ଏପରି ବିରୂପ କରିପାରିଲା ? ସହସ୍ରାକ୍ଷ ଇନ୍ଦ୍ର ଛଡ଼ା ଏପରି କିଏ ଥାଇପାରେ ବୋଲି ମୁଁ ବିଶ୍ୱାସ କରିପାରୁ ନାହିଁ । ସେ ଯେ କେହି ହେଉନା କାହିଁକି, ଆଜି ସେ ମୋ ହାତରୁ ରକ୍ଷା ପାଇପାରିବ ନାହିଁ । ଦେବତା, ଗନ୍ଧର୍ବ, ପିଶାଚ, ରାକ୍ଷସ କେହି ତାକୁ ରକ୍ଷା କରିପାରିବେ ନାହିଁ । ସେହି ଦୁର୍ବୃତ୍ତର ସଫେନରୁଧିର ଏହି ମୁହୂର୍ତ୍ତରେ ଧରଣୀ ପାନ କରିବ ।

ଶୂର୍ପଣଖା ବିଳାପ କରି କହିଲା – ଯୁବକ ରୂପବାନ ସୁକୁମାର ମହାବଳୀ ରାମ ଓ ଲକ୍ଷ୍ମଣ ବଲ୍କଳ ଓ କୃଷ୍ଣାଜିନ ପରିଧାନ କରି ଏବଂ ଫଳମୂଳ ଭକ୍ଷଣ କରି ତପସ୍ୱୀ ହୋଇ ରହିଛନ୍ତି । ସେମାନେ ଅତି ସୁନ୍ଦର ଓ ରାଜଲକ୍ଷଣଯୁକ୍ତ । ସେମାନେ ଦେବତା କି ମନୁଷ୍ୟ ମୁଁ ସ୍ଥିର କରିପାରୁ ନାହିଁ । ସେମାନଙ୍କ ସହିତ ଏକ ରୂପବତୀ ସର୍ବାଳଙ୍କାରଯୁକ୍ତା ନାରୀ ମଧ୍ୟ ଅଛି । ସେହି ନାରୀ ପାଇଁ ଏକ ଅନାଥା ଅସତୀ ସ୍ତ୍ରୀ ଭଳି ସେମାନେ ମୋର ଏହି ଅବସ୍ଥା କରିଛନ୍ତି । ମୁଁ ରଣସ୍ଥଳରେ ସେମାନଙ୍କର ଫେନଯୁକ୍ତ ରୁଧିର ପାନ କରିବାପାଇଁ ଚାହେ ।

ଖର କ୍ରୁଦ୍ଧ ହୋଇ ଚଉଦ ଜଣ ମହାବଳବାନ୍ ରାକ୍ଷସଙ୍କୁ ଡାକି ଆଦେଶ ଦେଲା, ବଲ୍କଳ ଓ ମୃଗଚର୍ମ ଧାରଣ କରି ଜଣେ ମହିଳା ସହିତ ଯେଉଁ ଦୁଇଜଣ ବ୍ୟକ୍ତି ଦଣ୍ଡକାରଣ୍ୟରେ ବାସ କରୁଛନ୍ତି, ତୁମେ ଶୀଘ୍ର ଯାଇ ସେ ଦୁହିଁଙ୍କୁ ଏବଂ ସେ ଦୁରାଚାରିଣୀ ନାରୀକୁ ହତ୍ୟାକର । ମୋର ଭଉଣୀ ସେମାନଙ୍କର ରକ୍ତପାନ କରୁ ।

ଶୂର୍ପଣଖା ଏହି ଚତୁର୍ଦ୍ଦଶ ରାକ୍ଷସଙ୍କ ସହିତ ବାୟୁଚାଳିତ ମେଘପରି ରାମଙ୍କ ଆଶ୍ରମ ପାଖରେ ପହଞ୍ଚିଲା ଏବଂ ପତ୍ରକୁଡ଼ିଆରେ ବସିଥିବା ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ସେମାନଙ୍କୁ

ଚିହ୍ନାଇଦେଲା । ରାମ କହିଲେ – ସୌମିତ୍ରି, ତୁମେ ଅଳ୍ପ ସମୟ ପାଇଁ ସୀତାଙ୍କ ପାଖରେ ରହ । ମୁଁ ଏ ରାକ୍ଷସମାନଙ୍କୁ ଶୀଘ୍ର ନିପାତ କରୁଛି ।

ରାମ ସ୍ୱର୍ଣ୍ଣଭୂଷିତ ଧନୁରେ ଜ୍ୟା ରୋପଣ କରି ରାକ୍ଷସମାନଙ୍କୁ କହିଲେ, ଆମେ ଦଶରଥପୁତ୍ର ରାମ ଲକ୍ଷ୍ମଣ । ସୀତାଙ୍କ ସହିତ ଦଣ୍ଡକାରଣ୍ୟରେ ବାସ କରୁଛୁ । ଆମ୍ଭେମାନେ ଫଳମୂଳାହାରୀ, ବ୍ରହ୍ମଚାରୀ, ତପସ୍ୱୀ । ଏହି ମହାବନରେ ଋଷିମାନଙ୍କୁ ରକ୍ଷା କରିବାପାଇଁ ତୁମପରି ଦୁରାଚାରୀ, ପାପାତ୍ମାମାନଙ୍କର ନିପାତ ନିମନ୍ତେ ମୁଁ ଧନୁଶର ଧରି ଆସିଛି । ଯଦି ତୁମର ଜୀବନକୁ ଭୟ ଥାଏ, ତାହାହେଲେ ଶୀଘ୍ର ଏ ସ୍ଥାନ ଛାଡ଼ି ଚାଲିଯାଅ ।

ରାକ୍ଷସମାନେ କହିଲେ, ଆମ୍ଭମାନଙ୍କର ପ୍ରଭୁ ରାକ୍ଷସପତି ଖରଙ୍କର ତୁମେ କ୍ରୋଧଭାଜନ ହୋଇଛ । ତୁମେ ଏକାକୀ, ଆମ୍ଭେମାନେ ବହୁସଂଖ୍ୟକ । ତେଣୁ ଯୁଦ୍ଧ କରିବା ଦୂରେ ଥାଉ, ତୁମେ ଆମ ଆଗରେ ଠିଆ ହୋଇ ପାରିବ ନାହିଁ । ଏହା କହି କ୍ରୁଦ୍ଧ ରାକ୍ଷସମାନେ ରାମଙ୍କୁ ଚତୁର୍ଦ୍ଦଶ ଶୂଳ ନିକ୍ଷେପ କଲେ । ରାମ ସ୍ୱର୍ଣ୍ଣଭୂଷିତ ଶର ଦ୍ୱାରା ସେହି ଶୂଳ ସବୁ କାଟିପକାଇ ବଜ୍ର ପରି ଚତୁର୍ଦ୍ଦଶ ବାଣ ନିକ୍ଷେପ କଲେ । ସେହିସବୁ ନାରାଚ କ୍ଷିପ୍ରବେଗରେ ରାକ୍ଷସମାନଙ୍କର ବକ୍ଷ ଭେଦକରି ଉଇହୁଙ୍କାରୁ ସାପମାନେ ବାହାରି ଆସିବା ପରି ରକ୍ତାକ୍ତ ଭାବରେ ବାହାରି ଆସିଲେ । ରାକ୍ଷସମାନଙ୍କର ପ୍ରାଣହୀନ ଶରୀର ଛିନ୍ନମୂଳ ବୃକ୍ଷପରି ଭୂପତିତ ହେଲା ।

## ୪୬ ।। ଖର, ଦୂଷଣ, ତ୍ରିଶିରା

ଶୂର୍ପଣଖା ଖର ପାଖକୁ ଯାଇ ଭୂଇଁରେ ପଡ଼ିଯାଇ ପୁଣି କାନ୍ଦିବାକୁ ଲାଗିଲା । ଖର କହିଲା, ତୋର ପ୍ରିୟ କାର୍ଯ୍ୟ ସାଧନ କରିବାପାଇଁ ମୁଁ ଚତୁର୍ଦ୍ଦଶ ବୀର ରାକ୍ଷସଙ୍କୁ ପଠାଇଥିଲି । ତୁ' ପୁଣି କାହିଁକି କାନ୍ଦୁଛୁ ? ତୁ କାହିଁକି ଅନାଥ ଭାବରେ ସର୍ପ ପରି ପୁଣି ଭୂଇଁରେ ଲୋଟିଯାଉଚୁ ? ଭୟ ଶୋକ ଛାଡ଼ି କ'ଣ ହୋଇଛି, କହ ।

ଶୂର୍ପଣଖା କହିଲା, ତୁ ଯେଉଁ ଚଉଦ ଜଣ ରାକ୍ଷସଙ୍କୁ ପଠାଇଥିଲୁ, ରାମ ମର୍ମଭେଦୀ ବାଣଦ୍ୱାରା ସେମାନଙ୍କୁ ସଂହାର କଲା । ମୁଁ ବର୍ତ୍ତମାନ ଭୟଗ୍ରସ୍ତ । ସେଥିପାଇଁ ମୁଁ ପୁଣିଥରେ ତୋ ପାଖକୁ ଆସିଲି । ମୁଁ ଯାହା ଦେଖୁଛି, ତୁ ସମସ୍ତ ରାକ୍ଷସକୁଳ ସହିତ ରାମ ଆଗରେ ଯୁଦ୍ଧରେ ଠିଆହୋଇପାରିବୁ ନାହିଁ । ତୁ ମିଛରେ ଶୂର ବୀର ବୋଲି ଅଭିମାନ କରୁ । ତୁ ପ୍ରକୃତରେ ମୂଢ଼ ଓ ରାକ୍ଷସକୁଳକଳଙ୍କ । ଅବିଳମ୍ବେ ଜନସ୍ଥାନ ଛାଡ଼ି ସବାନ୍ଧବ ପଳାଇ ଯା । ନଚେତ୍ ଯଦି ଶକ୍ତି ଥାଏ ଯୁଦ୍ଧରେ ଦଣ୍ଡକାରଣ୍ୟବାସୀ ରାମକୁ ବଧ କର । ହୀନବୀର୍ଯ୍ୟ ଦୁର୍ବଳ ବ୍ୟକ୍ତିର ଏଠାରେ କୌଣସି ସ୍ଥାନ ନାହିଁ ।

ଶୂର୍ପଣଖାଦ୍ୱାରା ତିରସ୍କୃତ ହୋଇ ଖରର କ୍ରୋଧ ବଢ଼ିବାକୁ ଲାଗିଲା । ସେ କହିଲା, ଫୁଲିଉଠିବା ଲବଣସମୁଦ୍ର ପରି ମୋର କ୍ରୋଧକୁ କେହି ସମ୍ଭାଳିପାରିବ ନାହିଁ । କ୍ଷୀଣଜୀବୀ

ମନୁଷ୍ୟ ରାମକୁ ମୁଁ ଆଦୌ ବୀରରୂପେ ଗଣନା କରେ ନାହିଁ । ତୁ ଅଶ୍ରୁ ସମ୍ବରଣ କର । ଆଜି ମୁଁ ରାମ ଓ ଲକ୍ଷ୍ମଣଙ୍କୁ ଯମାଳୟକୁ ପଠାଇବି । ରାକ୍ଷସୀ, ଆଜି ଯୁଦ୍ଧରେ ତୁ ରାମର ଉଷ୍ଣ ରକ୍ତ ପାନ କରିବୁ ।

ଏହା କହି ଖର ଦୂଷଣ ନାମକ ତାର ସେନାପତିକୁ ଡାକି କହିଲା, ମୋର ବଶବର୍ତ୍ତୀ ଚଉଦ ହଜାର ଦୁର୍ଜ୍ଜୟ ସୈନ୍ୟଙ୍କୁ ପ୍ରସ୍ତୁତ କର । ଯେଉଁମାନେ ଯୁଦ୍ଧଦୁର୍ମଦ ଓ କ୍ରୂରକର୍ମା ଏବଂ ଶାର୍ଦ୍ଦୂଳ ପରି ବଳଶାଳୀ, ସେମାନଙ୍କ ସହିତ ମୋର ରଥ, ଧନୁର୍ବାଣ, ଖଡ଼୍ଗ, ଶକ୍ତି ଆଦି ମଧ୍ୟ ସଜ୍ଜିତ କର ।

ଦୂଷଣ ଏକ ବିଚିତ୍ର ଅଶ୍ୱଯୁକ୍ତ କାଞ୍ଚନମୟ ବିଶାଳ ରଥ ବିବିଧ ଆୟୁଧମାନଙ୍କ ଦ୍ୱାରା ସଜ୍ଜିତ କରି ସେଠାରେ ଆଣି ପହଞ୍ଚାଇଦେଲା । ଖରର ଆଜ୍ଞାନୁବର୍ତ୍ତୀ ଭୀଷଣାକୃତି ଚଉଦ ହଜାର ରାକ୍ଷସ ଶୂଳ, ମୁଦଗର, ଖଡ଼୍ଗ, ଚକ୍ର, ଶକ୍ତି ପରିଘ, କାର୍ମୁକ ଆଦି ଅସ୍ତ୍ରଶସ୍ତ୍ର ଧାରଣ କରି ଖର ସହିତ ଯାତ୍ରା କଲେ । ରାସ୍ତାରେ ଯିବାବେଳେ ସେମାନେ ନାନା ଅଶୁଭ ସଙ୍କେତ ଦେଖିବାକୁ ପାଇଲେ । ଗର୍ଦ୍ଦଭ ପରି ଧୂସରବର୍ଣ୍ଣ ବିଶାଳ ମେଘଖଣ୍ଡ ଉତ୍‌ଥିତ ହୋଇ ଘୋର ଗର୍ଜନପୂର୍ବକ ରକ୍ତମିଶ୍ରିତ ଜଳବୃଷ୍ଟି କରିବାକୁ ଲାଗିଲା । ଏକ ବିଶାଳକାୟ ଭୟଙ୍କର ଗୃଧ୍ର ଖରର ସ୍ୱର୍ଣ୍ଣମୟ ରଥ ଧ୍ୱଜା ଉପରକୁ ଉଡ଼ିଆସି ବସିରହିଲା । ମାଂସଭୋଜୀ ପକ୍ଷୀମାନେ ବିକଟ ଚିତ୍କାର କଲେ । ଲୋମହର୍ଷଣକାରୀ ଅନ୍ଧକାର ଚତୁର୍ଦ୍ଦିଗକୁ ଆଚ୍ଛନ୍ନ କଲା । ଅମାବାସ୍ୟା ନ ହୋଇଥିଲେ ମଧ୍ୟ ସୂର୍ଯ୍ୟକୁ ରାହୁ ଗ୍ରାସ କଲା । ଉଲ୍‌କାପାତ ସହିତ ଭୂକମ୍ପ ହେବାକୁ ଲାଗିଲା ।

କିନ୍ତୁ ଖର ତା'ର ସୈନ୍ୟବଳ ସହିତ ଏଥିରେ ବିଚଳିତ ହେଲା ନାହିଁ । ସେ କହିଲା, ମୁଁ ଏସବୁ ଉତ୍ପାତକୁ ଆଦୌ ଖାତିର କରେ ନାହିଁ । ମୁଁ ରାମ ଓ ଲକ୍ଷ୍ମଣଙ୍କୁ ବଧ ନ କରି ଫେରିବି ନାହିଁ ।

ଯୁଦ୍ଧ ଦେଖିବାପାଇଁ ଋଷି, ଦେବତା, ସିଦ୍ଧ, ଗନ୍ଧର୍ବ ଓ ଚାରଣମାନେ ସେଠାରେ ଉପସ୍ଥିତ ହେଲେ । ସେମାନେ କହିଲେ, ଗୋ, ବ୍ରାହ୍ମଣ ଓ ସମସ୍ତ ପ୍ରାଣୀଙ୍କର ମଙ୍ଗଳ ହେଉ । ବିଷ୍ଣୁ ପୂର୍ବେ ଯେପରି ଅସୁରମାନଙ୍କୁ ଜୟ କରିଥିଲେ, ରାମ ରାକ୍ଷସମାନଙ୍କୁ ଯୁଦ୍ଧରେ ଜୟ କରନ୍ତୁ ।

## ୪୭ ॥ ପଞ୍ଚବଟୀରେ ଯୁଦ୍ଧ

ଖର ରାମଙ୍କ ଆଶ୍ରମର ନିକଟବର୍ତ୍ତୀ ହେବାରୁ ରାମ ଲକ୍ଷ୍ମଣଙ୍କୁ କହିଲେ, ତୁମେ ଦେଖ, ଆକାଶରେ ଗର୍ଦ୍ଦଭବର୍ଣ୍ଣ ମେଘମାନଙ୍କର ଗର୍ଜନ ଶୁଣାଯାଉଛି । ମୋର ଯୁଦ୍ଧକାମୀ ଶରମାନଙ୍କରୁ ଧୂମ ନିର୍ଗତ ହେଉଛି । ଧନୁ କମ୍ପିତ ହେଉଛି । ବନରେ ପକ୍ଷୀମାନେ ଯେପରି ଭାବରେ ରବ କରୁଛନ୍ତି ସେଥିରୁ ଆମ ଆଗରେ କୌଣସି ଭୟ ଉପସ୍ଥିତ ହେବାପରି ଜଣାଯାଉଛି । ମୋର ଦକ୍ଷିଣବାହୁ ବାରମ୍ବାର ସ୍ପନ୍ଦିତ ହେଉଥିବା ଯୋଗୁଁ ମୁଁ

ଅନୁମାନ କରୁଛି ଯେ ଘୋର ଯୁଦ୍ଧ ଆସନ୍ନ । ଏଥିରେ ଆମର ଜୟ ଓ ଶତ୍ରୁର ପରାଜୟ ନିଶ୍ଚିତ । ରାକ୍ଷସମାନଙ୍କର ଗର୍ଜନ ଧ୍ୱନି ଓ ଭେରୀର ଶବ୍ଦ ନିକଟବର୍ତ୍ତୀ ହେଲାଣି । ତୁମେ ଶୀଘ୍ର ଧନୁଶର ଧରି ସୀତାଙ୍କୁ ସାଙ୍ଗରେ ନେଇ ବୃକ୍ଷପୂର୍ଣ୍ଣ ଦୁର୍ଗମ ଗିରିଗୁହାରେ ଆଶ୍ରୟ ନିଅ । ଅନ୍ୟଥା କର ନାହିଁ । ତୁମେ ବୀର ଓ ବଳବାନ୍ । ତୁମେ ମଧ୍ୟ ଏ ରାକ୍ଷସମାନଙ୍କୁ ନିହତ କରିପାରିବ । ମାତ୍ର ମୁଁ ନିଜେ ଏମାନଙ୍କୁ ବଧ କରିବାକୁ ଇଚ୍ଛାକରେ ।

ଲକ୍ଷ୍ମଣ ଧନୁଶର ଧରି ସୀତାଙ୍କ ସହିତ ଗିରିଗୁହାରେ ଆଶ୍ରୟ ନେଲେ । ରାମ ନିଶ୍ଚିନ୍ତ ଅନୁଭବ କରି ଅଗ୍ନିତୁଲ୍ୟ କବଚରେ ଭୂଷିତ ହୋଇ ଧନୁ ଉତ୍ତୋଳନ କଲେ ଓ ଜ୍ୟା ନିର୍ଘୋଷରେ ଚତୁର୍ଦ୍ଦିଗ ନିନାଦିତ କରି କ୍ରୁଦ୍ଧ ପିନାକପାଣି ରୁଦ୍ରଙ୍କ ତୁଲ୍ୟ ଦଣ୍ଡାୟମାନ ହୋଇ ରହିଲେ ।

ବିଭିନ୍ନ ଅସ୍ତ୍ରଧାରଣ କରି ଖରର ବିଶାଳ ସେନା ସମୁଦ୍ର ଗର୍ଜନ ପରି ଶବ୍ଦ କରି ରାମଙ୍କ ଆଶ୍ରମ ଆଡ଼କୁ ମାଡ଼ିଆସି ପ୍ରଳୟାଗ୍ନି ପରି କ୍ରୁଦ୍ଧ ରାମଙ୍କର ରୁଦ୍ର ରୂପ ଦେଖିବାକୁ ପାଇଲେ । ଖର ପ୍ରଥମେ ରାମଙ୍କୁ ବହୁ ଶର ଦ୍ୱାରା ତାଡ଼ିତ କଲା ଓ ତା'ର ସୈନ୍ୟମାନେ ଶୂଳ, ମୁଦ୍‌ଗର, ଖଡ଼୍‌ଗ ଓ ପରଶୁମାନ ରାମଙ୍କୁ ପ୍ରହାର କରିବାକୁ ଉଦ୍ୟତ ହେଲେ । ମାତ୍ର ରାମ ରକ୍ତାକ୍ତ ଶରୀର ହେଲେ ମଧ ଏଥିରେ ଲେଶମାତ୍ର ବିଚଳିତ ହେଲେ ନାହିଁ । ତାଙ୍କର ସୁବର୍ଣ୍ଣମଣ୍ଡିତ ଧନୁରୁ ଅଗଣିତ ଶର ନିର୍ଗତ ହୋଇ ରାକ୍ଷସମାନଙ୍କର ପ୍ରାଣ ସଂହାର କଲା । ରାକ୍ଷସମାନଙ୍କର ଧନୁ, ଧ୍ୱଜ, ବର୍ମ ସହିତ ବାହୁ ଓ ମସ୍ତକ ଆଦି ଛିନ୍ନ ଭିନ୍ନ ହୋଇ ଭୂପତିତ ହେଲା । ଅଗ୍ନି ସଂଯୋଗରେ ଶୁଷ୍କବନ ଦଗ୍‌ଧ ହେବାପରି ଅଶ୍ୱ ଗଜ ଓ ପଦାତିକ ରାମଙ୍କର ମର୍ମଭେଦୀ ତୀକ୍ଷ୍ଣ ଶରରେ ନିପାତିତ ହୋଇ ଆର୍ତ୍ତନାଦ କରିବାକୁ ଲାଗିଲେ । ବହୁ ସୈନ୍ୟ ନଷ୍ଟ ହେବା ପରେ ଖରର ଅବଶିଷ୍ଟ ସୈନ୍ୟ ପଳାୟନ କଲେ ।

ଏଥିରେ କ୍ରୁଦ୍ଧ ହୋଇ ସେନାପତି ଦୂଷଣ ସେମାନଙ୍କୁ ଏକାଠି କରି ରାମଙ୍କ ଆଡ଼କୁ ପ୍ରଧାବିତ ହେଲା । ରାମ ଘୋର ଗର୍ଜନପୂର୍ବକ ଦୀପ୍ତିମୟ ଗାନ୍ଧର୍ବ ଅସ୍ତ୍ର ପ୍ରୟୋଗ କଲେ । ସେଥିରୁ ସହସ୍ର ସହସ୍ର ଶର ନିର୍ଗତ ହେବାକୁ ଲାଗିଲା ଏବଂ ସମଗ୍ର ଆକାଶମଣ୍ଡଳକୁ ଆଚ୍ଛନ୍ନ କରି ଅଳ୍ପ ସମୟ ମଧ୍ୟରେ ରାକ୍ଷସସେନାଙ୍କୁ ଛିନ୍ନଭିନ୍ନ କରିଦେଲା । ରଣଭୂମି ରାକ୍ଷସମାନଙ୍କର ମୃତଦେହ ଓ ଭୂପତିତ ଅନ୍ୟାନ୍ୟ ଅଶ୍ୱ, ରଥ; ଚାମର ଛତ୍ର ଓ ଆୟୁଧମାନଙ୍କ ଦ୍ୱାରା ଆଚ୍ଛନ୍ନ ହୋଇ ଭୟଙ୍କର ଦେଖାଗଲା ।

ନିଜର ସେନାଙ୍କୁ ଛିନ୍ନ ଭିନ୍ନ ହେବାର ଦେଖି ଦୂଷଣ ପାଞ୍ଚହଜାର ରାକ୍ଷସସେନାଙ୍କୁ ଧରି ପୁଣି ରାମଙ୍କୁ ଆକ୍ରମଣ କରିବାକୁ ବାହାରିଲା ଓ ତାଙ୍କ ଆଡ଼କୁ ଶର, ଶୂଳ ଓ ଖଡ଼୍‌ଗ ଆଦି ବର୍ଷଣ କରିବାକୁ ଲାଗିଲା । ବୃଷଭ ଚକ୍ଷୁନିମୀଳିତ କରି ବୃଷ୍ଟିଧାରା ସହ୍ୟ କରିବାପରି ରାମ ତାହା ସହ୍ୟ କରି ଦୂଷଣ ଓ ତାର ସୈନ୍ୟମାନଙ୍କୁ ତୀକ୍ଷ୍ଣ ନାରାଚମାନଙ୍କ ଦ୍ୱାରା ଆଚ୍ଛନ୍ନ କଲେ । ସେ ଅତ୍ୟନ୍ତ କ୍ରୁଦ୍ଧ ହୋଇ କ୍ଷୁରଶର ଦ୍ୱାରା ଦୂଷଣର ପ୍ରକାଣ୍ଡ ଧନୁକୁ ଛେଦନ କଲେ । ଚାରୋଟି ଶରରେ ତାର ଅଶ୍ୱମାନଙ୍କୁ ନିହତ କରି ଏକ ଅର୍ଦ୍ଧଚନ୍ଦ୍ର ଶରଦ୍ୱାରା ସାରଥିର ମସ୍ତକ ଛେଦନ କଲେ ଏବଂ ତିନୋଟି ଶରରେ ଦୂଷଣର ବକ୍ଷ ବିଦ୍ଧ କଲେ । ଛିନ୍ନଧନୁ ଓ ବିରଥ ହୋଇ ଦୂଷଣ ଏକ ଭୟାନକ ବିଶାଳ ପରିଘ ଧାରଣ କଲା । ରାକ୍ଷସ

ଏହାକୁ ଏକ ଅମୋଘ ଅସ୍ତ୍ର ରୂପେ ରଖିଥିଲା । ସେହି ପ୍ରକାଣ୍ଡ ପରିଘକୁ ଧରି ସେ ରାମଙ୍କ ଆଡ଼କୁ ଧାବିତ ହେଲା । ମାତ୍ର ରାମ କ୍ଷିପ୍ର ହସ୍ତରେ ଶରଦ୍ୱାରା ଦୂଷଣର ଦୁଇବାହୁ ଛେଦନ କଲେ । ଦୂଷଣ ତାର ପରିଘ ସହିତ ଭୂପତିତ ହେଲା । ଦୂଷଣ ନିହତ ହେବା ପରେ ସ୍ଥୂଳାକ୍ଷ, ମହାକପାଳ ଓ ପ୍ରମାଥ ନାମକ ତିନିଜଣ ରାକ୍ଷସ ସେନାପତି ରାମଙ୍କ ଆଡ଼କୁ ଅଗ୍ରସର ହେଲେ । ରାମ ଅବିଳମ୍ବେ ତୀକ୍ଷ୍ଣଧାର ଶାଣିତ ଶରମାନଙ୍କ ଦ୍ୱାରା ସେମାନଙ୍କର ଶିରଚ୍ଛେଦନ କଲେ । ଦୂଷଣର ପାଞ୍ଚହଜାର ସୈନ୍ୟ ଏହିପରି ସେନାପତିଙ୍କ ସହିତ ନିପାତିତ ହେଲେ ।

ଦୂଷଣର ନିଧନରେ ବ୍ୟଥିତ ହୋଇ ଖର ଆଉ ବାରଜଣ ସେନାପତିଙ୍କୁ ରାମଙ୍କୁ ଆକ୍ରମଣ କରିବାପାଇଁ ଆଦେଶ ଦେଲା । ରାମ ସ୍ୱର୍ଣ୍ଣପୁଙ୍ଖଯୁକ୍ତ ଅଗ୍ନିତୁଲ୍ୟ ଶରମାନଙ୍କ ଦ୍ୱାରା ସେହି ବାରଜଣ ସେନାପତିଙ୍କୁ ନିହତ କଲେ । ରାମ ପଦାତି ହୋଇ ଚଉଦ ହଜାର ରାକ୍ଷସଙ୍କୁ ଏହିପରି ଭାବରେ ଏକାକୀ ନିହତ କଲେ । ଖରର ସମଗ୍ର ସେନାମଧ୍ୟରୁ କେବଳ ସେ ଓ ତ୍ରିଶିରା ଅବଶିଷ୍ଟ ରହିଲେ । ଏହି ଗୋଟିଏ ଯୁଦ୍ଧରେ ସେହି ଘୋର ବନର ରାକ୍ଷସସେନା ନିପାତିତ ହେଲା ।

## ୪୮ ।। ଖରର ନିଧନ

ନିଜର ସେନାଙ୍କୁ ନଷ୍ଟ ହେବାର ଦେଖି ଖର କ୍ରୁଦ୍ଧ ହୋଇ ରାମଙ୍କ ଆଡ଼କୁ ଅଗ୍ରସର ହେଲା । ସେନାପତି ତ୍ରିଶିରା ଖର ନିକଟରେ ପହଞ୍ଚି କହିଲା, ଆପଣ ନିଜେ ନ ଯାଇ ମୋତେ ପଠାନ୍ତୁ । ମୁଁ ଅସ୍ତ୍ର ଛୁଇଁ ପ୍ରତିଜ୍ଞା କରୁଛି ଯେ ମୁଁ ରାମଙ୍କୁ ନିହତ ନ କରି ଫେରିବି ନାହିଁ । ରାମ ମଲେ ତୁମେ ହୃଷ୍ଟଚିତ୍ତରେ ଜନସ୍ଥାନକୁ ଫେରିଯିବ, ମୁଁ ମଲେ ତୁମେ ନିଜେ ଯୁଦ୍ଧ କରିବାକୁ ଯିବ । ଖରର ଅନୁମତି ନେଇ ତ୍ରିଶିରା ଏକ ଉଜ୍ଜ୍ୱଳ ରଥରେ ବସି ରାମଙ୍କ ଆଡ଼କୁ ଶର ବର୍ଷଣ କରି ଗର୍ଜନ କରିବାକୁ ଲାଗିଲା । ରାମ ଓ ତ୍ରିଶିରା ମଧ୍ୟରେ ପ୍ରବଳ ଯୁଦ୍ଧ ହେଲା । ତ୍ରିଶିରାର ତିନୋଟି ବାଣ ରାମଙ୍କର ଲଲାଟ ବିଦ୍ଧ କରିବାରୁ ରାମ କ୍ରୁଦ୍ଧ ହୋଇ ସର୍ପ ତୁଲ୍ୟ ଚତୁର୍ଦ୍ଦଶ ଶର ଦ୍ୱାରା ତ୍ରିଶିରାର ହୃଦୟ ବିଦ୍ଧ କଲେ । ତୀକ୍ଷ୍ଣ ନାରାଚମାନଙ୍କ ଦ୍ୱାରା ରଥର ଘୋଡ଼ା ଓ ସାରଥିକୁ ନିହତ କଲେ । ତିନୋଟି ଶିରଥିବା ଯୋଗୁଁ ତାର ନାମ ତ୍ରିଶିରା ଥିଲା । ରାମ ତିନୋଟି ବେଗଶାଳୀ ତୀକ୍ଷ୍ଣ ଶର ଦ୍ୱାରା ତ୍ରିଶିରାର ତିନୋଟିଯାକ ମୁଣ୍ଡ କାଟି ପକାଇ ଭୂଲୁଣ୍ଠିତ କଲେ ।

ତ୍ରିଶିରା ଓ ଦୂଷଣର ମୃତ୍ୟୁ ଦେଖି ଖର ରାମଙ୍କର ବଳ ବିକ୍ରମରେ ଭୟଭୀତ ହୋଇପଡ଼ିଲା । ମାତ୍ର ରାମଙ୍କୁ ଆକ୍ରମଣ କରିବାରୁ କ୍ଷାନ୍ତ ହେଲା ନାହିଁ । ସେ ତାର ମହାବଳଶାଳୀ ଧନୁ ଆକର୍ଷଣ କରି ରାମଙ୍କ ପ୍ରତି ବିଷାକ୍ତ ସର୍ପତୁଲ୍ୟ ରକ୍ତପାୟୀ ଶରମାନ ନିକ୍ଷେପ କଲା । ଏକସାଙ୍ଗରେ ଅସଂଖ୍ୟ ଶର ବର୍ଷଣ କରି ସେ ଦିଗ୍‌ବିଦିଗ ଆଚ୍ଛନ୍ନ କଲା ଓ ସମରସ୍ଥଳରେ ଅପୂର୍ବ ଅସ୍ତ୍ରକୌଶଳ ଦେଖାଇ ରାମଙ୍କୁ ଅଭିଭୂତ କରିବାପାଇଁ ଚେଷ୍ଟାକଲା । କିନ୍ତୁ ରାମ ଏଥିରେ ଆଦୌ ଶଙ୍କିତ ହେଲେ ନାହିଁ । ସେ ମଧ୍ୟ କ୍ଷିପ୍ର

ହସ୍ତରେ ତୀକ୍ଷ୍ଣ ଶର ଦ୍ୱାରା ନଭୋମଣ୍ଡଳ ଆଚ୍ଛନ୍ନ କଲେ । ଖର ପାଶଧାରୀ କୃତାନ୍ତତୁଲ୍ୟ ତାର ରଥରେ ବସି ତୀକ୍ଷ୍ଣ ନାରାଚମାନଙ୍କ ଦ୍ୱାରା ରାମଙ୍କର ଧନୁକୁ କାଟିପକାଇଲା ଏବଂ ତାଙ୍କର କବଚକୁ ଦେହରୁ ଛିନ୍ନ କରି ଭୂପତିତ କଲା । ରାମ ମହର୍ଷି ଅଗସ୍ତ୍ୟଙ୍କ ଦ୍ୱାରା ପ୍ରଦତ୍ତ ବିଶାଳ ବୈଷ୍ଣବ ଧନୁକୁ ଉତ୍ତୋଳନ କରି ଖର ଆଡ଼କୁ ଧାବିତ ହେଲେ । ସେ ଖରର ସୁବର୍ଣ୍ଣର ଧ୍ୱଜାକୁ ଛେଦନ କରି ଗୋଟିଏ ବାଣରେ ତାର ମସ୍ତକ, ଦୁଇଟି ବାଣରେ ତାର ବାହୁଯୁଗଳ ଓ ତିନୋଟି ଅର୍ଦ୍ଧଚନ୍ଦ୍ର ଶରରେ ବକ୍ଷସ୍ଥଳ ବିଦ୍ଧ କଲେ ଏବଂ ତାର ଅଶ୍ୱ ଓ ସାରଥିକୁ ନିହତ କରି ରଥକୁ ଧ୍ୱଂସ କଲେ । ଖର ରଥରୁ ଡେଇଁପଡ଼ି ଗଦାହସ୍ତରେ ଦଣ୍ଡାୟମାନ ହେଲା ।

ରାମ କଠୋର ବାକ୍ୟରେ ଖରକୁ କହିଲେ, ତୁମେ ରଥଗଜଅଶ୍ୱପଦାତିଯୁକ୍ତ ବିଶାଳ ସେନାକୁ ସଙ୍ଗରେ ଆଣି ମଧ୍ୟ ବର୍ତ୍ତମାନ ଏକାକୀ ମୋର ସମ୍ମୁଖୀନ । ନୃଶଂସ ପାପାଚାରୀ ବ୍ୟକ୍ତି ତ୍ରିଲୋକର ଅଧୀଶ୍ୱର ହେଲେ ମଧ୍ୟ କେବେହେଲେ ରକ୍ଷା ପାଏ ନାହିଁ । ନିଶାଚର, ଦଣ୍ଡକାରଣ୍ୟବାସୀ ତପସ୍ୱୀମାନଙ୍କୁ ହତ୍ୟା କରି ତୁମର କ'ଣ ଲାଭ ହୋଇଛି ? ଏହି ଭୟଙ୍କର ନୃଶଂସ ପାପୀମାନଙ୍କୁ ଶାସ୍ତି ଦେବାପାଇଁ ମୁଁ ବନବାସ କରିଛି । ଏବେ ଦେଖ, ମୁହୂର୍ତ୍ତକ ମଧ୍ୟରେ ତୁମର ମସ୍ତକ ଭୂଲୁଣ୍ଠିତ ହେବ ଓ ଧୂଳିଧୂସର ଶରୀରରେ ଏହି ଧରଣୀକୁ ଆଲିଙ୍ଗନ କରି ତୁମେ ଶୋଇରହିବ ।

ଖର କ୍ରୁଦ୍ଧ ହୋଇ ଉତ୍ତର ଦେଲା, ଏକ ନୀଚ କ୍ଷତ୍ରିୟ ପରି ତୁମେ ଗର୍ବ କରୁଛ, ତୁମର ନୀଚତା ଓ ଆତ୍ମବଡ଼ିମା ବିଷୟରେ ମୋର ବହୁତ କିଛି କହିବାର ଅଛି । କିନ୍ତୁ ସୂର୍ଯ୍ୟାସ୍ତବେଳ ନିକଟ ହୋଇଗଲାଣି । ତା ପୂର୍ବରୁ ଏହି ଗଦାଦ୍ୱାରା ତୁମର ପ୍ରାଣ ସଂହାର ନ କରି ମୁଁ କ୍ଷାନ୍ତ ହେବି ନାହିଁ । ଚଉଦହଜାର ରାକ୍ଷସଙ୍କ ମୃତ୍ୟୁର ପ୍ରତିଶୋଧ ବେଳା ଉପସ୍ଥିତ । ଏହା କହି ଖର କନକବଳୟଯୁକ୍ତ ତାର ଜ୍ୟୋତିର୍ମୟ ଗଦାକୁ ରାମଙ୍କ ପ୍ରତି ନିକ୍ଷେପ କଲା । ଚତୁର୍ଦ୍ଦିଗରେ ଅଗ୍ନି ବିସ୍ଫୋରଣ କରି କାଳାନଳ ସଦୃଶ ଆସୁଥିବା ସେହି ଗଦାକୁ ରାମ ତୀକ୍ଷ୍ଣ ଶର ଦ୍ୱାରା ବହୁଖଣ୍ଡରେ ଛେଦନ କଲେ । ରାମ ଖରକୁ କହିଲେ, ରାକ୍ଷସାଧମ, ତୁମର ସର୍ବସ୍ୱ ଏହି ଶତ୍ରୁଘାତିନୀ ବିଶାଳ ଗଦା ଯେପରି ଭୂପତିତ ହେଲା, ଅବିଳମ୍ବେ ତୁମର ମଧ୍ୟ ସେହି ଅବସ୍ଥା ହେବ । ଦଣ୍ଡକାରଣ୍ୟ ଶରଣହୀନ ଋଷିମାନଙ୍କର ପୁଣି ଆଶ୍ରୟସ୍ଥଳରେ ପରିଣତ ହେବ ।

ଖର ଏକ ବିଶାଳ ବୃକ୍ଷ ଉତ୍ପାଟନ କରି ରାମଙ୍କ ଆଡ଼କୁ ନିକ୍ଷେପ କଲା, ମାତ୍ର ରାମ ତାକୁ ଅବିଳମ୍ବେ କାଟି ଖଣ୍ଡ ଖଣ୍ଡ କରିଦେଲେ । ରାମ ଆଉ କାଳବିଳମ୍ବ ନ କରି ଇନ୍ଦ୍ରପ୍ରଦତ୍ତ ଏକ ମହାସ୍ତ୍ରକୁ ଖରର ବଧପାଇଁ ଗ୍ରହଣ କଲେ । ଅନ୍ଧକାସୁର ରୁଦ୍ରଙ୍କ ବାଣରେ ଓ ବୃତ୍ର ଇନ୍ଦ୍ରଙ୍କ ବଜ୍ରରେ ନିହତ ହେବାପରି ଏହି ମହାସ୍ତ୍ରରେ ଖର ଶୀଘ୍ର ନିହତ ହୋଇ ଭୂତଳରେ ପତିତ ହେଲା । ଋଷିମାନେ ସମବେତ ହୋଇ ରାମଙ୍କୁ ଅଭିନନ୍ଦନ କଲେ । ସେମାନେ କହିଲେ, ମହାଭାଗ, ତୁମେ ଏହି ମହାଯୁଦ୍ଧରେ ମୁହୂର୍ତ୍ତକ ମଧ୍ୟରେ ବିଶାଳ ରାକ୍ଷସସେନାକୁ ନିପାତ କରି ଋଷି ଓ ଦେବତାମାନଙ୍କର ଅଭିନନ୍ଦିତ ହୋଇଛ । ଏଥିପାଇଁ ପାକଶାସନ ଇନ୍ଦ୍ର ଋଷି ଶରଭଙ୍ଗଙ୍କର ଆଶ୍ରମକୁ ଆସିଥିଲେ ଏବଂ ଋଷିମାନେ କୌଶଳକ୍ରମେ ତୁମକୁ ଏହି ବନକୁ ଅଣାଇବାର ବ୍ୟବସ୍ଥା କରିଥିଲେ ।

ଯୁଦ୍ଧରେ ବିଜୟୀ ହୋଇ ରାମ ଆଶ୍ରମରେ ପ୍ରବେଶ କଲେ । ଲକ୍ଷ୍ମଣ ତାଙ୍କୁ ଅଭିନନ୍ଦନ ଜଣାଇଲେ ଏବଂ ସୀତା ଆନନ୍ଦିତ ହୋଇ ରାମଙ୍କୁ ଆଲିଙ୍ଗନ କଲେ ।

## ୪୯ ।। ରାବଣକୁ ଅକମ୍ପନ ଓ ଶୂର୍ପଣଖାର ପରାମର୍ଶ

ଅକମ୍ପନ ନାମକ ରାକ୍ଷସ ଦ୍ରୁତ ବେଗରେ ଲଙ୍କା ଯାଇ ରାବଣକୁ ସମ୍ବାଦ ଦେଲା ଯେ ଖର ସମେତ ଜନସ୍ଥାନବାସୀ ରାକ୍ଷସଗଣ ନିହତ ହୋଇଛନ୍ତି । ସେ କେବଳ ବଞ୍ଚିଯାଇ ପଳାଇ ଆସିଛି । ଏହି ସମ୍ବାଦ ପାଇ ରାବଣର ଚକ୍ଷୁ କ୍ରୋଧରେ ରକ୍ତବର୍ଣ୍ଣ ହୋଇଗଲା । ସେ ଗର୍ଜନ କରି କହିଲା, କାହାର ପ୍ରାଣକୁ ଭୟ ନାହିଁ, ଯେ ଏହି ଭୟାନକ ଜନସ୍ଥାନକୁ ଧ୍ୱଂସ କରିଛି ? ମୋର ଅନିଷ୍ଟ କରି ଇନ୍ଦ୍ର, କୁବେର, ଯମ, ବିଷ୍ଣୁ କେହି ସୁଖରେ ରହିପାରିବେ ନାହିଁ । ମୋର କ୍ରୋଧାନଳରେ ସୂର୍ଯ୍ୟ ଏବଂ ଅଗ୍ନି ଦଗ୍ଧ ହେବ । କାଳଯମକୁ ମଧ୍ୟ ମୁଁ ନିଃଶେଷ କରିପାରେ । ବେଗବାନ୍ ବାୟୁକୁ ଅବରୋଧ କରିପାରେ ।

ରାବଣର କ୍ରୋଧ ଦେଖି ଅକମ୍ପନ ଭୟରେ କୃତାଞ୍ଜଳି ହୋଇ କହିଲା – ମହାରାଜ, ମୋତେ ଅଭୟ ଦେଲେ ମୁଁ ତାହା କହିବି । ରାବଣ ଅଭୟ ଦେବାରୁ ଅକମ୍ପନ କହିଲା, ଦଶରଥଙ୍କର ପୁତ୍ର ରାମ ଦ୍ୱାରା ଖର ଦୂଷଣ ସମେତ ରାକ୍ଷସବଳର ନିପାତ ଘଟିଛି । ରାମ ବୀର, ବୃଷସ୍କନ୍ଧ, ସିଂହବିକ୍ରମୀ, ବିଶାଳଯଶା ଏବଂ ଅତୁଳନୀୟ ଶକ୍ତିର ଅଧିକାରୀ । କ୍ରୁଦ୍ଧ ବିଷଧର ସର୍ପପରି ରାବଣ ଘନ ନିଃଶ୍ୱାସ ଛାଡ଼ି କହିଲା – ଅକମ୍ପନ, ତା' ହେଲେ ଇନ୍ଦ୍ରାଦି ଦେବତାମାନେ ଆସି ଜନସ୍ଥାନରେ ରାମକୁ ସାହାଯ୍ୟ କରୁଛନ୍ତି । ଅକମ୍ପନ କହିଲା, ଧନୁର୍ଦ୍ଧାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଦିବ୍ୟ ଅସ୍ତ୍ରମାନଙ୍କରେ ନିପୁଣ ରାମ କାହାରି ସାହାଯ୍ୟ ନ ନେଇ ରାକ୍ଷସମାନଙ୍କୁ ନିପାତ କରିଛନ୍ତି । ଦେବତାମାନେ କେହି ଜନସ୍ଥାନକୁ ଆସି ନ ଥିଲେ । ରାମ ଦ୍ୱାରା ନିକ୍ଷିପ୍ତ ସ୍ୱର୍ଣ୍ଣପୁଙ୍ଖ ଶରମାନେ ପଞ୍ଚମୁଖ ସର୍ପତୁଲ୍ୟ ହୋଇ ରାକ୍ଷସମାନଙ୍କୁ ଭକ୍ଷଣ କରିପକାଇଲେ । ଭୟବିହ୍ୱଳ ରାକ୍ଷସମାନେ ଯେଉଁଆଡ଼େ ପଳାଇ ଯାଉଥିଲେ ସେଆଡ଼େ ରାମ କାଳାନ୍ତକ ପରି ଠିଆ ହୋଇଥିବାର ଦେଖୁଥିଲେ । ତେଣୁ କେବଳ ଏକମାତ୍ର ରାମ ଦ୍ୱାରା ହିଁ ସମଗ୍ର ଜନସ୍ଥାନ ବିନଷ୍ଟ ହୋଇଛି ।

ରାବଣ କହିଲା, ଏହିକ୍ଷଣି ମୁଁ ରାମ, ଲକ୍ଷ୍ମଣଙ୍କୁ ମାରିବା ପାଇଁ ଜନସ୍ଥାନ ଯିବି । ଅକମ୍ପନ କହିଲା, ମହାରାଜ ! ଆପଣ ବା ଦେବାସୁର କେହି ରାମଙ୍କୁ ନିହତ କରିପାରିବେ ନାହିଁ । ରାମର ବୀରତ୍ୱ ଅକଳନୀୟ । ଯାହା କିଛି ଅସମ୍ଭବ ବୋଲି ମନେହୁଏ, ରାମ ତାର ବିକ୍ରମ ଦ୍ୱାରା ତାହା ସମ୍ଭବ କରିବା ପାଇଁ ସମର୍ଥ । କିନ୍ତୁ ରାମକୁ ବଧ କରିବାର ଏକମାତ୍ର ଉପାୟ ଅଛି । ସୀତା ନାମରେ ରାମର ଯେଉଁ ସ୍ତ୍ରୀ ଅଛି ତାର ସୌନ୍ଦର୍ଯ୍ୟ ଅତୁଳନୀୟ । ଏ ପୃଥିବୀ କ'ଣ, ଦେବ, ଗନ୍ଧର୍ବ, ଅପ୍ସରା ବା ନାଗଲୋକରେ କେହି ତା ପରି ସୁନ୍ଦରୀ ନାହାନ୍ତି । ଆପଣ ପ୍ରତାରଣାପୂର୍ବକ ସେଠାକୁ ଯାଇ ରାମର ଭାର୍ଯ୍ୟାକୁ ଅପହରଣ କରନ୍ତୁ । ତା' ହେଲେ ସେ ତାର ବିରହରେ ଜୀବନ ହରାଇବ । ଅକମ୍ପନର

ଉପଦେଶ ରାବଣର ମନକୁ ମାନିଲା । ସେ କହିଲା, କାଲି ମୁଁ ଏକାକୀ ସାରଥି ସହିତ ରଥରେ ଯାଇ ବୈଦେହୀକୁ ହରଣ କରିବି ।

ରାବଣ ସଙ୍ଗେ ସଙ୍ଗେ ଖଚର ଯୋଚିତ ଆଦିତ୍ୟବର୍ଣ୍ଣ ରଥରେ ବସି ଦଣ୍ଡକାରଣ୍ୟ ଅଭିମୁଖରେ ପ୍ରସ୍ଥାନ କଲା । ସେ ତାଡ଼କାର ପୁତ୍ର ମାରୀଚ ଆଶ୍ରମରେ ଉପସ୍ଥିତ ହେଲା । ମାରୀଚ ତାକୁ ଆସନ; ଅର୍ଘ୍ୟ ଓ ଦୁର୍ଲଭ ଭୋଜନ ଆଦି ଦେଇ ସତ୍କାର କରି କହିଲା – ରାକ୍ଷସରାଜ, ତୁମର ଏଠାରେ ଉପସ୍ଥିତି ମୋ ମନରେ ନାନା ଆଶଙ୍କା ସୃଷ୍ଟି କରୁଛି । ରାବଣ କହିଲା, ବତ୍ସ, ରାମ ମୋର ସୀମାନ୍ତ ରକ୍ଷାକରୁଥିବା ଜନସ୍ଥାନର ରାକ୍ଷସମାନଙ୍କୁ ବିନଷ୍ଟ କରିଛି ଏବଂ ଜନସ୍ଥାନକୁ ନଷ୍ଟ କରିଦେଇଛି । ତେଣୁ ତାର ଭାର୍ଯ୍ୟାକୁ ଅପହରଣ କରିବାରେ ତୁମେ ମୋତେ ସାହାଯ୍ୟ କର । ମାରୀଚ କହିଲା, କୌଣସି ମିତ୍ରରୂପୀ ଶତ୍ରୁ ତୁମକୁ ଏହି ପରାମର୍ଶ ଦେଇଛି । ବିଷାକ୍ତ ସାପର ମୁହଁରୁ ଦାନ୍ତ ଉପାଡ଼ିବା ପାଇଁ କିଏ ଇଚ୍ଛା କରେ ? ରାକ୍ଷସକୁଳର ବିନାଶ ପାଇଁ କାହାର ଏ ଚକ୍ରାନ୍ତ ? ମାରୀଚ ରାମଙ୍କର ଶକ୍ତି ବର୍ଣ୍ଣନା କରି ରାବଣକୁ କହିଲା – ଲଙ୍କେଶ୍ୱର, ତୁମେ ଶୀଘ୍ର ଲଙ୍କାକୁ ଫେରିଯାଇ ନିଜର ପତ୍ନୀମାନଙ୍କ ସହିତ ବିହାର କର ଏବଂ ସୀତାଙ୍କୁ ଅପହରଣ କରିବାର କଥା ଭୁଲିଯାଅ । ମାରୀଚର ପରାମର୍ଶ ମାନି ରାବଣ ଲଙ୍କାକୁ ଫେରିଆସିଲା ।

ଚଉଦ ହଜାର ରାକ୍ଷସ ଓ ଖର, ଦୂଷଣ ଏବଂ ତ୍ରିଶିରାଙ୍କୁ ନିହତ ହେବାର ଦେଖି ଶୂର୍ପଣଖା ଉଦ୍‌ବିଗ୍ନ ହୋଇ ଲଙ୍କାରେ ପ୍ରବେଶ କଲା । ସେ ଦେଖିଲା, ରାବଣ ମନ୍ତ୍ରୀମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ସ୍ୱର୍ଣ୍ଣ ସିଂହାସନରେ ଉପବିଷ୍ଟ । ରାବଣ ତ୍ରିଲୋକବିଜୟୀ ଯୋଦ୍ଧା । ତାର ଦଶଟି ଗ୍ରୀବା, କୋଡ଼ିଏଟି ବାହୁ, ବକ୍ଷସ୍ଥଳ ବିଶାଳ ଏବଂ ତାର ଦେହରେ ବିଭିନ୍ନ ରାଜଲକ୍ଷଣ ଶୋଭାପାଉଛି । ତାର କାନ୍ତି ବୈଦୂର୍ଯ୍ୟ ପରି ଶ୍ୟାମବର୍ଣ୍ଣ । ବାହୁ ସୁନ୍ଦର । ମୁଖମଣ୍ଡଳ ବିଶାଳ ଓ ଦନ୍ତପନ୍ତି ଶୁକ୍ଳବର୍ଣ୍ଣ । ଦେବତାମାନଙ୍କ ସହିତ ଯୁଦ୍ଧରେ ବିଷ୍ଣୁଙ୍କର ଚକ୍ରାଘାତ, ଇନ୍ଦ୍ର ବଜ୍ରର ଆଘାତ, ଐରାବତର ଦନ୍ତାଘାତ ଚିହ୍ନ ଆଦି ତାର ବକ୍ଷସ୍ଥଳରେ ରହିଛି । ସେ ବିଶାଳ ପର୍ବତମାନଙ୍କୁ ଉଠାଇ ପକାଇ ଦେଉଥିଲା । ପ୍ରଶାନ୍ତ ସମୁଦ୍ରକୁ ବିକ୍ଷୁବ୍ଧ କରିପାରୁଥିଲା । ତାର କୌଣସି ଧର୍ମଜ୍ଞାନ ନ ଥିଲା । ସେ ଯଜ୍ଞରେ ବିଘ୍ନସାଧନ କରୁଥିଲା ଏବଂ ପରସ୍ତ୍ରୀମାନଙ୍କୁ ହରଣ କରୁଥିଲା । ସେ ଭୋଗବତୀ ନଗରୀକୁ ଯାଇ ନାଗରାଜ ବାସୁକି ଓ ତକ୍ଷକକୁ ପରାସ୍ତ କରି ତକ୍ଷକର ପ୍ରିୟ ଭାର୍ଯ୍ୟାକୁ ହରଣ କରିଥିଲା । କୈଳାସ ପର୍ବତରେ କୁବେରଙ୍କୁ ଜୟକରି କୁବେରଙ୍କର ପୁଷ୍ପକବିମାନ ବଳପୂର୍ବକ ଅପହରଣ କରିଥିଲା । ଦୀର୍ଘକାଳ ଘୋର ତପସ୍ୟା ଦ୍ୱାରା ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରି ବର ପାଇଥିଲା ଯେ ଦେବ, ଦାନବ, ଗନ୍ଧର୍ବ, ପିଶାଚ, ପତଙ୍ଗ ବା ଉରଗ କେହି ତାକୁ ମାରି ପାରିବେ ନାହିଁ । କେବଳ ଅବଜ୍ଞାରେ ମନୁଷ୍ୟକୁ ସେ ଛାଡ଼ି ଦେଇଥିଲା । କ୍ରୂର, ନିର୍ଦ୍ଦୟ ଦୁରାଚାରୀ ରାବଣକୁ ସମସ୍ତେ ଭୟ କରୁଥିଲେ । ରାବଣ ନିର୍ଭୀକ ଭାବରେ ମହାଭୋଗରେ ରହି କାଳ ଯାପନ କରୁଥିଲା ।

ଶୂର୍ପଣଖା ମନ୍ତ୍ରୀମାନଙ୍କ ସମକ୍ଷରେ ରାବଣକୁ କଠୋର ଭାଷାରେ ଭର୍ତ୍ସନା କରି କହିଲା, ତୁ କାମବାସନାରେ ଲିପ୍ତ ହୋଇ ସ୍ୱେଚ୍ଛାଚାରୀ ନିରଙ୍କୁଶ ଜୀବନ ଯାପନ କରୁଛୁ ।

ବର୍ତ୍ତମାନ ଯେ ତୋର ଘୋର ବିପଦ ଉପସ୍ଥିତ, ଏହା ତୁ ଜାଣିବାକୁ ଚେଷ୍ଟା କରୁ ନାହୁଁ । ତୋର ଚାର ନାହାନ୍ତି, ଯେ କି ତୋତେ ପ୍ରକୃତ ଖବର ଦେବେ । ବାଳକର ସ୍ୱଭାବ ପରି ତୋର ସ୍ୱଭାବ ଅତି ଚପଳ । କ'ଣ ଜାଣିବାର କଥା ଏବଂ କ'ଣ ନୁହେଁ, ସେ ବୁଦ୍ଧି ତୋର ନାହିଁ । ତୋର ସଚିବଗଣ ମଧ୍ୟ ମୂର୍ଖ । ତୋର ସ୍ୱଜନ ଓ ଜନସ୍ଥାନ ନଷ୍ଟ ହେବାର କଥା ତୁ ଏ ପର୍ଯ୍ୟନ୍ତ ଜାଣି ନାହୁଁ । ଏକମାତ୍ର ରାମ ଦ୍ୱାରା ଖର, ଦୂଷଣ ଓ ଚଉଦହଜାର ରାକ୍ଷସ ନିହତ ହୋଇଛନ୍ତି । ରାମ ଋଷିମାନଙ୍କୁ ଅଭୟ ଦେଇ ଦଣ୍ଡକାରଣ୍ୟକୁ ନିଷ୍କଣ୍ଟକ କରିଛି । ମୁଁ ଜାଣିପାରୁଛି, ତୁ ରାଜାର ସମସ୍ତ ଗୁଣରୁ ବର୍ଜିତ । ରାକ୍ଷସ, ଅଳ୍ପକାଳ ମଧ୍ୟରେ ତୋତେ ଓ ତୋର ରାଜ୍ୟକୁ ଘୋର ବିପଦ ମାଡ଼ିଆସୁଛି ।

ସମସ୍ତଙ୍କର ସମକ୍ଷରେ ଶୂର୍ପଣଖାର ଭର୍ତ୍ସନା ଶୁଣି ଉତ୍ତ୍ୟକ୍ତ ରାବଣ ପଚାରିଲା, ଏ ରାମ କିଏ ? କିପରି ତାର ରୂପ, ବଳ ଓ ପରାକ୍ରମ ? କେଉଁ ଉଦ୍ଦେଶ୍ୟରେ ସେ ଦଣ୍ଡକାରଣ୍ୟକୁ ଆସିଛି ଏବଂ କିପରି ଅସ୍ତ୍ରଧରି ରାମ ଖର, ଦୂଷଣ ଓ ତ୍ରିଶିରାକୁ ନିହତ କରିଛି ?

ଶୂର୍ପଣଖା କହିଲା– ଦଶରଥପୁତ୍ର ରାମ କନ୍ଦର୍ପ ପରି ରୂପବାନ୍, ଦୀର୍ଘ ବାହୁ, ଆୟତନେତ୍ର, କୃଷ୍ଣାଜିନଧାରୀ । ଇନ୍ଦ୍ରଧନୁତୁଲ୍ୟ କନକବଳୟଯୁକ୍ତ ତାର ଧନୁରୁ ମହାବିଷଧର ସର୍ପ ପରି ଶରମାନେ ନିର୍ଗତ ହୁଅନ୍ତି । କେତେବେଳେ ସେ ଶର ଆଣି ଯୋଖେ, କେତେବେଳେ ମୋଚନ କରେ, କେତେବେଳେ ଧନୁରେ ଜ୍ୟା ରୋପଣ କରେ, କିଛି ଦେଖାଯାଏ ନାହିଁ । କେବଳ ତାର ଶରାଘାତରେ ସୈନ୍ୟମାନେ ନିହତ ହେବାର ଦେଖାଯାଏ । ପଦଚାରୀ ରାମ ଏକାକୀ ତିନିଦଣ୍ଡ ସମୟ ମଧ୍ୟରେ ଖର, ଦୂଷଣ ଓ ତାଙ୍କର ଚଉଦହଜାର ସୈନ୍ୟଙ୍କୁ ନିଃଶେଷ କରିଦେଲା । କେବଳ ସ୍ତ୍ରୀବଧ ପାପ ଭୟରେ ମୋତେ ଏପରି ବିକଳାଙ୍ଗ କରି ପ୍ରାଣରେ ନ ମାରି ଛାଡ଼ିଦେଇଛି । ଲକ୍ଷ୍ମଣ ନାମରେ ତାର ଏକ ଭ୍ରାତା ଅଛି ଯେକି ମହା ତେଜସ୍ୱୀ । ସେ ବଳ ଓ ବିକ୍ରମରେ ରାମର ତୁଲ୍ୟ । ସେ ରାମର ଦକ୍ଷିଣ ହସ୍ତସ୍ୱରୂପ ଅତ୍ୟନ୍ତ ଭକ୍ତ ଓ ଅନୁରକ୍ତ । ରାମର ଧର୍ମପତ୍ନୀ ସୀତା ରାମର ଅତିଶୟ ପ୍ରିୟା । ତପ୍ତକାଞ୍ଚନବର୍ଣ୍ଣା ପୂର୍ଣ୍ଣଚନ୍ଦ୍ରାନନା ବୈଦେହୀ ରାମ ପ୍ରତି ଅତ୍ୟନ୍ତ ଅନୁରକ୍ତା । ଦେବୀ, ଗନ୍ଧର୍ବୀ, ଯକ୍ଷୀ ବା କିନ୍ନରୀମାନଙ୍କ ମଧ୍ୟରେ ମୁଁ ତା'ପରି ରୂପବତୀ ନାରୀ ଦେଖୁ ନାହିଁ । ସେହି ସୀତା, ଭାର୍ଯ୍ୟା ହୋଇ ଯାହାକୁ ଆଲିଙ୍ଗନ କରିବ, ସେ ଇନ୍ଦ୍ରସମ୍ପଦ ଲାଭ କରିବା ପରି ଅନୁଭବ କରିବ । ରୂପ ଏବଂ ଶୀଳରେ ସେ ହିଁ ତୋର ଭାର୍ଯ୍ୟା ହେବାପାଇଁ ଉପଯୁକ୍ତ ଏବଂ ତୁ ତାର ପତି ହେବାପାଇଁ ଯୋଗ୍ୟ । ତୋର ଭାର୍ଯ୍ୟା ନିମନ୍ତେ ତାକୁ ଯେତେବେଳେ ଅପହରଣ କରିବା ପାଇଁ ମୁଁ ଉଦ୍ୟମ କଲି, ଲକ୍ଷ୍ମଣ ମୋତେ ଧରି ଏହିପରି ବିକଳାଙ୍ଗ କଲା । ଯଦି ସେହି ଚନ୍ଦ୍ରାନନା ବୈଦେହୀକୁ ପତ୍ନୀରୂପେ ବରଣ କରିବା ତୋର ଇଚ୍ଛା ଥାଏ, ତା'ହେଲେ ଶୀଘ୍ର ଯୁଦ୍ଧ ପାଇଁ ଅଗ୍ରସର ହୁଅ । ରାମ ଓ ଲକ୍ଷ୍ମଣଙ୍କୁ ସଂହାର କରି ସୀତାଙ୍କୁ ଭୋଗ କର ।

## ୫୦ ।। ମାରୀଚ ସହ ପୁଣି ମନ୍ତ୍ରଣା : 'ମାୟାମୃଗ ହୁଅ'

ରାବଣ ଶୂର୍ପଣଖା କଥାରେ ପ୍ରଭାବିତ ହେଲା । ମନ୍ତ୍ରୀମାନଙ୍କୁ ବିଦାୟ ଦେଇ ଶୀଘ୍ର ରଥ ସଜ୍ଜିତ କରିବା ପାଇଁ ଗୋପନରେ ସାରଥିକୁ ଆଦେଶ ଦେଲା । ରାବଣର ରଥାଗାରରେ ବହୁ ରଥ ରହିଥିଲା । ତନ୍ମଧ୍ୟରୁ ରାବଣର ମନୋମତ ରତ୍ନବିଭୂଷିତ ଏକ ସ୍ୱର୍ଣ୍ଣମୟ ରଥ ସାରଥି ସଜ୍ଜିତ କଲା । ଏହି ରଥ କାମଗାମୀ ବା ଇଚ୍ଛା କରିବା ମାତ୍ରେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚାଇ ଦେଇ ପାରୁଥିଲା । ଏଥିରେ ପିଶାଚମୁଖ ଗର୍ଦ୍ଦଭମାନେ ଯୋଚା ହୋଇଥିଲେ । ରମଣୀୟ ପୋଷାକ ଓ ଅଳଙ୍କାରମାନଙ୍କ ଦ୍ୱାରା ଭୂଷିତ ହୋଇ ରାବଣ ସେହି ରଥ ଆରୋହଣ କରି ଗଗନଚାରୀ ବିହଙ୍ଗମ ପରି ଆକାଶମାର୍ଗରେ ଗତି କଲା । ସେ ସମୁଦ୍ର ତୀରବର୍ତ୍ତୀ ଜଳବହୁଳ ପ୍ରଦେଶମାନଙ୍କ ଉପରେ ଯିବାବେଳେ ଫଳପୁଷ୍ପପୂର୍ଣ୍ଣ ବୃକ୍ଷରାଜି, ଶୀତଳ ଜଳପୂର୍ଣ୍ଣ ପୁଷ୍କରିଣୀ ଏବଂ କଦଳୀ, ନାରୀକେଳ, ତାଳ, ତମାଳ, ଶାଳ ବନମାନଙ୍କ ମଧ୍ୟରେ ବିଶାଳ ଆଶ୍ରମମାନ ଦେଖିବାକୁ ପାଇଲା । ଋଷି, ନାଗ, ଗନ୍ଧର୍ବ, କିନ୍ନର, ସିଦ୍ଧ ଓ ଚାରଣଗଣ ସେଠାରେ ବାସ କରୁଥିଲେ । ତପୋବଳରେ ଯେଉଁମାନେ ବିଭିନ୍ନ ଲୋକ ଜୟ କରିଥିଲେ, ସେମାନେ ମଧ ଗୀତ ବାଦ୍ୟ ମୁଖରିତ ମନୋଗାମୀ ବିମାନମାନଙ୍କରେ ବସି ବିଚରଣ କରୁଥିଲେ । ଚନ୍ଦନବନର ସୁବାସ ପବନର ହିଲ୍ଲୋଳରେ ଭାସି ଆସୁଥିଲା । ପର୍ବତମାନଙ୍କରେ ସୁନା ଓ ରୁପା ପୂରି ରହିଥିଲା ଏବଂ ସୁନ୍ଦର ଝରଣାମାନ ବହି ଯାଉଥିଲା । ସମୁଦ୍ରକୂଳରେ ରାଶି ରାଶି ଶଂଖ, ପୋହଳା ଓ ମୁକ୍ତା ଶୁଖା ହୋଇଥିଲା ।

ଆଗକୁ ଯାଇ ରାବଣ ଏକ ବିଶାଳ ବଟବୃକ୍ଷ ଦେଖିବାକୁ ପାଇଲା । ଶତଯୋଜନ ବିଶିଷ୍ଟ ଏହି ବିଶାଳ ବଟବୃକ୍ଷ ଉପରେ ଦିନେ ବିନତାଙ୍କର ପୁତ୍ର ଗରୁଡ଼ ଗଜ ଓ କଚ୍ଛପକୁ ଭକ୍ଷଣ କରିଥିଲେ । ଏକ ବିଶାଳ ଗଜ ଓ ପ୍ରକାଣ୍ଡ କଚ୍ଛପକୁ ଧରି ଗରୁଡ଼ ଏହି ବୃକ୍ଷ ଉପରେ ବସିବାବେଳେ ତାର ଅନେକ ଶାଖା ଭାଙ୍ଗିପଡ଼ିଥିଲା । ଏହାର ତଳେ ବୈଖାନସ ବାଳଖିଲ୍ୟ ପ୍ରଭୃତି ବହୁ ଋଷି ତପସ୍ୟା କରୁଥିଲେ । ସେମାନଙ୍କ ପ୍ରତି ଦୟାର୍ଦ୍ର ଗରୁଡ଼ ଭଗ୍ନ ବୃକ୍ଷଶାଖା ସହିତ ଗଜ ଓ କଚ୍ଛପକୁ ନେଇ ଉଡ଼ି ଯାଇଥିଲେ । ଗଜ ଓ କଚ୍ଛପକୁ ଭକ୍ଷଣ କରିବା ପରେ ଗରୁଡ଼ ସେହି ବୃକ୍ଷଶାଖାକୁ ପକାଇଦେବା ଦ୍ୱାରା ନିଷାଦ ରାଜ୍ୟ ଧ୍ୱଂସ ହୋଇଗଲା । ବିକ୍ରମୀ ଗରୁଡ଼ ଏତଦ୍ୱାରା ନିଜର ଅମିତ ତେଜ ଓ ବଳ ସଂପର୍କରେ ସଚେତନ ହୋଇ ଲୌହଜାଲ ବିଶିଷ୍ଟ ରତ୍ନଗୃହ ମଧ୍ୟରେ ଦେବତାମାନେ ଗୋପନରେ ରଖିଥିବା ଅମୃତ ହରଣ କରିଥିଲେ ।

ରାବଣ ଆହୁରି କିଛି ଦୂର ଯିବା ପରେ ଜଟା, ମୃଗଚର୍ମ ଓ ବଲ୍କଳଧାରୀ ମାରୀଚର ଆଶ୍ରମରେ ପହଞ୍ଚିଲା । ମାରୀଚ ତାର ଉପଯୁକ୍ତ ସତ୍କାର କରି କହିଲା – ଲଙ୍କେଶ୍ୱର, ତୁମର ସବୁ କୁଶଳ ତ । ତୁମେ ଏତେ ଶୀଘ୍ର ପୁଣି ଏଠାକୁ କାହିଁକି ଆସିଲ ?

ରାବଣ କହିଲା – ବତ୍ସ ମାରୀଚ, ମୁଁ ବିପନ୍ନ । ମୋତେ ତୁମେ ହିଁ ସାହାଯ୍ୟ କରିପାରିବ । ତୁମେ ଜାଣ, ଜନସ୍ଥାନରେ ମୋର ଭାଇ ଖର ଓ ଭଉଣୀ ଶୂର୍ପଣଖା ବାସ କରୁଥିଲେ । ଦୂଷଣ, ତ୍ରିଶିରା ଓ ବହୁ ବୀର ରାକ୍ଷସ ମୋର ନିର୍ଦ୍ଦେଶ ଅନୁସାରେ ସେଠାରେ

ରହୁଥିଲେ । ସେମାନଙ୍କର ସଂଖ୍ୟା ଚଉଦହଜାର ଏବଂ ସେମାନେ ସମସ୍ତେ ବିଖ୍ୟାତ ଯୋଦ୍ଧା ଥିଲେ । ଏବେ ରାମ ଖର, ଦୂଷଣ ଓ ତ୍ରିଶିରାଙ୍କ ସମେତ ଏହି ଚଉଦହଜାର ଯୋଦ୍ଧାଙ୍କୁ ନିହତ କରି ଦଣ୍ଡକାରଣ୍ୟକୁ ରାକ୍ଷସଶୂନ୍ୟ କରିଛି । ବିନା ଶତ୍ରୁତାରେ ମୋର ଭଗିନୀ ଶୂର୍ପଣଖାର ନାସା, କର୍ଣ୍ଣ ଛେଦନ କରିଚି । ମହାବଳୀ, ଏହାର ପ୍ରତିଶୋଧ ନେବା ପାଇଁ ତୁମେ ମୋତେ ସାହାଯ୍ୟ କର । ବହୁତ ଭାବିଚିନ୍ତି ରାମର ପତ୍ନୀ ସୀତାକୁ ହରଣ କରିବାପାଇଁ ମୁଁ ସ୍ଥିର କରିଛି । ତୁମେ ବୀର, କୁଶଳୀ ଓ ମାୟାବୀ । ମୋତେ ସାହାଯ୍ୟ କରିବା ପାଇଁ ରଜତବିନ୍ଦୁଚିତ୍ରିତ ଏକ ସ୍ୱର୍ଣ୍ଣମୃଗ ହୋଇ ରାମ ଆଶ୍ରମରେ ସୀତା ଆଗରେ ବିଚରଣ କର । ସୀତା ଏହି ସୁନ୍ଦର ମୃଗକୁ ଦେଖି ନିଶ୍ଚୟ ତାର ସ୍ୱାମୀ ଓ ଲକ୍ଷ୍ମଣଙ୍କୁ ଏହାକୁ ଧରିଆଣି ଦେବାକୁ କହିବ । ତା' ହେଲେ ବିନା ବାଧାରେ ରାହୁ ଚନ୍ଦ୍ରର ପ୍ରଭା ହରଣ କରିବା ପରି ମୁଁ ରାମର ଭାର୍ଯ୍ୟା ସୀତାକୁ ହରଣ କରି ଆଣିବି । ତା' ପରେ ପତ୍ନୀ ବିରହରେ ବ୍ୟାକୁଳ ଦୁର୍ବଳ ରାମକୁ ମୁଁ କବଳିତ କରିପାରିବି ।

ରାବଣର କଥା ଶୁଣି ମାରୀଚର ମୁହଁ ଶୁଖିଗଲା । ସେ ଅନିମେଷ ନୟନରେ ଅତ୍ୟନ୍ତ ଆର୍ତ୍ତ ଭାବରେ ରାବଣ ଆଡ଼କୁ ଚାହିଁରହିଲା । କିଛି କହିପାରିଲା ନାହିଁ । ପରେ ନିଜକୁ ସମ୍ଭାଳି କହିଲା – ରାଜା, ସବୁବେଳେ ମନକୁ ପାଇବା ଭଳି କଥା କହିବା ଲୋକ ଏ ସଂସାରରେ ବହୁତ ଅଛନ୍ତି, କିନ୍ତୁ ହିତ ଅଥଚ ଅପ୍ରିୟ କଥା କହିବା ଲୋକଙ୍କ ସଂଖ୍ୟା ବହୁତ କମ୍ ।

**ସୁଲଭାଃ ପୁରୁଷାଃ ରାଜନ୍ ସତତଂ ପ୍ରିୟବାଦିନଃ ।**
**ଅପ୍ରିୟସ୍ୟ ଚ ପଥ୍ୟସ୍ୟ ବକ୍ତା ଶ୍ରୋତା ଚ ଦୁର୍ଲ୍ଲଭଃ ।।**

ତୁମର ସ୍ୱଭାବ ଅତି ଚପଳ ଏବଂ ତୁମର ଉପଯୁକ୍ତ ଚାର ନାହାନ୍ତି । ମହାବଳଶାଳୀ ରାମଙ୍କୁ ତୁମେ ଜାଣ ନାହିଁ । ସେ କ୍ରୁଦ୍ଧ ହେଲେ ଜନସ୍ଥାନ କ'ଣ, ସମସ୍ତ ଜଗତକୁ ରାକ୍ଷସଶୂନ୍ୟ କରିଦେଇ ପାରିବେ । ତୁମର ପ୍ରାଣନାଶ ପାଇଁ ସୀତାଙ୍କର ଜନ୍ମ ବୋଲି ମନେକର । ରାମ ନିଜର ତେଜରେ ସୀତାଙ୍କୁ ରକ୍ଷା କରିଛନ୍ତି । ସୂର୍ଯ୍ୟଠାରୁ ପ୍ରଭା ହରଣ କରି ରାମଙ୍କଠାରୁ ବୈଦେହୀଙ୍କୁ ହରଣ କରିବା ପାଇଁ ତୁମେ ଇଚ୍ଛା କର ନାହିଁ । ରାମ ତାଙ୍କର ଅନୁଗତା ପତ୍ନୀ ସୀତାଙ୍କୁ ପ୍ରାଣ ଅପେକ୍ଷା ଅଧିକ ପ୍ରିୟ ବୋଲି ମନେକରନ୍ତି । ସୀତାଙ୍କୁ ହରଣ କରି ତୁମେ ରାମଙ୍କ ସହିତ ଯୁଦ୍ଧ କରିବାକୁ ଚାହ ? ଯୁଦ୍ଧକ୍ଷେତ୍ରରେ ରାମଙ୍କୁ ଦେଖିବା ମାତ୍ରେ ତୁମର ଜୀବନ ଛାଡ଼ିଯିବ । ଯଦି ନିଜର ଜୀବନ, ସୁଖ ଓ ଦୁର୍ଲଭ ରାଜ୍ୟକୁ ଭୋଗ କରିବା ପାଇଁ ଇଚ୍ଛା କରୁଥାଅ, ତା' ହେଲେ ଏପରି ଯଥେଚ୍ଛାଚାର ଏବଂ ପାପବୁଦ୍ଧିକୁ ପରିତ୍ୟାଗ କର । ବିଭୀଷଣ ପ୍ରମୁଖ ଧର୍ମଜ୍ଞ ମନ୍ତ୍ରୀମାନଙ୍କ ସହିତ ମନ୍ତ୍ରଣା କରି ହିତାହିତ ବୁଝି କାର୍ଯ୍ୟ କର ।

ମାରୀଚ ନିଜର ଅଭିଜ୍ଞତା ବର୍ଣ୍ଣନା କରି କହିଲା, ଏକ ସମୟରେ ମୁଁ ମଧ୍ୟ ମୋର ବଳ ଘେନି ଗର୍ବ କରୁଥିଲି । ମୋର ପର୍ବତୋପମ ବିଶାଳ ଶରୀରରେ ସହସ୍ର ହସ୍ତୀର ବଳ ଥିଲା । ଋଷି ମାଂସ ଭକ୍ଷଣ କରି ମୁଁ ନିର୍ଭୟରେ ଏ ଦଣ୍ଡକାରଣ୍ୟରେ ବିଚରଣ କରୁଥିଲି । ମହର୍ଷି ବିଶ୍ୱାମିତ୍ର ମୋ ଭୟରେ ତ୍ରସ୍ତ ହୋଇ ରାମଙ୍କୁ ଆଣିବା ପାଇଁ ଦଶରଥଙ୍କର ସାହାଯ୍ୟ

ଭିକ୍ଷା କରିଥିଲେ । ରାମ ସେତେବେଳେ ଅଜାତଶ୍ମଶ୍ରୁ ବାଳକ । ତାଙ୍କୁ ଅବଜ୍ଞା କରି ମୁଁ ଯେତେବେଳେ ବିଶ୍ୱାମିତ୍ରଙ୍କର ଯଜ୍ଞ ଭଙ୍ଗ ପାଇଁ ଆସିଲି, ବାଳଚନ୍ଦ୍ର ପରି ରମଣୀୟ ଧନୁର୍ଦ୍ଧାରୀ ରାମ ମୋତେ ସଙ୍ଗେ ସଙ୍ଗେ ନିରସ୍ତ୍ର ଓ ମୂର୍ଚ୍ଛିତ କରି ଶତଯୋଜନ ଦୂରବର୍ତ୍ତୀ ଗଭୀର ସମୁଦ୍ରକୁ ନିକ୍ଷେପ କରିଥିଲେ । କାରଣ, ସେ ମୋର ପ୍ରାଣ ହରଣ କରିବା ପାଇଁ ଇଚ୍ଛା କରି ନ ଥିଲେ । ତେଣୁ ମୋର ବାରଣ ସତ୍ତ୍ୱେ ତୁମେ ଯଦି ରାମ ସହିତ ଯୁଦ୍ଧ କର ତା' ହେଲେ ତୁମ ସହିତ ସମସ୍ତ ରାକ୍ଷସକୁଳ ବିନଷ୍ଟ ହେବ । ପରଦାର ହରଣଠାରୁ ଗୁରୁତର ପାପ ନାହିଁ । ତୁମର ସହସ୍ରସଂଖ୍ୟକ ସୁନ୍ଦରୀ ପତ୍ନୀ ଅଛନ୍ତି । ତୁମେ ତାଙ୍କଠାରେ ଆସକ୍ତ ରହ ଏବଂ ମିତ୍ରବର୍ଗଙ୍କୁ ଅଭୟ ଦେଇ ରାଜ୍ୟସମ୍ପଦ ଉପଭୋଗ କର ।

ମାରୀଚ ପୁଣି କହିଲା, ଥରେ ରାମ ଦ୍ୱାରା ନିହତ ନ ହୋଇ ମୁଁ କିପରି ବଞ୍ଚିଗଲି ତାହା ତୁମେ ଶୁଣିଲ । ଏବେ ମୃଗରୂପଧରି ମୁଁ ରାମଙ୍କଠାରୁ ଆଉଥରେ କିପରି ରକ୍ଷା ପାଇଥିଲି, ତାହା କହୁଛି ଶୁଣ । ଦୁଇ ଜଣ ମୃଗରୂପଧାରୀ ରାକ୍ଷସଙ୍କ ସହିତ ମୁଁ ଦଣ୍ଡକାରଣ୍ୟରେ ପ୍ରବେଶ କରିଥିଲି । ଆମେ ଏହି ରୂପରେ ଅଗ୍ନିହୋତ୍ର ଯଜ୍ଞଶାଳା ଓ ଜଳାଶୟ ଘାଟମାନଙ୍କରେ ତପସ୍ୱୀମାନଙ୍କୁ ଉତ୍ପୀଡ଼ନ କରିବାକୁ ଲାଗିଲୁ । ମୁଁ ସେମାନଙ୍କୁ ହତ୍ୟା କରି ସେମାନଙ୍କର ରକ୍ତ ପାନ କରୁଥିଲି । ଏପରି ଉନ୍ମତ୍ତ ଭାବରେ ବିଚରଣ କରୁ କରୁ ମୁଁ ବନବାସୀ ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ଦେଖିଲି । କିନ୍ତୁ ଏବେ ସେ ତପସ୍ୱୀ ହୋଇଗଲେଣି, ମୋର କିଛି କରିପାରିବେ ନାହିଁ ବୋଲି ବିଚାରକରି ତୀକ୍ଷ୍ଣ ଶୃଙ୍ଗରେ ତାଙ୍କୁ ଆକ୍ରମଣ କରିବା ପାଇଁ ଅନ୍ୟ ଦୁଇ ମୃଗରୂପୀ ରାକ୍ଷସଙ୍କ ସହିତ ଦୌଡ଼ିଗଲି । ରାମ ସଙ୍ଗେ ସଙ୍ଗେ ଏକ ପ୍ରକାଣ୍ଡ ଧନୁ ଆକର୍ଷଣ କରି ତିନୋଟି ଶତ୍ରୁସଂହାରକାରୀ ଶର ନିକ୍ଷେପ କଲେ । ସେହି ବଜ୍ରତୁଲ୍ୟ ରକ୍ତପାୟୀ ଭୟଙ୍କର ଶରମାନଙ୍କୁ ଦେଖି ମୁଁ କୌଣସିମତେ ପଳାଇ ଆସି ରକ୍ଷା ପାଇଗଲି । ଅନ୍ୟ ଦୁଇଟି ରାକ୍ଷସ ନିହତ ହେଲେ । ରାବଣ, ସେହିଦିନଠାରୁ ବଲ୍କଳ ଓ କୃଷ୍ଣାଜିନଧାରୀ ଧନୁର୍ଦ୍ଧର ରାମଙ୍କୁ ପାଶହସ୍ତ ଯମ ପରି ସହସ୍ର ମୂର୍ତ୍ତିରେ ମୁଁ ଦେଖୁଛି । ରାକ୍ଷସରାଜ, ଏ ସମସ୍ତ ଅରଣ୍ୟ ମୋତେ ରାମମୟ ଦେଖାଯାଉଛି । ରାମଙ୍କର ନାମ ଶୁଣିବା ମାତ୍ରେ ମୋର ମନରେ ଘୋର ଭୟର ସଞ୍ଚାର ହେଉଛି । ଏଣୁ ତୁମେ ମୋତେ ଏ କାର୍ଯ୍ୟରେ ନିଯୁକ୍ତ କର ନାହିଁ । ନିଶାଚର, ତୁମ ଅପରାଧ ଯୋଗୁଁ ମୁଁ ବିନଷ୍ଟ ହେବାକୁ ଚାହେ ନାହିଁ ।

ମୁମୂର୍ଷୁ ବ୍ୟକ୍ତି ଯେପରି ଔଷଧ ସେବନ କରେ ନାହିଁ ସେହିପରି ରାବଣ ମାରୀଚର ଯୁକ୍ତିଯୁକ୍ତ ଓ ହିତବାକ୍ୟ ଗ୍ରହଣ କଲା ନାହିଁ । ସେ କଠୋର ବାକ୍ୟରେ କହିଲା, ମନ୍ଦ କୁଳଜାତ ମାରୀଚ, ଊଷର ଭୂମିରେ ପତିତ ବୀଜ ପରି ତୋର କଥା ମୋ ପାଇଁ ସଂପୂର୍ଣ୍ଣ ନିଷ୍ଫଳ । ତୋ କଥାରେ ପାପାଚାରୀ ମୂର୍ଖ ରାମ ସହିତ ଯୁଦ୍ଧ କରିବା ପାଇଁ ମୁଁ ଆଦୌ ଭୟଭୀତ ନୁହେଁ । ଯେଉଁ ବ୍ୟକ୍ତି ସାମାନ୍ୟ ସ୍ତ୍ରୀର କଥା ଶୁଣି ମାତା, ପିତା, ରାଜ୍ୟ ଓ ବନ୍ଧୁବର୍ଗ ପରିତ୍ୟାଗ କରି ବନକୁ ଚାଲିଆସିଛି, ଖରର ହତ୍ୟାକାରୀ ସେହି ରାମର ପ୍ରିୟ ଭାର୍ଯ୍ୟାକୁ ତୋ ସମକ୍ଷରେ ମୁଁ ନିଶ୍ଚୟ ଅପହରଣ କରିବି । ମୂଢ଼ ରାକ୍ଷସ, ମୁଁ ତୋର ଅତିଥି ହୋଇ ଆସିଥିଲେ ମଧ୍ୟ ତୁ ଦୁର୍ବୁଦ୍ଧି ହେତୁ ମୋ ପ୍ରତି ଏପରି କଠୋର ବାକ୍ୟ ପ୍ରୟୋଗ

କରୁଛୁ । ମାୟାମୟ ସ୍ୱର୍ଣ୍ଣମୃଗ ହୋଇ ତୋତେ ଯିବାକୁ ହେବ । ସୀତାର କଥାରେ ରାମ ତୋତେ ଆଣିବାକୁ ଯିବାବେଳେ ତୁ ଦୂରକୁ ଚାଲିଯାଇ 'ହା ସୀତା, ହା ଲକ୍ଷ୍ମଣ' ବୋଲି କରୁଣ ସ୍ୱରରେ ଚିତ୍କାର କରିବୁ । ସେ ଶବ୍ଦ ଶୁଣି ଲକ୍ଷ୍ମଣ ମଧ୍ୟ ରାମର ପଥ ଅନୁସରଣ କରିବ । ଉଭୟ ଚାଲିଯିବା ପରେ ମୁଁ ଅନାୟାସରେଁ ବିଦେହନନ୍ଦିନୀଙ୍କୁ ଅପହରଣ କରିବି । ମାରୀଚ, ତୁ ମୋର ଏହି କାର୍ଯ୍ୟ ସଂପାଦନ କଲେ ତୋତେ ଅର୍ଦ୍ଧେକ ରାଜ୍ୟ ପ୍ରଦାନ କରିବି । ନଚେତ୍ ମୋର ଆଦେଶ ଅବଜ୍ଞା କଲେ ଏହିକ୍ଷଣି ତୋର ପ୍ରାଣ ସଂହାର କରିବି । ରାମ ନିକଟକୁ ଗଲେ ତୋର ବଞ୍ଚିବାର ଆଶା ଅଛି, କିନ୍ତୁ ମୋର ବିରୁଦ୍ଧାଚରଣ କଲେ ତୋର ମୃତ୍ୟୁ ସୁନିଶ୍ଚିତ ।

ମାରୀଚ ନିର୍ଭୟରେ କହିଲା – ନିଶାଚର, କେଉଁ ପାପୀବ୍ୟକ୍ତି ତୁମକୁ ଏ ପରାମର୍ଶ ଦେଇଛି ? ଏହା ଫଳରେ ତୁମର ସବଂଶ ନିଧନ ଅନିବାର୍ଯ୍ୟ । ସ୍ୱେଚ୍ଛାଚାରୀ ରାଜାଙ୍କୁ ଉଚିତ ପରାମର୍ଶ ଦେବା ସତ୍‌ସ୍ୱଭାବ ମନ୍ତ୍ରୀର କର୍ତ୍ତବ୍ୟ । କିନ୍ତୁ ତୁମେ କାହାର ସତ୍ ପରାମର୍ଶ ଚାହ ନାହିଁ । ମୃତ୍ୟୁ ପାଇଁ ମୋର ଭୟ ନାହିଁ । ମୁଁ ତ ରାମଙ୍କ ଶରରେ ନିହତ ହେବି । କିନ୍ତୁ ସୀତାଙ୍କୁ ପଞ୍ଚବଟୀ ଆଶ୍ରମରୁ ଚୋରାଇ ଆଣିଲେ ତୁମର, ରାକ୍ଷସଗଣଙ୍କର ବା ଲଙ୍କାପୁରୀ କାହାରି ସତ୍ତା ରହିବ ନାହିଁ ।

କିନ୍ତୁ ରାବଣର ସଂକଳ୍ପରେ କୌଣସି ପରିବର୍ତ୍ତନ ନ ଦେଖି ମାରୀଚ ଶେଷରେ କହିଲା – ରାକ୍ଷସରାଜ, ରାମଙ୍କଦ୍ୱାରା ନିହତ ହେବା ପାଇଁ ମୁଁ ତୁମ ସହିତ ଯିବି । କିନ୍ତୁ ଗୋଟିଏ କଥା ମନେ ରଖିଥାଅ । ତୁମେ ଯମଦଣ୍ଡକୁ ବିଫଳ କରିଥିଲେ ମଧ୍ୟ ରାମରୂପରେ ସାକ୍ଷାତ୍ ଯମଦଣ୍ଡକୁ ଦେଖିପାରିବ ।

ରାବଣ ଆନନ୍ଦରେ ମାରୀଚକୁ ଆଲିଙ୍ଗନ କରି କହିଲା, ମୋର ମନୋମତ ପ୍ରସ୍ତାବରେ ରାଜି ହୋଇ ତୁ ପ୍ରକୃତ ବୀରତ୍ୱର ପରିଚୟ ଦେଲୁ । ପୂର୍ବରୁ ତୁ ଅନ୍ୟ ନିଶାଚର ଥିଲୁ । ଏବେ ପ୍ରକୃତ ମାରୀଚ ବୋଲି ଜଣାଗଲୁ ।

## ୫୧ ॥ ହେମ ମୃଗ

ରାବଣ ମାରୀଚକୁ ରଥରେ ବସାଇ ଆକାଶ ମାର୍ଗରେ ଗତିକଲା । ବାଟରେ ସେମାନେ ବହୁ ବନ, ପର୍ବତ, ନଦୀ, ନଗର ଓ ରାଜ୍ୟମାନ ଅତିକ୍ରମ କରି ଦଣ୍ଡକାରଣ୍ୟରେ ରାମଙ୍କ ଆଶ୍ରମ ନିକଟରେ ପହଞ୍ଚିଲେ । ରାବଣ ସ୍ୱର୍ଣ୍ଣମଣ୍ଡିତ ରଥରୁ ଓହ୍ଲାଇ ମାରୀଚର ହାତ ଧରି କହିଲା, କଦଳୀଗଛ ଆଢୁଆଳରେ ଏହି ରାମର ଆଶ୍ରମ ଦେଖାଯାଉଛି । ବନ୍ଧୁ ମାରୀଚ, ଯେଉଁଥିପାଇଁ ଆମେ ଆସିଛେ, ତାହା ଶୀଘ୍ର କାର୍ଯ୍ୟକାରୀ କର ।

ମାରୀଚ ତତ୍‌କ୍ଷଣାତ୍ ଏକ ମୃଗରୂପ ଧାରଣ କରି ରାମଙ୍କ ଆଶ୍ରମଦ୍ୱାରରେ ବୁଲିବାକୁ ଲାଗିଲା । ବିଚିତ୍ର ସେହି ହେମମୟ ମୃଗର ରୂପ । ଇନ୍ଦ୍ରନୀଳମଣି ପରି ତା'ର ଶୃଙ୍ଗର ଅଗ୍ରଭାଗ । ଦେହ ସ୍ଥାନେ ସ୍ଥାନେ ଧବଳ ଓ ସ୍ଥାନେ ସ୍ଥାନେ କୃଷ୍ଣବର୍ଣ୍ଣ । ବଦନ

ରକ୍ତପଦ୍ମତୁଲ୍ୟ । କର୍ଣ୍ଣ ଇନ୍ଦ୍ରନୀଳୋତ୍ପଳ ପରି ସୁନ୍ଦର । ଗ୍ରୀବା ଅଳ୍ପ ଉନ୍ନତ, ଉଦର ନୀଳବର୍ଣ୍ଣ, ପାର୍ଶ୍ୱଦେଶ ଅଶୋକପୁଷ୍ପ ପରି ଓ ବର୍ଣ୍ଣ ପଦ୍ମପରାଗ ତୁଲ୍ୟ । ଖୁରା ବୈଦୂର୍ଯ୍ୟ ପରି, ଜଂଘ କ୍ଷୀଣ ଓ ସୁଗଠିତ, ଇନ୍ଦ୍ରଧନୁବର୍ଣ୍ଣର ପୁଚ୍ଛ ଉପରକୁ ଉଠିଛି । ଚାହୁଁ ଚାହୁଁ ମାୟାବୀ ରାକ୍ଷସ ଏକ ପରମ ସୁନ୍ଦର ମୃଗରୂପ ଧାରଣ କଲା ।

ବିଭିନ୍ନ ଧାତୁରେ ଚିତ୍ରିତ ଏହି ମନୋରମ ମୃଗ ବୈଦେହୀଙ୍କୁ ପ୍ରଲୋଭିତ କରିବା ପାଇଁ ତୃଣାଚ୍ଛାଦିତ ଭୂମି ଉପରେ ଘାସ ଚରି ଚରି ବୁଲିବାକୁ ଲାଗିଲା । ଶତ ଶତ ରୌପ୍ୟ ବିନ୍ଦୁରେ ଚିତ୍ରିତ ତାର ସୌନ୍ଦର୍ଯ୍ୟରେ ସମଗ୍ର ବନଭୂମି ଉଦ୍‌ଭାସିତ ହେଲା । କେତେବେଳେ ସେ ଗଛର କଅଁଳ ପତ୍ର ସବୁ ଭାଙ୍ଗି ଖାଉଥିଲା ତ, କେତେବେଳେ କଦଳୀଗଛମାନଙ୍କ ଭିତରେ ବା କନିଅର ବଣ ଭିତରେ ପଶିଯାଉଥିଲା । କେତେବେଳେ ସେ ବେଗରେ ଦଉଡ଼ି ଯାଏ ତ କେତେବେଳେ ଠିଆ ହୋଇ ରହେ, କେତେବେଳେ ପୁଣି ଖେଳି ଖେଳି ଘାସ ଉପରେ ବସିଯାଏ । ଆଶ୍ରମ ଦ୍ୱାରକୁ ମୃଗପଲ ଆସିଲେ ତାଙ୍କ ପଛେ ପଛେ କିଛି ଦୂର ଚାଲିଯାଇ ଫେରିଆସେ । ତାକୁ ଦେଖି ମୃଗ ଓ ଅନ୍ୟ ବନଚର ପ୍ରାଣୀମାନେ ତା ପାଖକୁ ଚାଲିଆସନ୍ତି, ମାତ୍ର ଶୁଂଘିଦେବା ମାତ୍ରେ ଦଉଡ଼ି ପଳାଇଯା'ନ୍ତି ।

ଏହି ସମୟରେ ସୀତା ଫୁଲଗଛମାନଙ୍କରୁ ଫୁଲ ତୋଳୁଥିବା ବେଳେ ଏହି ରତ୍ନମୟ ସୁନ୍ଦର ମୃଗକୁ ଦେଖି ବିସ୍ମିତ ହେଲେ । ମାୟାମୃଗ ସୀତାଙ୍କ ଆଡ଼କୁ ଚାହିଁ ଚାହିଁ ଛପି ଯାଉଥିଲା ଓ ପୁଣି ତାଙ୍କ ଆଗରେ ଆସି ଦେଖା ଦେଉଥିଲା । ସୀତା ମୃଗକୁ ଦେଖିବାପାଇଁ ଆନନ୍ଦରେ ରାମ ଓ ଲକ୍ଷ୍ମଣଙ୍କୁ ଡାକ ପକାଇଲେ । ସେମାନେ ଆସି ମୃଗକୁ ଦେଖିଲେ । କିନ୍ତୁ ଲକ୍ଷ୍ମଣଙ୍କ ମନରେ ଘୋର ସନ୍ଦେହ ହେଲା । ସେ ରାମଙ୍କୁ କହିଲେ, ମାୟାବୀ ମାରୀଚ ହିଁ ମୃଗ ହୋଇ ଏଠାରେ ବୁଲୁଛି । ଏପରି ରତ୍ନଭୂଷିତ ବିଚିତ୍ର ମୃଗ ଜଗତରେ କେଉଁଠି ହେଲେ ନାହିଁ । ଏହା ମୃଗ ନୁହେଁ, ଏକ ମାୟା, ଏଥିରେ କୌଣସି ସନ୍ଦେହ ନାହିଁ ।

ମାୟାମୃଗ ପ୍ରତି ମୋହାବିଷ୍ଟ ହୋଇ ସୀତା ଲକ୍ଷ୍ମଣଙ୍କୁ ବାଧା ଦେଇ ରାମଙ୍କୁ ଚାହିଁ କହିଲେ, ଆର୍ଯ୍ୟପୁତ୍ର, ଏହି ରମଣୀୟ ମୃଗ ମୋର ମନୋହରଣ କରୁଛି । ଆମ ଆଶ୍ରମରେ ଚମର ଜାତୀୟ ଅନେକ ମୃଗ ଅଛନ୍ତି । ଋକ୍ଷ, ପୃଷତ, ବାନର ଓ କିନ୍ନର ପ୍ରଭୃତି ମନୋହର ମୃଗମାନେ ଏଠାରେ ବିଚରଣ କରନ୍ତି । କିନ୍ତୁ ଏପରି ମୃଗ ମୁଁ ଆଗରୁ କେବେ ଦେଖି ନ ଥିଲି । ନାନା ବର୍ଣ୍ଣରେ ଚିତ୍ରିତ ଏହି ହେମମୟ ମୃଗ ଚନ୍ଦ୍ରମା ପରି ନିଜର ପ୍ରଭାରେ ସମସ୍ତ ବନଭୂମିକୁ ଆଲୋକିତ କରି ଶୋଭାପାଉଛି । ଆହା, କି ସୁନ୍ଦର ଏହାର ରୂପ, କି ଶୋଭା, କି ସୁନ୍ଦର କଣ୍ଠସ୍ୱର । ଏହାକୁ ଜୀବନ୍ତ ଧରିଆଣିଲେ, ଏହି ଆଶ୍ରମରେ ରହି ସେ ଆମ ସହିତ କ୍ରୀଡ଼ା କରିବ । ବନବାସ ଶେଷରେ ଆମେ ଫେରିଗଲେ ସେ ଆମର ଅନ୍ତଃପୁରର ଭୂଷଣ ହେବ । ଏହି ରୂପବାନ ମୃଗକୁ ଦେଖି ଭରତ ଓ ମୋର ଶାଶୁମାନେ ଆନନ୍ଦିତ ହେବେ । ଯଦି ଏ ମୃଗ ଜୀବିତ ଅବସ୍ଥାରେ ଧରା ନ ପଡ଼େ, ତା' ହେଲେ ଏହାକୁ ମାରି ଆଣିଲେ ଏହାର ସୁନ୍ଦର ସ୍ୱର୍ଣ୍ଣମୟ ଚର୍ମକୁ କୁଶାସନ ଉପରେ ବିଛାଇ ମୁଁ ଉପାସନା କରିବି । ନିଜର ଅଭିଳାଷ ପୂର୍ଣ୍ଣ କରିବା ପାଇଁ ସ୍ୱାମୀମାନଙ୍କ ପକ୍ଷରେ ଏପରି ଅନୁରୋଧ ଉଚିତ ନୁହେଁ । କିନ୍ତୁ ଏହି ହରିଣର ହେମକାନ୍ତ ରୂପ ଦେଖି ମୁଁ ମୁଗ୍ଧ ହୋଇଯାଇଛି ।

ଗୌପ୍ୟବିନ୍ଦୁ ଖଚିତ ସେହି ସ୍ୱର୍ଣ୍ଣମୃଗକୁ ଦେଖି ରାମ ମଧ୍ୟ ବିସ୍ମିତ ହୋଇଥିଲେ । ସେ ଆନନ୍ଦରେ ଭାଇ ଲକ୍ଷ୍ମଣଙ୍କୁ କହିଲେ, ଲକ୍ଷ୍ମଣ ଏହି ମୃଗକୁ ପାଇବା ପାଇଁ ସୀତାଙ୍କର ଅତିଶୟ ସ୍ପୃହା ହୋଇଛି । ଏପରି ମୃଗ କେବଳ ଏ ପୃଥିବୀରେ ନୁହେଁ, ସ୍ୱର୍ଗର ନନ୍ଦନକାନନ ବା ଚୈତ୍ରରଥ ବନରେ ଦୁର୍ଲଭ । ସ୍ୱର୍ଣ୍ଣମୟ ପ୍ରଭାଯୁକ୍ତ ନାନାରତ୍ନ ଖଚିତ ଏହାର ଦିବ୍ୟରୂପ ଦେଖି କାହାର ମନ ମୋହିତ ନ ହେବ ? ଏହି ମୃଗର କାଞ୍ଚନ ଚର୍ମରେ ବୈଦେହୀ ଓ ମୁଁ ଉପବେଶନ କରିବୁ । ଅନ୍ୟ କୌଣସି ମୃଗର ଚର୍ମ, ପଶମବସ୍ତ୍ର ବା ମେଷଚର୍ମ ଏହା ସହିତ ତୁଳନୀୟ ନୁହେଁ । ସୌମିତ୍ରି, ତୁମର କଥା ଯଦି ସତ୍ୟ ହୁଏ, ତା' ହେଲେ ଏହି ମାୟାବୀ ରାକ୍ଷସକୁ ମଧ୍ୟ ବଧ କରିବା ଆମର କର୍ତ୍ତବ୍ୟ । ପୂର୍ବେ ଏହି ମାରୀଚ ମୃଗ ରୂପ ଧରି ବହୁ ଧନୁର୍ଦ୍ଧାରୀ ରାଜାଙ୍କୁ ମୃଗୟାରେ ପ୍ରଲୋଭିତ କରି ହତ୍ୟା କରିଛି । ବହୁ ବନଚାରୀ ମୁନିଙ୍କୁ ମଧ୍ୟ ନିହତ କରିଛି । ମହର୍ଷି ଅଗସ୍ତ୍ୟ ମାୟାବୀ ବାତାପିକୁ ହତ୍ୟା କରିବା ପରି ଏହି ରାକ୍ଷସକୁ ଆଜି ମୁଁ ନିଶ୍ଚୟ ନିହତ କରିବି । ହୁଏତ ଏହାକୁ ଧରିଆଣିବି, ନଚେତ୍ ଏହାର ବିନାଶ ନିଶ୍ଚିତ । ସେପର୍ଯ୍ୟନ୍ତ ତୁମେ ସୀତାଙ୍କ ସହିତ ଆଶ୍ରମରେ ସତର୍କରେ ରହିଥିବ । ବିଜ୍ଞ ବଳବାନ୍ ଜଟାୟୁ ମଧ୍ୟ ତୁମର ସହାୟକ ହେବେ ।

## ୫୨ ॥ 'ହା ସୀତା, ହା ଲକ୍ଷ୍ମଣ'

ସ୍ୱର୍ଣ୍ଣମୟ ମୁଷ୍ଟିଯୁକ୍ତ ଖଡ୍‌ଗ, ବିଶାଳ (ତିନିଭାଙ୍ଗିଆ) ଧନୁ ଓ ତୂଣୀର ଧରି ରାମ ବାହାରିଗଲେ । ଧନୁର୍ବାଣ ଧରି ରାମ ଆସୁଥିବାର ଦେଖି ମାୟାବୀ ରାକ୍ଷସ ଅନ୍ତର୍ହିତ ହୋଇଗଲା ଏବଂ ମୁହୂର୍ତ୍ତକ ପରେ ପୁଣି ତାଙ୍କ ଆଗରେ ଦେଖାଦେଲା । ରାମଙ୍କୁ ଚାହିଁ ଚାହିଁ ନିଜର ରୂପରେ ବନଭୂମିକୁ ଆଲୋକିତ କରି ସେ ଦୌଡ଼ିବାକୁ ଲାଗିଲା । କେତେବେଳେ ସେ ରାମଙ୍କ ଆଗରେ ରହି ତାଙ୍କୁ ପ୍ରଲୋଭିତ କରୁଥିଲା ତ ପୁଣି କେତେବେଳେ ଉଦ୍‌ଭ୍ରାନ୍ତ ପରି ଲମ୍ଫ ପ୍ରଦାନ କରି ବୃକ୍ଷମାନଙ୍କ ଆଢୁଆଳରେ ଲୁଚିଯାଉଥିଲା । ଶାରଦୀୟ ଚନ୍ଦ୍ରମଣ୍ଡଳ ଖଣ୍ଡ ଖଣ୍ଡ ମେଘମାନଙ୍କ ମଧ୍ୟରେ ଲୁଚିଯାଇ ଯେପରି ଆକାଶରେ ପୁଣି ବାହାରିଆସେ, ଶ୍ୟାମଳ ବନଭୂମି ମଧ୍ୟରେ ମାୟାମୃଗ ସେହିପରି ଭାବରେ ଲୁଚକାଳି ଖେଳୁଥିଲା । କ୍ରମେ ରାମଙ୍କୁ ସେ ଆଶ୍ରମଠାରୁ ବହୁ ଦୂର ଟାଣି ଆଣିଲା । ରାମ ଶ୍ରାନ୍ତ ଓ ବିବଶ ହୋଇ ବୃକ୍ଷଛାୟାରେ ଘାସଭୂମି ଉପରେ ଠିଆହୋଇ ରହିଲେ । ଏହି ସମୟରେ ଅଦୃଶ୍ୟ ହୋଇ ଯାଇଥିବା ମାରୀଚ ଅନ୍ୟ ମୃଗମାନଙ୍କ ମଧ୍ୟରେ ଦେଖାଦେଲା । ରାମ କ୍ରୁଦ୍ଧ ହୋଇ ତାକୁ ବଧ କରିବା ପାଇଁ ବ୍ରହ୍ମାନିର୍ମିତ ସୂର୍ଯ୍ୟରଶ୍ମିତୁଲ୍ୟ ଏକ ଦୀପ୍ତ ବାଣକୁ ଧନୁରେ ସଂଯୋଗ କଲେ ଏବଂ ଜୋରରେ ଆକର୍ଷଣ କରି ତାହା ପ୍ରତି ନିକ୍ଷେପ କଲେ । ଜ୍ୱଳନ୍ତ ସର୍ପପରି ସେହି ବାଣ ବଜ୍ରଘାତ ତୁଲ୍ୟ ମୃଗରୂପୀ ମାରୀଚର ବକ୍ଷସ୍ଥଳ ଭେଦ କଲା । ତାଳବୃକ୍ଷ ଉଚ୍ଚରେ ଲମ୍ଫ ପ୍ରଦାନ କରି ଘୋର ଗର୍ଜନ ପୂର୍ବକ ସେ ଭୂପତିତ ହେଲା, ମାତ୍ର ମୃତ୍ୟୁ ପୂର୍ବରୁ ନିଜର ରାକ୍ଷସରୂପକୁ ଫେରିଆସି,

ରାବଣ ଯାହା କହିଥିଲା ତାହା ଚିନ୍ତା କରି ରାମଙ୍କର କଣ୍ଠସ୍ୱରକୁ ଅନୁକରଣପୂର୍ବକ ଆର୍ତ୍ତ ଭାବରେ 'ହା ସୀତା, ହା ଲକ୍ଷ୍ମଣ' ବୋଲି ଚିତ୍କାର କରି ପ୍ରାଣତ୍ୟାଗ କଲା ।

ଭୂତଳଶାୟୀ ରାକ୍ଷସକୁ ଦେଖି ଲକ୍ଷ୍ମଣଙ୍କର ଉକ୍ତି ରାମଙ୍କର ମନେପଡ଼ିଲା । ଲକ୍ଷ୍ମଣ ଯଥାର୍ଥରେ ଏହି ମାୟାବୀ ରାକ୍ଷସକୁ ଚିହ୍ନିଥିଲେ । ଏହି ଆର୍ତ୍ତସ୍ୱର ଶୁଣି ସୀତା ଓ ଲକ୍ଷ୍ମଣଙ୍କର ଅବସ୍ଥା କ'ଣ ହୋଇଥିବ ତାହା ଚିନ୍ତାକରି ଭୟ ଓ ବିଷାଦରେ ରାମ ଶିହରିଉଠିଲେ ।

ରାମଙ୍କ ସ୍ୱର ପରି ସେହି ଆର୍ତ୍ତଚିତ୍କାର ଶୁଣି ସୀତା ଭୟଗ୍ରସ୍ତା ହେଲେ । ସେ ଲକ୍ଷ୍ମଣଙ୍କୁ କହିଲେ, ତୁମେ ଯାଇ ଦେଖ, ରାମଙ୍କର କ'ଣ ହେଲା । ଦୂରରୁ ମୁଁ ତାଙ୍କର ଆର୍ତ୍ତ କଣ୍ଠସ୍ୱର ଶୁଣିପାରୁଛି । ବୋଧହୁଏ, ସେ ରାକ୍ଷସମାନଙ୍କ କବଳରେ ପଡ଼ିଛନ୍ତି । ମୋର ମନ ପ୍ରାଣ ବ୍ୟାକୁଳ ହେଉଛି ।

ଲକ୍ଷ୍ମଣ ସୀତାଙ୍କୁ ଛାଡ଼ି ନ ଯିବାପାଇଁ ରାମଙ୍କ ଦ୍ୱାରା ଆଦିଷ୍ଟ ହୋଇଥିବା ଯୋଗୁଁ ଆଶ୍ରମ ଛାଡ଼ିଗଲେ ନାହିଁ । ସୀତା କ୍ରୋଧରେ ଜ୍ଞାନଶୂନ୍ୟ ହୋଇ କହିଲେ, ସୌମିତ୍ରି, ତୁମେ ତୁମ ଭାଇଙ୍କର ମିତ୍ରରୂପୀ ଶତ୍ରୁ । ଏପରି ଅବସ୍ଥାରେ ଯେ ତୁମେ ଯାଉ ନାହଁ, ସେଥିରୁ ମୁଁ ବୁଝୁଛି ମୋ' ପ୍ରତି ତୁମର ମନ୍ଦ ଉଦ୍ଦେଶ୍ୟ ଅଛି ଓ ତୁମେ ରାମଙ୍କର ବିନାଶ କାମନା କରୁଛ । ତୁମର ଆଦୌ ଭ୍ରାତୃସ୍ନେହ ନାହିଁ । ଯାହାଙ୍କ ପାଇଁ ତୁମେ ବନକୁ ଆସିଛ, ତାଙ୍କର ପ୍ରାଣସଂଶୟବେଳେ ତୁମେ ଏଠାରେ କାହିଁକି ରହିଛ ?

ଲକ୍ଷ୍ମଣ କହିଲେ – ଦେବୀ, ତୁମର ଏପରି କହିବା ଆଦୌ ଉଚିତ ହେଉ ନାହିଁ । ଦେବାସୁର, ନର, ନାଗ, ଗନ୍ଧର୍ବ, ପିଶାଚ କେହି ରାମଙ୍କୁ ଜୟ କରିପାରିବେ ନାହିଁ । ସମସ୍ତ ତ୍ରିଭୁବନ ଏକତ୍ର ହୋଇ ମଧ୍ୟ ତାଙ୍କୁ ପରାସ୍ତ କରିପାରିବ ନାହିଁ । ତୁମେ ଶୋକ କର ନାହିଁ । ଶୀଘ୍ର ମୃଗକୁ ବଧ କରି ରାମ ଫେରିଆସିବେ । ଯେଉଁ ଆର୍ତ୍ତସ୍ୱର ଶୁଣାଗଲା, ତାହା ରାମଙ୍କର ସ୍ୱର ନୁହେଁ । ଶୂନ୍ୟାକାଶରେ ଗନ୍ଧର୍ବନଗରୀ ସୃଷ୍ଟି କରିବା ପରି ଏହା ଏକ ମାୟାବୀ ରାକ୍ଷସର ମାୟା । ରାମ ତୁମକୁ ମୋ ଦାୟିତ୍ୱରେ ଛାଡ଼ିଦେଇ ଯାଇଛନ୍ତି । ମୁଁ କିପରି ତୁମକୁ ଛାଡ଼ି ଚାଲିଯିବି ?

ମୋହଗ୍ରସ୍ତା ସୀତା ଲକ୍ଷ୍ମଣଙ୍କ ଉତ୍ତରରେ ସନ୍ତୁଷ୍ଟ ହେବା ପରିବର୍ତ୍ତେ ଆହୁରି କ୍ରୁଦ୍ଧ ହୋଇ ତାଙ୍କୁ ଅକାରଣ ଭର୍ତ୍ସନା କରିବାକୁ ଲାଗିଲେ । ସେ ଲକ୍ଷ୍ମଣଙ୍କୁ ଅନାର୍ଯ୍ୟ, ନୃଶଂସ, କୁଳକଳଙ୍କ ବୋଲି ଗାଳି ଦେଇ କହିଲେ – ଲକ୍ଷ୍ମଣ, ରାମଙ୍କର ବିପଦ ହିଁ ତୁମେ କାମନା କରୁଥିଲ । ଏକ ପାପଚିନ୍ତକ, ନିଷ୍ଠୁର ବୈମାତ୍ରେୟ ଭ୍ରାତା ପକ୍ଷରେ ଏହା ଆଦୌ ବିଚିତ୍ର ନୁହେଁ । ତୁମେ ଦୁଷ୍ଟ କପଟାଚାରୀ । ସେଥିପାଇଁ ମୋତେ ଲାଭ କରିବା ଉଦ୍ଦେଶ୍ୟରେ ଏକୁଟିଆ ରାମଙ୍କ ପଛେ ପଛେ ଚାଲିଛ କିମ୍ବା ରାମଙ୍କ ଅନିଷ୍ଟ କରିବା ପାଇଁ ଭରତଙ୍କ ଦ୍ୱାରା ନିଯୁକ୍ତ ହୋଇ ଏପରି କରୁଛ । କିନ୍ତୁ ସୌମିତ୍ରି, ତୁମର ଉଦ୍ଦେଶ୍ୟ ଆଦୌ ସଫଳ ହେବ ନାହିଁ । ମୁଁ ପଦ୍ମପଳାଶଲୋଚନ ନୀଳୋତ୍ପଳକାନ୍ତି ରାମଙ୍କୁ ଭର୍ତ୍ତାରୂପେ ଲାଭ କରି ଅନ୍ୟ କାହାରି କଥା ଚିନ୍ତା କରିପାରିବି ନାହିଁ । ଏ ସଂସାରରେ ରାମଙ୍କ ବିନା ମୁଁ ମୁହୂର୍ତ୍ତେ ହେଲେ

ବଞ୍ଚିପାରିବି ନାହିଁ । ଲକ୍ଷ୍ମଣ, ବର୍ତ୍ତମାନ ନିଃସନ୍ଦେହ ଭାବରେ ତୁମ ସମକ୍ଷରେ ମୁଁ ପ୍ରାଣତ୍ୟାଗ କରିବି ।

ଜିତେନ୍ଦ୍ରିୟ ଲକ୍ଷ୍ମଣ ସୀତାଙ୍କର କଠୋର ଭର୍ତ୍ସନା ଶୁଣି କୃତାଞ୍ଜଳି ହୋଇ କହିଲେ, ଦେବୀ, ଆପଣ ମୋର ଦେବତାତୁଲ୍ୟ । ଆପଣଙ୍କୁ କ'ଣ ଉତ୍ତର ଦେବି, ମୁଁ ଭାବି ପାରୁନାହିଁ । ମୈଥିଳୀ, ଅଯୋଗ୍ୟ କଥା କହିବା ସ୍ତ୍ରୀଲୋକମାନଙ୍କ ପକ୍ଷରେ ବିଚିତ୍ର ନୁହେଁ । ସାଧାରଣତଃ ସେମାନଙ୍କର ଏହି ସ୍ୱଭାବ ହିଁ ଦେଖାଯାଏ । ସ୍ତ୍ରୀଜାତି ଧର୍ମଜ୍ଞାନଶୂନ୍ୟ, ଚପଳ ଓ ନିଷ୍ଠୁର ଏବଂ ଆତ୍ମୀୟମାନଙ୍କ ମଧ୍ୟରେ ଭେଦ ସୃଷ୍ଟି କରନ୍ତି । ବୈଦେହୀ, ତୁମର କଠୋର ବାକ୍ୟ ମୋ ପକ୍ଷରେ ଅସହ୍ୟ । ଉତ୍ତପ୍ତ ଶରପରି ତାହା ମୋର କର୍ଣ୍ଣଦ୍ୱୟକୁ ବିଦ୍ଧ କରୁଛି । ବନଦେବତାମାନେ ମୋର ସାକ୍ଷୀ ହୋଇ ଶୁଣନ୍ତୁ, ମୁଁ ନ୍ୟାୟ କଥା କହିଲି, କିନ୍ତୁ ତୁମେ ମୋପ୍ରତି କଠୋର ବାକ୍ୟ ପ୍ରୟୋଗ କରୁଛ । ରାମ ମୋର ଗୁରୁ । ମୁଁ ତାଙ୍କର ଆଜ୍ଞା ପାଳନ କରୁଛି । କିନ୍ତୁ ତୁମେ ସ୍ତ୍ରୀସୁଲଭ ଦୁଷ୍ଟସ୍ୱଭାବବଶରେ ମୋ ପ୍ରତି ଆଶଙ୍କା ପୋଷଣ କରୁଛ । ତୁମକୁ ଧିକ୍ । ତୁମର ସର୍ବନାଶ ଉପସ୍ଥିତ । କାକୁତ୍ସ୍ଥ ଯେଉଁଠି ଅଛନ୍ତି, ମୁଁ ସେଠାକୁ ଯାଉଛି । ତୁମର ମଙ୍ଗଳ ହେଉ ।

ଯିବା ପୂର୍ବରୁ ପୁଣି ଲକ୍ଷ୍ମଣ କହିଲେ — ବିଶାଳାକ୍ଷୀ, ମଁ ଚାରିଆଡ଼େ ବହୁ ଅଲକ୍ଷଣ ଦେଖିପାରୁଛି । ରାମଙ୍କ ସହିତ ଫେରିଆସି ମୁଁ କ'ଣ ତୁମକୁ ସତେ ଦେଖିପାରିବି ? ବନଦେବତା ଗଣ, ତୁମେ ବୈଦେହୀଙ୍କୁ ରକ୍ଷାକର ।

ସୀତା ବିଳାପ କରି କହିଲେ, ରାମ ବିରହରେ ମୁଁ ଗୋଦାବରୀ ନଦୀରେ ବୁଡ଼ିଯାଇ, ବିଷପାନ କରି, ଦଉଡ଼ି ଦେଇ ବା ଅଗ୍ନିରେ ପ୍ରବେଶ କରି ପ୍ରାଣତ୍ୟାଗ କରିବି । କିନ୍ତୁ ଅନ୍ୟ ପୁରୁଷକୁ ସ୍ପର୍ଶ କରିବି ନାହିଁ । ଏହା କହି ସୀତା ଶୋକାର୍ତ୍ତ ହୋଇ ଉଦରରେ କରାଘାତ କରିବାକୁ ଲାଗିଲେ ।

ଲକ୍ଷ୍ମଣଙ୍କ ଆଶ୍ୱାସନା ସେ ଶୁଣିଲେ ନାହିଁ । ସୌମିତ୍ରି କୃତାଞ୍ଜଳି ହୋଇ ତାଙ୍କୁ ପ୍ରଣାମ କରି ତାଙ୍କ ଆଡ଼କୁ ବାରମ୍ବାର ଦୃଷ୍ଟିପାତ କରି ଚାଲିଗଲେ ।

## ୫୩ ।। ସୀତା ହରଣ

ଅଗ୍ରଜ-ଆଜ୍ଞାବହ ଲକ୍ଷ୍ମଣ ସୀତାଙ୍କ କଟୂକ୍ତିରେ ବ୍ୟଥିତ ଓ କ୍ରୁଦ୍ଧ ହୋଇ ତାଙ୍କୁ ଏକାକିନୀ ସେହି ନିର୍ଜନ ବନର ପର୍ଣ୍ଣକୁଟୀରରେ ଛାଡ଼ି ଚାଲିଯିବାପାଇଁ ବାଧ୍ୟ ହେଲେ । ସେ ରାମକୁ ଦେଖିବା ପାଇଁ ଦ୍ରୁତ ବେଗରେ ଚାଲିଯିବାରୁ ବୃକ୍ଷମାନଙ୍କ ଆଢ଼ୁଆଳରେ ଲୁଚି ରହିଥିବା ରାବଣ ପରିବ୍ରାଜକ ବେଶରେ ସୀତାଙ୍କ ଆଗରେ ଉପସ୍ଥିତ ହେଲା । ଚନ୍ଦ୍ର ସୂର୍ଯ୍ୟହୀନ ସନ୍ଧ୍ୟାକୁ ଯେପରି ଘୋର ଅନ୍ଧକାର ଆଚ୍ଛନ୍ନ କରେ, ସେହିପରି ରାମ ଓ ଲକ୍ଷ୍ମଣଙ୍କଠାରୁ ବିଚ୍ଛିନ୍ନ ଯଶସ୍ୱିନୀ ସୀତା ରାବଣ ମାୟାର ବଶବର୍ତ୍ତୀ ହେଲେ ।

ରାବଣ ଏକ ସୂକ୍ଷ୍ମ କଷାୟ ବସ୍ତ୍ର ପରିଧାନ କରିଥିଲା । ତାର ମସ୍ତକରେ ଶିଖା, ହସ୍ତରେ ଛତ୍ର, ପାଦରେ ପାଦୁକା, ବାମ ସ୍କନ୍ଧରେ ଯଷ୍ଟି ଓ କମଣ୍ଡଳୁ । ଉଗ୍ରତେଜା ରାକ୍ଷସକୁ ଦେଖି ଜନସ୍ଥାନର ଦ୍ରୁମମାନେ ନିଷ୍ପନ୍ଦ ହେଲେ, ବାୟୁ ପ୍ରବାହ ବନ୍ଦ ହୋଇଗଲା, ଭୟରେ ଖରସ୍ରୋତା ଗୋଦାବରୀ ନଦୀର ଗତି ନିସ୍ତବ୍ଧ ହୋଇଗଲା । ସୀତା ଏକ ପୀତବର୍ଣ୍ଣ ବସ୍ତ୍ର ପରିଧାନ କରି ଶୋକାର୍ତ୍ତ ଭାବରେ ପର୍ଣ୍ଣକୁଟୀ ମଧ୍ୟରେ ବସି ରହି ରାମଙ୍କ କଥା ଚିନ୍ତା କରୁଥିଲେ । ଅସାଧୁ ରାବଣ ସାଧୁ ଭିକ୍ଷୁକ ବେଶରେ ସେଠାରେ ଉପସ୍ଥିତ ହୋଇ ସୀତାଙ୍କୁ ଦେଖି ମୋହିତ ହେଲା ଏବଂ ବେଦମନ୍ତ୍ର ଉଚ୍ଚାରଣପୂର୍ବକ ତାଙ୍କୁ ପ୍ରଶଂସା କରିବାକୁ ଲାଗିଲା । ରାବଣ କହିଲା– ହେ କାଞ୍ଚନବର୍ଣ୍ଣା ବରାରୋହା, ତୁମେ କମଳର ମାଳା ଧାରଣ କରି ପଦ୍ମିନୀତୁଲ୍ୟ ଦେଖାଯାଉଛ, ତୁମେ କିଏ ? ତୁମେ କ'ଣ ହ୍ରୀ, ଶ୍ରୀ, କୀର୍ତ୍ତି, ଭୂତି, ଲକ୍ଷ୍ମୀ, ଅପ୍ସରା ନା ସ୍ୱେଚ୍ଛାଚାରିଣୀ ରତି ? ତୁମର ଶୁଭ୍ର ସୁନ୍ଦର ଦନ୍ତପଙ୍କ୍ତି, ନିର୍ମଳ ବିଶାଳ ନେତ୍ର, ପୃଥୁଳ ଜଘନ, ପୀନ ଉରୁ, ମଣିମାଳାଭୂଷିତ ଉନ୍ନତ କମନୀୟ ସ୍ତନଯୁଗଳ, କ୍ଷୀଣ କଟି ଦେଖି ମୁଁ ମନେକରୁଛି ତୁମପରି ରୂପବତୀ ସୁନ୍ଦରୀ ଏ ସଂସାରରେ କେହି ନାହିଁ । ତୁମର ଏହି ସୁକୁମାର ରୂପ ଓ ବୟସ ଏବଂ ଅରଣ୍ୟରେ ବାସ କରିବା ଦେଖି ମୋର ଚିତ୍ତ ଉନ୍ମାଦିତ ହେଉଛି । ତୁମେ କ'ଣ ଜାଣ ନାହିଁ, ଏହା ଭୟଙ୍କର ରାକ୍ଷସମାନଙ୍କର ବାସସ୍ଥଳୀ ? ରମଣୀୟ ପ୍ରାସାଦ ଓ ସୁବାସିତ ନଗର ଉପବନରେ ରହି ଯେ ଉତ୍କୃଷ୍ଟ ମାଲ୍ୟ, ବସ୍ତ୍ର ଭୋଗ୍ୟବସ୍ତୁ ଆଦି ଭୋଗ କରିବାର କଥା, ଉପଯୁକ୍ତ ସ୍ୱାମୀର ଆଦର ଲାଭ କରିବାର କଥା, ସେ କାହିଁକି ଏହି ଶ୍ୱାପଦସଙ୍କୁଳ ବନରେ ଦୁଃଖ ଭୋଗ କରୁଛି ? ହେ କଲ୍ୟାଣୀ, ତୁମେ କିଏ, କାହାର ସ୍ତ୍ରୀ, କାହିଁକି ଏହି ରାକ୍ଷସସେବିତ ଭୟଙ୍କର ଦଣ୍ଡକବନରେ ବିଚରଣ କରୁଛ ?

ବ୍ରାହ୍ମଣବେଶଧାରୀ ଦୁରାତ୍ମା ରାବଣକୁ ଅତିଥି ସ୍ଥାନରେ ସୀତା ଅଭ୍ୟର୍ଥନା କଲେ । ସେ ତାକୁ ପାଦ୍ୟ ଏବଂ ଆସନ ଦେଇ ଭୋଜନ ପାଇଁ ନିମନ୍ତ୍ରଣ କଲେ ଏବଂ ଚଞ୍ଚଳ ଚିତ୍ତରେ ରାମ ଓ ଲକ୍ଷ୍ମଣଙ୍କ ଫେରିଆସିବା ବାଟକୁ ଚାହିଁ ରହିଲେ । ସେହି ନିର୍ଜନ ଶ୍ୟାମବର୍ଣ୍ଣ ବିଶାଳ ବନଭୂମି ତାଙ୍କ ମନରେ ଶଙ୍କା ଜାତ କଲା । କେବଳ ସମୟ ଗଡ଼ାଇବା ପାଇଁ ରାବଣର ପ୍ରଶ୍ନର ଉତ୍ତର ଦେଇ ସେ କହିଥିଲେ, ମୁଁ ମିଥିଳାର ରାଜା ଜନକଙ୍କର କନ୍ୟା ସୀତା । ଅଯୋଧ୍ୟାର ରାଜା ଦଶରଥଙ୍କ ଜ୍ୟେଷ୍ଠପୁତ୍ର ରାମଙ୍କର ପତ୍ନୀ । ରାମ ପିତୃସତ୍ୟ ପାଳନ କରି ଚଉଦବର୍ଷ ବନବାସ କରିବା ପାଇଁ ଏହି ଦଣ୍ଡକ ବନରେ ରହୁଛନ୍ତି । ତାଙ୍କ ସହିତ ତାଙ୍କ ପ୍ରିୟ ଭ୍ରାତା ଲକ୍ଷ୍ମଣ ମଧ୍ୟ ଅଛନ୍ତି । ଆମେ ଆମର ତେଜ ଓ ବିକ୍ରମରେ ଏହି ବନରେ ବିଚରଣ କରୁଛୁ । ତୁମେ ଆଶ୍ୱସ୍ତ ହୁଅ ଏବଂ ଅଳ୍ପ ସମୟ ଅପେକ୍ଷା କର । ମୋର ସ୍ୱାମୀ ମୃଗୟାକୁ ଯାଇଛନ୍ତି । ସେ ମୃଗ ବରାହାଦିର ମାଂସ ଓ ବନ୍ୟଦ୍ରବ୍ୟ ଘେନି ଶୀଘ୍ର ଫେରି ଆସିବେ । ଦ୍ୱିଜଶ୍ରେଷ୍ଠ, ତୁମେ କିଏ ଓ ତୁମର ବଂଶ ଗୋତ୍ର କ'ଣ ? କାହିଁକି ତୁମେ ଏକାକୀ ଏହି ଦଣ୍ଡକାରଣ୍ୟରେ ବିଚରଣ କରୁଛ ?

ରାବଣ କହିଲା– ସୀତା, ଦେବାସୁର ମନୁଷ୍ୟ ଆଦି ସମସ୍ତ ଲୋକ ଯାହାକୁ ଭୟ କରନ୍ତି, ମୁଁ ସେହି ରାକ୍ଷସରାଜ ରାବଣ । ତୁମକୁ ଦେଖିବାମାତ୍ରେ ମୋର ପତ୍ନୀମାନଙ୍କ ପ୍ରତି

ଲେଶମାତ୍ର ଅନୁରାଗ ନାହିଁ । ମୁଁ ଚାରିଆଡୁ ବହୁ ସୁନ୍ଦରୀ ସ୍ତ୍ରୀଙ୍କୁ ସଂଗ୍ରହ କରିଛି । ତୁମେ ସମସ୍ତଙ୍କ ଉପରେ ମୋର ପଟ୍ଟମହିଷୀ ହୋଇ ରହ । ସମୁଦ୍ର ମଧ୍ୟରେ ଲଙ୍କା ନାମରେ ମୋର ନଗରୀ ଅଛି । ତାହା ସାଗରବେଷ୍ଟିତ ଓ ପର୍ବତର ଶିଖର ଦେଶରେ ଅବସ୍ଥିତ । ତୁମେ ସେଠାରେ ମୋ ସହିତ ବନରେ ବିହାର କରିବ ଏବଂ ଏହି ବନବାସ ପ୍ରତି ତୁମର ସ୍ପୃହା ରହିବ ନାହିଁ । ଭାମିନୀ, ତୁମେ ମୋର ପତ୍ନୀ ହେଲେ ସର୍ବାଳଙ୍କାରଯୁକ୍ତ ପାଞ୍ଚହଜାର ଦାସୀ ତୁମର ପରିଚାରିକା ହୋଇ ରହିବେ ।

ସୀତା କୁପିତ ହୋଇ ରାବଣକୁ ଅବଜ୍ଞା କରି କହିଲେ, ମହାଗିରି ପରି ସ୍ଥିର, ମହାସାଗର ପରି ଅବିଚଳିତ, ମହେନ୍ଦ୍ର ତୁଲ୍ୟ ରାମଙ୍କୁ ମୁଁ ପତିରୂପେ ବରଣ କରିଛି । ରାମ ସର୍ବଲକ୍ଷଣଯୁକ୍ତ, ସତ୍ୟସିଦ୍ଧ, ବିଶାଳ ବଟବୃକ୍ଷ ପରି ସମସ୍ତଙ୍କର ଆଶ୍ରୟଦାତା, ସିଂହବିକ୍ରମ ଓ ମନୁଷ୍ୟମାନଙ୍କ ମଧ୍ୟରେ ଶ୍ରେଷ୍ଠ । ସେହି ଚନ୍ଦ୍ରାନନ ବିଶାଳଯଶା ପୁରୁଷୋତ୍ତମ ରାମଙ୍କର ମୁଁ ଏକମାତ୍ର ଅନୁଗତା ପତିବ୍ରତା ପତ୍ନୀ । ତୁ ଶୃଗାଳ ହୋଇ ସିଂହୀକୁ ଇଚ୍ଛା କରୁଛୁ ? ତୁ କ୍ଷୁଧିତ ସିଂହ ଓ ବିଷଧର ସର୍ପର ମୁହଁରୁ ଦାନ୍ତ ଉପାଡ଼ିବା ପାଇଁ ଚେଷ୍ଟା କରୁଛୁ । ତୁ ସୂଚୀଦ୍ୱାରା ଚକ୍ଷୁର ମାର୍ଜନ ଓ ଜିହ୍ୱାଦ୍ୱାରା କ୍ଷୁରଲେହନ କରିବାକୁ ଚାହୁଁଛୁ ? କାଳକୂଟ ବିଷପାନ କରି ହଜମ କରିବାକୁ ଯାଉଛୁ ? ବେକରେ ଶିଳା ବାନ୍ଧି ସମୁଦ୍ର ତରଣ କରିବା ପାଇଁ ଇଚ୍ଛା କରୁଛୁ ? ଚନ୍ଦନ ଜଳ ଓ କର୍ଦ୍ଦମ ମଧ୍ୟରେ, ହସ୍ତୀ ଓ ବିଡ଼ାଳ ମଧ୍ୟରେ ରାଜହଂସ ଓ ଗୃଧ୍ର ମଧ୍ୟରେ ଯେଉଁ ପ୍ରଭେଦ, ଦାଶରଥି ରାମ ଓ ତୋ ମଧ୍ୟରେ ସେହି ପ୍ରଭେଦ ରହିଛି । ଅଭାଗା ରାବଣ, ରାମଙ୍କ ହାତରେ ଧନୁଶର ଥିବା ପର୍ଯ୍ୟନ୍ତ ତୁ ମୋତେ ହରଣ କରି କେବେହେଲେ ରକ୍ଷା ପାଇବୁ ନାହିଁ । ବଜ୍ର ଜୀର୍ଣ୍ଣ କରିବାକୁ ଚେଷ୍ଟା କଲେ ମକ୍ଷିକାର ଯେଉଁ ଦଶା ହୁଏ, ତୋର ଠିକ୍ ସେହି ଦଶା ହେବ । ଏହା କହି ସୀତା ପବନ ଦ୍ୱାରା କମ୍ପିତ କଦଳୀ ଗଛପରି ଥରିବାକୁ ଲାଗିଲେ ।

ରାବଣ ଭ୍ରୂ କୁଞ୍ଚନ କରି କହିଲା, ମୁଁ କୁବେରଭ୍ରାତା ମହାପ୍ରତାପଶାଳୀ ରାବଣ । ମୋର ଭୟରେ ଦେବ, ଗନ୍ଧର୍ବ, ପିଶାଚ, ଉରଗ ସମସ୍ତେ ଭୟଭୀତ ହୁଅନ୍ତି । ମୁଁ କ୍ରୁଦ୍ଧ ହେଲେ ଇନ୍ଦ୍ରାଦି ଦେବତା ପଳାୟନ କରନ୍ତି । ବୃକ୍ଷମାନଙ୍କର ପତ୍ର ସ୍ଥିର ଓ ନଦୀର ବେଗ ମନ୍ଦ ହୋଇଯାଏ । ମୁଁ ବଳଦ୍ୱାରା କୁବେରଙ୍କର ପୁଷ୍ପକ ବିମାନକୁ ଅପହରଣ କରି ଆକାଶରେ ଯାତ୍ରା କରୁଛି । ରାଜ୍ୟଭ୍ରଷ୍ଟ ହତବୁଦ୍ଧି ତପସ୍ୱୀ ରାମଙ୍କୁ ଧରି ତୁ କ'ଣ କରିବୁ ? ଶୀଘ୍ର ମୋତେ ବରଣ କରି ସ୍ୱର୍ଣ୍ଣପୁରୀ ଲଙ୍କାର ଐଶ୍ୱର୍ଯ୍ୟ ଭୋଗକର । ମୋତେ ପ୍ରତ୍ୟାଖ୍ୟାନ କର ନାହିଁ । କଲେ ଅନୁତାପ କରିବୁ ।

ସୀତାଙ୍କର ଚକ୍ଷୁ କ୍ରୋଧରେ ରକ୍ତବର୍ଣ୍ଣ ହୋଇଗଲା । ସେ କହିଲେ – ରାବଣ, କୁବେରଭ୍ରାତା ବୋଲି ନିଜକୁ ପରିଚୟ ଦେଇ କିପରି ଏପରି ଅନ୍ୟାୟ କାର୍ଯ୍ୟ କରିବାକୁ ଯାଉଛୁ ? ତୋପରି ନିଷ୍ଠୁର ହୀନବୁଦ୍ଧି କାମାତୁର ବ୍ୟକ୍ତିକୁ ରାଜା ରୂପେ ଲାଭ କରି ରାକ୍ଷସକୁଳ ଅଚିରେ ଧ୍ୱଂସ ହେବ । ଇନ୍ଦ୍ରପତ୍ନୀ ଶଚୀକୁ ଅପହରଣ କରି ଇନ୍ଦ୍ରଙ୍କ ବଜ୍ରରୁ ହୁଏତ କେହି ରକ୍ଷା ପାଇପାରେ, କିନ୍ତୁ ମୋ ଦେହରେ ହାତ ଦେଲେ ତୋର ନିସ୍ତାର ନାହିଁ ।

ଦଶାନନ ରାବଣ ନିଜର ହାତରେ ହାତ ମକି ତୁ ମୋର ବଳ ଓ ପରାକ୍ରମ ଜାଣି ନାହୁଁ, ମୋତେ ଚିହ୍ନି ନାହୁଁ ବୋଲି କହି ଭିକ୍ଷୁରୂପ ଛାଡ଼ି ତା'ର ନିଜ ରୂପ ଧାରଣ କଲା । ତା'ର ଦେହ ବିଶାଳ, ଦଶମୁଖ, ବିଂଶବାହୁ, ନୀଳ ମେଘବର୍ଣ୍ଣ ଦେହରେ ତପ୍ତକାଞ୍ଚନବର୍ଣ୍ଣର ଅଳଙ୍କାର ଓ ପରିଧାନରେ ରକ୍ତବର୍ଣ୍ଣର ବସ୍ତ୍ର । ସେ କ୍ରୋଧରେ ଆରକ୍ତନୟନ ହୋଇ ସୀତାଙ୍କୁ କହିଲା – ମୂଢ଼ା, ତୁ କେଉଁ ଗୁଣରେ ରାଜ୍ୟଭ୍ରଷ୍ଟ ଅଳ୍ପାୟୁ ରାମ ପ୍ରତି ଅନୁରକ୍ତ ହୋଇଛୁ ଓ ମୋ ପରି ତ୍ରିଲୋକବିଖ୍ୟାତ ବ୍ୟକ୍ତିକୁ ସ୍ୱାମୀ ରୂପେ ବରଣ କରୁ ନାହୁଁ ?

ଏହା କହି କାମାତୁର ରାବଣ ବାମ ହସ୍ତରେ ସୀତାଙ୍କର କେଶ ଓ ଦକ୍ଷିଣ ହସ୍ତରେ ତାଙ୍କର ଉରୁଦ୍ୱୟ ଧାରଣ କରି ବଳପୂର୍ବକ ତାଙ୍କୁ ରଥ ଉପରକୁ ନେଇଗଲା ଓ କଠୋର ବାକ୍ୟରେ ତାଙ୍କୁ ଭର୍ତ୍ସନା କରିବାକୁ ଲାଗିଲା । ରାବଣ ଦ୍ୱାରା ଅପହୃତା ସୀତା କାତର ସ୍ୱରରେ ରାମଙ୍କୁ ଡାକିବାକୁ ଲାଗିଲେ ଏବଂ ପଳାଇଯିବା ପାଇଁ ଛଟପଟ ହେଲେ । ରାବଣର ମାୟାମୟ ରଥ ଆକାଶକୁ ଉଠିଗଲା ।

ସୀତା ଉଚ୍ଚସ୍ୱରରେ ରୋଦନ କରିବାକୁ ଲାଗିଲେ, ହା ମହାବାହୁ ଲକ୍ଷ୍ମଣ, ରାକ୍ଷସ ମୋତେ ହରଣ କରି ନେଉଛି । ତୁମେ ଜାଣିପାରୁ ନାହଁ । ହା ରାମ, ତୁମେ ଧର୍ମପାଇଁ ନିଜର ଜୀବନ ସୁଖ ଏବଂ ଅର୍ଥ ପରିତ୍ୟାଗ କରି ମୋତେ ହରଣ କରୁଥିବା ଅଧର୍ମୀକୁ ଦେଖି ପାରୁ ନାହଁ । ପରନ୍ତପ, ତୁମେ ଅବିନୀତମାନଙ୍କୁ ଶାସନ କରିଥାଅ, କିନ୍ତୁ ପାପୀ ରାବଣକୁ କାହିଁକି ଶାସନ କରୁ ନାହଁ ? ମୁଁ ଧର୍ମଜ୍ଞ ରାମଙ୍କର ଧର୍ମପତ୍ନୀ ହୋଇ ଅପହୃତା ହେଲି, କୈକେୟୀଙ୍କର ମନସ୍କାମନା ପୂର୍ଣ୍ଣ ହେଲା ।

ସୀତା ଆର୍ତ୍ତସ୍ୱରରେ ବିଳାପ କରି କହିଲେ, ହେ ଜନସ୍ଥାନର ପୁଷ୍ପିତ କର୍ଣ୍ଣିକାର ବୃକ୍ଷଗଣ, ମୁଁ ତୁମକୁ ପ୍ରାର୍ଥନା କରୁଛି ତୁମେ କହିବ, 'ରାବଣ ସୀତାଙ୍କୁ ହରଣ କରି ନେଇଛି ।' ମାଲବ୍ୟନ୍ତ ଗିରିକୁ ମୁଁ ନମସ୍କାର କରୁଛି । ହେ ମାଲ୍ୟବନ୍ତ, ତୁମେ କହିବ, 'ରାବଣ ସୀତାଙ୍କୁ ହରଣ କରି ନେଉଛି ।' ହଂସସାରସ-ସେବିତ ଗୋଦାବରୀ ନଦୀକୁ ମୁଁ ବନ୍ଦନା କରୁଛି । ନଦୀଶ୍ରେଷ୍ଠ, ତୁମେ ରାମଙ୍କୁ କହିବ, 'ରାବଣ ସୀତାଙ୍କୁ ହରଣ କରି ନେଉଛି' । ବୃକ୍ଷଦେବତାମାନଙ୍କୁ ମୁଁ ନମସ୍କାର କରୁଛି । ଅରଣ୍ୟରେ ଥିବା ସମସ୍ତ ମୃଗପକ୍ଷୀଙ୍କର ମୁଁ ଶରଣାପନ୍ନ ହେଉଛି । ରାମଙ୍କୁ କହିବ, ତାଙ୍କର ପ୍ରାଣର ପ୍ରିୟତମା ସୀତା ଶୋକରେ ବିବଶ ହୋଇ ରାବଣ ଦ୍ୱାରା ଅପହୃତା ହୋଇଛନ୍ତି ।

ଏହିପରି ଶୋକାର୍ତ୍ତ ସୀତା କରୁଣ ସ୍ୱରରେ ବିଳାପ କରୁ କରୁ ଗୃଧ୍ରରାଜ ଜଟାୟୁ ବୃକ୍ଷ ଉପରେ ବସିଥିବାର ଦେଖିପାରିଲେ । ସେ ଆହୁରି ଉଚ୍ଚସ୍ୱରରେ ରୋଦନ କରି କହିଲେ – ଆର୍ଯ୍ୟ ଜଟାୟୁ, ଦେଖ କିପରି ପାପୀ ରାବଣ ମୋତେ ଅନାଥ ପରି ନିର୍ଦ୍ଦୟ ଭାବରେ ହରଣ କରି ନେଉଛି । ତୁମେ ଯଦି ଏହି କ୍ରୂର ସଶସ୍ତ୍ର ରାକ୍ଷସକୁ ବାଧା ଦେଇପାରିବ ନାହିଁ, ରାମ ଓ ଲକ୍ଷ୍ମଣ ଆସିଲେ ସେମାନଙ୍କୁ ମୋର ଅପହରଣ ସମ୍ବାଦ ଜଣାଇଦେବ ।

## ୫୪ ॥ ଜଟାୟୁ-ରାବଣ ଯୁଦ୍ଧ

ବୃଦ୍ଧ ଜଟାୟୁ ନିଦ୍ରିତ ଥିଲେ । ସୀତାଙ୍କର କ୍ରନ୍ଦନ ଧ୍ୱନିରେ ଉଠିପଡ଼ିଲେ । ରାବଣ ବୈଦେହୀଙ୍କୁ ଅପହରଣ କରିନେଉଥିବାର ଦେଖି ପକ୍ଷିରାଜ ଜଟାୟୁ ମଧୁର ଭାଷାରେ ରାବଣକୁ ଉପଦେଶ ଦେଇ କହିଲେ, ଭାଇ ଦଶାନନ, ତୁମର ଏପରି ନିନ୍ଦିତ କର୍ମ କରିବା ଉଚିତ ନୁହେଁ । ରାମ ସମସ୍ତଙ୍କର ରାଜା । ସେ ସମସ୍ତଙ୍କର ହିତରେ ରତ । ଏହି ଯଶସ୍ୱିନୀ ସୀତା ରାମଙ୍କର ଧର୍ମପତ୍ନୀ । ଧର୍ମରେ ଥିବା ରାଜା କେବେ ପରଦାର ସ୍ପର୍ଶ କରେ ନାହିଁ । ବିଶେଷତଃ ରାଜପତ୍ନୀମାନେ ସର୍ବତୋଭାବେ ରକ୍ଷଣୀୟା । ତେଣୁ ପରଦାର ଧର୍ଷଣ ତୁଲ୍ୟ ନୀଚ କାର୍ଯ୍ୟରୁ ନିବୃତ ହୁଅ । ବିଶ୍ରବାନନ୍ଦନ, ଶାସ୍ତ୍ରଦ୍ୱାରା ଅନୁମୋଦିତ ହୋଇ ନ ଥିବା ଧର୍ମ ଅର୍ଥ କାମର ସେବା ଉଚିତ ନୁହେଁ । ରାଜା ଧର୍ମର ମୂଳ ଏବଂ ଶୁଭ ବା ଅଶୁଭ ରାଜାର କାର୍ଯ୍ୟରୁ ହିଁ ପ୍ରମାଣିତ ହୁଏ । ରାକ୍ଷସରାଜ, ତୁମେ ଏତେ ବଡ଼ ରାଜା ହୋଇ କିପରି ପାପୀ ଓ ଚପଳ ସ୍ୱଭାବ ହୋଇପାରିଲ ?

ଜଟାୟୁ ପୁଣି କହିଲେ – ରାବଣ, ରାମ ତୁମର ବା ତୁମ ରାଜ୍ୟର ତ କୌଣସି କ୍ଷତି କରି ନାହାନ୍ତି । ତୁମେ କାହିଁକି ରାମଙ୍କର ଅନିଷ୍ଟ କରିବାକୁ ଯାଉଛ ? ଶୂର୍ପଣଖା କଥାରେ ଖର ରାମଙ୍କର ଦ୍ରୋହ ଆଚରଣ କରିବାରୁ ନିହତ ହେଲା । ସେଥିରେ ରାମଙ୍କର କ'ଣ ଦୋଷ ଅଛି ? ତୁମେ ଶୀଘ୍ର ବୈଦେହୀଙ୍କୁ ଛାଡ଼ିଦିଅ, ନଚେତ୍ ରାମଙ୍କ କୋପାନଳରେ ଦଗ୍ଧ ହେବ । ଜାଣିଶୁଣି ନିଜ ବେକରେ କାହିଁକି କାଳପାଶକୁ ପକାଉଛ ? ସୌମ୍ୟ, ଯେଉଁ ଭାର ଲୋକଙ୍କୁ କ୍ଳାନ୍ତ ବା ଅବସନ୍ନ ନ କରେ, ସେପରି ଭାର ବୋହିବା ଉଚିତ । ଯେଉଁ ଅନ୍ନ ରୋଗଜାତ ନ କରି ଜୀର୍ଣ୍ଣ କରାଏ, ତାକୁ ଭୋଜନ କରିବା ଉଚିତ । ଯେଉଁ କାର୍ଯ୍ୟରେ ଧର୍ମ ଯଶ ବା କୀର୍ତ୍ତି ନାହିଁ, କେବଳ ଶରୀର କ୍ଳେଶ ସାର ହୁଏ, ସେପରି କାର୍ଯ୍ୟ କରାଯାଏ ନାହିଁ ।

ଉପଦେଶରେ ରାବଣର କୌଣସି ପରିବର୍ତ୍ତନ ନ ଦେଖି ଜଟାୟୁ କହିଲେ, ରାବଣ, ତୁ ଜାଣିରଖ ଯେ ମୁଁ ମଧ୍ୟ ଜଣେ ରାଜା । ଷାଠିଏ ହଜାର ବର୍ଷ ଧରି ମୁଁ ମୋର ପୈତୃକ ରାଜ୍ୟ ପାଳନ କରି ବୃଦ୍ଧ ହୋଇଗଲିଣି । ତୁ ଧନୁର୍ଦ୍ଧାରୀ, ରଥାରୋହୀ ଯୁବକ । କିନ୍ତୁ ମୋ ଆଗରୁ ତୁ କେବେ ସୀତାଙ୍କୁ ନେଇପାରିବୁ ନାହିଁ । ଅଚିରେ ତୋର ବଳର ପରୀକ୍ଷା ହୋଇଯିବ । ଖର ଯେପରି ପୂର୍ବରୁ ମୃତ୍ୟୁବରଣ କରି ଭୂତଳଶାୟୀ ହେଲା, ତୁ ମଧ୍ୟ ସେହିପରି ନିହତ ହୋଇ ଭୂମିରେ ଶୟନ କରିବୁ । ଦୈତ୍ୟମାନଙ୍କର ସଂହାରକାରୀ ରାମ ଯୁଦ୍ଧରେ ତୋତେ ସଂହାର କରିବେ । ଆଜି ରାମ ଓ ଲକ୍ଷ୍ମଣ ନ ଥିବା ଯୋଗୁଁ ତୁ ସୀତାଙ୍କୁ ଅପହରଣ କରିବାର ସାହସ କଲୁ । ନୀଚ, ମୁଁ କିନ୍ତୁ ବଞ୍ଚିଥିବା ଯାଏଁ ତୁ ରାମଙ୍କର ପତ୍ନୀ କମଳନୟନୀ ସୀତାଙ୍କୁ ନେଇପାରିବୁ ନାହିଁ । ଦଶରଥ ତଥା ରାମଙ୍କର ପ୍ରିୟସାଧନ କରିବାପାଇଁ ମୁଁ ପ୍ରାଣ ଦେବାକୁ ପ୍ରସ୍ତୁତ । ଦଶଗ୍ରୀବ, ଯୁଦ୍ଧ ପାଇଁ ପ୍ରସ୍ତୁତ ହୁଅ । ମୁଁ ଶୀଘ୍ର ତୋତେ ରଥରୁ ଭୂପାତିତ କରିବି ।

ଜଟାୟୁର ଭର୍ତ୍ସନା ଶୁଣି କ୍ରୋଧରେ ରାବଣର ଚକ୍ଷୁ ରକ୍ତବର୍ଣ୍ଣ ହୋଇଗଲା । ସେ ଜଟାୟୁକୁ ଶାସ୍ତି ଦେବାପାଇଁ ଦଉଡ଼ି ଆସିଲା । ସଙ୍ଗେ ସଙ୍ଗେ ସେହି ମହାବନରେ ଦୁଇ

ମେଘଖଣ୍ଡର ସଂଘର୍ଷ ପରି ଜଟାୟୁ ଓ ରାବଣ ମଧ୍ୟରେ ତୁମୁଳ ସଂଗ୍ରାମ ଆରମ୍ଭ ହୋଇଗଲା । ରାବଣ ବହୁ ଭୟଙ୍କର ସୁତୀକ୍ଷ୍ଣ ବାଣ ବର୍ଷଣ କରିବାକୁ ଲାଗିଲା । ଜଟାୟୁ ସେହି ସମସ୍ତ ଅସ୍ତ୍ର ସହିନେଇ ତୀକ୍ଷ୍ଣ ନଖଯୁକ୍ତ ପଦାଘାତରେ ରାବଣକୁ କ୍ଷତବିକ୍ଷତ କରିବାକୁ ଲାଗିଲା । କ୍ରୁଦ୍ଧ ରାବଣ ଜଟାୟୁର ବଧ ନିମନ୍ତେ କାଳଦଣ୍ଡ ପରି ଦଶଟି ଭୟାନକ ଶର ସବଳେ ଧନୁକୁ ଆକର୍ଷଣ କରି ମୋଚନ କଲା । ମାତ୍ର ବିହଙ୍ଗରାଜ ନିଜର ଚରଣଦ୍ୱୟ ଦ୍ୱାରା କେବଳ ସେହି ଶରମାନଙ୍କୁ ନୁହେଁ, ରାବଣର ରତ୍ନଭୂଷିତ ଧନୁକୁ ମଧ୍ୟ ଭାଙ୍ଗିଦେଲେ । ରାବଣ ଅନ୍ୟ ଧନୁ ଧରି କ୍ରୋଧରେ ହତଜ୍ଞାନ ହୋଇ ଶତ ସହସ୍ର ଶର ବୃଷ୍ଟି କରିବାକୁ ଲାଗିଲା । ଶରାଚ୍ଛନ୍ନ ହୋଇ ଜଟାୟୁ ନିଜର ନୀଡ଼ ମଧ୍ୟରେ ବସିଥିବା ପରି ଦେଖାଗଲା ଏବଂ ମୁହୂର୍ତ୍ତକ ମଧ୍ୟରେ ସେହି ସବୁ ଶରକୁ ପକ୍ଷରେ ଝାଡ଼ିଦେଇ ରାବଣର ଅନ୍ୟ ଧନୁଟିକୁ ମଧ୍ୟ ଭାଙ୍ଗିଦେଲେ । କେବଳ ସେତିକି ନୁହେଁ, ବଳଶାଳୀ ପକ୍ଷିରାଜ ଅଗ୍ନିପରି ତେଜୀୟାନ ରାବଣର କବଚକୁ ତା' ଦେହରୁ ଛିନ୍ନ କରି ତାର ପିଶାଚମୁଖ ଗର୍ଦ୍ଦଭମାନଙ୍କୁ ସଂହାର କଲେ ଓ ତାର ମଣିହେମମୟ ରଥକୁ ଭାଙ୍ଗିଦେଇ ତାର ଛତ୍ର ଓ ଚାମରକୁ ଖସାଇ ପକାଇଲେ ଏବଂ ତୀକ୍ଷ୍ଣ ଚଞ୍ଚୁର ଆଘାତରେ ସାରଥିର ମସ୍ତକକୁ ବିଦୀର୍ଣ୍ଣ କଲେ । ଏହିପରି ଅଶ୍ୱ, ସାରଥି, ରଥ ଓ ଧନୁସହିତ ଛିନ୍ନ ହେବାପରେ ବିରଥ ରାବଣ ସୀତାଙ୍କୁ ଧରି ପୁଣି ଉପରକୁ ଉଠି ପଳାଇବା ପାଇଁ ଚେଷ୍ଟା କଲା ।

ବାର୍ଦ୍ଧକ୍ୟ ଯୋଗୁଁ ଜଟାୟୁ କ୍ଳାନ୍ତ ଶ୍ରାନ୍ତ ହୋଇପଡ଼ିଥିଲେ । ମାତ୍ର ନିଜର ପ୍ରତିଜ୍ଞା କଥା ମନେ ପକାଇ ସେ ମହାବେଗରେ ଉଡ଼ିଯାଇ ରାବଣର ପଥରୋଧ କଲେ ଏବଂ କହିଲେ – ହୀନବୁଦ୍ଧି ରାବଣ, ତୁ ଭୀରୁ ତସ୍କରଙ୍କ ପରି ଦୁର୍ଜ୍ଜୟ ରାମ ଓ ଲକ୍ଷ୍ମଣ ନ ଥିବାବେଳେ ସୀତାଙ୍କୁ ଚୋରାଇ ପଳାଉଛୁ । ତୁ ଯଦି ବୀର ବୋଲି ଗର୍ବ କରୁ, ତା' ହେଲେ ମୋ ସହିତ ଯୁଦ୍ଧ କରି ମୃତ୍ୟୁଦଣ୍ଡ ଭୋଗପାଇଁ ପ୍ରସ୍ତୁତ ହୁଅ । ଏହା କହି ଜଟାୟୁ ସବଳେ ରାବଣର ପିଠି ଉପରେ ବସିଯାଇ ଥଣ୍ଟ ଓ ନଖରେ ତାକୁ ବିଦୀର୍ଣ୍ଣ କଲେ ଓ ତାର ମସ୍ତକର କେଶରାଶି ଟାଣି ଉପାଡ଼ି ଦେଲେ । ତାଙ୍କ ତୀକ୍ଷ୍ଣ ଚଞ୍ଚୁର ଆଘାତରେ ରାବଣର ଦଶଟି ବାହୁ ଛିଣ୍ଡିଗଲା । ମାତ୍ର ସେ ବ୍ରହ୍ମାଙ୍କର ବର ପାଇଥିବା ଯୋଗୁଁ ଉଇହୁଙ୍କା ଭିତରୁ ସାପମାନେ ବାହାରିବା ପରି ଛିନ୍ନ ବାହୁମାନଙ୍କର ମୂଳରୁ ନୂତନ ବାହୁ ସବୁ ବାହାରି ଆସିଲା । ରାବଣର କ୍ରୋଧର ସୀମା ରହିଲା ନାହିଁ । ସେ ଖଡ଼୍‌ଗ ଉତ୍ତୋଳନ କରି ଜଟାୟୁର ଦୁଇପକ୍ଷ ଓ ପାଦ ଛେଦନ କଲା । ରକ୍ତାକ୍ତ ଦେହରେ ଜଟାୟୁ ଭୂପତିତ ହେଲେ ।

ସୀତା ଜଟାୟୁଙ୍କୁ ଆଲିଙ୍ଗନ କରି ରୋଦନ କରିବାକୁ ଲାଗିଲେ । ସେ କହିଲେ, ମୋର ଦୁଃଖ ଦେଖି ମୃଗପକ୍ଷୀମାନେ ରାମଙ୍କ ଆଡ଼କୁ ଧାବିତ ହେଉଛନ୍ତି । କିନ୍ତୁ ଘୋର ବିପଦ ଉପସ୍ଥିତ ହୋଇଥିବା କଥା ରାମ ଜାଣିପାରୁ ନାହାନ୍ତି । ପକ୍ଷିରାଜ ଜଟାୟୁ କୃପାପରବଶ ହୋଇ ମୋତେ ରକ୍ଷା କରିବାକୁ ଆସିଲେ । କିନ୍ତୁ ଶେଷରେ ମୋର ଦୁର୍ଭାଗ୍ୟକୁ ନିହତ ହେଲେ । ସୀତା ଏହିପରି ବିଳାପ କରୁଥିବା ବେଳେ ରାବଣ ତାଙ୍କୁ ଧରିନେବାପାଇଁ ଦଉଡ଼ିଆସିଲା । ସୀତା ପଳାଇଯାଇ ଏକ ମହାଦ୍ରୁମକୁ ଲତାତୁଲ୍ୟ ଜାବୁଡ଼ି ଧରିଲେ । ରାବଣ ତାଙ୍କର ହାତକୁ ଛଡ଼ାଇ ନ ପାରି କେଶ ଆକର୍ଷଣପୂର୍ବକ ତାଙ୍କୁ ଟାଣିଆଣିଲା । ସୂର୍ଯ୍ୟ ପ୍ରଭାଶୂନ୍ୟ ଓ ବାୟୁ ନିଷ୍ପନ୍ଦ ହୋଇଗଲା । ରାବଣର ଏହି ମର୍ଯ୍ୟାଦାଶୂନ୍ୟ ଗର୍ହିତ

କାର୍ଯ୍ୟ ଫଳରେ ଅପମାନିତା ସୀତାଙ୍କ ପ୍ରତି ସହାନୁଭୂତି ଦେଖାଇ ଯେପରି ସଚରାଚର ଜଗତ ସ୍ତବ୍‌ଧ ହେଲା । ଦଣ୍ଡକାରଣ୍ୟବାସୀ ମହର୍ଷିମାନେ ସୀତାଙ୍କୁ ଧର୍ଷିତ ହେବାର ଦେଖି ବ୍ୟଥିତ ହେଲେ ଏବଂ ଦୈବବଶରେ ରାବଣର ବିନାଶ ନିଶ୍ଚିତ ବୋଲି ଜାଣି ଆନନ୍ଦିତ ହେଲେ ।

ସୀତା ରାମ ଓ ଲକ୍ଷ୍ମଣଙ୍କ ନାମ ଧରି ରୋଦନ କରୁଥାନ୍ତି । ରାକ୍ଷସ ରାବଣ ତାଙ୍କୁ ଧରି ଆକାଶମାର୍ଗରେ ପଳାଉଥାଏ । ତପ୍ତକାଞ୍ଚନବର୍ଣ୍ଣା ପୀତକୌଶେୟବସନା ସୀତା ମେଘ ଦେହରେ ସୌଦାମିନୀ ପରି ଦେଖାଗଲେ । ତାଙ୍କୁ ଧରି ଯାଉଥିବା ରାବଣ ଅଗ୍ନିଦୀପ୍ତ ପର୍ବତ, ଅସ୍ତରାଗରଞ୍ଜିତ ମେଘ ଏବଂ କାଞ୍ଚନକାଞ୍ଚୀଯୁକ୍ତ ନୀଳହସ୍ତୀ ପରି ଦେଖାଗଲା । ସୀତାଙ୍କ ମସ୍ତକରୁ ଖସିଯାଇ ଫୁଲସବୁ ଇତସ୍ତତଃ ପଡ଼ିଲା । ସୀତାଙ୍କ ଚରଣରୁ ରତ୍ନ ନୂପୁର ଓ ବକ୍ଷର ଜ୍ୟୋତିର୍ମୟ ହାର ଭୂପତିତ ହେଲା । ବହୁ ପକ୍ଷୀମାନଙ୍କ କାକଳି କୋଳାହଳରେ ପବନରେ ଆନ୍ଦୋଳିତ ବୃକ୍ଷମାନେ ଯେପରି ସୀତାଙ୍କୁ କହୁଥିଲେ, 'ଭୟ କର ନାହିଁ' । ପୁଷ୍କରିଣୀମାନଙ୍କରେ ମତ୍ସ୍ୟମାନେ ତ୍ରାସିତ ଓ ପଦ୍ମଫୁଲ ସବୁ ମଳିନ ପଡ଼ିଯାଇ ସଖୀତୁଲ୍ୟ ସୀତାଙ୍କ ସହିତ ସମବେଦନା ପ୍ରକାଶ କରୁଥିଲେ । ସିଂହ, ବ୍ୟାଘ୍ର, ମୃଗାଦି ବନଚର ପଶୁମାନେ କ୍ରୁଦ୍ଧ ହୋଇ ସୀତାଙ୍କ ଛାୟାର ଅନୁସରଣ କରୁଥିଲେ । ଜଳପ୍ରପାତ ସବୁ ଶୋକାର୍ତ୍ତ ପର୍ବତମାନଙ୍କର ଅଶ୍ରୁଧାର ପରି ପ୍ରତୀତ ହେଉଥିଲେ । ମୃଗଶାବକମାନେ ଉପରକୁ ମୁହଁ ଟେକି ରୋଦନ କଲେ । ଭୟରେ ବନଦେବତାମାନଙ୍କର ଶରୀର କମ୍ପିତ ହେଲା ।

ସୀତାଙ୍କ ଦୁଃଖ ଓ ଉଦ୍‌ବେଗ ବଢ଼ିବାକୁ ଲାଗିଲା । ସେ ରୋଦନ କରି କରି କ୍ରୋଧରେ ରାବଣକୁ କହିଲେ – ନୀଚ, ଭୀରୁ ରାବଣ, ମୋତେ ଏକୁଟିଆ ଦେଖି ତୁ ଚୋରି କରି ପଳାଉଛୁ । ତୋତେ ଲଜ୍ଜା ଲାଗୁ ନାହିଁ ? ଦୁରାତ୍ମା, ମୋତେ ଅପହରଣ କରିବାପାଇଁ ତୁ ମାୟାମୃଗ ରୂପ ଧରି ମୋର ସ୍ୱାମୀଙ୍କୁ ହଟାଇନେଲୁ, ମୋର ଶ୍ୱଶୁରଙ୍କର ସଖା ଗୃଧ୍ରରାଜ ଜଟାୟୁଙ୍କୁ ନିହତ କଲୁ । ରାକ୍ଷସାଧମ, ଏହି ତୋର ବୀରତ୍ୱ ! ତୋର ଶୌର୍ଯ୍ୟକୁ ଧିକ୍ ! ତୋର କଳଙ୍କିତ ଚରିତ୍ରକୁ ମୁଁ ଧିକ୍କାର କରୁଛି । ତୋର ଶକ୍ତି ଅଛି ତ ଅଳ୍ପ ସମୟ ଅପେକ୍ଷା କର, ରାମ ଓ ଲକ୍ଷ୍ମଣଙ୍କର ହାବୁଡ଼ରେ ପଡ଼ିଲେ ତୁ ଜୀବନ ଧରି ଯାଇପାରିବୁ ନାହିଁ । ଯେଉଁ ରାମ ଏକାକୀ ମୁହୂର୍ତ୍ତକ ମଧ୍ୟରେ ଖର ସମେତ ଚଉଦହଜାର ରାକ୍ଷସଙ୍କୁ ନିହତ କରିଥିଲେ, ତାଙ୍କର ପ୍ରିୟ ପତ୍ନୀଙ୍କୁ ଅପହରଣ କରି ତୁ କେବେ ରକ୍ଷା ପାଇବୁ ନାହିଁ । ଭଲ ଗତି ଅଛି ତ ମୋତେ ଛାଡ଼ି ଦେ, ନଚେତ୍ ରାମଙ୍କ ହାତରେ ତୋର ମୃତ୍ୟୁ ସୁନିଶ୍ଚିତ ।

ରାବଣ ସୀତାଙ୍କ କଥା ନ ଶୁଣି ଦ୍ରୁତ ବେଗରେ ପଳାଇବାକୁ ଲାଗିଲା । ସୀତା କୌଣସି ସହାୟକ ନ ଦେଖି ପାଞ୍ଚଜଣ ବାନର ଏକ ଗିରିଶୃଙ୍ଗ ଉପରେ ବସିଥିବାର ଦେଖିଲେ । କାଳେ ସେମାନେ ରାମଙ୍କୁ ସମ୍ବାଦ ଦେଇପାରନ୍ତି, ସେହି ଉଦ୍ଦେଶ୍ୟରେ ସୀତା ନିଜର କନକବର୍ଣ୍ଣ ଉତ୍ତରୀୟକୁ ବାହାର କରି ସେଥିରେ ନିଜର ଅଳଙ୍କାରମାନ ବାନ୍ଧି ସେମାନଙ୍କ ଆଡ଼କୁ ନିକ୍ଷେପ କଲେ । ରାବଣ ତାହା ଜାଣିପାରିଲା ନାହିଁ । ପିଙ୍ଗଳନୟନ ବାନରମାନେ ଅନିମେଷ ଦୃଷ୍ଟିରେ ରୋରୁଦ୍ୟମାନା ସୀତାଙ୍କୁ ଦେଖିବାକୁ ଲାଗିଲେ ।

# ୫୫ ।। ଅଶୋକ ବନରେ ବନ୍ଦିନୀ

ରାବଣ ସୀତାଙ୍କୁ ଧରି ପ୍ରସିଦ୍ଧ ପମ୍ପାସରୋବର ଅତିକ୍ରମ କଲା ଏବଂ ବହୁ ନଦୀ ବନ ପର୍ବତ ଉପର ଦେଇ ସାଗରବେଷ୍ଟିତ ତା'ର ଲଙ୍କାପୁରୀରେ ପ୍ରବେଶ କଲା । ସେ ବହୁକକ୍ଷବିଶିଷ୍ଟ ନିଜର ଅନ୍ତଃପୁରର ଏକ କକ୍ଷରେ ସୀତାଙ୍କୁ ରଖି ଘୋରଦର୍ଶନା ରାକ୍ଷସୀମାନଙ୍କୁ ଆଦେଶ ଦେଲା, ମୋର ବିନା ଅନୁମତିରେ କୌଣସି ସ୍ତ୍ରୀ ବା ପୁରୁଷ ସୀତାଙ୍କୁ ଦେଖିପାରିବେ ନାହିଁ । ମଣିମୁକ୍ତା ସୁବର୍ଣ୍ଣ ବସ୍ତ୍ର ଅଳଙ୍କାର ଆଦି ସେ ଯାହା ଇଚ୍ଛା କରିବେ, ତାଙ୍କୁ ଆଣିଦେବ । ଜ୍ଞାତ ବା ଅଜ୍ଞାତରେ ତାଙ୍କୁ ଯଦି କେହି କୌଣସି ଅପ୍ରିୟ କଥା କହେ, ତା' ହେଲେ ତାର ଜୀବନର ଭୟ ନାହିଁ ବୋଲି ବୁଝିବ ।

ଏହିପରି ଆଦେଶ ଦେଇ ରାବଣ ଅନ୍ତଃପୁରରୁ ବାହାରିଆସି ଆଠଜଣ ବଳଶାଳୀ ରାକ୍ଷସଙ୍କୁ ଡକାଇ କହିଲା, ତୁମେ ସଶସ୍ତ୍ର ହୋଇ ଶୀଘ୍ର ଖରର ବାସଭୂମି ଜନସ୍ଥାନକୁ ଯାତ୍ରାକର । ବର୍ତ୍ତମାନ ସେହି ଜନସ୍ଥାନ ହତସ୍ଥାନରେ ପରିଣତ ହୋଇଛି । ଖର ଓ ଦୂଷଣ ସହ ବିଶାଳ ରାକ୍ଷସସେନା ସେଠାରେ ରାମଦ୍ୱାରା ଯୁଦ୍ଧରେ ନିହତ ହୋଇଛନ୍ତି । ତୁମେ ବଳ ଓ ପୁରୁଷକାର ଉପରେ ବିଶ୍ୱାସ ରଖି ନିର୍ଭୀକ ଭାବରେ ସେଠାରେ ଅବସ୍ଥାନ କର । ରାମ ପ୍ରତି ମୋର ପ୍ରବଳ କ୍ରୋଧ ଓ ଶତ୍ରୁତା ଜାତ ହୋଇଛି । ଶତ୍ରୁକୁ ଯୁଦ୍ଧରେ ନିହତ ନ କରିବା ଯାଏଁ ମୋତେ ନିଦ୍ରା ହେଉ ନାହିଁ । ତୁମେମାନେ ଜନସ୍ଥାନରେ ବାସ କରି ରାମ କେତେବେଳେ କ'ଣ କରୁଛି, ସେ ସମସ୍ତ ସମ୍ବାଦ ମୋତେ ଆଣିଦେବ । ରାକ୍ଷସମାନେ ରାବଣଙ୍କୁ ଅଭିବାଦନ କରି ଅଲକ୍ଷ୍ୟରେ ଦଣ୍ଡକାରଣ୍ୟ ଯାତ୍ରା କଲେ ।

ସୀତାଙ୍କୁ କିପରି ଲାଭ କରିବ ତାହା ଚିନ୍ତା କରି ରାବଣ ଅନ୍ତଃପୁରରେ ପ୍ରବେଶ କରି ଦେଖିଲା, ଯୂଥଭ୍ରଷ୍ଟ ମୃଗୀକୁ କୁକୁରମାନେ ଘେରି ରହିବା ପରି ସୀତାଙ୍କୁ ରାକ୍ଷସୀମାନେ ଘେରି ରହିଛନ୍ତି । ସେ ଶୋକାର୍ତ୍ତ ସୀତାଙ୍କୁ ତାର ପ୍ରାସାଦର ଐଶ୍ୱର୍ଯ୍ୟ ଦେଖାଇ ଭୁଲାଇବାପାଇଁ ଚେଷ୍ଟା କଲା । ରାବଣର ପ୍ରାସାଦରେ ସହସ୍ରସଂଖ୍ୟକ ସ୍ତ୍ରୀ ଓ ବହୁସଂଖ୍ୟାରେ ପକ୍ଷୀମାନେ ବାସ କରୁଥିଲେ । ପ୍ରାସାଦର ସ୍ତମ୍ଭସବୁ ଗଜଦନ୍ତ ସ୍ୱର୍ଣ୍ଣ ସ୍ଫଟିକ ରଜତ ଓ ବୈଦୂର୍ଯ୍ୟ ନିର୍ମିତ । ତୋରଣମାନ ତପ୍ତକାଞ୍ଚନରେ ଗଠିତ ଓ ଗବାକ୍ଷ ସବୁ ସ୍ୱର୍ଣ୍ଣ ଜାଲରେ ଆଚ୍ଛାଦିତ । ସ୍ୱର୍ଣ୍ଣମୟ ସୋପାନରେ ସୀତାଙ୍କ ସହିତ ଆରୋହଣ କରି ରାବଣ ଦୁନ୍ଦୁଭିନାଦିତ ମନୋରମ ପ୍ରାସାଦ ଗୃହମାନ ତାଙ୍କୁ ଦେଖାଇବାକୁ ଲାଗିଲା । ଶେଷରେ ତାଙ୍କୁ ପ୍ରଲୋଭନ ଦେଖାଇ କହିଲା – ସୀତା, ମୁଁ ଦଶକୋଟି ରାକ୍ଷସ ସମେତ ବତିଶ କୋଟି ଲୋକଙ୍କର ପ୍ରଭୁ । ବର୍ତ୍ତମାନ ସେମାନେ ସମସ୍ତେ ତୁମର ଅଧୀନ ହେବେ । କାରଣ ତୁମେ ମୋର ପ୍ରାଣଠାରୁ ପ୍ରିୟ ଏବଂ ମୁଁ ମଧ୍ୟ ତୁମର ଅଧୀନ । ସହସ୍ରସଂଖ୍ୟକ ଅନ୍ତଃପୁରବାସିନୀ ତୁମଦ୍ୱାରା ପରିଚାଳିତ ହେବେ । ଦେବ, ଦାନବ, ଯକ୍ଷ, ଋଷି, ଗନ୍ଧର୍ବ କାହାରିକୁ ମୁଁ ଖାତିର କରେ ନାହିଁ । ମୁଁ ତୁମକୁ ହୃଦୟର ସହିତ ଚାହେ । ତୁମେ ମୋତେ ବରଣ କର । ରାଜ୍ୟଭ୍ରଷ୍ଟ ଦରିଦ୍ର ଅଳ୍ପାୟୁ ରାମ କଥା ଚିନ୍ତା କର ନାହିଁ । ସେ ଚେଷ୍ଟା କଲେ ମଧ୍ୟ ଏଠାକୁ ଆସିପାରିବ ନାହିଁ । ତୁମର ପୂର୍ବକୃତ ଦୁଷ୍କୃତ ବନବାସ ଦ୍ୱାରା ଧୋଇ

ହୋଇଯାଇଛି । ବର୍ତ୍ତମାନ ଅଭିଷେକ ଜଳରେ ସିକ୍ତ ହୋଇ ମୋ' ସହିତ ଲଙ୍କାପୁରୀର ବିପୁଳ ଐଶ୍ୱର୍ଯ୍ୟ ଭୋଗକର ।

ରାବଣର କଥା ଶୁଣି ସୀତା ଲୁଗା କାନିରେ ମୁହଁ ଘୋଡ଼ାଇ କାନ୍ଦିବାକୁ ଲାଗିଲେ । ରାବଣ କହିଲା – ବୈଦେହୀ, ଅଧର୍ମ ହେବ ବୋଲି ଭାବି ତୁମେ ଲଜ୍ଜା କର ନାହିଁ । ତୁମ ସହିତ ମୋର ମିଳନ ଧର୍ମାନୁମୋଦିତ । ତୁମର କୋମଳ ଚରଣଦ୍ୱୟକୁ ମୋର ମସ୍ତକ ଉପରେ ରଖି ମୋତେ ଦାସ ରୂପେ ଗ୍ରହଣ କର । ରାବଣ କାହାକୁ ମସ୍ତକ ଅବନତ କରେ ନାହିଁ । କିନ୍ତୁ ଆଜି ସେ ତୁମର ଅନୁଗ୍ରହପ୍ରାର୍ଥୀ ।

ରାବଣ ଓ ତାଙ୍କ ମଝିରେ ଏକ ତୃଣ ରଖି ସୀତା ନିର୍ଭୟରେ କହିଲେ, ଭୁବନବିଖ୍ୟାତ ଦଶରଥତନୟ ସତ୍ୟସନ୍ଧ ରାମ ମୋର ସ୍ୱାମୀ । ରାମଙ୍କର ପତିବ୍ରତା ଧର୍ମପତ୍ନୀ ତୋପରି ପାପୀ ରାକ୍ଷସାଧମକୁ କେବେ ସ୍ପର୍ଶ କରିପାରିବ ନାହିଁ । ପଦ୍ମବନବିହାରିଣୀ ହଂସୀ କେବେ ତୃଣ ମଧ୍ୟରେ ବସିଥିବା ପାଣିକୁଆ ଆଡ଼କୁ ଅନାଇପାରେ ନାହିଁ । ରାବଣ, ତୋର ଆୟୁଷ ଶେଷ ହେବାକୁ ବସିଲାଣି । ଯେଉଁ ଲଙ୍କାପୁରୀକୁ ଘେନି ତୁ ଗର୍ବ କରୁଛୁ, ତାହା ଶୀଘ୍ର ବୈଧବ୍ୟ ଦଶା ଭୋଗ କରିବାକୁ ଯାଉଛି । ରାକ୍ଷସ, ମୋର ସଂଜ୍ଞାହୀନ ଦେହକୁ ତୁ ବନ୍ଧନ କର ବା ଭକ୍ଷଣ କର, ମୁଁ ମୋର ଶରୀର ଓ ପ୍ରାଣକୁ ରକ୍ଷା କରିବାକୁ ଚେଷ୍ଟା କରିବି ନାହିଁ । କାରଣ ସଂସାରରେ ମୋ ନାମରେ କୌଣସି କଳଙ୍କ ବା ଅପବାଦକୁ ମୁଁ ପ୍ରଶ୍ରୟ ଦେବି ନାହିଁ ।

ଏହିପରି କଠୋର ବାକ୍ୟ ପ୍ରୟୋଗ କରି ସୀତା ନୀରବ ହେଲେ । ରାବଣ ତାଙ୍କୁ ଭୟ ଦେଖାଇବାକୁ କହିଲା – ମୈଥିଳୀ, ଶୁଣ । ମୁଁ ତୋତେ ବାରମାସ ସମୟ ଦେଲି । ଏହି ସମୟ ମଧ୍ୟରେ ତୁ ଯଦି ମୋର ଅନୁଗତ ନ ହେଉ, ତା'ହେଲେ ମୋର ପାଚକମାନେ ତୋର ମାଂସକୁ ଟିକି ଟିକି କରି ମୋର ପ୍ରାତଃଭୋଜନର ବ୍ୟବସ୍ଥା କରିବେ । ତା'ପରେ ସେ ରାକ୍ଷସୀମାନଙ୍କୁ କହିଲା, ତୁମେମାନେ ଶୀଘ୍ର ଏହାର ଦର୍ପ ଚୂର୍ଣ୍ଣ କର । ରାକ୍ଷସୀମାନେ ସୀତାଙ୍କୁ ବେଢ଼ିଯିବାରୁ ପଦାଘାତରେ ଧରଣୀ ପ୍ରକମ୍ପିତ କରି ରାବଣ ପୁଣି କହିଲା, ତୁମେ ଶୀଘ୍ର ଏହାକୁ ଅଶୋକ ବନକୁ ନେଇଯାଅ ଏବଂ ଗୋପନରେ ଜଗି ରହ । ବନ୍ୟ ହସ୍ତିନୀକୁ ବଶ କରିବାପରି କେବେ ତର୍ଜନ ଦ୍ୱାରା ବା କେବେ ସାନ୍ତ୍ୱନା ବାକ୍ୟ ପ୍ରୟୋଗ କରି ଏହାକୁ ବଶକୁ ଆଣିବାକୁ ଚେଷ୍ଟାକର ।

ରାବଣର ଅଶୋକବନ ବହୁ ଫଳପୁଷ୍ପରେ ପୂର୍ଣ୍ଣ ଥିଲା । ସବୁବେଳେ ମତ୍ତବିହଙ୍ଗମାନଙ୍କ କାକଳିରେ ତାହା ମୁଖରିତ ହେଉଥିଲା । ମାତ୍ର ଅଶୋକବନରେ ରହି ସୀତାଙ୍କର ଶୋକ ବଢ଼ିବାକୁ ଲାଗିଲା । ପାଶବିଦ୍ଧ ହରିଣୀ ପରି ଘୋରଦର୍ଶନା ରାକ୍ଷସୀମାନଙ୍କ ମଧ୍ୟରେ ବନ୍ଦିନୀ ସୀତା ଭୟ ଓ ଶୋକରେ ପୀଡ଼ିତ ହୋଇ ଅତି ଦୁଃଖରେ କାଳଯାପନ କଲେ ।

# ୫୬ ।। ଶୂନ୍ୟ ପର୍ଣ୍ଣଶାଳା

ମୃଗରୂପୀ ମାରୀଚକୁ ବଧ କରି ରାମ ଶୀଘ୍ର ଆଶ୍ରମକୁ ଫେରିଆସିଲେ । ତାଙ୍କର ପଛଆଡ଼େ ରୋମାଞ୍ଚକର ଦାରୁଣ ସ୍ୱରରେ ଏକ ଶୃଗାଳ ରବ କରୁଥିବା ଶୁଣି ତାଙ୍କ ମନରେ ଶଙ୍କା ଜାତ ହେଲା । ନିଶ୍ଚୟ କିଛି ଅଶୁଭ ଘଟିଛି ବୋଲି ସେ ମନେକଲେ । ସେ ଚିନ୍ତା କଲେ, ମୃଗରୂପୀ ମାରୀଚ ମୃତ୍ୟୁ ପୂର୍ବରୁ ତାଙ୍କର ସ୍ୱର ଅନୁକରଣ କରି ଚିତ୍କାର କରିଥିଲା । ତାହା ସୀତା ଓ ଲକ୍ଷ୍ମଣ ନିଶ୍ଚୟ ଶୁଣିଥିବେ ଏବଂ ସୀତାଙ୍କ ଦ୍ୱାରା ପ୍ରେରିତ ହୋଇ ଲକ୍ଷ୍ମଣ ସୀତାଙ୍କୁ ଏକାକୀ ଛାଡ଼ିଦେଇ ତାଙ୍କ ପାଖକୁ ଚାଲିଆସୁଥିବେ । ଏହାର ସୁଯୋଗ ନେଇ ରାକ୍ଷସମାନେ ସୀତାଙ୍କୁ ଧରିନେଇ ଭକ୍ଷଣ କରି ନାହାନ୍ତି ତ ? ଖର ଏବଂ ତାର ସେନାକୁ ମାରିବା ପରେ ଜନସ୍ଥାନରେ ରାକ୍ଷସମାନଙ୍କ ସହିତ ତାଙ୍କର ଶତ୍ରୁତା ସୃଷ୍ଟି ହୋଇଛି । ତେଣୁ ସ୍ୱର୍ଣ୍ଣମୃଗ ହୋଇ ମାରୀଚ ଆସିବା ଏବଂ ମରିବା ପୂର୍ବରୁ 'ହା ଲକ୍ଷ୍ମଣ, ହା ସୀତା' ବୋଲି ତାଙ୍କ ସ୍ୱରରେ କହିବା ରାକ୍ଷସମାନଙ୍କର ଏକ ସୁପରିକଳ୍ପିତ କୌଶଳ ବୋଲି ରାମ ଚିନ୍ତା କଲେ । ସୀତାଙ୍କ କଥା ଭାବି ଭାବି ତାଙ୍କର ମନ ବ୍ୟାକୁଳ ହେବାକୁ ଲାଗିଲା ।

ମୃଗ ଓ ପକ୍ଷୀମାନେ ରାମଙ୍କର ବାମପାର୍ଶ୍ୱରେ ଘୋର ରବରେ ଚିତ୍କାର କଲେ । ସେ ଆହୁରି ବେଗରେ ଯିବା ଆରମ୍ଭ କରିଛନ୍ତି, ଦେଖିଲେ ଲକ୍ଷ୍ମଣ ନିଷ୍ପ୍ରଭ ଓ ବିଷଣ୍ଣ ହୋଇ ଆସୁଛନ୍ତି । ସେ ଲକ୍ଷ୍ମଣଙ୍କର ବାଁ ହାତ ଧରି ତାଙ୍କୁ ମିଷ୍ଟ ଭର୍ତ୍ସନା କରି କହିଲେ – ସୌମ୍ୟ, ସୀତାଙ୍କୁ ଏକୁଟିଆ ଛାଡ଼ିଦେଇ କିପରି ଚାଲିଆସିଲ ? ମୋର ବାମଚକ୍ଷୁ ସ୍ପନ୍ଦିତ ହେଉଛି । ନାନା ଅଶୁଭ ଲକ୍ଷଣ ମୁଁ ଦେଖିବାକୁ ପାଉଛି । ଜନକନନ୍ଦିନୀ ଜୀବନରେ ଅଛନ୍ତି କି ନାହିଁ ମୋର ସନ୍ଦେହ ହେଉଛି । ରାକ୍ଷସମାନେ ତାଙ୍କୁ ଭକ୍ଷଣ କରି ନାହାନ୍ତି ତ ?

ଲକ୍ଷ୍ମଣ ଦୀନ ଓ ମୌନ ଭାବରେ ରହିଥିବାର ଦେଖି ରାମ ପୁଣି ପଚାରିଲେ – ଲକ୍ଷ୍ମଣ, ମୁଁ ଦଣ୍ଡକବନକୁ ଆସିଥିବାବେଳେ ଯେଉଁ ବୈଦେହୀ ମୋ ସାଙ୍ଗେ ସାଙ୍ଗେ ଆସିଥିଲେ, ତୁମେ ତାଙ୍କୁ ଛାଡ଼ିଦେଇ ଏଠାକୁ କାହିଁକି ଆସିଛ ? ମୁଁ ଦୀନ ରାଜ୍ୟଭ୍ରଷ୍ଟ ହୋଇ ଦଣ୍ଡକବନରେ ଧାବମାନ ହେଉଥିବାବେଳେ ଯେ ମୋର ଦୁଃଖର ସହାୟ ଥିଲେ ସେ କ୍ଷୀଣକଟି ସୀତା କେଉଁଠି ଅଛନ୍ତି ? ଯାହାଙ୍କ ବିହୁନରେ ମୁଁ ମୁହୂର୍ତ୍ତେ ମାତ୍ର ବଞ୍ଚିପାରିବି ନାହିଁ, ମୋର ସେ ପ୍ରାଣପ୍ରିୟା ସୀତା କୁଆଡ଼େ ଗଲେ ? ଲକ୍ଷ୍ମଣ, ହେମଗୌରୀ ଜନକନନ୍ଦିନୀଙ୍କ ବିନା ମୁଁ ଦେବଲୋକ ବା ପୃଥିବୀର ପ୍ରଭୁତ୍ୱ କାମନା କରେ ନାହିଁ । ମୋର ପ୍ରାଣଠାରୁ ବଳି ପ୍ରିୟ ବୈଦେହୀ କ'ଣ ଜୀବିତ ଅଛନ୍ତି ? ମୋର ଏ ବନବାସ କ'ଣ ମିଥ୍ୟା ହୋଇଯିବ ? ମୁଁ ଆଶ୍ରମକୁ ଗଲେ ସୀତା ଯଦି ମୋତେ ହସି ହସି କଥା ନ କହନ୍ତି, ତା' ହେଲେ ମୁଁ ନିଶ୍ଚୟ ମରିବି । ଲକ୍ଷ୍ମଣ, କହ, ସୀତା ଜୀବିତ ଅଛନ୍ତି ନା ତୁମର ଅସାବଧାନତା ଯୋଗୁଁ ରାକ୍ଷସମାନେ ସେହି ତପସ୍ୱିନୀଙ୍କୁ ମାରି ଖାଇଛନ୍ତି ?

ଲକ୍ଷ୍ମଣ କହିଲେ – ମୁଁ ସ୍ୱଇଚ୍ଛାରେ ସୀତାଙ୍କୁ ଛାଡ଼ି ଏଠାକୁ ଆସି ନାହିଁ, ତାଙ୍କର କଟୁବାକ୍ୟ ଶୁଣି ମୋତେ ଏଠାକୁ ଆସିବାକୁ ହୋଇଛି । 'ହା ସୀତା, ହା ଲକ୍ଷ୍ମଣ' ବୋଲି ଆପଣଙ୍କର ଆର୍ତ୍ତସ୍ୱର ଶୁଣି ଭୟବିହ୍ୱଳା ମୈଥିଳୀ କ୍ରନ୍ଦନ କରି ମୋତେ କହିଲେ, ଶୀଘ୍ର

ଯାଅ । ସେ ବାରମ୍ବାର ଯାଅ ଯାଅ ବୋଲି କହିବାରୁ ମୁଁ ତାଙ୍କୁ ସାନ୍ତ୍ୱନା ଦେଇ କହିଲି, ରାମଙ୍କର ଭୟ ସଞ୍ଚାର କରାଇବ, ଏପରି ରାକ୍ଷସ ମୁଁ ଦେଖୁ ନାହିଁ । ତୁମେ ନିଶ୍ଚିନ୍ତ ହୁଅ, ଏହା ରାମଙ୍କର ସ୍ୱର ନୁହେଁ । ତ୍ରିଲୋକରେ ଏପରି କେହି ଜନ୍ମ ହୋଇ ନାହିଁ, ଯେ କି ରାମଙ୍କୁ ଯୁଦ୍ଧରେ ଜୟ କରିପାରିବ । କିନ୍ତୁ ବୈଦେହୀ ମୋହଗ୍ରସ୍ତ ହୋଇ କଠୋର ବାକ୍ୟରେ ମୋତେ ଭର୍ତ୍ସନା କରି କହିଲେ, 'ତୁମେ ରାମଙ୍କର ଭାଇ ନୁହଁ, ତାଙ୍କର ଛଦ୍ମବେଶୀ ଶତ୍ରୁ । ରାମଙ୍କର ଅନୁଗାମୀ ହୋଇ ତାଙ୍କର ଛିଦ୍ର ଅନ୍ୱେଷଣ କରିବାପାଇଁ ଭରତ ତୁମକୁ ପଠାଇଛି । ତୁମର ଉଦ୍ଦେଶ୍ୟ ପାପପୂର୍ଣ୍ଣ । ତୁମେ ଭାବିଛ ଯେ ରାମ ମଲେ ମୋତେ ତୁମେ ଲାଭ କରିବ, ତାହା କେବେ ସମ୍ଭବ ହେବ ନାହିଁ ।' ଏହିପରି ଅତି ନିଷ୍ଠୁର କଟୁବାକ୍ୟ ଶୁଣି ମୁଁ ଆଶ୍ରମ ଛାଡ଼ି ବାହାରିଆସିଲି ।

ଲକ୍ଷ୍ମଣଙ୍କ କଥା ରାମଙ୍କୁ ସନ୍ତୁଷ୍ଟ କଲା ନାହିଁ । ସେ କହିଲେ – ଲକ୍ଷ୍ମଣ, ତୁମେ ଯାହା କଲ, ଆଦୌ ଠିକ୍ ହେଲା ନାହିଁ । ତୁମେ ଜାଣ ଯେ ମୁଁ ଏକାକୀ ସମସ୍ତ ରାକ୍ଷସଙ୍କୁ ନିବାରଣ କରିପାରେ । ତଥାପି ସୀତାଙ୍କର କ୍ରୋଧ ବାକ୍ୟ ଶୁଣି ତୁମେ ପଳାଇଆସିଲ । ସୀତାଙ୍କ ପରୁଷ ବାକ୍ୟରେ ନିଜେ କ୍ରୁଦ୍ଧ ହୋଇ ମୋର ଆଦେଶକୁ ଅବଜ୍ଞା କଲ, ଏହା ତୁମର ଉଚିତ ହୋଇ ନାହିଁ ।

ରାମ ଓ ଲକ୍ଷ୍ମଣ ଦ୍ରୁତ ବେଗରେ ଆଶ୍ରମକୁ ଆସି ଦେଖିଲେ ଯେ ସୀତା ନାହାନ୍ତି । ହେମନ୍ତକାଳରେ ପଦ୍ମହୀନ ପୁଷ୍କରିଣୀ ଯେପରି ଦେଖାଯାଏ, ସୀତାଙ୍କ ବିହୁନରେ ପର୍ଣ୍ଣଶାଳା ସେହିପରି ଶ୍ରୀହୀନ ଦେଖାଯାଉଥିଲା । କୁଶ ଓ ମୃଗଚର୍ମ ସବୁ ଇତସ୍ତତଃ ହୋଇ ପଡ଼ିଥିଲା । ପୁଷ୍ପ ମୃଗପକ୍ଷୀମାନେ ଶ୍ରୀହୀନ ଓ ବନଦେବତାମାନେ ରୋଦନ କରୁଥିବା ପରି ଜଣାଗଲା ।

## ୫୭ ।। ରାମଙ୍କର ବିଳାପ

ରାମ କାତର ସ୍ୱରରେ ବିଳାପ କରି କହିଲେ, ସୀତାଙ୍କୁ ନିଶ୍ଚୟ କେହି ଚୋରାଇ ନେଇଛି କିମ୍ବା ହତ୍ୟା କରି ଭକ୍ଷଣ କରିଛି କିମ୍ବା ସେ ବନ ମଧ୍ୟରେ କାହାରି ଭୟରେ ଲୁଚିଯାଇଛନ୍ତି କିମ୍ବା ଫଳପୁଷ୍ପ ଚୟନ କରିବାପାଇଁ ବା ପାଣି ଆଣିବାପାଇଁ ନଦୀ ବା ପୁଷ୍କରିଣୀକୁ ଯାଇଛନ୍ତି । ଶୋକରେ ରକ୍ତବର୍ଣ୍ଣଚକ୍ଷୁ ରାମ ସୀତାଙ୍କୁ ଚାରିଆଡ଼େ ଖୋଜିବାକୁ ଲାଗିଲେ ଏବଂ ବିଭିନ୍ନ ବୃକ୍ଷକୁ ସମ୍ବୋଧନ କରି କହିଲେ, କଦମ୍ବ, ତୁମେ ମୋର ପ୍ରିୟାକୁ ଦେଖିଚ କି ? ତୁମକୁ ସେ ଏତେ ଭଲପା'ନ୍ତି । ଯଦି ସେ ସୁମୁଖୀଙ୍କର କଥା ଜାଣିଚ, ତା ହେଲେ କହିଦିଅ । ଅର୍ଜୁନ, ତୁମର ଫୁଲ ସୀତାଙ୍କର ଏତେ ପ୍ରିୟ, ସେ ଜୀବିତ ଅଛନ୍ତି କି ନାହିଁ, କହିପାରିବ କି ? ଅଶୋକ, ମୋର ମନ ଶୋକରେ ଆକୁଳ ହେଉଛି । ତୁମେ ମୋର ପ୍ରିୟାକୁ ଦେଖାଇଦେଇ ମୋର ଶୋକ ଦୂର କର ଏବଂ ତୁମର ନାମକୁ ସାର୍ଥକ କର । କର୍ଣ୍ଣିକାର, ଆଜି ପୁଷ୍ପରେ ତୁମ ଦେହ ଭରି ହୋଇଯାଇଛି । ମୋର ପ୍ରିୟା କର୍ଣ୍ଣିକାରକୁ କେତେ ଭଲ ନ ପାଆନ୍ତି । ତୁମେ ସେହି ସାଧ୍ୱୀଙ୍କୁ ଯଦି ଦେଖିଥାଅ, କହ ।

ଏହିପରି ରାମ ଚୂତ, ଶାଳ, ଡାଳିମ୍ବ, ବକୁଳ, ଚମ୍ପକ, କେତକୀ ଆଦି ବୃକ୍ଷମାନଙ୍କୁ ଉଦ୍‌ଭ୍ରାନ୍ତ ସମ୍ବୋଧନ କରିବାକୁ ଲାଗିଲେ ।

ମୃଗକୁ ଦେଖି ରାମ ମୃଗନୟନୀ ସୀତାଙ୍କ କଥା ପଚାରିଲେ । ଗଜ ଓ ବ୍ୟାଘ୍ରଙ୍କୁ ନିର୍ଭୟରେ ସୀତାଙ୍କ ସମ୍ବାଦ ଦେବାପାଇଁ ସମ୍ଭାଷଣ କଲେ । ଶେଷରେ ଅଧୀର ହୋଇ କହିଲେ, କମଳନୟନା ପ୍ରିୟା, କୁଆଡ଼େ ଦଉଡ଼ି ଯାଉଛ, ମୁଁ ତୁମକୁ ଦେଖିସାରିଲିଣି । ଗଛ ଆଢୁଆଳରେ ରହି କାହିଁକି ମୋ କଥାର ଉତ୍ତର ଦେଉ ନାହଁ ? ତୁମର କ'ଣ ମୋ' ଉପରେ ଦୟା ନାହିଁ ? ତୁମେ ତ ଅତିଶୟ ପରିହାସପ୍ରିୟ ନୁହଁ । ତେବେ କାହିଁକି ମୋତେ ଉପେକ୍ଷା କରୁଛ ?

ଏହିପରି ପ୍ରଳାପ କରି ରାମ କହିଲେ, ନିଶ୍ଚୟ ଚାରୁହସିନୀ ସୀତା ଆଉ ଜୀବନରେ ନାହାନ୍ତି । ମୋର ଅନୁପସ୍ଥିତିରେ ମାଂସାହାରୀ ରାକ୍ଷସମାନେ ନିଶ୍ଚୟ ତାଙ୍କୁ ଭକ୍ଷଣ କରିଛନ୍ତି । ଗୋଠଛଡ଼ା ହରିଣୀକୁ ହିଂସ୍ରଜନ୍ତୁମାନେ ଭକ୍ଷଣ କରିବାପରି ସୀତା ନିଶ୍ଚୟ ରାକ୍ଷସମାନଙ୍କର କବଳିତ ହୋଇଛନ୍ତି । ରାମ ଉନ୍ମତ୍ତ ପରି ନଦୀ, ପ୍ରପାତ, ଗିରି, କାନନ ଚତୁର୍ଦ୍ଦିଗରେ ସୀତାଙ୍କୁ ଖୋଜିବାକୁ ଲାଗିଲେ । ମାତ୍ର କେଉଁଠାରେ ତାଙ୍କୁ ପାଇଲେ ନାହିଁ । ବିଳାପ କରି ଲକ୍ଷ୍ମଣଙ୍କୁ କହିଲେ– ଲକ୍ଷ୍ମଣ, ସୀତାଙ୍କ ବିରହରେ ମୁଁ ଜୀବନଧାରଣ କରିପାରିବି ନାହିଁ । ମୋର ମୃତ୍ୟୁ ହେଲେ ରାଜା ଦଶରଥ ମୋତେ ପରଲୋକରେ ଦେଖି ପଚାରିବେ, ଚଉଦବର୍ଷ ବନବାସ କରିବୁ ବୋଲି ସତ୍ୟ କରିଥିଲୁ । କାହିଁକି ପ୍ରତିଜ୍ଞା ପୂରଣ ନ କରି ଏଠାକୁ ଆସିଲୁ ? ପିତା ମୋତେ ମିଥ୍ୟାବାଦୀ ବୋଲି ଧିକ୍କାର କରିବେ ।

ରାମ ଏହିପରି ବିଳାପ କରି ଘୋର ପଙ୍କରେ ନିମଗ୍ନ ହସ୍ତୀ ପରି ଶୋକାକୁଳ ହେଲେ । ଲକ୍ଷ୍ମଣ ସାନ୍ତ୍ୱନା ଦେଇ କହିଲେ, ଆପଣ ପ୍ରାଜ୍ଞ, ବୁଦ୍ଧିମାନ, ଏପରି ବିଷଣ୍ଣ ହେବା ଉଚିତ ନୁହେଁ । ଏହି ମହାରଣ୍ୟରେ ବହୁ ଗିରି ଗୁହା ରହିଛି । ସୀତା ବନ ମଧ୍ୟରେ ବିଚରଣ କରିବାକୁ ଭଲ ପା'ନ୍ତି । ବହୁ ପଦ୍ମପୁଷ୍ପପୂର୍ଣ୍ଣ ସରୋବର ଏବଂ ମତ୍ସ୍ୟବହୁଳ ନଦୀ ଅଛି । ସେଠାକୁ ସେ ସ୍ନାନ କରିବାକୁ ଯାଇଥିବେ କିମ୍ବା ଆମକୁ ଭୟ ଦେଖାଇବା ପାଇଁ ବନରେ କେଉଁଠି ହେଲେ ଲୁଚି ରହିଥିବେ । କାକୁତ୍‌ସ୍ଥ, ବର୍ତ୍ତମାନ ସମଗ୍ର ବନ ଭଲଭାବରେ ଆମର ଖୋଜିବା ଦରକାର ।

ରାମ ଲକ୍ଷ୍ମଣଙ୍କ ସହିତ ଖୁବ୍ ସାବଧାନରେ ବନ, ପର୍ବତ, ନଦୀ, ସରୋବର, ଗିରିଗୁହାମାନ ତନ୍ନ ତନ୍ନ କରି ଖୋଜିବାକୁ ଲାଗିଲେ । ମାତ୍ର ସୀତାଙ୍କୁ ଦେଖିଲେ ନାହିଁ । ଲକ୍ଷ୍ମଣ ତାଙ୍କୁ ସାନ୍ତ୍ୱନା ଦେବାପାଇଁ ବହୁ ଚେଷ୍ଟା କଲେ । ରାମ ଶାନ୍ତ ହେଲେ ନାହିଁ । ଶୋକରେ ସେ ମୂର୍ଚ୍ଛିତ ହୋଇଗଲେ । ଚେତନା ଲାଭ କରି ବାରମ୍ବାର ଦୀର୍ଘଶ୍ୱାସ ପକାଇ 'ହା ପ୍ରିୟେ' ବୋଲି ରୋଦନ କରିବାକୁ ଲାଗିଲେ ।

ରାମ ବାରମ୍ବାର ପ୍ରଳାପ କରି ସୀତାଙ୍କୁ ଡାକିବାକୁ ଲାଗିଲେ । ପୁଣି ନିଶ୍ଚେଷ୍ଟ ହୋଇ କହିଲେ – ସୌମିତ୍ରି, କୈକେୟୀଙ୍କର ମନୋରଥ ସଫଳ ହେଲା । ମୁଁ ସୀତାଙ୍କ ସହ ବନକୁ ଆସିଥିଲି । ବର୍ତ୍ତମାନ ସୀତାଙ୍କ ବିନା ମୋତେ ଫେରିବାକୁ ହେବ । ମୁଁ ତାଙ୍କ ବିନା ଶୂନ୍ୟ ଅନ୍ତଃପୁରରେ କିପରି ପ୍ରବେଶ କରିବି ? ଲୋକେ ମୋତେ ନିର୍ବୀର୍ଯ୍ୟ, ନିର୍ଦ୍ଦୟ ବୋଲି

କହିବେ । ମିଥିଳାରାଜ ଜନକଙ୍କୁ ମୁହଁ ଟେକି ଚାହିଁପାରିବି ନାହିଁ । ନା, ମୁଁ ଆଉ ଅଯୋଧ୍ୟା ଫେରିବି ନାହିଁ । ତୁମେ ଏକାକୀ ଅଯୋଧ୍ୟା ଫେରିଯାଇ ମୋର ଜନନୀଙ୍କୁ ସାନ୍ତ୍ୱନା ଦିଅ ଏବଂ ଭରତଙ୍କୁ କହ, ସେ ଅଯୋଧ୍ୟା ରାଜ୍ୟକୁ ପାଳନ କରିବେ ।

ଶୋକାକୁଳ ରାମ ପୁଣି କହିଲେ, ମୋ ପରି ଦୁଷ୍କର୍ମକାରୀ ପାପୀ ବ୍ୟକ୍ତି ସଂସାରରେ ନାହାନ୍ତି । ତା' ନ ହେଲେ କାହିଁକି ଶୋକ ପରେ ଶୋକ ମୋତେ ଭୋଗ କରିବାକୁ ହେଉଥା'ନ୍ତା ? ରାଜ୍ୟନାଶ, ସ୍ୱଜନବିଚ୍ଛେଦ, ମାତୃବିରହ ଓ ପିତୃବିୟୋଗ ଗୋଟିକ ପରେ ଗୋଟିଏ ଭୋଗିବାକୁ ହୋଇଛି । ଏ ନିର୍ଜନ ବନକୁ ଆସିବା ପରେ ମୁଁ ଶାନ୍ତି ଲାଭ କରିଥିଲି । କିନ୍ତୁ କାଠ ସାହାଯ୍ୟରେ ଲିଭିଯାଉଥିବା ନିଆଁ ପୁଣି ଜଳିଉଠିବା ପରି ସୀତାଙ୍କର ବିରହ ସେହି ଶୋକାନଳକୁ ପ୍ରଜ୍ୱଳିତ କରିଛି । କୌଣସି ରାକ୍ଷସ ନିଶ୍ଚୟ ସୀତାଙ୍କୁ ବଳପୂର୍ବକ ଅପହରଣ କରିଛି । ଆହା ! ସେତେବେଳେ ଜନକନନ୍ଦିନୀ ଅସହାୟ ଅବସ୍ଥାରେ କେତେ କାନ୍ଦି ନ ଥିବେ । ରାହୁଗ୍ରସ୍ତ ଚନ୍ଦ୍ରମା ପରି ତାଙ୍କର କି ହୀନ ଅବସ୍ଥା ହୋଇ ନ ଥିବ ! ରତ୍ନହାର ଶୋଭିତ ତାଙ୍କର ସୁନ୍ଦର ଗ୍ରୀବାକୁ ମୋଡ଼ିଦେଇ ରୁଧିରପାୟୀ ରାକ୍ଷସମାନେ ନିଶ୍ଚୟ ରକ୍ତପାନ କରିଛନ୍ତି । ଗୋଦାବରୀନଦୀ ତାଙ୍କର ବହୁ ପ୍ରିୟ ଥିଲା । ସେ କ'ଣ ସେଠାକୁ ଯାଇଛନ୍ତି ? ପୁଷ୍କରିଣୀରୁ କ'ଣ ପଦ୍ମଫୁଲ ତୋଳିବାକୁ ଯାଇଛନ୍ତି ? ମୃଗପକ୍ଷୀପୂର୍ଣ୍ଣ ଅରଣ୍ୟରେ କ'ଣ ବିଚରଣ କରିବାକୁ ଯାଇଛନ୍ତି ? ନା, ସେ ତ ଏକୁଟିଆ କୁଆଡ଼େ ଯା'ନ୍ତି ନାହିଁ । ସୂର୍ଯ୍ୟଦେବ, ତୁମେ ତ ସମସ୍ତଙ୍କର ସବୁ କାର୍ଯ୍ୟର ସାକ୍ଷୀ, ମୋର ପ୍ରିୟା କୁଆଡ଼େ ଯାଇଛନ୍ତି ବା କେହି ତାଙ୍କୁ ଅପହରଣ କରିଛି, କହିପାରିବ କି ? ବାୟୁ ଦେବତା, ତୁମକୁ ତ କୌଣସି କଥା ଅବିଦିତ ନାହିଁ, ତୁମେ କହ, ସୀତା ଜୀବିତ, ମୃତ ନା ଅପହୃତ ?

ଗୋଦାବରୀ ନଦୀକୁ ରାମ ପ୍ରଥମେ ଲକ୍ଷ୍ମଣଙ୍କୁ ପଠାଇଲେ । ସେ ନିରାଶ ହୋଇ ଫେରିଆସିବାରୁ ନିଜେ ଗୋଦାବରୀନଦୀକୁ ଯାଇ ପଚାରିଲେ, ସୀତା କାହାନ୍ତି ? ନୀରବ ସ୍ରୋତରେ ପ୍ରବାହିତ ଗୋଦାବରୀନଦୀରୁ କୌଣସି ଉତ୍ତର ମିଳିଲା ନାହିଁ । ଜଣାଗଲା, ଯେପରି ଗୋଦାବରୀନଦୀ ରାବଣ ଭୟରେ କିଛି କହିଲା ନାହିଁ । ରାମ କହିଲେ, ଲକ୍ଷ୍ମଣ , ଗୋଦାବରୀ ନିରୁତ୍ତରା । ମୁଁ ସୀତାଙ୍କୁ ହରାଇ ମାତା ଓ ଜନକଙ୍କୁ କି ଉତ୍ତର ଦେବି ? ସୀତାଙ୍କୁ ଦେଖିବାପାଇଁ ମୁଁ ପର୍ବତ, ପ୍ରସ୍ରବଣ, ଜନସ୍ଥାନ, ମନ୍ଦାକିନୀ ନଦୀ ସର୍ବତ୍ର ବିଚରଣ କରିବାକୁ ପ୍ରସ୍ତୁତ ଅଛି । ଦେଖ, ମୃଗମାନେ ବାରମ୍ବାର ମୋ ଆଡ଼କୁ ଦୃଷ୍ଟିପାତ କରୁଛନ୍ତି । ଇଙ୍ଗିତ ଦ୍ୱାରା ସେମାନେ ମୋତେ କିଛି କହିବାକୁ ଚାହାନ୍ତି ବୋଲି ଜଣାଯାଉଛି ।

ବାଷ୍ପାକୁଳ ନୟନରେ ରାମ ମୃଗମାନଙ୍କୁ ପଚାରିଲେ, ସୀତା କେଉଁଠି ଅଛନ୍ତି ? ମୃଗମାନେ ସହସା ଉଠିପଡ଼ି ଦକ୍ଷିଣ ଆକାଶ ଦିଗକୁ ମୁହଁ ଟେକି ଅନାଇଲେ ଏବଂ ସୀତା ଯେଉଁ ଦିଗରେ ଅପହୃତା ହୋଇଥିଲେ, ସେହି ଦିଗକୁ ଦଉଡ଼ିବାକୁ ଲାଗିଲେ । ଲକ୍ଷ୍ମଣ ରାମଙ୍କୁ କହିଲେ, ଆର୍ଯ୍ୟ, ତୁମେ ଆର୍ତ୍ତଭାବରେ ମୃଗମାନଙ୍କୁ ପଚାରିବାରୁ ସେମାନେ ଉଠିପଡ଼ି ଦକ୍ଷିଣମୁହାଁ ହୋଇ ଯାଉଛନ୍ତି । ସେହି ଦିଗକୁ ଗଲେ ବୋଧହୁଏ ଆମେ ସୀତାଙ୍କୁ ପାଇପାରିବା । ସେମାନେ ଦକ୍ଷିଣ ଦିଗରେ କିଛି ବାଟ ଯାଇଛନ୍ତି, ଦେଖିଲେ ଅନେକ ଫୁଲ

ସବୁ ପଡ଼ିଛି । ରାମ କହିଲେ – ଲକ୍ଷ୍ମଣ, ମୁଁ ଏ ଫୁଲ ସବୁ ଚିହ୍ନିପାରୁଛି । ମୁଁ ଏ ସବୁ ସୀତାଙ୍କୁ ପିନ୍ଧିବା ପାଇଁ ଦେଇଥିଲି ।

ଅଳ୍ପ ଦୂରରେ ପ୍ରସ୍ରବଣ ଗିରିକୁ ଦେଖି ରାମ ପଚାରିଲେ – ଗିରିରାଜ, ତୁମେ ମୋର ବିରହବିଧୁରା ସର୍ବାଙ୍ଗସୁନ୍ଦରୀ ସୀତାଙ୍କୁ ଏହି ରମଣୀୟ ବନପ୍ରଦେଶରେ ଦେଖିଛ କି ? ପର୍ବତ ନିରୁତ୍ତର ରହିବାରୁ ରାମ କ୍ରୋଧବଶରେ କହିଲେ, ସେହି ହେମାଙ୍ଗୀ ସୀତାଙ୍କୁ ଦେଖାଇ ଦିଅ, ନଚେତ୍ ବୃକ୍ଷଲତା ଘାସପତ୍ର ସମେତ ତୁମକୁ ଭସ୍ମ କରି ଛାରଖାର କରିଦେବି । ଗୋଦାବରୀନଦୀ ଯଦି ଚନ୍ଦ୍ରାନନା ସୀତାଙ୍କର ସମ୍ବାଦ ନ ଦିଏ, ତାକୁ ମଧ୍ୟ ଶୁଖାଇଦେବି । ଏହି ସମୟରେ ରାମ ଦେଖିଲେ କେତେକ ବିଶାଳ ପଦଚିହ୍ନ ସହିତ କେତେକ କୋମଳ ପଦଚିହ୍ନ ମଧ୍ୟ ପଡ଼ିଛି । ଏଥି ସହିତ ଭଗ୍ନ ଧନୁ, ତୂଣୀର ଓ ଖଣ୍ଡ ବିଖଣ୍ଡିତ ଏକ ରଥକୁ ଦେଖି ସେ ଲକ୍ଷ୍ମଣଙ୍କୁ କହିଲେ, ଦେଖ ଲକ୍ଷ୍ମଣ, ଏଠାରେ ବୈଦେହୀଙ୍କର ମାଳା ଅଳଙ୍କାର ସବୁ ଛିନ୍ନ ହୋଇପଡ଼ିଛି, ଏଇ ଦେଖ ତାଙ୍କର ପଦଚିହ୍ନ ଏବଂ ଏକ ରାକ୍ଷସର ବିଶାଳ ପଦଚିହ୍ନ । ପୁଣି ଧରଣୀତଳ ରୁଧିରବିନ୍ଦୁରେ ଆବୃତ ହୋଇଛି । ବୋଧହୁଏ ରାକ୍ଷସଗଣ ସୀତାଙ୍କୁ ନିହତ କରି ଖଣ୍ଡ ଖଣ୍ଡ କରି ଭକ୍ଷଣ କରିଛନ୍ତି । ସୌମିତ୍ରି, ବୋଧହୁଏ ସୀତାଙ୍କ ପାଇଁ ଦୁଇଜଣ ରାକ୍ଷସଙ୍କ ମଧ୍ୟରେ ଘୋର ଯୁଦ୍ଧ ହୋଇଛି । ଦେଖ, ଏହି ସ୍ୱର୍ଣ୍ଣଖଚିତ ବିଶାଳ ଧନୁ, ମଣିମୟ କବଚ, ଶତଶଳାକାଯୁକ୍ତ ଛତ୍ର, ସବୁ ଛିନ୍ନଭିନ୍ନ ହୋଇପଡ଼ିଛି । ସୁବର୍ଣ୍ଣବର୍ମ ଯୁକ୍ତ ବିଶାଳ ପିଶାଚମୁଖୀ ଗର୍ଦ୍ଦଭମାନେ ଯୁଦ୍ଧରେ ନିହତ ହୋଇ ଭୂତଳଶାୟୀ ହୋଇଛନ୍ତି । ମଣିକୁଣ୍ଡଳଶୋଭୀ ଦୁଇଜଣ ଚାମରଧାରୀ ବ୍ୟକ୍ତି ଏବଂ ଲଗାମ ଧରିଥିବା ରଥର ସାରଥି ମଧ୍ୟ ନିହତ ହୋଇଛନ୍ତି । ସୀତା ନିଶ୍ଚୟ ମୃତ, ଅପହୃତ ବା ଭକ୍ଷିତ । ଏହି ମହାବନରେ ସୀତା ଅପହୃତ ହେଲାବେଳେ ଧର୍ମ ମଧ୍ୟ ତାଙ୍କୁ ରକ୍ଷା କରିପାରିଲା ନାହିଁ ।

ଶୋକାର୍ତ୍ତ ରାମ ପୁଣି କହିଲେ – ସୌମ୍ୟ ଲକ୍ଷ୍ମଣ, କେଉଁ ବ୍ୟକ୍ତି ମୋର ଅପ୍ରିୟ ଆଚରଣ କରି ସୀତାଙ୍କୁ ଏହି ଅବସ୍ଥାରେ ପକାଇଲା ? ଯେଉଁ ବ୍ୟକ୍ତି ସର୍ବଲୋକର କର୍ତ୍ତା ଓ ବୀର, ସେ ଯଦି କରୁଣ ସ୍ୱଭାବର ହୁଅନ୍ତି, ତା ହେଲେ ଅଜ୍ଞାନତାବଶତଃ ଲୋକମାନେ ତାଙ୍କୁ ଅବଜ୍ଞା କରିଥାନ୍ତି । ମୁଁ ମୃଦୁସ୍ୱଭାବ, ଲୋକଙ୍କ ହିତରେ ନିରତ, ସଂଯତ ଓ ଦୟାଶୀଳ ହୋଇଥିବା ଯୋଗୁଁ ଦେବତାମାନେ ମୋତେ ନିର୍ବୀର୍ଯ୍ୟ ବୋଲି ମନେ କରୁଛନ୍ତି । ଯାହା ଗୁଣ ବୋଲି କୁହାଯାଏ, ତାହା ଦୋଷରେ ପରିଣତ ହୋଇଛି । ଆଜି ରାକ୍ଷସ ସମେତ ସର୍ବଭୂତର ସଂହାର ପାଇଁ ପ୍ରଳୟକାଳୀନ ମହାସୂର୍ଯ୍ୟ ଚନ୍ଦ୍ରଜ୍ୟୋସ୍ନାକୁ ଲୁପ୍ତ କରି ଉଦିତ ହେବାପରି ମୁଁ ସମସ୍ତ ଗୁଣକୁ ଘୋଡ଼ାଇ ରଖି ନିଜର ତେଜ ପ୍ରକାଶ କରିବି । ଯକ୍ଷ ଗନ୍ଧର୍ବ ପିଶାଚ ରାକ୍ଷସ କିନ୍ନର ମନୁଷ୍ୟ କେହି ସୁଖରେ ରହିପାରିବେ ନାହିଁ । ଦେବତାମାନେ ଯଦି ସୀତାଙ୍କୁ କୁଶଳରେ ମୋତେ ଫେରାଇ ନ ଦିଅନ୍ତି, ତା' ହେଲେ ଏହି ମୁହୂର୍ତ୍ତରେ ସେମାନେ ମୋର ବିକ୍ରମକୁ ଲକ୍ଷ୍ୟ କରିବେ । ଗ୍ରହମାନଙ୍କର ଗତି ରୁଦ୍ଧ ହେବ, ଚନ୍ଦ୍ର ଅନ୍ତର୍ହିତ ହେବ, ପର୍ବତମାନଙ୍କର ଅଗ୍ରଭାଗ ମଥିତ ହେବ, ଜଳାଶୟମାନ ଶୁଷ୍କ ହେବ, ବୃକ୍ଷ ଲତା ଗୁଳ୍ମରାଜି ଧ୍ୱସ୍ତ ହେବ ଓ ସାଗର ବିନଷ୍ଟ ହେବ । ତ୍ରିଭୁବନ ନଷ୍ଟ ହେଲେ ଦେବ, ଦୈତ୍ୟ, ପିଶାଚ, ରାକ୍ଷସ, ନର, ନାଗ, ମୃଗ, ପକ୍ଷୀ କେହି ରହିବେ ନାହିଁ ।

ରାମଙ୍କର ଚକ୍ଷୁ କ୍ରୋଧରେ ତାମ୍ରବର୍ଣ୍ଣ ହୋଇଗଲା ଏବଂ ଓଷ୍ଠ ଥରିବାକୁ ଲାଗିଲା । ସେ ବଳ୍କଳ ଓ ଅଜିନକୁ ଭଲଭାବରେ ବାନ୍ଧି ଓ ଜଟାରେ ଗଣ୍ଠି ପକାଇ ଧନୁ ଧାରଣ କରି କହିଲେ – ଲକ୍ଷ୍ମଣ, ଜରା, ମୃତ୍ୟୁକାଳ ଓ ଦୈବ ଯେପରି ଅନିବାର୍ଯ୍ୟ, ସେମାନେ ତାଙ୍କର ନିର୍ଦ୍ଦିଷ୍ଟ କର୍ମ କରି ଚାଲନ୍ତି ମୋତେ ସେହିପରି ମୋର କଳ୍ପିତ କାର୍ଯ୍ୟରୁ କେହି ନିବାରଣ କରିପାରିବେ ନାହିଁ ।

ରାମଙ୍କର ରୁଦ୍ରରୂପ ଦେଖି ଲକ୍ଷ୍ମଣ କୃତାଞ୍ଜଳି ହୋଇ କହିଲେ – ଆର୍ଯ୍ୟ, ତୁମେ ନିଜର ସଂଯମ, ମୃଦୁସ୍ୱଭାବ ଓ ଜଗତର ମଙ୍ଗଳକର୍ମ ପାଇଁ ପ୍ରସିଦ୍ଧି ଲାଭ କରିଛ । ବର୍ତ୍ତମାନ କ୍ରୋଧର ବଶବର୍ତ୍ତୀ ହୋଇ ନିଜର ସ୍ୱଭାବ ପରିତ୍ୟାଗ କରିବା ଉଚିତ ନୁହେଁ । ଚନ୍ଦ୍ରର କାନ୍ତି, ସୂର୍ଯ୍ୟର ତେଜ, ବାୟୁର ଗତି ଓ ପୃଥିବୀର କ୍ଷମାଗୁଣ ପରି ତୁମର ଅନୁପମ ଗୁଣାବଳୀ ସ୍ୱଭାବସିଦ୍ଧ । ଜଣେ ବ୍ୟକ୍ତିର ଅପରାଧରେ ତାହା ତୁମେ ନଷ୍ଟ କରିଦେବା ଉଚିତ ହେବ ନାହିଁ । ଏଠାରେ ଘୋର ଯୁଦ୍ଧ ହୋଇଛି, କିନ୍ତୁ ଏକ ବିଶାଳ ସେନା ଦ୍ୱାରା ତାହା ଘଟି ନାହିଁ । ଯେପରି ଜଣାଯାଉଛି, ଏହା ଜଣଙ୍କର ଯୁଦ୍ଧ । ତୁମେ ସମସ୍ତ ପ୍ରାଣୀଙ୍କର ଗତି ଏବଂ ଆଶ୍ରୟସ୍ଥଳ । ସାଗର ସରିତ୍ ଗିରିବନ ଦେବତା ଗନ୍ଧର୍ବ କେହି ତୁମର ପତ୍ନୀ ବିରହକୁ ସମର୍ଥନ କରୁ ନାହାନ୍ତି । ସୀତାଙ୍କ ଅପହରଣକାରୀ ବ୍ୟକ୍ତିକୁ ଆମେ ଖୋଜି ବାହାର କରିବା । ତୁମେ ଧୈର୍ଯ୍ୟ ଧର । ମହର୍ଷିମାନଙ୍କ ସାହାଯ୍ୟରେ ଆମେ ଏଠାରୁ ସମୁଦ୍ର ପର୍ଯ୍ୟନ୍ତ ସର୍ବତ୍ର ସୀତାଙ୍କୁ ଅନ୍ୱେଷଣ କରିବା । ଯଦି ନିଜର ବିନୟଶୀଳ ସାମନୀତି ଦ୍ୱାରା ସୀତାଙ୍କୁ ତୁମେ ଖୋଜି ପାଇବ ନାହିଁ, ତା ହେଲେ ସ୍ୱର୍ଣ୍ଣପୁଙ୍ଖଯୁକ୍ତ ବଜ୍ରତୁଲ୍ୟ ଶରମାନଙ୍କ ଦ୍ୱାରା ପ୍ରଳୟ ସୃଷ୍ଟି କରିବ । କାକୁତ୍ସ୍ଥ, ତୁମେ ଆଶ୍ୱସ୍ତ ହୁଅ । ସଂସାରରେ କେଉଁ ପ୍ରାଣୀର ବିପଦ ନାହିଁ ? ତୁମେ ଯଦି ଉପସ୍ଥିତ ବିପଦକୁ ସହ୍ୟ କରି ନ ପାରିବ, ତା' ହେଲେ ବିପଦରେ ପଡ଼ିଥିବା ସାମାନ୍ୟ ଲୋକମାନଙ୍କର କି ଅବସ୍ଥା ହେବ ? ବସୁଧାର କମ୍ପନ ଅଛି, ଚନ୍ଦ୍ର ସୂର୍ଯ୍ୟ ରାହୁ ଓ କେତୁଗ୍ରସ୍ତ ହୁଅନ୍ତି । ତେଣୁ ବିପଦରୁ କେହି ମୁକ୍ତ ନୁହେଁ । ବୀର, ବୈଦେହୀ ମୃତ ବା ଅପହୃତ ହେଲେ ମଧ୍ୟ ତୁମ ପରି ମହାପ୍ରାଜ୍ଞ ବ୍ୟକ୍ତିଙ୍କର ଶୋକସନ୍ତପ୍ତ ହେବା ଉଚିତ ନୁହେଁ । ବର୍ତ୍ତମାନ ଶତ୍ରୁସଂହାର ପୂର୍ବକ ସୀତାଙ୍କୁ ଉଦ୍ଧାର କରିବା ପାଇଁ ଉଦ୍ୟତ ହୁଅ ।

## ୫୮ ॥ ବୀର ଜଟାୟୁଙ୍କ ମୃତ୍ୟୁ

ଲକ୍ଷ୍ମଣଙ୍କର ଯୁକ୍ତିଯୁକ୍ତ ସାରଗର୍ଭ କଥାରେ ରାମ କ୍ରୋଧ ସମ୍ବରଣ କଲେ । ସେ ଧନୁ ଉପରେ ଭରା ଦେଇ ଠିଆ ହୋଇ କହିଲେ – ବତ୍ସ, ଏବେ ଆମେ କ'ଣ କରିବା, କୁଆଡ଼େ ଯିବା ଏବଂ ସୀତାଙ୍କୁ କେଉଁଠି ଖୋଜି ପାଇପାରିବା ? ଲକ୍ଷ୍ମଣ କହିଲେ, ଏହି ହିଂସ୍ରଜନ୍ତୁପୂର୍ଣ୍ଣ ଜନସ୍ଥାନ ମଧ୍ୟରେ ବହୁ ଦୁର୍ଗମ ଗିରିକନ୍ଦର ଅରଣ୍ୟମାନ ରହିଛି । ଏହା ଭୟଙ୍କର ରାକ୍ଷସମାନଙ୍କର ଆବାସଭୂମି । ଏହିଠାରେ ଆମେ ଭଲଭାବରେ ସୀତାଙ୍କୁ ଖୋଜିବା ଦରକାର । ରାମ ଧନୁଶର ଧରି ଲକ୍ଷ୍ମଣଙ୍କ ସହିତ କିଛି ଦୂର ଯିବା ପରେ

ଦେଖିଲେ, ଗିରିଶୃଙ୍ଗ ପରି ଏକ ବିଶାଳ ଗୃଧ୍ର ରକ୍ତାକ୍ତ ଦେହରେ ପଡ଼ି ରହିଛି । ରାମ ତାଙ୍କୁ ଦେଖି ଲକ୍ଷ୍ମଣଙ୍କୁ କହିଲେ ଏହି ଗୃଧ୍ରରୂପଧାରୀ ରାକ୍ଷସ ନିଶ୍ଚୟ ସୀତାଙ୍କୁ ମାରି ଭକ୍ଷଣ କରିଛି ଏବଂ ବର୍ତ୍ତମାନ ଆନନ୍ଦରେ ବିଶ୍ରାମ କରୁଛି । ମୁଁ ଏହିକ୍ଷଣି ଏହାକୁ ବଧ କରିବି ଏହା କହି ରାମ ଧନୁରେ ଏକ କ୍ଷୁରାସ୍ତ୍ର ସଂଯୋଗ କରି ଗୃଧ୍ରଆଡ଼କୁ ଧାବିତ ହେଲେ । ସେହି ଗୃଧ୍ର ଅନ୍ୟ କେହି ନୁହେଁ, ଜଟାୟୁ ।

ଜଟାୟୁ ରାମଙ୍କୁ କହିଲେ – ଆୟୁଷ୍ମାନ, ତୁମେ ମୋତେ ମାର ନାହିଁ । ତୁମେ ବନରେ ଯେଉଁ ସୀତାଙ୍କୁ ଅନ୍ୱେଷଣ କରୁଛ, ରାବଣ ତାଙ୍କୁ ହରଣ କରିବା ସଙ୍ଗେ ସଙ୍ଗେ ମୋର ପ୍ରାଣ ମଧ୍ୟ ହରଣ କରିଛି । ରାଘବ, ତୁମର ଓ ଲକ୍ଷ୍ମଣଙ୍କର ଅନୁପସ୍ଥିତିରେ ବଳବାନ୍ ରାବଣ ସୀତାଙ୍କୁ ଅପହରଣ କରି ନେଉଥିବାର ଦେଖି, ମୁଁ ତାର ପଥରୋଧ କରି ତା ସହିତ ଯୁଦ୍ଧ କଲି । ତାର ରଥ, ଛତ୍ର, ଧନୁ, ଶର, ଅଶ୍ୱ, ସାରଥି ସମସ୍ତେ ନଷ୍ଟ ହେଲେ ଏବଂ ସେ ବିରଥ ହୋଇ ଭୂପାତିତ ହେଲା । କିନ୍ତୁ ମୁଁ ଶ୍ରାନ୍ତ ହୋଇ ପଡ଼ିବାରୁ ସେ ଖଡ୍‌ଗାଘାତରେ ମୋର ପକ୍ଷଛେଦନ କରି ଆକାଶକୁ ଉଠି ଚାଲିଗଲା । ରାକ୍ଷସ ମୋତେ ମାରିଦେଇଛି, ତୁମେ ଆଉ ମାରନା ।

ରାମ ଜଟାୟୁଙ୍କୁ ଚିହ୍ନିପାରି ଧନୁଶର ପରିତ୍ୟାଗପୂର୍ବକ ତାଙ୍କୁ ଆଲିଙ୍ଗନ କଲେ ଏବଂ ଶୋକରେ ବିବଶ ହୋଇ ରୋଦନ କରିବାକୁ ଲାଗିଲେ । ସେ କହିଲେ, ମୋ' ପରି ଦୁର୍ଭାଗା ବ୍ୟକ୍ତି ସଂସାରରେ କମ୍ ଅଛନ୍ତି । ରାଜ୍ୟ ନାଶ ଓ ବନବାସ ପରେ ମୁଁ ସୀତାଙ୍କୁ ହରାଇଲି ଏବଂ ବର୍ତ୍ତମାନ ପିତୃସଖା ବୃଦ୍ଧ ଜଟାୟୁଙ୍କର ମୃତ୍ୟୁ ହେବାକୁ ଯାଉଛି । ମୋର ଏପରି ଦୁର୍ଭାଗ୍ୟ ଯେ ସମୁଦ୍ରରେ ପ୍ରବେଶ କଲେ ମଧ୍ୟ ତାହା ଶୁଷ୍କ ହୋଇଯିବ ।

ରାମ ଲକ୍ଷ୍ମଣଙ୍କୁ କହିଲେ, ମୋ ପାଇଁ ଯୁଦ୍ଧ କରି ଜଟାୟୁ ରାକ୍ଷସ ହସ୍ତରେ ନିହତ ହୋଇଛନ୍ତି । ବର୍ତ୍ତମାନ ତାଙ୍କର ଶେଷ ସମୟ । ସେ କ'ଣ କହିପାରିବେ କିପରି ସେ ନିହତ ହେଲେ ? ରାବଣ କାହିଁକି ସୀତାଙ୍କୁ ହରଣ କଲା ? ମୁଁ ତାର କ'ଣ ଅପରାଧ କରିଥିଲି ? ରାବଣକବଳିତ ଚନ୍ଦ୍ରାନନା ସୀତାଙ୍କର ମୋ ପାଇଁ କିଛି ବାର୍ତ୍ତା ଅଛି କି ? ରାକ୍ଷସ ରାବଣ କିଏ, ତାର ବଳବୀର୍ଯ୍ୟ କିପରି ଓ କେଉଁଠାରେ ତାର ବାସସ୍ଥାନ ? ଜଟାୟୁ ଅସ୍ପଷ୍ଟ ଭାବରେ କ୍ଷୀଣ ସ୍ୱରରେ କହିଲେ – ବତ୍ସ, ରାକ୍ଷସରାଜ ରାବଣ ମାୟାଦ୍ୱାରା ପ୍ରବଳ ଝଡ଼ବୃଷ୍ଟି ସୃଷ୍ଟି କରି ସୀତାଙ୍କୁ ହରଣ କରିନେଇଛି । ମୁଁ ତା' ସହିତ ଲଢ଼ି କ୍ଳାନ୍ତ ହୋଇ ପଡ଼ିବାରୁ ସେ ମୋ ପକ୍ଷଦ୍ୱୟ ଛେଦନ କରି ବିଦେହନନ୍ଦିନୀଙ୍କୁ ଧରି ଦକ୍ଷିଣ ଦିଗକୁ ପ୍ରସ୍ଥାନ କଲା । ରାଘବ, ମୋର ପ୍ରାଣ ରୁଦ୍ଧ ହୋଇ ଆସୁଛି, ଦୃଷ୍ଟିରେ ଭ୍ରମ ହେଲାଣି । ବୃକ୍ଷସବୁ ସୁବର୍ଣ୍ଣମୟ ଦେଖାଯାଉଛି । କାକୁତ୍ସ୍ଥ, ରାବଣ ବିନ୍ଦ ନାମକ ଏକ ମୁହୂର୍ତ୍ତରେ ସୀତାଙ୍କୁ ହରଣ କରିଛି । ଏହି ମୁହୂର୍ତ୍ତର ବିଶେଷତ୍ୱ ହେଉଛି, ଏତେବେଳେ ଯେଉଁ ଧନ ନଷ୍ଟ ହୁଏ, ସେହି ଧନ ପୁଣି ତାର ସ୍ୱାମୀ ପାଖକୁ ଶୀଘ୍ର ଫେରିଆସେ । ତେଣୁ ବ୍ୟଥିତ ହୁଅ ନାହିଁ । ବଳିଶୀକଣ୍ଟା ଗିଳିଥିବା ମାଛପରି ରାବଣ ଶୀଘ୍ର ବିନଷ୍ଟ ହେବ ଏବଂ ତୁମେ ଯୁଦ୍ଧରେ ବିଜୟୀ ହୋଇ ପୁଣି ଜନକନନ୍ଦିନୀଙ୍କ ସହିତ ମିଳିତ ହେବ । ଜଟାୟୁ ରକ୍ତବାନ୍ତି କରି ଶେଷ ନିଃଶ୍ୱାସ ତ୍ୟାଗ କରିବା ପୂର୍ବରୁ ରାବଣର ପରିଚୟ ଦେଇ କହିଲେ, ରାବଣ ବିଶ୍ରବାଙ୍କର ପୁତ୍ର ଓ

କୁବେରଙ୍କର ଭ୍ରାତା । ଏତିକି କହି ସେ ରହିଗଲେ । 'କହ କହ' ରାମ ଜଟାୟୁଙ୍କୁ ଅନୁରୋଧ କଲେ । ମାତ୍ର ଜଟାୟୁ ନିଜର ଶିର ଓ ଶରୀରକୁ ଭୂଲୁଣ୍ଠିତ କରି ପ୍ରାଣ ତ୍ୟାଗ କଲେ ।

ଜଟାୟୁଙ୍କ ମୃତ୍ୟୁ ପରେ ରାମ ଦୀନଭାବରେ ବିଳାପ କଲେ । ସେ କହିଲେ – ବିହଙ୍ଗରାଜ ମୋ ପାଇଁ ପ୍ରାଣ ବିସର୍ଜନ କଲେ । ତାଙ୍କ ପରି ସାଧୁ, ଧର୍ମାଚାରୀ, ବୀର ଶରଣଦାତା ଦୁର୍ଲଭ । ସୀତାହରଣ ଜନିତ ଦୁଃଖ ଅପେକ୍ଷା ଜଟାୟୁଙ୍କର ନିଧନ ମୋତେ ଅଧିକ ଦୁଃଖ ଦେଉଛି । ମୋର ପିତା ମହାଯଶା ଦଶରଥ ଯେପରି ମୋର ମାନନୀୟ, ପକ୍ଷିରାଜ ଜଟାୟୁ ମଧ୍ୟ ମୋର ସେହିପରି ମାନ୍ୟ । ଲକ୍ଷ୍ମଣ, ବର୍ତ୍ତମାନ ଶୀଘ୍ର ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମାପନ କରିବା ।

ଲକ୍ଷ୍ମଣ କାଷ୍ଠ ଆହରଣ କଲେ । ରାମ କାଷ୍ଠ ଘର୍ଷଣ କରି ଅଗ୍ନି ଉତ୍ପାଦନ କଲେ ଏବଂ ଜଟାୟୁଙ୍କର ମୃତ ଦେହକୁ ଚିତାରେ ଆରୋପଣ କରି ସେଥିରେ ମନ୍ତ୍ରପାଠପୂର୍ବକ ଅଗ୍ନି ସଂଯୋଗ କଲେ । ଏହାପରେ ଗୋଦାବରୀ କୂଳକୁ ଯାଇ ଜଟାୟୁଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ କଲେ ଓ ଜଳାଞ୍ଜଳି ଦେଇ ଉଦକକ୍ରିୟା ଶେଷକଲେ । ରାମଙ୍କ ଦ୍ୱାରା ତାଙ୍କର ସଂସ୍କାରକ୍ରିୟା ହେବାଦ୍ୱାରା ଜଟାୟୁ ଦିବ୍ୟଗତି ଲାଭ କଲେ ।

## ୫୯ ।। କବନ୍ଧ

ରାମ ଲକ୍ଷ୍ମଣ ସୀତାଙ୍କ ଅନ୍ୱେଷଣରେ ପଶ୍ଚିମଦିଗକୁ କିଛିଦୂର ଯାଇ ପୁଣି ଦକ୍ଷିଣ ଅଭିମୁଖରେ ଯାତ୍ରାକଲେ । ସେମାନେ ଜନସ୍ଥାନଠାରୁ ତିନିକୋଶ ଯାଇଛନ୍ତି, କ୍ରୌଞ୍ଚାରଣ୍ୟ ନାମକ ଏକ ମହାରଣ୍ୟରେ ପ୍ରବେଶ କଲେ । ସେହି ନିବିଡ଼ ବନ ବହୁ ପୁଷ୍ପିତ ବୃକ୍ଷ ଓ ମୃଗପକ୍ଷୀଙ୍କ ଦ୍ୱାରା ପୂର୍ଣ୍ଣ ଥିଲା । ମଝିରେ ମଝିରେ ରାମ ଲକ୍ଷ୍ମଣ ସ୍ଥାନେ ସ୍ଥାନେ ବିଶ୍ରାମ କରୁଥିଲେ । ଏହିପରି କ୍ରୌଞ୍ଚାରଣ୍ୟ ମଧ୍ୟରେ ତିନିକୋଶ ବାଟ ଯିବାପରେ ସେମାନେ ମାତଙ୍ଗାଶ୍ରମରେ ପହଞ୍ଚିଲେ । ଏହି ଶ୍ୱାପଦସଙ୍କୁଳ ଆଶ୍ରମବନ ଅତ୍ୟନ୍ତ ଘଞ୍ଚ ଓ ଦୁର୍ଗମ ଥିଲା । ସେମାନେ ବାଟ ଖୋଜି ଖୋଜି ଯାଉ ଯାଉ ପାତାଳ ସଦୃଶ ଗଭୀର ଏକ ଅନ୍ଧକାରାଚ୍ଛନ୍ନ ଗିରିଗହ୍ୱର ଦେଖିବାକୁ ପାଇଲେ । ଏହି ସମୟରେ ଏକ ବୀଭତ୍ସ, ଲମ୍ବୋଦରା, ବିକୃତବଦନା, ତୀକ୍ଷ୍ଣଦନ୍ତଯୁକ୍ତା ଭୀଷଣାକୃତି ରାକ୍ଷସୀ ସେଠାରେ ପହଞ୍ଚି ରାମ ଲକ୍ଷ୍ମଣଙ୍କୁ ଦେଖି ଅଗ୍ରବର୍ତ୍ତୀ ଲକ୍ଷ୍ମଣଙ୍କୁ ଆଲିଙ୍ଗନ କରି କହିଲା, ମୋର ନାମ ଅୟୋମୁଖୀ; ତୁମେ ମୋର ପ୍ରିୟ ପତି ହେଲ, ଚାଲ ପର୍ବତ ଶିଖର ଓ ନଦୀପୁଳିନମାନଙ୍କରେ ମୋ ସହିତ ବିହାର କରିବ । ଲକ୍ଷ୍ମଣ ଅତିଶୟ କ୍ରୁଦ୍ଧ ହୋଇ ଖଡ଼୍‌ଗାଘାତରେ ରାକ୍ଷସୀର ନାସା କର୍ଣ୍ଣ ଓ ସ୍ତନଦ୍ୱୟ କାଟି ପକାଇଲେ । ରାକ୍ଷସୀ ଭୟାନକ ଚିତ୍କାର କରି ଘନ ଅରଣ୍ୟ ମଧ୍ୟରେ ପଶିଗଲା ।

ବେଗରେ ଯାଇ ରାମ ଲକ୍ଷ୍ମଣ ଆହୁରି ଏକ ଗହନ ବନ ମଧ୍ୟରେ ପ୍ରବେଶ କଲେ । ଲକ୍ଷ୍ମଣ କହିଲେ, ମୋର ବାମ ବାହୁ ସ୍ପନ୍ଦିତ ଓ ମନ ଉଦ୍‌ବିଗ୍ନ ହେଉଛି ଏବଂ ଅନିଷ୍ଟକାରୀ

ବହୁ ଅଲକ୍ଷଣ ଦେଖାଯାଉଛି । ବର୍ତ୍ତମାନ ଆସନ୍ନ ବିପଦ ପ୍ରତି ଆମେ ପ୍ରସ୍ତୁତ ହୋଇ ରହିବା । କିନ୍ତୁ ଏକ ନିଦାରୁଣ ବଞ୍ଜୁଳକ ପକ୍ଷୀ ଯେପରି ଭାବରେ ରାବ କରୁଛି, ସେଥିରୁ ଜଣାଯାଏ ଯେ ଯୁଦ୍ଧରେ ଆମର ବିଜୟ ନିଶ୍ଚିତ ।

ଏହି ସମୟରେ ଏକ ପ୍ରଚଣ୍ଡ ପ୍ରଭଞ୍ଜନରେ ବନ ଏବଂ ଆକାଶ ଆଚ୍ଛାଦିତ ହେବାପରି ଜଣାଗଲା । ରାମ ଲକ୍ଷ୍ମଣ କେଉଁଆଡୁ ସେହି ଭୀଷଣ ଶବ୍ଦ ଆସୁଛି ଲକ୍ଷ୍ୟ କରୁଥିବା ବେଳେ ଏକ ଭୀମକାୟ ବିଶାଳ ରାକ୍ଷସକୁ ଦେଖିବାକୁ ପାଇଲେ । ଗ୍ରୀବା ମସ୍ତକହୀନ ସେହି ଅଦ୍‌ଭୁତ କବନ୍ଧର ମୁହଁ ତାର ପେଟରେ ରହିଥିଲା । ତାର ବକ୍ଷରେ ଏକମାତ୍ର ଚକ୍ଷୁ ଅଗ୍ନିଶିଖାପରି ପ୍ରଜ୍ୱଳିତ ହେଉଥିଲା । ସେ ନିଜର ଯୋଜନପରିମିତ ଭୁଜଦ୍ୱୟକୁ ବିସ୍ତାର କରି ହସ୍ତୀ, ସିଂହ, ମୃଗ ଓ ଭଲ୍ଲୁକମାନଙ୍କୁ ଭକ୍ଷଣ କରୁଥିଲା । ଏକ କୋଶ ଦୂରରୁ ସେ ତାର ବିଶାଳ ଭୁଜଦ୍ୱୟକୁ ପ୍ରସାରିତ କରି ବଳପୂର୍ବକ ରାମଲକ୍ଷ୍ମଣଙ୍କୁ ଗ୍ରହଣ କରି ପୀଡ଼ିତ କଲା । ସେମାନେ ରାକ୍ଷସ ଦ୍ୱାରା ଏହିପରି ଆକୃଷ୍ଟ ହୋଇ ବିବଶ ହୋଇ ପଡ଼ିଲେ । ରାମ ଧୀର, ତେଣୁ ସେ ଶୀଘ୍ର ନିଜକୁ ସଂଯତ କରିନେଲେ । କିନ୍ତୁ ଲକ୍ଷ୍ମଣ ବ୍ୟାକୁଳ ହୋଇ କହିଲେ, ରାକ୍ଷସ ମୋତେ କବଳିତ କରିଛି । ମୋତେ ବଳି ସ୍ୱରୂପ ଛାଡ଼ିଦେଇ ତୁମେ ନିଜେ ଚାଲିଯାଅ । ଅଚିରେ ବୈଦେହୀଙ୍କୁ ମୁକ୍ତ କରି ପିତୃରାଜ୍ୟ ଭୋଗ କର । ମନେ ରଖ, ମୁଁ ଯେପରି ତୁମର ସ୍ମୃତିପଟରୁ ଲୁଚି ନ ଯାଏ । ରାମ କହିଲେ ବୀର ଲକ୍ଷ୍ମଣ, ତୁମପରି ବ୍ୟକ୍ତି ପକ୍ଷରେ ଏପରି ଭୟ ଓ ବିଷାଦ ଶୋଭା ପାଉ ନାହିଁ ।

ଏହି ସମୟରେ କବନ୍ଧ ପଚାରିଲା– ବୃଷସ୍କନ୍ଧ ଧନୁଖଡ୍‌ଗଧାରୀ ତୁମେ ଦୁଇଜଣ କିଏ ? କାହିଁକି ଏ ମହାବନରେ ବିଚରଣ କରୁଛ ? ମୁଁ କ୍ଷୁଧାର୍ତ୍ତ । ମୋ ମୁହଁରୁ ତୁମେ ବର୍ତ୍ତି ଯାଇ ପାରିବ ନାହିଁ । ଲକ୍ଷ୍ମଣ ରାମଙ୍କୁ କହିଲେ, ଏହି ରାକ୍ଷସର ଏକମାତ୍ର ବଳ ହେଉଛି ବାହୁବଳ । ଏହାର ବାହୁଦ୍ୱୟ ଶୀଘ୍ର ଛେଦନ କରାଯିବା ଉଚିତ । ଏହା ଶୁଣି କ୍ରୁଦ୍ଧ ରାକ୍ଷସ ନିଜର ଭୟଙ୍କର ମୁଖବ୍ୟାଦାନ କରି ସେମାନଙ୍କୁ ଗ୍ରାସ କରିବା ପାଇଁ ବାହାରିଲା । ଆଉ ଅପେକ୍ଷା ନ କରି ରାମ ତାର ଦକ୍ଷିଣ ବାହୁ ଓ ଲକ୍ଷ୍ମଣ ବାମ ବାହୁକୁ ଖଡ୍‌ଗ ଦ୍ୱାରା ଛେଦନ କଲେ । ବାହୁ ଛିନ୍ନ ହେବାରୁ ଦିଗ୍‌ବିଦିଗ ଓ ମେଦିନୀ ପ୍ରକମ୍ପିତ କରି ରାକ୍ଷସ ଭୂତଳରେ ପଡ଼ିଗଲା । ଭୂପତିତ ରାକ୍ଷସ ରାମ ଲକ୍ଷ୍ମଣଙ୍କ ପରିଚୟ ପାଇବା ପରେ କହିଲା, ତୁମେ ମୋର ବାହୁ ଛେଦନ କରିଥିବାରୁ ତୁମ ଦୁହିଁଙ୍କୁ ମୁଁ ସ୍ୱାଗତ କରୁଛି । ଦିନେ ସୂର୍ଯ୍ୟ, ଚନ୍ଦ୍ର, ଇନ୍ଦ୍ରଙ୍କ ପରି ମୋର ଶରୀର ଖୁବ୍ ସୁନ୍ଦର ଓ ବଳବାନ୍ ଥିଲା । କିନ୍ତୁ ମୁଁ ରାକ୍ଷସରୂପରେ ବନବାସୀ ଋଷିମାନଙ୍କୁ ଭୟଭୀତ କରିବାରୁ ସେମାନେ ମୋ' ଉପରେ ଅସନ୍ତୁଷ୍ଟ ହେଲେ । ଥରେ ସ୍ଥୂଳଶିରା ନାମକ ଜଣେ ମହର୍ଷି ବିବିଧ ବନଜାତ ଫଳମୂଳ ସଂଗ୍ରହ କରୁଥିବା ବେଳେ ମୁଁ ତାଙ୍କୁ ରାକ୍ଷସରୂପେ ଭୟ ଦେଖାଇଲି । ସେ କ୍ରୁଦ୍ଧ ହୋଇ ଅଭିଶାପ ଦେଲେ, ତୁ ଏହି ନିନ୍ଦନୀୟ ରାକ୍ଷସରୂପ ସବୁବେଳପାଇଁ ଧାରଣ କରି ରହ । ମୁଁ ଶାପରୁ ମୁକ୍ତ ହେବାପାଇଁ ବହୁ ପ୍ରାର୍ଥନା କରିବାରୁ ସେ କହିଲେ, ରାମ ଯେତେବେଳେ ତୋର ଭୁଜଦ୍ୱୟ ଛେଦନ କରି ନିର୍ଜନ ବନରେ ଦଗ୍ଧ କରିବେ, ସେତେବେଳେ ତୁ ତୋର ପୂର୍ବର ସୁନ୍ଦର ରୂପ ଫେରି ପାଇବୁ ।

କବନ୍ଧ ପୁଣି କହିଲା, ମହାବାହୁ ଲକ୍ଷ୍ମଣ, ମୁଁ ଦନୁର ପୁତ୍ର । ଉଗ୍ର ତପସ୍ୟା ଦ୍ୱାରା ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରିବାରୁ ସେ ମୋତେ ଦୀର୍ଘ ଆୟୁ ଦେଇଥିଲେ । ଆୟୁ ଓ ବଳ ଗର୍ବରେ ମୁଁ ଇନ୍ଦ୍ରଙ୍କୁ ଅବଜ୍ଞା କରି ଆକ୍ରମଣ କରିବାରୁ ସେ ବଜ୍ରାଘାତ ଦ୍ୱାରା ମୋତେ ଏପରି ବିକୃତ କରିଦେଲେ ଯେ ମୋର ଜଂଘଦ୍ୱୟ ଓ ମସ୍ତକ ଶରୀର ମଧ୍ୟରେ ପଶିଗଲା । ମୁଁ ଦେଖିଲି, ଏହା ଅପେକ୍ଷା ମୃତ୍ୟୁ ବରଂ ଭଲ, ମୁଁ ତାଙ୍କୁ ମୃତ୍ୟୁ ପ୍ରାର୍ଥନା କରିବାରୁ ସେ କହିଲେ ତୋର ଦୀର୍ଘ ଆୟୁ ପାଇଁ ପିତାମହ ବ୍ରହ୍ମା ବର ଦାନ କରିଛନ୍ତି, ତାହା ଅନ୍ୟଥା ହେବ ନାହିଁ । ମୁଁ କହିଲି, ଇନ୍ଦ୍ର, ମୋର ଜଂଘ, ମସ୍ତକ ଓ ମୁଖ ଭଗ୍ନ ହୋଇଛି । ମୁଁ କିପରି ଅନାହାରରେ ଦୀର୍ଘକାଳ ବଞ୍ଚିପାରିବି ? ଇନ୍ଦ୍ର ସଦୟ ହୋଇ ମୋର ବାହୁଦ୍ୱୟକୁ ଏକ ଯୋଜନ ଦୀର୍ଘ କରିଦେଲେ ଏବଂ ମୁହଁରେ ତୀକ୍ଷ୍ଣଦନ୍ତ ସବୁ ଖଞ୍ଜି ଦେଲେ । ତେଣୁ କବନ୍ଧ ହେଲେ ମଧ୍ୟ ମୁଁ ଦୀର୍ଘ ବାହୁ ଦ୍ୱାରା ବନଚାରୀ ଜୀବମାନଙ୍କୁ ଧରିଆଣି ମୋର ତୀକ୍ଷ୍ଣଦନ୍ତ ସାହାଯ୍ୟରେ ସେମାନଙ୍କୁ ଭକ୍ଷଣ କରେ । ଇନ୍ଦ୍ର ମୋତେ କହିଥିଲେ, ଯେତେବେଳେ ରାମ ଲକ୍ଷ୍ମଣ ତୋର ବାହୁଦ୍ୱୟ ଛେଦନ କରିବେ, ତୁ ତୋର ପୂର୍ବ ସୁନ୍ଦର ରୂପରେ ସ୍ୱର୍ଗକୁ ଯିବୁ । ମହାରାଜ ରାମ, ତୁମ ଛଡ଼ା ମୁଁ ସମସ୍ତଙ୍କର ଅବଧ୍ୟ ଥିଲି । ବର୍ତ୍ତମାନ ତୁମେ ଅଗ୍ନି ସଂସ୍କାର କରି ମୋତେ ଶାପରୁ ମୁକ୍ତ କର । ମୁଁ ତୁମକୁ ମିତ୍ର ସଂଗ୍ରହ ପାଇଁ ଯଥାର୍ଥ ପରାମର୍ଶ ଦେଇ ପାରିବି ।

ରାମ କହିଲେ କବନ୍ଧ, ଆମେ ତୁମକୁ ଦଗ୍ଧ କରିବାର ବ୍ୟବସ୍ଥା କରୁଛୁ । କିନ୍ତୁ ଆମେ ଶୋକାର୍ତ୍ତ । ରାକ୍ଷସ ରାବଣ ମୋର ଯଶସ୍ୱିନୀ ପ୍ରିୟପତ୍ନୀଙ୍କୁ ଅପହରଣ କରିନେଇଛି । ଆମେ ତାର ନାମଟି ଛଡ଼ା ତାର ରୂପ, ପ୍ରଭାବ, ଶକ୍ତି ଓ ନିବାସସ୍ଥାନ ବିଷୟରେ କିଛି ଜାଣି ନାହୁଁ । କେବଳ ଅନାଥ ଭାବରେ ବନକୁ ବନ ବିଚରଣ କରୁଛୁ । ତୁମେ ଏ ସମ୍ପର୍କରେ ପ୍ରକୃତ ସମ୍ବାଦ ଦେଇ ଆମର ମଙ୍ଗଳ କର । ଦାନବ କହିଲା, ମୋର ଦିବ୍ୟଜ୍ଞାନ ନାହିଁ । ତେଣୁ ସୀତା କେଉଁଠାରେ ଅଛନ୍ତି ମୁଁ ଜାଣେ ନାହିଁ । ଶାପ ଦୋଷରୁ ମୋର ଶକ୍ତି ନଷ୍ଟ ହୋଇଯାଇଛି । ତେଣୁ ସୀତାଙ୍କୁ ଅପହରଣ କରିଥିବା ସେହି ମହାବଳଶାଳୀ ରାକ୍ଷସ ସମ୍ପର୍କରେ ମୁଁ କିଛି କହିପାରିବି ନାହିଁ । କିନ୍ତୁ ମୁଁ ଦଗ୍ଧ ହେବାପରେ ପୂର୍ବ ରୂପକୁ ଫେରିଆସି ରାବଣକୁ ଜାଣିଥିବା ବ୍ୟକ୍ତି ସମ୍ପର୍କରେ କହିପାରିବି । ସେ ବ୍ୟକ୍ତି ପୂର୍ବେ ପୃଥିବୀ ଭ୍ରମଣ କରିଥିଲେ । ତୁମେ ସେହି ବ୍ୟକ୍ତି ସହିତ ମିତ୍ରତା କଲେ ତାଙ୍କ ସାହାଯ୍ୟରେ ସୀତାଙ୍କୁ ଉଦ୍ଧାର କରିପାରିବ ।

ସୂର୍ଯ୍ୟାସ୍ତ ପୂର୍ବରୁ ରାକ୍ଷସକୁ ଦାହ କରିବା ପାଇଁ ରାମ ଲକ୍ଷ୍ମଣ ଏକ ଗିରିଗର୍ତ୍ତ ଆବିଷ୍କାର କଲେ । ହାତୀମାନେ ଭାଙ୍ଗିଥିବା କାଠ ସବୁ ଯାହା ପୂର୍ବରୁ ପଡ଼ି ଶୁଖି ଯାଇଥିଲା, ତାକୁ ଯୋଗାଡ଼ କରି ଆଣିଲେ ଏବଂ ବଡ଼ ବଡ଼ ହୁଳାମାନ ଜାଳି ସେଥିରେ ଅଗ୍ନିସଂଯୋଗ କଲେ ଏବଂ କବନ୍ଧକୁ ତାହା ମଧ୍ୟରେ ଦଗ୍ଧ କଲେ । ଚିତା ମଧ୍ୟରୁ ନିର୍ମଳବସ୍ତ୍ର, ଦିବ୍ୟମାଳା ଓ ଅଳଙ୍କାର ଧାରଣ କରି ଏକ ସୁନ୍ଦର ପୁରୁଷ ସବେଗରେ ଉତ୍‌ଥିତ ହେଲା । ହଂସଯୋଚିତ ଏକ ଦୀପ୍ତିମୟ ବିମାନ ଆରୋହଣ କରି ସେ ଅନ୍ତରୀକ୍ଷକୁ ଉଠିଯାଇ କହିଲା, ରାଘବ, ତୁମେ ଯେଉଁ ଉପାୟରେ ସୀତାଙ୍କୁ ଲାଭ କରିବ, ତାହା କହୁଛି, ଶୁଣ । ସଂସାରରେ ଛ'ଟି

ଉପାୟ ଅଛି । ସନ୍ଧି, ବିଗ୍ରହ, ଯାନ, ଆସନ, ଦ୍ୱୈଧୀଭାବ ଓ ସମାଶ୍ରୟ । ବର୍ତ୍ତମାନ ତୁମକୁ ଏହି ଶେଷୋକ୍ତ ଉପାୟଟିକୁ ଅବଲମ୍ବନ କରିବାକୁ ପଡ଼ିବ । ଅର୍ଥାତ୍, ତୁମ ସହିତ ସମାଦଶାପନ୍ନ ବ୍ୟକ୍ତି ସହିତ ତୁମେ ଶୀଘ୍ର ମିତ୍ରତା କରିବା ଆବଶ୍ୟକ । ସେହିପରି ଜଣେ ବ୍ୟକ୍ତି ହେଉଛନ୍ତି, ବାନରରାଜ ସୁଗ୍ରୀବ, ଯେ କି ବାଳୀଦ୍ୱାରା ବିତାଡ଼ିତ ହୋଇ ପମ୍ପାସର ତୀରବର୍ତ୍ତୀ ଋଷ୍ୟମୂକ ପର୍ବତରେ ଚାରିଜଣ ବାନରଙ୍କ ସହିତ ବାସ କରୁଛନ୍ତି । ସେ ଶୂର, ବୀର, ବିନୟୀ, ବକ୍ତା, ସତ୍ୟପ୍ରତିଜ୍ଞ, ଧୀର ଏବଂ ଦକ୍ଷ । ସୀତା ଅନ୍ୱେଷଣରେ ସେ ତୁମର ମିତ୍ର ହୋଇ ତୁମକୁ ସାହାଯ୍ୟ କରିବେ । ତୁମେ ବାନର ବୋଲି ତାଙ୍କୁ ଅବଜ୍ଞା କରିବ ନାହିଁ । ସେ କାମରୂପୀ ଓ କୃତଜ୍ଞ । ବର୍ତ୍ତମାନ ସେ ପୁଣି ସାହାଯ୍ୟପ୍ରାର୍ଥୀ । ତୁମେ ଓ ସେ ମିଶିଲେ ତାଙ୍କର କାର୍ଯ୍ୟ ସାଧିତ ହେବ । ରାଘବ, ସୂର୍ଯ୍ୟପୁତ୍ର ସୁଗ୍ରୀବଙ୍କ ସହିତ ଅଗ୍ନିକୁ ସାକ୍ଷୀ ରଖି ତୁମେ ମିତ୍ରତା କର । ସେ ନଦୀ ପର୍ବତ ଗିରିଦୁର୍ଗମାନ ବାନରମାନଙ୍କ ସାହାଯ୍ୟରେ ଖୋଜି ତୁମର ପତ୍ନୀଙ୍କୁ ସନ୍ଧାନ କରିପାରିବେ । ଅନିନ୍ଦିତା ସୀତା ମେରୁ ପର୍ବତରେ ଥା'ନ୍ତୁ ବା ପାତାଳରେ ଥା'ନ୍ତୁ ମହାକାୟ ବାନରମାନଙ୍କୁ ଧରି ସୁଗ୍ରୀବ ସେଠାରେ ପ୍ରବେଶ କରିପାରିବେ ଏବଂ ରାକ୍ଷସମାନଙ୍କୁ ନିହତ କରି ତୁମର ପ୍ରିୟାଙ୍କୁ ତୁମ ହସ୍ତରେ ପ୍ରଦାନ କରିବେ ।

କେଉଁ ବାଟରେ ଗଲେ ଋଷ୍ୟମୂକ ପଡ଼ିବ, ତାହା ବତାଇଦେବାକୁ ଯାଇ ଦିବ୍ୟରୂପ କବନ୍ଧ କହିଲା— ରାମ, ଆମ୍ବ, ପଣସ, ଜାମୁ, କେନ୍ଦୁ, ବର, ଅଶ୍ୱତ୍ଥ, କଦମ୍ବ, ନାଗେଶ୍ୱର, ଅଶୋକ, କନିଅର ଆଦି ଯେଉଁସବୁ ଗଛ ପଶ୍ଚିମ ଦିଗରେ ଦେଖାଯାଉଛି, ତୁମେ ସେହି ଦିଗକୁ ଯାଅ । ସେଠାରେ ବହୁ ରସଯୁକ୍ତ ମଧୁର ଫଳ ତୁମକୁ ଖାଇବାକୁ ମିଳିବ । ସେଠାରୁ ଗଲେ ନନ୍ଦନବନ ତୁଲ୍ୟ ଆହୁରି ଏକ ବନ ପଡ଼ିବ । ସେଠାରେ ବର୍ଷସାରା ପୁଷ୍ପିତ ତରୁ, ଲତା ଓ ଫଳ ଭାରରେ ଅବନତ ବୃକ୍ଷମାନ ଦେଖିବାକୁ ମିଳେ । ତାହାର ଅମୃତତୁଲ୍ୟ ଫଳସବୁ ଭୋଜନ କରି ଏପରି ବନରୁ ବନାନ୍ତର ଗଲେ ତୁମେ ପମ୍ପାସର କୂଳରେ ପହଞ୍ଚିବ । ଏହି ସରୋବରରେ ଶୈବାଳ ନାହିଁ । ଏହାର ତଳ ବାଲୁକାମୟ । କମଳଉତ୍ପଳଶୋଭିତ ଏହାର ସ୍ୱଚ୍ଛ ସୁନ୍ଦର ଜଳରେ ହଂସ କ୍ରୌଞ୍ଚ ଆଦି ବହୁ ପକ୍ଷୀ କୂଜନ କରୁଥାନ୍ତି । ସେମାନେ ମନୁଷ୍ୟକୁ ଦେଖି କେବେ ଭୟ କରନ୍ତି ନାହିଁ । ଘୃତପିଣ୍ଡ ତୁଲ୍ୟ ସେହି ସ୍ଥୂଳକାୟ ପକ୍ଷୀ ତୁମର ଭୋଜନ ପାଇଁ ବେଶ୍ ସ୍ୱାଦୁକର ହେବ । ସେଥିରେ ରୋହି, ବେକଟି, ଚୁଙ୍ଗୁଡ଼ି ମାଛ ଆଦି ବହୁ ଜାତିଆ ମାଛ ମିଳିବେ । ଲକ୍ଷ୍ମଣ ସେହିସବୁ ଏକକଣ୍ଟିଆ ମାଛମାନଙ୍କୁ ଶରଦ୍ୱାରା ମାରି ଓ କାତି ଖୋଳ ଛଡ଼ାଇ ନିଆଁରେ ପୋଡ଼ି ତୁମକୁ ଖାଇବାକୁ ଦେବେ । ଭୋଜନ ପରେ ତୁମର ପିଇବା ପାଇଁ ପମ୍ପାର ନିର୍ମଳ ଜଳକୁ ପଦ୍ମପତ୍ରରେ ଆଣିଦେବେ । ପଦ୍ମଗନ୍ଧଯୁକ୍ତ ଏହାର ସ୍ୱଚ୍ଛ ଜଳରେ ଆକୃଷ୍ଟ ହୋଇ ପୁଷ୍ପମାଲ୍ୟଧାରୀ ବୃଷଭତୁଲ୍ୟ ବାନରମାନେ ସେଠାରେ ବିଚରଣ କରୁଥିବାର ତୁମେ ଦେଖି ପାରିବ । ପମ୍ପାର ପଶ୍ଚିମ ତୀରରେ ମତଙ୍ଗ ମହର୍ଷିଙ୍କର ଗୋପନୀୟ ଅନୁପମ ଆଶ୍ରମ ଦେଖିବାକୁ ପାଇବ । ଏହି ଆଶ୍ରମ ମତଙ୍ଗବନ ନାମରେ ନାମିତ । ଦିନେ ମତଙ୍ଗ ଋଷିଙ୍କର ଶିଷ୍ୟମାନେ ସେଠାରେ ଅତି ସାବଧାନରେ ବାସ କରୁଥିଲେ । ସେମାନଙ୍କ ତପୋଜନିତ

ସ୍ୱେଦବିନ୍ଦୁ ଭୂତଳରେ ପଡ଼ି ମାଲ୍ୟରୂପେ ପରିଣତ ହୋଇଥିଲା । ଏବେ ମଧ୍ୟ ତାହା ଅମଳିନ ହୋଇ ରହିଛି । ସେମାନେ ଆଉ ନାହାନ୍ତି । କିନ୍ତୁ ସେମାନଙ୍କର ସେବାକାରିଣୀ ଶବରୀ ନାମରେ ଜଣେ ଶ୍ରମଣୀ ଏବେ ମଧ୍ୟ ସେଠାରେ ବାସକରେ । ସେହି ଚିରଞ୍ଜୀବିନୀ ଶବରୀ ସର୍ବଲୋକର ନମସ୍ୟ ତୁମକୁ ଦର୍ଶନ କରି ସ୍ୱର୍ଗଲୋକକୁ ଯିବ, ସେଥିପାଇଁ ଅପେକ୍ଷା କରି ରହିଛି । ପମ୍ପାର ସମ୍ମୁଖରେ ପୁଷ୍ପିତ ବୃକ୍ଷପୂର୍ଣ୍ଣ ଋଷ୍ୟମୂକ ପର୍ବତ । ଶିଶୁ ହସ୍ତୀମାନଙ୍କ ଦ୍ୱାରା ରକ୍ଷିତ ବ୍ରହ୍ମାନିର୍ମିତ ଏହି ପର୍ବତ ଶିଖରରେ ସୁପ୍ତବ୍ୟକ୍ତି ଯଦି ଧନଲାଭର ସ୍ୱପ୍ନ ଦେଖେ, ସେ ଧନ ଲାଭ କରେ । ସେହି ଋଷ୍ୟମୂକ ପର୍ବତର ପ୍ରକାଣ୍ଡ ଗୁହାରେ ସୁଗ୍ରୀବ ତାଙ୍କର ଚାରିଜଣ ବାନର ସହଚରଙ୍କ ସହିତ ରହନ୍ତି । ବେଳେ ବେଳେ ପର୍ବତର ଶିଖର ଦେଶରେ ମଧ୍ୟ ତୁମେ ତାଙ୍କୁ ଦେଖିପାରିବ ।

ଏହିପରି ଋଷ୍ୟମୂକ ପର୍ବତର ସ୍ଥିତି ଓ ରାମଙ୍କର ଯାତ୍ରାପଥ ବିଷୟରେ ସବିଶେଷ ବିବରଣୀ ଦେଇ ଜ୍ୟୋତିର୍ମୟ ରୂପଧାରୀ କବନ୍ଧ ଦିବ୍ୟଲୋକ ଗମନ କଲେ । ରାମ ଲକ୍ଷ୍ମଣ ଋଷ୍ୟମୂକ ଅଭିମୁଖରେ ଯାତ୍ରା କଲେ ।

## ୬୦ ।। ଶବରୀର ଆତିଥ୍ୟ

କବନ୍ଧ ପ୍ରଦର୍ଶିତ ପମ୍ପାସର ପଥରେ ଯାତ୍ରା କରି ରାମ ଲକ୍ଷ୍ମଣ ଶବରୀର ରମଣୀୟ ଆଶ୍ରମରେ ଉପସ୍ଥିତ ହେଲେ । ସିଦ୍ଧା ଶବରୀ କୃତାଞ୍ଜଳି ହୋଇ ରାମଲକ୍ଷ୍ମଣଙ୍କର ପଦବନ୍ଦନା କରି ସେମାନଙ୍କୁ ପାଦ୍ୟ ଓ ଆଚମନୀୟ ପ୍ରଦାନ କଲା ।

ରାମ ପଚାରିଲେ ତପସ୍ୱିନୀ, ତୁମର ତପସ୍ୟାରେ କୌଣସି ବିଘ୍ନ ଘଟୁ ନାହିଁ ତ ? ନିରନ୍ତର ତାହା ବୃଦ୍ଧି ଲାଭ କରୁଛି ତ ? ତୁମର କ୍ରୋଧ ଓ ଆହାରକୁ ତୁମେ ସଂଯତ କରି ପାରିଛ ତ ? ଚାରୁଭାଷିଣୀ, ତୁମେ ନୀତିନିୟମ ସବୁ ପାଳନ କରୁଛ ତ ? ତୁମେ ନିଜେ ସୁଖୀ ରହି ତୁମର ଗୁରୁସେବା ଫଳବତୀ କରୁଛ ତ ?

ସିଦ୍ଧ ପୁରୁଷମାନଙ୍କ ଦ୍ୱାରା ସମ୍ମାନିତ ବୃଦ୍ଧା ଶବରୀ କହିଲା, ଆଜି ତୁମର ଦର୍ଶନ ପାଇ ମୁଁ ତପସ୍ୟାରେ ସିଦ୍ଧି ଲାଭ କଲି । ଆଜି ମୋର ସାଧନା ସଫଳ ହେଲା ଏବଂ ମୋର ଗୁରୁସେବା ସାର୍ଥକ ହେଲା । ନରୋତ୍ତମ, ତୁମେ ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ । ତୁମର ପୂଜାକରି ମୁଁ ମୋର ଜନ୍ମ ସଫଳ କରି ସ୍ୱର୍ଗଲାଭ କରିବି । ଅରିନ୍ଦମ, ତୁମକୁ ଆଖିରେ ଦେଖି ମୁଁ ଆଜି ପବିତ୍ର ହେଲି । ତୁମର ପ୍ରସାଦରେ ମୁଁ ଅକ୍ଷୟ ଲୋକ ଲାଭ କରିବି ।

ଶବରୀ ରାମଙ୍କ ଦର୍ଶନ ବିଷୟରେ ବହୁକାଳରୁ ଅପେକ୍ଷା କରିଥିବା କଥା ଜଣାଇ ତାଙ୍କୁ କହିଲା, ତୁମେ ଚିତ୍ରକୂଟରେ ପହଞ୍ଚିବାକ୍ଷଣି ଯେଉଁମାନଙ୍କର ମୁଁ ପରିଚର୍ଯ୍ୟା କରୁଥିଲି, ସେହି ପ୍ରଭାନ୍ୱିତ ଋଷିମାନେ ସ୍ୱର୍ଗାରୋହଣ କଲେ । କିନ୍ତୁ ତା ପୂର୍ବରୁ ସେମାନେ ମୋତେ କହିଥିଲେ, 'ତୋ'ର ରାମ ନିଶ୍ଚୟ ଏହି ପବିତ୍ର ଆଶ୍ରମକୁ ଆସିବେ । ସେ ଓ ଲକ୍ଷ୍ମଣ

ତୋର ଆତିଥ୍ୟ ଗ୍ରହଣ କରିବେ । ତାଙ୍କର ଦର୍ଶନ ପାଇ ତୁ ଅକ୍ଷୟ ଲୋକ ଲାଭ କରିବୁ ।' ସେହିଦିନଠାରୁ ପୁରୁଷୋତ୍ତମ, ମୁଁ ତୁମପାଇଁ ପମ୍ପାତୀରଜାତ ବହୁ ବନ୍ୟଦ୍ରବ୍ୟ ସଞ୍ଚୟ କରି ରଖିଛି ।

ବ୍ରହ୍ମବାଦିନୀ ଶବରୀର କଥା ଶୁଣି ରାମ କହିଲେ, କବନ୍ଧଠାରୁ ମୁଁ ତୁମର ପ୍ରଭାବ ବିଷୟରେ ଶୁଣିଛି । ଯଦି ତୁମେ ଇଚ୍ଛାକର, ମୁଁ ତାହା ପ୍ରତ୍ୟକ୍ଷ ଭାବରେ ଦେଖିବାକୁ ଚାହେ । ଶବରୀ କହିଲା– ରଘୁନନ୍ଦନ, ମୃଗପକ୍ଷୀପୂର୍ଣ୍ଣ ମେଘବର୍ଣ୍ଣ ଏହି ନିବିଡ଼ ମତଙ୍ଗବନକୁ ଦେଖ । ଏହିଠାରେ ମୋର ପୂଜିତ ବିଶୁଦ୍ଧାତ୍ମା ଗୁରୁମାନେ ମନ୍ତ୍ରୋଚ୍ଚାରଣ କରି ସେମାନଙ୍କର ଦେହକୁ ଅଗ୍ନିରେ ଆହୁତି ଦେଇଥିଲେ । ଏହା ହେଉଛି ପ୍ରତ୍ୟକ୍ଷସ୍ଥଳୀ ବେଦୀ, ମୋର ପରମପୂଜ୍ୟ ଗୁରୁମାନେ ଶ୍ରମଯୋଗୁଁ ସେମାନଙ୍କର କମ୍ପିତ ହସ୍ତରେ ଦେବତାମାନଙ୍କୁ ପୁଷ୍ପାଞ୍ଜଳି ଦାନ କରୁଥିଲେ । ଉପବାସଜନିତ କ୍ଳାନ୍ତି ଯୋଗୁଁ ସେମାନେ କୁଆଡ଼େ ଯିବାଆସିବା କରିପାରୁ ନ ଥିଲେ । କିନ୍ତୁ ସେମାନେ ଇଚ୍ଛା କରିବାମାତ୍ରେ ସେମାନଙ୍କ ସ୍ନାନ ପାଇଁ ସପ୍ତସମୁଦ୍ର ଏଠାକୁ ଆସୁଥିଲେ । ବୃକ୍ଷମାନଙ୍କ ଉପରେ ସେମାନେ ଶୁଖାଇବା ବଲ୍କଳମାନ ଏ ପର୍ଯ୍ୟନ୍ତ ଶୁଖି ନାହିଁ । ନୀଳୋତ୍ପଳ ସହିତ ଯେଉଁସବୁ ପୁଷ୍ପରେ ସେମାନେ ଦେବାର୍ଚ୍ଚନ କରିଥିଲେ, ତାହା ଏ ପର୍ଯ୍ୟନ୍ତ ସତେଜ ଅଛି । ମଉଳି ନାହିଁ । ଏହି ତପଃସିଦ୍ଧ ଆଶ୍ରମ ବିଷୟରେ ତୁମେ ଶୁଣିଲ । ବର୍ତ୍ତମାନ ଯେଉଁ ମହର୍ଷିମାନଙ୍କର ମୁଁ ପରିଚର୍ଯ୍ୟା କରୁଥିଲି, ସେମାନଙ୍କ ପାଖକୁ ଯିବାପାଇଁ ମୁଁ ଇଚ୍ଛା କରୁଛି । ତୁମେ ଅନୁମତି ଦେଲେ ମୁଁ ଏହି ଶରୀର ତ୍ୟାଗ କରିବି ।

ରାମ କହିଲେ, ତୁମର ଭକ୍ତିରେ ମୁଁ ସନ୍ତୁଷ୍ଟ । ତୁମେ ତୁମର ଅଭିଳଷିତ ସ୍ଥାନକୁ ଯାତ୍ରା କର ।

ରାମଙ୍କର ଅନୁମତି ପାଇ ଜଟା-କୃଷ୍ଣାଜିନ-ବଲ୍କଳଧାରିଣୀ ବୃଦ୍ଧା ଶବରୀ ସେହି ମୁହୂର୍ତ୍ତରେ ନିଜର ଜୀର୍ଣ୍ଣଶରୀର ତ୍ୟାଗ କରିବାକୁ ଇଚ୍ଛା କରି ନିଜକୁ ଅଗ୍ନିରେ ଆହୁତି ଦେଲେ ଏବଂ ଦିବ୍ୟ ବସ୍ତ୍ର, ଅଳଙ୍କାର, ମାଳାଦ୍ୱାରା ଶୋଭିତ ହୋଇ ଅପୂର୍ବ ରୂପରେ ପୁଣ୍ୟଲୋକ ଗମନ କଲେ । ତାଙ୍କର ଦୀପ୍ତିରେ ଚତୁର୍ଦ୍ଦିଗ ଆଲୋକିତ ହୋଇଗଲା ।

ଶବରୀର ସ୍ୱର୍ଗାରୋହଣ ପରେ ରାମ ଲକ୍ଷ୍ମଣଙ୍କୁ କହିଲେ – ସୌମ୍ୟ, ଏହି ଆଶ୍ରମରେ ଶୁଦ୍ଧଚେତା ମହର୍ଷିମାନେ ବହୁ ଆଶ୍ଚର୍ଯ୍ୟଜନକ କାର୍ଯ୍ୟ କରିଛନ୍ତି । ଏଠାରେ ମୃଗ ଓ ଶାର୍ଦ୍ଦୂଳମାନେ ବିଶ୍ୱସ୍ତ । ନାନା ଜାତିର ପକ୍ଷୀ ଏଠାରେ ବାସ କରନ୍ତି । ସପ୍ତସମୁଦ୍ରରେ ସ୍ନାନ କରି ଆମେ ପିତୃମାନଙ୍କୁ ତର୍ପଣ କଲେ । ଆମର ସମସ୍ତ ଅମଙ୍ଗଳ ଦୂରହେଲା । ବର୍ତ୍ତମାନ ଶୁଭ ସମୟ ଉପସ୍ଥିତ । ମୁଁ ପ୍ରସନ୍ନ ଅନୁଭବ କରୁଛି । ଅଦୂରରେ ଋଷ୍ୟମୂକ ଗିରି । ସେଠାରେ ବାଳିଭୟତ୍ରସ୍ତ ସୁଗ୍ରୀବ ବାନରମାନଙ୍କ ସହିତ ବାସ କରୁଛନ୍ତି । ସୀତାଙ୍କୁ ଲାଭ କରିବାପାଇଁ ମୁଁ ତାଙ୍କର ଅନୁଗ୍ରହ ଉପରେ ନିର୍ଭର କରେ । ଚାଲ, ଋଷ୍ୟମୂକ ଯାଇ ସୁଗ୍ରୀବଙ୍କ ସହିତ ମିଳିତ ହେବା ।

## ୬୧ ।। ପମ୍ପାବନରେ ବସନ୍ତ : ରାମଙ୍କର ଦୁଃଖ

ରାମ ଲକ୍ଷ୍ମଣଙ୍କ ସହିତ ପଦ୍ମ ଓ ନୀଳୋତ୍ପଳ ସୁବାସିତ, ମୟୂରଧ୍ୱନିତ ପମ୍ପାସରର ତୀରବର୍ତ୍ତୀ ବନ ଦେଇ ଋଷ୍ୟମୂକ ପର୍ବତଆଡ଼କୁ ଅଗ୍ରସର ହେଲେ ।

ପମ୍ପା ସରୋବରର ଅପୂର୍ବ ପ୍ରାକୃତିକ ଶୋଭା ରାମଙ୍କୁ ମୁଗ୍ଧ କଲା । ରାମ କହିଲେ – ଲକ୍ଷ୍ମଣ, ଏହି ପମ୍ପାର ଜଳ ବୈଦୂର୍ଯ୍ୟମଣି ପରି ନିର୍ମଳ । ତୀରବର୍ତ୍ତୀ ବନ ଅତି ସୁନ୍ଦର ଦେଖାଯାଉଛି । ବିଶାଳ ବୃକ୍ଷସବୁ ପର୍ବତ ଶିଖର ପରି ଉତ୍ତୁଙ୍ଗ ଶାଖାମାନ ବିସ୍ତାର କରିଛନ୍ତି । ଭରତର ଦୁଃଖ ଓ ସୀତାଙ୍କ ବିରହରେ ମୁଁ ଶୋକାର୍ତ୍ତ । କିନ୍ତୁ ପମ୍ପା ଏବଂ ତା'ର ତୀରବର୍ତ୍ତୀ କାନନ ମୋତେ ମୋହିତ କରୁଛି । ବିଭିନ୍ନ ମୃଗ ଓ ପକ୍ଷିଗଣ ପମ୍ପା ସରୋବରକୁ ଘେରି ରହିଛନ୍ତି । ଏହାର ନୀଳବର୍ଣ୍ଣ ତୃଣଭୂମି ମୋର ଚିତ୍ତ ହରଣ କରୁଛି । ଘନ ବୃକ୍ଷରାଜି ସେମାନଙ୍କ ପୁଷ୍ପଭାରରେ ଲଦି ହୋଇପଡ଼ିଛନ୍ତି । ପୁଷ୍ପିତ ଲତାମାନେ ବୃକ୍ଷସବୁକୁ ନିବିଡ଼ ଆଲିଙ୍ଗନ କରି ରହିଛନ୍ତି । ବୃକ୍ଷରୁ ବହୁ ଫୁଲ ଝଡ଼ି ତଳେ ପଡ଼ିରହିଛି, ବହୁ ବୃକ୍ଷରୁ ଫୁଲ ଝଡ଼ିବାରେ ଲାଗିଛି । ପୁଣି ବୃକ୍ଷମାନଙ୍କରେ ବହୁଫୁଲ ଲଟକି ରହିଛି । ଯେପରି ଜଣାଯାଉଛି,ପବନ ଫୁଲମାନଙ୍କ ସହିତ କ୍ରୀଡ଼ା କରୁଛି । ଫୁଲଭରା ଗଛର ଶାଖାମାନଙ୍କୁ ହଲାଇ ପବନ ଖେଳୁଥିବାବେଳେ ଭ୍ରମରମାନଙ୍କୁ ଦେଖ, ସେମାନେ କିପରି ତା ପଛେ ପଛେ ଗୀତ ଗାଇ ବୁଲୁଛନ୍ତି । ଦକ୍ଷିଣାପବନରେ ଚନ୍ଦନର ଗନ୍ଧ ବହିଆସୁଛି । ସୁବର୍ଣ୍ଣ ମୁକୁଟଧାରୀ ପୀତ ବସନ ବ୍ୟକ୍ତିମାନଙ୍କ ପରି ପୁଷ୍ପିତ କର୍ଣ୍ଣିକାରବୃକ୍ଷମାନେ ଶୋଭା ପାଉଛନ୍ତି । ଏହି ବସନ୍ତ ସମୟରେ ଚତୁର୍ଦ୍ଦିଗରୁ ମତ୍ତବିହଙ୍ଗମାନଙ୍କ କାକଳି ଶୁଣାଯାଉଛି ।

ସୀତାବିରହ ଦୁଃଖରେ ପୀଡ଼ିତ ରାମ ପୁଣି ଲକ୍ଷ୍ମଣଙ୍କୁ କହିଲେ, ସୌମିତ୍ରି, ସୀତାଙ୍କର ବିରହ ମୋ ପକ୍ଷରେ ସହିବା କଷ୍ଟକର ହେଲାଣି । କୋକିଳର କୂଜନ ଶୁଣୁଛ ତ ? ସେ ମୋତେ ଥଟ୍ଟା କରୁ ନାହିଁ ତ କ'ଣ କରୁଛି ? ପୁଣି ଶୁଣ ଡାହୁକର କୁହାଟ । ଥରେ ଏହି ଶବ୍ଦ ଶୁଣି ଆନନ୍ଦରେ ସୀତା ମୋତେ ଆଶ୍ରମ ବାହାରକୁ ଡାକି ଆଣିଥିଲେ ଏବଂ ଏହି ପକ୍ଷୀକୁ ଦେଖାଇ ବହୁତ ଖୁସି ହୋଇଥିଲେ । ମଧୁମାସ ଅନ୍ୟମାନଙ୍କ ପାଇଁ ମଧୁମୟ ହୋଇପାରେ । କିନ୍ତୁ ଏହି ମତ୍ତଭ୍ରମର ଓ ବିହଙ୍ଗମାନଙ୍କର କୂଜନ, ଚାରିଆଡ଼େ ପୁଷ୍ପର ଉତ୍ସବ, ନବ ପଲ୍ଲବମାନଙ୍କର ରକ୍ତିମା ମୋତେ ଅଗ୍ନିତୁଲ୍ୟ ଦଗ୍ଧ କରୁଛି । ସେହି ମୃଦୁମଧୁରଭାଷିଣୀ ସୀତାଙ୍କୁ ନ ଦେଖିଲେ ମୋର ଜୀବନରେ କୌଣସି ପ୍ରୟୋଜନ ନାହିଁ । ଲକ୍ଷ୍ମଣ, ବର୍ତ୍ତମାନ ସୀତା କେଉଁଠାରେ ଥିବେ ? ମୋ ବିନା ସେ କିପରି ରହୁଥିବେ ? ସେହି ପଦ୍ମପଳାଶଲୋଚନା ମୃଦୁଭାଷିଣୀ ପ୍ରିୟା ବୋଧହୁଏ ଆଉ ଜୀବନରେ ନ ଥିବେ । ସୌମିତ୍ରି, ପୁଷ୍ପିତ କାନନ ଓ ଶ୍ୟାମଳ ଘାସଭୂମିଯୁକ୍ତ ଏହି ମନୋରମ ପମ୍ପା ସରୋବର କୂଳରେ ମୁଁ ଯଦି ସୀତାଙ୍କ ସହିତ ରହିବାର ସୁଯୋଗ ପା'ନ୍ତି, ତା' ହେଲେ ଇନ୍ଦ୍ରପଦକୁ ମଧ୍ୟ କାମନା କରନ୍ତି'ନାହିଁ କି ଅଯୋଧ୍ୟାକୁ ଫେରିଯିବାକୁ ଇଚ୍ଛା କରନ୍ତି ନାହିଁ । କିନ୍ତୁ ଯେ ମୋର ସହଚରୀ ଭାବରେ ଏହି ବନବାସକୁ ଆନନ୍ଦମୟ କରୁଥିଲେ, ସେହି ଚାରୁହାସିନୀଙ୍କ ମୃଦୁ ମଧୁର କଥା କ'ଣ ମୁଁ ଆଉ ଶୁଣିପାରିବି ?

ରାମଙ୍କୁ ଏହିପରି ଅନାଥଭାବରେ ବିଳାପ କରୁଥିବାର ଦେଖି ଲକ୍ଷ୍ମଣ କହିଲେ, ପୁରୁଷୋତ୍ତମ, ବର୍ତ୍ତମାନ ସମୟରେ ଶୋକ ନ କରି ଦମ୍ଭ ଧର । ରାବଣ ପାତାଳରେ ଥାଉ ବା ଯେଉଁଠାରେ ଥାଉ, ସେ କେବେ ରକ୍ଷା ପାଇବ ନାହିଁ । ଯଦି ସେ ନିଜର ମାତାଙ୍କ ଗର୍ଭରେ ଯାଇ ଆଶ୍ରୟ ନେଇଥାଏ, ତା' ହେଲେ ମଧ୍ୟ ତାକୁ ମୁଁ ନିହତ କରିବି । ତୁମେ ଦୀନଭାବ ତ୍ୟାଗ କରି ପ୍ରକୃତିସ୍ଥ ହୁଅ । ଉଦ୍ୟମ ନ କଲେ କୌଣସି କାର୍ଯ୍ୟରେ ସିଦ୍ଧିଲାଭ ହୁଏ ନାହିଁ । ଉତ୍ସାହଠାରୁ ବଳି ବଳ ନାହିଁ । ଉତ୍ସାହୀ ବ୍ୟକ୍ତି ପକ୍ଷରେ ଯେକୌଣସି ବସ୍ତୁ ଦୁର୍ଲ୍ଲଭ ନୁହେଁ । ଉତ୍ସାହର ଆଶ୍ରୟ ନେଇ ଆମେ ଜାନକୀଙ୍କୁ ଉଦ୍ଧାର କରିବା । ମନରେ ଅବସାଦକୁ ସ୍ଥାନ ନ ଦେଇ ଉଦ୍ୟମ କରିବା । ଆପଣ ଶୀଘ୍ର କାମ ଓ ଶୋକ ପରିତ୍ୟାଗ କରନ୍ତୁ । ଆପଣଙ୍କ ପରି ମହାପୁରୁଷଙ୍କ ପକ୍ଷରେ ମୋହଗ୍ରସ୍ତ ହେବା ଶୋଭାପାଏ ନାହିଁ ।

ରାମ ଲକ୍ଷ୍ମଣଙ୍କ କଥାରେ ଆଶ୍ୱସ୍ତ ହେଲେ ଏବଂ ଧୈର୍ଯ୍ୟ ଅବଲମ୍ବନ କରି ପମ୍ପା ତଟଭୂମିରେ ଚାଲିବାକୁ ଲାଗିଲେ । ସେହି ସମୟରେ ବାନରରାଜ ସୁଗ୍ରୀବ ଋଷ୍ୟମୂକ ପର୍ବତ ନିକଟରେ ଭ୍ରମଣ କରୁଥିଲେ । ଗଜପରି ମନ୍ଦଗାମୀ ସୁନ୍ଦର ରୂପକାନ୍ତିଯୁକ୍ତ ଏହି ଦୁଇଜଣ ଅସ୍ତ୍ରଧାରୀ ବୀରଙ୍କୁ ଆସୁଥିବାର ଦେଖି ତାଙ୍କର ଭୟସଞ୍ଚାର ହେଲା ଏବଂ ଗିରିସ୍ଥିତ ତାଙ୍କର ଆଶ୍ରୟସ୍ଥଳରେ ସେ ଶୀଘ୍ର ଆଶ୍ରୟ ନେଲେ ।

## ୬୨ ।। ରାମଙ୍କ ସହିତ ହନୁମାନଙ୍କର ସାକ୍ଷାତ

ସୁଗ୍ରୀବ ତାଙ୍କର ବିଶ୍ୱସ୍ତ ମନ୍ତ୍ରୀମାନଙ୍କ ସହିତ ମନ୍ତ୍ରଣା କରିବାକୁ ଲାଗିଲେ । ସେ କହିଲେ, ଏ ଦୁଇଜଣ ଛଦ୍ମବେଶରେ ନିଶ୍ଚୟ ବାଳୀର ଚର ହୋଇ ଏଠାକୁ ଆସୁଛନ୍ତି । ତା' ନ ହେଲେ ଅସ୍ତ୍ରଧାରଣ କରି ମୁନିବେଶରେ ସେମାନଙ୍କ ବୁଲୁଥିବାର ଉଦ୍ଦେଶ୍ୟ କ'ଣ ?

ବାକ୍ୟବିନୋଦ ହନୁମାନ କହିଲେ, ଏହି ମଳୟପର୍ବତରେ ବାଳୀର ଭୟ ଆଦୌ ନାହିଁ । ବାନରଶ୍ରେଷ୍ଠ, ତୁମେ ଯେଉଁ ବାଳୀ ଭୟରେ ଏଠାକୁ ପଳାଇଆସିଛ, ମୁଁ ସେ ବାଳୀକୁ ଏଠାରେ ଦେଖୁ ନାହିଁ । ତୁମେ ଅଯଥାରେ ଭୟଭୀତ ହୋଇ ନିଜର ବାନର ସ୍ୱଭାବ ପ୍ରକାଶ କରୁଛ । ଲଘୁଚେତା ବ୍ୟକ୍ତି ପରି ଅସ୍ଥିର ନ ହୋଇ ଜ୍ଞାନ ଓ ବୁଦ୍ଧିଦ୍ୱାରା ସମସ୍ତ କଥା ବିଚାର କର । ସୁଗ୍ରୀବ କହିଲେ, ଏହି ଧନୁର୍ବାଣ ଖଡ୍‌ଗଧାରୀ ବୀରପୁରୁଷଙ୍କୁ ଦେଖି କାହା ମନରେ ଭୟଜାତ ନ ହେବ ? ଛଦ୍ମବେଶୀ ଶତ୍ରୁମାନଙ୍କୁ ଚିହ୍ନିବା ବିଜ୍ଞ ବ୍ୟକ୍ତିର କର୍ତ୍ତବ୍ୟ । ସେମାନେ ବିଶ୍ୱାସୀ ହୋଇ ଛିଦ୍ର ଅନ୍ୱେଷଣ କରନ୍ତି । ଶତ୍ରୁର ନିଧନ ପାଇଁ ରାଜାମାନେ ବହୁ ଉପାୟ ଅବଲମ୍ବନ କରନ୍ତି । ବାଳୀ ସେ ସମସ୍ତ ବିଷୟରେ ପାରଙ୍ଗମ । ତେଣୁ ହେ ବାନର, ତୁମେ ସାଧାରଣ ବେଶରେ ଯାଇ ସେମାନଙ୍କର ଆକାର ପ୍ରକାର ଓ ଗତିବିଧି ଲକ୍ଷ୍ୟକର ଏବଂ ସେମାନଙ୍କର ବିଶ୍ୱାସ ଜନ୍ମାଇ ତାଙ୍କର ମନର କଥା ବୁଝିଆସ । ତାଙ୍କର ମନରେ କୌଣସି ମନ୍ଦ ଅଭିପ୍ରାୟ ଅଛି କି ନାହିଁ, ଜାଣିବାପାଇଁ ଚେଷ୍ଟାକର ।

ହନୁମାନ କପଟରେ ଭିକ୍ଷୁବେଶ ଧାରଣ କରି ରାମ ଲକ୍ଷ୍ମଣଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ ବିନୀତ ଭାବରେ ସେମାନଙ୍କୁ ପ୍ରଣାମ କରି ମୃଦୁ ମଧୁର ସ୍ୱରରେ କହିଲେ,

ଆପଣ ଦୁଇଜଣ କିଏ ? କାହିଁକି ଆପଣ ଏଠାକୁ ଆସିଛନ୍ତି ? ଆପଣଙ୍କୁ ଦେଖି ମୃଗପଶୁ ଓ ଅନ୍ୟାନ୍ୟ ବନଚରଗଣ ତ୍ରସ୍ତ ହେଉଛନ୍ତି । ଆପଣମାନେ ଯୁବକ, ବୀର, ପରାକ୍ରମୀ, ରୂପବାନ୍ । ଆପଣଙ୍କର ବର୍ଣ୍ଣ ସ୍ୱର୍ଣ୍ଣକାନ୍ତି ତୁଲ୍ୟ । ଆପଣମାନେ ଦେବତା ବା ରାଜକୁମାରଙ୍କ ପରି ଦେଖାଯାଉଛନ୍ତି । କିନ୍ତୁ ଜଟାବଳ୍କଳ କାହିଁକି ଧାରଣ କରିଛନ୍ତି ? ତା' ହେଲେ ଆପଣମାନେ କିଏ ? କ'ଣ ଚନ୍ଦ୍ର, ସୂର୍ଯ୍ୟ, ଏହି ପୃଥିବୀକୁ ଓହ୍ଲାଇଆସି ବନଭୂମିକୁ ଆଲୋକିତ କରୁଛନ୍ତି ?

ସେ ଦୁହିଁଙ୍କଠାରୁ କୌଣସି ଉତ୍ତର ନ ପାଇ ହନୁମାନ ନିଜର ଉଦ୍ଦେଶ୍ୟକୁ ଗୋପନ ରଖି ପାରିଲେ ନାହିଁ । ସେ ଯେପରି ରାମଙ୍କୁ ଦେଖି ଅଭିଭୂତ ହୋଇଗଲେ । ସେ ସୁଗ୍ରୀବ ଓ ତାଙ୍କର ପରିଚୟ ଦେଇ କହିଲେ, ଧର୍ମାତ୍ମା ବାନରରାଜ ସୁଗ୍ରୀବ ନିଜ ଭାଇ ଦ୍ୱାରା ବିତାଡ଼ିତ ହୋଇ ଦୁଃଖରେ ସାରା ଜଗତରେ ଭ୍ରମଣ କରୁଛନ୍ତି । ମୁଁ ସେହି ସୁଗ୍ରୀବଙ୍କ ଦ୍ୱାରା ପ୍ରେରିତ ବାୟୁପୁତ୍ର ବାନର ହନୁମାନ । ଧର୍ମଜ୍ଞ ସୁଗ୍ରୀବ ଆପଣ ଦୁହିଁଙ୍କ ସହିତ ମିତ୍ର ହେବାପାଇଁ ଚାହାନ୍ତି । ମୁଁ ଇଚ୍ଛା ଅନୁସାରେ ଯେକୌଣସି ରୂପ ଧାରଣ କରିପାରେ । ସୁଗ୍ରୀବଙ୍କ କାର୍ଯ୍ୟ ସାଧନ ପାଇଁ ଏହି ଭିକ୍ଷୁରୂପ ଧରି ଋଷ୍ୟମୂକ ପର୍ବତରୁ ଏଠାକୁ ଆସିଛି ।

ଏତିକି କହି ହନୁମାନ ନୀରବ ରହିବାରୁ ରାମ ଲକ୍ଷ୍ମଣଙ୍କୁ କହିଲେ– ସୌମିତ୍ରି, ବାନରରାଜ ସୁଗ୍ରୀବଙ୍କ ମନ୍ତ୍ରୀ ହନୁମାନ ତାଙ୍କଦ୍ୱାରା ପ୍ରେରିତ ହୋଇ ଆମ ପାଖକୁ ଆସିଛନ୍ତି । ଏହାଙ୍କ କଥାରୁ ଜଣାଯାଉଛି, ଏ ଋକ୍, ଯଜୁଃ, ସାମବେଦ ଅଧ୍ୟୟନ କରିଛନ୍ତି । ସମସ୍ତ ବ୍ୟାକରଣ ଜାଣିଛନ୍ତି । କଥା କହିବାବେଳେ ତାଙ୍କର ମୁଖ, ଚକ୍ଷୁ, ଲଲାଟ ଓ ଭ୍ରୂଲତାରେ କୌଣସି ବିକାର ଦେଖାଯାଉ ନାହିଁ । ତାଙ୍କ କଥାରେ ଲେଶମାତ୍ର ସନ୍ଦେହର ଅବକାଶ ନାହିଁ । ସୁଗ୍ରୀବଙ୍କର ଦୂତ ବେଦଜ୍ଞ, ବିଦ୍ୱାନ୍, କୂଟନୀତି ଶାସ୍ତ୍ରରେ ନିପୁଣ ଏବଂ ସୁବକ୍ତା । ଯେତିକି କହିବାର କଥା, ସେତିକି ଯୁକ୍ତିଯୁକ୍ତ କଥା ସେ କହିଛନ୍ତି । ଶୁଦ୍ଧ ସୁନ୍ଦର ବିଚିତ୍ର ବାକ୍ୟ ଦ୍ୱାରା ହୃଦୟକୁ ସେ ମୋହିତ କରିପାରନ୍ତି । ତାଙ୍କର କଥା ଶୁଣିବାମାତ୍ରେ ମାରିବାପାଇଁ ଖଡ଼୍‌ଗଧାରୀ ଶତ୍ରୁ ମଧ୍ୟ ମିତ୍ର ହୋଇଯିବ । ଲକ୍ଷ୍ମଣ, ଏପରି ଗୁଣୀ କାର୍ଯ୍ୟସାଧକ ଦୂତ ଯେଉଁ ରାଜାର ଥିବ, ତାହାର କାର୍ଯ୍ୟ ନିଶ୍ଚୟ ସିଦ୍ଧ ହେବ । ବର୍ତ୍ତମାନ ସୁଗ୍ରୀବଙ୍କ ସଚିବ ହନୁମାନଙ୍କ ସହିତ ତୁମେ ମଧୁର ଭାବରେ କଥାବାର୍ତ୍ତା କର ।

ଲକ୍ଷ୍ମଣ କହିଲେ – ହେ ବିଦ୍ୱନ୍, ମହାତ୍ମା ସୁଗ୍ରୀବଙ୍କର ଗୁଣାବଳୀ ଆମେ ଜାଣୁ । ତାଙ୍କୁ ହିଁ ଆମେ ଖୋଜୁଥିଲୁ । ସୁଗ୍ରୀବଙ୍କଠାରୁ ଯେଉଁ ମିତ୍ରତାର ବାର୍ତ୍ତା ନେଇ ତୁମେ ଆସିଛ, ଆମେ ତାକୁ ଗ୍ରହଣ କରୁଛୁ ।

ହନୁମାନ ଜାଣିଲେ ଯେ ଏମାନଙ୍କର କିଛି କାର୍ଯ୍ୟ ସାଧନ କରିବାର ଅଛି, ଯେଉଁଥିପାଇଁ ସୁଗ୍ରୀବଙ୍କର ସାହାଯ୍ୟ ଦରକାର । ତା ନ ହେଲେ ସେମାନେ ତାଙ୍କୁ ଖୋଜି ଏଠାକୁ ଆସି ନ ଥାନ୍ତେ । ହନୁମାନ ରାମଙ୍କୁ ପଚାରିଲେ, ପମ୍ପା ତୀରବର୍ତ୍ତୀ ଏହି ଶ୍ୱାପଦସଙ୍କୁଳ ଘୋର ଦୁର୍ଗମ ଅରଣ୍ୟକୁ ଆପଣ ସାନଭାଇଙ୍କ ସହିତ କାହିଁକି ଆସିଛନ୍ତି ? ରାମଙ୍କ ନିର୍ଦ୍ଦେଶରେ ଲକ୍ଷ୍ମଣ ବନବାସ ସମ୍ପର୍କୀୟ ସମସ୍ତ କଥା କହି କାମରୂପୀ ରାକ୍ଷସଦ୍ୱାରା ସୀତାଙ୍କର ଅପହରଣ ବିଷୟ ଜଣାଇଲେ । ଲକ୍ଷ୍ମଣ କହିଲେ, ଦିତିଙ୍କର ପୁତ୍ର ଦନୁ ଶାପଗ୍ରସ୍ତ ହୋଇ

ରାକ୍ଷସ ହୋଇଥିଲେ । ସେ ଆମକୁ କହିଲେ, ବାନରରାଜ ସୁଗ୍ରୀବ ସମର୍ଥ ବ୍ୟକ୍ତି । ତାଙ୍କର ଆଶ୍ରୟ ନେଲେ ତୁମେ ସୀତାଙ୍କୁ ଉଦ୍ଧାର କରିପାରିବ । ସେଥିପାଇଁ ଯେ ସମସ୍ତଙ୍କର ଶରଣଦାତା, ଯାହାଙ୍କର ପ୍ରସାଦରେ ସମସ୍ତ ପ୍ରଜା ପ୍ରସନ୍ନ, ସେହି ଦଶରଥପୁତ୍ର ତ୍ରିଲୋକବିଖ୍ୟାତ ରାମଚନ୍ଦ୍ର ଆଜି ସୁଗ୍ରୀବଙ୍କର ଶରଣଭିକ୍ଷା କରୁଛନ୍ତି ।

ଲକ୍ଷ୍ମଣଙ୍କର କରୁଣ ନିବେଦନ ଶୁଣି ହନୁମାନ କହିଲେ, ରାମଙ୍କ ପରି ଜିତେନ୍ଦ୍ରିୟ ଜିତକ୍ରୋଧ ବ୍ୟକ୍ତିଙ୍କର ଦର୍ଶନଲାଭ ସୁଗ୍ରୀବଙ୍କର ଅବଶ୍ୟ କର୍ତ୍ତବ୍ୟ । ଯେଉଁ ରାମଙ୍କୁ ସେ ନିଜେ ଯାଇ ଦର୍ଶନ କରିଥାନ୍ତେ, ସେ ସ୍ୱୟଂ ଏଠାରେ ଉପସ୍ଥିତ । ସୁଗ୍ରୀବ ମଧ୍ୟ ବାଳୀ ସହିତ ଶତ୍ରୁତା କରି ରାଜ୍ୟରୁ ବିତାଡ଼ିତ ହୋଇଛନ୍ତି । ତାଙ୍କ ସ୍ତ୍ରୀଙ୍କୁ ମଧ୍ୟ ତାଙ୍କଠାରୁ ହରଣ କରି ନିଆଯାଇଛି । ବାରମ୍ବାର ବାଳୀ ଦ୍ୱାରା ଆକ୍ରାନ୍ତ ହୋଇ ସେ ଭୟରେ ବନରେ ଭ୍ରମଣ କରୁଛନ୍ତି । ସେହି ସୂର୍ଯ୍ୟପୁତ୍ର ସୁଗ୍ରୀବ ନିଶ୍ଚୟ ଆମମାନଙ୍କୁ ପଠାଇ ସୀତାଙ୍କୁ ଠାବ କରିବାରେ ସାହାଯ୍ୟ କରିବେ । ତେଣୁ ଚାଲନ୍ତୁ, ସୁଗ୍ରୀବଙ୍କ ପାଖକୁ ଆମେମାନେ ଯିବା ।

ଲକ୍ଷ୍ମଣ ରାମଙ୍କୁ ଜଣାଇଲେ ଯେ ସୁଗ୍ରୀବ ତାଙ୍କର କାର୍ଯ୍ୟସିଦ୍ଧି ପାଇଁ ଆପଣଙ୍କର ସାହାଯ୍ୟ ଲୋଡ଼ିପାରନ୍ତି । ତେଣୁ ତାଙ୍କର ସହାୟତା ଆମେ ନିଶ୍ଚୟ ଲାଭ କରିପାରିବା ।

ବାୟୁପୁତ୍ର ହନୁମାନ୍ ଭିକ୍ଷୁରୂପ ତ୍ୟାଗ କରି ମହାବଳ ବାନର ରୂପ ଧାରଣ କଲେ ଏବଂ ହୃଷ୍ଟଚିତ୍ତରେ ରାମ ଲକ୍ଷ୍ମଣଙ୍କୁ କାନ୍ଧରେ ବସାଇ ଋଷ୍ୟମୂକ ପର୍ବତକୁ ଘେନିଆସିଲେ ।

## ୬୩ ।। ସୁଗ୍ରୀବଙ୍କସହ ମିତ୍ରତା

ହନୁମାନ ସୁଗ୍ରୀବଙ୍କୁ କହିଲେ, ଇକ୍ଷ୍ୱାକୁ ବଂଶରେ ଜାତ ଦଶରଥପୁତ୍ର ସତ୍ୟନିଷ୍ଠ ରାମ ତାଙ୍କ ଭାଇ ଲକ୍ଷ୍ମଣଙ୍କ ସହିତ ଆସିଛନ୍ତି । ପିତୃସତ୍ୟ ପାଳନ କରିବାପାଇଁ ଧର୍ମଜ୍ଞ ରାମ ବନବାସ କରିଛନ୍ତି । ବନବାସ କରୁଥିବା ସମୟରେ ରାବଣ ତାଙ୍କର ସ୍ତ୍ରୀଙ୍କୁ ଅପହରଣ କରିବା ଫଳରେ ସୀତାଙ୍କର ଉଦ୍ଧାର ପାଇଁ ସେ ତୁମର ଶରଣାପନ୍ନ ହେଉଛନ୍ତି । ସେମାନେ ତୁମ ସହିତ ସଖ୍ୟ ସ୍ଥାପନ କରିବାକୁ ଇଚ୍ଛା କରନ୍ତି । ସେମାନେ ତୁମର ପୂଜନୀୟ, ସେମାନଙ୍କର ଉଚିତ ଅଭ୍ୟର୍ଥନା କର ।

ସୁଗ୍ରୀବ ସୁନ୍ଦର ବେଶଭୂଷା ଦ୍ୱାରା ନିଜକୁ ଦର୍ଶନୀୟ କରି ରାମଙ୍କୁ ଅଭ୍ୟର୍ଥନା କରି ପ୍ରୀତିପୂର୍ବକ କହିଲେ, ମୁଁ ହନୁମାନଙ୍କଠାରୁ ଆପଣଙ୍କ ବିଷୟରେ ଶୁଣିଛି । ଆପଣ ତପସ୍ୱୀ, ସର୍ବଜନପ୍ରିୟ । ମୋ' ପରି ବାନର ସହିତ ଆପଣ ମିତ୍ରତା କରିବାକୁ ଚାହାନ୍ତି, ତାହା ମୋର ଲାଭ ଏବଂ ମୋର ସମ୍ମାନ ବୋଲି ମୁଁ ମନେକରେ । ଯଦି ମୋତେ ସଖାରୂପେ ଗ୍ରହଣ କରୁଛନ୍ତି, ତା' ହେଲେ ମୁଁ ମୋର ଏହି ହସ୍ତ ପ୍ରସାରିତ କଲି । ତାହା ନିଜ ହସ୍ତରେ ଗ୍ରହଣ କରି ଚିରସ୍ଥାୟୀ ବନ୍ଧନରେ ପରିଣତ କରନ୍ତୁ ।

ରାମ ଆନନ୍ଦରେ ସୁଗ୍ରୀବଙ୍କ ସହିତ ହାତ ମିଳାଇ ତାଙ୍କୁ ଗାଢ଼ ଆଲିଙ୍ଗନ କଲେ । ହନୁମାନ ଦୁଇଖଣ୍ଡ କାଠ ଘଷି ଅଗ୍ନି ଉତ୍ପାଦନ କଲେ ଏବଂ ଅଗ୍ନିକୁ ଫୁଲରେ ପୂଜାକରି ରାମ

ଓ ସୁଗ୍ରୀବଙ୍କ ମଝିରେ ରଖିଦେଲେ । ରାମ ଓ ସୁଗ୍ରୀବ ସେହି ଜ୍ୱଳନ୍ତ ଅଗ୍ନି ପ୍ରଦକ୍ଷିଣ କରି ଅଗ୍ନିକୁ ସାକ୍ଷୀ ରଖି ମିତ୍ର ହେଲେ । ସେମାନେ ପରସ୍ପରକୁ ଯେତେ ଦେଖିବାକୁ ଲାଗିଲେ, ସେମାନଙ୍କ ମନରେ ତୃପ୍ତି ହେଲା ନାହିଁ । ସୁଗ୍ରୀବ ରାମଙ୍କୁ କହିଲେ, ତୁମେ ମୋର ସୁହୃଦ୍ ଏବଂ ମିତ୍ର ହେଲ । ଆମମାନଙ୍କର ସୁଖଦୁଃଖ ଏକ ହେଲା । ଏହା କହି ସୁଗ୍ରୀବ ପତ୍ରବହୁଳ ଏବଂ ପୁଷ୍ପଯୁକ୍ତ ଏକ ଶାଳବୃକ୍ଷର ଶାଖା ଆଣି ତଳେ ପକାଇ ରାମଙ୍କ ସହିତ ବସିଲେ । ହନୁମାନ ଲକ୍ଷ୍ମଣଙ୍କର ବସିବାପାଇଁ ଏକ ପୁଷ୍ପିତ ଚନ୍ଦନ ବୃକ୍ଷର ଶାଖା ଆଣିଦେଲେ ।

ସୁଗ୍ରୀବ ସରଳ ଓ ମଧୁର ଭାଷାରେ କହିଲେ, ବାଳୀ ମୋତେ ରାଜ୍ୟରୁ ବିତାଡ଼ିତ କରିଛି । ମୋର ଭାର୍ଯ୍ୟାକୁ ହରଣ କରିଛି । ମୁଁ ଭୟବିହ୍ୱଳ ହୋଇ ଦୁର୍ଗମ ବନରେ ବାସ କରୁଛି । ରାଘବ, ବାଳୀ ଭୟରୁ ମୋତେ ରକ୍ଷାକର । ମୋତେ ଅଭୟ ଦାନକର ।

ରାମ ଅଳ୍ପ ହସି କହିଲେ – କପିଶ୍ରେଷ୍ଠ, ଉପକାର ହିଁ ହେଉଛି ମିତ୍ରତାର ଫଳ । ତାହା ମୁଁ ଜାଣେ । ତୁମ ସ୍ତ୍ରୀର ଅପହରଣକାରୀ ବାଳୀକୁ ମୁଁ ନିଶ୍ଚୟ ବଧ କରିବି । ସୂର୍ଯ୍ୟପରି ତେଜୀୟାନ୍ ଓ ଅମୋଘ ମୋର ତୀକ୍ଷ୍ଣଶରରୁ ସେ କେବେ ନିସ୍ତାର ପାଇବ ନାହିଁ । ସର୍ପସଦୃଶ ଶରବିଦ୍ଧ ହୋଇ ବାଳୀ ଭୂତଳଶାୟୀ ହେବ, ତାହା ତୁମେ ଦେଖିବ ।

ସୁଗ୍ରୀବ ଅତ୍ୟନ୍ତ ପ୍ରୀତ ହୋଇ କହିଲେ – ରାଘବ, ତୁମ ପ୍ରସାଦରୁ ମୁଁ ମୋର ରାଜ୍ୟ ଓ ପ୍ରିୟପତ୍ନୀଙ୍କୁ ଲାଭ କରିପାରିବି । ମୋର ଶତ୍ରୁତା ଆଚରଣ କରୁଥିବା ଭ୍ରାତାର ଆପଣ ଉପଯୁକ୍ତ ପ୍ରତିକାର କରନ୍ତୁ, ଯେପରିକି ସେ ଆଉ କେବେ ମୋର ଶତ୍ରୁତା କରିପାରିବ ନାହିଁ ।

ସୁଗ୍ରୀବ ଓ ରାମଙ୍କର ଏହି ମିତ୍ରତା ସମୟରେ ପଦ୍ମସଦୃଶ ସୀତାଙ୍କର ଚକ୍ଷୁ, ସୁବର୍ଣ୍ଣପରି ଉଜ୍ଜ୍ୱଳ ବାଳୀର ଚକ୍ଷୁ ଓ ଅଗ୍ନିପରି ଦୀପ୍ତ ଜ୍ୱଳନ୍ତ ରାକ୍ଷସମାନଙ୍କର ଚକ୍ଷୁ– ଏକ ସାଙ୍ଗରେ ସମସ୍ତଙ୍କର ବାମ ଚକ୍ଷୁ ସ୍ପନ୍ଦିତ ହେବାକୁ ଲାଗିଲା ।

ସୁଗ୍ରୀବ ପ୍ରୀତ ହୋଇ ପୁନର୍ବାର ରାମଙ୍କୁ କହିଲେ, ଆପଣ କାହିଁକି ଏ ନିର୍ଜନ ବନରେ ଆପଣଙ୍କ ଭାଇଙ୍କ ସହିତ ବାସ କରୁଛନ୍ତି, ତାହା ମୋର ମହାମନ୍ତ୍ରୀ ହନୁମାନ ମୋତେ କହିଛନ୍ତି । ଆପଣ ଓ ଲକ୍ଷ୍ମଣ ନ ଥିବାବେଳେ ରାକ୍ଷସ ରାବଣ ସୀତାଙ୍କୁ ହରଣ କଲା ଓ ବୃଦ୍ଧ ଜଟାୟୁଙ୍କୁ ନିହତ କଲା । ମୁଁ ପ୍ରତିଜ୍ଞା କରୁଛି, ଶୀଘ୍ର ଆପଣଙ୍କର ଏହି ପତ୍ନୀବିରହ ଦୁଃଖ ଦୂର ହେବ । ଅରିନ୍ଦମ, ସେ ରସାତଳ ବା ନଭଃସ୍ଥଳ, ଯେଉଁଠାରେ ଥାଆନ୍ତୁ ନା କାହିଁକି, ମୁଁ ତାଙ୍କୁ ନିଶ୍ଚୟ ଉଦ୍ଧାର କରି ଆଣିବି । ମୁଁ ଅନୁମାନ କରି ଜାଣୁଛି, ସୀତାଙ୍କୁ ରାବଣ ନେଇଯାଉଥିବାବେଳେ ସେ 'ରାମ ରାମ', 'ଲକ୍ଷ୍ମଣ ଲକ୍ଷ୍ମଣ' କହି ବିଳାପ କରୁଥିଲେ ଏବଂ ଆମେମାନେ ଏହି ପର୍ବତ ଉପରେ ବସିଥିବାର ଦେଖି ତାଙ୍କର ଉତ୍ତରୀୟ ଓ ଅଳଙ୍କାରସବୁ ଆମ ଆଡ଼କୁ ଫିଙ୍ଗି ଦେଇଥିଲେ । ମୁଁ ସେସବୁ ରଖିଛି । ତାହା ଶୀଘ୍ର ଆଣି ଦେଉଛି, ଆପଣ ଚିହ୍ନିପାରିବେ ।

ନିର୍ଜନ ପର୍ବତଗୁହା ମଧ୍ୟରେ ପ୍ରବେଶ କରି ସେ ସୀତାଙ୍କର ଉତ୍ତରୀୟ ଓ ଅଳଙ୍କାରସବୁ ଆଣି ରାମଙ୍କୁ ଦେଖାଇଲେ । ରାମ ସେହି ବସ୍ତ୍ର ଓ ଅଳଙ୍କାରକୁ ଦେଖି ଉଚ୍ଚସ୍ୱରରେ

ରୋଦନ କଲେ । କୁହୁଡ଼ିରେ ଚନ୍ଦ୍ର ଲୁଚିଯିବା ପରି ଅଶ୍ରୁଧାରାରେ ତାଙ୍କର ମୁହଁର ଶୋଭା ଲୁଚିଗଲା । ସେ 'ହା ପ୍ରିୟେ' ବୋଲି କହି ସେହି ଅଳଙ୍କାରକୁ ଛାତିରେ ଲଗାଇ ବାରମ୍ବାର ବିଳାପ କରିବାକୁ ଲାଗିଲେ । ରାମ ଲକ୍ଷ୍ମଣଙ୍କୁ ସୀତାଙ୍କର ଅଳଙ୍କାର ଦେଖାଇ କହିଲେ – ଲକ୍ଷ୍ମଣ, ଦେଖ, ସୀତା ଏହିସବୁ ଅଳଙ୍କାର ପିନ୍ଧିଥିଲେ । ସେ ତୃଣଭୂମି ଉପରେ ତାହା ପକାଇ ଦେଇଥିବା ଯୋଗୁଁ ତାହା ସେହିପରି ଅକ୍ଷତ ଅବସ୍ଥାରେ ଅଛି । ଲକ୍ଷ୍ମଣ କହିଲେ, ମୁଁ ଏ କେୟୂର କୁଣ୍ଡଳ ଚିହ୍ନିପାରୁ ନାହିଁ, କାରଣ ମୁଁ କେବଳ ସୀତାଙ୍କର ପଦବନ୍ଦନା କରେ । ତାଙ୍କୁ ଚାହିଁ କଥା କହେ ନାହିଁ । ତେଣୁ ଏ ନୂପୁର ଦୁଇଟିକୁ କେବଳ ମୁଁ ଭଲଭାବରେ ଚିହ୍ନି ପାରୁଛି ।

ରାମ ସୁଗ୍ରୀବଙ୍କୁ ସୀତାହରଣକାରୀ ରାବଣର ସମ୍ବାଦ ଦେବାପାଇଁ କହିଲେ । ସୁଗ୍ରୀବଙ୍କର ଆଖି ଲୁହରେ ଛଳ ଛଳ ହୋଇଗଲା । ସେ କହିଲେ, ସେ ପାପୀ ରାକ୍ଷସର ବାସସ୍ଥାନ ମୁଁ ଜାଣେ ନାହିଁ । ତାର ଶକ୍ତିସାମର୍ଥ୍ୟ, ବଂଶବୃତ୍ତାନ୍ତ ମଧ୍ୟ ମୋତେ ଜଣା ନାହିଁ । କିନ୍ତୁ ତୁମେ ଶୋକ ତ୍ୟାଗକର, ମୁଁ ତାହା ଅଚିରେ ଜାଣିପାରିବି ଏବଂ ମୈଥିଳୀଙ୍କୁ ତୁମେ ଯେପରି ଶୀଘ୍ର ଲାଭ କରିବ, ତାର ବ୍ୟବସ୍ଥା କରିବି । ରାବଣ ସବଂଶ ନିହତ ହେବ । ରାଘବ, ବର୍ତ୍ତମାନ ଧୈର୍ଯ୍ୟ ଧରିବାର ବେଳ । ତୁମପରି ପୁରୁଷ ପକ୍ଷରେ ଏପରି ଚିତ୍ତବିକାର ଉଚିତ ନୁହେଁ । ମୁଁ ମଧ ଭାର୍ଯ୍ୟା ବିରହରେ ଘୋର ଦୁଃଖ ଭୋଗ କରୁଛି । କିନ୍ତୁ ମୁଁ ଏପରି ଶୋକକରି ଧୈର୍ଯ୍ୟ ହରାଉ ନାହିଁ । ସାଧାରଣ ବାନର ହୋଇ ମୁଁ ଯେତେବେଳେ ଏହା କରିପାରୁଛି, ତୁମପରି ମହାତ୍ମା ନିଜର ଧୈର୍ଯ୍ୟ ହରାଇବା ଠିକ୍ ନୁହେଁ । ମୁଁ ତୁମକୁ ଉପଦେଶ ଦେଉ ନାହିଁ । ସଖାଭାବେ କହୁଛି, ତୁମେ ଶୋକ ତ୍ୟାଗକରି ପୁରୁଷକାରର ଆଶ୍ରୟ ନିଅ ।

ସୁଗ୍ରୀବ ଏହିପରି ବହୁତ ବୁଝାଇବା ପରେ ରାମ ଲୁହରେ ମଳିନ ପଡ଼ିଥିବା ନିଜର ମୁହଁକୁ ଲୁଗାକାନିରେ ପୋଛି ତାଙ୍କୁ ଆଲିଙ୍ଗନ କଲେ ଏବଂ କହିଲେ, ସୁଗ୍ରୀବ, ତୁମେ ସ୍ନେହଶୀଳ ଓ ହିତୈଷୀ ମିତ୍ରର କର୍ତ୍ତବ୍ୟ କରିଛ । ତୁମର ସାନ୍ତ୍ୱନାବାକ୍ୟ ଶୁଣି ମୁଁ ପ୍ରକୃତିସ୍ଥ ହୋଇଛି । ବିପଦକାଳରେ ତୁମଭଳି ବନ୍ଧୁଲାଭ ଦୁର୍ଲ୍ଲଭ । କିନ୍ତୁ ସୀତା ଓ ତାଙ୍କର ଅପହରଣକାରୀ ସେହି ଦୁରାତ୍ମା ରାବଣକୁ ଖୋଜିବାପାଇଁ ଯତ୍ନ କରିବା ତୁମର କର୍ତ୍ତବ୍ୟ ।

ସୁଗ୍ରୀବ କହିଲେ, ଯେତେବେଳେ ମୁଁ ତୁମପରି ସର୍ବଗୁଣଯୁକ୍ତ ସଖାଙ୍କୁ ପାଇଛି, ଦେବତାମାନେ ନିଶ୍ଚୟ ଆମକୁ ଅନୁଗ୍ରହ କରିବେ । ଆପଣ ସହାୟକ ହେଲେ ନିଜ ରାଜ୍ୟ କ'ଣ, ସ୍ୱର୍ଗରାଜ୍ୟକୁ ମୁଁ ଲାଭ କରିପାରିବି । ଅଗ୍ନି ସାକ୍ଷୀ କରି ତୁମକୁ ମିତ୍ରରୂପେ ଲାଭ କରିବାପରେ ମୋର ବନ୍ଧୁମାନଙ୍କ ମଧରେ ମୋର ସମ୍ମାନ ବହୁତ ବଢ଼ିଯାଇଛି । ତୁମ ଆଗରେ ମୋର ନିଜ ଗୁଣବର୍ଣ୍ଣନା କରିବା ସମ୍ଭବ ନୁହେଁ । କିନ୍ତୁ ମୁଁ ତୁମର ଉପଯୁକ୍ତ ମିତ୍ର କି ନୁହେଁ, ତୁମେ କାଳକ୍ରମେ ଜାଣିପାରିବ । ପ୍ରକୃତ ମିତ୍ର ମିତ୍ରପାଇଁ ଧନ, ସୁଖ ଏବଂ ଦେଶ ତ୍ୟାଗ କରିପାରେ । ବର୍ତ୍ତମାନ ବାଳୀର ଶତ୍ରୁତା ଯୋଗୁଁ ମୁଁ ଘୋର ଦୁଃଖରେ ସମୟ କଟାଉଛି । ସୁଗ୍ରୀବ ଏହା କହିବା ସଙ୍ଗେ ସଙ୍ଗେ ତାଙ୍କ ଚକ୍ଷୁ ଲୋତକରେ ପୂର୍ଣ୍ଣ ହୋଇଗଲା । ସେ ବହୁ କଷ୍ଟରେ ଅଶ୍ରୁ ସମ୍ବରଣ କରି କହିଲେ, ବଳବାନ୍ ବାଳୀ ଭର୍ତ୍ସନା

କରି ମୋତେ ରାଜ୍ୟରୁ ବିତାଡ଼ିତ କରିଛି । ମୋର ପ୍ରିୟତମା ଭାର୍ଯ୍ୟାଙ୍କୁ ହରଣ କରିଛି । ମୋର ବନ୍ଧୁମାନଙ୍କୁ ବନ୍ଦୀକରି ରଖିଛି । ମୋତେ ମାରିବାପାଇଁ ସେ ସବୁବେଳେ ଚେଷ୍ଟିତ । ଏଥିପାଇଁ ତା ଦ୍ୱାରା ନିଯୁକ୍ତ ବହୁ ବାନରଙ୍କୁ ମୁଁ ମାରିଦେଇଛି । ତେଣୁ ତୁମକୁ ଦେଖି ବାଳୀର ଚର ବୋଲି ଶଙ୍କାଯୁକ୍ତ ହୋଇଥିଲି । ରାମ, ହନୁମାନ ପ୍ରଭୃତି ଏହି କେତେଜଣ ମୋର ସହାୟ ହୋଇଥିବା ଯୋଗୁଁ ଘୋର ବିପଦରେ ପଡ଼ି ମଧ୍ୟ ମୁଁ ପ୍ରାଣଧାରଣ କରି ରହିପାରିଛି । ଏହି ବାନରମାନେ ହିଁ ସ୍ନେହପୂର୍ବକ ମୋର ଯତ୍ନ ନେଉଛନ୍ତି । ସେମାନେ ମୋର ରକ୍ଷକ, ବନ୍ଧୁ ଓ ସହଚର ।

ସୁଗ୍ରୀବ ପୁଣି କହିଲେ, ରାମ, ବାଳୀ ମୋର ଶତ୍ରୁ । ତାର ବିନାଶ ପରେ ହିଁ ମୋର ଦୁଃଖ ଦୂର ହୋଇପାରେ । ମୋର ଶୋକ ଦୂର କରିବାର ଉପାୟ ମୁଁ ତୁମକୁ କହିଲି । ସୁଖରେ ହେଉ ବା ଦୁଃଖରେ ହେଉ ତୁମଛଡ଼ା ମୋର ଅନ୍ୟ ଗତି ନାହିଁ ।

ରାମ କହିଲେ, ବାଳୀ ସହିତ ତୁମର ଶତ୍ରୁତା କାହିଁକି ହେଲା, ତାହା ଜାଣିସାରିବା ପରେ ଉଭୟଙ୍କର ବଳାବଳ କଷି ମୁଁ ତୁମର ଅଭୀଷ୍ଟ ସାଧନ ପାଇଁ ବ୍ୟବସ୍ଥା କରିବି ।

## ୬୪ ॥ ବାଳୀ ସୁଗ୍ରୀବ ଶତ୍ରୁତା

ସୁଗ୍ରୀବ ବାଳୀଙ୍କ ସହିତ ତାଙ୍କର ଶତ୍ରୁତାର ଇତିହାସ ବର୍ଣ୍ଣନା କରି କହିଲେ, ଅରିନ୍ଦମ, ବାଳୀ ମୋର ବଡ଼ଭାଇ । ସେ ମୋର ଓ ମୋ ପିତାଙ୍କର ଅତିପ୍ରିୟ ଥିଲେ । ପିତାଙ୍କ ମୃତ୍ୟୁପରେ ଜ୍ୟେଷ୍ଠ ହୋଇଥିବା ଯୋଗୁଁ ମନ୍ତ୍ରିଗଣ ତାଙ୍କୁ ବାନରମାନଙ୍କର ରାଜା ରୂପେ ଅଭିଷିକ୍ତ କଲେ । ପିତୃପିତାମହଙ୍କ ବିଶାଳ ରାଜ୍ୟକୁ ବାଳୀ ଶାସନ କଲେ ଏବଂ ମୁଁ ତାଙ୍କର ଅନୁଗତ ରୂପେ ତାଙ୍କ ପାଖରେ ରହିଲି । ମାୟାବୀ ନାମରେ ଜଣେ ତେଜସ୍ୱୀ ରାକ୍ଷସର ବାଳୀଙ୍କ ସହିତ କୌଣସି ଏକ ସ୍ତ୍ରୀ ସମ୍ପର୍କ ଯୋଗୁଁ ପୂର୍ବରୁ ଶତ୍ରୁତା ଥିଲା । ଦିନେ ରାତିରେ ସମସ୍ତେ ଶୋଇପଡ଼ିଥିବା ବେଳେ କିଷ୍କିନ୍ଧ୍ୟାର ଦ୍ୱାରଦେଶକୁ ଆସି ମାୟାବୀ ଗର୍ଜନ କରିବାକୁ ଲାଗିଲା ଏବଂ ବାଳୀଙ୍କୁ ଯୁଦ୍ଧପାଇଁ ଆହ୍ୱାନ କଲା । ତାର ଗର୍ଜନ ସହି ନ ପାରି ବାଳୀ ନିଦରୁ ଉଠି ତାକୁ ଆକ୍ରମଣ କରିବାକୁ ବାହାରିଲେ । ମୁଁ ଓ ତାଙ୍କର ସ୍ତ୍ରୀମାନେ ତାଙ୍କୁ ମନା କରୁଥିଲୁ । କିନ୍ତୁ ସେ କାହାର ମନା ନ ମାନି ବାହାରି ଆସିଲେ । ମୁଁ ମଧ୍ୟ ମୋ' ଭାଇଙ୍କୁ ସାହାଯ୍ୟ କରିବାପାଇଁ ବାହାରିପଡ଼ିଲି । ଆମକୁ ଦେଖି ଅସୁରର ଭୟ ହୋଇଗଲା ଏବଂ ସେ ଶୀଘ୍ର ଦଉଡ଼ି ପଳାଇଲା । ଆମେ ତା' ପିଛା ଧରିଲୁ । ସେତେବେଳେ ଚନ୍ଦ୍ର ଉଠିଆସୁଥିବା ଯୋଗୁଁ ପଥ ପରିଷ୍କାର ଦେଖାଯାଉଥିଲା । ତୃଣାବୃତ ଭୂତଳସ୍ଥ ଏକ ବିବରରେ ରାକ୍ଷସ ଯାଇ ପଶିଗଲା । ବାଳୀ କ୍ରୁଦ୍ଧ ହୋଇ କହିଲେ, ମୁଁ ଗହ୍ୱରରେ ପ୍ରବେଶ କରି ଯୁଦ୍ଧରେ ଶତ୍ରୁକୁ ମାରିବି । ତୁ ଏଇଠି ଅପେକ୍ଷା କରି ରହିବୁ । ମୁଁ ତାଙ୍କ ସାଙ୍ଗରେ ଯିବି ବୋଲି କହିବାରୁ ତାଙ୍କର ପାଦ ଛୁଆଁଇ ମୋତେ ଶପଥ କରାଇଲେ ଯେ ମୁଁ ସେହି ଗହ୍ୱର ଦ୍ୱାରରେ ରହିଥିବି ।

ବାଳୀ ଗହ୍ୱରରେ ପଶିବାର ଏକବର୍ଷ ବିତିଗଲା । ମୁଁ ସେ ବିଳଦ୍ୱାରରେ ରହି ରହି ବ୍ୟସ୍ତ ହୋଇପଡ଼ିଲି । ମୋର ମନରେ ଭୟ ହେଲା ଯେ ସେ ବୋଧହୁଏ ଆଉ ଜୀବିତ ନାହାନ୍ତି । ବିଳ ଭିତରୁ ଫେଣଯୁକ୍ତ ରକ୍ତଧାର ବାହାରିଲା । ଅସୁରଙ୍କର ଗର୍ଜନ ଶୁଣାଗଲା, ମାତ୍ର ଭାଇଙ୍କର କୌଣସି ସ୍ୱର ଶବ୍ଦ ଶୁଣାଗଲା ନାହିଁ । ତେଣୁ ମୋର ଭାଇଙ୍କର ମୃତ୍ୟୁ ହୋଇଛି ବୋଲି ମନେକରି ବ୍ୟଥିତ ହୋଇ ଫେରିଆସିଲି । ଏକ ପର୍ବତପ୍ରମାଣ ପଥର ଦ୍ୱାରା ବିଳଦ୍ୱାରକୁ ରୁଦ୍ଧ କରି ଶୋକାର୍ତ୍ତ ଭାବରେ ତାଙ୍କପାଇଁ ଜଳତର୍ପଣ କରି କିଷ୍କିନ୍ଧ୍ୟା ଫେରିଆସିଲି । ମୁଁ ଏହା ଗୋପନ ରଖିଲେ ମଧ୍ୟ ମନ୍ତ୍ରୀମାନେ ସମସ୍ତ କଥା ଜାଣିପାରିଲେ । ଅରାଜକ ଦେଶରେ ସବୁବେଳେ ଶତ୍ରୁଭୟ ରହିବ, ସେହି ଆଶଙ୍କାରେ ସେମାନେ ମୋତେ ରାଜାରୂପେ ଅଭିଷିକ୍ତ କଲେ ।

ମୁଁ ରାଜାରୂପେ କିଷ୍କିନ୍ଧ୍ୟା ରାଜ୍ୟ ଶାସନ କରୁଛି, ହଠାତ୍ ଦିନେ ବାଳୀ ଫେରିଆସିଲେ । ମୋତେ ରାଜା ହୋଇଥିବାର ଦେଖି କ୍ରୋଧରେ ତାଙ୍କର ଚକ୍ଷୁ ରକ୍ତବର୍ଣ୍ଣ ହୋଇଗଲା । ମନ୍ତ୍ରୀମାନଙ୍କୁ ବନ୍ଧନ କରି କଠୋର ଭାଷାରେ ସେମାନଙ୍କୁ ଭର୍ତ୍ସନା କଲେ । ମୁଁ ତାଙ୍କୁ ନିଗୃହୀତ କରିବାପାଇଁ ସମର୍ଥ ଥିଲେ ମଧ୍ୟ ଭାଇ ବୋଲି ସମ୍ମାନ କରୁଥିବାରୁ କିଛି କହିଲି ନାହିଁ । ମୁଁ ତାଙ୍କୁ ସସମ୍ମାନ ଅଭିବାଦନ କଲି । ମସ୍ତକର ମୁକୁଟରେ ତାଙ୍କର ପାଦ ସ୍ପର୍ଶ କରି ନମସ୍କାର କଲି । ସେ ଆଶୀର୍ବାଦ କରିବା ଦୂରେ ଥାଉ, ଟିକିଏ ପ୍ରସନ୍ନ ହେଲେ ନାହିଁ ।

ମୁଁ ତାଙ୍କୁ ପ୍ରସନ୍ନ କରିବାପାଇଁ କହିଲି, ଅତି ସୌଭାଗ୍ୟର କଥା, ତୁମେ ଶତ୍ରୁକୁ ମାରି କୁଶଳରେ ଫେରିଆସିଛ । ତୁମେ ମୋର ଅନାଥର ନାଥ, ମୋର ପ୍ରଭୁ । ମୁଁ ଏହି ବହୁଶଳାକାଯୁକ୍ତ ପୂର୍ଣ୍ଣଚନ୍ଦ୍ର ତୁଲ୍ୟ ଯେଉଁ ଛତ୍ର ଚାମର ଧାରଣ କରିଛି, ତୁମେ ତାହା ଗ୍ରହଣ କର । ରାଜା, ମୁଁ ସେ ବିଳଦ୍ୱାରରେ ବର୍ଷେ କାଳ ଦୁଃଖରେ ରହିଥିଲି । ଯେତେବେଳେ ବିଳ ମୁହଁରେ ମୁଁ ରକ୍ତଧାର ଦେଖିଲି, ତୁମର ସ୍ୱର ଶୁଣିଲି ନାହିଁ, କେବଳ ରାକ୍ଷସଙ୍କର ଭୟଙ୍କର ଗର୍ଜନ ଶୁଣାଗଲା, ମୁଁ ଭୟରେ ବିଳଦ୍ୱାର ବନ୍ଦ କରି କିଷ୍କିନ୍ଧ୍ୟା ପଳାଇ ଆସିଲି । ମନ୍ତ୍ରୀ ଓ ପୁରବାସୀମାନେ ମୋତେ ରାଜପଦରେ ଅଭିଷିକ୍ତ କଲେ । ମୋର କଥା କିଛି ଶୁଣିଲେ ନାହିଁ । ତୁମେ ହିଁ ସମ୍ମାନନୀୟ ରାଜା । ମୁଁ ତୁମର ରାଜ୍ୟକୁ ନ୍ୟାସ ରୂପେ ପାଳନ କରୁଥିଲି । ତୁମେ ବର୍ତ୍ତମାନ ସେହି ରାଜ୍ୟକୁ ଫେରାଇ ନିଅ ।

ମୋର ନମ୍ର ନିବେଦନରେ ବାଳୀଙ୍କର ପରିବର୍ତ୍ତନ ହେଲା ନାହିଁ । ସେ ଧିକ୍କାର କରି ମୋତେ ଭର୍ତ୍ସନା କରିବାକୁ ଲାଗିଲେ । ସେ ସମସ୍ତଙ୍କ ସମକ୍ଷରେ କହିଲେ, ଏ ନିଷ୍ଠୁର ସୁଗ୍ରୀବର ଭ୍ରାତୃସ୍ନେହ ତିଳେମାତ୍ର ନାହିଁ । ତାର ସ୍ନେହ ଥିଲେ ମୁଁ ବିଳ ଭିତରେ ପଶିଥିବା ବେଳେ ସେ ବିଳଦ୍ୱାର ପଥରଦ୍ୱାରା ବନ୍ଦ କରି ଏଠାକୁ ଆସି ରାଜା ହୋଇ ବସି ନ ଥାନ୍ତା । ମୁଁ ବିଳ ମଧ୍ୟରେ ଖୋଜି ଖୋଜି ଲୁଚିଯାଇଥିବା ଶତ୍ରୁକୁ ଧରି ମାରିବାବେଳେ ସେ ଗର୍ଜନ କରି ରକ୍ତ ବାନ୍ତି କଲା । ତାକୁ ମାରିସାରି 'ସୁଗ୍ରୀବ ସୁଗ୍ରୀବ' ବୋଲି ଡାକୁଛି । କାରଣ ତାକୁ ମୁଁ ବିଳଦ୍ୱାରରେ ଜଗାଇ ଦେଇ ଯାଇଥିଲି । କିନ୍ତୁ ସେ ଶୁଣୁଛି କେତେବେଳେ ? ସେ ତ ମୋତେ ପ୍ରକାଣ୍ଡ ପଥର ଦ୍ୱାରା ବନ୍ଦ କରିଦେଇ ଚାଲିଆସିଛି । ମୁଁ ବହୁ କଷ୍ଟରେ ସେ ପଥରକୁ ଆଡ଼େଇ ବାହାରି ଆସିଲି ।

ଏହା କହି ମୋର ଭାଇ ବାଳୀ ମୋତେ ଏକବସ୍ତ୍ର କରି ରାଜ୍ୟରୁ ନିର୍ବାସିତ କଲା ଏବଂ ମୋର ସ୍ତ୍ରୀକୁ ହରଣ କଲା । ମୋତେ ମାରିବାପାଇଁ ଏବେ ମଧ୍ୟ ସେ ବହୁ ଉଦ୍ୟମ କରୁଛି । ମୁଁ ତାର ଭୟରେ ଏହି ଋଷ୍ୟମୂକ ପର୍ବତରେ ଲୁଚି ରହିଛି । ହେ ବୀର ରାଘବ, ବାଳୀର ଭୟ ଓ ଅତ୍ୟାଚାରରୁ ମୋତେ ରକ୍ଷାକର ।

ରାମ କହିଲେ, ଭୟ କର ନାହିଁ । ମୁଁ ତୁମର ଭାର୍ଯ୍ୟାହରଣକାରୀ ପାପାତ୍ମା ବାଳୀକୁ ନିଶ୍ଚୟ ନିହତ କରିବି ।

## ୬୫ ॥ ବାଳୀଙ୍କର ବଳ ବର୍ଣ୍ଣନା

ସୁଗ୍ରୀବ ରାମଙ୍କର ସାହାଯ୍ୟ ପାଇ ପ୍ରସନ୍ନ ହେଲେ । କିନ୍ତୁ ବାଳୀକୁ କାଳେ ରାମ ଜଣେ ସାଧାରଣ ବୀର ବୋଲି ମନେ କରୁଥିବେ, ସେଥିପାଇଁ ତାର ଅସାଧାରଣ ବଳବୀର୍ଯ୍ୟର ପୂର୍ଣ୍ଣ ବିବରଣୀ ଦେଇ କହିଲେ, ବାଳୀର ପୁରୁଷକାର, ବଳ ଓ ଧୈର୍ଯ୍ୟ ବିଷୟରେ ବର୍ତ୍ତମାନ କହୁଛି, ଶୁଣ । ବାଳୀ ସୂର୍ଯ୍ୟୋଦୟ ପୂର୍ବରୁ ପ୍ରତିଦିନ ପୂର୍ବ ସମୁଦ୍ରରୁ ପଶ୍ଚିମ ସମୁଦ୍ର ଏବଂ ଦକ୍ଷିଣ ସମୁଦ୍ରରୁ ଉତ୍ତର ସମୁଦ୍ର ପଦରେ ଯାତ୍ରାକରି ଫେରିଆସେ ଏବଂ କେବେହେଲେ କ୍ଲାନ୍ତି ଅନୁଭବ କରେ ନାହିଁ । ପର୍ବତ ସବୁ ଆରୋହଣ କରି ତାର ଶିଖରକୁ ଭାଙ୍ଗି କନ୍ଦୁକ ଧରି ଖେଳିଲା ପରି ସେ ବହୁ ଉପରକୁ ଫିଙ୍ଗି ପୁଣି ଧରିନିଏ । ନିଜର ବଳ ଦେଖାଇବା ପାଇଁ ବନର ବହୁ ବଡ଼ ବଡ଼ ଜାତିଆ ଗଛ ସବୁ ଉପାଡ଼ି ଭାଙ୍ଗି ପକାଏ ।

ମହାବଳବାନ୍ ବ୍ୟକ୍ତିଠାରୁ କିପରି ବାଳୀ ବଳୀୟାନ୍, ତାହା ବର୍ଣ୍ଣନା କରି ସୁଗ୍ରୀବ କହିଲେ, ସହସ୍ର ହସ୍ତୀର ବଳ ଧାରଣ କରି ଦୁନ୍ଦୁଭି ନାମକ ଏକ ବିଶାଳକାୟ ରାକ୍ଷସ ଥିଲା । ସେ ବରଲାଭରେ ଗର୍ବିତ ହୋଇ ଦିନେ ସମୁଦ୍ର ପାଖରେ ପହଞ୍ଚି ମହାସାଗରକୁ କହିଲା, ମୁଁ ତୁମକୁ ଯୁଦ୍ଧକୁ ଆହ୍ୱାନ କରୁଛି । ସାଗର ଉଠିପଡ଼ି କହିଲେ – ଯୁଦ୍ଧବିଶାରଦ, ତୁମ ସହିତ ଯୁଦ୍ଧ କରିବାପାଇଁ ମୋର ଶକ୍ତି ନାହିଁ । ପର୍ବତରାଜ ହିମବାନ୍‌ଙ୍କ ପାଖକୁ ଯାଅ । ସେ ଶଙ୍କରଙ୍କର ଶ୍ୱଶୁର ଓ ତପସ୍ୱୀମାନଙ୍କ ଆଶ୍ରୟସ୍ଥଳ । ସେ ଯୁଦ୍ଧଦ୍ୱାରା ତୁମର ପ୍ରୀତିବର୍ଦ୍ଧନ କରିପାରିବେ । ଦୁନ୍ଦୁଭି ହିମାଳୟକୁ ଆସି ହାତୀପରି ବଡ଼ ବଡ଼ ଶିଳାମାନଙ୍କୁ ଏଣେ ତେଣେ ଫିଙ୍ଗିବାକୁ ଲାଗିଲା ଏବଂ ଘୋର ଗର୍ଜନ କରି ହିମବାନ୍‌ଙ୍କୁ ଯୁଦ୍ଧପାଇଁ ଆହ୍ୱାନ କଲା । ପର୍ବତରାଜ ହିମବାନ୍ କହିଲେ, ଧର୍ମବତ୍ସଳ ଦୁନ୍ଦୁଭି, ମୁଁ ଯୁଦ୍ଧରେ ସେପରି ନିପୁଣ ନୁହେଁ, ତୁମେ ମୋତେ କାହିଁକି ହଇରାଣ କରୁଛ ? ବିଶେଷତଃ ବହୁ ଋଷି, ମୁନି ମୋତେ ଆଶ୍ରୟ କରି ରହିଛନ୍ତି । ସେମାନଙ୍କୁ ମଧ କଷ୍ଟ ହେବ । ଦୁନ୍ଦୁଭି କ୍ରୁଦ୍ଧ ହୋଇ କହିଲା, ଯୁଦ୍ଧପାଇଁ ତୁମେ ଯଦି ଭୀତ ବା ଅସମର୍ଥ ତା'ହେଲେ ଏପରି ଜଣେ ବ୍ୟକ୍ତିର ନାମ କହ, ଯେ ମୋ' ସହିତ ଯୁଦ୍ଧ କରିପାରିବ । ହିମବାନ୍ ଟିକିଏ ଭାବି କହିଲେ, ଇନ୍ଦ୍ରପୁତ୍ର ବାଳୀ ବର୍ତ୍ତମାନ ବାନରମାନଙ୍କ ଅଧୀଶ୍ୱର ଭାବରେ ସୁରମ୍ୟ କିଷ୍କିନ୍ଧ୍ୟା ନଗରୀରେ ରହୁଛନ୍ତି । ସେହିଁ ତୁମର ଉପଯୁକ୍ତ ପ୍ରତିଦ୍ୱନ୍ଦ୍ୱୀ । ତୁମର ଆହ୍ୱାନ ସେ କେବେ ସହ୍ୟ କରିପାରିବେ ନାହିଁ ।

ଦୁନ୍ଦୁଭି ଏକ ବିଶାଳ ମହିଷରୂପ ଗ୍ରହଣ କରି କିଷ୍କିନ୍ଧ୍ୟାର ଦ୍ୱାରଦେଶରେ ପହଞ୍ଚି ଭୀଷଣ ଗର୍ଜନ କରିବାକୁ ଲାଗିଲା । ସେ ଗଛମାନଙ୍କୁ ଭାଙ୍ଗିପକାଇ ଖୁରାରେ ଭୂଇଁ ସବୁ ତାଡ଼ିବାକୁ ଲାଗିଲା । ବାଳୀ କାହାର ଦର୍ପ ସହେ ନାହିଁ । ସେ ଅନ୍ତଃପୁରରେ ଥାଇ ଏ ଶବ୍ଦ ଶୁଣି ସ୍ତ୍ରୀମାନଙ୍କ ସହିତ ବାହାରିଆସିଲା ଏବଂ ମହିଷରୂପୀ ଦୁନ୍ଦୁଭିକୁ ଦେଖି କହିଲା, କିରେ ଦୁନ୍ଦୁଭି, ତୋର କ'ଣ ହୋଇଛି, ଏଠିକି ଆସି ଖୁରି ଖାଇ ଗର୍ଜନ କରୁଛୁ ? ତୋର କ'ଣ ଜୀବନକୁ ଭୟ ନାହିଁ ? ଦୁନ୍ଦୁଭି ଉତ୍ତର ଦେଲା – ବାଳୀ, ସ୍ତ୍ରୀଲୋକଙ୍କ ଆଗରେ ବୀରପରି କଥା କହିବାରେ କୌଣସି ପୌରୁଷ ନାହିଁ । ଯଦି ଶକ୍ତି ଅଛି, ମୋ' ସହିତ ଆସି ଯୁଦ୍ଧ କର । ତୁ ତୋର ସ୍ତ୍ରୀମାନଙ୍କ ସହିତ ସମ୍ଭୋଗରେ ମତ୍ତ ଥିଲୁ । ତେଣୁ କାମମୋହିତ ବ୍ୟକ୍ତିକୁ ମୁଁ ହତ୍ୟା କରି ପାପଭାଗୀ ହେବି ନାହିଁ । ତୋତେ ଆଜି ରାତିକ ସମୟ ଦେଲି । ଏହି ରାତିକ ମଧ୍ୟରେ ତୋର ଯାହା ଭୋଗ କରିବାର କଥା କରିଯା । ନିଜର ସ୍ୱଜନ ଓ ବନ୍ଧୁମାନଙ୍କୁ ଯାହା ଦେବାର କଥା ଦେଇ ସନ୍ତୁଷ୍ଟ କର । ତା' ପରେ ତୋର କିଏ ଉତ୍ତରାଧିକାରୀ ହେବ, ତାହା ମଧ୍ୟ ବାଛି ନେ । କାଲି ସକାଳେ ସୂର୍ଯ୍ୟୋଦୟ ପରେ ମୁଁ ତୋର ଦର୍ପ ଚୂର୍ଣ୍ଣ କରିବି ।

କ୍ରୁଦ୍ଧ ବାଳୀ କହିଲା – ମୁଁ ଦେଖୁଛି, ତୁ ମରିବା ପାଇଁ ସ୍ଥିର କରି ଆସିଛୁ । ତେଣୁ ଏପରି ନିର୍ଭୟରେ କଥାଭାଷା କରୁଛୁ । କାଲି ସକାଳ ପର୍ଯ୍ୟନ୍ତ ଅପେକ୍ଷା କରିବା ଦରକାର ନାହିଁ । ଏହିକ୍ଷଣି ମୁଁ ତୋର ବ୍ୟବସ୍ଥା କରୁଛି । ଏହା କହି ବାଳୀ ଇନ୍ଦ୍ର ଦେଇଥିବା ସ୍ୱର୍ଣ୍ଣହାରକୁ କଣ୍ଠରେ ଧାରଣ କରି ଓ ନିଜର ସ୍ତ୍ରୀ ତାରା ଓ ଅନ୍ୟ ପୁରନାରୀମାନଙ୍କଠାରୁ ବିଦାୟ ନେଇ ଦୁନ୍ଦୁଭି ସହିତ ଲଢ଼ିବାପାଇଁ ଚାଲିଗଲା । ସେ ରାକ୍ଷସର ଶିଙ୍ଗ ଦୁଇଟିକୁ ଧରି ତାକୁ ପ୍ରଥମେ ଓଲଟାଇ କଚାଡ଼ି ଦେଲା । ଦୁନ୍ଦୁଭିର କାନରୁ ରକ୍ତସ୍ରାବ ହେବାକୁ ଲାଗିଲା । କ୍ରୁଦ୍ଧ ଦୁନ୍ଦୁଭି ଓ ବାଳୀ ମଧ୍ୟରେ ଭୟଙ୍କର ଯୁଦ୍ଧ ହେଲା ଏବଂ ଉଭୟେ ପରସ୍ପରକୁ ପ୍ରହାର କରି ଗର୍ଜନ କରିବାକୁ ଲାଗିଲେ । କ୍ରମେ ରାକ୍ଷସର ବଳ କମିଆସିଲା ଓ ବାଳୀର ବଳ ବଢ଼ିଗଲା । ବାଳୀ ଦୁନ୍ଦୁଭିକୁ ଉଠାଇ ଭୂଇଁରେ ଜୋର୍‌ରେ କଚାଡ଼ି ଦଳିଦେଲା । ଦୁନ୍ଦୁଭି ରକ୍ତବାନ୍ତି କରି ମରିଗଲା । ବାଳୀ ଦୁନ୍ଦୁଭିର ମୃତଶରୀରକୁ ଏତେ ଜୋର୍‌ରେ ବୁଲାଇ ଫିଙ୍ଗିଦେଲା ଯେ ତାହା ଏକ ଯୋଜନ ଦୂରରେ ପଡ଼ିଲା ଏବଂ ପଡ଼ିବା ପୂର୍ବରୁ ତାର ମୁଖନିର୍ଗତ ଶୋଣିତର ବିନ୍ଦୁ ପବନରେ ଯାଇ ମାତଙ୍ଗଋଷିଙ୍କ ଆଶ୍ରମକୁ ରୁଧିରାକ୍ତ କଲା । ଋଷି ଆଶ୍ରମ ବାହାରକୁ ଆସି ଏକ ବିଶାଳ ମହିଷର ମୃତଦେହ ଦେଖିଲେ ଏବଂ ତପୋବଳରେ କିଏ ଏହା କରିଛି ବୋଲି ଜାଣି ବାଳୀକୁ ଅଭିଶାପ ଦେଲେ ଯେ ସେ ମାତଙ୍ଗ ଆଶ୍ରମର ଏକ ଯୋଜନ ପର୍ଯ୍ୟନ୍ତ ସ୍ଥାନ ମଧ୍ୟକୁ ଆସିପାରିବ ନାହିଁ । ଯଦି ଆସିବ, ନିଶ୍ଚୟ ତାର ମୃତ୍ୟୁ ହେବ । ତାର ସହଚର ବାନରମାନେ ମଧ୍ୟ ଶୀଘ୍ର ଏହି ଆଶ୍ରମରୁ ଦୂର ହୋଇଯାନ୍ତୁ, ନଚେତ୍ ସେମାନେ ପାଷାଣ ପାଲଟିଯିବେ । ବାନରମାନେ ବାଳୀକୁ ଯାଇ ମାତଙ୍ଗଋଷିଙ୍କ ଶାପବିଷୟ କହିଲେ । ବାଳୀ ମାତଙ୍ଗଋଷିଙ୍କୁ ଯେତେ ଅନୁନୟ ବିନୟ ହୋଇ ଶାନ୍ତ କରିବାପାଇଁ ଚେଷ୍ଟା କଲା, ତାର କୌଣସି ଫଳ ହେଲା ନାହିଁ । ତେଣୁ ସେହିଦିନଠାରୁ ବାଳୀ ଋଷ୍ୟମୂକ ପର୍ବତ ପାଖକୁ ଆସିବାକୁ ଭୟକରେ । ସେଥିପାଇଁ ଏହି ସ୍ଥାନକୁ ନିରାପଦ ମନେକରି ମୁଁ ଅବସ୍ଥାନ କରୁଛି ।

ବାଳୀ ବଳରେ ଭୟତ୍ରସ୍ତ ସୁଗ୍ରୀବ ପୁଣି କହିଲେ – ରାମ, ଦେଖ, ସେହି ଦର୍ପିତ ଦୁନ୍ଦୁଭିର ନରକଙ୍କାଳ ପର୍ବତାକାରରେ ଏଠାରେ ପଡ଼ିରହିଛି । ପୁଣି ଏହି ସପ୍ତଶାଳକୁ ଦର୍ଶନ କର । ବହୁଶାଖା ବିଶିଷ୍ଟ ଏହି ଶାଳବୃକ୍ଷମାନଙ୍କୁ ବାଳୀ ଏକାଥରକେ ହଲାଇ ପତ୍ରଶୂନ୍ୟ କରିଦେଇପାରେ । ବାଳୀର ଅସୀମ ବଳ ବିକ୍ରମ ବିଷୟ ମୁଁ ତୁମକୁ ଜଣାଇଲି । ଏବେ ତୁମେ କହ, ଏ ବାଳୀକୁ ତୁମେ କିପରି ଯୁଦ୍ଧରେ ମାରିପାରିବ ?

ସୁଗ୍ରୀବ ଏପରି କହିବାରୁ ଲକ୍ଷ୍ମଣ ହସି ହସି ପଚାରିଲେ, କ'ଣ କଲେ ତୁମର ବିଶ୍ୱାସ ହେବ ? ସୁଗ୍ରୀବ କହିଲେ, ଯେଉଁ ସାତୋଟି ଶାଳଗଛ ଦେଖୁଛ, ବାଳୀ ଏକ ଏକ କରି ତାକୁ ବହୁବାର ଭେଦ କରିଛି । ରାମ ଯଦି ଗୋଟିଏ ବାଣରେ ଏହା ମଧ୍ୟରୁ ଗୋଟିଏ ଶାଳଗଛକୁ ଭେଦ କରିବେ, ତା' ହେଲେ ବାଳୀକୁ ସେ ମାରିପାରିବେ ବୋଲି ମୁଁ ବିଶ୍ୱାସ କରିବି । ପୁଣି ଦୁନ୍ଦୁଭିର ଏହି ପର୍ବତାକାର ଅସ୍ଥିକଙ୍କାଳକୁ ପାଦରେ ଉଠାଇ ଦୁଇଶତ ଧନୁ (ଆଠଶହ ହାତ) ଦୂରକୁ ଫିଙ୍ଗି ଦେଇପାରିଲେ, ମୁଁ ବିଶ୍ୱାସ କରିବି ଯେ ସେ ବାଳୀକୁ ମାରିପାରିବେ । ପୁଣି ଅଳ୍ପ ସମୟ ଚିନ୍ତିତ ରହି ସୁଗ୍ରୀବ କହିଲେ, ବାଳୀ ମହାବୀର । ତାର ପରାକ୍ରମ ଭୁବନବିଖ୍ୟାତ । ଯୁଦ୍ଧରେ କେବେ ତାର ପରାଜୟ ହୋଇ ନାହିଁ । ଦେବତାମାନଙ୍କର ଅସାଧ୍ୟ କାର୍ଯ୍ୟ ସେ ସାଧନ କରିବାକୁ ସକ୍ଷମ । ତେଣୁ ସେହି ଅଜେୟ ବାନରେନ୍ଦ୍ରର ଶତ୍ରୁତାଭାଜନ ହୋଇ ମୁଁ ଏହି ଋଷ୍ୟମୂକ ପର୍ବତରେ ଅତି ଶଙ୍କିତ ଓ ଉଦ୍‌ବିଗ୍ନ ଭାବରେ କାଳଯାପନ କରୁଛି । ତୁମକୁ ମିତ୍ରରୂପେ ପାଇ ମୁଁ ହିମାଳୟକୁ ଆଶ୍ରୟ କରିବାପରି ମନେକରୁଛି । ରାଘବ, ମୁଁ ତୁମର ବଳ ପରୀକ୍ଷା କରୁ ନାହିଁ କି ତୁମ ସହିତ ବାଳୀର ତୁଳନା କରୁ ନାହିଁ । ଭସ୍ମ ମଧ୍ୟରେ ଲୁକ୍କାୟିତ ଅଗ୍ନିପରି ତୁମର ଧୈର୍ଯ୍ୟ ଓ ଆକୃତି ତୁମ ବଳର ପ୍ରମାଣ । କିନ୍ତୁ ଦୁର୍ବୃତ୍ତ ବାଳୀର ବଳ ମୁଁ ଜାଣେ । ତୁମର ବଳ ଜାଣେ ନାହିଁ । ସେଥିପାଇଁ ମୁଁ ଭୟକାତର ହୋଇ ରହିଛି ।

ରାମ ଅଳ୍ପ ହସି କହିଲେ – ବାନର, ଯଦି ମୋର ପରାକ୍ରମରେ ତୁମର ପ୍ରତ୍ୟୟ ହେଉ ନାହିଁ, ତା' ହେଲେ ଯୁଦ୍ଧରେ ମୁଁ ତୁମର ପ୍ରତ୍ୟୟ ଉତ୍ପାଦନ କରାଇପାରିବି । ଏହା କହି ରାମ ଦୁନ୍ଦୁଭିର ଶୁଷ୍କ କଙ୍କାଳକୁ ନିଜ ବୁଢ଼ା ଆଙ୍ଗୁଠିରେ ଅତି ସହଜରେ ଉଠାଇ ଦଶ ଯୋଜନ ଦୂରକୁ ଫିଙ୍ଗିଦେଲେ । ସୁଗ୍ରୀବ କହିଲେ – ମିତ୍ର, ଦୁନ୍ଦୁଭିର ଶରୀରକୁ ମୋର ଭ୍ରାତା ବାଳୀ ଯେତେବେଳେ ଉଠାଇ ଫିଙ୍ଗିଦେଇଥିଲା, ସେତେବେଳେ ସେ ତା' ସହିତ ଲଢ଼ି ଲଢ଼ି କ୍ଳାନ୍ତ ହୋଇ ପଡ଼ିଥିଲା । ପୁଣି ଦୁନ୍ଦୁଭିର ଶରୀର ସେତେବେଳେ ଆର୍ଦ୍ର ଓ ମାଂସଯୁକ୍ତ ଥିଲା । ବର୍ତ୍ତମାନ ତାହା ଶୁଷ୍କ ଅସ୍ଥିପାତ୍ର, ଯାହାକି ତୃଣ ସହିତ ତୁଳନୀୟ । ତୁମେ ପୁଣି ବେଶ୍ ସୁସ୍ଥ ଓ ଅକ୍ଳାନ୍ତ ଅଛ । ଏଥିରୁ ତୁମ ଦୁହିଁଙ୍କ ମଧ୍ୟରେ କାହାର ବଳ ଅଧିକ, ଜାଣିବା କଷ୍ଟକର । କିନ୍ତୁ ତୁମର ନିକ୍ଷିପ୍ତ ବାଣ ଯଦି ଗୋଟିଏ ଶାଳବୃକ୍ଷକୁ ଭେଦ କରିପାରିବ, ତା' ହେଲେ ତୁମ ଦୁହିଁଙ୍କର ପ୍ରକୃତ ବଳାବଳ ଜଣାପଡ଼ିବ ।

ମାନଦ ରାମ ବିଶାଳ ଧନୁ ଓ ବାଣ ଧରି ଶାଳବୃକ୍ଷକୁ ଲକ୍ଷ୍ୟ କରି ଏକ ଭୟଙ୍କର ଶର ନିକ୍ଷେପ କଲେ । ସେହି ସ୍ୱର୍ଣ୍ଣମଣ୍ଡିତ ବାଣର ଶବ୍ଦରେ ଦିଗ୍‌ବିଦିଗ ପ୍ରତିଧ୍ୱନିତ ହେଲା ଏବଂ ତାହା ମୁହୂର୍ତ୍ତକ ମଧ୍ୟରେ ସପ୍ତଶାଳକୁ ଏକ ସଙ୍ଗେ ଭେଦ କରି ପର୍ବତର ସାନୁଦେଶରେ

ଭୂତଳରେ ପ୍ରବେଶ କଲା ଏବଂ ମୁହୂର୍ତ୍ତକ ମଧ୍ୟରେ ଦ୍ରୁତ ବେଗରେ ରାମଙ୍କ ତୂଣୀରକୁ ଫେରିଆସିଲା । ଗୋଟିଏ ବାଣରେ ସପ୍ତଶାଳ ବିଦ୍ଧ ହେବାର ଦେଖି ସୁଗ୍ରୀବ କୃତାଞ୍ଜଳି ହୋଇ ରାମଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲେ ଏବଂ କହିଲେ ପ୍ରଭୁ, ମୁଁ ଏବେ ଆପଣଙ୍କର ବଳ ଜାଣିଲି । ଦେବତାମାନଙ୍କ ସହିତ ଇନ୍ଦ୍ରଙ୍କୁ ମଧ୍ୟ ଆପଣ ଶରାଘାତରେ ନିହତ କରିପାରନ୍ତି । ବାଳୀ କି ଛାର । ଆପଣଙ୍କୁ ମିତ୍ର ରୂପେ ପାଇ ମୁଁ ସନ୍ତୁଷ୍ଟ । ମୋର ସମସ୍ତ ଶୋକ ଦୂର ହୋଇଗଲା । ଆଜି ମୋର ଶତ୍ରୁ ବାଳୀକୁ ବଧ କରି ଆପଣ ମୋର ଆନନ୍ଦ ବର୍ଦ୍ଧନ କରନ୍ତୁ ।

ସୁଗ୍ରୀବଙ୍କୁ ଆଲିଙ୍ଗନ କରି ରାମ କହିଲେ, ଆମେ କିଷ୍କିନ୍ଧ୍ୟାକୁ ଯାଉଛୁ । ତୁମେ ଆମର ଆଗେ ଆଗେ ଚାଲ ଏବଂ ବାଳୀକୁ ଯୁଦ୍ଧପାଇଁ ଆହ୍ୱାନ କର ।

## ୬୬ ।। ବାଳୀ-ସୁଗ୍ରୀବ ଯୁଦ୍ଧ

ସମସ୍ତେ ସେଠାରୁ କିଷ୍କିନ୍ଧ୍ୟା ଯାଇ ଗହନ ବନ ମଧ୍ୟରେ ବୃକ୍ଷ ଅନ୍ତରାଳରେ ଲୁଚି ରହିଲେ । ସୁଗ୍ରୀବ ଗାଢ଼ ଭାବରେ ପରିକଚ୍ଛା ଭିଡ଼ି ବାଳୀକୁ ଯୁଦ୍ଧକୁ ଆହ୍ୱାନ କରିବାପାଇଁ ଘୋର ଗର୍ଜନରେ ଅମ୍ବର କମ୍ପିତ କଲେ । ଏ ଗର୍ଜନ ଶୁଣି ରଣଦୁର୍ମଦ ବାଳୀ ଯୁଦ୍ଧ କରିବାପାଇଁ ପହଞ୍ଚିଗଲା ।

ବାଳୀ ଓ ସୁଗ୍ରୀବଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ଅନ୍ତରୀକ୍ଷସ୍ଥିତ ଦୁଇଗ୍ରହ ମଧ୍ୟରେ ଯୁଦ୍ଧହେବା ଭଳି ତାହା ଜଣାଗଲା । ସେମାନେ ହସ୍ତପାଦ ଓ ମୁଷ୍ଟିରେ ପରସ୍ପରକୁ ଆଘାତ କରିବାକୁ ଲାଗିଲେ । ଧନୁର୍ଦ୍ଧାରୀ ରାମ ଏ ଦୁହିଁଙ୍କୁ ଦେଖି କିଏ ବାଳୀ କିଏ ସୁଗ୍ରୀବ ଜାଣିପାରିଲେ ନାହିଁ । ତେଣୁ ଏକାପରି ଦେଖାଯାଉଥିବା ଏ ଦୁଇଭାଇଙ୍କ ମଧ୍ୟରୁ କାହାକୁ ବାଳୀ ବୋଲି ମନେକରି ସେ ଶର ପ୍ରୟୋଗ କରିବେ, ଏହି ସନ୍ଦେହରେ ପଡ଼ିଗଲେ । ସୁଗ୍ରୀବ ବାଳୀଦ୍ୱାରା ପରାସ୍ତ ହୋଇ ଏବଂ ରାମଙ୍କୁ ନ ଦେଖି ଋଷ୍ୟମୂକ ପର୍ବତକୁ ପଳାୟନ କଲେ । କ୍ଲାନ୍ତ, ରକ୍ତାକ୍ତ ଓ ପ୍ରହାରରେ ଜର୍ଜରିତ ସୁଗ୍ରୀବ ଋଷ୍ୟମୂକ ଅରଣ୍ୟରେ ପଶିଯିବାର ଦେଖି ବାଳୀ କହିଲେ – ଯା, ଆଜି ତୋତେ ଛାଡ଼ିଦେଲି । ଶାପ ଭୟରେ ସେ ଆଉ ସୁଗ୍ରୀବଙ୍କ ପଛରେ ଗୋଡ଼ାଇଲା ନାହିଁ ।

ରାମ, ଲକ୍ଷ୍ମଣ, ହନୁମାନ ଋଷ୍ୟମୂକ ଫେରିଆସି ସୁଗ୍ରୀବଙ୍କ ସହିତ ମିଳିତ ହେଲେ । ସୁଗ୍ରୀବ ଲଜ୍ଜିତ ହୋଇ ତଳକୁ ଚାହିଁ କାତର ସ୍ୱରରେ କହିଲେ, ଆପଣ ବାଳୀକୁ ମାରିବାପାଇଁ ନିଜର ବିକ୍ରମ ଦେଖାଇଲେ । ତାହାକୁ ଆହ୍ୱାନ କର ବୋଲି ମୋତେ କହିଲେ । କିନ୍ତୁ ଶତ୍ରୁ ହାତରେ ମୋତେ ମାଡ଼ ମରାଇ ଇଏ କ'ଣ କଲେ ? ଆପଣ ଯଦି ସେହି ସମୟରେ କହିଥାନ୍ତେ ଯେ ବାଳୀକୁ ମାରିହେବ ନାହିଁ, ତା' ହେଲେ ମୁଁ ତ ସେଠାକୁ ଆଦୌ ଯାଇ ନ ଥା'ନ୍ତି ।

ରାମ କହିଲେ – ସୁଗ୍ରୀବ, ତୁମର କ୍ରୁଦ୍ଧ ହେବା ଉଚିତ ନୁହେଁ । ମୁଁ କାହିଁକି ଶର ପ୍ରୟୋଗ କଲି ନାହିଁ, ଶୁଣ । ଚାଲିଚଳନ, ଆକାର ପ୍ରକାର, ବେଶଭୂଷାରେ ତୁମର ଓ

ବାଳୀ ମଧ୍ୟରେ କୌଣସି ପାର୍ଥକ୍ୟ ମୁଁ ଦେଖିଲି ନାହିଁ । ସ୍ୱର, ତେଜ, ବଚନ ଓ ପରାକ୍ରମରେ ତୁମେ ଦୁହେଁ ସମାନ । ବାନରୋତ୍ତମ, ତୁମ ରୂପସାଦୃଶ୍ୟ ଯୋଗୁଁ ମୁଁ ଭ୍ରମରେ ପଡ଼ି ଭୟଙ୍କର ଶତ୍ରୁଘାତୀ ଶର ମୋଚନ କଲି ନାହିଁ । କାରଣ, କାଳେ ଏହି ଶର ତୁମକୁ ଯାଇ ବିଦ୍ଧ କରିବ । ମୋର ଅଜ୍ଞତା ବା ଭ୍ରମବଶରୁ ତୁମେ ଯଦି ନିହତ ହୋଇଥା'ନ୍ତ, ତା' ହେଲେ ଏହି ମୂର୍ଖତା ଓ ବାଲ୍ୟଚପଳତା ପାଇଁ ମୁଁ ଘୋର ପାପରେ ଭାଗୀ ହୋଇଥା'ନ୍ତି । କାରଣ, ତୁମକୁ ଅଭୟ ଦେଇ ମୁଁ ନିହତ କଲି । ମୁଁ, ଲକ୍ଷ୍ମଣ ଓ ସୀତା ତୁମର ଅଧୀନ, ତୁମର ଶରଣାଗତ । ଏବେ ତୁମେ ନିଃଶଙ୍କ ହୋଇ ଯୁଦ୍ଧ କର । ମୋର ଗୋଟିଏ ମାତ୍ର ବାଣରେ ବାଳୀ ଭୂତଳଶାୟୀ ହେବା ତୁମେ ଦେଖିପାରିବ । ତୁମ ଦୁହିଁଙ୍କ ମଧ୍ୟରେ ଦ୍ୱନ୍ଦ୍ୱଯୁଦ୍ଧ ହେବାବେଳେ ତୁମକୁ ଯେପରି ମୁଁ ଚିହ୍ନିପାରିବି, ସେଥିପାଇଁ ତୁମ ଦେହରେ କିଛି ରହିବା ଦରକାର । ଲକ୍ଷ୍ମଣ, ତୁମେ ଏକ ଗଜପୁଷ୍ପୀଲତା ଆଣି ସୁଗ୍ରୀବଙ୍କ ଗଳାରେ ପିନ୍ଧାଇ ଦିଅ । ଲକ୍ଷ୍ମଣ ଏକ ପ୍ରସ୍ଫୁଟିତ ଗଜପୁଷ୍ପୀଲତା ସୁଗ୍ରୀବଙ୍କ ଗଳାରେ ପିନ୍ଧାଇଦେଲେ । ସେହି ଶୁଭ୍ର ପୁଷ୍ପଯୁକ୍ତ ଲତା ସୁଗ୍ରୀବଙ୍କ ଗଳାରେ ଲମ୍ବମାନ ହୋଇ ସନ୍ଧ୍ୟାକାଳୀନ ମେଘ ଦେହରେ ବକପକ୍ଷୀମାଳା ପରି ସୁନ୍ଦର ଦେଖାଗଲା । ସେମାନେ ପୁନରାୟ କିଷ୍କିନ୍ଧ୍ୟା ଅଭିମୁଖରେ ଯାତ୍ରା କଲେ । ସେମାନଙ୍କ ସହିତ ହନୁମାନ, ନଳ, ନୀଳ ଓ ଯୂଥପତି ତେଜସ୍ୱୀ ତାର ମଧ୍ୟ ଗଲେ ।

ସେମାନେ ବାଟରେ ବହୁ ପର୍ବତ ନିର୍ଝର, ଅର୍ଦ୍ଧମୁକୁଳପଦ୍ମଶୋଭିତ, ହଂସ-ସାରସ-ସେବିତ ସୁନ୍ଦର ପୁଷ୍କରିଣୀମାନଙ୍କର ଦୃଶ୍ୟ ଦେଖି ଦେଖି ଗଲେ । କୋମଳ ଘାସପୂର୍ଣ୍ଣ ପ୍ରାନ୍ତରମାନଙ୍କରେ ମୃଗ ଓ ହସ୍ତୀମାନେ ବିହାର କରୁଥିବାର ଦେଖିଲେ । ଯାଉ ଯାଉ କଦଳୀବୃକ୍ଷବେଷ୍ଟିତ ଏକ ବିଶାଳ ବନ ରାମଙ୍କର କୌତୂହଳ ସୃଷ୍ଟି କଲା । ସୁଗ୍ରୀବ କହିଲେ— ରାଘବ, ଉଦ୍ୟାନ ପରି ଶୋଭମାନ ଏହି ବନ ସୁସ୍ୱାଦୁ ଫଳମୂଳ ଓ ଜଳରେ ପରିପୂର୍ଣ୍ଣ । କିନ୍ତୁ ଏହି ବନକୁ ପଶୁପକ୍ଷୀ ବା ଅନ୍ୟ ବନଚର ଜୀବ ବା ପ୍ରାଣୀମାନେ ଯା'ନ୍ତି ନାହିଁ । ଏଠାରେ ସପ୍ତଜନା ନାମରେ ସାତଜଣ ବ୍ରତାଚାରୀ ମୁନି ଜଳ ମଧ୍ୟରେ ମୁଣ୍ଡ ତଳକୁ କରି ଘୋର ତପସ୍ୟା କରିଥିଲେ । ସାତରାତ୍ରି ପରେ ସେମାନେ ଜଳରୁ ମୁହଁ ଉଠାଇ ବାୟୁ ଭକ୍ଷଣ କରୁଥିଲେ, ଏହିପରି ସାତଶହ ବର୍ଷ ତପସ୍ୟା କରିବାପରେ ସେମାନେ ସ୍ୱଦେହରେ ସ୍ୱର୍ଗକୁ ଯାଇଥିଲେ । ସେମାନଙ୍କର ତପସ୍ୟା ପ୍ରଭାବରେ ଏହି ଆଶ୍ରମ ସୁରକ୍ଷିତ । ଦେବାସୁର କେହି ଏହାକୁ ଆକ୍ରମଣ କରିପାରିବେ ନାହିଁ । ଏହା ମଧ୍ୟକୁ କେହି ଭୁଲକ୍ରମେ ପ୍ରବେଶ କଲେ ଆଉ ଫେରେ ନାହିଁ । ଏଠାରେ ଅଳଙ୍କାର ଧ୍ୱନି ଏବଂ ବାଦ୍ୟଗୀତ ଆଦି ଶୁଣାଯାଏ । ଅଗ୍ନିହୋତ୍ରୀମାନଙ୍କର ତ୍ରେତାଗ୍ନି ପ୍ରଜ୍ୱଳିତ ହେଉଥିବା ଯୋଗୁଁ ସେଥିରୁ ଉତ୍‌ଥିତ କପୋତର ଅଙ୍ଗପରି ଅରୁଣ ବର୍ଣ୍ଣର ଧୂମ ବୃକ୍ଷମାନଙ୍କୁ ଆଚ୍ଛାଦିତ କରୁଛି । ମେଘମାନେ ବୈଦୂର୍ଯ୍ୟର ପର୍ବତ ପରି ପ୍ରତିଭାତ ହେଉଛନ୍ତି । ଏଠାରେ ସେହି ଋଷିମାନଙ୍କୁ ମନେ ମନେ ଚିନ୍ତା କରି ସେମାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ କର । ପ୍ରଣାମାନ୍ତେ ସୁଗ୍ରୀବ ଓ ଅନ୍ୟ ବାନରମାନଙ୍କ ସହିତ ବହୁଦୂର ଯାତ୍ରା କରିବାପରେ ରାମ, ଲକ୍ଷ୍ମଣ ବାଳୀର ବଳରେ ପାଳିତ କିଷ୍କିନ୍ଧ୍ୟା ନଗରୀକୁ ଦେଖିପାରିଲେ ।

ସେମାନେ କିଷ୍କିନ୍ଧ୍ୟାରେ ପ୍ରବେଶ କରି ଏକ ଅରଣ୍ୟ ମଧ୍ୟରେ ବୃକ୍ଷ ଅନ୍ତରାଳରେ ଲୁଚି ରହିଲେ । ସୁଗ୍ରୀବ ନିଜର ବନ୍ଧୁମାନଙ୍କ ଗହଣରେ ରହି ନିଜକୁ ଖୁବ ବଳବାନ୍ ମନେ କଲେ ଏବଂ ଘୋର ଗର୍ଜନ କରି ବାଳୀକୁ ଯୁଦ୍ଧକୁ ଆହ୍ୱାନ କଲେ । ସେ ରାମଚନ୍ଦ୍ରଙ୍କୁ କହିଲେ, ବାଳୀବଧ ପାଇଁ ଆପଣ ପ୍ରତିଜ୍ଞା କରିଛନ୍ତି । ତାହା ଆଜି ସଫଳ କରନ୍ତୁ । ରାମ କହିଲେ, ଆଉ ଅସୁବିଧା ହେବ ନାହିଁ । କାରଣ, ଏହି ଗଜପୁଷ୍ପୀଲତା ତୁମେ ବେକରେ ପକାଇଥିବା ଯୋଗୁଁ ତୁମକୁ ଭଲଭାବରେ ଚିହ୍ନିହେବ । ଆଜି ଏକମାତ୍ର ଶରରେ ବାଳୀଜନିତ ତୁମର ଭୟ ଓ ବୈରକୁ ମୁଁ ଦୂର କରିବି । ମୋ ଦୃଷ୍ଟିପଥକୁ ଆସି ବାଳୀ ଯଦି ଜୀବନ ନେଇ ଫେରିଯାଏ, ତା' ହେଲେ ତୁମେ ମୋତେ ଦୋଷ ଦେବ । ବିପନ୍ନ ହେଲେ ମଧ୍ୟ ସତ୍ୟ ଓ ଧର୍ମରୁ ମୁଁ କେବେହେଲେ ବିଚ୍ୟୁତ ହୋଇ ନାହିଁ । ମୁଁ ମୋର ପ୍ରତିଶ୍ରୁତି ନିଶ୍ଚୟ ପାଳନ କରିବି । ସୁଗ୍ରୀବ, ବାଳୀକୁ ଯୁଦ୍ଧକୁ ଆହ୍ୱାନ କରି ତୁମେ ବାରମ୍ବାର ଗର୍ଜନ କର । ସେ ନିଶ୍ଚୟ ତୁମ ସହିତ ଲଢ଼ିବାପାଇଁ ଆସିବ । କାରଣ, ପରାକ୍ରମୀ ବୀରମାନେ ଶତ୍ରୁମାନଙ୍କର ଆହ୍ୱାନ କେବେହେଲେ ସହିପାରନ୍ତି ନାହିଁ । ବିଶେଷତଃ ସ୍ତ୍ରୀଲୋକମାନେ ନିକଟରେ ଥିଲେ ସେମାନେ କେବେ ସହ୍ୟ କରିବେ ନାହିଁ ।

ହେମପିଙ୍ଗଳବର୍ଣ୍ଣ ସୁଗ୍ରୀବ ରାମଙ୍କର କଥା ଶୁଣି ଅମ୍ବରଭେଦୀ ସ୍ୱରରେ ଗର୍ଜନ କଲେ । ସେହି ଗର୍ଜନରେ ଗାଭୀମାନେ ଭୀତତ୍ରସ୍ତ ହେଲେ । ମୃଗମାନେ ପଳାଇଗଲେ । ଆକାଶରୁ ଉଲ୍‌କାପାତ ହେଲା । ବାଳୀ ନିଜ ଅନ୍ତଃପୁରରେ ଥାଇ ସେହି ଗର୍ଜନ ଶୁଣିପାରିଲେ । ତାଙ୍କର ନିଶା ଦୂର ହୋଇଗଲା । ତାଙ୍କର କରାଳ ଦନ୍ତଯୁକ୍ତ ମୁଖ ଭୟଙ୍କର ଦେଖାଗଲା ଏବଂ ଚକ୍ଷୁ ରକ୍ତବର୍ଣ୍ଣ ହୋଇଗଲା । ପାଦରେ ମେଦିନୀ ପ୍ରକମ୍ପିତ କରି ବାଳୀ ଶୀଘ୍ର ବାହାରିଆସିଲେ । ପତ୍ନୀ ତାରା ତାଙ୍କୁ ଆଲିଙ୍ଗନ କରି ବହୁ ହିତବାକ୍ୟ କହିଲେ । ସେ କହିଲେ, ବୀର, ନଦୀର ବେଗ ପରି ତୁମର କ୍ରୋଧ ପରିତ୍ୟାଗ କର । କାଲି ଯୁଦ୍ଧ କରିବ । ଆଜି ହଠାତ୍ ଯୁଦ୍ଧ କରିବାକୁ ବାହାରିବା ମୋତେ ଭଲ ଲାଗୁ ନାହିଁ । ଏ ସୁଗ୍ରୀବ ଅଳ୍ପ ସମୟ ପୂର୍ବରୁ ତୁମକୁ ଯୁଦ୍ଧପାଇଁ ଆହ୍ୱାନ କରି ତୁମଦ୍ୱାରା ପ୍ରହୃତ ଓ ପରାଜିତ ହୋଇ ପଳାୟନ କରିଥିଲା । ଏହାପରେ ସେ ଯେ ପୁଣିଥରେ ଆସିଛି, ତାର ଏହି ଗର୍ବ, ଉତ୍ସାହ ଓ ଗର୍ଜନର ନିଶ୍ଚୟ କିଛି କାରଣ ଅଛି । ବିନା ସହାୟତାରେ ସୁଗ୍ରୀବ ଏଠାକୁ ଆସି ନାହିଁ । ସେ ସ୍ୱଭାବରେ ବିଚାରନିପୁଣ ଓ ବୁଦ୍ଧିମାନ୍ । ସେ ସବୁକଥା ବୁଝି ବିଚାରି ପୁଣି ଏଠାକୁ ଆସିଛି ।

ତାରା କହିଲେ– ବୀର, ମୁଁ ମଧ୍ୟ ଅଙ୍ଗଦଠାରୁ ଯାହା ଶୁଣିଛି, ତୁମକୁ ଜଣାଇ ଦେଉଛି । ଅଙ୍ଗଦ ବନକୁ ଯାଇଥିବାବେଳେ ଦୂତମାନେ ତାକୁ କହିଥିଲେ ଯେ ଅଯୋଧ୍ୟାର ରାଜପୁତ୍ର ରାମ ଓ ଲକ୍ଷ୍ମଣ ବନକୁ ଆସିଛନ୍ତି । ସେମାନେ ଶୂର, ବୀର, ଯୁଦ୍ଧରେ ଅଜେୟ । ସେମାନେ ସୁଗ୍ରୀବର ସହାୟତା କରୁଛନ୍ତି । ରାମ ସାଧୁମାନଙ୍କର ଆଶ୍ରୟଦାତା, ବିପନ୍ନମାନଙ୍କର ରକ୍ଷକ, ଜ୍ଞାନବିଜ୍ଞାନସମ୍ପନ୍ନ ଓ ପିତୃସତ୍ୟ ପାଳନପାଇଁ ସେ ବନକୁ ଆସିଛନ୍ତି । ସର୍ବଗୁଣାକର ରାମଙ୍କର ତୁମେ ବିରୋଧ କରିବା ଉଚିତ ହେବ ନାହିଁ । ସୁଗ୍ରୀବ ସହିତ ଆଉ ବିବାଦ କର ନାହିଁ । ସେ ତୁମର ଭାଇ । ସବୁବେଳେ ତୁମର ବନ୍ଧୁ ହୋଇ ରହିବ ।

ବାଳୀ ତାରାର ଉପଦେଶକୁ ଉପେକ୍ଷା କରି କହିଲେ, ସୁଗ୍ରୀବ ଭାଇ ହୋଇ ମୋର ଶତ୍ରୁରୂପେ ଗର୍ଜନ କରୁଛି । ମୁଁ କେବେହେଲେ ତାକୁ କ୍ଷମା କରିବି ନାହିଁ । ମୁଁ କଦାପି ଯୁଦ୍ଧରେ ପରାଜିତ ହୋଇ ନାହିଁ ବା ପୃଷ୍ଠଭଙ୍ଗ ଦେଇ ନାହିଁ । ମୋ ପରି ବୀର ପକ୍ଷରେ ଶତ୍ରୁର ଧମକ ଅସହ୍ୟ ଓ ମରଣଠାରୁ ବଳି ଦୁଃଖପ୍ରଦ । ରାଘବଙ୍କ ସମ୍ପର୍କରେ ତୁମର ଅନ୍ୟ ଧାରଣା ହେବା ଉଚିତ ନୁହେଁ । ସେ ଧର୍ମଜ୍ଞ, କୃତଜ୍ଞ । କେବେ ପାପାଚରଣ କରିବେ ନାହିଁ । ତୁମେ ମୋ ପାଇଁ ବ୍ୟସ୍ତ ହେବା ଉଚିତ ନୁହେଁ । ତୁମେ ତୁମ ସହଚରୀମାନଙ୍କ ସହିତ ଫେରିଯାଅ । ଆଉ ଆମ ପଛେ ପଛେ ଆସ ନାହିଁ । ମୁଁ ସୁଗ୍ରୀବ ସହିତ ଯୁଦ୍ଧ କରି ତାର ଦର୍ପ ଚୂର୍ଣ୍ଣ କରିବି, ମାତ୍ର ତାର ପ୍ରାଣନାଶ କରିବି ନାହିଁ । ସେ ମୋ ଦ୍ୱାରା ପ୍ରହୃତ ହୋଇ ଆପେ ଆପେ ପଳାଇଯିବ ।

ବିନାଶକାଳ ଉପସ୍ଥିତ ହେଲେ କେବେ ହିତବାକ୍ୟ ଭଲ ଲାଗେ ନାହିଁ । ବାଳୀଙ୍କର ଠିକ୍ ସେଇ ଅବସ୍ଥା ହେଲା । ତାରା ସ୍ୱାମୀଙ୍କୁ ଆଲିଙ୍ଗନ କରି ତାଙ୍କର ଚତୁଃପାର୍ଶ୍ୱରେ ପ୍ରଦକ୍ଷିଣପୂର୍ବକ ସ୍ୱସ୍ତ୍ୟୟନ କଲେ ଏବଂ ଶୋକାର୍ତ୍ତ ହୋଇ ଅନ୍ୟ ପୁରନାରୀଙ୍କ ସହିତ ଅନ୍ତଃପୁରକୁ ଚାଲିଗଲେ ।

ବାଳୀ ମହାସର୍ପ ପରି ଫୁତ୍କାର କରି ସୁଗ୍ରୀବ ଆଡ଼କୁ ମାଡ଼ିଆସିଲେ । ଉଭୟେ ମୁଷ୍ଟିଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ପରସ୍ପରର ସମ୍ମୁଖୀନ ହେଲେ । ବାଳୀ କହିଲେ, ମୋର ଏହି ବଦ୍ଧମୁଷ୍ଟି ତୋ ଉପରେ ପଡ଼ି ଶୀଘ୍ର ତୋର ପ୍ରାଣନାଶ ହେବ । ସୁଗ୍ରୀବ କହିଲେ, ମୋର ମୁଷ୍ଟି ତୋ ମସ୍ତକରେ ପଡ଼ିଲେ ତୋର ପ୍ରାଣ ହରଣ କରିବ । ବାଳୀ ଓ ସୁଗ୍ରୀବ ପରସ୍ପରକୁ ମୁଷ୍ଟି ପ୍ରହାର କରିବାକୁ ଲାଗିଲେ ଏବଂ ଉଭୟ ରକ୍ତାକ୍ତ ହୋଇପଡ଼ିଲେ । କିଛି ସମୟ ପରେ ସୁଗ୍ରୀବ ଏକ ତାଳଗଛ ଉପାଡ଼ି ତାହା ବାଳୀଙ୍କ ଉପରେ ନିକ୍ଷେପ କଲେ । ବଜ୍ର ମହାଗିରି ଉପରେ ପଡ଼ିବା ପରି ତା ବାଳୀ ଦେହରେ ବାଜି ତାଙ୍କୁ ବିଚଳିତ କରିଦେଲା । ଉଭୟ ବୃକ୍ଷ, ଶିଳା, ଜଂଘ, ପାଦ, ବାହୁ, ମୁଖ ଓ ନଖ ସାହାଯ୍ୟରେ ପରସ୍ପରକୁ ନିର୍ମମ ଭାବରେ ଆଘାତ କରିବାକୁ ଲାଗିଲେ । କିନ୍ତୁ କାଳକ୍ରମେ ସୁଗ୍ରୀବ ଦୁର୍ବଳ ହୋଇପଡ଼ିଲେ ଓ ବାଳୀର ବଳ ବଢ଼ିବାକୁ ଲାଗିଲା । ସୁଗ୍ରୀବ ହୀନବଳ ହୋଇଯାଇ ରାମଚନ୍ଦ୍ର କେଉଁଠି ଅଛନ୍ତି ବୋଲି ବାରମ୍ବାର ଦୃଷ୍ଟିପାତ କରିବାକୁ ଲାଗିଲେ । ରାମ ଦେଖିଲେ ସୁଗ୍ରୀବଙ୍କୁ ରକ୍ଷା କରିବାକୁ ହେଲେ ବାଳୀ ପ୍ରତି ଶୀଘ୍ର ଶର ନିକ୍ଷେପ କରିବାକୁ ହେବ । ସେ ତୂଣୀରରୁ ବାହାର କରି ସର୍ପତୁଲ୍ୟ ଏକ ମହାଶର ଧନୁରେ ସଂଯୋଗ କଲେ । ତାହା ରାମଙ୍କ ଧନୁରୁ ମୁକ୍ତହୋଇ ବଜ୍ରପରି ବାଳୀଙ୍କର ବକ୍ଷକୁ ଘୋର ଶବ୍ଦରେ ବିଦ୍ଧକଲା ।

ଅସତର୍କ ବାଳୀ ହତପ୍ରଭ ହୋଇ ଶରାଘାତରେ ଭୂପତିତ ହେଲେ । ରଜ୍ଜୁ ଛିଣ୍ଡିଗଲେ ପତାକା ଯେପରି ପଡ଼ିଯାଏ, ପୁଷ୍ପିତ ଅଶୋକ ବୃକ୍ଷ ପର୍ବତ ଉପରେ ପଡ଼ିଲେ ଯେପରି ଦେଖାଯାଏ, ଭୂପତିତ ବାଳୀ ସେହିପରି ଦେଖାଗଲେ । ଆଶ୍ୱିନପୂର୍ଣ୍ଣିମାର ଉତ୍ସବ ଶେଷରେ ଟଣା ହୋଇଯାଇଥିବା ଇନ୍ଦ୍ରଧ୍ୱଜପରି ସେ ଅଚେତନ ହୋଇ ପଡ଼ିଗଲେ । ଇନ୍ଦ୍ରଦତ୍ତ ରତ୍ନଖଚିତ ସ୍ୱର୍ଣ୍ଣହାର ବାଳୀଙ୍କର ପ୍ରାଣ, ତେଜ ଓ ସୌନ୍ଦର୍ଯ୍ୟ ରକ୍ଷା କରୁଥିଲା ।

ସେହି ସୁବର୍ଣ୍ଣମାଳାରେ ଶୋଭିତ ବାଳୀ ସନ୍ଧ୍ୟାରାଗରଞ୍ଜିତ ମେଘପରି ଶୋଭା ପାଇଲେ । ବାନରେନ୍ଦ୍ର ବାଳୀ ଭୂପତିତ ହେବାରୁ ଚନ୍ଦ୍ରହୀନ ଆକାଶ ପରି ପୃଥିବୀ ଶୋଭାହୀନ ହେଲା । ବାଳୀଙ୍କର ଶରୀର ଭୂପତିତ ହେଲେ ମଧ୍ୟ ପ୍ରାଣ, ତେଜ, ପରାକ୍ରମ ଓ ସୌନ୍ଦର୍ଯ୍ୟ ତାଙ୍କୁ ଛାଡ଼ି ନ ଥିଲା । ତାଙ୍କର ପ୍ରଶସ୍ତ ବକ୍ଷ, ବିଶାଳ ବାହୁ, ଦୀପ୍ତ ମୁଖ ଓ ପିଙ୍ଗଳ ଚକ୍ଷୁ ଦେଖି ରାମ, ଲକ୍ଷ୍ମଣ ଅଭିଭୂତ ହେଲେ ଏବଂ ଏହି ପ୍ରସିଦ୍ଧ ବୀରଙ୍କୁ ସମ୍ମାନ ଦେଖାଇବାପାଇଁ ତାଙ୍କର ନିକଟବର୍ତ୍ତୀ ହେଲେ । ସେତେବେଳେ ବାଳୀଙ୍କର ପ୍ରାଣ ଓ ତେଜ କମି ଆସିଥିଲା ଏବଂ ଚେତନା ମଧ୍ୟ ଲୋପ ପାଇ ଆସୁଥିଲା ।

## ୬୭ ॥ ବାଳୀଙ୍କର ଭର୍ତ୍ସନା

ବାଳୀ ରଣଗର୍ବିତ ରାମଚନ୍ଦ୍ରଙ୍କୁ ଧର୍ମଯୁକ୍ତ କଠୋର ବାକ୍ୟରେ ଭର୍ତ୍ସନା କରି କହିଲେ – ରାମ, ମୁଁ ଅନ୍ୟ ସହିତ ଯୁଦ୍ଧ କରୁଥିବାବେଳେ ଲୁଚିରହି ମୋତେ ମାରିବା ଦ୍ୱାରା ତୁମର କେଉଁ ଗୁଣ ବିକଶିତ ହେଲା ? କୁଳୀନ, ବଳବାନ୍, ତେଜସ୍ୱୀ, କାରୁଣିକ, ପ୍ରଜାହିତେ ରତ, ଉତ୍ସାହୀ, ଦୟାଳୁ, ସମୟଜ୍ଞ ଓ ଦୃଢ଼ସଙ୍କଳ୍ପ ବୋଲି ପୃଥିବୀରେ ସମସ୍ତେ ତୁମର ଯଶୋଗାନ କରନ୍ତି । ଦମ, ଶମ, କ୍ଷମା, ଧର୍ମ, ବୀର୍ଯ୍ୟ, ପରାକ୍ରମ, ଅପକାରୀର ଦଣ୍ଡବିଧାନ ଆଦି ରାଜୋଚିତ ଗୁଣ ଓ ଶ୍ରେଷ୍ଠ ଆଭିଜାତ୍ୟ ତୁମର ଅଛି ବୋଲି ମୋର ଧାରଣା ଥିଲା । ତେଣୁ ତାରାର ମନା ନ ମାନି ମୁଁ ସୁଗ୍ରୀବ ସହିତ ଯୁଦ୍ଧ କରିବାକୁ ଆସିଥିଲି । ତୁମକୁ ଦେଖିବା ପୂର୍ବରୁ ମୁଁ ଭାବିଥିଲି ଯେ ଅନ୍ୟ ସହିତ ଯୁଦ୍ଧ କରୁଥିବାବେଳେ ମୋତେ ଅସାବଧାନ ଦେଖି ତୁମେ କେବେ ମାରିବ ନାହିଁ । ବର୍ତ୍ତମାନ ବୁଝୁଛି, ତୁମେ କିପରି ଦୁରାତ୍ମା, ଧର୍ମଧ୍ୱଜୀ, ଅଧାର୍ମିକ, ତୃଣରେ ଆଚ୍ଛନ୍ନ କୂପ ପରି କପଟାଚାରୀ, ପ୍ରଚ୍ଛନ୍ନ ଅଗ୍ନିପରି ସାଧୁବେଶଧାରୀ ପାପୀ । ମୁଁ କେବେହେଲେ ତୁମ ପ୍ରତି, ତୁମ ଦେଶ ଓ ନଗର ପ୍ରତି ଅନ୍ୟାୟ କରି ନାହିଁ । ମୋ ପରି ନିର୍ଦ୍ଦୋଷ ବ୍ୟକ୍ତିକୁ ତୁମେ କାହିଁକି ହତ୍ୟାକଲ ? ମୁଁ ଫଳମୂଳଭୋଜୀ ବନଚାରୀ ବାନର । ତୁମେ ପ୍ରିୟଦର୍ଶନ ରାଜପୁତ୍ର, ତୁମ ସହିତ ମୋର କ'ଣ ବିବାଦ ଥାଇପାରେ ? କୌଣସି ଧର୍ମରକ୍ଷକ ଶାସ୍ତ୍ରଜ୍ଞ କ୍ଷତ୍ରିୟ ଏପରି ନିଷ୍ଠୁର କାର୍ଯ୍ୟ କରିବ ନାହିଁ । ମୋ ପରି ନିରପରାଧ ବ୍ୟକ୍ତିକୁ ନିହତ କରି ତୁମେ ସାଧୁସଜ୍ଜନ ସମାଜରେ କ'ଣ ବୋଲି ନିଜକୁ ପରିଚୟ ଦେବ ? ଅଧର୍ମୀ ପତିକୁ ଲାଭକରି ସଚ୍ଚରିତ୍ରା ଗୁଣବତୀ ଭାର୍ଯ୍ୟାର ଯେଉଁ ଦଶା ହୁଏ, ତୁମକୁ ସ୍ୱାମୀ ରୂପେ ଲାଭକରି ବସୁନ୍ଧରାର ସେହି ଅବସ୍ଥା ହେବ । ତୁମପରି ଏକ ଶଠ, ନୀଚ, ମିଥ୍ୟାବାଦୀ କିପରି ଦଶରଥଙ୍କ ପୁତ୍ର ହୋଇ ଜନ୍ମ ହେଲା ?

ମୁମୂର୍ଷୁ ବାଳୀ ପୁଣି କହିଲେ, ରାଜପୁତ୍ର, ସମ୍ମୁଖ ଯୁଦ୍ଧରେ ମୋ' ସହିତ ଲଢ଼ିଥିଲେ ଆଜି ମୋର ଯେଉଁ ଅବସ୍ଥା ହୋଇଛି, ତୁମର ସେହି ଅବସ୍ଥା ହୋଇଥାନ୍ତା । ସୁପ୍ତବ୍ୟକ୍ତିକୁ ସର୍ପଦଂଶନ କରି ମାରିବାପରି, ଲୁକ୍କାୟିତ ରହି ତୁମେ ମୋତେ ନିହତ କଲ । କାରଣ, ସମ୍ମୁଖ ଯୁଦ୍ଧରେ ମୁଁ ଅଜେୟ । ସୁଗ୍ରୀବର ପ୍ରିୟଭାଜନ ହେବାପାଇଁ ତୁମେ ଏହା କରିଛ ବୋଲି କହିପାର, କିନ୍ତୁ ଯେଉଁ ଉଦ୍ଦେଶ୍ୟରେ ତୁମେ ସୁଗ୍ରୀବ ସହିତ ମିତ୍ରତା କରିଛ, ମୋତେ ତୁମର

ସେ ଅଭିପ୍ରାୟ ଜଣାଇଥିଲେ ମୁଁ ଏକାଦିନକେ ସୀତାଙ୍କୁ ଖୋଜିଆଣି ଦେଇଥାନ୍ତି । ତୁମର ପତ୍ନୀକୁ ହରଣ କରିଥିବା ଦୁରାତ୍ମା ରାକ୍ଷସ ରାବଣର ବେକକୁ ବାନ୍ଧି ଜୀବିତ ଅବସ୍ଥାରେ ତୁମ ଆଗରେ ଆଣି ପହଞ୍ଚାଇ ଦେଇଥାନ୍ତି । ମୁଁ ସ୍ୱର୍ଗକୁ ଗଲେ ସୁଗ୍ରୀବ ରାଜ୍ୟ ଲାଭ କରିବା ଯୁକ୍ତିଯୁକ୍ତ । କିନ୍ତୁ ତୁମେ ଅଧର୍ମରେ ଯେ ମୋତେ ନିହତ କଲ, ତା' ପଛରେ କୌଣସି ଯୁକ୍ତି ନାହିଁ ।

ରାମ ବାଳୀଙ୍କୁ କହିଲେ – ଧର୍ମ, ଅର୍ଥ, କାମ ଓ ଲୋକାଚାର ନ ଜାଣି ତୁମର ବାଳସୁଲଭ ଚପଳତା ଦୋଷରୁ ମୋର ନିନ୍ଦା କରୁଛ । ବନ ପର୍ବତ ସମେତ ଏ ସମଗ୍ର ପୃଥିବୀ ଇକ୍ଷ୍ୱାକୁମାନଙ୍କର ରାଜ୍ୟ । ଧର୍ମଜ୍ଞ ଭରତ ଏହି ପୃଥିବୀକୁ ପାଳନ କରୁଛନ୍ତି । ତାଙ୍କରି ଦ୍ୱାରା ଆଦିଷ୍ଟ ହୋଇ ଧର୍ମର ବିସ୍ତାରପାଇଁ ଆମେ ବିଚରଣ କରୁଛୁ । ତୁମେ ଧର୍ମବିରୁଦ୍ଧ ନିନ୍ଦନୀୟ କାର୍ଯ୍ୟ କରିଛ । ପୁତ୍ରବଧୂତୁଲ୍ୟ କନିଷ୍ଠଭ୍ରାତାର ପତ୍ନୀକୁ ଅପହରଣ କରିଛ । କାମପ୍ରବୃତ୍ତ ହୋଇ ସୁଗ୍ରୀବଙ୍କର ସ୍ତ୍ରୀ ସହିତ ପାପାଚରଣ କରୁଥିବା ଯୋଗୁଁ ତୁମପରି ବ୍ୟଭିଚାରୀ ବ୍ୟକ୍ତି ନିଶ୍ଚିତରୂପେ ଦଣ୍ଡନୀୟ । ମୁଁ ପୁଣି ସୁଗ୍ରୀବଙ୍କ ସହିତ ମିତ୍ରତାସୂତ୍ରରେ ଆବଦ୍ଧ । ତାଙ୍କର ଯେଉଁଥିରେ ମଙ୍ଗଳ ହେବ, ତାହା ସମ୍ପାଦନ କରିବା ମୋର କର୍ତ୍ତବ୍ୟ ।

ବାଳୀଙ୍କର ପ୍ରାଣ ଶେଷ ହୋଇ ଆସୁଥିଲା । ସେ ଆଉ ଯୁକ୍ତିତର୍କ ନ କରି ଶୋକାତୁର ହୋଇ କହିଲେ – ରାମ, ମୋ' ପାଇଁ, ତାରାପାଇଁ ବା ଅନ୍ୟ ବନ୍ଧୁବାନ୍ଧବଙ୍କ ପାଇଁ ମୋର ଚିନ୍ତା ନାହିଁ । କିନ୍ତୁ ପୁତ୍ର ଅଙ୍ଗଦ ନିମନ୍ତେ ମୋର ଦୁଃଖ ହେଉଛି । ବାଲ୍ୟକାଳରୁ ସେ ମୋ' ଦ୍ୱାରା ଲାଳିତ ପାଳିତ । ମୋର ଓ ତାରାର ସେ ଏକମାତ୍ର ପୁତ୍ର । ତେଣୁ ସେ ସୁଗ୍ରୀବ ଓ ଆପଣଙ୍କର ରକ୍ଷଣୀୟ । ଲକ୍ଷ୍ମଣ ଓ ଭରତଙ୍କୁ ଆପଣ ଯେଉଁ ଦୃଷ୍ଟିରେ ଦେଖନ୍ତି, ସୁଗ୍ରୀବ ଓ ଅଙ୍ଗଦଙ୍କୁ ସେହି ଦୃଷ୍ଟିରେ ଦେଖିବେ । ମୋ ଯୋଗୁଁ ତାରାଙ୍କୁ ସୁଗ୍ରୀବ ଯେପରି ଅବମାନନା ନ କରେ, ତାର ବ୍ୟବସ୍ଥା ମଧ୍ୟ କରିବେ । ଆପଣଙ୍କ ଅନୁଗ୍ରହ ଲାଭ କଲେ ସୁଗ୍ରୀବ ସୁଚାରୁରୂପେ ରାଜ୍ୟ ଚଳାଇପାରିବ ।

ରାମ କହିଲେ – ବାନରଶ୍ରେଷ୍ଠ, ତୁମେ ଚିନ୍ତା କର ନାହିଁ । ତୁମ ପାଖରେ ଅଙ୍ଗଦ ଯେପରି ଭାବରେ ଚଳୁଥିଲା, ସୁଗ୍ରୀବ ଓ ମୋ ପାଖରେ ସେ ସେହିପରି ଚଳିବ ।

## ୬୮ ।। ଶୋକାତୁରା ତାରା : ବାଳୀଙ୍କର ମୃତ୍ୟୁ

ବାଳୀର ନିଧନ ସମ୍ବାଦ କିଷ୍କିନ୍ଧ୍ୟା ନଗରୀରେ ଖେଳିଗଲା । ବାନର ଯୋଦ୍ଧାମାନେ ଭୟତ୍ରସ୍ତ ହୋଇ ପଳାଇବାକୁ ଲାଗିଲେ । ଏହି ନିଦାରୁଣ ସମ୍ବାଦରେ ଶୋକାର୍ତ୍ତ ତାରା ପୁତ୍ର ଅଙ୍ଗଦକୁ ଧରି ରଣସ୍ଥଳକୁ ଆସିବାବେଳେ ଦେଖିଲେ, ଯୂଥପତି ମରିଯିବା ପରେ ମୃଗଯୂଥ ଯେପରି ଭଗ୍ନ ହୋଇ ପଳାୟନ କରନ୍ତି, ସେହିପରି ଅଙ୍ଗଦର ରକ୍ଷାକାରୀ କିଷ୍କିନ୍ଧ୍ୟାର ବାନରମାନେ ପଳାଉଛନ୍ତି । ତାରା ସେମାନଙ୍କୁ ଡାକି କହିଲା – ବାନରଗଣ, ଯେଉଁ ରାଜସିଂହଙ୍କର ଆଗେ ଆଗେ ତୁମେ ଚାଲୁଥିଲ, ବର୍ତ୍ତମାନ ତାଙ୍କୁ ଛାଡ଼ି କୁଆଡ଼େ ଭୟରେ

ତୁମେ ପଳାଉଛ ? ତାଙ୍କର କ୍ରୂର ଭ୍ରାତା ରାଜ୍ୟପ୍ରାପ୍ତି ପାଇଁ ରାମଙ୍କ ସାହାଯ୍ୟରେ ଦୂରରୁ ଶରାଘାତ କରି ତାଙ୍କୁ ନିହତ କରାଇଛି ।

ଭୟବିହ୍ୱଳ ବାନରମାନେ କହିଲେ, ତୁମର ପୁତ୍ର ଅଙ୍ଗଦ ଜୀବିତ । ତୁମେ ଫେରିଯାଇ ଅଙ୍ଗଦଙ୍କୁ ରକ୍ଷାକର । ଯମ ରାମରୂପରେ ଆସି ବାଳୀଙ୍କ ପ୍ରାଣ ହରଣ କରି ନେଇଯାଉଛି । ଇନ୍ଦ୍ରପରି ପରାକ୍ରାନ୍ତ ବାନରରାଜ ବାଳୀ ନିହତ ହେବାପରେ ବାନରସେନା ବର୍ତ୍ତମାନ ବିକ୍ଷୁବ୍ଧ । ଅଙ୍ଗଦଙ୍କୁ ରାଜାରୂପେ ଅଭିଷିକ୍ତ କରି କିଷ୍କିନ୍ଧ୍ୟା ନଗରୀକୁ ବୀରମାନଙ୍କ ଦ୍ୱାରା ରକ୍ଷାକର । ତା' ନ ହେଲେ ଯେଉଁସବୁ ରାଜ୍ୟଲୁବ୍ଧ ବାନରମାନେ ସୁଗ୍ରୀବ ପକ୍ଷରେ ଅଛନ୍ତି, ସେମାନେ ଶୀଘ୍ର ଏହି ଦୁର୍ଗ ମଧ୍ୟରେ ପ୍ରବେଶ କରିବେ ।

ତାରା କହିଲେ, ସେହି ସିଂହବିକ୍ରମ ରାଜା ନିହତ ହେବାପରେ ମୋର ପୁତ୍ରରେ, ରାଜ୍ୟରେ ବା ନିଜଠାରେ ଆଉ କୌଣସି ମମତା ନାହିଁ । ସ୍ୱାମୀଙ୍କର ଚରଣତଳହିଁ ମୋର କାମ୍ୟ । ଏହା କହି ଶୋକାତୁରା ତାରା ମସ୍ତକ ଓ ବକ୍ଷକୁ କରାଘାତ କରି ନିଜର ସ୍ୱାମୀଙ୍କ ପାଖକୁ ଚାଲିଆସିଲେ । ସେ ରାମଚନ୍ଦ୍ର, ଲକ୍ଷ୍ମଣ ଓ ସୁଗ୍ରୀବଙ୍କୁ ଅତିକ୍ରମ କରି ଭୂମିରେ ମୂର୍ଚ୍ଛିତ ହୋଇ ପଡ଼ିଗଲେ ଏବଂ କ୍ଷଣକ ପରେ ସ୍ୱାମୀଙ୍କୁ ଆଲିଙ୍ଗନ କରି ରୋଦନ କରିବାକୁ ଲାଗିଲେ । ବାନରେନ୍ଦ୍ର, ମୁଁ ତୁମ ପାଖକୁ ଆସିଛି, ମୋତେ କାହିଁକି କଥା ନ କହି ଏପରି ଧରାତଳରେ ଶୟନ କରିଛ ? ତୁମେ ଏହି ବସୁଧାର ଅଧିପତି ଥିବା ଯୋଗୁଁ ମୋତେ ଛାଡ଼ି ବୋଧହୁଏ ବସୁଧାକୁ ଆଲିଙ୍ଗନ କରିବାପାଇଁ ସ୍ଥିର କରିଛ ? ମୋର ଏ କଠିନ ହୃଦୟ କାହିଁକି ସହସ୍ର ଖଣ୍ଡରେ ଭଗ୍ନ ହେଉ ନାହିଁ ? ସୁଗ୍ରୀବର ସ୍ତ୍ରୀକୁ ଅପହରଣ କରି ତାକୁ ରାଜ୍ୟରୁ ନିର୍ବାସିତ କଲ । ମୁଁ କେତେ କହିଲି, ମୋର ମଙ୍ଗଳବାକ୍ୟ ଶୁଣିଲ ନାହିଁ । ଏବେ ତୁମର ଏ ଅବସ୍ଥା ହେଲା । ମୁଁ ଦୁଃଖ କ'ଣ ପୂର୍ବରୁ କେବେ ଜାଣି ନ ଥିଲି । ବର୍ତ୍ତମାନ ଅନାଥା ହୋଇଗଲି । ଘୋର ବୈଧବ୍ୟ ଦୁଃଖରେ ମୋତେ ଘାରିହେବାକୁ ହେଲା । ତୁମର ସୁକୁମାର ବୀରପୁତ୍ର ଅଙ୍ଗଦ ସୁଖରେ ଲାଳିତ ହୋଇଛି । ଏବେ ସୁଗ୍ରୀବଙ୍କୁ ସେ ଆଶ୍ରୟ କରି ରହିବ । ପିତୃବ୍ୟ କ୍ରୁଦ୍ଧ ହେଲେ ତାର ଅବସ୍ଥା କ'ଣ ହେବ ? ପୁତ୍ର ଅଙ୍ଗଦ, ତୋର ଧର୍ମଜ୍ଞ ପିତାଙ୍କୁ ଆଉ ଦେଖିପାରିବୁ ନାହିଁ । ଯାହା ଦେଖିବାର କଥା, ଏହି ଶେଷଥର ପାଇଁ ଦେଖିନେ । ସ୍ୱାମୀ, ତୁମେ ଚିର ପ୍ରବାସକୁ ଯାଉଛ, ବର୍ତ୍ତମାନ ପୁତ୍ରର ମସ୍ତକ ଆଲିଙ୍ଗନ କରି ତାକୁ ଆଶ୍ୱାସନା ଦିଅ, ମୋତେ ଯଦି କିଛି ସନ୍ଦେଶ ଦେବାର ଅଛି, ଦିଅ । କାହିଁକି ଉତ୍ତର ଦେଉ ନାହଁ ? ଏହିପରି କାତର ସ୍ୱରରେ ବିଳାପ କରି ତାରା ଭୂପତିତ ବାଳୀ ନିକଟରେ ବସି ରହିଲେ ଏବଂ ପ୍ରାଣତ୍ୟାଗ କରିବାପାଇଁ ସଙ୍କଳ୍ପ କଲେ ।

ହନୁମାନ ତାରାଙ୍କୁ ଆଶ୍ୱାସନା ଦେଇ କହିଲେ, ପ୍ରତ୍ୟେକ ପ୍ରାଣୀ ନିଜର ଦୋଷଗୁଣର କର୍ମଫଳ ଭୋଗ କରେ । ଶତ ସହସ୍ର ନିୟୁତ ବାନରଙ୍କର ଆଶ୍ରୟସ୍ଥଳ ନୀତିଜ୍ଞ ବାଳୀ ବର୍ତ୍ତମାନ ଧର୍ମାତ୍ମାମାନଙ୍କ ଲୋକକୁ ଗତି କରିଛନ୍ତି । ତେଣୁ ବୃଥା ଶୋକ କର ନାହିଁ । ଏ ଦେହ ବୁଦ୍‌ବୁଦ ପରି । ତୁମେ ନିଜେ ଶୋକାର୍ତ୍ତ । ନିଜକୁ ସମ୍ଭାଳିବାପାଇଁ ଚେଷ୍ଟାକର । ସୁକୁମାର ଅଙ୍ଗଦକୁ ଚାହ । ଭବିଷ୍ୟତରେ ତାର ଯେପରି ମଙ୍ଗଳ ହେବ, ସେହିପରି କାର୍ଯ୍ୟ କର । ବାନରରାଜଙ୍କର ଅନ୍ତିମ ସଂସ୍କାର ଶୀଘ୍ର ଶେଷକର । ତୁମେ ଅନାଥା ନୁହଁ । ଏ

ବାନରମାନେ ତୁମର । ଏ ରାଜ୍ୟ ତୁମର । ମଙ୍ଗଳମୟୀ, ତୁମର ନିର୍ଦ୍ଦେଶରେ ତୁମର ସୁପୁତ୍ର ଅଙ୍ଗଦ ରାଜ୍ୟ ଶାସନ କରନ୍ତୁ ।

ପତିବିୟୋଗବିଧୁରା ତାରା ହନୁମାନଙ୍କୁ କହିଲେ, ମୁଁ ଏ ବାନରରାଜ୍ୟର ପ୍ରଭୁ ନୁହେଁ କି ଅଙ୍ଗଦର ମଧ୍ୟ ପ୍ରଭୁ ନୁହେଁ । ଯାହା ଉଚିତ ମନେକରିବେ, ସୁଗ୍ରୀବ ତାହା କରିବେ । ରାଜ୍ୟ, ପୁତ୍ର, ପ୍ରଭୁତ୍ୱ ଗୋଟିଏ ପାଖରେ । ସ୍ୱାମୀ ଗୋଟିଏ ପାଖରେ । ସ୍ୱାମୀ ଇହଲୋକରେ ରହନ୍ତୁ ବା ପରଲୋକରେ ରହନ୍ତୁ, ସେ ଯେଉଁଠି ରହିବେ, ତାହାହିଁ ମୋର ଆଶ୍ରୟସ୍ଥଳ । ତାଙ୍କୁ ଛାଡ଼ି ମୁଁ ଅନ୍ୟ କେଉଁଠି ରହିପାରିବି ନାହିଁ । ବାଳୀଙ୍କର ପ୍ରାଣବାୟୁ ଅତିଶୟ କ୍ଷୀଣ ହୋଇ ଆସୁଥିଲା । ସେ ଆଖି ଖୋଲି ପ୍ରଥମେ ସୁଗ୍ରୀବଙ୍କୁ ଦେଖି ସ୍ନେହପୂର୍ଣ୍ଣ ସ୍ୱରରେ କହିଲେ – ସୁଗ୍ରୀବ, ପାପବଶରୁ ମୋର ବୁଦ୍ଧିମୋହ ଘଟି ମୁଁ ତୁମପ୍ରତି ବହୁ ଦୁର୍ବ୍ୟବହାର କରିଛି । ତାହା ଭୁଲିଯାଅ । ଆମେ ଦୁଇଭାଇ ଏକାଠି ରହିଥିଲେ ଅଖଣ୍ଡ ସୁଖ ଓ ରାଜ୍ୟଭୋଗ କରିଥାନ୍ତେ । କିନ୍ତୁ ତାହା ହେଲା ନାହିଁ । ବର୍ତ୍ତମାନ ମୁଁ ମୋର ଅନିନ୍ଦିତ ଯଶ, ଜୀବନ, ରାଜ୍ୟ ଓ ସମ୍ପତ୍ତିକୁ ପରିତ୍ୟାଗ କରିଯାଉଛି । ତୁମେ ଏହି ବାନରରାଜ୍ୟର ରାଜା ହୁଅ । ମୋର ପ୍ରିୟପୁତ୍ର ଅଙ୍ଗଦକୁ ନିଜର ଔରସଜାତ ପୁତ୍ରପରି ପାଳନ କର । ଏହାର ପିତା, ରକ୍ଷକ ଓ ଅଭୟଦାତା ହୁଅ । ତାରାର ପୁତ୍ର ଅଙ୍ଗଦ ତୁମପରି ବୀର ଓ ପରାକ୍ରମୀ । ଯୁଦ୍ଧ ସମୟରେ ସେ ତୁମର ଉପଯୁକ୍ତ ସହାୟକ ହେବ । ସୁଷେଣଙ୍କର କନ୍ୟା ତାରା ଅତି ସୂକ୍ଷ୍ମାତିସୂକ୍ଷ୍ମ ବିଷୟ ବିଚାର କରିପାରନ୍ତି ଏବଂ ତାଙ୍କର ନିର୍ଣ୍ଣୟ କେବେ ଅନ୍ୟଥା ହୁଏ ନାହିଁ । ତାଙ୍କର ପରାମର୍ଶ ଗ୍ରହଣ କରିବ । ନିଃସନ୍ଦେହରେ ରାମଙ୍କର କାର୍ଯ୍ୟ ସାଧନ କରିବ । ତାହା ନ କଲେ ତୁମର ଅଧର୍ମ ହେବ ଏବଂ ତାଙ୍କର ଅବଜ୍ଞା ତୁମର ବିନାଶର କାରଣ ହେବ ବୋଲି ମନେରଖିବ । ଇନ୍ଦ୍ରଦତ୍ତ ଏହି ସୁବର୍ଣ୍ଣର ମାଳା ପରିଧାନ କର । ଏହା ରାଜ୍ୟଲକ୍ଷ୍ମୀଙ୍କର ପ୍ରତୀକ । ମୁଁ ମରିବା ପୂର୍ବରୁ ତୁମେ ଏହାକୁ ପରିଧାନ ନ କଲେ ଏହାର ଶ୍ରୀ ଓ ଶକ୍ତି ନଷ୍ଟ ହୋଇଯିବ ।

ସୁଗ୍ରୀବଙ୍କୁ ସୁବର୍ଣ୍ଣମାଳା ଦାନ କରି ବାଳୀ ଅଙ୍ଗଦକୁ ଡାକି କହିଲେ, ଦେଶ କାଳକୁ ଲକ୍ଷ୍ୟକରି କର୍ମ କର । ଯାହା ପୂର୍ବରୁ ପ୍ରିୟ ବା ଅପ୍ରିୟ ଥିଲା, ତାହାକୁ ଭୁଲିଯାଇ ସୁଗ୍ରୀବଙ୍କର ବଶବର୍ତ୍ତୀ ହୁଅ । ମୁଁ ତୋତେ ସବୁବେଳେ ଯେପରି ଲାଳନ କରୁଥିଲି, ବର୍ତ୍ତମାନ ସୁଗ୍ରୀବଙ୍କଠାରୁ ତାହା ଆଶାକଲେ ସେ ତୋତେ ଆଦର କରିବେ ନାହିଁ । ସୁଗ୍ରୀବଙ୍କ ଶତ୍ରୁ ସହିତ କୌଣସି ସମ୍ପର୍କ ରଖିବୁ ନାହିଁ । ସେ ତୋର ରାଜା । ରାଜାର ମଙ୍ଗଳ ତୋର କର୍ତ୍ତବ୍ୟ ।

ଏତିକି କହି ଆଖିକୁ ଖୋସି ଦେଇ ଓ ମୁହଁ ବିକୃତ କରି ବାନରରାଜ ବାଳୀ ପ୍ରାଣତ୍ୟାଗ କଲେ । ବାନରଗଣ ଉଚ୍ଚସ୍ୱରରେ ରୋଦନ କରିବାକୁ ଲାଗିଲେ । ଉଦ୍ୟାନପର୍ବତବନମାଳିନୀ କିଷ୍କିନ୍ଧ୍ୟା ଶୂନ୍ୟ ହୋଇଗଲା । ଆଶ୍ରିତ ଲତା ଯେପରି ଛିନ୍ନ ମହାଦ୍ରୁମକୁ ବେଷ୍ଟନ କରି ରହିଥାଏ, ସେହିପରି ଶୋକାଭିଭୂତା ତାରା ବାଳୀଙ୍କୁ ଆଲିଙ୍ଗନ କରି କାତର ସ୍ୱରରେ ରୋଦନ କରିବାକୁ ଲାଗିଲେ । ଗିରିଗହ୍ୱର ମଧ୍ୟରୁ ବିଷଧର ସର୍ପକୁ ଆଣିବା ପରି ବାନରସେନାପତି ନୀଳ ବାଳୀଙ୍କ ଦେହରୁ ପ୍ରଦୀପ୍ତ ଶରକୁ ଟାଣି ବାହାର କରି

ଆଣିଲେ । ଅସ୍ତାଚଳରେ ସୂର୍ଯ୍ୟର ଅରୁଣିମା ବିଚ୍ଛୁରିତ ହେବାପରି ବାଳୀଙ୍କର କ୍ଷତସ୍ଥାନରୁ ରକ୍ତଧାର ନିର୍ଗତ ହେବାକୁ ଲାଗିଲା । ସ୍ୱାମୀଙ୍କର ଦେହରୁ ରକ୍ତ ଓ ଧୂଳି ସବୁ ପୋଛି ଦେଇ ତାରା ଅଙ୍ଗଦକୁ କହିଲେ, ପୁତ୍ର, ପିତାଙ୍କୁ ପ୍ରଣାମ କରି ତାଙ୍କର ଚରଣଧୂଳି ଗ୍ରହଣ କର । ଯେଉଁ ବାଳୀ ଅଙ୍ଗଦ ପ୍ରଣାମ କଲାବେଳେ 'ଦୀର୍ଘାୟୁ ହୁଅ' ବୋଲି କହୁଥିଲେ, ଆଜି ତାଙ୍କ ପାଦତଳରେ ପ୍ରଣତ ପୁତ୍ରକୁ ସେ କୌଣସି ଉତ୍ତର ଦେଲେ ନାହିଁ । ତାରା ଏହି କଥା କହି ପୁଣି ରୋଦନ କରିବାକୁ ଲାଗିଲେ ।

ସୁଗ୍ରୀବଙ୍କର ମୁଖ ଅଶ୍ରୁପୂର୍ଣ୍ଣ ହୋଇଗଲା । ସେ ସଜଳନୟନରେ ରାମଚନ୍ଦ୍ରଙ୍କୁ କହିଲେ – ରାଜପୁତ୍ର, ତୁମର ପ୍ରତିଜ୍ଞା ତୁମେ ପୂରଣ କଲ । କିନ୍ତୁ ଜୀବନର ଏହି ନିନ୍ଦନୀୟ ଭୋଗବାସନାରେ ମୋର ମନ ଲାଗୁ ନାହିଁ । ଭାଇର ତିରସ୍କାର ସହି ନ ପାରି କ୍ରୋଧବଶତଃ ମୁଁ ତାର ବଧ କାମନା କରୁଥିଲି । ବର୍ତ୍ତମାନ ତାରାଙ୍କର ରୋଦନ, ପୁରବାସୀଙ୍କର ଦୁଃଖ, ଅଙ୍ଗଦ ମନର ଆଶଙ୍କା ଦେଖି ମୁଁ ମନେକରୁଛି, ଭାଇକୁ ମାରି ସ୍ୱର୍ଗଭୋଗ କରିବା ଅପେକ୍ଷା ଋଷ୍ୟମୂକରେ ବାସ କରି ରହିବା ଶ୍ରେୟସ୍କର । ବାଳୀ ସବୁବେଳେ ଯୁଦ୍ଧରେ ମୋତେ ପରାସ୍ତ ଓ ତାଡ଼ିତ କରି ପଳାଇବାପାଇଁ ସୁଯୋଗ ଦେଉଥିଲେ । କେବେ ପ୍ରାଣରେ ମାରି ନ ଥିଲେ । କିନ୍ତୁ ମୁଁ ତାଙ୍କର ହତ୍ୟା କରାଇଲି । ଯୁଦ୍ଧରେ ସେ ବୃକ୍ଷ ଶାଖାରେ ମୋତେ ଏପରି ପ୍ରହାର କଲେ ଯେ ମୁଁ ବିଚଳିତ ହୋଇ ପଡ଼ିଲି । ସେ ମୋତେ ବୁଝାଇ କହିଥିଲେ, 'ଆଉ କେବେ ଏପରି କରିବୁ ନାହିଁ' । ମୁଁ ଏବେ ସେହି ଭାଇର ନିହନ୍ତା ହେଲି । ବାଳୀ ଭ୍ରାତୃସ୍ନେହ, ସାଧୁସ୍ୱଭାବ ଓ ଧର୍ମରକ୍ଷା କରିଥିଲେ । ମୁଁ କାମ, କ୍ରୋଧ ଓ ବାନରୋଚିତ ଚାପଲ୍ୟ ଦେଖାଇଲି । ଭ୍ରାତୃବଧ ପାପର କ୍ଷମା ନାହିଁ । ରାଘବ, ବର୍ତ୍ତମାନ ମୁଁ ଏହି ଜ୍ୱଳନ୍ତ ଅଗ୍ନିରେ ଝାସଦେଇ ମୋର ପ୍ରିୟ ଭ୍ରାତା ସହିତ ମିଳିତ ହେବି । ତୁମର ଆଦେଶରେ ବାନର ବୀରମାନେ ସୀତାଙ୍କର ଅନ୍ୱେଷଣ କରିବେ । ମୁଁ ମରିଗଲେ ମଧ୍ୟ ଆପଣଙ୍କର କାର୍ଯ୍ୟସିଦ୍ଧ ହେବ ।

ଶୋକାର୍ତ୍ତ ସୁଗ୍ରୀବଙ୍କର କଥା ଶୁଣି ରାମଙ୍କର ଚକ୍ଷୁ ଲୋତକପୂର୍ଣ୍ଣ ହୋଇଗଲା । ସେ ବିମର୍ଷ ହୋଇ କିଛି କହିପାରିଲେ ନାହିଁ । ତାରା ରାମଙ୍କୁ ଦେଖି ବିଳାପ କରି କହିଲେ, ତୁମେ ଅଜେୟ, ଜିତେନ୍ଦ୍ରିୟ, ଧାର୍ମିକ, କୀର୍ତ୍ତିମାନ୍ । ଶତ୍ରୁକୁ ନିଧନ କରିବାରେ ସିଦ୍ଧହସ୍ତ । ମୋର ପ୍ରିୟତମକୁ ତୁମେ ଯେଉଁ ବାଣରେ ବଧ କରିଛ, ମୋତେ ମଧ୍ୟ ସେହି ବାଣରେ ବଧ କର । ମୁଁ ତାଙ୍କ ପାଖକୁ ଯିବି । ବାଳୀ ଅନ୍ୟ ରମଣୀଙ୍କୁ ଚାହାନ୍ତି ନାହିଁ । ବିଚିତ୍ରବେଶୀ ସୁନ୍ଦରୀ ଅପ୍ସରାମାନେ ତାଙ୍କର ପ୍ରଣୟ ପ୍ରାର୍ଥନା କଲେ ମଧ୍ୟ ସେ ମୋ ବିହୁନରେ ଶୋକାକୁଳ ହେବେ । ତୁମେ ସୀତାଙ୍କ ବିରହରେ ଯେପରି ଦୁଃଖାର୍ତ୍ତ ହେଉଛ, ବାଳୀ ଠିକ୍ ସେହି ଅବସ୍ଥା ଭୋଗ କରିବେ । ଦୟାଳୁ ରାମଚନ୍ଦ୍ର, ତୁମକୁ ସ୍ତ୍ରୀବଧ ପାତକ ଲାଗିବ ନାହିଁ । କାରଣ, ମୋତେ ନିହତ କରି ତୁମେ ମୋର ପ୍ରିୟତମଙ୍କ ହସ୍ତରେ ଅର୍ପଣ କରିପାରିବ । ବାଳୀଙ୍କ ବିନା ମୁଁ ମୁହୂର୍ତ୍ତେ ବଞ୍ଚିପାରିବି ନାହିଁ ।

ତାରାଙ୍କୁ ଆଶ୍ୱାସନା ଦେଇ ରାମ କହିଲେ – ବୀରପତ୍ନୀ, ତୁମେ ସେପରି ଚିନ୍ତା କର ନାହିଁ । ଏ ସଂସାରରେ ସୁଖ ଦୁଃଖ ଲାଗିରହିଛି । ତାହାହିଁ ବିଧିର ବିଧାନ । ପୁଣି ସେହି

ବିଧିର ବିଧାନରେ ତୁମ ପୁତ୍ର ଯୁବରାଜ ହେବ ଏବଂ ତୁମେ ତାହା ଦେଖି ସନ୍ତୋଷ ଲାଭ କରିବ । ସୁଗ୍ରୀବ, ତାରା ଓ ଅଙ୍ଗଦଙ୍କୁ ସାନ୍ତ୍ୱନା ଦେଇ ରାମ କହିଲେ, ଶୋକ ଓ ପରିତାପ ଦ୍ୱାରା ମୃତବ୍ୟକ୍ତିର ମଙ୍ଗଳ ହୁଏ ନାହିଁ । ସାମ, ଦାନ ଆଦି ଧର୍ମୋକ୍ତ କାର୍ଯ୍ୟମାନ କରି ବାଳୀ ସ୍ୱର୍ଗଲାଭ କରିଛନ୍ତି । ବର୍ତ୍ତମାନ ତୁମମାନଙ୍କର ଯାହା ସମୟୋଚିତ କର୍ତ୍ତବ୍ୟ ଓ କର୍ମ, ତାହା ତୁମେ କର । ଲକ୍ଷ୍ମଣ କହିଲେ – ସୁଗ୍ରୀବ, ତୁମେ ତାରା ଓ ଅଙ୍ଗଦଙ୍କ ସହିତ ମିଶି ବାଳୀଙ୍କର ଦାହକ୍ରିୟାଦି ଅନ୍ତିମ ସଂସ୍କାରର ବ୍ୟବସ୍ଥା କର । ଚନ୍ଦନକାଠ, ମାଲ୍ୟ, ବସ୍ତ୍ର, ଘୃତ, ତୈଳ ଗନ୍ଧଦ୍ରବ୍ୟମାନ ଏବଂ ଏକ ଶବବାହୀ ଶିବିକା ପ୍ରସ୍ତୁତ କର । ତାଙ୍କୁ ଶ୍ମଶାନକୁ ନେବାପାଇଁ ବାନର ବୀରମାନେ ପ୍ରସ୍ତୁତ ହୋଇଯା'ନ୍ତୁ ।

ଲକ୍ଷ୍ମଣଙ୍କ ପରାମର୍ଶ ଅନୁଯାୟୀ ବାଳୀଙ୍କ ଅନ୍ତ୍ୟେଷ୍ଟି କ୍ରିୟାପାଇଁ ପ୍ରସ୍ତୁତି ହେଲା । ତାଙ୍କୁ ଏକ ସୁନ୍ଦର ଶିବିକାରେ ବହନ କରି ନିଆଗଲା । ଚନ୍ଦନକାଠର ଚିତା ଉପରେ ସୁଗ୍ରୀବ ଓ ଅଙ୍ଗଦ ମୃତଶରୀରକୁ ସ୍ଥାପନ କରି ଅଗ୍ନି ସଂଯୋଗ କଲେ ଏବଂ ଉଦକ ଦାନ ଆଦି ଅନ୍ୟାନ୍ୟ ଶ୍ରାଦ୍ଧ କ୍ରିୟା ସମ୍ପନ୍ନ କଲେ ।

ଶୋକସନ୍ତପ୍ତ ସୁଗ୍ରୀବଙ୍କୁ ଘେରି ବାନରବୀର ଓ ମନ୍ତ୍ରୀମାନେ ରାମଙ୍କ ପାଖରେ ଉପସ୍ଥିତ ହେଲେ । କାଞ୍ଚନଶୈଳନିଭ ଅରୁଣବଦନ ହନୁମାନ କୃତାଞ୍ଜଳି ହୋଇ କହିଲେ, ବର୍ତ୍ତମାନ ନଗରକୁ ଯାଇ ସୁଗ୍ରୀବ ସୁଗନ୍ଧ ଔଷଧିରେ ବିଧିପୂର୍ବକ ସ୍ନାନ କରି ମାଲ୍ୟ ଓ ରତ୍ନାଦି ଦ୍ୱାରା ଆପଣଙ୍କର ପୂଜା କରିବେ । ବାନରମାନଙ୍କର ବଂଶାନୁଗତ ରୀତି ଅନୁଯାୟୀ ଆପଣ ଏହି ରମଣୀୟ ପର୍ବତଦୁର୍ଗ ମଧ୍ୟରେ ପ୍ରବେଶ କରି ସୁଗ୍ରୀବଙ୍କୁ ରାଜା ରୂପେ ଅଭିଷିକ୍ତ କରାନ୍ତୁ । ବାନରମାନଙ୍କ ଦୁଃଖ ଦୂର ହେଉ ।

ରାମ କହିଲେ – ବୀର, ପିତାଙ୍କ ଆଦେଶରେ ମୁଁ ଚଉଦ ବର୍ଷ ବନବାସ କରିଛି । ତେଣୁ କୌଣସି ଗ୍ରାମ ବା ନଗର ମଧ୍ୟରେ ପ୍ରବେଶ କରିପାରିବି ନାହିଁ । ତୁମେମାନେ ବିଧିପୂର୍ବକ ସୁଗ୍ରୀବଙ୍କର ଅଭିଷେକ କର । ରାମ ସୁଗ୍ରୀବଙ୍କୁ କହିଲେ, ତୁମର ଭ୍ରାତୁଷ୍ପୁତ୍ର ଅଙ୍ଗଦକୁ ଯୁବରାଜ ପଦରେ ଅଭିଷିକ୍ତ କର । ସେ ଉଦାର, ଚରିତ୍ରବାନ୍ ଏବଂ ବଳ ବିକ୍ରମରେ ତାଙ୍କର ପିତାଙ୍କର ତୁଲ୍ୟ । ବର୍ତ୍ତମାନ ଚତୁର୍ମାସ୍ୟା ଆସିଗଲାଣି । ବର୍ଷାଋତୁରେ କୌଣସି ଉଦ୍‌ଯୋଗ ସମ୍ଭବ ନୁହେଁ । ତୁମେ ରାଜପୁରୀରେ ରହ । ମୁଁ ଲକ୍ଷ୍ମଣ ସହିତ ଏହି ପର୍ବତର ପ୍ରଶସ୍ତ ଓ ରମଣୀୟ ଗିରିଗୁହା ମଧ୍ୟରେ ବାସ କରିବି । କାର୍ତ୍ତିକମାସ ଆସିବା ମାତ୍ରେ ରାବଣ ବଧପାଇଁ ଆମକୁ ଯତ୍ନବାନ ହେବାକୁ ପଡ଼ିବ । ଯାଅ, ଅଭିଷିକ୍ତ ହୋଇ ବାନରମାନଙ୍କୁ ଆନନ୍ଦିତ କର ।

ରାମଙ୍କର ଅନୁମତି ପାଇ ସୁଗ୍ରୀବ ସହସ୍ର ସହସ୍ର ବାନରଙ୍କ ଦ୍ୱାରା ବେଷ୍ଟିତ ହୋଇ କିଷ୍କିନ୍ଧ୍ୟା ନଗରୀରେ ପ୍ରବେଶ କଲେ । ପ୍ରଜାମାନେ ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ ଏବଂ ସମସ୍ତଙ୍କ ଦ୍ୱାରା ସେ ଅଭ୍ୟର୍ଥିତ ହୋଇ ରାଜପୁରୀରେ ବିଧିପୂର୍ବକ ଅଭିଷିକ୍ତ ହେଲେ । ସୁଗ୍ରୀବ ଅଙ୍ଗଦଙ୍କୁ ଆଲିଙ୍ଗନ କରି ଯୁବରାଜପଦରେ ଅଭିଷିକ୍ତ କଲେ ଏବଂ ତାଙ୍କର ଓ ଅଙ୍ଗଦଙ୍କର ଅଭିଷେକ ସମ୍ବାଦ ରାମଙ୍କୁ ଅବଗତ କରାଇଲେ । କିଷ୍କିନ୍ଧ୍ୟା ନଗରୀ

ଆନନ୍ଦମୁଖର ହୋଇଉଠିଲା । ସୁଗ୍ରୀବ ନିଜର ସ୍ତ୍ରୀ ଓ ରାଜ୍ୟକୁ ପାଇ ଇନ୍ଦ୍ରସଂପଦ ଲାଭ କଲେ ।

## ୬୯ ।। ପ୍ରସ୍ରବଣ ଗିରି : ମାଲ୍ୟବନ୍ତରେ ବର୍ଷା

ରାମ ଲକ୍ଷ୍ମଣଙ୍କ ସହିତ ପ୍ରସ୍ରବଣ ଗିରି ନାମକ ପ୍ରସିଦ୍ଧ ପର୍ବତକୁ ଗଲେ । ଏହି ପର୍ବତ ଲତା ଗୁଳ୍ମ ବୃକ୍ଷ ଶୋଭିତ ଅରଣ୍ୟରେ ପୂର୍ଣ୍ଣ ଥିଲା । ବ୍ୟାଘ୍ର, ମୃଗ, ସିଂହ, ଭଲ୍ଲୁକ, ସାଧାରଣ ବାନର, ଗୋଲାଙ୍ଗୁଳ ବାନର ଓ ବିଡାଳମାନେ ସେଠାରେ ବିଚରଣ କରୁଥିଲେ । ଏହି ଶ୍ୟାମବର୍ଣ୍ଣ ପର୍ବତର ଶିଖରଦେଶରେ ଏକ ବିଶାଳ ଗୁହାରେ ରହିବା ପାଇଁ ରାମ ସ୍ଥିର କଲେ । ସେ ଲକ୍ଷ୍ମଣଙ୍କୁ କହିଲେ, ଏହି ପ୍ରଶସ୍ତ ଗୁହାରେ ବାୟୁ ଯାତାୟାତର ସୁବିଧା ଅଛି । ଏଇଠି ଆମେ ବର୍ଷାଋତୁ କଟାଇଦେବା । ବହୁ ଶ୍ୱେତ, କୃଷ୍ଣ, ତାମ୍ର ବର୍ଣ୍ଣର ଧାତବ ଦ୍ରବ୍ୟରେ ଏହି ଗିରି ସୁନ୍ଦର ଦେଖାଯାଉଛି । ମାଳତୀ, କୁନ୍ଦ, ଶିରୀଷ, କଦମ୍ବ, ସିନ୍ଧୁବାର, ଅର୍ଜୁନ ବୃକ୍ଷମାନ ବିଚିତ୍ର ଲତାମାନଙ୍କ ଦ୍ୱାରା ଜଡ଼ିତ ହୋଇ ରମଣୀୟ ଦେଖାଯାଉଛନ୍ତି । ମୟୂର ଆଦି ପକ୍ଷୀମାନଙ୍କ କଳଧ୍ୱନିରେ ଏହା ନିନାଦିତ ହେଉଛି । କ୍ଷୁଦ୍ର ପୁଷ୍କରିଣୀମାନ ପ୍ରସ୍ଫୁଟିତ ପଙ୍କଜରେ ମଣ୍ଡିତ ହୋଇଛି । ଏହି ଗୁହା ଈଶାନ କୋଣରେ ଅବସ୍ଥିତ । ଏହାର ପଶ୍ଚାଦ୍‌ଭାଗ ଉଚ୍ଚ ଥିବାରୁ ପବନର ବେଗକୁ ବାଧା ଦେଇପାରିବ । ଗୁହାର ସମ୍ମୁଖରେ ଦଳିତାଞ୍ଜନ ପରି ଏକ କୃଷ୍ଣବର୍ଣ୍ଣର ପ୍ରଶସ୍ତ ଶିଳା ଶୋଭା ପାଉଛି । ଏହାର ସମ୍ମୁଖରେ ଚିତ୍ରକୂଟରେ ପ୍ରବାହିତ ମନ୍ଦାକିନୀ ନଦୀପରି ଏକ କର୍ଦ୍ଦମଶୂନ୍ୟ ସ୍ୱଚ୍ଛସଲିଳା ନଦୀ ପ୍ରବାହିତ ହେଉଛି । ଚନ୍ଦନ, ତିଳକ, ଶାଳ, ତମାଳ, ବକୁଳ ଆଦି ବୃକ୍ଷ ଏବଂ ହେନ୍ତାଳ ଓ ବେତ ବଣ ଏହାର କୂଳରେ ପୂରି ରହିଛି । ଏହି ନଦୀ ନୀଳୋତ୍ପଳ, ରକ୍ତକମଳ ଓ ଶ୍ୱେତପଦ୍ମମାନଙ୍କ ଦ୍ୱାରା ପରିପୂର୍ଣ୍ଣ ଏବଂ ମୟୂର, କ୍ରୌଞ୍ଚ, ହଂସ, ସାରସ, ଚକ୍ରବାକ ପକ୍ଷୀଙ୍କର ସ୍ୱରରେ ନିନାଦିତ । ଏହାର ରମଣୀୟ ପରିବେଶ ମୋତେ ମୁଗ୍ଧ କରୁଛି । ଏହି ସ୍ଥାନ ପୁଣି ରମଣୀୟ କିଷ୍କିନ୍ଧ୍ୟା ନଗରୀଠାରୁ ଦୂର ନୁହେଁ । ମୃଦଙ୍ଗ ଧ୍ୱନି ସହିତ ବାନରମାନଙ୍କର ଗୀତବାଦ୍ୟର ଶବ୍ଦ ଏଠାକୁ ଶୁଣାଯାଉଛି । ଜଣାଯାଉଚି ସ୍ତ୍ରୀ ଓ ରାଜ୍ୟ ଲାଭ କରି ସୁଗ୍ରୀବ ନିଶ୍ଚୟ ଆନନ୍ଦରେ କାଳଯାପନ କରୁଛନ୍ତି ।

ବହୁ ପ୍ରାକୃତିକ ସୌନ୍ଦର୍ଯ୍ୟରେ ପୂର୍ଣ୍ଣ ପ୍ରସ୍ରବଣ ଗିରିରେ ବାସ କରି ରାମ ସୁଖୀ ହେଲେ ନାହିଁ । ସବୁବେଳେ ସୀତାଙ୍କ କଥା ତାଙ୍କର ମନେପଡ଼ିଲା । ଦିନୁ ଦିନ ତାଙ୍କର ଦୁଃଖ ବଢ଼ିବାକୁ ଲାଗିଲା ଏବଂ ବେଳେ ବେଳେ ସେ ରୋଦନ କରି ଅଚେତନ ହୋଇ ପଡୁଥିଲେ । ଭ୍ରାତାଙ୍କର ଦୁଃଖଭାଗୀ ଲକ୍ଷ୍ମଣ ତାଙ୍କୁ ସାନ୍ତ୍ୱନା ଦେଇ କହୁଥିଲେ, ଏପରି ବ୍ୟଥିତ ହେବାରେ କିଛି ଫଳ ନାହିଁ । ଶୋକ ହିଁ ଅବସାଦର କାରଣ । ତୁମପରି ଧର୍ମଜ୍ଞ ଉଦ୍‌ଯୋଗଶୀଳ ବ୍ୟକ୍ତି ଶୋକାତୁର ହେଲେ ରାବଣର ଉଦ୍ଦେଶ୍ୟ ସିଦ୍ଧ ହେବ । ଆମେ ତାକୁ କେବେ ନିହତ କରିପାରିବା ନାହିଁ । ଆସମୁଦ୍ର ମେଦିନୀକୁ ପରିବର୍ତ୍ତନ କରିବାର ଶକ୍ତି ତୁମର ଅଛି । ରାବଣ କେତେମାତ୍ର । କିନ୍ତୁ ସେଥିପାଇଁ ଶରତ୍‌କାଳକୁ ଅପେକ୍ଷା କରିବାକୁ

ହେବ । ସେତେବେଳେ ଭସ୍ମାଚ୍ଛାଦିତ ଅଗ୍ନିକୁ ଘୃତାହୁତି ଦେଇ ପ୍ରଜ୍ୱଳିତ କରିବା ପରି ମୁଁ ତୁମର ସୁପ୍ତ ବଳକୁ ଜାଗରିତ କରିବି ଏବଂ ତୁମେ ରାବଣକୁ ସବଂଶ ନିଧନ କରିବ ।

ରାମ ଲକ୍ଷ୍ମଣଙ୍କ ସାନ୍ତ୍ୱନାରେ ଆଶ୍ୱସ୍ତ ହେଲେ । ସେ କହିଲେ, ଭାଇ ଲକ୍ଷ୍ମଣ, ତୁମ କଥାରେ ମୁଁ ଶୋକ କରି ଶରତ୍‌କାଳକୁ ଅପେକ୍ଷା କରିବି । ସେତେବେଳେ ସୁଗ୍ରୀବଙ୍କର ସାହାଯ୍ୟ ମୁଁ ଆଶା କରୁଛି । କାରଣ, ଉପକାରର ପ୍ରତ୍ୟୁପକାର ଅଛି । କେବଳ ଅକୃତଜ୍ଞ ବ୍ୟକ୍ତି ବିଜ୍ଞ ଉପକାରୀ ବ୍ୟକ୍ତିଙ୍କ ମନରେ କଷ୍ଟ ଦେଇଥାଏ ।

**ଉପକାରେଣ ବୀରସ୍ତୁ ପ୍ରତିକାରେଣ ଯୁଜ୍ୟତେ**
**ଅକୃତଜ୍ଞୋଽପ୍ରତିକୃତୋ ହନ୍ତି ସତ୍ତ୍ୱବତାଂ ମନଃ ।**

ଲକ୍ଷ୍ମଣ କହିଲେ – ରାମ, ବାନର ସୁଗ୍ରୀବ ନିଶ୍ଚୟ ତାଙ୍କର ପ୍ରତିଶ୍ରୁତି ପାଳନ କରିବେ । କୌଣସିମତେ ଜଳକର୍ଦ୍ଦମପୂର୍ଣ୍ଣ ଏହି ବର୍ଷାଋତୁ ଶୀଘ୍ର ଶେଷ ହୋଇଯିବ ।

ପ୍ରସ୍ରବଣ ବା ମାଲ୍ୟବନ୍ତ ପର୍ବତର ବର୍ଷାକାଳୀନ ଶୋଭା ରାମ ଲକ୍ଷ୍ମଣଙ୍କୁ ବର୍ଣ୍ଣନା କରି କହିଲେ– ଦେଖ, ବର୍ଷାକାଳ ଆସିଗଲା । ପର୍ବତତୁଲ୍ୟ ମେଘମାନଙ୍କ ଦ୍ୱାରା ନଭୋମଣ୍ଡଳ ସମାଚ୍ଛନ୍ନ । ସୂର୍ଯ୍ୟକିରଣ ଦ୍ୱାରା ସମୁଦ୍ରର ରସପାନ କରି ନ' ମାସ ଗର୍ଭଧାରଣ କରିଥିବା ଆକାଶ ଏହି ଜଳରୂପକ ରସାୟନ ପ୍ରସବ କରୁଛି । ଏହି ମେଘର ସୋପାନମାଳାରେ ଆକାଶକୁ ଉଠି କୂଟଜ ଓ ଅର୍ଜୁନ ପ୍ରଭୃତି ପୁଷ୍ପର ମାଳା ସୂର୍ଯ୍ୟଙ୍କୁ ପିନ୍ଧାଇ ଦିଆଯାଇପାରେ । ମନ୍ଦ ମନ୍ଦ ପ୍ରବାହିତ ବାୟୁରୂପକ ନିଃଶ୍ୱାସ ତ୍ୟାଗ କରୁଥିବା ଆକାଶକୁ ଦେଖ । ସନ୍ଧ୍ୟାରାଗରଞ୍ଜିତ ପାଣ୍ଡୁର ବର୍ଣ୍ଣ ମେଘଖଣ୍ଡ ସବୁ ଏହା କିପରି ଚନ୍ଦନରେ ଚର୍ଚ୍ଚିତ କରିବାପରି ଦେଖାଯାଉଛନ୍ତି । ପୃଥିବୀ ସୂର୍ଯ୍ୟତାପରେ ତାପିତ ଥିଲା । ଏବେ ନବବାରିପାତରେ ସିକ୍ତ ହୋଇ ଶୋକସନ୍ତପ୍ତା ସୀତାଙ୍କ ପରି ବାଷ୍ପମୋଚନ କରୁଛି । ମେଘ ଗର୍ଭରୁ ନିର୍ଗତ କର୍ପୂର ପରି ଶୀତଳ ବାୟୁ କେତକୀଫୁଲର ସୁଗନ୍ଧକୁ ବାହି ଆଣୁଛି । ଏହି ବାୟୁକୁ ଅଞ୍ଜଳିରେ ଭରି ପିଇବା ପାଇଁ ଇଚ୍ଛା ହେଉଛି ।

ପର୍ବତକୁ ଦେଖ, ମେଘରୂପୀ କୃଷ୍ଣମୃଗଚର୍ମ ପରିଧାନ କରି ଜଳଧାରାରୂପୀ ଯଜ୍ଞୋପବୀତ ଧାରଣ କରିଛି । ଏହାର ସାନୁଦେଶରେ କୁଟଜପୁଷ୍ପମାନ ଫୁଟି ମୋତେ ହିଁ ଉଦ୍ଦୀପିତ କରୁଛନ୍ତି । ବର୍ତ୍ତମାନ ଧରଣୀ ବର୍ଷାସିକ୍ତ ହୋଇଥିବା ଯୋଗୁଁ ଧୂଳି ଉଡୁ ନାହିଁ । ଗ୍ରୀଷ୍ମର ଗରମ ପବନ ବର୍ତ୍ତମାନ ଶାନ୍ତ । ସୁଶୀତଳ ଚକ୍ରବାକମାନେ ନିଜ ନିଜର ପ୍ରିୟା ସହିତ ମାନସସରୋବର ଚାଲିଗଲେଣି । ଅମ୍ବୁଦମାନେ ଏପରି ବିକ୍ଷିପ୍ତ ହୋଇ ରହିଛନ୍ତି ଯେ ସ୍ଥାନେ ସ୍ଥାନେ ଆକାଶ ଦେଖାଯାଉଛି, ସ୍ଥାନେ ସ୍ଥାନେ ଦେଖାଯାଉ ନାହିଁ । ସ୍ଥାନେ ସ୍ଥାନେ ପର୍ବତ ରୁଦ୍ଧ ଶାନ୍ତ ସମୁଦ୍ରପରି ଦେଖାଯାଉଛି । ଖରସ୍ରୋତା ଗିରିନଦୀମାନେ ତାମ୍ରବର୍ଣ୍ଣ ଜଳ ସହିତ ସର୍ଜ୍ଜ ଓ କଦମ୍ବପୁଷ୍ପମାନ ବହନ କରି ନେଉଛନ୍ତି । ଭ୍ରମରମାନଙ୍କ ପରି କୃଷ୍ଣବର୍ଣ୍ଣ ଜାମୁଫଳ ପ୍ରଚୁର ପରିମାଣରେ ଫଳି ସୁନ୍ଦର ଦେଖାଯାଉଛି । ପର୍ବତ ଶିଖରରେ ଥିବା ବିଶାଳ ମେଘମାନେ ରଣଭୂମିରେ ମତ୍ତମାତଙ୍ଗଙ୍କ ପରି ଗର୍ଜ୍ଜନ କରୁଛନ୍ତି । ବିଦ୍ୟୁତ୍ ଏହି ମେଘମାନଙ୍କର ପତାକା ଓ ବଗପକ୍ଷୀମାନେ ମାଳା । ତୃଷାର୍ତ୍ତ ଧରଣୀ

ବର୍ଷାରେ ଆପ୍ୟାୟିତ ହୋଇ ପୁଲକିତ ହୋଇଉଠିଛି । ତେଣୁ ତାହା ଶ୍ୟାମଳ ଦୂର୍ବାଦଳରେ ଆଚ୍ଛନ୍ନ ହୋଇ ମୟୂରମାନଙ୍କର ନୃତ୍ୟଭୂମି ହୋଇଛି । ରାମ ପୁଣି କହିଲେ – ଲକ୍ଷ୍ମଣ, ବର୍ଷାକାଳୀନ ଅପରାହ୍ଣରେ ବନଭୂମି କିପରି ସୁନ୍ଦର ଦେଖାଯାଉଛି । ବଗମାନଙ୍କର ମାଳା ପିନ୍ଧିଥିବା ମେଘମାନେ ଜଳଭାରରେ ଗର୍ଜନ କରି କରି ଥକି ପଡୁଛନ୍ତି । ତେଣୁ ସେମାନେ ପର୍ବତ ଶିଖରରେ ବିଶ୍ରାମ କରି ପୁଣି ଅଗ୍ରସର ହେଉଛନ୍ତି । ନବଦୂର୍ବାଦଳ ଶ୍ୟାମଳ ଭୂମିମାନଙ୍କ ଉପରେ ସାଧବ ବୋହୂ (ଇନ୍ଦ୍ରଗୋପ) ମାନେ ଚାଲୁ ଥିବାରୁ ତାହା ଚିତ୍ରିତ ଦେଖାଯାଉଛି । ଶୁକପକ୍ଷିଆ କମ୍ବଳର ଠାଏ ଠାଏ ଅଳତା ରଙ୍ଗ ଲାଗିଲେ ଯେପରି ଦେଖାଯାଏ, ପୃଥିବୀ ସେହିପରି ଦେଖାଯାଉଛି ।

ନଦୀମାନେ ଦ୍ରୁତ ବେଗରେ ସାଗରାଭିମୁଖୀ । ବଗପକ୍ଷୀମାନେ ମେଘାଭିମୁଖୀ । କାମିନୀଗଣ ପ୍ରେମିକର ଅଭିମୁଖୀ । ବନଭୂମି ନୃତ୍ୟରତ ମୟୂରମାନଙ୍କୁ ଧରି, କଦମ୍ବବୃକ୍ଷ କୁସୁମିତ ଶାଖାମାନଙ୍କୁ ଧରି, ବୃଷଭମାନେ ଗାଭୀମାନଙ୍କୁ ଧରି ଏବଂ ପୃଥିବୀ ଶସ୍ୟ ଓ ବନମାନଙ୍କୁ ଧାରଣ କରି ସୁନ୍ଦର ଦେଖାଯାଉଛନ୍ତି । ଏହି ବନଭୂମି ଯେପରି ଅନେକ ଭାବକୁ ଆଶ୍ରୟ କରି ରହିଛି । କେତେବେଳେ ଭ୍ରମରମାନଙ୍କ ଗୁଞ୍ଜନରେ ସେ ଗାନ କରୁଛି, କେତେବେଳେ ମୟୂରନର୍ତ୍ତନରେ ନୃତ୍ୟ କରୁଛି, କେତେବେଳେ ମତ୍ତଗଜେନ୍ଦ୍ରମାନେ ତାକୁ ମତୁଆଳ କରି ଦେଉଛନ୍ତି । ବିଭିନ୍ନ ବାଦ୍ୟଯନ୍ତ୍ରର ଧ୍ୱନିପରି ବନରେ ସଙ୍ଗୀତ ଶୁଣାଯାଉଛି । ଭ୍ରମର ଗୁଞ୍ଜନରେ ସୀତାରର ଝଙ୍କାର, ଭେକର ରବରେ କଣ୍ଠତାଳର ସ୍ୱର ଏବଂ ମେଘର ଗର୍ଜନରେ ମୃଦଙ୍ଗର ଧ୍ୱନି ।

ଅନେକ ବର୍ଣ୍ଣ, ଅନେକ ରୂପ, ଅନେକ ଆକାର ଓ ବିଭିନ୍ନ ଶବ୍ଦ କରୁଥିବା ବେଙ୍ଗମାନେ ବୃଷ୍ଟିପାତରେ ମୁଖର ହୋଇ ଉଠିଛନ୍ତି । ଆକାଶରୁ ବିପୁଳ ଜଳବୃଷ୍ଟି ହୋଇ ପୃଥିବୀ ଜଳପୂର୍ଣ୍ଣ ଦେଖାଯାଉଛି । ବାୟୁ ପ୍ରବଳ ବେଗରେ ବହୁଛି । ନଦୀମାନେ କୂଳ ଲଂଘନ କରି ପ୍ରବଳ ବେଗରେ ପ୍ରବାହିତ ହେଉଛନ୍ତି । ଆକାଶ ମେଘାଚ୍ଛନ୍ନ, ସୂର୍ଯ୍ୟ ଅଦୃଶ୍ୟ ଏବଂ ଦିଗ୍‌ବିଦିଗ ଅନ୍ଧକାରମୟ ।

ବର୍ଷାର ବର୍ଣ୍ଣନା କରିସାରି ରାମ ପୁଣି ନିଜର ବିରହଦୁଃଖ କହିବାକୁ ଲାଗିଲେ । ସେ କହିଲେ – ଲକ୍ଷ୍ମଣ, ଶତ୍ରୁ ଜୟପୂର୍ବକ ସ୍ତ୍ରୀ ଓ ରାଜ୍ୟ ଲାଭ କରି ସୁଗ୍ରୀବ ଏହି ବର୍ଷାଋତୁର ସୁଖ ଭୋଗ କରୁଛନ୍ତି । କିନ୍ତୁ ମୁଁ ହୃତଦାର (ମୋର ସ୍ତ୍ରୀ ଅପହୃତ) ଓ ରାଜ୍ୟଚ୍ୟୁତ ହୋଇ କ୍ଷୟ ପାଇଯାଉଥିବା ନଦୀତଟ ପରି ଦୁଃଖ ଭୋଗ କରୁଛି । ମୋର ଶୋକ ବଢୁଥିବାବେଳେ ବର୍ଷା ମଧ୍ୟ ବଢ଼ିଚାଲିଛି, ଯାହା ଫଳରେ ରାସ୍ତାଘାଟ ଦୁର୍ଗମ ହେଉଛି । ତେଣୁ ସୁଗ୍ରୀବ ମୋର ଆଜ୍ଞାଧୀନ ହେଲେ ମଧ୍ୟ ତାଙ୍କୁ ମୁଁ କିଛି କହିପାରୁ ନାହିଁ । କିପରି ଏହି ବର୍ଷା ଶେଷ ହେବ ଏବଂ ସୁଗ୍ରୀବ ପ୍ରତ୍ୟୁପକାର ଦ୍ୱାରା ଆମର କାର୍ଯ୍ୟ ସାଧନ କରିବେ, ସେଥିପାଇଁ ମୁଁ ଅପେକ୍ଷା କରି ରହିଛି ।

## ୭୦ ।। ମାଲ୍ୟବନ୍ତରେ ଶରତ ଋତୁ : ରାମଙ୍କର ଆଶଙ୍କା

ସୁଗ୍ରୀବ ରାଜ୍ୟଲାଭ କରି ବିଳାସ ଓ ଆମୋଦରେ କାଳ ଯାପନ କରିବାକୁ ଲାଗିଲେ । ନିଜର ପତ୍ନୀ ରୁମା, ତାରା ଓ ଅନ୍ୟ ସ୍ତ୍ରୀମାନଙ୍କ ସହିତ ସେ ସର୍ବଦା ବିହାରରତ ହୋଇ ରାଜକାର୍ଯ୍ୟ ଭୁଲିଗଲେ । ମନ୍ତ୍ରୀମାନଙ୍କ ହାତରେ ରାଜକାର୍ଯ୍ୟ ଛାଡ଼ିଦେଇ ସେମାନେ ତାହା କରୁଛନ୍ତି କି ନାହିଁ, ତାହା ମଧ୍ୟ ତତ୍ତ୍ୱାବଧାନ କରିବାକୁ ସମୟ ଦେଲେ ନାହିଁ । ଏହିପରି ବର୍ଷାକାଳ ଅତୀତ ହୋଇ ଶରତ ସମୟ ଉପସ୍ଥିତ ହେଲା ଏବଂ ମେଘମୁକ୍ତ ଆକାଶରେ ନିର୍ମଳ ଚନ୍ଦ୍ର ଜ୍ୟୋସ୍ନା ତାର ସୂଚନା ଦେଲା । ଧର୍ମ ଓ ଅର୍ଥ ସଂଗ୍ରହରେ ଶିଥିଳ ଏବଂ ଯଥେଚ୍ଛାଚାରୀ ବାନରରାଜଙ୍କୁ ଧର୍ମଜ୍ଞ ହନୁମାନ ଯାଇ କହିଲେ, ଆପଣ ରାଜ୍ୟଲାଭ କଲେ, ଯଶ ଲାଭ କଲେ, କୁଳର ଶ୍ରୀବୃଦ୍ଧି ଘଟାଇଲେ । ବର୍ତ୍ତମାନ ମିତ୍ରଙ୍କୁ ଦେଇଥିବା ପ୍ରତିଶ୍ରୁତି ପାଳନ କରନ୍ତୁ । ଯେଉଁ ରାଜା ରାଜକୋଷ, ସେନା, ମିତ୍ରମାନଙ୍କୁ ସମାନ ଭାବରେ ଦେଖେ, ତାର ରାଜ୍ୟ ବିସ୍ତାର ଲାଭ କରେ । ବର୍ତ୍ତମାନ ସବୁ କାର୍ଯ୍ୟ ଛାଡ଼ି ମିତ୍ରଙ୍କର କାର୍ଯ୍ୟ କରିବା ହିଁ ଆପଣଙ୍କର ଏକମାତ୍ର କର୍ତ୍ତବ୍ୟ ।

ଦେଶ-କାଳ-ପାତ୍ରର ବିଚାରକ ବୁଦ୍ଧିମାନ୍ ବାୟୁପୁତ୍ର ପୁଣି କହିଲେ– ମହାରାଜ, ରାମକାର୍ଯ୍ୟର ସମୟ ଅତୀତ ହୋଇଯାଉଛି । ସୀତାଙ୍କ ଅନ୍ୱେଷଣ ଯେ ଶୀଘ୍ର ଆରମ୍ଭ କରିବାକୁ ହେବ, ସେଥିପାଇଁ ସେ ବ୍ୟଗ୍ର ଥିଲେ ମଧ୍ୟ ସ୍ନେହବଶରୁ ଆପଣଙ୍କୁ ଏ ପର୍ଯ୍ୟନ୍ତ କହି ନାହାନ୍ତି । ସେ ନ କହିବା ପୂର୍ବରୁ ଏହି କାର୍ଯ୍ୟ ଆମେ ଆରମ୍ଭ କରିଦେବା ଉଚିତ । ସେ କହି ପଠାଇବା ପର୍ଯ୍ୟନ୍ତ କଥା ଯିବା ଉଚିତ ନୁହେଁ । ବାନରରାଜ, ରାଘବ ପ୍ରଥମରୁ ଆପଣଙ୍କ କାର୍ଯ୍ୟ କରିଛନ୍ତି । ସେ ଆପଣଙ୍କ ବଂଶର ଉନ୍ନତିର କାରଣ । ତାଙ୍କର ଗୁଣାବଳୀ ଅତୁଳନୀୟ, ପ୍ରଭାବ ଅପ୍ରମିତ । ଆପଣ ଯଦି ତାଙ୍କର ବନ୍ଧୁତାକୁ ଦୀର୍ଘସ୍ଥାୟୀ ରଖିବାକୁ ଚାହାନ୍ତି, ତା' ହେଲେ ସୀତା ଅନ୍ୱେଷଣ କାର୍ଯ୍ୟପାଇଁ ବାନର ବୀରମାନଙ୍କୁ ଆଦେଶ ଦିଅନ୍ତୁ । ଆପଣଙ୍କ ଶକ୍ତି ଓ ପରାକ୍ରମର ଅଭାବ ନାହିଁ । ଏକ କୋଟି ବାନର ଆପଣଙ୍କର ଆଜ୍ଞାଧୀନ ହୋଇ ରହିଛନ୍ତି ।

ହିତକାମୀ ହନୁମାନଙ୍କର ପରାମର୍ଶ ଗ୍ରହଣ କରି ସୁଗ୍ରୀବ ସୈନ୍ୟସଂଗ୍ରହ ପାଇଁ ସେନାପତି ନୀଳଙ୍କୁ ଆଦେଶ ଦେଲେ । ସେ କହିଲେ – ନୀଳ, ଅଙ୍ଗଦକୁ ସାଙ୍ଗରେ ନେଇ ବୃଦ୍ଧବାନରମାନଙ୍କ ପାଖକୁ ଯାଅ । ମୋର ଆଦେଶ ବୋଲି ଘୋଷଣା କରି ସୀମାନ୍ତରକ୍ଷୀ ବାନରମାନଙ୍କୁ ଶୀଘ୍ର ଏଠାକୁ ଡକାଅ । ଯେ ଏହି ଆଜ୍ଞା ଅବଜ୍ଞା କରିବ ଓ ପନ୍ଦର ଦିନ ମଧ୍ୟରେ ଏଠାରେ ଉପସ୍ଥିତ ନ ହେବ, ତାର ପ୍ରାଣଦଣ୍ଡ ବିଧାନ କରାଯିବ । ଏହିପରି ଆଦେଶ ଦେଇ ସୁଗ୍ରୀବ ପୁଣି ଅନ୍ତଃପୁର ଭିତରକୁ ଚାଲିଗଲେ ଓ ଆମୋଦ ପ୍ରମୋଦରେ ମାତି ରହିଲେ ।

ମେଘମୁକ୍ତ ଆକାଶ, ନିର୍ମଳ ଚନ୍ଦ୍ରମଣ୍ଡଳ, ଜ୍ୟୋସ୍ନାବିଧୌତ ରଜନୀ ରାମଚନ୍ଦ୍ରଙ୍କ ଶୋକ ଓ ଉଦ୍‌ବେଗ ବଢ଼ାଇବାକୁ ଲାଗିଲା । ହେମବର୍ଣ୍ଣାଭ ପର୍ବତ ଶିଖର ଉପରେ ବସି ଶୋକାର୍ତ୍ତ ରାମ ମନେ ମନେ ସୀତାଙ୍କ କଥା ଚିନ୍ତା କରି କହିଲେ – ଆଶ୍ରମ ମଧ୍ୟରେ ଯାହାଙ୍କର ହଂସପରି ମଧୁର ସ୍ୱର ଶୁଣି କଳହଂସମାନେ ଧ୍ୱନି କରୁଥିଲେ, ପୁଷ୍ପିତ ଅଶନବୃକ୍ଷରେ ଶୁଦ୍ଧ

କାଞ୍ଚନବର୍ଣ୍ଣର ପୁଷ୍ପମାନଙ୍କୁ ଦେଖି ଯେ ମୋହିତ ହେଉଥିଲେ, ସପତ୍ନୀକ ଚକ୍ରବାକର ସ୍ୱର ଶୁଣି ଯେଉଁ ପଦ୍ମପତ୍ରବିଶାଳାକ୍ଷୀଙ୍କର ଚିତ୍ତ ଉନ୍ମାଦିତ ହେଉଥିଲା, ସେ ବର୍ତ୍ତମାନ ମୋ ବିରହରେ କିପରି ପ୍ରାଣଧାରଣ କରି ରହିଥିବେ । ଏସବୁ ସୁନ୍ଦର ସରୋବର, ନଦୀ, ବନ ଓ କାନନରେ ବୁଲି ମୁଁ କୌଣସି ସୁଖଶାନ୍ତି ପାଇ ପାରୁ ନାହିଁ । ବର୍ଷାଜଳ ପାଇଁ ପ୍ରାର୍ଥୀ ହୋଇ ଚାତକ ଯେପରି ବିଳାପ କରେ, ସେହିପରି ରାମ ସୀତାଙ୍କ ପାଇଁ ବିଳାପ କରିବାକୁ ଲାଗିଲେ । ଲକ୍ଷ୍ମଣ ବନର ଫଳ ସଂଗ୍ରହ କରି ଫେରିଆସି ଜ୍ୟେଷ୍ଠଭ୍ରାତାଙ୍କୁ ଏପରି ଦୁଃସହ ଚିନ୍ତାମଗ୍ନ ଅବସ୍ଥାରେ ଦେଖି ବ୍ୟଥିତ ହେଲେ ।

ସୌମିତ୍ରି ରାମଙ୍କୁ ସାନ୍ତ୍ୱନା ଦେଇ କହିଲେ – ଆର୍ଯ୍ୟ, ଦୁଃଖ ଓ ଶୋକରେ ଏପରି ଅଭିଭୂତ ହୋଇପଡ଼ିବା ତୁମ ପକ୍ଷରେ ଉଚିତ ହେଉ ନାହିଁ । ବର୍ତ୍ତମାନ ନିଜର ପୁରୁଷାର୍ଥକୁ ଚିନ୍ତାକରି ଶକ୍ତି, ସହାୟତା ଓ ସାମର୍ଥ୍ୟ ବଢ଼ାଇବାକୁ ହେବ । ସୀତାଙ୍କର ବିରହଦୁଃଖରେ ଭାଙ୍ଗିପଡ଼ ନାହିଁ । ଯେଉଁ ଜାନକୀ ତୁମକୁ ପତିରୂପେ ଲାଭ କରିଛନ୍ତି, ସେ କେବେ ଅନ୍ୟର ବଶବର୍ତ୍ତୀ ହେବେ ନାହିଁ । ଜ୍ୱଳନ୍ତ ଅଗ୍ନିକୁ ଧରିବା ପରି ତାଙ୍କୁ ସ୍ପର୍ଶ କରିବାକୁ କେହି ସାହସ କରିବ ନାହିଁ ।

ଲକ୍ଷ୍ମଣଙ୍କ କଥାରେ ଆଶ୍ୱସ୍ତ ହୋଇ ରାମ କହିଲେ, ତୁମେ ଯାହା କହିଲ, ତାହା ଯଥାର୍ଥ, ଯୁକ୍ତିଯୁକ୍ତ ଓ ନୀତିସମ୍ମତ ।

ପର ମୁହୂର୍ତ୍ତରେ ପୁଣି ସୀତାଙ୍କ କଥା ଚିନ୍ତା କରି ରାମଙ୍କର ମୁଖ ଶୁଷ୍କ ହୋଇଗଲା । ସେ ଲକ୍ଷ୍ମଣଙ୍କୁ କହିଲେ, ବର୍ଷାଜଳ ଦ୍ୱାରା ବର୍ତ୍ତମାନ ପୃଥିବୀ ତୃପ୍ତ ଓ ଶସ୍ୟମାନେ ପରିପକ୍ୱ ହୋଇଛନ୍ତି । ନୀଳୋତ୍ପଳଶ୍ୟାମ ମେଘମାନେ ଦୂର୍ବାଦଳ ଓ ଶସ୍ୟସମ୍ଭାର ଦ୍ୱାରା ସେମାନଙ୍କ ଶ୍ୟାମଳବର୍ଣ୍ଣରେ ଧରଣୀକୁ ରଞ୍ଜିତ କରିସାରିବା ପରେ ଶିଥିଳ ହୋଇଗଲେଣି । ମେଘ, ବାୟୁ, ହସ୍ତୀ, ମୟୂର ଓ ନିର୍ଝରମାନେ ଶାନ୍ତ ଓ ନୀରବିତ । ସପ୍ତଚ୍ଛଦବୃକ୍ଷର ଶାଖା, ତାରା ଓ ଚନ୍ଦ୍ରମାର ପ୍ରଭା ଓ ଗଜେନ୍ଦ୍ରର ଲୀଳାରେ ନିଜର ଶୋଭାକୁ ବିଭକ୍ତ କରି ଶରଦ୍‌କାଳ ଉପସ୍ଥିତ । ଏହାର ଆଗମନରେ ଚତୁର୍ଦ୍ଦିଗ ଶୋଭାମୟ ହୋଇଉଠିଛି । କିନ୍ତୁ ସୂର୍ଯ୍ୟ କିରଣରେ ଉଦ୍‌ଥିତ ପଦ୍ମବନର ଶୋଭା ବିଶେଷ ଦର୍ଶନୀୟ । ପଦ୍ମରଜବିକୀର୍ଣ୍ଣ ନଦୀମାନଙ୍କର କୂଳରେ ହଂସ ଓ ଚକ୍ରବାକମାନେ କ୍ରୀଡ଼ା କରୁଛନ୍ତି । ମଧୁର ଗନ୍ଧଯୁକ୍ତ, ସୁବର୍ଣ୍ଣ ଗୌରବର୍ଣ୍ଣ ପୁଷ୍ପଭାରରେ ଅବନତ ବୃକ୍ଷର ଶାଖାମାନ ବନଭୂମିକୁ ଆଲୋକିତ କଲାପରି ଦେଖାଯାଉଛି ।

ଦିଗ୍‌ବିଦିଗ ତମୋଶୂନ୍ୟ ହୋଇ ନିର୍ମଳ ଦେଖାଯାଉଛି । ଶାଣୋତ୍ତୀର୍ଣ୍ଣ ଅସିଧାର ପରି ଆକାଶ ନିର୍ମଳ ଦେଖାଯାଉଛି । ନଦୀମାନେ କ୍ଷୀଣଧାର ହୋଇ ନିର୍ମଳ ଦେଖାଯାଉଛନ୍ତି । ସୂର୍ଯ୍ୟତାପରେ ପଙ୍କ ଶୁଖିଯାଇ ରାସ୍ତାଘାଟ ସବୁ ନିର୍ମଳ ଦେଖାଯାଉଛି । ଶରଦ୍‌କାଳ ହେତୁରୁ ବୃଷଭମାନଙ୍କର ରୂପ ଓ ଶୋଭା ବୃଦ୍ଧିପାଇଛି । ସେମାନେ ହୃଷ୍ଟ ଓ ମଦମତ୍ତ ହୋଇ ଗୋଷ୍ଠ ମଧ୍ୟରେ ପଶି ଯୁଦ୍ଧଲିପ୍‌ସାରେ ଗର୍ଜନ କରୁଛନ୍ତି । ମଦସ୍ରାବୀ ଗଜେନ୍ଦ୍ରଗଣ ଜଳପାନ ପାଇଁ ପଦ୍ମପୂର୍ଣ୍ଣ ସରୋବରକୁ ବିକ୍ଷୁବ୍‌ଧ କରିବା ଫଳରେ ହଂସ ଓ ଚକ୍ରବାକମାନେ ଭୟରେ ପଳାଇଯାଉଛନ୍ତି । ସନ୍ଧ୍ୟାରାଗରେ ଆକାଶ ରଞ୍ଜିତ । ମାତ୍ର ଚନ୍ଦ୍ରକିରଣ ସ୍ପର୍ଶରେ

ତାରାଗଣ ହୃଷ୍ଟ ହୋଇ ଉଦିତ ହେଉଥିବା ଫଳରେ ଭାଗ୍ୟବତୀ ସନ୍ଧ୍ୟା ନିଜେ ଆକାଶକୁ ଛାଡ଼ିଦେବା ପରି ମନେ ହେଉଛି । ତାରାରୂପକ ଚାରୁନେତ୍ରା ଚନ୍ଦ୍ରମୁଖୀ ରାତ୍ରି ଜ୍ୟୋତ୍ସ୍ନାଧବଳ ପଟ୍ଟବସ୍ତ୍ର ପରିଧାନ କରି ଏକ ସୁନ୍ଦରୀ ନାରୀ ପରି ଶୋଭା ପାଉଛି । ଏକ ବିଶାଳ ହ୍ରଦରେ ଗୋଟିଏ ହଂସ ଶୋଇଛି ଏବଂ ଚାରିଆଡ଼େ କଇଁଫୁଲ ଫୁଟିଉଠିଛି । ତାହା ମେଘମୁକ୍ତ ଆକାଶରେ ନକ୍ଷତ୍ରଯୁକ୍ତ ଚନ୍ଦ୍ରମାପରି ଦେଖାଯାଉଛି । ରତିକ୍ଳାନ୍ତ ରମଣୀମାନଙ୍କ ପରି ନଦୀମାନେ ଧୀର ମନ୍ଥର ଗତିରେ ପ୍ରବାହିତ ହେଉଛନ୍ତି । ସ୍ୱଚ୍ଛ ନିର୍ମଳ ଜଳ, ପ୍ରଫୁଲ୍ଲ କୁସୁମ, କ୍ରୌଞ୍ଚର ଧ୍ୱନି, ପକ୍ୱଧାନ୍ୟକ୍ଷେତ୍ର, ମୃଦୁମନ୍ଦ ବାୟୁ ଓ ନିର୍ମଳ ଚନ୍ଦ୍ରମା ବର୍ଷାର ଶେଷ ଓ ଶରତ ଋତୁ ଆଗମନର ସୂଚନା ଦେଉଛି ।

ଏହିପରି ସୀତାଙ୍କର ବିରହ ଓ ଶରତର ବର୍ଣ୍ଣନା କରି ରାମ ଲକ୍ଷ୍ମଣଙ୍କୁ କହିଲେ – ସୌମ୍ୟ, ବର୍ତ୍ତମାନ ରାଜାମାନଙ୍କ ଯୁଦ୍ଧୋଦ୍ୟମର ପ୍ରକୃଷ୍ଟ ସମୟ । କିନ୍ତୁ ସେ ସଂପର୍କରେ ସୁଗ୍ରୀବ କିଛି ଉଦ୍ୟମ କରୁଥିବାର ମୁଁ ଦେଖିପାରୁ ନାହିଁ । ଯେଉଁ ସୀତା ମୋ ସଙ୍ଗେ ରହି ବିଷମ ଦଣ୍ଡକାରଣ୍ୟକୁ ଉଦ୍ୟାନ ବୋଲି ବିଚାର କରିଥିଲେ ଓ ଅନ୍ତରଙ୍ଗ ହୋଇ ମୋ ପଛେ ପଛେ ଆସୁଥିଲେ, ତାଙ୍କୁ ମୁଁ ହରାଇ କିପରି ନିଶ୍ଚିନ୍ତ ରହିଛି ? ଏହି ବର୍ଷା ଚାରିମାସ ମୋତେ ଶହେବର୍ଷପରି ଲାଗିଲାଣି । ମୁଁ ଦୁଃଖୀ, ଦୂରପ୍ରବାସୀ, ସୁଗ୍ରୀବଙ୍କର ଶରଣାପନ୍ନ । କିନ୍ତୁ ସେହି ଦୁରାତ୍ମା ବାନରରାଜ ମୋତେ ଅବଜ୍ଞା କରୁଛି । ମୋତେ ଜବାବ ଦେଇ ଜବାବ ରକ୍ଷା କରିବାକୁ ସେ ପ୍ରସ୍ତୁତ ନୁହେଁ । ନିଜର କାର୍ଯ୍ୟ ହୋଇଯିବା ପରେ ସେ ତାର ପ୍ରତିଶ୍ରୁତି ଭୁଲିଯାଇଛି । ଲକ୍ଷ୍ମଣ, ତୁମେ ଯାଇ ଶୀଘ୍ର ସୁଗ୍ରୀବଙ୍କୁ କହ, ସେ ତୁରନ୍ତ ନିଜର ପ୍ରତିଶ୍ରୁତି ରକ୍ଷା କରି ସମୟ ଅନୁସାରେ କାର୍ଯ୍ୟ କରୁ । ବାଳୀ ଯେଉଁ ବାଟରେ ଯାଇଛି, ତାହା ଏ ପର୍ଯ୍ୟନ୍ତ ବନ୍ଦ ହୋଇ ନାହିଁ । ସେ ବାଳୀର ଅନୁସରଣ ନ କରୁ । ଜଣେ ବାଳୀ ସିନା ମୋ ଦ୍ୱାରା ଯୁଦ୍ଧରେ ନିହତ ହୋଇଥିଲା, ବର୍ତ୍ତମାନ କ୍ରୁଦ୍ଧ ହେଲେ ସୁଗ୍ରୀବ ସବାନ୍ଧବ ନିହତ ହେବ ।

ରାମଙ୍କର ଦୁଃଖ ଓ କ୍ରୋଧକୁ ଦେଖି ତେଜସ୍ୱୀ ଲକ୍ଷ୍ମଣ ସୁଗ୍ରୀବଙ୍କ ସହିତ ଅତି ରୁକ୍ଷ ଭାବରେ ବ୍ୟବହାର କରିବାପାଇଁ ସ୍ଥିର କଲେ । ସେ ରାମଙ୍କୁ କହିଲେ, ବାନର ସୁଗ୍ରୀବ ଭଲରେ ଆମର କାମ କରିବ ବୋଲି ମୋର ମନେହୁଏ ନାହିଁ । ସେ ଗ୍ରାମ୍ୟସୁଖ ଓ ବିଳାସରେ ମତ୍ତ । ଆପଣଙ୍କ ପ୍ରତ୍ୟୁପକାର ସେ କରିବ ନାହିଁ । ଏପରି ଲୋକ ରାଜ୍ୟଲାଭର ଯୋଗ୍ୟ ନୁହେଁ । ମୁଁ ମୋର କ୍ରୋଧ ସମ୍ବରଣ କରିପାରୁ ନାହିଁ । ସତ୍ୟଭଙ୍ଗକାରୀ ସୁଗ୍ରୀବଙ୍କୁ ମୁଁ ଆଜି ନିଶ୍ଚୟ ବଧ କରିବି । ବାଳୀପୁତ୍ର ଅଙ୍ଗଦ ବାନରମାନଙ୍କୁ ଧରି ସୀତାଙ୍କ ଅନ୍ୱେଷଣ କରିବ ।

ରାମ କହିଲେ, ତୁମ ପରି ବ୍ୟକ୍ତି ଏପରି ପାପକାର୍ଯ୍ୟ କରିବା ଉଚିତ ହେବ ନାହିଁ । ବିବେକଦ୍ୱାରା କୋପକୁ ରୋଧ କରିବା ବ୍ୟକ୍ତିଙ୍କୁ ଶ୍ରେଷ୍ଠ ପୁରୁଷରେ ଗଣାଯାଏ । ସୁଗ୍ରୀବଙ୍କ ସହିତ ଆମର ପୂର୍ବ ବନ୍ଧୁତାର ସ୍ମରଣ କରି ସମୟ ଅତିକ୍ରାନ୍ତ ହେବା ବିଷୟରେ ତୁମେ ତାଙ୍କୁ ଧୀର ଭାବରେ ପଚାରିବ ।

ସୁଗ୍ରୀବ କ'ଣ କହିବେ, ସୁଗ୍ରୀବଙ୍କୁ ସେ କ'ଣ ଉତ୍ତର ଦେବେ, ଏହି ଉତ୍ତର, ପ୍ରତ୍ୟୁତ୍ତର ବିଷୟ ଭଲ ଭାବରେ ଚିନ୍ତାକରି ଅଗ୍ରଜ ଆଜ୍ଞାବହ ଲକ୍ଷ୍ମଣ ଏକ ଭୟଙ୍କର କାଳାନ୍ତକ ଧନୁ ଧାରଣ କରି ଦ୍ରୁତ ବେଗରେ କିଷ୍କିନ୍ଧ୍ୟା ଯାତ୍ରା କଲେ । ସେ କ୍ରୁଦ୍ଧ ହୋଇ ଦୂର ପଡ଼ିବ ବୋଲି ମନୁଷ୍ୟ ଯିବା ରାସ୍ତା ଛାଡ଼ି ଅବାଟ ବାଟରେ ଦ୍ରୁତଗତିରେ ଯାଇ ପର୍ବତବେଷ୍ଟିତ କିଷ୍କିନ୍ଧ୍ୟା ନିକଟରେ ପହଞ୍ଚିଲେ । ଭୀଷଣାକୃତି ବାନରମାନେ ସେଠାରେ ନଗରକୁ ରକ୍ଷା କରିବା ପାଇଁ ବିଚରଣ କରୁଥିଲେ । ସେମାନେ କ୍ରୁଦ୍ଧ ଲକ୍ଷ୍ମଣଙ୍କୁ ଦେଖି ଅନ୍ତରାଳରେ ରହି ବଡ଼ ବଡ଼ ଶିଳା ଓ ବୃକ୍ଷମାନ ଧାରଣ କଲେ । ତଦ୍ୱାରା ଲକ୍ଷ୍ମଣଙ୍କର କ୍ରୋଧ ଆହୁରି ବଢ଼ିଗଲା ।

## ୭୧ ॥ କିଷ୍କିନ୍ଧ୍ୟାରେ ଲକ୍ଷ୍ମଣ

କ୍ରୁଦ୍ଧ ଲକ୍ଷ୍ମଣଙ୍କର ଆସିବାର ସମ୍ବାଦ ସୁଗ୍ରୀବ ଶୁଣି ମଧ୍ୟ ଶୁଣିଲେ ନାହିଁ । ସେ ତାରାଙ୍କ ସହିତ ଆମୋଦ କରୁଥିଲେ । ଅଙ୍ଗଦ ଭୟଭୀତ ହୋଇ ଲକ୍ଷ୍ମଣଙ୍କୁ ଭେଟିବା ପାଇଁ ଆସିଲେ । ଲକ୍ଷ୍ମଣ କ୍ରୋଧରେ ଚକ୍ଷୁ ରକ୍ତବର୍ଣ୍ଣ କରି ସୁଗ୍ରୀବଙ୍କୁ ଜଣାଇଦେବାପାଇଁ କହିଲେ, 'ଭ୍ରାତାଙ୍କର ଦୁଃଖରେ ସନ୍ତପ୍ତ ହୋଇ ଲକ୍ଷ୍ମଣ ଦ୍ୱାରରେ ଆସି ଅପେକ୍ଷା କରିଛନ୍ତି, ଯଦି ଇଚ୍ଛା ଅଛି, ତା' ହେଲେ ତାଙ୍କର କଥା ଶୁଣି କାର୍ଯ୍ୟକର । ଏହା କହି ପୁଣି ମୋ ପାଖକୁ ଫେରିଆସ ।' ବିଷଣ୍ଣ ଅଙ୍ଗଦ ଯାଇ ଦେଖିଲେ ଯେ ସୁଗ୍ରୀବ ମଦମତ୍ତ ହୋଇ ନିଦ୍ରିତ ଅଛନ୍ତି । ସେ ଅଙ୍ଗଦଙ୍କ କଥା ଶୁଣିଲେ ନାହିଁ । ଲକ୍ଷ୍ମଣଙ୍କୁ ସନ୍ତୁଷ୍ଟ କରିବା ପାଇଁ ବାନରମାନେ କିଳିକିଳା ରବ ଓ ସିଂହନାଦ କରି ସୁଗ୍ରୀବଙ୍କୁ ଉଠାଇଲେ । ଅଙ୍ଗଦଙ୍କ ସହିତ ଥିବା ଦୁଇଜଣ ମନ୍ତ୍ରୀ ପ୍ଲକ୍ଷ ଓ ପ୍ରଭାବ ସୁଗ୍ରୀବଙ୍କୁ ଲକ୍ଷ୍ମଣଙ୍କର ଆସିବା ବିଷୟ ଜଣାଇ କହିଲେ, ଅତି କ୍ରୁଦ୍ଧ ହୋଇ ରାମଙ୍କର ଭ୍ରାତା ଲକ୍ଷ୍ମଣ ଆପଣଙ୍କ ଦ୍ୱାର ଦେଶରେ ଠିଆ ହୋଇଛନ୍ତି । ତାଙ୍କର ଆଖିରୁ ନିଆଁ ବାହାରୁଛି, ଯେପରିକି ସେ ବାନରମାନଙ୍କୁ ପୋଡ଼ି ଜାଳିଦେବେ । ବାନରରାଜ, ଆପଣ ପୁତ୍ର ଓ ବନ୍ଧୁମାନଙ୍କ ସହିତ ଶୀଘ୍ର ଯାଇ ତାଙ୍କୁ ପ୍ରଣାମ କରନ୍ତୁ ଏବଂ ସେ ରାମଙ୍କଠାରୁ କ'ଣ ବାର୍ତ୍ତା ନେଇ ଆସିଛନ୍ତି, ତାହା ଶୁଣନ୍ତୁ । ସୁଗ୍ରୀବ ଶଯ୍ୟାତ୍ୟାଗ କରି କହିଲେ, ମୁଁ ତ କୌଣସି ଅନ୍ୟାୟ କରି ନାହିଁ । ଲକ୍ଷ୍ମଣ କାହିଁକି କ୍ରୁଦ୍ଧ ହୋଇଛନ୍ତି ? ନିଶ୍ଚୟ କୌଣସି ଛିଦ୍ରାନ୍ୱେଷୀ ଶତ୍ରୁ ମୋ ନାମରେ ଲଗାଇ ଅନେକ ମିଛକଥା କହିଛି । ତୁମେମାନେ ଯାଇ ତାଙ୍କର ପ୍ରକୃତ ମନୋଭାବ ବୁଝିଆସ । ମୁଁ ରାମ, ଲକ୍ଷ୍ମଣଙ୍କୁ ଭୟ କରେ ନାହିଁ । କିନ୍ତୁ ବିନା କାରଣରେ ମିତ୍ର କାହିଁକି କୁପିତ ହୋଇଛନ୍ତି, ସେଥିପାଇଁ ମୋ ମନରେ ଉଦ୍‌ବେଗ ଜାତ ହେଉଛି ।

ହନୁମାନ କହିଲେ, ତୁମର ପ୍ରିୟକାର୍ଯ୍ୟ ପାଇଁ ରାମ ଇନ୍ଦ୍ରତୁଲ୍ୟ ପରାକ୍ରମୀ ବାଳୀକୁ ନିହତ କଲେ । କିନ୍ତୁ ତାର ପ୍ରତ୍ୟୁପକାର ପାଇଁ ତୁମେ କିଛି କରୁନାହଁ ବୋଲି ମିତ୍ରଭାବରେ ତାଙ୍କର ସ୍ୱାଭାବିକ କ୍ରୋଧ ଜାତ ହୋଇଛି । ତୁମେ ସମ୍ଭୋଗରେ ମତ୍ତ ରହି ସମୟ ଜ୍ଞାନ ହରାଇଛ । ମେଘ ବିଦୂରିତ ହୋଇ ନକ୍ଷତ୍ରଖଚିତ ନିର୍ମଳ ଆକାଶ ଦେଖାଯାଉଛି । ନଦୀ ଓ ପୁଷ୍କରିଣୀ ନିର୍ମଳ । ବର୍ଷାଯାଇ ଶରତ ଋତୁ ଉପସ୍ଥିତ ହେଲାଣି । କିନ୍ତୁ ଯାହା ଉଦ୍‌ଯୋଗ

କରିବାର କଥା ତୁମେ ନ କରି ରହିଛ । ତେଣୁ ଲକ୍ଷ୍ମଣ ଯଦି ତୁମକୁ କଠୋର କଥା କହନ୍ତି, ତୁମେ ତାକୁ ସହିନେବା ଉଚିତ । ନିଜ ଅପରାଧ ପାଇଁ ହାତଯୋଡ଼ି ଲକ୍ଷ୍ମଣଙ୍କୁ ପ୍ରସନ୍ନ କରିବା ଛଡ଼ା ଅନ୍ୟ ଉପାୟ ନାହିଁ । ପୁତ୍ର, ମିତ୍ରମାନଙ୍କ ସହିତ ନତଶିର ହୋଇ ତାଙ୍କୁ ପ୍ରଣାମପୂର୍ବକ ନିଜର କର୍ତ୍ତବ୍ୟ କର ।

ସୁଗ୍ରୀବଙ୍କର ସନ୍ଦେଶ ପାଇ ଲକ୍ଷ୍ମଣ ଅଙ୍ଗଦଙ୍କ ସହିତ କିଷ୍କିନ୍ଧ୍ୟାର ଗୁହାରେ ପ୍ରବେଶ କଲେ । ଏହି ଗୁହା ବାସ୍ତବରେ ଏକ ଗିରିଦୁର୍ଗ ଥିଲା । ମହାକାୟ ବାନରମାନେ କ୍ରୋଧରେ ଖରନିଃଶ୍ୱାସ ପକାଉଥିବା ଲକ୍ଷ୍ମଣଙ୍କୁ ଦେଖି କୃତାଞ୍ଜଳି ହୋଇ ଠିଆ ହେଲେ । ଲକ୍ଷ୍ମଣ କିଷ୍କିନ୍ଧ୍ୟା ନଗରୀରେ ବହୁ ରତ୍ନଖଚିତ ସୁନ୍ଦର ହର୍ମ୍ୟ ଓ ପ୍ରାସାଦମାନ ଦେଖିବାକୁ ପାଇଲେ । ଚନ୍ଦନ ଅଗୁରୁ ଓ ପଦ୍ମ ଗନ୍ଧରେ ତାହା ସୁରଭିତ ଥିଲା । ମୈରେୟ ନାମକ ଉତ୍କୃଷ୍ଟ ସୁରାର ଗନ୍ଧ ଭାସି ଆସୁଥିଲା । ବହୁ ଫଳ ଓ ପୁଷ୍ପବୃକ୍ଷ ନଗରର ଶୋଭା ବଢ଼ାଉଥିଲା । ଦେବତା ଓ ଗନ୍ଧର୍ବଙ୍କର ପୁତ୍ର କାମରୂପୀ ବାନରମାନେ ଦିବ୍ୟମାଳା ଓ ବସ୍ତ୍ର ପରିଧାନ କରି ସୁନ୍ଦର ଦେଖାଯାଉଥିଲେ । ମେରୁ ପର୍ବତପରି ଉଚ୍ଚ ରମଣୀୟ ପ୍ରାସାଦମାନଙ୍କରେ ଅଙ୍ଗଦ, ମୈନ୍ଦ, ଦ୍ୱିବିନ୍ଦ, ଗବୟ, ଗବାକ୍ଷ, ଗଜ, ଶରଭ, ବିଦ୍ୟୁତ୍‌ମାଳୀ, ହନୁମାନ, ନଳ, ନୀଳ, ସୁଷେଣ, ତାର, ଜାମ୍ବବାନ୍ ପ୍ରଭୃତି ବାନରମୁଖ୍ୟମାନେ ରହୁଥିଲେ । କୈଳାସ ପର୍ବତ ପରି ଶ୍ୱେତବର୍ଣ୍ଣ ବାନରରାଜଙ୍କର ରାଜପ୍ରାସାଦ ଅତିଶୟ ରମଣୀୟ ଦେଖାଯାଉଥିଲା । ତାହାର ତୋରଣମାନ ତପ୍ତକାଞ୍ଚନରେ ନିର୍ମିତ ହୋଇ ପୁଷ୍ପମାଳାରେ ଶୋଭିତ ଥିଲା । ଏପରିକି ସାତଟି ସୁସଜ୍ଜିତ କକ୍ଷ ଅତିକ୍ରମ କରି ଲକ୍ଷ୍ମଣ ସୁଗ୍ରୀବଙ୍କ ଅନ୍ତଃପୁରରେ ପହଞ୍ଚିଲେ । ସେଠାରେ ସେ ନୂପୁର ନିକ୍ୱଣ, ବିଭିନ୍ନ ଅଳଙ୍କାରର ଝଙ୍କାର, ସଙ୍ଗୀତ ଓ ବାଦ୍ୟଧ୍ୱନି ଶୁଣିବାକୁ ପାଇଲେ । ନୂପୁର ଓ କଟିମେଖଳାର ଶବ୍ଦ ଶୁଣି ଏବଂ ରୂପଯୌବନଗର୍ବିତା ବହୁ ସୁନ୍ଦରୀ ନାରୀଙ୍କୁ ଦେଖି ଲକ୍ଷ୍ମଣ ଲଜ୍ଜିତ ହେଲେ । ସେ କ୍ରୁଦ୍ଧ ହୋଇ ଧନୁରେ ଜ୍ୟା ରୋପଣ କଲେ ଏବଂ ତାର ଟଙ୍କାରଧ୍ୱନିରେ ଦିଗ୍‌ବିଦିଗ ପ୍ରକମ୍ପିତ ହେଲା । ସୁଗ୍ରୀବ ସେହି ଶବ୍ଦରେ ଭୀତ ହୋଇ ତାରାଙ୍କୁ କହିଲେ, କୋମଳମନା ଲକ୍ଷ୍ମଣ କାହିଁକି ଆଜି କ୍ରୁଦ୍ଧ ହୋଇଛନ୍ତି ? ଯଦି ଆମର କିଛି ଅପ୍ରିୟ କାର୍ଯ୍ୟପାଇଁ ତାଙ୍କର କ୍ରୋଧ ଜାତ ହୋଇଥାଏ, ତୁମେ ତାଙ୍କୁ ଶୀଘ୍ର ଯାଇ ପ୍ରସନ୍ନ କର । କୋମଳ ମଧୁର ବାକ୍ୟଦ୍ୱାରା ତୁମେ ତାଙ୍କର କୋପ ଶାନ୍ତ କରିବା ପରେ ମୁଁ ତାଙ୍କୁ ସାକ୍ଷାତ କରିବି ।

ମଦବିହ୍ୱଳା ତାରା ସ୍ଖଳିତ ପାଦରେ ଲକ୍ଷ୍ମଣଙ୍କ ପାଖକୁ ଗଲେ । ତାଙ୍କୁ ସେହି ଅବସ୍ଥାରେ ଦେଖି ଲକ୍ଷ୍ମଣ ମୁହଁକୁ ତଳକୁ କରିଦେଲେ । ନାରୀକୁ ପାଖରେ ଦେଖି ତାଙ୍କର କୋପ ଶାନ୍ତ ହୋଇଗଲା । ବିଶେଷତଃ ସେ ବାଳୀର ପତ୍ନୀ ଥିବାରୁ ସେ ତାଙ୍କପ୍ରତି ପ୍ରସନ୍ନ ଦୃଷ୍ଟିପାତ କଲେ । ମଦ୍ୟପାନ ଯୋଗୁଁ ତାରାଙ୍କର ଲଜ୍ଜା ଦୂର ହୋଇଯାଇଥିଲା । ସେ ସ୍ନେହପୂର୍ଣ୍ଣ ମଧୁର ବାକ୍ୟରେ କହିଲେ – ରାଜକୁମାର, ଆପଣଙ୍କର କ୍ରୋଧର କାରଣ କ'ଣ ? କିଏ ଆପଣଙ୍କର ଆଦେଶ ଲଂଘନ କରୁଛି ? ଶୁଷ୍କ ବୃକ୍ଷଯୁକ୍ତ ବନରେ ଅଗ୍ନି ଲଗାଇ କିଏ ନିଃଶଙ୍କ ହୋଇ ରହିଛି ? ଲକ୍ଷ୍ମଣ କହିଲେ – ତାରା, ତୁମର ଭର୍ତ୍ତା ସୁଗ୍ରୀବ କାମାସକ୍ତ ହୋଇ ଧର୍ମଲୋପ କରିଛନ୍ତି । ସେ ଶୋକପରାୟଣ ଆମମାନଙ୍କ ପାଇଁ ଚିନ୍ତିତ ନୁହନ୍ତି ।

ସେ ଚାରିମାସ ସମୟ ନେଇଥିଲେ । ବର୍ତ୍ତମାନ ସମୟ ଅତୀତ । ମାତ୍ର, ବାନରରାଜ ସୁଗ୍ରୀବ ମଦମତ୍ତ ହୋଇ ତାଙ୍କର ପାରିଷଦବର୍ଗଙ୍କ ସହିତ କାମଭୋଗରେ ଲିପ୍ତ ଅଛନ୍ତି । ସୁଗ୍ରୀବଙ୍କ କାର୍ଯ୍ୟର ଉପଯୁକ୍ତ ପ୍ରତ୍ୟୁତ୍ତର ଦେବାକୁ ହେବ । ତାରା କହିଲେ – କୁମାର, ବର୍ତ୍ତମାନ କ୍ରୋଧର ସମୟ ନୁହେଁ । ବିଶେଷତଃ ନିଜ ଲୋକଙ୍କ ପ୍ରତି କୋପ କରିବା ଉଚିତ ନୁହେଁ । ତୁମର ପ୍ରସାଦରୁ ସେ ଅର୍ଥ ଏବଂ କାମ ଭୋଗର ସୁଯୋଗ ପାଇଛନ୍ତି । ତେଣୁ ତାଙ୍କର ଦୋଷ କ୍ଷମଣୀୟ । ମୁଁ ବୁଝିଛି ଯେ, ନିରୂପିତ ସମୟରେ ସୁଗ୍ରୀବ ତାଙ୍କର କର୍ତ୍ତବ୍ୟ କରିନାହାନ୍ତି । ଅଥଚ ରାମ ତାଙ୍କର କର୍ତ୍ତବ୍ୟ ଶେଷ କରିଛନ୍ତି । କାମାସକ୍ତ ବ୍ୟକ୍ତି ଦେଶ, କାଳ ବା ଅର୍ଥ ଓ ଧର୍ମର ବିଚାର କରେ ନାହିଁ । ତୁମେ କ୍ରୁଦ୍ଧ । କାମଶାସ୍ତ୍ରରେ ତୁମର ଜ୍ଞାନ ନାହିଁ । ତପସ୍ୱୀମାନେ ମଧ୍ୟ ମୋହଗ୍ରସ୍ତ ହୋଇ କାମାସକ୍ତ ହୁଅନ୍ତି । ସୁଗ୍ରୀବ ତୁମର ଭ୍ରାତା । ତୁମେ ତାଙ୍କୁ କ୍ଷମା କର । ଭୋଗସୁଖରେ ମଗ୍ନ ଥିଲେ ମଧ୍ୟ ସୁଗ୍ରୀବ ତୁମର କାର୍ଯ୍ୟ ସାଧନ ପାଇଁ ବିଭିନ୍ନ ପର୍ବତରେ ବାସ କରୁଥିବା ଅସଂଖ୍ୟ ବାନରସୈନ୍ୟଙ୍କୁ ସଂଗ୍ରହ କଲେଣି । ମହାବାହୁ, ତୁମେ ନିଜର ନିର୍ମଳ ଚରିତ୍ରକୁ ରକ୍ଷା କରିଛ । ମୋ ସହିତ ଆସ, ସାଧୁଲୋକ ମିତ୍ର ଭାବରେ ପରସ୍ତ୍ରୀ ଦେଖିଲେ ଦୋଷ ହୁଏ ନାହିଁ ।

ଲକ୍ଷ୍ମଣ ତାରାଙ୍କ ସହିତ ଅନ୍ତଃପୁରରେ ପ୍ରବେଶ କରି ଦେଖିଲେ, ସୁଗ୍ରୀବ ସୁନ୍ଦରୀ ରମଣୀମାନଙ୍କ ଦ୍ୱାରା ବେଷ୍ଟିତ ହୋଇ ନିଜର ସ୍ତ୍ରୀ ରୋମାଙ୍କୁ ଗାଢ଼ ଆଲିଙ୍ଗନ କରି ସୁବର୍ଣ୍ଣର ଆସନରେ ବସିଛନ୍ତି । କ୍ରୁଦ୍ଧ ଲକ୍ଷ୍ମଣଙ୍କୁ ଦେଖି ସେ ନିଜର ଆସନ ତ୍ୟାଗ କରି ଠିଆ ହୋଇଗଲେ ।

କ୍ରୁଦ୍ଧ ଲକ୍ଷ୍ମଣ ସୁଗ୍ରୀବଙ୍କୁ କହିଲେ, ଯେଉଁ ଅଧାର୍ମିକ ରାଜା ଉପକାରୀ ମିତ୍ର ଆଗରେ ପ୍ରତିଜ୍ଞା କରି ମିଥ୍ୟା ଆଚରଣ କରେ, ତା' ପରି ନୃଶଂସ ଆଉ କିଏ ଅଛି ? ମିତ୍ରଦ୍ୱାରା ନିଜର କାର୍ଯ୍ୟ ସିଦ୍ଧ କରାଇ ଯେ ପ୍ରତ୍ୟୁପକାର କରେ ନାହିଁ, ସେପରି କୃତଘ୍ନ ବଧର ଯୋଗ୍ୟ । ଗୋହତ୍ୟାକାରୀ, ମଦ୍ୟପ, ଚୋର, ବ୍ରତଭଙ୍ଗକାରୀଙ୍କର ପ୍ରାୟଶ୍ଚିତ୍ତ ଅଛି, ମାତ୍ର କୃତଘ୍ନମାନଙ୍କର ନିଷ୍କୃତି ନାହିଁ ।

**ଗୋଘ୍ନେ ଚୈବ ସୁରାପେ ଚ ଚୌରେ ଭଗ୍ନବ୍ରତେ ତଥା**
**ନିଷ୍କୃତିର୍ବିହିତା ସଦ୍‌ଭିଃ କୃତଘ୍ନେ ନାସ୍ତି ନିଷ୍କୃତିଃ ।**

ବାନର, ତୁମେ ଅନାର୍ଯ୍ୟ, କୃତଘ୍ନ, ମିଥ୍ୟାବାଦୀ । ଭଲ ଗତି ଅଛି ତ ଠିକ୍ ବାଟରେ ଚାଲ, ବାଳୀଙ୍କ ବାଟରେ ଯାଅ ନାହିଁ ।

ତାରା ଲକ୍ଷ୍ମଣଙ୍କୁ କହିଲେ – ଲକ୍ଷ୍ମଣ, ତୁମେ ବାନରରାଜଙ୍କୁ ଏପରି କଠୋର ବାକ୍ୟ କହିବା ଠିକ୍ ନୁହେଁ । ସୁଗ୍ରୀବ ଅକୃତଜ୍ଞ ନୁହନ୍ତି, ଶଠ ନୁହନ୍ତି କି ନୃଶଂସ ନୁହନ୍ତି । ସେ ମିଥ୍ୟାବାଦୀ ବା କପଟୀ ନୁହନ୍ତି । ରାମଙ୍କର ଉପକାର ବୀର ସୁଗ୍ରୀବ କେବେ ଭୁଲିପାରିବେ ନାହିଁ । ତାଙ୍କ ଅନୁଗ୍ରହରୁ ସୁଗ୍ରୀବ ଏହି ବାନରରାଜ୍ୟ, ତାଙ୍କର ସ୍ତ୍ରୀ ରୋମାଙ୍କୁ ଓ ବହୁ ଯଶକୀର୍ତ୍ତି ଅର୍ଜନ କରିଛନ୍ତି । ସେ ପୂର୍ବେ ବହୁ ଦୁଃଖରେ ରହୁଥିଲେ । ପରେ ସୁଖ ଲାଭ କରିବାରୁ ସମୟ ଅନୁସାରେ ନିଜର କର୍ତ୍ତବ୍ୟ କରିବା ଜାଣିପାରିଲେ ନାହିଁ । ବିଶ୍ୱାମିତ୍ର ଋଷି

ମଧ୍ୟ କାମାତୁର ହୋଇ ତାଙ୍କର କର୍ତ୍ତବ୍ୟ ଭୁଲି ବସିଥିଲେ । ସୁଗ୍ରୀବ ତ ଜଣେ ସାଧାରଣ ବ୍ୟକ୍ତି । ଏହି ଭୁଲ ପାଇଁ ରାମ ସୁଗ୍ରୀବଙ୍କୁ କ୍ଷମା ଦେବା ଉଚିତ । ଧର୍ମଜ୍ଞ ଲକ୍ଷ୍ମଣ, ସୁଗ୍ରୀବ ରାମଙ୍କ ପାଇଁ ସମସ୍ତ ଭୋଗ, ଐଶ୍ୱର୍ଯ୍ୟ, ଏପରିକି ରୋମାଙ୍କୁ, ଅଙ୍ଗଦକୁ, ମୋତେ ଏବଂ ରାଜ୍ୟ ପରିତ୍ୟାଗ କରିପାରନ୍ତି । ରାବଣଙ୍କୁ ଏବଂ ତାର ରାକ୍ଷସବଳଙ୍କୁ ନିପାତ ନ କରି ସୀତାଙ୍କୁ ଉଦ୍ଧାର କରିହେବ ନାହିଁ । ସେଥିପାଇଁ ସୁଗ୍ରୀବ ଏକ ବିଶାଳ ବାନରସେନା ସଂଗ୍ରହ କରିବା ପାଇଁ ବାନରବୀରମାନଙ୍କୁ ଚତୁର୍ଦ୍ଦିଗକୁ ପଠାଇଛନ୍ତି । ସେମାନେ ଆଜି ଆସି ଏଠାରେ ପହଞ୍ଚିଯିବେ । ତୁମେ କ୍ରୋଧ ତ୍ୟାଗକର । ବିଶେଷତଃ ନାରୀମାନେ ଏଠାରେ ଅଛନ୍ତି । ସେମାନେ ତୁମର କ୍ରୋଧ ଦେଖି ଅତିଶୟ ଭୟାର୍ତ୍ତ ହୋଇ ପଡ଼ିଛନ୍ତି ।

ତାରାଙ୍କର କଥା ଶୁଣି ଲକ୍ଷ୍ମଣ କ୍ରୋଧ ତ୍ୟାଗ କଲେ । ନିଜର ପରିଧେୟ ଆର୍ଦ୍ର ବସନଙ୍କୁ ତ୍ୟାଗ କରିବାପରି ସୁଗ୍ରୀବ ଭୟ ତ୍ୟାଗକରି ନିଜର ବିଚିତ୍ର କଣ୍ଠହାରକୁ ଛିଣ୍ଡାଇ ପକାଇଲେ । ସେ ଲକ୍ଷ୍ମଣଙ୍କୁ ପ୍ରସନ୍ନ କରିବା ପାଇଁ ବିନୀତ ଭାବରେ କହିଲେ – ଲକ୍ଷ୍ମଣ, ମୋର ସୌଭାଗ୍ୟ, ରାମଙ୍କ କୃପାରୁ ମୁଁ ଏହି ବାନରରାଜ୍ୟ ଲାଭ କରିଛି । ତାଙ୍କର ଉପକାରର କିୟଦଂଶ ପରିଶୋଧ କରିବା ମଧ୍ୟ ସମ୍ଭବ ନୁହେଁ । ରାମଚନ୍ଦ୍ର ନିଜର ବଳରେ ରାବଣଙ୍କୁ ବଧକରି ସୀତାଙ୍କୁ ଲାଭ କରିବେ । ମୁଁ ତାଙ୍କର ସହାୟ ମାତ୍ର ହେବି । ଯାହାଙ୍କର ଧନୁର ଟଙ୍କାର ଶବ୍ଦରେ ପର୍ବତ ସହିତ ସମସ୍ତ ବସୁଧା କମ୍ପିଉଠେ, ତାଙ୍କର ସାହାଯ୍ୟରେ କି ପ୍ରୟୋଜନ ଅଛି ? ତାଙ୍କପ୍ରତି ଅଗାଧ ବିଶ୍ୱାସ ଓ ସ୍ନେହ ଯୋଗୁଁ ଯଦି ମୋର କିଛି ଭୁଲ ହୋଇଥାଏ, ତା'ହେଲେ ତୁମେ କ୍ଷମାକର ।

ସୁଗ୍ରୀବଙ୍କର ଏହି ପ୍ରେମପୂର୍ଣ୍ଣ ବାକ୍ୟରେ ଲକ୍ଷ୍ମଣ ପ୍ରୀତ ହୋଇ କହିଲେ – ବାନରେଶ୍ୱର, ତୁମପରି ବ୍ୟକ୍ତିଙ୍କୁ ସହାୟରୂପେ ପାଇ ମୋର ଭ୍ରାତା ଅନାଥ ନୁହନ୍ତି । ତୁମର ହୃଦୟ ବିଶୁଦ୍ଧ ଏବଂ ପ୍ରଭାବ ବିଶାଳ । ତେଣୁ ଏହି ବାନର ରାଜଲକ୍ଷ୍ମୀ ଭୋଗ କରିବାପାଇଁ ତୁମେ ଉପଯୁକ୍ତ । ତୁମେ ଧର୍ମଜ୍ଞ, କୃତଜ୍ଞ ଏବଂ ଯୁଦ୍ଧରେ କେବେ ପରାଙ୍ମୁଖ ନୁହଁ । ତୁମେ ଯାହା କହିଲ ତାହା ତୁମର ହିଁ ଯୋଗ୍ୟ । ବାନରଶ୍ରେଷ୍ଠ, ତୁମେ ଏବଂ ମୋର ଜ୍ୟେଷ୍ଠଭ୍ରାତାଙ୍କ ଛଡ଼ା ନିଜେ ସାମର୍ଥ୍ୟ ଥାଇ ନିଜର ଦୋଷ ବିଷୟରେ କେହି ଏପରି କହିପାରିବେ ନାହିଁ । ବିକ୍ରମ ଓ ବଳରେ ତୁମେ ରାମଙ୍କପରି ସମାନ । ଦୈବ ବଳରେ ହିଁ ରାମ ତୁମର ସହାୟତା ଲାଭ କରିଛନ୍ତି । ତୁମେ ଏବେ ମୋ ସହିତ ଯାଇ ନିଜର ମିତ୍ରଙ୍କୁ ସାନ୍ତ୍ୱନା ଦିଅ । ମିତ୍ର, ରାମଙ୍କର ଶୋକ ଦେଖି ତୁମକୁ ଯେଉଁ କଟୁକଥା କହିଛି, ସେଥିପାଇଁ କ୍ଷମାକର ।

## ୭୨ ।। ବାନରସୈନ୍ୟ ସଂଗ୍ରହ : ସୀତା ଅନ୍ୱେଷଣ

ସୁଗ୍ରୀବ ହନୁମାନଙ୍କୁ ଚାରିଆଡ଼ୁ ବିଭିନ୍ନ ଦେଶରୁ ବାନର ବୀରମାନଙ୍କୁ ଅଣାଇବା ପାଇଁ ନିର୍ଦ୍ଦେଶ ଦେଲେ । ମହେନ୍ଦ୍ର, ହିମାଳୟ, ବିନ୍ଧ୍ୟ, କୈଳାସ ଏବଂ ମନ୍ଦର ପର୍ବତରେ ଯେଉଁ ବାନରମାନେ ବାସ କରନ୍ତି, ସମୁଦ୍ରପାରରେ ପର୍ବତମାନଙ୍କରେ ଯେଉଁ ବାଳାରୁଣ ବର୍ଣ୍ଣର ବାନରମାନେ ରହନ୍ତି, ଉଦୟଗିରି, ଅସ୍ତାଚଳ ଓ ପଦ୍ମାଚଳବାସୀ ବାନରମାନେ, ଅଞ୍ଜନ

ପର୍ବତବାସୀ କୃଷ୍ଣବର୍ଣ୍ଣର ବାନରମାନେ, ମେରୁ ନିକଟବର୍ତ୍ତୀ ଧୂମ୍ରଗିରିବାସୀ କନକରଙ୍ଗର ବାନରଗଣ, ମହାରୁଣ ପର୍ବତରେ ଥାଇ ମୈରେୟ ମଧୁପାନ କରୁଥିବା ବାନରମାନେ ଏବଂ ତପୋବନ ଶୋଭିତ ଅନ୍ୟସବୁ ରମଣୀୟ ବିଶାଳ ବନ ଓ ଅରଣ୍ୟମାନଙ୍କରେ ରହୁଥିବା ବାନରମାନେ ଏହିପରି ବେଗବାନ୍, ବଳୀୟାନ୍ ସବୁ ବାନରଙ୍କୁ ତୁମେ ଅଣାଇବାର ବ୍ୟବସ୍ଥା କର । ସେଥିପାଇଁ ସାମ, ଦାନ, ଦଣ୍ଡ ଆଦି ସମସ୍ତ ଉପାୟ ପ୍ରୟୋଗ କର । ମୁଁ ବାନରଦୂତମାନଙ୍କୁ ପୂର୍ବରୁ ପଠାଇଛି । ସେମାନେ ବେଗଗାମୀ । ତଥାପି କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ତୁମେ ପୁଣି ବାନର ବୀରମାନଙ୍କୁ ପଠାଅ । ମୋର ଆଦେଶ ଅନୁସାରେ ଦଶଦିନ ମଧ୍ୟରେ ଯେଉଁମାନେ ଆସି ନ ପହଞ୍ଚିବେ, ସେହି ରାଜାଜ୍ଞା ଅବଜ୍ଞା କରିଥିବା ଦୁରାତ୍ମାମାନଙ୍କର ବଧ ସୁନିଶ୍ଚିତ ।

ବାନର ଯୋଦ୍ଧାମାନଙ୍କୁ ସଂଗ୍ରହ କରିବା ପାଇଁ ହନୁମାନ ଚତୁର୍ଦ୍ଦିଗରେ ଦୂତମାନଙ୍କୁ ପଠାଇଲେ । ଏହି ଦୂତମାନେ ସୁଗ୍ରୀବଙ୍କର ବାର୍ତ୍ତା ସବୁଆଡ଼େ ଦେଇ ବିଭିନ୍ନ ଦିବ୍ୟ ଔଷଧ ଫଳ ମୂଳ ଆଦି ଉପହାର ଘେନି ସୁଗ୍ରୀବଙ୍କ ପାଖକୁ ଫେରିଆସିଲେ । ସେମାନେ କହିଲେ, ବାନରରାଜ, ଆପଣଙ୍କ ଆଦେଶରେ ପୃଥିବୀର ଚାରିଆଡୁ ବାନରମାନେ ଶୀଘ୍ର ଏଠାକୁ ଆସୁଛନ୍ତି ।

ସୁଗ୍ରୀବ ପ୍ରୀତ ହୋଇ ରାମଙ୍କ ପାଖକୁ ଯିବା ପାଇଁ ସ୍ଥିର କଲେ । ସେ ଲକ୍ଷ୍ମଣଙ୍କ ସହିତ ଏକ କାଞ୍ଚନମୟ ଯାନରେ ଆରୋହଣ କରି ଶତ ଶତ ସଂଖ୍ୟକ ଅସ୍ତ୍ରଧାରୀ ବାନରଙ୍କ ଦ୍ୱାରା ବେଷ୍ଟିତ ହୋଇ ମାଲ୍ୟବନ୍ତ ଯାତ୍ରା କଲେ । ରାମଙ୍କ ନିକଟରେ ପହଞ୍ଚି ସୁଗ୍ରୀବ କୃତାଞ୍ଜଳି ହୋଇ ତାଙ୍କର ପାଦତଳେ ସାଷ୍ଟାଙ୍ଗ ପ୍ରଣିପାତ କରି ଠିଆହୋଇ ରହିଲେ । ରାମ ସସୈନ୍ୟ ସୁଗ୍ରୀବଙ୍କୁ ଦେଖି ପ୍ରସନ୍ନ ହେଲେ ଏବଂ ତାଙ୍କୁ ଭୂମିରୁ ଉଠାଇ ଆଲିଙ୍ଗନ କରି କହିଲେ, ସମୟ ଭାଗ କରି ଧର୍ମ, ଅର୍ଥ ଓ କାମକୁ ଯେଉଁ ବ୍ୟକ୍ତି ସେବା କରେ, ସେ ହିଁ ପ୍ରକୃତ ରାଜା । ଧର୍ମ ଓ ଅର୍ଥକୁ ତ୍ୟାଗ କରି ଯେ କେବଳ କାମର ସେବା କରେ ବୃକ୍ଷଶାଖାରେ ସୁପ୍ତ ବ୍ୟକ୍ତି ଭୂପତିତ ହେବାପରି ତାର ଅବସ୍ଥା ହୁଏ । ଶତ୍ରୁର ନିପାତ ଓ ମିତ୍ର ସଂଗ୍ରହ ଏହି ଦୁଇଟି କାର୍ଯ୍ୟରେ ଲିପ୍ତ ରାଜାର ସମସ୍ତ ଫଳପ୍ରାପ୍ତି ହୁଏ । ବର୍ତ୍ତମାନ ଉଦ୍‌ଯୋଗର ସମୟ ଆସିଗଲା । ତୁମେ ଶୀଘ୍ର ମନ୍ତ୍ରୀମାନଙ୍କ ସହିତ ପରାମର୍ଶ କର ।

ସୁଗ୍ରୀବ କହିଲେ – ଦେବ, ମୁଁ ତୁମ ପ୍ରସାଦରୁ ମୋର ବାନରରାଜ୍ୟ ଏବଂ ଅପହୃତ ଐଶ୍ୱର୍ଯ୍ୟ ଓ କୀର୍ତ୍ତି ଲାଭ କରିପାରିଛି । ଅକୃତଜ୍ଞ ବ୍ୟକ୍ତି ପାପଭାଗୀ ହୁଏ । ଶତ୍ରୁସୂଦନ, ଏହି ବାନରମୁଖ୍ୟମାନେ ପୃଥିବୀର ଚତୁର୍ଦ୍ଦିଗରୁ ବାନର, ଭଲ୍ଲୁକ ଓ ଗୋଲାଙ୍ଗୁଳ ବାନର ସୈନ୍ୟମାନଙ୍କୁ ସଂଗ୍ରହ କରି ଆଣିଛନ୍ତି । ଦେବ ଗନ୍ଧର୍ବଙ୍କ ପୁତ୍ର ଏହି ବାନରବୀରମାନେ ପଥ ମଧ୍ୟରେ ଅପେକ୍ଷା କରିଛନ୍ତି । ସେମାନେ କାମରୂପୀ, ଭୀଷଣାକୃତି ଏବଂ ଦୁର୍ଗମ ବନ କାନ୍ତାରମାନଙ୍କ ବିଷୟରେ ଅଭିଜ୍ଞ । ସେମାନେ ତୁମ ସହିତ ଯୁଦ୍ଧଯାତ୍ରା କରିବେ ଏବଂ ରାବଣକୁ ବଧ କରି ସୀତାଙ୍କୁ ଉଦ୍ଧାର କରିବେ ।

ରାମ କହିଲେ, ଇନ୍ଦ୍ର ଜଳବର୍ଷା କରନ୍ତି, ସୂର୍ଯ୍ୟ ଆକାଶରୁ ଅନ୍ଧକାର ଦୂର କରନ୍ତି, ଚନ୍ଦ୍ରମା ନିଜର ପ୍ରଭାରେ ରଜନୀକୁ ନିର୍ମଳ ଓ ଆଲୋକିତ କରନ୍ତି, ଏଥିରେ କୌଣସି

ବିଚିତ୍ରତା ନାହିଁ । ତୁମପରି ବ୍ୟକ୍ତି ମିତ୍ରର ପ୍ରିୟ କାର୍ଯ୍ୟ କରିବା ମଧ୍ୟ ସେହିପରି ସ୍ୱାଭାବିକ । ତୁମେ ମୋର ସୁହୃଦ୍ ଓ ମିତ୍ର । ତୁମ ସାହାଯ୍ୟରେ ମୁଁ ନିଶ୍ଚୟ ଶତ୍ରୁଜୟ କରିବି । ଜାନକୀଙ୍କ ହରଣକାରୀ ରାକ୍ଷସାଧମ ରାବଣ ଶୀଘ୍ର ମୋର ତୀକ୍ଷ୍ଣ ଶରରେ ନିହତ ହେବ ।

ଏହି ସମୟରେ ପ୍ରବଳ ଧୂଳି ଉଡ଼ି ସୂର୍ଯ୍ୟ ଘୋଡ଼ାଇ ହୋଇ ପଡ଼ିଲେ । ଚାରିଆଡ଼ ଅନ୍ଧକାର ହୋଇଗଲା । ଶୈଳକାନନଯୁକ୍ତ ମହୀମଣ୍ଡଳ ପ୍ରକମ୍ପିତ ହେଲା । ମୁହୂର୍ତ୍ତକ ମଧ୍ୟରେ ଲକ୍ଷ ଲକ୍ଷ ବାନର ସୈନ୍ୟ ଓ ସେନାପତିଙ୍କ ଦ୍ୱାରା ବନସ୍ଥଳ ପୂର୍ଣ୍ଣ ହୋଇଗଲା । ଗୌରବର୍ଣ୍ଣ, କୃଷ୍ଣବର୍ଣ୍ଣ, କନକ, କେଶର ଓ ଅରୁଣବର୍ଣ୍ଣର ବାନରମାନେ ମେଘ ସଦୃଶ ଗର୍ଜନ କରିବାକୁ ଲାଗିଲେ । ନଳ, ନୀଳ, ସୁଷେଣ, ଗବୟ, ଗବାକ୍ଷ, ଦଧିମୁଖ, କେଶରୀ, ଅଙ୍ଗଦ, ହନୁମାନ ପ୍ରଭୃତି ବାନର ସେନାପତିମାନେ ଲକ୍ଷ ଲକ୍ଷ ସୈନ୍ୟଙ୍କୁ ଧରି ସେଠାରେ ଉପସ୍ଥିତ ହେଲେ ।

ସୁଗ୍ରୀବ ଏମାନଙ୍କୁ ରାମଙ୍କ ସହିତ ପରିଚିତ କରାଇ କହିଲେ – ରାମ, ଚତୁର୍ଦ୍ଦିଗରୁ ଆସି ବାନର ଯୋଦ୍ଧାମାନେ ଉପସ୍ଥିତ ହୋଇଛନ୍ତି । ଏହି ଭୀମକର୍ମା ବାନରମାନେ ବଳ ଓ ଦର୍ପରେ ଦୈତ୍ୟମାନଙ୍କର ସମକକ୍ଷ । ଏମାନଙ୍କ ମଧ୍ୟରେ ଉଭୟ ସ୍ଥଳଚର ଓ ଜଳଚର ଅଛନ୍ତି । ଏମାନେ କାମରୂପୀ, ଇଚ୍ଛା ଅନୁସାରେ ଯେ କୌଣସି ରୂପ ଗ୍ରହଣ କରିପାରନ୍ତି । ବହୁ ଯୁଦ୍ଧରେ ଲଢ଼ି ଅଭିଜ୍ଞତା ଅର୍ଜନ କରିଛନ୍ତି । ସେମାନେ ତୁମର ଆଜ୍ଞାର ଅଧୀନ । କ'ଣ କରିବାକୁ ହେବ, ସେମାନଙ୍କୁ ଆଦେଶ ଦିଅନ୍ତୁ ।

ରାମ ଉତ୍ତର ଦେଲେ, ସୌମ୍ୟ, ବୈଦେହୀ ଜୀବିତ ଅଛନ୍ତି କି ନାହିଁ ଏବଂ ରାବଣ କେଉଁ ଦେଶରେ ବାସ କରୁଛି, ଏହି ଦୁଇଟି ବିଷୟ ତୁମେ ସନ୍ଧାନ କର । ଏହାପରେ କ'ଣ କରିବାକୁ ହେବ, ତାହା ମୁଁ ପରାମର୍ଶ ଦେବି । ଏହି ଦୁଇ ବିଷୟର ସନ୍ଧାନ କରିବାପାଇଁ ମୁଁ ବା ଲକ୍ଷ୍ମଣ ସମର୍ଥ ନୋହୁ । କେବଳ ତୁମ ଦ୍ୱାରା ହିଁ ତାହା ସମ୍ଭବ ।

ସୁଗ୍ରୀବ ବିନତ ନାମକ ଏକ ଯୂଥପତିଙ୍କୁ ଡାକି କହିଲେ, ତୁମେ ଶତ ସହସ୍ର ବାନରଙ୍କୁ ଧରି ପୂର୍ବାଭିମୁଖରେ ଯାତ୍ରାକର । ବିଭିନ୍ନ ନଦୀ, ପର୍ବତ, ବନ ଓ ଦେଶମାନଙ୍କରେ ତୁମେ ସୀତା ଓ ରାବଣଙ୍କର ଅନୁସନ୍ଧାନ କର । ଗଙ୍ଗା, ଯମୁନା, ସରସ୍ୱତୀ, କୋଶୀ, ଶୋଣ ଆଦି ନଦୀ, ବିଦେହ, ମାଳବ, କାଶୀ, କୋଶଳ, ମଗଧ, ପୁଣ୍ଡ୍ର, ଅଙ୍ଗଦେଶରେ ଭ୍ରମଣ କର । ଯେଉଁ ଦେଶରେ ରେଶମ ଉତ୍ପନ୍ନ ହେଉଛି, ରଜତର ଖଣିମାନ ଅଛି, ସେ ସବୁ ଦେଶକୁ ଦେଖିବ । ସମୁଦ୍ର ବେଷ୍ଟିତ ଓ ପର୍ବତଶିଖରବର୍ତ୍ତୀ ନଗର ଓ ଜନପଦମାନ ଅନୁସନ୍ଧାନ କରିବ । ଦ୍ୱୀପରେ ବାସ କରୁଥିବା ମତ୍ସ୍ୟାଶୀ ହେମବର୍ଣ୍ଣର କିରାତମାନଙ୍କ ଦେଶକୁ ମଧ୍ୟ ଯିବ । ସପ୍ତରାଜ୍ୟଶୋଭିତ ଯବଦ୍ୱୀପ, ସୁବର୍ଣ୍ଣ ଦ୍ୱୀପ ଆଦି ଭ୍ରମଣ କରିବ । ଗିରି, ଗହ୍ୱର, ବନ, ପ୍ରପାତ କିଛି ଛାଡ଼ିବ ନାହିଁ । ନୌକା ସାହାଯ୍ୟରେ ବା ଲମ୍ଫଦେଇ ଯେଉଁଠି ଯେପରି ଯାଇହେବ, ସେଠାକୁ ସେପରି ଯାଇ ଯଶସ୍ୱିନୀ ସୀତାଙ୍କର ସନ୍ଧାନ କରିବ । ବାୟୁଉଦ୍‌ବେଳିତ କରାଳଲହରୀଯୁକ୍ତ ଭୀଷଣ ଇକ୍ଷୁ ସମୁଦ୍ରକୁ ଦେଖିବ । ତାହା ମଧ୍ୟରେ ବହୁ ଦ୍ୱୀପ ଅଛି । ସେଠାରେ ବ୍ରହ୍ମାଙ୍କର ବରପ୍ରାପ୍ତ ବିଶାଳକାୟ

ରାକ୍ଷସମାନେ ବାସ କରନ୍ତି । ରକ୍ତବର୍ଣ୍ଣଯୁକ୍ତ ଲୋହିତ ସାଗର ମଧ୍ୟରେ ବହୁ ପର୍ବତ ଶୃଙ୍ଗ ଅଛି, ତାହା ମଧ୍ୟରୁ ଏକ ପ୍ରକାଣ୍ଡ ଶାଲ୍ମଳୀ ବୃକ୍ଷ ପାଖରେ ବିଶ୍ୱକର୍ମା ନିର୍ମିତ ଏକ ବିଶାଳ ପ୍ରାସାଦରେ ଗରୁଡ଼ ବାସ କରନ୍ତି । ଶ୍ୱେତବର୍ଣ୍ଣର କ୍ଷୀରସାଗରରେ ଋଷଭ ନାମକ ଏକ ପର୍ବତ ଅଛି । ସେଥିରେ ଥିବା ଏକ ପୁଷ୍କରିଣୀରେ ସୁବର୍ଣ୍ଣକେଶରଯୁକ୍ତ ରୁପାର ପଦ୍ମଫୁଲ ଫୁଟେ ଓ ରାଜହଂସମାନେ ବିହାର କରନ୍ତି । ସେହିସ୍ଥାନ ଦେବତା, ଚାରଣ, ଯକ୍ଷ, ଗନ୍ଧର୍ବ ଓ ଅପ୍ସରାମାନଙ୍କର ସେବିତ । କ୍ଷୀରସମୁଦ୍ରର ଆଗରେ ଜଳୋଦସାଗର, ଯେଉଁଠାରେ ପ୍ରଳୟକାଳୀନ ଭୟଙ୍କର ବାଡବାଗ୍ନି ଉତ୍ପନ୍ନ ହୁଏ । ଏହାପରେ ସ୍ୱାଦୋଦକ ସମୁଦ୍ର ବା ଯେଉଁ ସାଗରର ଜଳ ମିଷ୍ଟ । ଏହାର ଉତ୍ତରରେ ଏକ ସୁବର୍ଣ୍ଣ ପର୍ବତ ବିଦ୍ୟମାନ । ସେଠାରେ ଚନ୍ଦ୍ରପରି ପ୍ରଭାଯୁକ୍ତ ନୀଳାମ୍ବର, ସହସ୍ରଶୀର୍ଷ ଅନନ୍ତ ସମାସୀନ ଥିବେ । ଏହାପରେ ସୁବର୍ଣ୍ଣର ବହୁ ବୃକ୍ଷଲତା ସମ୍ବଳିତ ହେମମୟ ଉଦୟ ପର୍ବତ । ବିଷ୍ଣୁ ବାମନ ଅବତାରରେ ଏଠାରେ ତାଙ୍କର ପ୍ରଥମ ପାଦ ରଖିଥିଲେ । ଏହି ଦିଗରୁ ପ୍ରଥମେ ସୂର୍ଯ୍ୟଙ୍କର ଉଦୟ ହୁଏ । ସେଥିପାଇଁ ଏହାର ନାମ ମଧ୍ୟ ପୂର୍ବଦିଗ । ଏହାପରକୁ ଆଉ ଯାଇ ହେବ ନାହିଁ । ତାହା ବାନରମାନଙ୍କର ଅଗମ୍ୟ । ଉଦୟ ପର୍ବତ ପର୍ଯ୍ୟନ୍ତ ଯାଇ ସୀତାଙ୍କର ଅନୁସନ୍ଧାନ କରି ଏକମାସ ପୂର୍ଣ୍ଣ ହେବା ବେଳକୁ ମୋ ପାଖକୁ ଫେରିଆସିବ । ଯଦି ନ ଆସ, ତା' ହେଲେ ମୋ ଦ୍ୱାରା ନିହତ ହେବ ।

ଅଙ୍ଗଦଙ୍କ ନେତୃତ୍ୱରେ ଯେଉଁ ବୀର ବାନରଦଳ ଦକ୍ଷିଣ ଅଭିମୁଖରେ ଯାତ୍ରା କଲେ, ସେମାନଙ୍କ ମଧ୍ୟରେ ଥିଲେ ନୀଳ, ଜାମ୍ବବାନ, ଗଜ, ଗବାକ୍ଷ, ଗବୟ, ସୁଷେଣ, ଦ୍ୱିବିନ୍ଦ, ଅନଙ୍ଗ ଓ ହନୁମାନ । ଏହି ବୀରମାନେ ବିନ୍ଧ୍ୟ ପର୍ବତମାଳା, ନର୍ମଦା, ଗୋଦାବରୀ, କୃଷ୍ଣା, ମହାନଦୀ, କାବେରୀ ଏବଂ ଉତ୍କଳ, କଳିଙ୍ଗ, ଅବନ୍ତୀ, ବିଦର୍ଭ, ଦଶାର୍ଣ୍ଣ, ମତ୍ସ୍ୟ ଓ ମାହିଷକ, ଆନ୍ଧ୍ର, ଚୋଳ, ପାଣ୍ଡ୍ୟ, କେରଳ ଆଦି ଦେଶମାନଙ୍କରେ ସୀତାଙ୍କର ସନ୍ଧାନ ପାଇଁ ଗଲେ । ସୁଗ୍ରୀବ କହିଲେ, ଚନ୍ଦନବୃକ୍ଷପୂର୍ଣ୍ଣ ମଳୟ ପର୍ବତକୁ ଗଲେ ଅଗସ୍ତ୍ୟମୁନିଙ୍କୁ ତାଙ୍କର ଆଶ୍ରମରେ ଦେଖିପାରିବ । ତାଙ୍କର ଆଦେଶ ନେଇ କୁମ୍ଭୀରପୂର୍ଣ୍ଣ ତାମ୍ରପର୍ଣ୍ଣୀ ନଦୀ ପାର ହୋଇ ପାଣ୍ଡ୍ୟଦେଶର ସମୁଦ୍ର କୂଳରେ ପହଞ୍ଚିବ । ସେଠାରେ ସମୁଦ୍ର ମଧ୍ୟରେ ସ୍ୱର୍ଣ୍ଣଯୁକ୍ତ ଏକ ବିଚିତ୍ର ପର୍ବତକୁ ଦେଖିବ, ଯାହାକି ଅଗସ୍ତ୍ୟ ଋଷିଙ୍କ ଦ୍ୱାରା ସ୍ଥାପିତ । ଏହାର ଅପର ପାର୍ଶ୍ୱରେ ଶତ ଯୋଜନ ବିସ୍ତୃତ ଏକ ଦ୍ୱୀପ ଅଛି । ତାହା ମନୁଷ୍ୟର ଦୁର୍ଗମ । ଏହା ଦୁରାତ୍ମା ରାବଣର ନିବାସ ସ୍ଥାନ । ଏହିଠାରେ ତୁମେ ଭଲଭାବରେ ରାମପତ୍ନୀଙ୍କର ଅନ୍ୱେଷଣ କରିବ । ଏହି ଦ୍ୱୀପ ଯେଉଁ ସମୁଦ୍ର ଦ୍ୱାରା ବେଷ୍ଟିତ, ସେହି ଲବଣ ସମୁଦ୍ରରେ ଅଙ୍ଗାରକା ନାମରେ ଏକ ରାକ୍ଷସୀ ବାସକରେ । ସେ ପ୍ରାଣୀର ଛାୟାକୁ ଆକ୍ରମଣ କରି ତାକୁ ଆକର୍ଷଣ ପୂର୍ବକ ଭକ୍ଷଣ କରେ । ସେଠାରୁ ଶତ ଯୋଜନ ଦୂରରେ ସିଦ୍ଧଚାରଣ ସେବିତ ପୁଷ୍ପିତକ ପର୍ବତ । ଏହି ପର୍ବତ ପରେ ସୂର୍ଯ୍ୟବାନ୍ ବୈଦ୍ୟୁତ ଆଦି ପର୍ବତ ପଡ଼ିବ, ଯେଉଁଠାରେ ତୁମେ ଉତ୍କୃଷ୍ଟ ଫଳମୂଳ ଖାଇ ଓ ମଧୁପାନ କରି ଆନନ୍ଦିତ ହେବ । କୁଞ୍ଜର ପର୍ବତରେ ସର୍ପମାନଙ୍କ ଆବାସଭୂମି ଭୋଗବତୀ ନଗରୀ । ଏହାପରେ ଗନ୍ଧର୍ବମାନଙ୍କ ବାସସ୍ଥାନ ଋଷଭ ପର୍ବତ । ତାହାର ଆଗକୁ ଆଉ ଯାଇପାରିବ ନାହିଁ । କାରଣ ତା' ପରେ

ପିତୃଲୋକ ପଡ଼ିବ । ଏକମାସ ମଧ୍ୟରେ ଜାନକୀଙ୍କୁ ସନ୍ଧାନ କରି ଯେପରି ଫେରିଆସ, ତାହା ମନେ ରଖିବ ।

ସୁଗ୍ରୀବ ତାରାଙ୍କର ପିତା ସୁଷେଣଙ୍କୁ ଡାକି କହିଲେ, ବୀର ଅର୍ଚ୍ଚିଷ୍ମାନ ଓ ଅନ୍ୟାନ୍ୟ ବାନରବୀରଙ୍କ ସହିତ ତୁମେ ପଶ୍ଚିମ ଦିଗକୁ ଯାତ୍ରାକର । ସୌରାଷ୍ଟ୍ର, ବାହ୍ଲିକ ପ୍ରଭୃତି ସମୃଦ୍ଧ ଦେଶ ଦେଖି ପଶ୍ଚିମ ସମୁଦ୍ର କୂଳରେ ପହଞ୍ଚିବ । ସେଠାରେ ସମୁଦ୍ର ତିମି ଓ ମଗର ବହୁଳ । ତୀରବର୍ତ୍ତୀ କେତକୀ-ତମାଳ-ନାରୀକେଳ ବନ ବିହାରଯୋଗ୍ୟ । ସେହି ସମସ୍ତ ସ୍ଥାନ, ଅବନ୍ତୀ ଓ ଅଙ୍ଗଲେପା ନଗର, ସିନ୍ଧୁନଦୀ ଓ ସାଗର ସଙ୍ଗମରେ ଥିବା ସୋମଗିରି ପର୍ବତ ତନ୍ନ ତନ୍ନ କରି ସନ୍ଧାନ କରିବ । ସମୁଦ୍ର ମଧ୍ୟରେ ଥିବା ପାରିଯାତ୍ର ପର୍ବତରେ ପାପାଚାରୀ ଗନ୍ଧର୍ବମାନେ ବାସ କରନ୍ତି । ସେହି ପର୍ବତକୁ ଯିବ ନାହିଁ । ପଶ୍ଚିମ ସମୁଦ୍ରର ଶେଷଭାଗରେ ଚକ୍ରବାନ୍ ନାମକ ପର୍ବତ । ଏଠାରେ ପଞ୍ଚଜନ ଓ ହୟଗ୍ରୀବ ଦାନବଙ୍କୁ ମାରି ବିଷ୍ଣୁ ଶଙ୍ଖ, ଚକ୍ର ଆଣିଥିଲେ । ସେହି ପର୍ବତର ଶିଖରଦେଶ ଓ ବିଶାଳ ଗୁହାମାନ ଖୋଜି ସୀତାଙ୍କୁ ଅନ୍ୱେଷଣ କରିବ । ଅଗାଧ ସମୁଦ୍ର ମଧ୍ୟରେ ବରାହ ପର୍ବତ ଓ ପ୍ରାଗ୍‌ଜ୍ୟୋତିଷ ନଗରୀ । ଦୁରାତ୍ମା ନରକାସୁର ସେଠାରେ ବାସକରେ । ଏହି ରମଣୀୟ ପର୍ବତ ଉପରେ ଦେବତାମାନେ ଇନ୍ଦ୍ରଙ୍କର ଅଭିଷେକ କରିଥିଲେ । ଏହି ଇନ୍ଦ୍ରପାଳିତ ପର୍ବତ ଅତିକ୍ରମ କଲେ ମେରୁ ପର୍ବତର ସୁବର୍ଣ୍ଣ ଚୂଡ଼ା ଦେଖାଯିବ । ଏହି ପର୍ବତର ବୃକ୍ଷ, ଫଳ, ପୁଷ୍ପ ସବୁ ସୁବର୍ଣ୍ଣର । ପର୍ବତରାଜ ମେରୁକୁ ପୂର୍ବେ ସୂର୍ଯ୍ୟ ବର ଦେଇଥିଲେ, ଦିନ ବା ରାତି ଯେ ସେହି ପର୍ବତର ଆଶ୍ରୟରେ ରହିବ, ସେ ସୁବର୍ଣ୍ଣମୟ ହୋଇଯିବ । ଦେବତାମାନଙ୍କର ପୂଜିତ ହୋଇ ଏହି ପର୍ବତରୁ ସୂର୍ଯ୍ୟ ଅସ୍ତାଚଳକୁ ଗମନ କରନ୍ତି । ଅସ୍ତାଚଳ ପର୍ଯ୍ୟନ୍ତ ଯାଇ ରାବଣ ଓ ସୀତାଙ୍କର ସନ୍ଧାନ କର । ମାସେ ସମୟ ନିର୍ଦ୍ଧାରିତ । ମାସକ ମଧ୍ୟରେ ଯେ ଫେରିବ ନାହିଁ, ସେ ମୋର ବଧ୍ୟ ହେବ ।

ସୁଗ୍ରୀବ ଶତବଳୀ ନାମକ ଏକ ବୀର ବାନରଙ୍କୁ ଶତ ସହସ୍ର ସୈନ୍ୟ ସହିତ ଉତ୍ତର ଦିଗକୁ ପଠାଇଲେ । ସେ କହିଲେ, ରାମଙ୍କ କାର୍ଯ୍ୟସିଦ୍ଧି ପାଇଁ ହିମାଳୟ ପର୍ବତମାଳାଶୋଭିତ ଉତ୍ତରଦିଗକୁ ଯାତ୍ରାକର । ମ୍ଳେଚ୍ଛ, ପୁଳିନ୍ଦ, ଶୂରସେନ, ଭରତ, ମଦ୍ରଦେଶ, କୁରୁ, କାମ୍ବୋଜ, ଯବନ ଓ ଶକମାନଙ୍କର ରାଜ୍ୟ ଓ ନଗରମାନଙ୍କୁ ଦେଖିବ । ସେଠାରେ ସୀତାଙ୍କୁ ନ ଦେଖିଲେ ହିମାଳୟ ପର୍ବତର ଦେବଦାରୁ ବନରେ ଖୋଜିବ । ତାପରେ ଦେବତା ଓ ଗନ୍ଧର୍ବମାନଙ୍କର ବାସଭୂମି ସୋମାଶ୍ରମ ପର୍ବତକୁ ଯିବ । ସେଠାରୁ ସୁଦର୍ଶନ ଦେବସଖା ଆଦି ପର୍ବତ ପାରହୋଇ ଏକ ଘୋର ଲୋମହର୍ଷଣକାରୀ କାନ୍ତାର ମଧ୍ୟରେ ପ୍ରବେଶ କରିବ । ସେଥିରେ ନଦୀ, ବୃକ୍ଷ, ପର୍ବତ ବା କୌଣସି ଜନପ୍ରାଣୀ ନାହାନ୍ତି । ସେଠାରେ ନୀଳୋତ୍ପଳ ଓ ହଂସସେବିତ ଏକ ସୁନ୍ଦର ସରୋବର ଦେଖିବାକୁ ପାଇବ । ତାହାପରେ କ୍ରୌଞ୍ଚ, ମାନସ ଓ ମୈନାକ ପର୍ବତ । ମୈନାକ ପର୍ବତରେ ମୟଦାନବର ଗୃହ, ଯେଉଁଠାରେ କି ଅଶ୍ୱମୁଖୀ ସ୍ତ୍ରୀମାନଙ୍କୁ ଦେଖିବ । ଏହାପରେ ସିଦ୍ଧ ଓ ତପସ୍ୱୀମାନଙ୍କର ବାସସ୍ଥାନ ସିଦ୍ଧାଶ୍ରମ ପର୍ବତ । ସେମାନେ ସୀତାଙ୍କର ସମ୍ବାଦ ତୁମକୁ ଦେଇପାରନ୍ତି । ସେଠାରେ ସୁବର୍ଣ୍ଣଯୁକ୍ତ ବୈଖାନସ ହ୍ରଦରେ ବାଳସୂର୍ଯ୍ୟତୁଲ୍ୟ ହଂସମାନେ

ବିହାର କରନ୍ତି । ଏହାପରେ ଚନ୍ଦ୍ର, ସୂର୍ଯ୍ୟ, ନକ୍ଷତ୍ରଶୂନ୍ୟ ଏକ ସ୍ଥାନ ପଡ଼ିବ, ଯେଉଁଠାରେ ତପଃସିଦ୍ଧ ତପସ୍ୱୀମାନଙ୍କର ପ୍ରଭା ଚତୁର୍ଦ୍ଦିଗକୁ ଆଲୋକିତ କରେ । ତାହାପରେ ସୁବର୍ଣ୍ଣ ମଣିଯୁକ୍ତ ବୈଦୂର୍ଯ୍ୟପୂର୍ଣ୍ଣ ଉତ୍ତରକୁରୁ ପ୍ରଦେଶରେ ପର୍ବତମାଳା ଦେଖାଯିବ । ସେଠାରେ ଗନ୍ଧର୍ବ, କିନ୍ନର ଓ ବିଦ୍ୟାଧରମାନେ ସସ୍ତ୍ରୀକ ବିହାର କରନ୍ତି । ଗୀତବାଦ୍ୟନୃତ୍ୟର ଶବ୍ଦ ସର୍ବଦା ଶୁଣାଯାଏ । ଉତ୍ତରକୁରୁ ପରେ ଆଉ ଆଗକୁ ଯିବା ସମ୍ଭବ ନୁହେଁ । ଉତ୍ତରଦିଗର ସେହି ସମସ୍ତ ସ୍ଥାନରେ ସୀତାଙ୍କର ସନ୍ଧାନ କରି ଫେରିଆସିବ । ସୀତାଙ୍କର ସମ୍ବାଦ ଆଣିପାରିଲେ ତୁମେ ମୋର ଓ ରାମଙ୍କର ସବୁଠାରୁ ପ୍ରିୟ ସାଧନ କରିପାରିବ ।

ସୁଗ୍ରୀବ ହନୁମାନଙ୍କୁ ବିଶେଷ ଭାବରେ ବୁଝାଇ କହିଲେ– ବାନରଶ୍ରେଷ୍ଠ, ଭୂତଳ ଅମ୍ବର ଅନ୍ତରୀକ୍ଷ ଜଳ ବା ସ୍ୱର୍ଗପୁରୀ ସବୁଠାରେ ତୁମର କେହି ଗତିରୋଧ କରିବାକୁ ସକ୍ଷମ ନୁହେଁ । ଦେବାସୁର ନରନାଗ ସମେତ ଏହି ସସାଗରା ପୃଥିବୀକୁ ତୁମେ ଭଲଭାବରେ ଜାଣ । ଗତି, ବେଗ, ତେଜ ଓ ଲଘୁତାରେ ତୁମର ପିତା (ବାୟୁ) ହିଁ ତୁମର ତୁଳନୀୟ । ବଳ, ବୁଦ୍ଧି, ପରାକ୍ରମ, ସମୟକୁ ଚାହିଁ, ସ୍ଥାନକୁ ଚାହିଁ କର୍ତ୍ତବ୍ୟ ନିର୍ଣ୍ଣୟ କରିବା ଆଦି ବିଭିନ୍ନ ଗୁଣ ତୁମ ପାଖରେ ବିଦ୍ୟମାନ । ତେଣୁ ସୀତାଙ୍କୁ ଉଦ୍ଧାର କରିବାର ସମସ୍ତ ଭାର ହିଁ ତୁମ ଉପରେ ମୁଁ ନ୍ୟସ୍ତ କରୁଛି ।

ରାମ ଅନୁଭବ କଲେ ଯେ ସୁଗ୍ରୀବ ହନୁମାନଙ୍କୁହିଁ କାର୍ଯ୍ୟ ସାଧନରେ ସମର୍ଥ ବୋଲି ମନେକରନ୍ତି । ପୂର୍ବରୁ ସୁଗ୍ରୀବ ନିଶ୍ଚୟ ତାଙ୍କୁ ପରୀକ୍ଷା କରିଛନ୍ତି ଏବଂ ତାଙ୍କ ଉପରେ ଅଖଣ୍ଡ ବିଶ୍ୱାସ ରଖିଛନ୍ତି । ସେ ପ୍ରସନ୍ନ ହୋଇ ନିଜର ନାମାଙ୍କିତ ଅଙ୍ଗୁରୀୟ ହନୁମାନଙ୍କୁ ଦେଇ କହିଲେ– କପିଶ୍ରେଷ୍ଠ, ଏହି ମୁଦ୍ରିକା ଦେଖିଲେ ତୁମେ ମୋ ପାଖରୁ ଆସିଛ ବୋଲି ସୀତାଙ୍କର ବିଶ୍ୱାସ ହେବ । ବାୟୁପୁତ୍ର, ମୁଁ ତୁମର ବଳକୁ ଆଶ୍ରୟ କରିଛି । ତୁମଦ୍ୱାରା କାର୍ଯ୍ୟସିଦ୍ଧି ହେବ ବୋଲି ମୋ ମନରେ ଦୃଢ଼ ଆଶା ଜାତ ହୋଇଛି ।

ହନୁମାନ କୃତାଞ୍ଜଳି ହୋଇ ପ୍ରଣାମ କରି ବିଶାଳ ସେନା ସହ ପ୍ରସ୍ଥାନ କଲେ । ବାନରଗଣବେଷ୍ଟିତ ହୋଇ ସେ ଗଲାବେଳେ ନିର୍ମଳ ଆକାଶରେ ତାରକାଶୋଭିତ ଚନ୍ଦ୍ରମା ପରି ଦେଖାଗଲେ ।

ସୁଗ୍ରୀବଙ୍କ ଆଜ୍ଞାରେ ବାନରମାନେ ପଙ୍ଗପାଳ ଦଳପରି ମେଦିନୀକୁ ଆଚ୍ଛନ୍ନ କରି ଚାଲିଲେ । ଗର୍ଜନ, ତର୍ଜନ, ସିଂହନାଦ କରି ସେମାନେ ଯାଉଥିବାବେଳେ ଆସ୍ଫାଳନପୂର୍ବକ କହୁଥିଲେ, ରାବଣକୁ ନିହତ କରି ଆମେ ନିଶ୍ଚୟ ସୀତାଙ୍କୁ ଉଦ୍ଧାର କରିବୁ ।

ବାନରଯୂଥ ସବୁ ଚାଲିଯିବା ପରେ ରାମ ସୁଗ୍ରୀବଙ୍କୁ ପଚାରିଲେ, ତୁମେ ଏହି ସମଗ୍ର ଭୂମଣ୍ଡଳକୁ କିପରି ଜାଣିଲ ? ସୁଗ୍ରୀବ କହିଲେ, ବାଳୀ ମୋତେ ରାଜ୍ୟରୁ ନିର୍ବାସିତ କରିବାରୁ ମୁଁ ପ୍ରାଣଭୟରେ ପଳାଇଲି । କିନ୍ତୁ ବାଳୀ ମୋତେ ଛାଡ଼ି ନ ଦେଇ ମୋ ପଛରେ ଗୋଡ଼ାଇଲେ । ସେହି ସମୟରେ ମୁଁ ଚାରିଆଡ଼େ ବୁଲିଛି ଏବଂ ଏ ପୃଥିବୀ ମୋର ନଖଦର୍ପଣରେ ଥିବାପରି ରହିଛି । ଯେତେବେଳେ ମୁଁ କୌଣସି ନିରାପଦ ସ୍ଥାନ ପାଇଲି ନାହିଁ, ହନୁମାନ କହିଲେ, 'ମାତଙ୍ଗମୁନିଙ୍କ ଅଭିଶାପରୁ ବାଳୀ ତାଙ୍କ ଆଶ୍ରମରେ

ପଶିପାରିବ ନାହିଁ । ସେଠାରେ ଆମେ ଶାନ୍ତିରେ ରହିପାରିବା' । ତାପରେ ମୁଁ ଋଷ୍ୟମୂକ ପର୍ବତରେ ବାସ କଲି ।

## ୭୩ ।। କଣ୍ଡୂ ଓ ସ୍ୱୟଂପ୍ରଭା

ଯେଉଁସବୁ ବାନରମାନେ ସୀତାଙ୍କୁ ଅନ୍ୱେଷଣ କରିବାପାଇଁ ବିଭିନ୍ନ ଦିଗକୁ ଯାଇଥିଲେ, ସେମାନଙ୍କ ମଧ୍ୟରୁ ଉତ୍ତର, ପୂର୍ବ ଓ ପଶ୍ଚିମ ଦିଗକୁ ଯାଇଥିବା ବାନରମାନେ ସୀତାଙ୍କୁ ନ ଦେଖି ନିରାଶ ହୋଇ ଫେରିଆସିଲେ । ସେମାନେ ସୁଗ୍ରୀବଙ୍କ କହିବା ଅନୁଯାୟୀ ହ୍ରଦ ନଦୀ ପର୍ବତ ନଗର ଜନପଦ ସର୍ବତ୍ର ବୁଲି ଏକମାସ ମଧ୍ୟରେ ସୁଗ୍ରୀବଙ୍କୁ ପ୍ରଣାମ କରି କହିଲେ, ଆମେ ସର୍ବତ୍ର ତନ୍ନ ତନ୍ନ କରି ବହୁତ ଖୋଜିଲୁ, କିନ୍ତୁ ସୀତାଙ୍କୁ ପାଇଲୁ ନାହିଁ । ହନୁମାନ ଦକ୍ଷିଣ ଦିଗକୁ ଯାଇଛନ୍ତି । ସେ ହୁଏତ ଦେଖିପାରିବେ । ରାମ, ଲକ୍ଷ୍ମଣ ଓ ସୁଗ୍ରୀବ ଅଙ୍ଗଦ ଓ ହନୁମାନଙ୍କଠାରୁ କୁଶଳ ବାର୍ତ୍ତା ପାଇବାପାଇଁ ଉଦ୍‌ଗ୍ରୀବ ହୋଇ ଅପେକ୍ଷା କଲେ ।

ଏ ମଧ୍ୟରେ ହନୁମାନ ବାନର ସେନାପତି ତାର ଓ ଯୁବରାଜ ଅଙ୍ଗଦଙ୍କ ସହିତ ବହୁ ଦେଶ ଯାତ୍ରା କରି ସାରିଥିଲେ । ସେମାନେ ପ୍ରଥମେ ବିନ୍ଧ୍ୟାଞ୍ଚଳକୁ ଆସି ତାର ପର୍ବତ, ଅରଣ୍ୟ, ହ୍ରଦ, ନଦୀ ଗିରିକନ୍ଦରମାନ ଖୋଜିଲେ । ସେଠାରେ ସୀତାଙ୍କୁ ନ ପାଇ କଣ୍ଡୂବନ ନାମକ ଏକ ଦୁର୍ଗମ ଅଞ୍ଚଳରେ ପହଞ୍ଚିଲେ । ସେଠାରେ ସମସ୍ତ ବୃକ୍ଷ ପତ୍ରପୁଷ୍ପ ଶୂନ୍ୟ, ନଦୀମାନେ ନିର୍ଜଳା । ମହିଷ, ମୃଗ, ହସ୍ତୀ, ଶାର୍ଦ୍ଦୂଳ ଆଦି ବନଚର ଜୀବମାନେ ବା ପକ୍ଷିଗଣ ଦେଖାଯାଉ ନ ଥିଲେ । ଏହି ବିଚିତ୍ର ବନର ଏ ଅବସ୍ଥାର କାରଣ ଥିଲେ କଣ୍ଡୂ ନାମକ ଜଣେ ଋଷି । ସେ ଜଣେ ସତ୍ୟବାଦୀ ନୈଷ୍ଠିକ ତପସ୍ୱୀ ଥିଲେ । ସେହି ବନରେ ତାଙ୍କର ଦଶବର୍ଷର ଏକ ବାଳପୁତ୍ର ମରିଯିବାରୁ ମୁନି ଅତ୍ୟନ୍ତ କ୍ରୁଦ୍ଧ ହୋଇ ଅଭିଶାପ ଦେଲେ । ଯାହାଫଳରେ ପତ୍ରପୁଷ୍ପଫଳ ଶୂନ୍ୟ ମୃଗପକ୍ଷୀବର୍ଜିତ ଏକ ବାସର ଅଯୋଗ୍ୟ ସ୍ଥାନରେ ଏହା ପରିଣତ ହୋଇଛି । ଯାଉ ଯାଉ ସେମାନେ ଏକ ପର୍ବତାକାର ଭୟଙ୍କର ରାକ୍ଷସ ସେଠାରେ ନିର୍ଭୟରେ ବିଚରଣ କରୁଥିବାର ଦେଖିଲେ । ବାନରମାନଙ୍କୁ ଦେଖି ଅସୁର ତୁମେ ସବୁ ମରିବାପାଇଁ ଆସିଛ ବୋଲି କହି ତାଙ୍କ ଆଡ଼କୁ ଗୋଡ଼ାଇଗଲା । ଅଙ୍ଗଦ ତାକୁ ରାବଣ ବୋଲି ମନେ କରି ଏତେ ଜୋରରେ ଏକ ବଜ୍ର ଚାପଡ଼ା ଦେଲେ ଯେ ଅସୁର ରକ୍ତବାନ୍ତି କରି ମୁହଁ ମାଡ଼ି ପଡ଼ିଲା ଏବଂ ସଙ୍ଗେ ସଙ୍ଗେ ତାର ପ୍ରାଣବାୟୁ ଉଡ଼ିଗଲା । ଏକ ବିଶାଳ ଗିରିଗହ୍ୱର ଦେଖି ତାହା ମଧ୍ୟରେ ସେମାନେ ପ୍ରବେଶ କଲେ ଏବଂ କାହାରିକୁ ନ ପାଇ ବାହାରି ଆସିଲେ ।

ଏହିପରି ବହୁ ଅନ୍ୱେଷଣ ପରେ କ୍ଳାନ୍ତ, ଶ୍ରାନ୍ତ ଓ ନିରାଶ ହୋଇ ସେମାନେ ଏକ ଗଛତଳେ ଯାଇ ବିଶ୍ରାମ ନେଲେ । ଅଙ୍ଗଦ କହିଲେ, ବହୁ ବନପର୍ବତ, ନଦୀ କନ୍ଦର ଦେଶ ଭ୍ରମଣ କରି ଆମେ ସୀତାଙ୍କୁ ବା ଦୁରନ୍ତ ରାକ୍ଷସ ରାବଣକୁ ଦେଖିଲେ ନାହିଁ । ବର୍ତ୍ତମାନ ନିର୍ଦ୍ଧାରିତ ସମୟ ଶେଷ ହୋଇଗଲାଣି । ସୁଗ୍ରୀବଙ୍କର ଶାସନ ଅତି କଠୋର । ତେଣୁ

ତନ୍ଦ୍ରା, ଶୋକ, ନିଦ୍ରା ତ୍ୟାଗ କରି ଚାଲ ସମସ୍ତେ ଆଉଥରେ ଭଲ କରି ସୀତାଙ୍କୁ ଖୋଜିବା । ଅଙ୍ଗଦଙ୍କ ଆଦେଶରେ କ୍ଳାନ୍ତ ବାନରମାନେ ତନ୍ଦ୍ରା ତ୍ୟାଗ କରି ପୁଣି ଉତ୍ସାହରେ ସୀତାଙ୍କୁ ଖୋଜିବାପାଇଁ ଲାଗିପଡ଼ିଲେ । ସେମାନେ ଦକ୍ଷିଣଦିଗରେ ଋଷିବିଳ ନାମକ ଏକ ବିରାଟ ଗହ୍ୱର ଦେଖିଲେ । ଏହି ବିଳର ଦ୍ୱାର ବୃକ୍ଷଲତା, ଗୁଳ୍ମ ଦ୍ୱାରା ଆଚ୍ଛାଦିତ ଥିଲା, କିନ୍ତୁ ହଂସ, କ୍ରୋଞ୍ଚ, ସାରସାଦି ଜଳଚର ପକ୍ଷୀମାନେ ଜଳରେ ଆର୍ଦ୍ର ହୋଇ ତାହା ମଧ୍ୟରୁ ବାହାରୁଥିଲେ । ବିଳଦ୍ୱାରରେ ପଦ୍ମରେଣୁରେ ରକ୍ତବର୍ଣ୍ଣ ଚକ୍ରବାକ ଓ ସତେଜ ବୃକ୍ଷମାନଙ୍କୁ ମଧ୍ୟ ସେମାନେ ଦେଖିଲେ । ତୃଷାତୁର ବାନରମାନେ ଭାବିଲେ, ଏହା ମଧ୍ୟରେ କୂପ, ହ୍ରଦ ବା ଅନ୍ୟ ଜଳାଶୟ ଅଛି । ହନୁମାନଙ୍କୁ ଅଗ୍ରବର୍ତ୍ତୀ କରି ସେମାନେ ସେହି ଅନ୍ଧକାରମୟ ଦୁର୍ଗମ ବିଳ ମଧ୍ୟରେ ପ୍ରବେଶ କଲେ । ଅନ୍ଧକାର ମଧ୍ୟରେ ସେମାନଙ୍କର ଦୃଷ୍ଟି ବା ବଳ ବ୍ୟାହତ ହେଲା ନାହିଁ । ସେମାନେ ପରସ୍ପରକୁ ଧରି ଏକ ଯୋଜନ ପର୍ଯ୍ୟନ୍ତ ବିଳ ମଧ୍ୟକୁ ଚାଲିଗଲେ ।

ଆଗରେ ସେମାନେ ଦେଖିଲେ ଏକ ଅଦ୍‌ଭୁତ ଦୃଶ୍ୟ । ତିମିରଶୂନ୍ୟ ଏକ ପ୍ରଶସ୍ତ ଅଞ୍ଚଳ, ନିଜର ଜୀବନ ବିଷୟରେ ସେମାନେ ନିରାଶ ହୋଇ ପଡ଼ିଥିବାବେଳେ କାଞ୍ଚନବର୍ଣ୍ଣ ଦୀପ୍ତ ବୃକ୍ଷମାନଙ୍କ ଦ୍ୱାରା ତାହା ଆଲୋକିତ ଦେଖାଯାଉଥିଲା । ଶାଳ, ତାଳ, ତମାଳ, ଚମ୍ପକ, କର୍ଣ୍ଣିକାର ବୃକ୍ଷସବୁ ରକ୍ତବର୍ଣ୍ଣ ସ୍ୱର୍ଣ୍ଣିମପୁଷ୍ପମାନଙ୍କ ଦ୍ୱାରା ପୂର୍ଣ୍ଣ ଥିଲା । ବୃକ୍ଷବେଷ୍ଟିତ ଲତାଗଣ ସୁବର୍ଣ୍ଣନିର୍ମିତ ଅଳଙ୍କାର ପରି ଶୋଭା ପାଉଥିଲେ । ବୃକ୍ଷମାନଙ୍କ ମୂଳରେ ବୈଦୂର୍ଯ୍ୟମଣିମୟ ବେଦୀମାନ ବାଳସୂର୍ଯ୍ୟପରି ଚତୁର୍ଦ୍ଦିଗକୁ ଆଲୋକିତ କରୁଥିଲା । ସେମାନେ ସୁବର୍ଣ୍ଣମତ୍ସ୍ୟ ଓ ସ୍ୱର୍ଣ୍ଣପଦ୍ମଯୁକ୍ତ ଏକ ସ୍ୱଚ୍ଛସଲିଳା ପୁଷ୍କରିଣୀ ଦେଖିବାକୁ ପାଇଲେ । ସୁବର୍ଣ୍ଣ ଓ ରୌପ୍ୟନିର୍ମିତ ହର୍ମ୍ୟମାନଙ୍କରେ ସୁନାର ଝରକା ଓ ମୋତିର ଝାଲର ଲାଗିଥିଲା । ଆସନ ଓ ଶଯ୍ୟାମାନ ମଣିକାଞ୍ଚନ ନିର୍ମିତ । କାଞ୍ଚନ ରଜତ ଓ କାଂସ୍ୟନିର୍ମିତ ବିଶାଳ ପାତ୍ରମାନ ମଧ୍ୟ ସେମାନେ ଦେଖି ଚମତ୍କୃତ ହେଲେ । ବ୍ୟବହୃତ ନ ହୋଇ ବହୁ ଫଳମୂଳ ଓ ଭୋଜନସାମଗ୍ରୀ ଏବଂ ଉତ୍‌କୃଷ୍ଟ ମଦ୍ୟ ସେଠାରେ ରଖାଯାଇଥିଲା । ଏହି ସମୟରେ ସେମାନେ କୃଷ୍ଣାଜିନପରିହିତା ଜଣେ ଦୀପ୍ତିମତୀ ତପସ୍ୱିନୀଙ୍କୁ ସେଠାରେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ହନୁମାନ ସେହି ବୃଦ୍ଧା ତପସ୍ୱିନୀଙ୍କୁ ଅଭିବାଦନ କରି କୃତାଞ୍ଜଳି ହୋଇ ପଚାରିଲେ, ଆପଣ କିଏ ? ଏହି ବିଳ, ଗୃହ, ବିଭିନ୍ନ ସୁବର୍ଣ୍ଣ ଓ ମଣିମୟ ବସ୍ତୁ ଏବଂ ଏହି ରମଣୀୟ ଭୋଜ୍ୟଦ୍ରବ୍ୟ ସବୁ କାହାର ?

ତପସ୍ୱିନୀ କହିଲେ, କପିଶ୍ରେଷ୍ଠ ମାୟାବୀ ମୟଦାନବଙ୍କ ଦ୍ୱାରା ଏହି କାଞ୍ଚନବନ ନିର୍ମିତ ହୋଇଛି । ସେ ଦୈତ୍ୟମାନଙ୍କର ବିଶ୍ୱକର୍ମା ଥିଲେ । ସେ ବହୁବର୍ଷ ତପସ୍ୟାରେ ବ୍ରହ୍ମାଙ୍କ ବରରେ ଶୁକ୍ରାଚାର୍ଯ୍ୟଙ୍କର ସମସ୍ତ ଧନ ଲାଭ କରିଥିଲେ ଏବଂ ସେହି ଧନ ବଳରେ ସେ ସବୁକିଛି ଲାଭ କରିପାରିଥିଲେ । ଏହି କାଞ୍ଚନ ବନରେ ରହି ମୟଦାନବ ହେମା ନାମରେ ଏକ ଅପ୍‌ସରା ପ୍ରତି ଆସକ୍ତ ହୋଇପଡ଼ିବାରୁ ଇନ୍ଦ୍ର ବଜ୍ର ଦ୍ୱାରା ତାକୁ ହତ୍ୟାକଲେ । ବ୍ରହ୍ମା ଏହି ବନକୁ ହେମାଙ୍କୁ ଦାନ କଲେ । ମୋର ନାମ ସ୍ୱୟଂପ୍ରଭା । ମୁଁ ମେରୁସାବର୍ଣ୍ଣି ଋଷିଙ୍କର କନ୍ୟା । ନୃତ୍ୟଗୀତପ୍ରବୀଣା ହେମା ମୋର ପ୍ରିୟ ସଖୀ । ମୁଁ ତାଙ୍କର ଏହି ବିଶାଳ ଗୃହକୁ

ଜଗି ରହିଛି । ଏଠାରେ ଫଳମୂଳାଦି ବହୁ ପବିତ୍ର ଭୋଜ୍ୟ ଓ ପାନୀୟଦ୍ରବ୍ୟ ଅଛି । ତୁମେ ସବୁ ଖାଇପିଇ ତୃପ୍ତ ହେବାପରେ ତୁମେମାନେ କିଏ ଏବଂ ଏଠାକୁ କାହିଁକି ଆସିଛ, ତାହା ମୋତେ ବର୍ଣ୍ଣନା କରିବ ।

କ୍ଷୁଧା ପିପାସା ନିବାରଣ କରି ବାନରମାନେ ତୃପ୍ତ ହେବାପରେ ହନୁମାନ ସମସ୍ତ ବିଷୟ ବର୍ଣ୍ଣନା କରି କହିଲେ, ଆମେ ରାମଙ୍କର ସଖା ବାନରରାଜ ସୁଗ୍ରୀବଙ୍କଦ୍ୱାରା ପ୍ରେରିତ ହୋଇ ସୀତାଙ୍କର ଅନ୍ୱେଷଣ କରି କରି ଏଠାରେ ଆସି ପହଞ୍ଚିଛୁ । ଆମେ କ୍ଷୁଧାତୃଷାରେ ପୀଡ଼ିତ ଥିଲୁ । ଆପଣ ଆତିଥ୍ୟଧର୍ମ ଅନୁସାରେ ଆମକୁ ରୁଚିକର ଭୋଜ୍ୟ ଓ ପାନୀୟ ଦେଇ ଆମର ପ୍ରାଣରକ୍ଷା କରିଛନ୍ତି । ଆମେ ଆପଣଙ୍କର କ'ଣ ପ୍ରତ୍ୟୁପକାର କରିପାରିବୁ, କହନ୍ତୁ । ସ୍ୱୟଂପ୍ରଭା କହିଲେ, ମୁଁ ମୋର ଧର୍ମରେ ଚଳୁଛି । ମୋର କୌଣସି କାର୍ଯ୍ୟର ପ୍ରୟୋଜନ ନାହିଁ । ମୁଁ ତୁମମାନଙ୍କ ଉପରେ ସନ୍ତୁଷ୍ଟ । ହନୁମାନ କହିଲେ, ଏହି ଗର୍ତ୍ତ ମଧ୍ୟରେ ବୁଲି ବୁଲି ଆମର ନିର୍ଦ୍ଧାରିତ ସମୟ ଅତୀତ ହୋଇଗଲାଣି । ଆମର ଅତି ମହତ୍‌କାର୍ଯ୍ୟ କରିବାକୁ ବାକି ଅଛି । ଆମେ ଆପଣଙ୍କର ଶରଣାପନ୍ନ । ଏହି ବିଳରୁ ଆମକୁ ଆପଣ ଉଦ୍ଧାର କରନ୍ତୁ । ତାପସୀ କହିଲେ, ଏହା ମଧ୍ୟରେ ପ୍ରବେଶ କରି କେହି ଜୀବିତାବସ୍ଥାରେ ଫେରି ନାହିଁ । ମୋର ତପୋବଳରେ ମୁଁ ତୁମକୁ ଉଦ୍ଧାର କରିପାରିବି । ବର୍ତ୍ତମାନ ତୁମେ ନିଜ ନିଜର ଆଖି ବନ୍ଦ କରି ରହ । ବାନରମାନେ ହାତରେ ଆଖିବୁଜି ମୁହୂର୍ତ୍ତେ ରହିବା ପରେ ଦେଖିଲେ ସେହି ଗହ୍ୱରରୁ ସେମାନେ ବାହାରିଆସିଛନ୍ତି । ତାପସୀ କହିଲେ, ଏହା ହେଉଚି ବିନ୍ଧ୍ୟ ପର୍ବତ, ଏହା ପ୍ରସ୍ରବଣ ଗିରି ଏବଂ ଏହା ହେଉଛି ମହୋଦଧି । ବାନରଗଣ, ତୁମମାନଙ୍କର ମଙ୍ଗଳ ହେଉ । ମୁଁ ବର୍ତ୍ତମାନ ଗୃହକୁ ଫେରିଯାଉଛି ।

## ୭୪ ॥ ସମୁଦ୍ରକୂଳରେ ବାନରମାନଙ୍କ ଚିନ୍ତା

ବାନରମାନେ ଦେଖିଲେ ଭୀଷଣ ତରଙ୍ଗଯୁକ୍ତ ସମୁଦ୍ର ସେମାନଙ୍କ ଆଗରେ ଗର୍ଜନ କରୁଛି । ମୟଦାନବନିର୍ମିତ ବିଳ ମଧ୍ୟରେ ବୁଲୁ ବୁଲୁ ସେମାନଙ୍କର ସମୟ ଅତୀତ ହୋଇଯାଇଥିଲା । ବର୍ତ୍ତମାନ ବସନ୍ତକାଳ ଉପସ୍ଥିତ । ଅଙ୍ଗଦ କହିଲେ, କାର୍ତ୍ତିକମାସ ଶେଷରେ ଆମ୍ଭେମାନେ ଯାତ୍ରା ଆରମ୍ଭ କରିଥିଲେ । ବର୍ତ୍ତମାନ ସମୟ ଅତୀତ । ଏବେ ଆମର କର୍ତ୍ତବ୍ୟ କ'ଣ, ଆପଣମାନେ ପରାମର୍ଶ ଦିଅନ୍ତୁ । ଆମ୍ଭେମାନେ ଅକୃତକାର୍ଯ୍ୟ ହୋଇଥିବାରୁ ଆମର ମୃତ୍ୟୁଦଣ୍ଡ ସୁନିଶ୍ଚିତ । ସୁଗ୍ରୀବଙ୍କର ଆଜ୍ଞା ଲଂଘନ କରି କେହି ସୁଖୀ ହୋଇ ରହିପାରିବ ନାହିଁ । ବର୍ତ୍ତମାନ ମୁଁ ଭାବୁଛି ଆମେ ସମସ୍ତେ ପ୍ରାୟୋପବେଶନରେ ପ୍ରାଣ ବିସର୍ଜନ କରିବା ଉଚିତ ହେବ । ସୁଗ୍ରୀବଙ୍କ ଦ୍ୱାରା ନିହତ ହେବା ଅପେକ୍ଷା ଏଠାରେ ମୃତ୍ୟୁ ଶ୍ରେୟସ୍କର । ଯୁବରାଜ ପଦରେ ରାମ ହିଁ ମୋତେ ଅଭିଷିକ୍ତ କରିଛନ୍ତି । ସୁଗ୍ରୀବ ନୁହନ୍ତି । ତାଙ୍କର ବୈରଭାବ ମୋ ପ୍ରତି ପୂର୍ବରୁ ରହିଛି । ଅଙ୍ଗଦଙ୍କର କଥା ଶୁଣି ବାନର ଯୂଥପତିଗଣ କହିଲେ, ସୁଗ୍ରୀବଙ୍କର ପ୍ରକୃତି କଠୋର । ରାମ ସୀତାଙ୍କ ପ୍ରତି ଅନୁରକ୍ତ । ସମୟ ଅତୀତ ହେବାପରେ ଆମକୁ ଅକୃତକାର୍ଯ୍ୟ ହେବାର ଦେଖି ଓ ସୀତାଙ୍କୁ ନ ଦେଖି

ରାମଚନ୍ଦ୍ରଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେ ନିଶ୍ଚୟ ଆମକୁ ହତ୍ୟା କରିବେ । ଅପରାଧୀମାନଙ୍କର ନିଜ ପ୍ରଭୁଙ୍କ ପାଖକୁ ଯିବା ଉଚିତ ନୁହେଁ । ହୁଏତ ସୀତାଙ୍କ ସଂବାଦ ନେଇ ଯିବା, ନଚେତ୍ ନିଜେ ନିଜେ ଯମାଳୟକୁ ଯିବାର ବ୍ୟବସ୍ଥା କରିବା ।

ଭୟାର୍ତ୍ତ ବାନରମାନଙ୍କର କଥା ଶୁଣି ତାର କହିଲେ, ବିଷଣ୍ଣ ହୁଅ ନାହିଁ । ଯଦି ସମସ୍ତଙ୍କର ମନକୁ ପାଏ, ଆମେମାନେ ସେହି ବିଳ ମଧ୍ୟରେ ଯାଇ ବାସ କରିବା । ଏହି ମାୟାନିର୍ମିତ ଦୁର୍ଗମ ବିଳରେ ପ୍ରଚୁର ପରିମାଣରେ ଜଳ, ଭୋଜ୍ୟ ଓ ପାନୀୟ ଅଛି । ସେଠାରେ ରହିଲେ ଇନ୍ଦ୍ର, ରାମଚନ୍ଦ୍ର ବା ସୁଗ୍ରୀବ କାହାରିଠାରୁ ଭୟ ନାହିଁ । ତାରଙ୍କର ଆଶ୍ୱାସନା ଶୁଣି ବାନରମାନେ କହିଲେ, ଆମେ ଯେପରି ନିହତ ନ ହୋଇ ବଞ୍ଚି ରହିପାରିବା ତାର ଉପାୟ ବାହାରକର ।

ବୁଦ୍ଧି, ଗୁଣ ଓ ବଳରେ ବରିଷ୍ଠ ବାଳୀଙ୍କର ଯୋଗ୍ୟପୁତ୍ର ଅଙ୍ଗଦ ତାରର କଥାକୁ ଚୁପ୍ ହୋଇ ଶୁଣୁଥିବାର ଦେଖି ହନୁମାନ ମନେକଲେ ଯେ ଅଙ୍ଗଦ କିଷ୍କିନ୍ଧ୍ୟା ରାଜ୍ୟକୁ ହରାଇବାକୁ ଯାଉଛନ୍ତି । ନୀତିଜ୍ଞ ହନୁମାନ ସାମ, ଦାନ, ଦଣ୍ଡ, ଭେଦ ଏହି ଚାରିନୀତି ମଧ୍ୟରୁ ତୃତୀୟଟି ଅର୍ଥାତ୍ ଭେଦନୀତି ପ୍ରୟୋଗ କରି କଠୋର ଭାଷାରେ ଅଙ୍ଗଦଙ୍କୁ କହିଲେ, ତାରାଙ୍କର ପୁତ୍ର, ଯୁଦ୍ଧରେ ତୁମେ ତୁମ ପିତାଙ୍କଠାରୁ ଅଧିକ ଦକ୍ଷ । ବାନରରାଜ୍ୟର ଭାର ତୁମେ ତୁମ ପିତାଙ୍କ ପରି ଦୃଢ଼ଭାବରେ ବହନ କରିପାରିବ । ବାନରମାନେ ସବୁବେଳେ ଚଞ୍ଚଳମତି । ସେମାନେ ନିଜର ସ୍ତ୍ରୀ ପୁତ୍ରଙ୍କୁ ଛାଡ଼ି ଯଦି ଏଠାରେ ବାସ କରନ୍ତି, ତା' ହେଲେ ତୁମର ଆଦେଶ କେବେହେଲେ ମାନିବେ ନାହିଁ । ଜାମ୍ବବାନ, ନୀଳ ପ୍ରଭୃତି ବୀର ଯୋଦ୍ଧାମାନେ ତୁମ ପ୍ରତି ଅନୁରକ୍ତ ରହିବେ ନାହିଁ । ତୁମେ ସାମ, ଦାନ ଓ ଦଣ୍ଡ ଦ୍ୱାରା ମୋତେ କିମ୍ବା ଏହି ବାନରବୀରମାନଙ୍କୁ ସୁଗ୍ରୀବଙ୍କ ଠାରୁ ପୃଥକ୍ କରିପାରିବ ନାହିଁ । ଦୁର୍ବଳ ସହିତ ବିରୋଧ କରି ବଳବାନ୍ ବ୍ୟକ୍ତି ପୃଥକ ରହିପାରେ । ମାତ୍ର ଦୁର୍ବଳ ବ୍ୟକ୍ତି ବଳବାନ୍ ବ୍ୟକ୍ତିଙ୍କୁ ବିରୋଧ କରିବା ଉଚିତ ନୁହେଁ । ତାଙ୍କର କଥା ଶୁଣି ତୁମେ ଯେଉଁ ଗହ୍ୱରକୁ ନିରାପଦ ବୋଲି ମନେକରୁଛ, ଲକ୍ଷ୍ମଣଙ୍କ ତୀକ୍ଷ୍ଣ ଶରରେ ପତ୍ର କୁଡ଼ିଆ ପରି ତାହା ଛିନ୍ନ ଭିନ୍ନ ହୋଇଯିବ । ରାମଙ୍କ କାର୍ଯ୍ୟରେ ବିମୁଖ ହେଲେ, ଲକ୍ଷ୍ମଣଙ୍କର ବାଣ ତୁମକୁ ନିଶ୍ଚୟ ବିନଷ୍ଟ କରିବ । ତୁମକୁ କୌଣସି ସୁହୃଦ୍ ବନ୍ଧୁ ବା ସହଚର ପଚାରିବେ ନାହିଁ । କିନ୍ତୁ ଆମ ସହିତ ବିନୀତ ଭାବରେ ଯଦି ସୁଗ୍ରୀବଙ୍କ ସମ୍ମୁଖରେ ଉପସ୍ଥିତ ହୁଅ, ତା' ହେଲେ ନିଶ୍ଚୟ ସେ ତୁମକୁ ରାଜ୍ୟର ଉତ୍ତରାଧିକାରୀ କରିବେ । ସେ ତୁମର ପିତୃବ୍ୟ । ତୁମପ୍ରତି ତାଙ୍କର ସ୍ନେହ ଅଛି । ତୁମ ମାତାଙ୍କପାଇଁ ମଧ୍ୟ ସେ ଜୀବନ ଦେବାକୁ ପ୍ରସ୍ତୁତ ।

ଅଙ୍ଗଦ କହିଲେ, ଧୈର୍ଯ୍ୟ, ସରଳତା, ପବିତ୍ରତା ଓ ବିକ୍ରମ ଏ ସମସ୍ତ ଗୁଣ ସୁଗ୍ରୀବଙ୍କର ନାହିଁ । ଜ୍ୟେଷ୍ଠଭ୍ରାତାଙ୍କର ପତ୍ନୀ ନିଜର ମାତୃତୁଲ୍ୟ । କିନ୍ତୁ ସେ ତାଙ୍କର ସ୍ତ୍ରୀକୁ ଗ୍ରହଣ କରିବା ଅତିଶୟ ନିନ୍ଦନୀୟ । ଭାଇ ବିଳ ମଧ୍ୟରେ ଯୁଦ୍ଧ କରୁଥିବା ବେଳେ ଯେଉଁ ଦୁରାତ୍ମା ବିଳର ଦ୍ୱାର ବନ୍ଦ କରିଦେଇପାରେ, ତାକୁ କେବେହେଲେ ଧର୍ମଜ୍ଞ ବୋଲି କୁହାଯାଇ ପାରିବ ନାହିଁ । ସତ୍ୟକରି ଯେ ରାମଚନ୍ଦ୍ରଙ୍କ ହାତ ଧରି ମିତ୍ର ହୋଇଥିଲା, ସେ ପୁଣି ରାମଚନ୍ଦ୍ରଙ୍କୁ ଭୁଲିଗଲା । ତାର ଏହି କାର୍ଯ୍ୟକୁ କିଏ ପସନ୍ଦ କରିବ । ଧର୍ମ ଭୟରେ ନୁହେଁ, ଲକ୍ଷ୍ମଣଙ୍କର

ଭୟରେ ସୀତାଙ୍କୁ ଖୋଜିବା ପାଇଁ ସେ ଆମକୁ ପଠାଇଛି । ସୁଗ୍ରୀବ ପାପୀ, କୃତଘ୍ନ, ଚଞ୍ଚଳମତି । ମୁଁ ତାର ଶତ୍ରୁର ପୁତ୍ର ହୋଇଥିବା ଯୋଗୁଁ ସେ ମୋତେ ରାଜ୍ୟ ଦେବା ଦୂରର କଥା, ଜୀବିତ ରହିବାକୁ ଦେବ ନାହିଁ । ଶଠ, କ୍ରୂର, ନିର୍ଦ୍ଦୟ ସୁଗ୍ରୀବ ପାଖକୁ ଫେରିଯିବା ଅପେକ୍ଷା ଏଠାରେ ମୁଁ ପ୍ରାୟୋପବେଶନ କରି ମରିବା ପାଇଁ ସ୍ଥିର କରୁଛି । ତୁମେମାନେ ଫେରିଯାଅ । ମୋ ପକ୍ଷରୁ ସୁଗ୍ରୀବଙ୍କୁ ଅଭିବାଦନ କରି ତାଙ୍କର କୁଶଳ ବିଷୟ ପଚାରିବ । ରାମ ଓ ଲକ୍ଷ୍ମଣଙ୍କୁ ଅଭିବାଦନ ଜଣାଇଦେବ । ମୋର ମାତା ତାରାଙ୍କୁ ଆଶ୍ୱାସନା ଦେବ । ମୋ ପାଇଁ ଜୀବନ ଧାରଣ କରିଥିବା ତପସ୍ୱିନୀ ତାରା ମୋର ମୃତ୍ୟୁ ସଂବାଦ ଶୁଣି ନିଶ୍ଚୟ ଜୀବନ ହରାଇବେ ।

ଏହା କହି ଅଙ୍ଗଦ ବୟୋବୃଦ୍ଧମାନଙ୍କୁ ପ୍ରଣାମ କରି ଅଶ୍ରୁପୂର୍ଣ୍ଣ ଲୋଚନରେ କୁଶ ବିଛାଇ ତା ଉପରେ ବସିଲେ । ସେ ବସିବା ପରେ ବାନର ବୀରମାନେ ଦୁଃଖରେ ଅଶ୍ରୁମୋଚନ କରିବାରେ ଲାଗିଲେ । ସେମାନେ ସୁଗ୍ରୀବଙ୍କର ନିନ୍ଦା କରି ବାଲୀଙ୍କର ପ୍ରଶଂସା କଲେ । ଅଙ୍ଗଦକୁ ବେଷ୍ଟନ କରି ଆଚମନପୂର୍ବକ ପୂର୍ବାଭିମୁଖ ହୋଇ ସେମାନେ ମଧ୍ୟ ପ୍ରାୟୋପବେଶନରେ ବସିଲେ ।

## ୭୫ ।। ସଂପାତି : ଲଙ୍କାପୁରୀର ସନ୍ଧାନ

ଜଟାୟୁର ଭାଇ ଓ ନିଜର ବଳପରାକ୍ରମ ପାଇଁ ବିଖ୍ୟାତ ଗୃଧ୍ରରାଜ ସଂପାତି ବିନ୍ଧ୍ୟପର୍ବତ କନ୍ଦରରୁ ବାହାରି ମୃତ୍ୟୁପାଇଁ ସଙ୍କଳ୍ପ କରି ବସିଥିବା ବାନରମାନଙ୍କୁ ଦେଖିଲା । ସେ ଖୁବ୍ ଆନନ୍ଦିତ ହୋଇ କହିଲା, ବହୁକାଳପରେ ଏହି ବିଧିପ୍ରେରିତ ଭକ୍ଷ୍ୟଦ୍ରବ୍ୟ ମୋ ପାଇଁ ଆସି ପହଞ୍ଚିଗଲା । ଏହି ବାନରମାନେ ଜଣଙ୍କ ପରେ ଜଣେ ମରିବେ ଏବଂ ସେହି କ୍ରମରେ ମୁଁ ସେମାନଙ୍କୁ ଭକ୍ଷଣ କରିବି ।

ପକ୍ଷୀର କଥା ଶୁଣି ଅଙ୍ଗଦ ଭୟ ଓ ଉଦ୍‌ବେଗରେ ହନୁମାନଙ୍କୁ କହିଲେ, ଦେଖ, ବାନରମାନଙ୍କ ବିନାଶପାଇଁ ସ୍ୱୟଂ ଯମରାଜ ପକ୍ଷୀବେଶରେ ଆସିଛନ୍ତି । ଆମେ ରାମଙ୍କର କାର୍ଯ୍ୟ ସମ୍ପାଦନ କଲେ ନାହିଁ, ରାଜାଙ୍କର ଆଦେଶ ପାଳନ କଲେ ନାହିଁ । ଆମର ଅଜ୍ଞାତରେ ହଠାତ୍ ଏହି ବିପତ୍ତି ଆସି ଉପସ୍ଥିତ ହେଲା । ସୀତାଙ୍କର ପ୍ରିୟକାମୀ ଗୃଧ୍ରରାଜ ଜଟାୟୁ ଯାହା କରିଥିଲେ, ତାହା ତୁମେ ଶୁଣିଥିବ । ତିର୍ଯ୍ୟକ୍‌ଯୋନିରେ ଜାତ ହୋଇ ରାମଙ୍କର ପ୍ରିୟ କାର୍ଯ୍ୟ କରିବା ନିମନ୍ତେ ସେ ଜୀବନ ଦେଇଥିଲେ । ସଜ୍ଜନମାନେ ପରସ୍ପର ପ୍ରତି ସ୍ନେହ ଓ କରୁଣାବଶରୁ ନିଜ ନିଜର ଜୀବନ ଉତ୍ସର୍ଗ କରିଥାନ୍ତି । ରାମଙ୍କ ପାଇଁ ଆମେ ମଧ୍ୟ ପ୍ରାଣୋତ୍ସର୍ଗ କରିବା, ଯେପରିକି ରାବଣ ସହିତ ଯୁଦ୍ଧ କରି ଜଟାୟୁ ନିହତ ହୋଇଥିଲେ ।

ଅଙ୍ଗଦଙ୍କ ମୁହଁରୁ ଜଟାୟୁଙ୍କ ମୃତ୍ୟୁ ବିଷୟ ଶୁଣି ଗୃଧ୍ରରାଜ ସଂପାତି କହିଲେ, କିଏ ସେ, ଯେ କି ମୋର ପ୍ରାଣଠାରୁ ପ୍ରିୟତର ଭାଇ ଜଟାୟୁର ନିଧନ କଥା କହି ମୋର ମନକୁ କମ୍ପିତ କଲା ? କିପରି ଜନସ୍ଥାନର ଗୃଧ୍ର ଜଟାୟୁ ଓ ରାକ୍ଷସ ରାବଣ ମଧ୍ୟରେ ଯୁଦ୍ଧ

ହୋଇଥିଲା ? ବହୁଦିନ ପରେ ମୋର ଭାଇର ନାମ ଶୁଣିଲି । ବାନରଗଣ, ମୋତେ ଏହି ଦୁର୍ଗମ ପର୍ବତ ଉପରୁ ଓହ୍ଲାଇଦିଅ । ସୂର୍ଯ୍ୟ କିରଣରେ ମୋର ପକ୍ଷ ଜଳି ଯାଇଥିବା ଯୋଗୁଁ ମୋର ଗମନାଗମନର ଶକ୍ତି ନାହିଁ । ବୀର ଯୋଦ୍ଧାଗଣ, ମୁଁ ଏହି ପର୍ବତରୁ ଓହ୍ଲାଇବାକୁ ଇଚ୍ଛା କରୁଛି ।

ପୂର୍ବରୁ ଶଙ୍କିତ ହୋଇଥିବା ବାନରମାନେ କ'ଣ କରିବେ ନ କରିବେ, ଏହି ଦ୍ୱନ୍ଦ୍ୱରେ ପଡ଼ି ଶେଷରେ ସଂପାତିଙ୍କୁ ପର୍ବତରୁ ଓହ୍ଲାଇ ଆଣିଲେ । ଅଙ୍ଗଦ କହିଲେ, ମୁଁ ବାନରେନ୍ଦ୍ର ଧାର୍ମିକ ବାଳୀଙ୍କର ପୁତ୍ର । ବନବାସ କରିବାପାଇଁ ପିତୃସତ୍ୟ ପାଳନ କରି ରାମ, ଲକ୍ଷ୍ମଣ, ସୀତା ଦଣ୍ଡକାରଣ୍ୟରେ ରହୁଥିବାବେଳେ ରାବଣ ସେମାନଙ୍କୁ ପ୍ରବଞ୍ଚିତ କରି ସୀତାଙ୍କୁ ହରଣ କଲା । ରାମଙ୍କର ପିତା ଦଶରଥ ଜଟାୟୁଙ୍କର ମିତ୍ର ଥିଲେ । ଆକାଶମାର୍ଗରେ ରାବଣ ସୀତାଙ୍କୁ ନେଇ ପଳାଇଯାଉଥିବା ଦେଖି ଜଟାୟୁ ତାର ପଥରୋଧ କଲେ । ବହୁ ସମୟ ରାବଣ ସହିତ ଯୁଦ୍ଧ କରି ସେ ନିହତ ହୋଇଥିଲେ । ସୀତାଙ୍କୁ ଉଦ୍ଧାର ପାଇଁ ରାମ ମୋର ପିତୃବ୍ୟ ସୁଗ୍ରୀବଙ୍କ ସହିତ ମିତ୍ରତା କଲେ । ସୁଗ୍ରୀବଙ୍କ ଦ୍ୱାରା ପ୍ରେରିତ ହୋଇ ଆମେ ସୀତାଙ୍କୁ ଖୋଜିବାକୁ ଆସିଛୁ । ଶେଷରେ ନିରାଶ ହୋଇ ଉପବାସ କରି ପ୍ରାଣ ବିସର୍ଜନ କରିବାପାଇଁ ସ୍ଥିର କରିଥିଲୁ ।

ସଂପାତି ଶୋକାର୍ତ୍ତ ହୋଇ ସଜଳ ନୟନରେ ଉତ୍ତର ଦେଲେ – ବାନରଗଣ, ରାବଣ ଦ୍ୱାରା ନିହତ ଜଟାୟୁ ମୋର ସାନଭାଇ । ବୃଦ୍ଧ ବୟସ ଯୋଗୁଁ ଓ ମୋର ପକ୍ଷ ନ ଥିବାରୁ ମୁଁ ତାର ମୃତ୍ୟୁର ପ୍ରତିଶୋଧ ନେଇପାରୁ ନାହିଁ । ବୃତ୍ରାସୁରର ବଧ ପରେ ମୁଁ ଏବଂ ଜଟାୟୁ ଇନ୍ଦ୍ରଙ୍କୁ ଜୟ କରିବାପାଇଁ ଦ୍ରୁତ ବେଗରେ ଆକାଶ ମାର୍ଗରେ ଯାତ୍ରା କଲୁ । ମଧ୍ୟାହ୍ନର ସୂର୍ଯ୍ୟତେଜରେ ଜଟାୟୁ ଅବସନ୍ନ ହୋଇପଡ଼ିଲା । ମୁଁ ନିଜର ପକ୍ଷଦ୍ୱାରା ତାକୁ ଘୋଡ଼ାଇ ଦେଲି । ସେଥିରେ ମୋର ନିଜର ପକ୍ଷ ଜଳିଗଲା ଏବଂ ମୁଁ ବିନ୍ଧ୍ୟପର୍ବତରେ ଆସି ପଡ଼ିଲି । ସେହିଦିନଠାରୁ ମୁଁ ଏଠାରେ ଅଛି । ଜଟାୟୁର କୌଣସି ଖବର ପାଇ ନାହିଁ ।

ଅଙ୍ଗଦ କହିଲେ – ସଂପାତି, ତୁମେ ତୁମର ଭାଇର ଶତ୍ରୁ କିଏ ଜାଣିଲ । ତୁମେ ଯଦି ତୁମ ଭାଇର ମରଣର ପ୍ରତିଶୋଧ ନେବାକୁ ଚାହଁ, ତା' ହେଲେ କହ, ସେ ରାକ୍ଷସାଧମ ରାବଣ କେଉଁଠି ଅଛି, ନିକଟରେ ନା ଦୂରରେ ?

ସଂପାତି କହିଲେ, ମୁଁ ଦଗ୍ଧପକ୍ଷ, ନିର୍ବୀର୍ଯ୍ୟ । କେବଳ ବାକ୍ୟଦ୍ୱାରା ରାମଙ୍କୁ ବିଶେଷ ସାହାଯ୍ୟ କରିପାରିବି । ମୁଁ ବରୁଣଲୋକ, ଯେଉଁ ତ୍ରିଭୁବନକୁ ବିଷ୍ଣୁ ତ୍ରିବିକ୍ରମରୂପେ ପାଦରେ ଆଚ୍ଛାଦନ କରିଥିଲେ, ସେ ସମସ୍ତ ଲୋକ, ଦେବାସୁର ଯୁଦ୍ଧ, ଅମୃତଲାଭ ପାଇଁ ସମୁଦ୍ରମନ୍ଥନ ଏସବୁ ବିଷୟ ଜାଣେ । କିନ୍ତୁ ବାର୍ଦ୍ଧକ୍ୟ ଯୋଗୁଁ ମୁଁ ନିସ୍ତେଜ ଓ ମୋର ପ୍ରାଣ ଶିଥିଳ ହୋଇଯାଇଛି । ତଥାପି ରାମଙ୍କର କାର୍ଯ୍ୟ ମୋର ସର୍ବାଦୌ କରଣୀୟ ।

ସଂପାତି ପୁଣି କହିଲେ, ମୋର ମନେପଡୁଛି ଜଣେ ସର୍ବାଳଙ୍କାରଭୂଷିତା ରୂପବତୀ ତରୁଣୀ ଦୁରାତ୍ମା ରାବଣଦ୍ୱାରା ଅପହୃତ ହୋଇ 'ରାମ ରାମ, ଲକ୍ଷ୍ମଣ ଲକ୍ଷ୍ମଣ' ବୋଲି କହି ବିଳାପ କରୁଥିଲେ ଏବଂ ଦେହରୁ ନିଜର ଅଳଙ୍କାର କାଢ଼ି ଫିଙ୍ଗି ଦେଉଥିଲେ । ବର୍ତ୍ତମାନ ରାମଙ୍କ ବିଷୟରେ ତୁମ କଥାରୁ ଜାଣୁଛି ଯେ ସେ ସୀତା । ରାବଣ କେଉଁଠି ଅଛି, ତୁମକୁ

କହୁଛି ଶୁଣ । ରାବଣ ବିଶ୍ରବାଙ୍କର ପୁତ୍ର । କୁବେରଙ୍କର ଭାଇ । ଏହାଠାରୁ ଶହେ ଯୋଜନ ଦୂରରେ ସମୁଦ୍ର ମଧ୍ୟରେ ଥିବା ଲଙ୍କାଦ୍ୱୀପରେ ସେ ରହୁଛି । ରମଣୀୟ ଲଙ୍କାପୁରୀ ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ । ତାହାର ସମସ୍ତ ପ୍ରାଚୀର, ଦ୍ୱାର, ଅଟ୍ଟାଳିକା ସୁବର୍ଣ୍ଣନିର୍ମିତ । ଦୁଃଖିନୀ ସୀତା ସେହି ଲଙ୍କାପୁରୀରେ ରାବଣର ଅନ୍ତଃପୁରରେ ରହୁଛନ୍ତି । ରାକ୍ଷସୀମାନେ ତାଙ୍କୁ ଜଗି ରହିଛନ୍ତି । ଜନକନନ୍ଦିନୀଙ୍କୁ ତୁମେ ସେହି ଲଙ୍କାକୁ ଗଲେ ଦେଖିପାରିବ । ସାଧାରଣତଃ ଗୃଧ୍ରମାନଙ୍କର ଦୃଷ୍ଟିଶକ୍ତି ତୀକ୍ଷ୍ଣ । ମୁଁ ଏଇଠି ବସି ଶହେ ଯୋଜନ ଦୂରରେ କଣ ହେଉଛି, ମୋର ଦିବ୍ୟଦୃଷ୍ଟିରେ ଦେଖିପାରୁଛି । ମୁଁ ଲଙ୍କା ନଗରୀରେ ରାବଣ ଓ ସୀତାଙ୍କୁ ସ୍ପଷ୍ଟ ଦେଖିପାରୁଛି । ତୁମଦ୍ୱାରା ମୋର ଭ୍ରାତୃବୈରୀର ବିନାଶ ଘଟିବ ବୋଲି ମୁଁ ଆଶା କରୁଛି । ଏହି ଲବଣ ସମୁଦ୍ରକୁ ଅତିକ୍ରମ କରିବାର ଉପାୟ ସ୍ଥିର କର । ସୀତାଙ୍କ ସନ୍ଧାନ କାର୍ଯ୍ୟରେ ସଫଳ ହୁଅ । ଏବେ ମୁଁ ମୋର ମୃତ ଭ୍ରାତାପାଇଁ ଉଦକ ଦାନ କରିବି । ତୁମେ ମୋତେ ସମୁଦ୍ରକୂଳକୁ ନେଇଚାଲ ।

ସଂପାତିଙ୍କର ଅମୃତତୁଲ୍ୟ କଥା ଶୁଣି ବାନରମାନେ ତୃପ୍ତ ହେଲେ । ସେମାନେ ତାଙ୍କୁ ସମୁଦ୍ରକୂଳକୁ ନେଇ ତର୍ପଣାନ୍ତେ ପୁଣି ଫେରାଇ ଆଣିଲେ । ବାନରମାନଙ୍କୁ ପ୍ରସନ୍ନ କରାଇ ସଂପାତି କହିଲେ – ମୁଁ ବୃଦ୍ଧ ଓ ବଳହୀନ ହୋଇ ପଡ଼ି ରହିବା ପରେ ମୋର ପୁତ୍ର ସୁପାର୍ଶ୍ୱ ମୋତେ ଆହାର ଯୋଗାଇ ପାଳନ କରୁଛି । ଦିନେ ସୂର୍ଯ୍ୟାସ୍ତପରେ ସେ ମୋ ପାଇଁ ମାଂସ ନ ଆଣି ଫେରିଆସିଲା ଏବଂ ଦୁଃଖିତ ହୋଇ କହିଲା – ପିତା, ମୁଁ ମାଂସ ନିମନ୍ତେ ଆକାଶରେ ବହୁଦୂର ଉଡ଼ି ମହେନ୍ଦ୍ର ପର୍ବତର ଦ୍ୱାର ରୁଦ୍ଧ କରି ବସିଗଲି । ଏହି ସମୟରେ ଜଣେ କଜ୍ଜଳପରି କୃଷ୍ଣବର୍ଣ୍ଣ ପୁରୁଷ ବାଳାରୁଣ କାନ୍ତିର ଜଣେ ସୁନ୍ଦରୀ ତରୁଣୀକୁ ଧରି ସେହି ବାଟରେ ଆସୁଥିବାର ଦେଖି ମୁଁ ସେମାନଙ୍କୁ ଆହାରପାଇଁ ସଂଗ୍ରହ କରିବାର ମନସ୍ଥ କଲି । ମାତ୍ର ପୁରୁଷଟି ବିନୟବାକ୍ୟରେ ମୋତେ ବାଟ ଛାଡ଼ିଦେବା ପାଇଁ ନିବେଦନ କଲା । ବିନୀତ ବ୍ୟକ୍ତିକୁ ପ୍ରହାର କରିବା ଅନୁଚିତ ବୋଲି ମୁଁ ମନେ କରିବାରୁ ସେ ତେଜରେ ଆକାଶକୁ ଉଜ୍ଜ୍ୱଳ କରି ବେଗରେ ପଳାଇଗଲା । ଅନ୍ତରୀକ୍ଷଚାରୀ ପ୍ରାଣୀମାନେ ମୋତେ ଅଭିବାଦନ କରି କହିଲେ, 'ଭାଗ୍ୟକୁ ସୀତା ବଞ୍ଚିଗଲେ' । ମହର୍ଷିମାନଙ୍କ କଥାରୁ ସେ ବ୍ୟକ୍ତିକୁ ରାକ୍ଷସରାଜ ରାବଣ ଓ ତରୁଣୀକୁ ରାକ୍ଷସଦ୍ୱାରା ଅପହୃତା ରାମଙ୍କ ପତ୍ନୀ ସୀତା ବୋଲି ମୁଁ ଜାଣିଲି । ମୁକ୍ତକେଶୀ ସୀତା ରାମ ଲକ୍ଷ୍ମଣଙ୍କ ନାମ ଧରି ଡାକୁଥିବାର ମୁଁ ଶୁଣିପାରିଲି । ସେଥିପାଇଁ ମୋର ବିଳମ୍ବ ହେଲା ।

ସଂପାତି କହିଲେ, ମୁଁ ଆହୁରି ଏକ ପୂର୍ବର ବୃତ୍ତାନ୍ତ ତୁମକୁ ଜଣାଉଛି । ସୀତାଙ୍କ ସନ୍ଧାନ ପାଇଁ ତାହା ମଧ୍ୟ ତୁମମାନଙ୍କର ଜାଣିବାର କଥା । ସୂର୍ଯ୍ୟ କିରଣରେ ଦଗ୍ଧ ହୋଇ ବିନ୍ଧ୍ୟପର୍ବତ ଉପରେ ମୁଁ ପଡ଼ିଥିବା କଥା ପୂର୍ବରୁ ତୁମକୁ କହିଛି । ମୁଁ ଛ'ଦିନ ଅଚେତନ ହୋଇ ପଡ଼ିବାପରେ ମୋର ଚେତନା ଆସିଲା । ମୁଁ ଅତିଶୟ ଦୁର୍ବଳ ହୋଇ ପଡ଼ିଥିଲି । କାତର ଭାବରେ ଚାରିଆଡ଼କୁ ଚାହିଁ ଦେଖିଲି, ଦକ୍ଷିଣସମୁଦ୍ର କୂଳରେ ଏହି ପର୍ବତ ଉପରେ ମୁଁ ପଡ଼ିରହିଛି । ପର୍ବତର ତଳେ ଏକ ତପୋବନ ମଧ୍ୟରେ ନିଶାକର ନାମରେ ଜଣେ ଉଗ୍ର ତପସ୍ୱୀ ରହୁଥିଲେ । ପୂର୍ବରୁ ମୋର ଓ ଜଟାୟୁର ତାଙ୍କ ସହିତ ବହୁବାର ସାକ୍ଷାତ ହୋଇଛି

ଓ ଆମ ଦୁହିଁଙ୍କୁ ସେ ବିଶେଷ ଶ୍ରଦ୍ଧା କରୁଥିଲେ । ମୁଁ ବହୁ କଷ୍ଟରେ ପର୍ବତ ଉପରୁ ଓହ୍ଲାଇ ସେହି ଋଷିଙ୍କ ଆଶ୍ରମକୁ ଗଲି ଏବଂ ଏକ ବୃକ୍ଷମୂଳରେ ତାଙ୍କୁ ଅପେକ୍ଷା କରି ରହିଲି । ଋଷି ସ୍ନାନ କରି ଫେରି ଆସୁଥିଲେ । ସିଂହ, ବାଘ, ଭାଲୁ, ସମ୍ବର ଓ ସରୀସୃପମାନେ ନିଜ ନିଜର ବୈରୀଭାବ ଭୁଲି ତାଙ୍କ ସାଙ୍ଗରେ ଆସୁଥିଲେ ଏବଂ ତାଙ୍କୁ ଆଶ୍ରମରେ ପହଞ୍ଚାଇ ଦେଇ ଫେରିଗଲେ । ଆଶ୍ରମରୁ ବାହାରିଆସି ଋଷି ମୋତେ ଦେଖି ପ୍ରଥମେ ଚିହ୍ନିପାରିଲେ ନାହିଁ । ମୋର କାହିଁକି ଏପରି ଅବସ୍ଥା ହୋଇଛି ପଚାରି ବୁଝିବା ପରେ କହିଲେ – ସଂପାତି, ତୁମଦ୍ୱାରା ମହତ୍ କାର୍ଯ୍ୟ ସାଧିତ ହେବ । ସେପର୍ଯ୍ୟନ୍ତ ତୁମେ ଏହିପରି ରହିବ । ତା' ପରେ ତୁମର ନୂତନ ପକ୍ଷ କଅଁଳି ଉଠିବ ଏବଂ ତୁମେ ପୂର୍ବର ତେଜ, ବଳ, ବିକ୍ରମ ଫେରିପାଇବ । ଋଷି ରାମଙ୍କ ବିଷୟରେ ସମସ୍ତ କଥା କହିଥିଲେ । ରାମ ବନବାସ କରୁଥିବାବେଳେ ଜନସ୍ଥାନରୁ ରାବଣ ତାଙ୍କର ପତ୍ନୀ ସୀତାଙ୍କୁ ହରଣ କରିବ, ସୀତା ଲଙ୍କାରେ ବନ୍ଦିନୀ ହୋଇ ରହିବେ ଏବଂ ରାମଙ୍କ ଦ୍ୱାରା ପ୍ରେରିତ ବାନର ଦୂତ ଭାବରେ ତୁମେମାନେ ଏଠାକୁ ଆସିବ ବୋଲି ମଧ୍ୟ ସେ କହିଥିଲେ । ସେ କହିଥିଲେ – ବିହଙ୍ଗମ, ରାମଙ୍କର ବାନରଦୂତମାନେ ଆସିଲେ ତୁମେ ସୀତାଙ୍କର ଖବର ସେମାନଙ୍କୁ ଜଣାଇଦେବ ଏବଂ ଏ ସ୍ଥାନ ଛାଡ଼ି ଅନ୍ୟତ୍ର ଯିବ ନାହିଁ । ପରେ ତୁମର ପକ୍ଷ ତୁମେ ଫେରିପାଇବ । ଅବଶ୍ୟ ତପୋବଳରେ ମୁଁ ତୁମକୁ ପକ୍ଷ ଦେଇପାରିବି । କିନ୍ତୁ ପକ୍ଷ ଦେଲେ ତୁମେ ମନଇଚ୍ଛା ବୁଲିବ ଏବଂ ଏହିସ୍ଥାନରେ ରହିଲେ ତୁମଦ୍ୱାରା ଯେଉଁ କାର୍ଯ୍ୟ ହେବାର କଥା, ହେବ ନାହିଁ । ସେଇ ଉଦ୍ଦେଶ୍ୟରେ ମୁଁ ତୁମକୁ ଏବେ ପକ୍ଷ ଦେଉ ନାହିଁ । ମୋତେ ଏହିପରି ପରାମର୍ଶ ଦେଇ ରାମ ଲକ୍ଷ୍ମଣଙ୍କୁ ଦେଖିବାକୁ ତାଙ୍କର ଇଚ୍ଛା ଥିଲେ ମଧ୍ୟ ବହୁପୂର୍ବରୁ ଋଷି ଦେହତ୍ୟାଗ କଲେ ।

ଏହିପରି ବାନରମାନଙ୍କୁ କହିବା ପରେ ହଠାତ୍ ଗୃଧ୍ର ସଂପାତିଙ୍କର ଦୁଇପକ୍ଷ ଉଠି ଆସିଲା । ଅରୁଣବର୍ଣ୍ଣ ପକ୍ଷଯୁକ୍ତ ନିଜର ତେଜୋଦୀପ୍ତ ଶରୀରକୁ ଦେଖି ସଂପାତି ପରମ ଆନନ୍ଦ ଅନୁଭବ କଲେ । ସେ କହିଲେ, ବର୍ତ୍ତମାନ ମୁଁ ନବଯୌବନ ଲାଭ କଲି । ମୋର ପକ୍ଷଲାଭ ଦେଖି ତୁମର କାର୍ଯ୍ୟସିଦ୍ଧି ହେବ ବୋଲି ମୁଁ ମନେକରୁଛି । ତେଣୁ ସୀତାଙ୍କୁ ଉଦ୍ଧାର କରିବାପାଇଁ ସମସ୍ତ ପ୍ରକାର ଯତ୍ନ କର ।

ଏହାକହି ସଂପାତି ନବଯୌବନର ଆନନ୍ଦରେ ଆକାଶକୁ ଉଠି ଉଡ଼ିଗଲେ । ବାନର ବୀରମାନେ ଅଦମ୍ୟ ଉତ୍ସାହରେ ସୀତାଙ୍କ ଅନ୍ୱେଷଣ ପାଇଁ ଦକ୍ଷିଣ ଦିଗକୁ ଯାତ୍ରାକଲେ ।

ଯାତ୍ରା କରି ବାନରମାନେ ଦକ୍ଷିଣ ସମୁଦ୍ରତୀରରେ ପହଞ୍ଚିଲେ । ସମୁଦ୍ର କେଉଁଠାରେ ସୁପ୍ତ ଓ ନିସ୍ତରଙ୍ଗ, କେଉଁଠାରେ କ୍ରୀଡ଼ାଚଞ୍ଚଳ, କେଉଁଠାରେ ପର୍ବତ ପରି ଉତ୍‌ଥିତ କରାଳଲହରୀଯୁକ୍ତ । ପାତାଳତଳବାସୀ ଦାନବେନ୍ଦ୍ରମାନଙ୍କର ବାସଭୂମି ଓ ଆକାଶ ପରି ଅପାର ସେହି ଲୋମହର୍ଷଣକାରୀ ସମୁଦ୍ରକୁ ଦେଖି ବାନରମାନେ ବିଷଣ୍ଣ ହୋଇପଡ଼ିଲେ । ସାଗରକୁ କିପରି ଲଂଘନ କରିବାକୁ ହେବ, ସେମାନେ ଚିନ୍ତା କରିପାରିଲେ ନାହିଁ ।

ଅଙ୍ଗଦ ଭୟଭୀତ ବାନରମାନଙ୍କୁ ଆଶ୍ୱାସନା ଦେଇ କହିଲେ, ତୁମ୍ଭମାନଙ୍କର ବିଷଣ୍ଣ ହେବା ଉଚିତ ନୁହେଁ । ବିଷାଦ ଦୋଷାବହ । କ୍ରୁଦ୍ଧସର୍ପ ବାଳକକୁ ନିହତ କରିବାପରି

ବିଷାଦ ମନୁଷ୍ୟଙ୍କୁ ବିନଷ୍ଟ କରେ । ବର୍ତ୍ତମାନ ବିକ୍ରମ ପ୍ରକାଶର ବେଳ । ବାନରବୃଦ୍ଧମାନଙ୍କ ସହିତ ମନ୍ତ୍ରଣା କରି ଅଙ୍ଗଦ ନିଜର ସେନାକୁ ସମ୍ବୋଧିତ କରି କହିଲେ, ତୁମେମାନେ ସମସ୍ତେ ବୀର, ବଳବାନ୍, ସତ୍‌କୁଳଜାତ । କହ, ତୁମ ମଧ୍ୟରୁ କେଉଁ ବୀର ଶତଯୋଜନ ସମୁଦ୍ରକୁ ଲଂଘନ କରିପାରିବ ? କେଉଁ ଯୋଦ୍ଧା, ସୁଗ୍ରୀବଙ୍କର ସତ୍ୟରକ୍ଷା କରି ବାନର ଦଳପତିମାନଙ୍କୁ ମହାଭୟରୁ ଉଦ୍ଧାର କରିପାରିବ ? କାହାର ଅନୁଗ୍ରହରୁ ଆମେ ରାମ, ଲକ୍ଷ୍ମଣ, ସୁଗ୍ରୀବଙ୍କ ସହିତ ପୁଣି ଆନନ୍ଦରେ ମିଳିତ ହୋଇପାରିବା ? ବର୍ତ୍ତମାନ କହ, କିଏ କେତେ ଲମ୍ଫପ୍ରଦାନ କରିପାରିବ ?

ବାନର ସେନାପତି ଗଜ କହିଲେ, ମୁଁ ଦଶଯୋଜନ ଡେଇଁ ପାରିବି । ଗବୟ କହିଲେ, ମୁଁ କୋଡ଼ିଏ ଯୋଜନ । ଶରଭ ତିରିଶ ଯୋଜନ ଡେଇଁବେ ବୋଲି କହିଲେ । ଏହିପରି ବାନର ସେନାପତିମାନେ ଜଣକ ପରେ ଜଣେ ଅଶୀ ଯୋଜନ ପର୍ଯ୍ୟନ୍ତ ଗଲେ ।

ବୟୋବୃଦ୍ଧ ଜାମ୍ବବାନ କହିଲେ, ପୂର୍ବେ ମୋର ଶକ୍ତି ଥିଲା । ବର୍ତ୍ତମାନ ବୟସ ବେଶି ହୋଇଗଲାଣି । ତଥାପି ମୁଁ ନବେ ଯୋଜନ ପର୍ଯ୍ୟନ୍ତ ଯାଇପାରିବି । ଯୁବକ ଅବସ୍ଥାରେ ତାଙ୍କର କ'ଣ ବଳ ଥିଲା ତାର ପରିଚୟ ଦେଇ ଜାମ୍ବବାନ୍ କହିଲେ, ବାମନ ଅବତାରରେ ବିଷ୍ଣୁ ତ୍ରିବିକ୍ରମଙ୍କୁ ମୁଁ ପ୍ରଦକ୍ଷିଣ କରିଥିଲି । ଅର୍ଥାତ୍ ତ୍ରିଭୁବନ ବିଚରଣ କରିବାର ଶକ୍ତି ମୋର ଥିଲା । ବନପର୍ବତଯୁକ୍ତ ପୃଥିବୀକୁ ବାରମ୍ବାର ପ୍ରଦକ୍ଷିଣ କରି ସମୁଦ୍ର ମନ୍ଥନବେଳେ ଦେବତାମାନଙ୍କ ଆଦେଶରେ ମୁଁ ଔଷଧ ସଂଗ୍ରହ କରିଥିଲି । ବର୍ତ୍ତମାନ ଯୁବାବସ୍ଥାର ସେ ବଳ ନାହିଁ ।

ଅଙ୍ଗଦ କହିଲେ, ମୁଁ ଏହି ଶହେ ଯୋଜନ ସମୁଦ୍ରକୁ ଡେଇଁ ଚାଲିଯିବି । ମାତ୍ର ଫେରି ପାରିବି କି ନାହିଁ, କହିପାରୁ ନାହିଁ । ଜାମ୍ବବାନ୍ କହିଲେ – କପିଶ୍ରେଷ୍ଠ, ତୁମର ଶକ୍ତି ଅଛି, ଆମେ ଜାଣୁ । ଶହେ କ'ଣ ହଜାରେ ଯୋଜନ ତୁମେ ଡେଇଁଯିବ । କିନ୍ତୁ ତୁମର ଡେଇଁବାଟା ସ୍ପୃହଣୀୟ ନୁହେଁ । ପ୍ରେରଣକାରୀ ପ୍ରଭୁ କେବେ ନିଜେ ପ୍ରେରିତ ହୁଏ ନାହିଁ । ଆମର ସମସ୍ତଙ୍କର ପ୍ରଭୁଭାବରେ ତୁମେ ଆମକୁ ପ୍ରେରଣ କରିବାକୁ ଅଛ । ତୁମେ କାହିଁକି ଯିବ ? ଅରିନ୍ଦମ, ତୁମେ ସୀତାଙ୍କ ଅନ୍ୱେଷଣ କାର୍ଯ୍ୟର ମୂଳ ବ୍ୟକ୍ତି । ତେଣୁ ତୁମେ ସର୍ବଥା ରକ୍ଷଣୀୟ । ତୁମେ ଆମର ପ୍ରଭୁ ଏବଂ ପ୍ରଭୁଙ୍କର ପୁତ୍ର । ତୁମକୁ ଆଶ୍ରୟ କରି ଆମେ ଏହି କାର୍ଯ୍ୟସାଧନ କରିପାରିବୁ ।

ଅଙ୍ଗଦ ଉତ୍ତର ଦେଲେ, ଯଦି ମୁଁ ନ ଯାଏ ଏବଂ ଅନ୍ୟ ବାନରମାନେ ଯାଇ ନ ପାରନ୍ତି, ତା' ହେଲେ ଆମମାନଙ୍କୁ ପୁଣି ପ୍ରାୟୋପବେଶନ କରିବାକୁ ହେବ । ସୁଗ୍ରୀବଙ୍କ ଆଦେଶ ପାଳନ ନ କରି ଫେରିଗଲେ ଆମର ପ୍ରାଣଦଣ୍ଡ ନିଶ୍ଚିତ ।

ବାନରବୀର ଜାମ୍ବବାନ୍ କହିଲେ, କାର୍ଯ୍ୟହାନି ହେବାର କୌଣସି କାରଣ ନାହିଁ । ଆମମାନଙ୍କ ମଧ୍ୟରେ ଯେ ଏହି କାର୍ଯ୍ୟ କରିବାପାଇଁ ସମର୍ଥ ମୁଁ ତାଙ୍କୁ ପ୍ରବର୍ତ୍ତାଇ ନିଯୋଜିତ କରୁଛି ।

ଟିକିଏ ଦୂରରେ ବେଶ୍ ଚୁପଚାପ୍ ହୋଇ ଆରାମରେ ବସିଥିବା ବାୟୁପୁତ୍ର ହନୁମାନଙ୍କୁ ଡାକି ଜାମ୍ବବାନ୍ କହିଲେ, ସର୍ବଶାସ୍ତ୍ରଜ୍ଞ ସର୍ବଶକ୍ତିମାନ୍ ବାନରଶ୍ରେଷ୍ଠ ବୀର ହନୁମାନ, ତୁମେ

କାହିଁକି ନୀରବ ହୋଇ ବସିଛ ? କିଛି କହୁ ନାହଁ ? ତୁମେ ବାନରରାଜ ସୁଗ୍ରୀବଙ୍କ ସମକକ୍ଷ, ତେଜ ଓ ବଳରେ ରାମ ଲକ୍ଷ୍ମଣଙ୍କ ତୁଲ୍ୟ । ମୁଁ ଦେଖୁଛି, ଅରିଷ୍ଟନେମି ଓ ବିନତାଙ୍କର ପୁତ୍ର ମହାବୀର ଗରୁଡ ଅନେକ ସମୟରେ ସମୁଦ୍ରରେ ଉଡ଼ି ଉଡ଼ି ସାପମାନଙ୍କୁ ଧରି ଭକ୍ଷଣ କରନ୍ତି । ତାଙ୍କର ପକ୍ଷରେ ଯେତିକି ବଳ, ତୁମ ବାହୁରେ ମଧ୍ୟ ସେତିକି ବଳ ଅଛି । ତେଜ ଓ ପରାକ୍ରମରେ ତୁମକୁ ସେ ବଳିଯାଇ ପାରିବେ ନାହିଁ । କପିଶ୍ରେଷ୍ଠ ସଂସାରର ସବୁ ପ୍ରାଣୀଙ୍କ ମଧ୍ୟରେ ବଳ ବୁଦ୍ଧି ତେଜ ଓ ପରାକ୍ରମରେ ତୁମେ ଶ୍ରେଷ୍ଠ । ଏହି କାର୍ଯ୍ୟପାଇଁ ତୁମେ କାହିଁକି ନିଜକୁ ପ୍ରସ୍ତୁତ କରୁ ନାହଁ ?

ହନୁମାନଙ୍କ ଜନ୍ମବୃତ୍ତାନ୍ତ ଓ ଶକ୍ତି ବର୍ଣ୍ଣନା କରି ପୁଣି ଜାମ୍ବବାନ୍ କହିଲେ, ତୁମର ମାତା ସ୍ୱର୍ଗର ଅପ୍‌ସରା ଥିଲେ । ସେ ଶାପଗ୍ରସ୍ତ ହୋଇ ଅଞ୍ଜନା ନାମକ ବାନରୀ ଭାବରେ ପ୍ରସିଦ୍ଧ ହେଲେ ଓ ବାନରେନ୍ଦ୍ର କେଶରୀଙ୍କୁ ବିବାହ କରିଥିଲେ । ସୁନ୍ଦର ମାଲ୍ୟ ବସ୍ତ୍ର ଓ ଅଳଙ୍କାରରେ ଭୂଷିତ ହୋଇ ରୂପଯୌବନବତୀ ଅଞ୍ଜନା ପର୍ବତ ଶିଖରରେ ବସିଥିବାବେଳେ ବାୟୁ ତାଙ୍କର ରୂପରେ ମୁଗ୍ଧ ହୋଇଗଲେ ଏବଂ ତାଙ୍କର ବସ୍ତ୍ରକୁ ଧୀରେ ଧୀରେ ଆକର୍ଷଣ କରିନେଲେ । ତାଙ୍କର ନଗ୍ନ ସୁନ୍ଦର ସୁଗଠିତ ତନୁର ଦର୍ଶନରେ କାମମୋହିତ ହୋଇ ଦୀର୍ଘଭୁଜ ଦ୍ୱାରା ବାୟୁ ତାଙ୍କୁ ଆଲିଙ୍ଗନ କଲେ । ପତିବ୍ରତା ଅଞ୍ଜନା ବାୟୁଙ୍କୁ ଭର୍ତ୍ସନା କରିବାରୁ ସେ କହିଲେ – ସୁଲକ୍ଷଣୀ, ଭୟ କର ନାହିଁ । ତୁମକୁ ଯେ ମୁଁ ଆଲିଙ୍ଗନ କଲି, ତାହା ଫଳରେ ତୁମେ ଏକ ମହାତେଜସ୍ୱୀ ମହାବୀର ପୁତ୍ର ଲାଭ କରିବ, ଯେ କି ବେଗ, ତେଜ ଓ ପରାକ୍ରମରେ ମୋର ସମକକ୍ଷ ହେବ । ବାୟୁଙ୍କ କହିବା ଅନୁସାରେ ତୁମେ ଜନ୍ମ ହେଲ ଏବଂ ନବୋଦିତ ସୂର୍ଯ୍ୟକୁ ଫଳ ବୋଲି ମନେକରି ଧରିବାପାଇଁ ଆକାଶରେ ତିନିଶହ ଯୋଜନ ଉପରକୁ ଉଠିଗଲ । ଏହା ଦେଖି ଇନ୍ଦ୍ର କ୍ରୁଦ୍ଧ ହୋଇ ତୁମ ଉପରେ ବଜ୍ର ନିକ୍ଷେପ କଲେ । ଇନ୍ଦ୍ରଙ୍କ ବଜ୍ରରେ ତୁମେ ନିହତ ହେବାର ଦେଖି ତୁମର ପିତା ବାୟୁ କ୍ରୁଦ୍ଧ ହୋଇ ସ୍ପନ୍ଦିତ ହେଲେ ନାହିଁ ଏବଂ ତ୍ରିଲୋକରେ ହାହାକାର ପଡ଼ିଗଲା । ତୁମକୁ ପୁନର୍ଜୀବିତ କରି ବ୍ରହ୍ମା ବରଦାନ କଲେ ଯେ ଯୁଦ୍ଧରେ କୌଣସି ଅସ୍ତ୍ରଶସ୍ତ୍ରରେ ତୁମେ ନିହତ ହେବ ନାହିଁ । ସହସ୍ରାକ୍ଷ ଇନ୍ଦ୍ର ପ୍ରୀତ ହୋଇ କହିଲେ, ମୃତ୍ୟୁ ତୁମର ଇଚ୍ଛାଧୀନ ହେବ । ଆଞ୍ଜନେୟ, ତୁମେ ତୁମର ତେଜ ବିକ୍ରମ ଦେଖାଇ ବିପନ୍ନ ବାନରକୁଳକୁ ରକ୍ଷାକର । ତ୍ରିବିକ୍ରମ ବିଷ୍ଣୁ ତିନିପାଦରେ ତିନିଲୋକକୁ ବ୍ୟାପିଯିବା ପରି ତୁମେ ଶୀଘ୍ର ଏହି ସାଗରକୁ ଲଂଘନ କର । ବାନରସେନା ତୁମର ବଳବୀର୍ଯ୍ୟ ଦେଖିବାପାଇଁ ଉଦ୍‌ଗ୍ରୀବ ହୋଇ ଅପେକ୍ଷା କରିଛନ୍ତି ।

ଏହିପରି ସମ୍ବୋଧିତ ହୋଇ ହନୁମାନ ନିଜର ବପୁ ବିସ୍ତାର କଲେ ଏବଂ ସମସ୍ତ ବାନରଙ୍କ ହର୍ଷଧ୍ୱନି ମଧ୍ୟରେ ମହାକାୟ ମାରୁତି ବୃଦ୍ଧ ବାନରମୁଖ୍ୟମାନଙ୍କୁ ଅଭିବାଦନ କରି କହିଲେ, ମୁଁ ପବନପୁତ୍ର ହନୁମାନ । ଥରେ ନୁହେଁ, ସହସ୍ରବାର ସାଗର ଲଂଘନ କରିବାପାଇଁ ସମର୍ଥ । ମୁଁ ଆକାଶକୁ ଆଛନ୍ନ କରିପାରେ, ମେଘମାନଙ୍କୁ ଚୂର୍ଣ୍ଣବିଚୂର୍ଣ୍ଣ କରିଦେଇପାରେ । ପର୍ବତକୁ ଦୋହଲାଇ ଦେଇପାରେ, ସମୁଦ୍ରକୁ ଶୁଖାଇ ଦେଇପାରେ । ତୁମେମାନେ ନିଶ୍ଚିନ୍ତ ରହ । ମୁଁ ନିଶ୍ଚୟ ସୀତାଙ୍କୁ ଠାବ କରି ଫେରିଆସିବି । ମହେନ୍ଦ୍ର

ପର୍ବତର ସ୍ଥିର ଓ ବିଶାଳ ଶିଖରରୁ ବେଗ ସଞ୍ଚୟ କରି ମୁଁ ଲମ୍ଫ ପ୍ରଦାନ କରିବାକୁ ଚାହେଁ । ମୋର ବେଗ ଓ ଭାରକୁ ଏହି ପର୍ବତ ସମ୍ଭାଳି ପାରିବ କି ନାହିଁ, ତାହା ମୁଁ ସନ୍ଦେହ କରୁଛି ।

## ୭୬ ।। ହନୁମାନଙ୍କର ସାଗର ଲଂଘନ

ସୀତାଙ୍କ ସନ୍ଧାନପାଇଁ ଶତ୍ରୁହନ୍ତା ହନୁମାନ ସମୁଦ୍ର ଲଂଘନ ପାଇଁ ପ୍ରସ୍ତୁତ ହେଲେ । ମହେନ୍ଦ୍ରଗିରିର ଶ୍ୟାମଳ ତୃଣଭୂମି ଉପରେ ସେ ବିଚରଣ କରିବାକୁ ଲାଗିଲେ । ତାଙ୍କର ଛାତିର ଧକ୍କାରେ ଅନେକ ପୁଷ୍ପିତ ବୃକ୍ଷ ଉପୁଡ଼ିଗଲା ଓ ପକ୍ଷୀମାନେ ଭୟରେ ଉଡ଼ିଗଲେ । ପର୍ବତ ଉପରେ ଠିଆହୋଇ ହନୁମାନ ଜଳାଶୟରେ ଗଜେନ୍ଦ୍ର ପରି ଦେଖାଗଲେ ।

ଯାତ୍ରା ଇଚ୍ଛାରେ ବାନରେନ୍ଦ୍ର ସୂର୍ଯ୍ୟ, ଇନ୍ଦ୍ର, ବ୍ରହ୍ମା ଓ ସମସ୍ତ ପ୍ରାଣୀଙ୍କୁ ନମସ୍କାର କଲେ । ପୂର୍ବମୁଖ ହୋଇ କୃତାଞ୍ଜଳିପୂର୍ବକ ନିଜର ଜନକ ବାୟୁଦେବତାଙ୍କୁ ବନ୍ଦନା କଲେ । ବାନରମାନେ ଏକ ଦୃଷ୍ଟିରେ ତାଙ୍କଆଡ଼କୁ ଚାହିଁ ହର୍ଷଧ୍ୱନି କଲେ । ପୂର୍ଣ୍ଣିମାରେ ସାଗର ସ୍ଫୀତ ହେବାପରି ତାଙ୍କର ବିଶାଳ ଶରୀର ବଢ଼ିବାକୁ ଲାଗିଲା । ତାଙ୍କର ପାଦଭାରରେ ପର୍ବତ କମ୍ପିତ ହେଲା । ମତ୍ତହସ୍ତୀର କପୋଳରୁ ମଦବାରି ଝରିବା ପରି ଶୈଳ ଦେହରୁ ଜଳଧାରା ନିର୍ଗତ ହେଲା । ପର୍ବତରୁ ନିଷ୍କ୍ରାନ୍ତ ବିଭିନ୍ନ ଧାତବ ଦ୍ରବ୍ୟ ତରଳିଯାଇ ସୁବର୍ଣ୍ଣ ରଜତ ଓ କଜ୍ଜଳର ଧାରପରି ଦେଖାଗଲା । ବୃକ୍ଷରୁ ପତିତ ପୁଷ୍ପରାଶି ଦ୍ୱାରା ସମସ୍ତ ପର୍ବତ ଆଚ୍ଛାଦିତ ହୋଇଗଲା । ପର୍ବତ ଦେହରୁ ବୃହତ୍ ଶିଳାଖଣ୍ଡମାନ ଉଦ୍‌ଗତ ହୋଇପଡ଼ିବାକୁ ଲାଗିଲା । ପଶୁମାନେ ଭୟରେ ରଡ଼ି ଛାଡ଼ି ଗୁହା ଭିତରେ ପଶିଗଲେ ଏବଂ ସେମାନଙ୍କ କୋଳାହଳରେ ପର୍ବତ ପ୍ରତିଧ୍ୱନିତ ହେଲା । ସ୍ୱସ୍ତିକଚିହ୍ନିତ ବିଷଧର ଫଣୀମାନେ ଅଗ୍ନି ଉଦ୍‌ଗାର କରି କ୍ରୋଧରେ ଶିଳାମାନଙ୍କୁ ଦଂଶନ କରିବାକୁ ଲାଗିଲେ । ପର୍ବତରେ ବିହାର କରୁଥିବା ବିଦ୍ୟାଧରମାନେ ନିଜର ସୁବର୍ଣ୍ଣର ଆସନ, ଶିରସ୍ତ୍ରାଣ, ପାନୀୟ ଓ ଭୋଜ୍ୟଦ୍ରବ୍ୟ ସବୁ ଛାଡ଼ିଦେଇ ସସ୍ତ୍ରୀକ ପଳାୟନ କଲେ ଏବଂ କ'ଣ ହେଉଛି ବୋଲି ଆକାଶରେ ରହି ଦେଖିବାକୁ ଲାଗିଲେ ।

ହନୁମାନଙ୍କର ଶରୀର ପୁଲକିତ ହେଲା, ରୋମ ସବୁ ଟାଙ୍କୁରି ଉଠିଲା । ଗରୁଡ଼ ବିଶାଳ ସର୍ପକୁ ଧରି ନଚାଇବା ପରି କପିଶ୍ରେଷ୍ଠ ତାଙ୍କର ଲାଙ୍ଗୁଳ ଆସ୍ଫାଳନ କରିବାକୁ ଲାଗିଲେ । ବିଶାଳ ଭୁଜଦ୍ୱୟରେ ପର୍ବତ ଉପରେ ଭରା ଦେଇ ସେ ତାଙ୍କର ପାଦ ଓ କଟିଦେଶ ସଙ୍କୁଚିତ କଲେ । ସେ ଊର୍ଦ୍ଧ୍ୱଦୃଷ୍ଟିରେ ଆକାଶକୁ ଦେଖି ପ୍ରାଣବାୟୁ ରୋଧ କଲେ ଏବଂ ଲମ୍ଫ ଦେବା ପୂର୍ବରୁ ବାନରବୀରମାନଙ୍କୁ କହିଲେ, ମୁଁ ରାମଙ୍କ ଧନୁରୁ ମୁକ୍ତ ଦ୍ରୁତଗାମୀ ଶର ପରି ରାବଣର ଲଙ୍କାପୁରୀକୁ ଯାଉଛି, ସେଠାରେ ଯଦି ସୀତାଙ୍କୁ ନ ଦେଖେ, ତା' ହେଲେ ସେହିପରି ଦ୍ରୁତ ବେଗରେ ସୁରଲୋକ ଯାତ୍ରା କରିବି । ସେଠାରେ ତାଙ୍କୁ ନ ଦେଖିଲେ ଲଙ୍କାକୁ ଉତ୍ପାଟନ କରି ରାକ୍ଷସାଧମ ରାବଣକୁ ବାନ୍ଧିଆଣିବି ।

ଏହା କହି ବାନରୋତ୍ତମ ନିଜକୁ ଗରୁଡ଼ଙ୍କର ସମକକ୍ଷ ବୋଲି ବିଚାର କରି ଦ୍ରୁତବେଗରେ ଲମ୍ଫ ପ୍ରଦାନ କଲେ । ଦୂରଦେଶଯାତ୍ରୀ ପଛରେ ତାର ବାନ୍ଧବଗଣ

ଛାଡ଼ିଦେବାପାଇଁ କିଛିଦୂର ଯିବାପରି, ରାଜାର ପଛରେ ସୈନ୍ୟଗଣ ଯାତ୍ରା କରିବା ପରି, ପୁଷ୍ପିତ ବୃକ୍ଷ ସବୁ ଉପୁଡ଼ି ପଡ଼ି କିଛି ଦୂର ତାଙ୍କ ପଛେ ପଛେ ଯାଇ ସମୁଦ୍ରରେ ପଡ଼ିଗଲେ । ଆକାଶରେ ପ୍ରସାରିତ ତାଙ୍କର ବାହୁଦ୍ୱୟ ପର୍ବତ ଶୃଙ୍ଗରୁ ନିର୍ଗତ ପଞ୍ଚମୁଖୀ ସର୍ପପରି ଦେଖାଗଲେ । ହନୁମାନ ଅଧୋମୁଖ ହେବାବେଳେ ସମୁଦ୍ରକୁ ପାନ କରିବା ଏବଂ ଉର୍ଦ୍ଧ୍ୱମୁଖ ହେଲେ ଆକାଶକୁ ପାନ କରିବାକୁ ଇଚ୍ଛା କରନ୍ତି ବୋଲି ଜଣାଯାଉଥିଲା । ତାଙ୍କର ପିଙ୍ଗଳ ଚକ୍ଷୁ ବିଦ୍ୟୁତ୍ ଓ ଚନ୍ଦ୍ର ସୂର୍ଯ୍ୟପରି ଦୀପ୍ତିମାନ, ନାସିକା ସାନ୍ଧ୍ୟ ସୂର୍ଯ୍ୟପରି ଆରକ୍ତ ଏବଂ ଉତ୍ଥିତ ପୁଚ୍ଛ ଇନ୍ଦ୍ରଧ୍ୱଜ ତୁଲ୍ୟ ଶୋଭାପାଉଥିଲା । ଗମନର ବେଗରେ ତାଙ୍କ ଉଭୟ ପାର୍ଶ୍ୱରେ ପବନ ସାଇଁ ସାଇଁ ଶବ୍ଦରେ ମେଘଗର୍ଜନ ପରି ଗର୍ଜୁଥିଲା ଏବଂ ଏକ ଲଞ୍ଜାତାରା ଉତ୍ତରରୁ ଦକ୍ଷିଣ ଦିଗକୁ ମହାବେଗରେ ଗତି କରୁଥିବା ପରି ଜଣାଗଲା । ଉପରେ ତାଙ୍କର ଶରୀର ଏବଂ ତଳେ ସମୁଦ୍ର ଜଳରେ ତାଙ୍କର ଛାୟା ମିଳିତ ହୋଇ ପ୍ରବଳ ବାୟୁ ବେଗରେ ଚାଳିତ ନୌକାପରି ଦେଖାଯାଉଥିଲା । ତାଙ୍କର ଗତିପଥରେ ନିମ୍ନସ୍ଥ ସମୁଦ୍ର ଉନ୍ମତ୍ତପ୍ରାୟ ତରଙ୍ଗରେ ବିକ୍ଷୁବ୍ଧ ହେବାକୁ ଲାଗିଲା । ସମୁଦ୍ର ଉପରେ ତାଙ୍କର ଛାଇ ଦଶ ଯୋଜନ ବିସ୍ତୃତ ଓ ତିରିଶ ଯୋଜନ ଦୀର୍ଘ ହୋଇ ଅତ୍ୟନ୍ତ ବିଶାଳ ଦେଖାଯାଉଥିଲା । ଦେହର ଲୁଗାକୁ ଟାଣିନେଲେ ଯେପରି ଖୋଲା ଦେହ ଦେଖାଯାଏ ସେହିପରି ହନୁମାନଙ୍କ ବେଗରେ ସମୁଦ୍ରର ପାଣି ଉଡ଼ିଯାଇ ତିମି, କୁମ୍ଭୀର, ମାଛ ଓ କଇଁଛ ସବୁ ଦେଖାଯାଉଥିଲେ । ମହାତେଜା ମହାକାୟ ମହାକପି ଉଡ଼ିଯାଉଥିବା ବେଳେ ପକ୍ଷଯୁକ୍ତ ପର୍ବତ ପରି ଶୋଭା ପାଉଥିଲେ ।

ହନୁମାନଙ୍କୁ ଦେଖି ଦେବତା, ଗନ୍ଧର୍ବ ଓ ବାନରମାନେ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ । ହନୁମାନଙ୍କୁ ଯେପରି କଷ୍ଟ ନ ହେବ, ରାମଙ୍କ କାର୍ଯ୍ୟସିଦ୍ଧି ପାଇଁ ତତ୍ପର ସୂର୍ଯ୍ୟଦେବତା ତାଙ୍କର ତେଜକୁ କମାଇଦେଲେ । ତାଙ୍କର ଶ୍ରମ ଦୂର କରିବାପାଇଁ ବାୟୁ ମନ୍ଦ ମନ୍ଦ ପ୍ରବାହିତ ହେଲେ । ସମୁଦ୍ର ଚିନ୍ତାକଲେ, ଇକ୍ଷ୍ୱାକୁ କୁଳଜାତ ସଗରପୁତ୍ରମାନେ ତାଙ୍କର ଅଭିବୃଦ୍ଧି ଘଟାଇଛନ୍ତି, ବର୍ତ୍ତମାନ ସେହି ଇକ୍ଷ୍ୱାକୁ ନାଥ ରାମଙ୍କୁ ସାହାଯ୍ୟ ନ କଲେ, ସମସ୍ତେ ମୋର ନିନ୍ଦା କରିବେ । ରାମଙ୍କ କାର୍ଯ୍ୟ କରୁଥିବା କପିବର ସାଗର ଲଂଘନ କରୁଛନ୍ତି, ତାଙ୍କୁ କଷ୍ଟ ନ ହେଉ ଏବଂ ସେ ବିଶ୍ରାମର ସୁବିଧା ପା'ନ୍ତୁ । ଏହା ଚିନ୍ତାକରି ଇନ୍ଦ୍ରଙ୍କ ଭୟରେ ସାଗର ଜଳରେ ଲୁଚିଥିବା ସୁବର୍ଣ୍ଣମୟ ମୈନାକ ପର୍ବତକୁ ସେ ଡାକି କହିଲେ – ମୈନାକ, ହନୁମାନ ଉପରେ ଉଡ଼ିଯାଉଛନ୍ତି, ତାଙ୍କର କ୍ଳାନ୍ତି ଦୂର କରିବାପାଇଁ ତୁମେ ଉପରକୁ ଉଠିଯାଅ, ସେ ତୁମର ଶିଖରରେ ବିଶ୍ରାମ କରନ୍ତୁ ।

ମୈନାକ ସଙ୍ଗେ ସଙ୍ଗେ ଉପରକୁ ଉଠିଗଲେ । ତାଙ୍କର ସୁବର୍ଣ୍ଣମୟ ଅତ୍ୟୁଚ୍ଚ ଶୃଙ୍ଗ ଉଦୟ ସୂର୍ଯ୍ୟର ତେଜପରି ପ୍ରତିଭାତ ହେଲା । ସମୁଦ୍ର ମଧ୍ୟରେ ଅକସ୍ମାତ୍ ଆଗରେ ଠିଆ ହୋଇଥିବା ଉଚ୍ଚ ପର୍ବତକୁ ଦେଖି ହନୁମାନ ଏହାକୁ ଏକ ବିଘ୍ନ ବୋଲି ମନେକଲେ ଏବଂ ନିଜର ଛାତିର ଧକ୍କାରେ ଶୃଙ୍ଗକୁ ଭାଙ୍ଗିଦେଲେ । ମୈନାକ ଏକ ମନୁଷ୍ୟ ରୂପ ଧାରଣ କରି ଶୃଙ୍ଗ ଉପରେ ଠିଆ ହୋଇଯାଇ କହିଲେ, କପିଶ୍ରେଷ୍ଠ ମୁଁ ମୈନାକ ଗିରି । ମୋର ଶୃଙ୍ଗକୁ ଭଗ୍ନକରି ତୁମେ ଅପୂର୍ବ ବଳ ଓ ପରାକ୍ରମ ଦେଖାଇଛ । କିନ୍ତୁ ମୁଁ ତୁମକୁ ବାଧା ଦେବାପାଇଁ

ଠିଆ ହୋଇ ନାହିଁ । ତୁମେ ଏହି ବିଶାଳ ସମୁଦ୍ର ଲଂଘନ କରୁଥିବା ଯୋଗୁଁ ଥକି ଯାଇଥିବ, ତୁମକୁ ବିଶ୍ରାମର ସୁବିଧା ଦେବାପାଇଁ ମୁଁ ସମୁଦ୍ରଜଳରୁ ଉପରକୁ ଉଠିଛି । ରାଘବ ରାମଙ୍କର ପୂର୍ବପୁରୁଷମାନେ ଏହି ସମୁଦ୍ରକୁ ବଢ଼ାଇଛନ୍ତି । ତୁମେ ସେହି ରାମଙ୍କର ମଙ୍ଗଳପାଇଁ ତତ୍ପର । ତେଣୁ ସାଗର ତୁମର ସତ୍କାର କରିବାପାଇଁ ଚାହାନ୍ତି । ତୁମେ ପୁଣି ବାୟୁଙ୍କର ପୁତ୍ର ଓ ତତ୍ତୁଲ୍ୟ ବେଗଗାମୀ । ମୋର ଜୀବନ ରକ୍ଷା କରିଥିବା ଯୋଗୁଁ ତୁମର ପିତାଙ୍କ ନିକଟରେ ମୁଁ କୃତଜ୍ଞ ।

ସେହି ସମ୍ପର୍କୀୟ ଘଟଣାକୁ ବର୍ଣ୍ଣନା କରି ମୈନାକ କହିଲେ, ସତ୍ୟଯୁଗରେ ପର୍ବତମାନଙ୍କର ପକ୍ଷ ଥିଲା । ସେମାନେ ଗରୁଡ଼ଙ୍କପରି ବେଗରେ ଉଡ଼ି ପାରୁଥିଲେ । କାଳେ ପର୍ବତମାନେ କାହା ଉପରେ ପଡ଼ିଯିବେ, ଦେବତା, ଋଷି ଓ ଅନ୍ୟ ପ୍ରାଣୀମାନେ ଭୟଭୀତ ହୋଇ ଇନ୍ଦ୍ରଙ୍କର ଶରଣାପନ୍ନ ହେଲେ । ଇନ୍ଦ୍ର ବଜ୍ରାଘାତରେ ପର୍ବତମାନଙ୍କର ପକ୍ଷଚ୍ଛେଦନ କରିବାକୁ ଲାଗିଲେ । ଯେତେବେଳେ ବଜ୍ରଧାରୀ ଇନ୍ଦ୍ର ମୋ' ଆଡ଼କୁ ଆସିଲେ, ସେତେବେଳେ ବାୟୁ ପ୍ରବଳ ବେଗରେ ମୋତେ ଉଡ଼ାଇ ନେଇ ସମୁଦ୍ରରେ ପକାଇଦେଲେ ଏବଂ ପକ୍ଷ ସହ ମୁଁ ବଂଚିଗଲି । ତେଣୁ ତୁମର ପିତା ମୋର ଯେଉଁ ଉପକାର କରିଛନ୍ତି, ମୁଁ ତାର ପ୍ରତ୍ୟୁପକାର କରିବାକୁ ଚାହେଁ । ମୋର ବୃକ୍ଷମାନଙ୍କରେ ବହୁ ସୁସ୍ୱାଦୁ ଫଳ ଅଛି । ବହୁ ସୁଗନ୍ଧିତ କନ୍ଦମୂଳ ମଧ୍ୟ ମୋର ଗଚ୍ଛିତ ଅଛି । ତୁମେ ଏହାକୁ ଆନନ୍ଦରେ ଭୋଜନ କରି କିଛି ସମୟ ବିଶ୍ରାମ କର ।

ହନୁମାନ କହିଲେ, ତୁମର ବାକ୍ୟରେ ମୁଁ ପ୍ରସନ୍ନ । ଏଥିରେ ହିଁ ମୋର ସତ୍କାର ହୋଇଯାଇଛି । ତୁମେ ମନୋଦୁଃଖ କର ନାହିଁ । ମୋତେ ଶୀଘ୍ର ମୋର କାର୍ଯ୍ୟ ସାଧନ କରିବାକୁ ହେବ । ଦିନ ଶେଷ ହେବାକୁ ବସିଛି । ମୁଁ ପ୍ରତିଜ୍ଞା କରିଛି ଯେ ବାଟରେ କେଉଁଠି ହେଲେ ବିଶ୍ରାମ କରିବି ନାହିଁ । ଏହା କହି ହନୁମାନ ସ୍ନେହରେ ହସ୍ତଦ୍ୱାରା ପର୍ବତକୁ ଅଭୟ ବର ଦାନ କଲେ । ସେ କହିଲେ – ମୈନାକ, ବର୍ତ୍ତମାନ ମୋ' ଠାରୁ ତୁମର କୌଣସି ଭୟର କାରଣ ନାହିଁ । ତୁମେ ନିଶ୍ଚିନ୍ତ ରହ । ରାମଙ୍କ କାର୍ଯ୍ୟରେ ଯାଉଥିବା ହନୁମାନଙ୍କର ତୁମେ ସତ୍କାର କଲ, ସେଥିପାଇଁ ତୁମ ଉପରେ ମୁଁ ସନ୍ତୁଷ୍ଟ ହୋଇଛି । ଇନ୍ଦ୍ରବରପ୍ରାପ୍ତ ମୈନାକ ହୃଷ୍ଟ ହୋଇ ସେହିଠାରେ ସ୍ଥିର ହୋଇ ରହିଲେ ।

ହନୁମାନ ବେଗରେ ଧାବିତ ହେଉଥିବାର ଦେଖି ଦେବତା, ଗନ୍ଧର୍ବ, ସିଦ୍ଧ, ମହର୍ଷିମାନେ ହନୁମାନଙ୍କୁ ପରୀକ୍ଷା କରିବାପାଇଁ ସୂର୍ଯ୍ୟପରି ପ୍ରଭାମୟୀ ନାଗମାତା ସୁରସାଙ୍କୁ ଡାକି କହିଲେ, ବାୟୁପୁତ୍ର ହନୁମାନ ସାଗର ଲଂଘନ କରୁଛନ୍ତି । ତୁମେ କରାଳଦନ୍ତଯୁକ୍ତ ଘୋର ରାକ୍ଷସୀ ରୂପ ଧାରଣ କରି ଏହାଙ୍କର ବିଘ୍ନ ଘଟାଅ । ଆମେ ତାଙ୍କ ବଳ ପରାକ୍ରମର ପରୀକ୍ଷା କରିବାକୁ ଚାହୁଁ । ସୁରସା ତତ୍କ୍ଷଣାତ୍ ସମୁଦ୍ର ମଧ୍ୟରେ ଏକ ଭୟଙ୍କର ରାକ୍ଷସୀରୂପ ଧାରଣ କରି ହନୁମାନଙ୍କର ପଥରୋଧ କରି କହିଲେ – ବାନର, ଦୈବପ୍ରେରିତ ଭୋଜନ ରୂପେ ତୁମେ ମିଳିଗଲ । ବର୍ତ୍ତମାନ ଶୀଘ୍ର ମୋର ମୁଖମଧ୍ୟରେ ପ୍ରବେଶ କର ।

ହନୁମାନ ହୃଷ୍ଟ ହୋଇ କହିଲେ, ରାମଙ୍କର ପତ୍ନୀ ସୀତା ରାବଣଦ୍ୱାରା ଅପହୃତା ହୋଇ ଲଙ୍କାରେ ରହୁଛନ୍ତି । ମୁଁ ତାଙ୍କର ଦୂତ । ତୁମେ ରାମଙ୍କ ରାଜ୍ୟରେ ବାସ କରୁଛ, ତେଣୁ ମୋତେ ସାହାଯ୍ୟ କର । ଯଦି ନିତାନ୍ତ ତୁମେ ମୋତେ ଖାଇବାକୁ ଚାହ, ତା' ହେଲେ ସୀତାଙ୍କୁ ରାମଙ୍କ ସହିତ ମିଳିତ କରାଇବା ପରେ ମୁଁ ତୁମର ମୁହଁ ପାଖକୁ ଆସିଯିବି । ଏହା ମୋର ସତ୍ୟ ପ୍ରତିଶ୍ରୁତି ।

କାମରୂପିଣୀ ସୁରସା ଉତ୍ତର ଦେଲେ, ମୋତେ ଏହି ବର ମିଳିଛି ଯେ ମୋତେ ଅତିକ୍ରମ କରି କେହି ଆଗକୁ ଯାଇପାରିବେ ନାହିଁ ।

ହନୁମାନ ଯିବାକୁ ଆରମ୍ଭ କରିବାରୁ ସୁରସା କହିଲେ – କପିଶ୍ରେଷ୍ଠ, ମୋର ମୁହଁରେ ପ୍ରବେଶ କର, ତା' ପରେ ଆଗକୁ ଯିବାର ଚିନ୍ତା କରିବ । ହନୁମାନ କ୍ରୁଦ୍ଧ ହୋଇ କହିଲେ, ମୋତେ ଯଦି ନେବାକୁ ଚାହ, ମୁହଁ ବଡ଼ କର । ସୁରସା ନିଜର ମୁହଁକୁ ଦଶ ଯୋଜନ ପର୍ଯ୍ୟନ୍ତ ବିସ୍ତାରିତ କଲେ । ହନୁମାନ ନିଜର ଶରୀରକୁ ସଙ୍ଗେ ସଙ୍ଗେ ଦଶ ଯୋଜନ ବଢ଼ାଇ ଦେଲେ । ସୁରସା ନିଜର ମୁହଁକୁ ବିଂଶ ଯୋଜନ କରିବାକ୍ଷଣି ହନୁମାନ ତିରିଶ ଯୋଜନ ବଢ଼ିଗଲେ । ଏହିପରି ସେମାନଙ୍କ ମଧ୍ୟରେ ପ୍ରତିଯୋଗିତା ଚାଲିଲା । ଶେଷକୁ ସୁରସା ନିଜର ମୁହଁକୁ ଶହେ ଯୋଜନ ପର୍ଯ୍ୟନ୍ତ ବିସ୍ତାରିତ କରିବାର ଦେଖି ହନୁମାନ ନିଜକୁ ବୁଢ଼ାଆଙ୍ଗୁଳି ପରି କ୍ଷୁଦ୍ରାତିକ୍ଷୁଦ୍ର କରିଦେଇ ତାଙ୍କ ମୁହଁ ମଧ୍ୟରେ ପଶିଯାଇ ମୁହୂର୍ତ୍ତକ ମଧ୍ୟରେ ବାହାରି ଆସିଲେ । ତା'ପରେ ଆକାଶରେ ଅବସ୍ଥାନ କରି କହିଲେ – ଦାକ୍ଷାୟଣୀ, ତୁମକୁ ନମସ୍କାର କରୁଛି । ତୁମେ ମୁହଁରେ ପଶିବା ପାଇଁ କହିଥିଲ । ମୁଁ ତୁମ ମୁହଁରେ ପଶି ବାହାରିଆସିଲି । ବର୍ତ୍ତମାନ ବୈଦେହୀ ଯେଉଁଠି ଅଛନ୍ତି ସେଠାକୁ ଯିବାକୁ ମୋତେ ଅନୁମତି ଦିଅ ।

ରାହୁମୁଖରୁ ଚନ୍ଦ୍ର ମୁକ୍ତ ହେବାପରି ନିଜର ମୁଖମୁକ୍ତ ହନୁମାନଙ୍କୁ ନାଗମାତା ସୁରସା ନିଜରୂପ ଧାରଣ କରି କହିଲେ, ରାମଙ୍କ କାର୍ଯ୍ୟସିଦ୍ଧି ପାଇଁ ଶୀଘ୍ର ଯାତ୍ରାକର । ସୌମ୍ୟ, ଶୀଘ୍ର ବିଦେହରାଜନନ୍ଦିନୀ ଯେପରି ରାମଙ୍କ ସହିତ ମିଳିତ ହୁଅନ୍ତି, ତାର ବ୍ୟବସ୍ଥା କର ।

ହନୁମାନଙ୍କର ଦୁଷ୍କର କାର୍ଯ୍ୟ ଦେଖି ସମସ୍ତ ପ୍ରାଣୀ ତାଙ୍କୁ ସାଧୁ ସାଧୁ ବୋଲି କହିବାକୁ ଲାଗିଲେ । ହନୁମାନ ଆହୁରି ଦ୍ରୁତ ବେଗରେ ଆକାଶରେ ଦେବଗନ୍ଧର୍ବସେବିତ ବାୟୁପଥରେ ଗତି କରିବାବେଳେ ପୁଣି ଏକ ବିଘ୍ନର ସମ୍ମୁଖୀନ ହେଲେ ।

ସିଂହିକା ନାମରେ ଏକ ରାକ୍ଷସୀ ସମୁଦ୍ରରେ ରହୁଥିଲା । ବୃଦ୍ଧା କାମରୂପିଣୀ ରାକ୍ଷସୀ ହନୁମାନଙ୍କୁ ଉଡ଼ିଯାଉଥିବାର ଦେଖି ଭାବିଲା, ଆଜି ବହୁଦିନ ପରେ ମୋତେ ଭୋଜନ ମିଳିଗଲା । ଏପରି ବିଶାଳ ଜୀବ ସହଜରେ ମିଳେ ନାହିଁ । ସିଂହିକାର ଏକ ଅଦ୍‌ଭୁତ ଶକ୍ତି ଥିଲା । ଜଳ ଉପରେ କୌଣସି ପ୍ରାଣୀର ଛାଇକୁ ଦେଖିଲେ ସେହି ଛାଇ ଦ୍ୱାରା ସେ ତାକୁ ଧରି ନେଉଥିଲା । ସିଂହିକା ହନୁମାନଙ୍କର ଛାୟାକୁ ଧରିପକାଇବା ମାତ୍ରେ ହନୁମାନଙ୍କ ଗତି ରୁଦ୍ଧ ହୋଇଗଲା । ସେ ଅନୁଭବ କଲେ ତାଙ୍କୁ କିଏ ତଳକୁ ଟାଣିନେଉଛି । ସେ ଭାବିଲେ କାହାର ଏପରି ଶକ୍ତି ଅଛି ଯେ ଧରିବାମାତ୍ରେ ମୋର ସମସ୍ତ ବଳ ଓ ପରାକ୍ରମ ପଙ୍ଗୁ ହୋଇଯାଉଛି । ପ୍ରବଳ ପ୍ରତିକୂଳ ପବନରେ ସମୁଦ୍ର ମଧ୍ୟରେ ଜାହାଜର ଗତି ଅବରୁଦ୍ଧ

ହେବାପରି ମୋର ଅବସ୍ଥା ହୋଇଛି । ହନୁମାନ ଉପର ତଳ ଓ ଏକଡ଼ ସେକଡ଼ ଚାରିଆଡ଼କୁ ଦୃଷ୍ଟି ପକାଇଲେ । ସେ ଦେଖିଲେ, ସମୁଦ୍ର ଜଳରୁ ଏକ ବିଶାଳ ପ୍ରାଣୀ ଉଠି ତାଙ୍କ ଆଗରେ ଠିଆ ହେବାକୁ ଯାଉଛି । ବାନରରାଜ ସୁଗ୍ରୀବ ସମୁଦ୍ର ମଧ୍ୟରେ ଏକ ଛାୟାଗ୍ରାହୀ ଅଦ୍‌ଭୁତ ଜୀବର କଥା ଯାହା କହିଥିଲେ, ଏହି ବିକଟାଳ ରାକ୍ଷସୀକୁ ଦେଖି ତାହା ତାଙ୍କର ମନେପଡ଼ିଲା । ସେ ସଙ୍ଗେ ସଙ୍ଗେ ବର୍ଷାକାଳୀନ ମେଘପରି ନିଜର ଶରୀରକୁ ବୃଦ୍ଧି କରିବାକୁ ଲାଗିଲେ । ସିଂହିକା ତାହା ଦେଖି ପାତାଳରୁ ଆକାଶ ପର୍ଯ୍ୟନ୍ତ ନିଜର ମୁହଁକୁ ବଢ଼ାଇଦେଇ ତାଙ୍କୁ ଗିଳିବା ପାଇଁ ଦଉଡ଼ି ଆସିଲା । ବୁଦ୍ଧିମାନ୍ ବାୟୁପୁତ୍ର ତତ୍‌କ୍ଷଣାତ୍ ନିଜର ଶରୀରକୁ ଅତିଶୟ କ୍ଷୁଦ୍ର କରି ତା' ମୁହଁ ମଧ୍ୟରେ ପଶିଗଲେ । ସେ ନିଜର ତୀକ୍ଷ୍ଣ ନଖରେ ତାର ମର୍ମସ୍ଥଳକୁ ଛିନ୍ନଭିନ୍ନ କରି ରାକ୍ଷସୀକୁ ନିହତ କଲେ ଏବଂ ତାର ଦେହକୁ ବିଦାରଣ କରି ବାହାରି ଆସିଲେ । ନିଜର ବୁଦ୍ଧି, ଧୈର୍ଯ୍ୟ, ଚତୁରତା ଏବଂ ଦୈବଅନୁଗ୍ରହ ବଳରେ ହନୁମାନ ରାକ୍ଷସୀକୁ ନିହତ କରି ରାହୁମୁକ୍ତ ଚନ୍ଦ୍ରମାପରି ଦେଖାଗଲେ । ଆକାଶଚାରୀଗଣ ହନୁମାନଙ୍କର ପ୍ରଶଂସା କରି କହିଲେ – ବାନରେନ୍ଦ୍ର, ବର୍ତ୍ତମାନ ତୁମେ ନିଷ୍କଣ୍ଟକ ହୋଇ ନିଜର କାର୍ଯ୍ୟ ସାଧନ କର ।

ମହାବେଗରେ ହନୁମାନ ଶତ ଯୋଜନ ଅତିକ୍ରମ କରି ସମୁଦ୍ରର ଅପର ପାରରେ ପହଞ୍ଚିଲେ । ଲଙ୍କାର ରମଣୀୟ ବନରାଜି ତାଙ୍କର ଦୃଷ୍ଟିଗୋଚର ହେଲା । ଲଙ୍କାର ଉପକୂଳସ୍ଥ ମଳୟପର୍ବତ, ବୃକ୍ଷ ଉପବନ, ସାଗରରେ ନଦନଦୀଙ୍କର ସଙ୍ଗମସ୍ଥଳ ସେ ଦେଖିବାକୁ ପାଇଲେ । ସେ ମନେକଲେ, ଏପରି ବିଶାଳ ଶରୀର ଧାରଣ କରି ସେ ଯଦି ମହାବେଗରେ ଲଙ୍କାରେ ପ୍ରବେଶ କରନ୍ତି, ତା' ହେଲେ ରାକ୍ଷସମାନଙ୍କର କୌତୂହଳ ସୃଷ୍ଟି ହେବ । ବାମନ ସର୍ବବ୍ୟାପୀ ତ୍ରିବିକ୍ରମ ରୂପ ଧାରଣ କରି ପୁଣି ଯେପରି ନିଜର ବାମନରୂପକୁ ଫେରିଆସିଥିଲେ, ହନୁମାନ ସେହିପରି ମେଘସଦୃଶ ପର୍ବତାକାର ରୂପକୁ ପରିତ୍ୟାଗ କରି ନିଜର ପ୍ରକୃତ ରୂପକୁ ଫେରିଆସିଲେ । କେତକୀ ନାରୀକେଳଶୋଭିତ ଲମ୍ବ ନାମକ ପର୍ବତରେ ଓହ୍ଲାଇ ସେ ଅମରାବତୀ ସଦୃଶ ସୁରମ୍ୟ ଲଙ୍କାପୁରୀର ଶୋଭା ଦେଖିବାକୁ ଲାଗିଲେ ।

## ୭୭ ।। ଲଙ୍କାପୁରୀରେ ହନୁମାନ

ହନୁମାନ ତ୍ରିକୂଟ ପର୍ବତ (ଲମ୍ବ) ଉପରୁ ରାବଣର ଲଙ୍କାପୁରୀକୁ ଦେଖି ବିସ୍ମିତ ହେଲେ । ଉଚ୍ଚ ପାର୍ବତ୍ୟ ମାଳଭୂମି ଉପରେ ଅବସ୍ଥିତ ଲଙ୍କା ବହୁ ରମଣୀୟ ବନ ଉପବନରେ ପୂର୍ଣ୍ଣ ଥିଲା । କଦମ୍ବ, କରବୀର, ଖର୍ଜୁର, କର୍ଣ୍ଣିକାର, କୁଟଜ, କେତକୀ, ପ୍ରିୟଙ୍ଗୁ ଆଦି ପୁଷ୍ପିତ ବୃକ୍ଷମାନେ ପକ୍ଷୀମାନଙ୍କଦ୍ୱାରା ମଣ୍ଡିତ ଓ ପବନରେ ଚାଳିତ ହୋଇ ସୁନ୍ଦର ଦେଖାଯାଉଥିଲେ । ହଂସକାରଣ୍ଡବସମାକୀର୍ଣ୍ଣ ପଦ୍ମଉତ୍ପଳଶୋଭିତ ବହୁ ରମଣୀୟ ସରୋବର, ଉଦ୍ୟାନ ଓ କ୍ରୀଡ଼ାଭୂମି ଲଙ୍କାର ଶୋଭାବର୍ଦ୍ଧନ କରୁଥିଲା । ଲଙ୍କାର ଚାରିପଟେ ବହୁ ଜଳପୂର୍ଣ୍ଣ ପରିଖା ଓ ଉତ୍ତୁଙ୍ଗ ପ୍ରାଚୀର ଭୟଙ୍କର ଧନୁର୍ଦ୍ଧାରୀ ରାକ୍ଷସମାନଙ୍କ

ଦ୍ୱାରା ସୁରକ୍ଷିତ ହୋଇ ରହିଥିଲା । ଶତ ଶତ ସୌଧ ଓ ଅଟ୍ଟାଳିକା ଶାରଦୀୟ ମେଘର ଶୁଭ୍ରବର୍ଣ୍ଣ ଧାରଣ କରି ଆକାଶକୁ ଚୁମ୍ବନ କରୁଥିଲା । ବୃକ୍ଷମାନଙ୍କରୁ ପୁଷ୍ପମାନ ପଡ଼ି ଏହାର ଶୁଭ୍ରବର୍ଣ୍ଣ ଉଚ୍ଚ ସଡ଼କ ସବୁ ପୁଷ୍ପମୟ ଦେଖାଯାଉଥିଲା । କାଞ୍ଚନମୟ ତୋରଣ ଶୋଭିତ ବିଶ୍ୱକର୍ମାନିର୍ମିତ ଲଙ୍କାପୁରୀର ଗଗନଚୁମ୍ବୀ ଉତ୍ତରଦ୍ୱାରରେ ପହଞ୍ଚି ବାନରବୀର ଚିନ୍ତା କଲେ, ସମୁଦ୍ର ବେଷ୍ଟିତ ସୁରକ୍ଷିତ ଲଙ୍କାପୁରୀକୁ ଦେବତାମାନେ ମଧ୍ୟ ଜୟ କରିପାରିବେ ନାହିଁ । ବାନରମାନଙ୍କ ସହିତ ରାମ ଏଠାକୁ ଯଦିବା ଆସନ୍ତି, କ'ଣ କରିପାରିବେ ? ଅବଶ୍ୟ ଏହା ପରର କଥା । ପ୍ରଥମେ ଜନକନନ୍ଦିନୀ ଜୀବିତ ଅଛନ୍ତି କି ନାହିଁ, ଦେଖିବାକୁ ହେବ ୍। ସେଥିପାଇଁ କାହାରି ଦୃଷ୍ଟିରେ ନ ପଡ଼ି ଛଦ୍ମରୂପରେ କାର୍ଯ୍ୟ ସାଧନ କରିବାକୁ ହେବ ବୋଲି ସେ ଚିନ୍ତା କଲେ ।

ସନ୍ଧ୍ୟା ହେବା ପରେ ହନୁମାନ ନିଜର କଳେବରକୁ ବିରାଡ଼ିପରି ଛୋଟ କରି ଦେଇ ଲଙ୍କାପୁରୀରେ ପ୍ରବେଶ କଲେ ଓ ପ୍ରାସାଦମାନଙ୍କର ସୌନ୍ଦର୍ଯ୍ୟ ଦେଖିବାକୁ ଲାଗିଲେ । ସାତତାଲା ଆଠତାଲା କୋଠାମାନଙ୍କରେ ସୁନାର ଖମ୍ବ, ହୀରାନୀଳାରେ ପାହାଚ ଓ ମୁକ୍ତାଜାଲି ଦିଆଯାଇଥିବା ଝରକାମାନ ଶୋଭା ପାଉଥିଲା । ସମୁଦ୍ରର ଶୀତଳ ବାୟୁରେ କିଙ୍କିଣୀର ଧ୍ୱନି ଭାସି ଆସୁଥିଲା । ମୟୂର ଓ ରାଜହଂସମାନେ କଳରବ କରୁଥିଲେ । କୋଠାମାନଙ୍କରେ ସୁନ୍ଦର ପତାକାମାନ ଉଡୁଥିଲା । ବିଦ୍ୟୁତ୍ ପ୍ରଦୀପମାନଙ୍କ ଦ୍ୱାରା ନଗରୀ ଆଲୋକିତ ହେଉଥିଲା । କ୍ଷୁଦ୍ରବାନରରୂପରେ ଯାଉଥିବା ହନୁମାନଙ୍କୁ କେହି ଦେଖିପାରିଲେ ନାହିଁ । କିନ୍ତୁ ଲଙ୍କାଦେବୀ (ଲଙ୍କାର ରକ୍ଷାକର୍ତ୍ତ୍ରୀ) ତାଙ୍କୁ ଦେଖିପାରିଲେ । ସେ ସହସା ତାଙ୍କ ଆଗରେ ଠିଆ ହୋଇ ଗର୍ଜନ କରି କହିଲେ, ବାନର, ତୁ କିଏ, କାହିଁକି ଏ ଅଭେଦ୍ୟ ଲଙ୍କାପୁରୀରେ ପ୍ରବେଶ କରିଛୁ ? ଯଦି ପ୍ରାଣକୁ ଭୟ ଥାଏ, ଠିକ୍ ଠିକ୍ କହ । ହନୁମାନ କହିଲେ ମୁଁ ତୁମର ପ୍ରଶ୍ନର ଉତ୍ତର ଦେବି । କିନ୍ତୁ ହେ ଦାରୁଣ ବିରୂପନୟନା, ପ୍ରଥମେ ତୁମେ କିଏ ମୋତେ କହ, କାହିଁକି ଏ ପୁରଦ୍ୱାରରେ ରହି ମୋତେ କ୍ରୋଧରେ ଭର୍ତ୍ସନା କରୁଛ ? କାମରୂପିଣୀ କଠୋର ସ୍ୱରରେ କହିଲେ, ମୁଁ ସ୍ୱୟଂ ଲଙ୍କାଦେବୀ । ରାକ୍ଷସରାଜ ରାବଣଙ୍କର ଆଦେଶ ପାଳନ କରୁଛି । ସେ ମୋତେ ଲଙ୍କାକୁ ରକ୍ଷା କରିବାର ଭାର ଦେଇଛନ୍ତି । ମୋତେ ଅବଜ୍ଞା କରି କେହି ଲଙ୍କାରେ ପ୍ରବେଶ କରି ପାରିବେ ନାହିଁ । ବାନର, ଶୀଘ୍ର ଫେରିଯା, ନଚେତ୍ ମୋ ଦ୍ୱାରା ନିହତ ହୋଇ ଏଇଠି ପଡ଼ି ରହିବୁ ।

ରାକ୍ଷସୀର ବିକଟାଳ ରୂପ ଦେଖି ବୁଦ୍ଧିମାନ ବାନରଶ୍ରେଷ୍ଠ କହିଲେ, ମୁଁ ଏହି ରମଣୀୟ ଲଙ୍କାପୁରୀକୁ ଦେଖିବାକୁ ଆସିଛି । ଏହାର ତୋରଣ, ପ୍ରାଚୀର, ଅଟ୍ଟାଳିକା ଆଦି ମୋର କୌତୂହଳ ସୃଷ୍ଟି କରିଛି । କାମରୂପିଣୀ ଲଙ୍କା କହିଲେ – ଦୁର୍ବୁଦ୍ଧି, ମୂର୍ଖ, ମୋତେ ଜୟ ନ କରି ତୁ ରାବଣପାଳିତ ଲଙ୍କାପୁରୀକୁ ଦେଖିପାରିବୁ ନାହିଁ । ହନୁମାନ ଉତ୍ତର ଦେଲେ – ଭଦ୍ରେ, ଏହି ନଗରୀକୁ ଦେଖିସାରିବା ପରେ ମୁଁ ଯେପରି ଆସିଛି, ସେହିପରି ଚାଲିଯିବି । ଲଙ୍କାଦେବୀ କିଛି ନ ଶୁଣି ହନୁମାନଙ୍କୁ ଜୋରରେ ଏକ ଚାପୁଡ଼ା ମାରିଲେ । ହନୁମାନ ଅତ୍ୟନ୍ତ କ୍ରୁଦ୍ଧ ହେଲେ । ମାତ୍ର ସ୍ତ୍ରୀଲୋକ ବୋଲି ବିଚାର କରି ବାମ ମୁଷ୍ଟିରେ ଏକ ମୃଦୁ ପ୍ରହାର ଦେଲେ । ସେତିକିରେ ବିକଟଦର୍ଶନା ଲଙ୍କଦେବୀ ଭୂପାତିତ ହେଲେ । ଶୀଘ୍ର

ତାଙ୍କର ମୋହ ଭଙ୍ଗ ହେଲା । ସେ ବ୍ୟଥିତ ହୋଇ ବିନୀତ ସ୍ୱରରେ କହିଲେ – ବାନରୋତ୍ତମ, ପ୍ରସନ୍ନ ହୁଅ । ବୀରମାନେ କେବେ ମର୍ଯ୍ୟାଦା ଲଂଘନ କରନ୍ତି ନାହିଁ । ମୋତେ ତୁମେ ରକ୍ଷା କର । ସୌମ୍ୟ, ମୁଁ ତୁମଦ୍ୱାରା ପରାସ୍ତ ହେଲି ଓ ବ୍ରହ୍ମାଙ୍କର ବାକ୍ୟ ସତ୍ୟ ହେଲା । ପୂର୍ବେ ସେ ମୋତେ କହିଥିଲେ ଯେ କୌଣସି ବାନର ଯଦି ତୁମକୁ ପରାସ୍ତ କରେ, ତା' ହେଲେ ରାକ୍ଷସମାନଙ୍କର ଭୟର ସମୟ ଆସିଗଲା ବୋଲି ଜାଣିବ । ସୀତାଙ୍କୁ ଅପହରଣ କରିଥିବା ଯୋଗୁଁ ଦୁରାତ୍ମା ରାବଣ ଓ ରାକ୍ଷସମାନଙ୍କର ବିନାଶର ବେଳ ଆସିଗଲା । କପିଶ୍ରେଷ୍ଠ, ତୁମେ ରାବଣପାଳିତ ଲଙ୍କାପୁରୀରେ ପ୍ରବେଶ କରି ଯାହା ଯାହା ତୁମର କରିବାର କଥା ସ୍ୱଚ୍ଛନ୍ଦରେ କର । ଲଙ୍କା ବର୍ତ୍ତମାନ ଅଭିଶପ୍ତ ଓ ନଷ୍ଟପ୍ରାୟ । ତୁମେ ଜନକନନ୍ଦିନୀ ସୀତାଙ୍କୁ ସ୍ୱେଚ୍ଛାରେ ଅନ୍ୱେଷଣ କର ।

## ୭୮ ।। ହନୁମାନଙ୍କ ନୈରାଶ୍ୟ

ମହାବଳୀ ହନୁମାନ ଅଜ୍ଞାତ ରହିବା ପାଇଁ କୌଣସି ଦ୍ୱାର ବାଟରେ ଲଙ୍କାନଗରୀକୁ ପ୍ରବେଶ ନ କରି ପ୍ରାଚୀରକୁ ଡେଇଁ ନଗରୀରେ ପ୍ରବେଶ କଲେ ଏବଂ ନିଜର ବାମ ପାଦକୁ ଆଗରେ ରଖି ଶତ୍ରୁର ମସ୍ତକ ଉପରେ ପାଦ ରଖୁଛନ୍ତି ବୋଲି ମନେକଲେ । ଜ୍ୟୋତ୍ସ୍ନାଧୌତ ରାତ୍ରିରେ ଝରାପୁଷ୍ପ ଶୋଭିତ ରାଜପଥ ଉପରେ ଚାଲି ଚାଲି ସେ ରମଣୀୟ ଲଙ୍କାନଗରୀକୁ ଦେଖିବାକୁ ଲାଗିଲେ । ତୂରୀ ଧ୍ୱନି ଓ ହାସ୍ୟରୋଳରେ ଲଙ୍କା ଉତ୍ସବମୁଖର ଜଣାଯାଉଥିଲା । ପଦ୍ମ ଓ ସ୍ୱସ୍ତିକଚିହ୍ନିତ ଉଚ୍ଚ ସୌଧମାଳା ବିଚିତ୍ର ମାଲ୍ୟ ଓ ଅଳଙ୍କାର ଦ୍ୱାରା ଶୋଭା ପାଉଥିଲା । ଉତ୍କୃଷ୍ଟ ସଙ୍ଗୀତର ମୂର୍ଚ୍ଛନା, ନାରୀମାନଙ୍କର ନୂପୁରର ନିକ୍ୱଣ, କେଉଁଠି କେଉଁଠି ବେଦଧ୍ୱନି, ମନ୍ତ୍ର ଜପ ଏବଂ ସ୍ଥାନେ ସ୍ଥାନେ ଯୋଦ୍ଧାମାନଙ୍କର ବାହୁସ୍ଫୋଟ ଓ ସିଂହନାଦ ଶୁଣାଯାଉଥିଲା । କେହି କେହି ରାବଣର ଗୌରବ ଗାଥା ମଧ୍ୟ ବର୍ଣ୍ଣନା କରୁଥିଲେ । ନଗରୀର ଏକ ପ୍ରଧାନ ସ୍ଥାନରେ ସେ ଗୁପ୍ତଚରମାନଙ୍କର ନିବାସସ୍ଥଳ ଦେଖିବାକୁ ପାଇଲେ । ସେମାନେ ଲଣ୍ଡିତମସ୍ତକ ଓ ଜଟାଧାରୀ ହୋଇ ମୃଗଚର୍ମ ପରିଧାନ କରିଥିଲେ ଓ ହାତରେ କୁଶ ଧରି ଅଗ୍ନିକୁଣ୍ଡ ନିକଟରେ ବସିଥିଲେ । ଧନୁ, ଖଡ୍‌ଗ, ଶତଘ୍ନୀ ଆଦି ଆୟୁଧ ଧରି ବହୁ ଆକାର, ବର୍ଣ୍ଣ, ରୂପ ଓ ତେଜର ରାକ୍ଷସମାନେ ଲଙ୍କାକୁ ରକ୍ଷା କରୁଥିଲେ ।

ଚନ୍ଦ୍ରୋଦୟରେ ସୁନ୍ଦର ଲଙ୍କାରେ ସେ ରାକ୍ଷସବୀରମାନଙ୍କର ପ୍ରାସାଦର ଐଶ୍ୱର୍ଯ୍ୟ ଓ ସେମାନଙ୍କର ବିଳାସପୂର୍ଣ୍ଣ ଜୀବନ ଦର୍ଶନ କଲେ । ସୁନ୍ଦରୀ ଲଳନାମାନେ ସ୍ୱାମୀମାନଙ୍କ ସହିତ ଆନନ୍ଦରେ କ୍ରୀଡ଼ାରତ ଥିଲେ । କେହି କେହି ହେମାଙ୍ଗୀ ତରୁଣୀ ସ୍ୱାମୀର ବିରହରେ ଦେହରୁ ଅଳଙ୍କାର କାଢ଼ିଦେଇ ଦୁଃଖରେ ମୌନ ହୋଇ ବସି ରହିଥିଲେ । ସୁନ୍ଦର ପ୍ରାସାଦମାନଙ୍କ ମଧ୍ୟରେ ସେ ବହୁ ଅନିନ୍ଦ୍ୟସୁନ୍ଦରୀ ନାରୀଙ୍କୁ ଦେଖିଲେ । କିନ୍ତୁ ପତିବିରହବିଧୁରା ବୈଦେହୀଙ୍କୁ ଦେଖିଲେ ନାହିଁ ।

ହନୁମାନ ଇଚ୍ଛାନୁସାରେ ଯେକୌଣସି ରୂପ ଗ୍ରହଣ କରିପାରୁଥିଲେ । ସେ କ୍ଷିପ୍ର ଗତିରେ ବିଭିନ୍ନ ଗୃହ ଓ ପ୍ରାସାଦ ମଧ୍ୟରେ ପ୍ରବେଶ କରି ସୀତାଙ୍କୁ ଖୋଜିବାକୁ ଲାଗିଲେ । ଏହି ସମୟରେ ସୁବର୍ଣ୍ଣବର୍ଣ୍ଣ ପାଚେରିରେ ଘେରା ଏକ ବିଶାଳ ପ୍ରାସାଦ ମଧ୍ୟରେ ସେ ପ୍ରବେଶ କଲେ । ଅଶ୍ୱାରୋହୀ ଓ ଗଜାରୋହୀ ବୀରମାନେ ଏହାକୁ ଜଗି ରହିଥିଲେ । ଏହାର ତୋରଣମାନ ରୌପ୍ୟ ନିର୍ମିତ ଓ ସୁବର୍ଣ୍ଣ ଖଚିତ । ସୁନ୍ଦର ସୁଦୃଶ୍ୟ ମୃଗପକ୍ଷୀମାନେ ସେହି ପ୍ରାସାଦ ମଧ୍ୟରେ ରହୁଥିଲେ । ଏହା ରାକ୍ଷସରାଜ ରାବଣର ପ୍ରାସାଦ ବୋଲି ତାଙ୍କର ସନ୍ଦେହ ରହିଲା ନାହିଁ । ଲଙ୍କାନଗରୀର ଅଳଙ୍କାରସ୍ୱରୂପ ସେହି ପ୍ରାସାଦର ବିଭିନ୍ନ କକ୍ଷ ଓ ଉଦ୍ୟାନ ମଧ୍ୟରେ ସେ ବିଚରଣ କରିବାକୁ ଲାଗିଲେ । ରାବଣର ଶୟନକକ୍ଷକୁ ସଶସ୍ତ୍ର ରାକ୍ଷସୀମାନେ ଜଗି ରହିଥିଲେ । ପ୍ରାସାଦ ମଧ୍ୟରେ ବହୁ ପ୍ରମୋଦ ଓ ବିହାର ଗୃହମାନ ଥିଲା । ସେହି ଗୃହମାନଙ୍କର ଅନୁପମ ସାଜସଜ୍ଜା, ଐଶ୍ୱର୍ଯ୍ୟ ଓ ସୌନ୍ଦର୍ଯ୍ୟ ବାନରବୀରଙ୍କୁ ଚମତ୍କୃତ କଲା । ସ୍ୱର୍ଣ୍ଣ, ରୌପ୍ୟ, ପ୍ରବାଳ ଓ ବୈଦୂର୍ଯ୍ୟରେ ନିର୍ମିତ ରାବଣର ପୁଷ୍ପକବିମାନ ଦେଖି ସେ ବିସ୍ମିତ ହେଲେ । ରାବଣ ନିଜର ପରାକ୍ରମ ବଳରେ ଏହି ବିମାନକୁ କୁବେରଙ୍କଠାରୁ ଅର୍ଜନ କରିଥିଲା ଓ ଏହାରି ସାହାଯ୍ୟରେ ଯେଉଁ ସ୍ଥାନକୁ ଚାହୁଥିଲା, ଶୂନ୍ୟପଥରେ ଯାତ୍ରା କରିପାରୁଥିଲା । ମଣିମୟ ଦୀପମାନଙ୍କ ଦ୍ୱାରା ଆଲୋକିତ, ବିଭିନ୍ନ ମନୋହର ଗନ୍ଧରେ ସୁବାସିତ ରାବଣର ସୁସଜ୍ଜିତ କକ୍ଷରେ ହନୁମାନ ପ୍ରାୟ ନିଶାର୍ଦ୍ଧ କାଳରେ ପ୍ରବେଶ କଲେ । ବିଭିନ୍ନ ରଙ୍ଗର ମାଳା, ମନୋହର ବସ୍ତ୍ର ଓ ଅଳଙ୍କାରମାନ ପରିଧାନ କରି ବହୁ ସୁନ୍ଦରୀ ରମଣୀ ମଦ୍ୟପାନର ନିଶାରେ ଶୋଇପଡ଼ିଥିଲେ । ଶୋଇବା ଦ୍ୱାରା ସେମାନଙ୍କର ଅଳଙ୍କାର ଝଙ୍କାର ବନ୍ଦ ହୋଇଯିବାରୁ ରାବଣର ଅନ୍ତଃପୁର ଭ୍ରମର ଓ ହଂସ ଧ୍ୱନିରହିତ ଏକ ବିଶାଳ ପଦ୍ମବନ ପରି ଦେଖାଗଲା । ବରାଙ୍ଗନାମାନଙ୍କ ମଧ୍ୟରେ ସୁପ୍ତ ରାବଣ ନକ୍ଷତ୍ର ପରିବୃତ ଚନ୍ଦ୍ରମାପରି ଶୋଭା ପାଉଥିଲା । ମାଦକତା ଓ ପତିପ୍ରେମବଶବର୍ତ୍ତିନୀ ରମଣୀମାନେ ପରସ୍ପର ଛନ୍ଦାଛନ୍ଦି ହୋଇ ଶୋଇ ରହିଥିଲେ । ରାଜର୍ଷି, ବ୍ରାହ୍ମଣ, ଦୈତ୍ୟ, ଦାନବ, ଗନ୍ଧର୍ବ କନ୍ୟାମାନଙ୍କୁ ବିଭିନ୍ନ ସମୟରେ ବିବାହ କରି ରାବଣ ଲଙ୍କାକୁ ଆଣିଥିଲା । ସେମାନେ ରାବଣକୁ ଭଜନା କରି ତାର ଅନ୍ତଃପୁରର ଶୋଭାବର୍ଦ୍ଧନ କରୁଥିଲେ ।

ହନୁମାନ ଦେଖିଲେ ହସ୍ତୀଦନ୍ତ ଓ ସୁବର୍ଣ୍ଣପାଦଯୁକ୍ତ ବୈଦୂର୍ଯ୍ୟନିର୍ମିତ ଏକ ସୁନ୍ଦର ପଲଙ୍କ ଉପରେ ରାବଣ ଶୟନ କରିଛି । ରାବଣର ରଙ୍ଗ କୃଷ୍ଣ ମେଘବର୍ଣ୍ଣ, ତାର ଚକ୍ଷୁ ଲୋହିତ, ବକ୍ଷ ବିଶାଳ, ବାହୁଯୁଗଳ ଦୀର୍ଘ ଓ ସୁଗଠିତ । ସେ କାଞ୍ଚନସୂତ୍ରରେ ବୟନ କରାଯାଇଥିବା ଏକ ବସ୍ତ୍ର ପରିଧାନ କରିଥିଲା । ଚନ୍ଦନଚର୍ଚ୍ଚିତ ହୋଇ ସନ୍ଧ୍ୟାରାଗରେ ଅରୁଣବର୍ଣ୍ଣ ତଡ଼ିତ୍‌ଯୁକ୍ତ ଜଳଦ ପରି ସେ ଦେଖାଯାଉଥିଲା । ରାବଣର ଭୀମକାନ୍ତ ରୂପ ଦେଖି ହନୁମାନ ଭୀତ ଓ ଉଦ୍‌ବିଗ୍ନ ହେଲେ । ରାବଣର କକ୍ଷରେ ଏକ ପୃଥକ୍ ଶଯ୍ୟାରେ ଜଣେ ରୂପବତୀ ରମଣୀକୁ ସେ ଶୋଇଥିବାର ଦେଖିଲେ । ସେହି କନକଗୌରକାନ୍ତି ସୁନ୍ଦରୀ ନିଜର ରୂପରେ ସମସ୍ତ କକ୍ଷକୁ ପ୍ରଭାମୟ କରୁଥିବା ପରି ମନେହେଲା । ପବନନନ୍ଦନ

ସର୍ବାଳଙ୍କାରଯୁକ୍ତା ସେହି ରମଣୀର ଅନୁପମ ରୂପଲାବଣ୍ୟ ଦେଖି ମନେକଲେ, ସେ ନିଶ୍ଚୟ ସୀତା ହୋଇଥିବେ । ସେ ନିଜର ଲାଙ୍ଗୁଳକୁ ଚୁମ୍ବନ କରି ଆନନ୍ଦରେ ନାଚିଉଠିଲେ । ସ୍ତମ୍ଭ ଉପରକୁ ଚଢ଼ିଯାଇ ପୁଣି ତଳକୁ ଡେଇଁପଡ଼ିଲେ । ଏହିପରି ନିଜର ବାନର ସ୍ୱଭାବ ଦ୍ୱାରା ସେ ତାଙ୍କର ଆନନ୍ଦ ପ୍ରକାଶ କରିବାକୁ ଲାଗିଲେ ।

କିନ୍ତୁ ପରମୁହୂର୍ତ୍ତରେ ତାଙ୍କର ସେହି ଧାରଣା ଦୂର ହୋଇଗଲା । ସେ ନିଜକୁ କହିଲେ, ରାମବିରହିଣୀ ସୀତା କେବେ ଶୟନ, ଭୋଜନ, ଆଭରଣ ବା ମଦ୍ୟପାନରେ ଆସକ୍ତ ହେବା ସମ୍ଭବ ନୁହେଁ । ଦେବେନ୍ଦ୍ର ହେଲେ ମଧ୍ୟ ସେ କୌଣସି ପରପୁରୁଷର ଉପାସନା କରିବେ ନାହିଁ । ରାବଣର ପ୍ରିୟ ପତ୍ନୀ ମନ୍ଦୋଦରୀକୁ ଦେଖି ହନୁମାନଙ୍କର ଯେଉଁ ବିଭ୍ରମ ହୋଇଥିଲା, ତାହା ଏହିପରି ମୁହୂର୍ତ୍ତକ ମଧ୍ୟରେ ଉଭେଇଗଲା । ସେ ରାକ୍ଷସରାଜ ଗୃହରେ ସୀତାଙ୍କୁ ଖୋଜିବା ପାଇଁ ପୁଣି ଥରେ ଚେଷ୍ଟା କଲେ । ଗୌରବର୍ଣ୍ଣା, ଶ୍ୟାମବର୍ଣ୍ଣା, କୃଷ୍ଣବର୍ଣ୍ଣା ଏବଂ ହେମାଙ୍ଗୀ ସୁନ୍ଦରୀ ସ୍ତ୍ରୀମାନଙ୍କୁ ସେ ତନ୍ନ ତନ୍ନ କରି ଦେଖିବାକୁ ଲାଗିଲେ । ନିରାଶ ହୋଇ ଧର୍ମହାନିର ଭୟରେ କହିଲେ, ଅସଂଯତ ଭାବରେ ଶୋଇଥିବା ରାବଣର ସ୍ତ୍ରୀମାନଙ୍କୁ ମୁଁ ଦେଖିଲି । ଏପରି ଭାବରେ ପରସ୍ତ୍ରୀମାନଙ୍କୁ ଦେଖିବା ଠିକ୍ ନୁହେଁ । କିନ୍ତୁ ମୋର ହୃଦୟ ନିର୍ମଳ, ରାମଙ୍କ କାର୍ଯ୍ୟରେ ସମର୍ପିତ । ମୋର ମନରେ କୌଣସି ବିକାର ନାହିଁ । ନାରୀମାନଙ୍କ ମଧ୍ୟରେ ମୁଁ ସୀତାଙ୍କୁ ଖୋଜିବି ନାହିଁ ତ, ଆଉ କେଉଁଠି ଖୋଜିବି ?

ସୀତାଙ୍କୁ ନ ଦେଖି ହନୁମାନ ଅତ୍ୟନ୍ତ ବିଷଣ୍ଣ ହେଲେ । ସଂପାତିଙ୍କ କଥାରେ ଏତେ ପରିଶ୍ରମ କରି ସେ ଲଙ୍କା ଆସିଲେ । ସବୁ ପୌରୁଷ, ସବୁ ପରିଶ୍ରମ କ'ଣ ବୃଥା ହୋଇଗଲା ? ସେ ଭାବିଲେ, ଏତେ ଖୋଜିବା ପରେ ଯେତେବେଳେ ସୀତା ମିଳୁ ନାହାନ୍ତି, ସେ ନିଶ୍ଚୟ ଆଉ ଜୀବନରେ ନାହାନ୍ତି । ପତିବ୍ରତା ଜାନକୀ ନିଜର ଚରିତ୍ର ରକ୍ଷା କରିବାକୁ ଯାଇ ଦୁର୍ମତି ରାବଣଦ୍ୱାରା ନିହତ ହୋଇଛନ୍ତି । ସୀତାଙ୍କୁ ନ ପାଇ ଫେରିଗଲେ ମୁଁ ସୁଗ୍ରୀବଙ୍କୁ କ'ଣ କହିବି ? ବାନରମାନଙ୍କୁ କିପରି ମୁହଁ ଦେଖାଇବି ? ବୃଦ୍ଧ ଜାମ୍ବବାନ୍ ଓ ଯୁବରାଜ ଅଙ୍ଗଦ ମୋତେ କ'ଣ କହିବେ ? ତେଣୁ ଜନକନନ୍ଦିନୀଙ୍କୁ ନ ଦେଖି ଫେରିଯିବା ଅପେକ୍ଷା ଅନଶନ ଦ୍ୱାରା ପ୍ରାଣ ବିସର୍ଜନ କରିବା ଶ୍ରେୟ ହେବ । କିନ୍ତୁ ବାନରେନ୍ଦ୍ର ପରମୁହୂର୍ତ୍ତରେ ନିଜକୁ ପ୍ରକୃତିସ୍ଥ କରି କହିଲେ, ନିରୁତ୍ସାହିତ ହେବା ମୋ ପକ୍ଷରେ ଏକାନ୍ତ ଅନୁଚିତ । ଉତ୍ସାହ ଓ ଉଦ୍ୟମ ହେଉଛି ସମସ୍ତ ମଙ୍ଗଳ ଓ ସଫଳତାର ମୂଳ । ଏବେ ମଧ୍ୟ ରାବଣପାଳିତ ଲଙ୍କାପୁରୀର ସମସ୍ତ ସ୍ଥାନ ମୁଁ ଦେଖି ନାହିଁ । ଲଙ୍କାରେ ଯେତେ ଚିତ୍ରଶାଳା, ପାନଗୃହ, କ୍ରୀଡ଼ାଗୃହ ଓ ଉଦ୍ୟାନମାନ ଅଛି, ମୁଁ ସେ ସମସ୍ତ ଏ ପର୍ଯ୍ୟନ୍ତ ଦେଖିସାରି ନାହିଁ । ମୁଁ ତନ୍ନ ତନ୍ନ କରି ସେ ସବୁ ସ୍ଥାନରେ ସୀତାଙ୍କର ଅନ୍ୱେଷଣ କରିବି ।

ହନୁମାନ କ୍ଷିପ୍ରଗତିରେ ଲଙ୍କାପୁରୀର ଚତୁର୍ଦ୍ଦିଗ ଅନୁସରଣ କରି ଜନକନନ୍ଦିନୀଙ୍କୁ ଦେଖିଲେ ନାହିଁ । ସେ ପୁଣି ନିରାଶ ଓ ବିଷଣ୍ଣ ହୋଇପଡ଼ିଲେ ଓ କଣ କରିବେ ଚିନ୍ତା କରି ନ ପାରି ମନେ ମନେ କହିବାକୁ ଲାଗିଲେ ମୁଁ ଯଶସ୍ୱିନୀ ସୀତାଙ୍କୁ ନ ଦେଖି ଫେରିଗଲେ ରାମ ଓ ଲକ୍ଷ୍ମଣ ନିଶ୍ଚୟ ଜୀବନ ବିସର୍ଜନ କରିବେ । ଭରତ ଓ ଶତ୍ରୁଘ୍ନ ଏ ସମ୍ବାଦ ପାଇ

ଆଉ ମୁହୂର୍ତ୍ତେ ବଞ୍ଚି ରହିପାରିବେ ନାହିଁ । କୌଶଲ୍ୟା, କୈକେୟୀ ଓ ସୁମିତ୍ରାଙ୍କର ମଧ୍ୟ ସେହି ଅବସ୍ଥା ହେବ । ସତ୍ୟପ୍ରତିଜ୍ଞ ରାଜା ସୁଗ୍ରୀବ ଓ ବନବାସୀ ବାନରମାନେ ଘୋର ଦୁଃଖରେ ପ୍ରାଣତ୍ୟାଗ କରିବେ । ମୁଁ ଇକ୍ଷ୍ୱାକୁ ଓ ବାନର କୁଳର ବିନାଶର କାରଣ ହେବାକୁ ଚାହେ ନାହିଁ । ମୁଁ ପ୍ରଜ୍ୱଳିତ ଅଗ୍ନିରେ ଝାସ ଦେଇ କିମ୍ବା ଗଭୀର ଜଳରେ ପ୍ରବେଶ କରି ପ୍ରାଣତ୍ୟାଗ କରିବି । ମୁଁ ନ ଫେରିଲେ ରାମ, ଲକ୍ଷ୍ମଣ ଓ ସୁଗ୍ରୀବ ଅନ୍ତତଃ ଆଶାରେ ବଞ୍ଚି ରହିବେ । ପର ମୁହୂର୍ତ୍ତରେ ପୁଣି ବାନରେନ୍ଦ୍ରଙ୍କର ଆତ୍ମବଳ ଫେରିଆସିଲା । ସେ କହିଲେ, ମୁଁ ମରିବି ନାହିଁ । ସୀତାଙ୍କୁ ନ ପାଇଲେ ରାବଣକୁ ହତ୍ୟା କରି ମୃତପଶୁପରି ତାକୁ ନେଇ ରାମଙ୍କୁ ଉପହାର ଦେବି । ସୀତାଙ୍କୁ ନ ଦେଖିବା ପର୍ଯ୍ୟନ୍ତ ମୋର ଅନ୍ୱେଷଣ ଅବ୍ୟାହତ ରହିବ ।

ଲଙ୍କାର ଅତ୍ୟୁଚ୍ଚ ପ୍ରାଚୀର ଉପରେ ବସି କ'ଣ କରିବେ ବୋଲି ହନୁମାନ ଚିନ୍ତା କରିବାକୁ ଲାଗିଲେ ।

## ୭୯ ॥ ଅଶୋକବନରେ ସୀତା

ଏହି ସମୟରେ ଦୂରରୁ ବିଶାଳ ଦ୍ରୁମରାଜିଶୋଭିତ ରାବଣର ଅଶୋକବନ ଦେଖାଗଲା । ହନୁମାନ ଭାବିଲେ, ଏହି ବିଶାଳ ବନକୁ ମୁଁ ଦେଖି ନାହିଁ, ଏବେ ସେଠାକୁ ଯାଇ ସୀତାଙ୍କୁ ଖୋଜିବି । ସୀତାଙ୍କ ସନ୍ଧାନ ଆଶାରେ ତାଙ୍କ ମନରେ ଏକ ଅପୂର୍ବ ସଂକଳ୍ପ ଜାତ ହେଲା । ସେ ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ହୃଦୟ ମଧ୍ୟରେ ଚିନ୍ତା କରିବାକୁ ଲାଗିଲେ । ବାୟୁ, ଅଗ୍ନି, ରୁଦ୍ର, ଇନ୍ଦ୍ର, ଯମ, ଚନ୍ଦ୍ର, ସୂର୍ଯ୍ୟ ଓ ମରୁଦ୍‌ଗଣଙ୍କୁ ବନ୍ଦନା କରି କହିଲେ, ଋଷିଗଣ ଓ ଦେବଗଣ ମୋତେ ସିଦ୍ଧି ପ୍ରଦାନ କରନ୍ତୁ ।

ହନୁମାନ ନାନାଜାତୀୟ ପୁଷ୍ପିତ ବୃକ୍ଷମାନଙ୍କରେ ପୂର୍ଣ୍ଣ ରାବଣର ଅଶୋକ ବନରେ ପ୍ରବେଶ କଲେ । ଧନୁର୍ମୁକ୍ତ ତୀର ପରି ସେ କ୍ଷିପ୍ରଗତିରେ ରାବଣର ଅଶୋକବନ ମଧ୍ୟକୁ ଲମ୍ଫ ଦେଲେ । ରାବଣର ସେହି ବିଚିତ୍ର ବନ ଶାଳ, ଅଶୋକ, ପଳାଶ, କର୍ଣ୍ଣିକାର, ଚମ୍ପକ, ପୁନ୍ନାଗ, ସପ୍ତପର୍ଣ୍ଣ (ଛତିଆନା), ଉଦ୍ଦାଳକ (ଓଉ), ଚୂତ, ନାଗେଶ୍ୱର ବୃକ୍ଷମାନଙ୍କ ଦ୍ୱାରା ପରିପୂର୍ଣ୍ଣ ଥିଲା । ବହୁ ମୃଗ ପକ୍ଷୀ ଓ ଭୃଙ୍ଗଙ୍କ ଦ୍ୱାରା ତାହା ଧ୍ୱନିତ ହେଉଥିଲା । ହନୁମାନ ବୃକ୍ଷରୁ ବୃକ୍ଷର ଡାଳକୁ ଡେଇଁବା ଫଳରେ ବୃକ୍ଷମାନଙ୍କରୁ ପତ୍ରପୁଷ୍ପ ଓ ଡାଳମାନ ଭାଙ୍ଗି ବହୁ ସଂଖ୍ୟାରେ ତଳକୁ ପଡ଼ିବାକୁ ଲାଗିଲା । ଦ୍ୟୂତକ୍ରୀଡ଼ାରେ ପରାଜିତ ଧୂର୍ତ୍ତ ନିଜର ବସ୍ତ୍ର ଓ ସଂପତ୍ତି ହରାଇ ଯେପରି ଦେଖାଯାଏ, ବୃକ୍ଷମାନେ ସେହିପରି ଦେଖାଗଲେ । ବୃକ୍ଷଶାଖାରେ ବସିଥିବା ବିହଙ୍ଗମାନେ ଦଳ ଦଳ ହୋଇ ଉଡ଼ିଗଲେ । ରାବଣପାଳିତ ଅଶୋକ ବନ ହନୁମାନଙ୍କର ଲାଙ୍ଗୁଳ, ହସ୍ତ ଓ ଚରଣ ଦ୍ୱାରା ମର୍ଦ୍ଦିତ ହୋଇ ବିକ୍ଷୁବ୍ଧ ହେଲା । ନିଜର ପ୍ରେମିକ ଦ୍ୱାରା ଉପଭୁକ୍ତ ତରୁଣୀ ଯେପରି ନଖ ଓ ଦନ୍ତ ଆଘାତରେ କ୍ଷତବିକ୍ଷତ ହୋଇଥାଏ, ତାର ପ୍ରସାଧନ ଇତସ୍ତତଃ ଓ କେଶ ଆଲୁଳାୟିତ ହୋଇଯାଏ, ସେହିପରି ଅଶୋକ ବନର ଅବସ୍ଥା ହେଲା । ହନୁମାନ ମଣି ନିର୍ମିତ-ସୋପାନଯୁକ୍ତ ବହୁ

ଜଳାଶୟ ଓ ବାପିମାନ ଦେଖିବାକୁ ପାଇଲେ । ମୁକ୍ତାମୟ ସିକତା ଏହାର ଶୋଭାବର୍ଦ୍ଧନ କରୁଥିଲା । ପ୍ରତ୍ୟେକ ବୃକ୍ଷର ମୂଳରେ ସୁବର୍ଣ୍ଣ ନିର୍ମିତ ବେଦୀମାନ ନିର୍ମିତ ହୋଇଥିଲା । ବୃହତ୍ ଅଟ୍ଟାଳିକା, କୃତ୍ରିମ କାନନମାନ ପୁଷ୍ପିତ ଅଶୋକ ବୃକ୍ଷମାନଙ୍କ ଦ୍ୱାରା ବେଷ୍ଟିତ ହୋଇଥିଲା । ଅସଂଖ୍ୟ ଅଶୋକ ବୃକ୍ଷ ଦ୍ୱାରା ମଣ୍ଡିତ ହୋଇଥିବା ଯୋଗୁଁ ତାହାର ନାମ ଅଶୋକବନ ଥିଲା । ପଦ୍ମ ଓ ଉତ୍ପଳଶୋଭିତ ହଂସସାରସକୂଜିତ ସେହି ଜଳାଶୟମାନ ଅତ୍ୟନ୍ତ ମନୋରମ ଦେଖାଯାଉଥିଲା । ସେଠାରେ ଉନ୍ନତ ଶିଖର ଓ ବିଚିତ୍ର ଶୃଙ୍ଗଯୁକ୍ତ ଜଗତି ନାମରେ ଏକ ରମଣୀୟ ପର୍ବତ ଶୋଭା ପାଉଥିଲା । ସେହି ପର୍ବତରୁ ଏକ ନଦୀ ପ୍ରପାତ ପରି ତଳକୁ ବହି ଆସୁଥିଲା । କୌଣସି ଏକ ପ୍ରଣୟିନୀ କ୍ରୋଧରେ ନିଜ ପ୍ରିୟତମର ଅଙ୍କ ପରିତ୍ୟାଗ କରିବା ପରି ତାହା ଦେଖାଯାଉଥିଲା । ପର୍ବତ ପାଦଦେଶରେ ବୃକ୍ଷମାନଙ୍କର ଅଗ୍ରଭାଗ ଜଳକୁ ସ୍ପର୍ଶ କରୁଥିବାବେଳେ, ମନେହେଉଥିଲା ଯେପରିକି ସ୍ୱାମୀଙ୍କୁ ଛାଡ଼ି ନ ଯିବାପାଇଁ ଏହି କ୍ରୁଦ୍ଧା ରମଣୀଙ୍କୁ ତା'ପ୍ରିୟ ବନ୍ଧୁମାନେ ବାରଣ କରୁଛନ୍ତି । ଏହି ନଦୀ ସ୍ରୋତ ଅଳ୍ପ ଦୂର ଯାଇ ପୁଣି ପର୍ବତମୁଖୀ ହୋଇଥିଲା । ତାହା ଦେଖି ମନେ ହେଉଥିଲା, ସେହି କାମିନୀ ପୁଣି ପ୍ରସନ୍ନ ହୋଇ ନିଜର କାନ୍ତ ନିକଟକୁ ଫେରିଯାଉଛି ।

ଏହି ବନ ମଧ୍ୟରେ ହନୁମାନ ସୁବର୍ଣ୍ଣବର୍ଣ୍ଣର ଏକ ଶିଂଶପାବୃକ୍ଷ ଦେଖିବାକୁ ପାଇଲେ । ବିବିଧ ଲତାଦ୍ୱାରା ଜଡ଼ିତ ଏହି ବୃକ୍ଷ ମୟୂର ପରି ସୁନ୍ଦର ଓ ବର୍ଣ୍ଣାଢ୍ୟ ଦେଖାଯାଉଥିଲା । ଏହି ବୃକ୍ଷରେ ବହୁ କିଙ୍କିଣୀ ଖଞ୍ଜା ଯାଇଥିବା ଯୋଗୁଁ, ବାୟୁଚାଳିତ ହୋଇ ତାହା ମଧୁର ଧ୍ୱନି ସୃଷ୍ଟି କରୁଥିଲା । ହନୁମାନ ସେହି ଶିଂଶପା ବୃକ୍ଷ ଉପରକୁ ଉଠି ତାହାର ଗହଳ ପତ୍ର ମଧ୍ୟରେ ଲୁଚି ରହି ସୀତାଙ୍କୁ ଦେଖିବା ପାଇଁ ଉଦ୍ୟମ କଲେ । ସେ ଭାବିଲେ, ଚାରୁନୟନା ସୀତା ବନବାସରେ ଅଭ୍ୟସ୍ତ ପ୍ରଭୁ ରାମଙ୍କ ଶୋକରେ ସନ୍ତପ୍ତ ହୋଇ ନିଶ୍ଚୟ ପ୍ରତ୍ୟହ ଏହି ବନକୁ ଆସୁଥିବେ । ସେ ସନ୍ଧ୍ୟା ଉପାସନା କରନ୍ତି, ତେଣୁ ବରବର୍ଣ୍ଣିନୀ ଜାନକୀ ଏହି ନିର୍ମଳ ଜଳପୂର୍ଣ୍ଣ ନଦୀକୁ ନିଶ୍ଚୟ ଆସିବେ । ରାମଙ୍କ ଚିନ୍ତାରେ ସେ ଏହି ନିର୍ଜନ ଅଶୋକ ବନକୁ ଆସିବେ ବୋଲି ମନେକରି ହନୁମାନ ଚତୁର୍ଦ୍ଦିଗକୁ ଦୃଷ୍ଟି ନିକ୍ଷେପ କଲେ । ନନ୍ଦନକାନନ ପରି ରମ୍ୟ ରାବଣର ଏହି ଅପୂର୍ବ ଅଶୋକବାଟିକାରେ ଏକ ବହୁସ୍ତମ୍ଭଯୁକ୍ତ ତପ୍ତକାଞ୍ଚନନିର୍ମିତ ବେଦୀ ସେ ଦେଖିବାକୁ ପାଇଲେ । ସେହି ବେଦୀରେ ଜଣେ ମଳିନବେଶା ତପସ୍ୱିନୀ ଦୀନ ଭାବରେ ବସିଥିବାର ସେ ଲକ୍ଷ୍ୟ କଲେ । ତାଙ୍କର ଶରୀର କ୍ଷୀଣ ହେଲେ ମଧ୍ୟ ତେଜୋଦୀପ୍ତ ଥିଲା । ଦ୍ୱିତୀୟାଚନ୍ଦ୍ର ଆକାଶରେ ଶୋଭା ପାଇବା ପରି, ଧୂମରାଶି ମଧ୍ୟରେ ଏକ ଅଗ୍ନିଶିଖା ଉତ୍‌ଥିତ ହେବା ପରି ସେ ଦେଖା ଯାଉଥିଲେ । ସେ ଏକ ଜୀର୍ଣ୍ଣ ପୀତବସ୍ତ୍ର ପରିଧାନ କରିଥିଲେ । ତାଙ୍କ ଦେହରେ ଖୁବ୍ କମ୍ ଅଳଙ୍କାର ଥିଲା । ମୁଖ ଚିନ୍ତାକୁଳ ଓ ଅଶ୍ରୁପୂର୍ଣ୍ଣ । ରାକ୍ଷସୀମାନଙ୍କ ଦ୍ୱାରା ବେଷ୍ଟିତା ହୋଇ ସେ ଗୋଷ୍ଠଚ୍ୟୁତ ଏକା ମୃଗୀ ଶ୍ୱାନମାନଙ୍କ ଦ୍ୱାରା ପରିବୃତା ହେବାପରି ହୋଇଥିଲେ । ହନୁମାନ ସେହି ମଳିନ କୃଶାଙ୍ଗୀ ଆୟତଲୋଚନା ତପସ୍ୱିନୀଙ୍କୁ ଦେଖି ସେ ନିଶ୍ଚୟ ସୀତା ହୋଇଥିବେ ବୋଲି ମନେକଲେ । ତାଙ୍କର ଅପୂର୍ବ ରୂପଲାବଣ୍ୟ ସେହି ବନଭୂମିକୁ ପ୍ରଭାନ୍ୱିତ କରୁଥିଲା । ସେ ଭୁଜଙ୍ଗବଧୂପରି ଘନ ଘନ ନିଶ୍ୱାସ ତ୍ୟାଗ କରୁଥିଲେ । ତାଙ୍କୁ

ଦେଖି ମନେହେଉଥିଲା, ସେ ଯେପରି ଏକ ସୁଦୂରର ସ୍ମୃତି, କ୍ଷୀଣତାପ୍ରାପ୍ତ ସମୃଦ୍ଧି, କଳୁଷିତ ବୁଦ୍ଧି ଓ ଅପବାଦଗ୍ରସ୍ତ କୀର୍ତ୍ତି । ବିଭିନ୍ନ ଯୁକ୍ତି ଦ୍ୱାରା ସେ ସ୍ଥିର କଲେ ଯେ ଏହି ତପସ୍ୱିନୀ ସୀତାଙ୍କ ଛଡ଼ା ଅନ୍ୟ କେହି ନୁହନ୍ତି । ଯେଉଁ ଅଳ୍ପ କେତେକ ଅଳଙ୍କାର ତାଙ୍କ ଦେହରେ ଥିଲା, ତାହା ରାମଙ୍କ ବର୍ଣ୍ଣିତ ଅଳଙ୍କାର ସହିତ ମିଳି ଯାଉଥିଲା । ବାନରମାନଙ୍କ ଆଡ଼କୁ ଫିଙ୍ଗି ଦେଇଥିବା ତାଙ୍କର ଉତ୍ତରୀୟ ସହିତ ଏହି ପିନ୍ଧିଥିବା ବସ୍ତ୍ର ମିଶିଯାଉଥିଲା । ସୀତାଙ୍କ ପ୍ରତି ହନୁମାନଙ୍କର ଭକ୍ତିପୂର୍ଣ୍ଣ ଧାରଣା ଆହୁରି ଉଚ୍ଚ ହେବାକୁ ଲାଗିଲା । ସୁବର୍ଣ୍ଣବର୍ଣ୍ଣା ରାମଙ୍କର ଏହି ପ୍ରିୟମହିଷୀ ତାଙ୍କ ସ୍ୱାମୀଙ୍କ ମନରୁ ଯେ ଅନ୍ତର୍ହିତ ହୋଇ ନାହାନ୍ତି, ତାହାର ଯଥେଷ୍ଟ କାରଣ ସେ ଦେଖିବାକୁ ପାଇଲେ । ଚାରୋଟି ଦୃଷ୍ଟିରୁ ରାମ ତାଙ୍କ ପ୍ରତି ଅତ୍ୟନ୍ତ ଅନୁରକ୍ତ । ପ୍ରଥମତଃ ସେ ତାଙ୍କର ପତ୍ନୀ । ତାଙ୍କୁ ଅପହରଣ କରାଯାଇଥିବା ଯୋଗୁଁ ରାମ ଶୋକାର୍ତ୍ତ । ଦ୍ୱିତୀୟତଃ ତାଙ୍କୁ ଆଶ୍ରୟ କରି ସେ ବନକୁ ଆସିଥିଲେ, ସେଥିପାଇଁ ଆଶ୍ରିତା ପ୍ରତି ଦୟା । ସାଙ୍ଗରେ ଆଣି ହଜାଇଥିବା ଯୋଗୁଁ ଅନୁତାପ ଓ ପ୍ରିୟତମା ହେତୁ ମଦନର ଦୁଃଖ ରାମଙ୍କୁ ଦଗ୍ଧ କରୁଥିଲା ।

ସୀତାଙ୍କ ଦୁଃଖରେ ଶୋକାର୍ତ୍ତ ହୋଇ ହନୁମାନ ଭାବିଲେ ରାମ ଲକ୍ଷ୍ମଣଙ୍କ ଦ୍ୱାରା ସୁରକ୍ଷିତ ହୋଇ ସୁକୁମାରୀ ଜନକନନ୍ଦନୀଙ୍କୁ ଯଦି ଏପରି ଦୁଃଖ ଭୋଗ କରିବାକୁ ହେଲା, ତା' ହେଲେ କାଳକୁ ଅତିକ୍ରମ କରିବା କଷ୍ଟକର । 'କାଲୋ ହି ଦୁରତିକ୍ରମଃ' । ସୀତା ରାମ ଲକ୍ଷ୍ମଣଙ୍କର ପରାକ୍ରମ ଜାଣିଥିବା ଯୋଗୁଁ ନିଶ୍ଚୟ ଦିନେ ତାଙ୍କର ଉଦ୍ଧାର ହେବ ବୋଲି ମନେକରି ଦୁଃଖରେ ଭାଙ୍ଗି ପଡ଼ି ନାହାନ୍ତି । ହନୁମାନ ତପ୍ତକାଞ୍ଚନବର୍ଣ୍ଣା ଜଗତର ଆନନ୍ଦ ଦାୟିନୀ ସୀତାଙ୍କୁ ଦେଖି ମନେ ମନେ ଚିନ୍ତା କରି କହିଲେ, ଏହି ବିଶାଳାକ୍ଷୀ ସୀତାଙ୍କ ଯୋଗୁଁ ବଳବାନ୍ ବାଳୀ ନିହତ ହେଲେ, ରାବଣ ପରି ବୀର୍ଯ୍ୟଶାଳୀ କବନ୍ଧ ନିପାତିତ ହେଲା, ଭୀମବିକ୍ରମ ରାକ୍ଷସ ବିରାଧ ରାମଙ୍କ ଦ୍ୱାରା ବଧପ୍ରାପ୍ତ ହେଲା । ରାମଙ୍କର ଶରଜାଳରେ ଚତୁର୍ଦ୍ଦଶ ସହସ୍ର ଭୀମକର୍ମା ରାକ୍ଷସ ଖର ଦୂଷଣ ଓ ତ୍ରିଶିରାଙ୍କ ସହିତ ନିହତ ହେଲେ । ସୁଗ୍ରୀବ ବାଳୀପାଳିତ ଦୁର୍ଲ୍ଲଭ ବାନରରାଜ୍ୟର ଆଧିପତ୍ୟ ଲାଭ କଲେ । ଏହି ବିଶାଳାକ୍ଷୀଙ୍କ ପାଇଁ ମୁଁ ମଧ୍ୟ ସାଗର ଲଂଘନ କରି ଲଙ୍କାପୁରୀରେ ପ୍ରବେଶ କଲି । ଏହାଙ୍କ ପାଇଁ ରାମ ଯଦି ସସାଗରା ଧରାକୁ ଓଲଟପାଲଟ କରିଦିଅନ୍ତି, ତାହାହେଲେ ତାହା ଅଯୌକ୍ତିକ ହେବ ନାହିଁ । ଏକ ପକ୍ଷରେ ତ୍ରିଲୋକର ରାଜ୍ୟ, ଅନ୍ୟ ପକ୍ଷରେ ଜନକନନ୍ଦିନୀ ସୀତା, ଏ ଦୁଇଟି ମଧ୍ୟରେ ତ୍ରୈଲୋକ୍ୟର ଐଶ୍ୱର୍ଯ୍ୟ ସୀତାଙ୍କର ଏକ କଳା ବା ଷୋଡ଼ଶ ଭାଗରୁ ଭାଗେ ସହିତ ସମାନ ହେବ ନାହିଁ । ସୀତା ଧର୍ମଜ୍ଞ ଜନକଙ୍କର କନ୍ୟା ଭାବରେ ହଳଦ୍ୱାରା ବିଦାରିତ ଭୂମି ଭେଦକରି ପଦ୍ମରେଣୁ ପରି ଧୂଳିରେ ଧୂସରିତ ହୋଇ ଉତ୍‌ଥିତ ହୋଇଥିଲେ । ସେହି ଯଶସ୍ୱିନୀ ରାଜା ଦଶରଥଙ୍କର ଜ୍ୟେଷ୍ଠା ପୁତ୍ରବଧୂ ଓ ଧର୍ମଜ୍ଞ ସତ୍ୟନିଷ୍ଠ ରାମଙ୍କର ପ୍ରିୟତମା ଭାର୍ଯ୍ୟା ହୋଇ ଏବେ ରାକ୍ଷସୀମାନଙ୍କର କବଳରେ ପଡ଼ିଛନ୍ତି । ସେ ସ୍ୱାମୀଙ୍କ ସ୍ନେହରେ ସମସ୍ତ ରାଜଭୋଗ ପରିତ୍ୟାଗ କରି ଓ ବନବାସର ଦୁଃଖକଷ୍ଟକୁ ଚିନ୍ତା ନ କରି ନିର୍ଜନ ବନରେ ପ୍ରବେଶ କରିଥିଲେ । ସ୍ୱାମୀଙ୍କ ସେବାରେ ରହି ସାମାନ୍ୟ ଫଳମୂଳରେ ସନ୍ତୁଷ୍ଟ ରହୁଥିଲେ । ରାଜପ୍ରାସାଦ ଓ ବନ ତାଙ୍କପାଇଁ ସମାନ

ଥିଲା । ହସି ହସି ବାର୍ତ୍ତାଳାପ କରି ଯାହାଙ୍କର ଦିନ କଟୁଥିଲା, ସେହି ଜନକାଙ୍ଗୀ ବର୍ତ୍ତମାନ ଅସହ୍ୟ ଯାତନା ଭୋଗ କରୁଛନ୍ତି । ତୃଷାର୍ତ୍ତ ବ୍ୟକ୍ତି ଜଳପାଇଁ ଉଦ୍‌ବିଗ୍ନ ଭାବରେ ଅପେକ୍ଷା କଲାପରି ରାମ ସୀତାଙ୍କୁ ଦେଖିବାପାଇଁ ଘୋର ଉଦ୍‌ବେଗରେ କାଳଯାପନ କରୁଛନ୍ତି । ସୀତା ମଧ୍ୟ ଦିନେ ତାଙ୍କ ସହିତ ମିଳିତ ହେବେ, ଏହି ଆଶାରେ ଦେହ ଧରି ରହୁଛନ୍ତି । ହିମପାତରେ ପଦ୍ମଫୁଲର ଯେପରି ସୌନ୍ଦର୍ଯ୍ୟ ନଷ୍ଟ ହୁଏ, ଦୁଃଖଯୋଗୁଁ ପଦ୍ମପଳାଶଲୋଚନା ସୀତାଙ୍କର ଆଜି ସେହି ଅବସ୍ଥା ହୋଇଛି । ଶୋକବିରହିତ ଅଶୋକ ବନ ଆଜି ତାଙ୍କର ଶୋକର କାରଣ ହୋଇଛି । ଶୀତର ଶେଷରେ ଚନ୍ଦ୍ରର ମନୋରମ କିରଣଜାଳ ତାଙ୍କର ମନରେ କେବଳ ଶୋକହିଁ ଜାତ କରାଇଛି ।

ହନୁମାନ ଦେଖିଲେ, ସୀତାଙ୍କୁ ଜଗିରହିଥିବା ରାକ୍ଷସୀମାନେ ଅତ୍ୟନ୍ତ ଭୟଙ୍କର । କାହାର କାନ ନାହିଁତ, କାହାର ଗୋଟିଏ ମାତ୍ର କାନ ଅଛି ଏବଂ ତାହା ସମସ୍ତ ମୁହଁକୁ ଘୋଡ଼ାଇ ପକାଇଛି । କାହାର ଗୋଟିଏ ମାତ୍ର ଆଖି, କାହାର ନାସିକା ମସ୍ତକ ପର୍ଯ୍ୟନ୍ତ ବ୍ୟାପ୍ତ । କାହାର ମସ୍ତକ ଅତ୍ୟନ୍ତ ବିଶାଳ । କାହାର ଦେହରେ ଏତେ ଲୋମ ରହିଛି ଯେ ତାହା ଏକ କମ୍ବଳ ଘୋଡ଼ାଇ ହେଲାପରି ଦେଖାଯାଉଛି । କିଏ ଖର୍ବ ତ କିଏ ଦୀର୍ଘ, କିଏ କୁବ୍‌ଜା ତ କିଏ ବାମନୀ । କାହାର ବିକୃତ ମୁଖରେ ପିଙ୍ଗଳବର୍ଣ୍ଣର ଚକ୍ଷୁ ଭୟଙ୍କର ଦେଖାଯାଉଛି । କିଏ ବରାହମୁଖୀ, ମୃଗମୁଖୀ, ବ୍ୟାଘ୍ରମୁଖୀ, ମହିଷମୁଖୀ, ଶୃଗାଳ ବା ମେଷମୁଖୀ । ଏହି ରାକ୍ଷସୀମାନେ ଅତ୍ୟନ୍ତ କଳହପ୍ରିୟା, ମଦ୍ୟମାଂସଭୋଜୀ । ସେମାନେ ଯେଉଁ ବୃକ୍ଷକୁ ବେଢ଼ି ବସିଥିଲେ, ତାହାରି ମୂଳରେ ରାଜନନ୍ଦିନୀ ସୀତା ଅତି ଦୁଃଖରେ ବସି ରହିଛନ୍ତି । ମଦିରେକ୍ଷଣା ସୀତାଙ୍କୁ ଦେଖି ହନୁମାନଙ୍କ ଚକ୍ଷୁରୁ ଆନନ୍ଦାଶ୍ରୁ ନିର୍ଗତ ହେବାକୁ ଲାଗିଲା । ସେ ରାମ ଓ ଲକ୍ଷ୍ମଣଙ୍କ ଉଦ୍ଦେଶ୍ୟରେ ବାରମ୍ବାର ନମସ୍କାର କରି ଶିଶଂପା ବୃକ୍ଷ ମଧ୍ୟରେ ଲୁଚି ରହିଲେ ।

## ୮୦ ॥ ପ୍ରଣୟପ୍ରାର୍ଥୀ ରାବଣ : ସୀତାଙ୍କର ଭର୍ତ୍ସନା

ରାତ୍ରି ଶେଷ ହୋଇ ଆସୁଥିଲା । ଯଜ୍ଞକାରୀ ବେଦଜ୍ଞ ରାକ୍ଷସମାନେ ବେଦଧ୍ୱନି କଲେ । ଦଶାନନ ନିଦ୍ରାରୁ ଜାଗରିତ ହୋଇ ବୈଦେହୀଙ୍କୁ ଚିନ୍ତା କରିବାକୁ ଲାଗିଲା । କାମପୀଡ଼ିତ ସେହି ରାକ୍ଷସ ବିଭିନ୍ନ ବେଶଭୂଷାରେ ମଣ୍ଡିତ ହୋଇ ଅଶୋକ ବନରେ ପ୍ରବେଶ କଲା । ରାବଣ ସହିତ ଶତସଂଖ୍ୟକ ସୁନ୍ଦରୀ ଲଳନା ଛତ୍ର ଚାମର, ବ୍ୟଜନ, ସୁବର୍ଣ୍ଣର ପ୍ରଦୀପ ଓ ଜଳପୂର୍ଣ୍ଣ କଳସ ଧରି ଚାଲିଥିଲେ । କେହି କେହି ପ୍ରଣୟିନୀ ମଦ୍ୟପୂର୍ଣ୍ଣ ରତ୍ନମୟ ପାତ୍ର ଧରି ଆସୁଥିଲେ । ମଦନିଶା ସେମାନଙ୍କୁ ଛାଡ଼ି ନ ଥିଲା । ଆଖିରେ ନିଦ ରହିଥିବା ପରି ଜଣାଯାଉଥିଲା । ବାଳ ମୁକୁଳା କରି ସେମାନେ ଢଳି ଢଳି ରାବଣ ସହିତ ଆସୁଥିଲେ । ତାରାବେଷ୍ଟିତ ଚନ୍ଦ୍ରମା ପରି ରୂପଯୌବନବତୀ ରମଣୀମାନଙ୍କ ଦ୍ୱାରା ବେଷ୍ଟିତ ହୋଇ ରୂପ ଓ ବଳଦୃପ୍ତ ରାବଣ ଅଶୋକ ବନରେ ପ୍ରବେଶ କଲା ।

ସୀତା ରାବଣଙ୍କୁ ଦେଖିବାମାତ୍ରେ ବାୟୁବେଗରେ କଦଳୀବୃକ୍ଷପରି ଥରିବାକୁ ଲାଗିଲେ । ବିଶାଳାକ୍ଷୀ ବୈଦେହୀ ଉରୁଦ୍ୱୟଦ୍ୱାରା ଉଦରକୁ ଓ ବାହୁଦ୍ୱୟ ଦ୍ୱାରା

କୁଚଯୁଗଳକୁ ଆଚ୍ଛାଦନ କରି ରୋଦନ କରିବାକୁ ଲାଗିଲେ । ଶୋକାର୍ତ୍ତ ସୀତାଙ୍କୁ ଦେଖି ମନେହେଉଥିଲା, ଯେପରି ଏକ ବିଶାଳ କୀର୍ତ୍ତି ଧ୍ୱଂସ ହେବାକୁ ବସିଛି । ଶ୍ରଦ୍ଧାକୁ ଅବଜ୍ଞା କରାଯାଇଛି । ପ୍ରଜ୍ଞା କ୍ଷୀଣ ଓ ଆଶା ପ୍ରତିହତ ହେବାକୁ ଯାଉଛି । ପୂଜା ନଷ୍ଟ ହେଉଛି । ପୂର୍ଣ୍ଣିମାର ଚନ୍ଦ୍ରମଣ୍ଡଳ ତମୋଗ୍ରସ୍ତ, ପଦ୍ମ ସରୋବର ବିମର୍ଦ୍ଦିତ, ନଦୀ କ୍ଷୀଣତୋୟା, ବିହଙ୍ଗମ ଭୟତ୍ରସ୍ତ ଏବଂ ଅଗ୍ନିଶିଖା ଲିଭିଯିବାକୁ ବସିଛି । ଗଜରାଜବଧୂ ଧରାହୋଇ ଖମ୍ବରେ ବନ୍ଧା ହେବା ପରି ସୀତା ଦୀର୍ଘ ନିଃଶ୍ୱାସ ପକାଉଛନ୍ତି । ଉପବାସ, ଶୋକ, ଚିନ୍ତା ଓ ଭୟରେ ତାଙ୍କର ଶରୀର କ୍ଷୀଣ ହୋଇଯାଇଛି ।

ରାବଣ ଆକାର, ଇଙ୍ଗିତ ଓ ମଧୁର ବାକ୍ୟ ଦ୍ୱାରା ସୀତାଙ୍କୁ ନିଜର ଅଭିପ୍ରାୟ ଜଣାଇ କହିଲା, ବିଶାଳାକ୍ଷୀ ସୁନ୍ଦରୀ, ତୁମେ ମୋତେ ଭୟ କର ନାହିଁ । ପରସ୍ତ୍ରୀ ଗମନ ଓ ବଳପୂର୍ବକ ପରସ୍ତ୍ରୀ ହରଣ ରାକ୍ଷସମାନଙ୍କର ଧର୍ମ ହେଲେ ମଧ୍ୟ ତୁମେ ଇଚ୍ଛା କରି ନ ଥିବାରୁ ମୁଁ ତୁମକୁ ସ୍ପର୍ଶ କରୁ ନାହିଁ । ମୋତେ ଗ୍ରହଣ କରି ତୁମେ ଆନନ୍ଦରେ ରହ । ଏପରି ଭୂମିଶଯ୍ୟା, ଚିନ୍ତା, ମଳିନ ବସ୍ତ୍ର ପରିଧାନ ଓ ଅଯଥା ଉପବାସ କରି ନିଜର ସୌନ୍ଦର୍ଯ୍ୟ ଓ ଯୌବନକୁ ନଷ୍ଟ କର ନାହିଁ । ଏ ଯୌବନ ଥରେ ଗଲେ ଆଉ ଫେରିବ ନାହିଁ । ଏ ରୂପର ସ୍ରଷ୍ଟା ବିଧାତା ତୁମକୁ ସୃଷ୍ଟି କରି ତାଙ୍କର ନିର୍ମାଣକାର୍ଯ୍ୟରୁ ବିରତ ହୋଇଛନ୍ତି । କାରଣ ଅନ୍ୟ କୌଣସି ନାରୀ ରୂପରେ ତୁମ ସହିତ ତୁଳନୀୟ ହୋଇ ନ ପାରେ । ବୈଦେହୀ, ଏପରି କୌଣସି ପୁରୁଷ ନାହିଁ, ତୁମକୁ ପାଇ ଯାହାର ମନ ବିଚଳିତ ନ ହେବ । ସାକ୍ଷାତ ସୃଷ୍ଟିକର୍ତ୍ତା ବ୍ରହ୍ମା ମଧ୍ୟ ବିଚଳିତ ହୋଇଯିବେ । ଚନ୍ଦ୍ରାନନା, ତୁମକୁ ମୁଁ ଯେତେ ଯେତେ ଦେଖୁଛି, ତୁମଠାରେ ମୋ ମନ ସେତିକି ବିମୁଗ୍ଧ ହୋଇ ରହୁଛି । ତୁମେ ମୋତେ ଗ୍ରହଣ କରି ମୋର ପଟ୍ଟମହିଷୀ ହୁଅ । ମାଳା, ଚନ୍ଦନ, ବସ୍ତ୍ର, ଅଳଙ୍କାର, ଶଯ୍ୟା, ଯାନ ଏବଂ ଗୀତ ନୃତ୍ୟ ଓ ବାଦ୍ୟ ଉପଭୋଗ କର । ଯେଉଁ ତ୍ରୈଲୋକ୍ୟର ଐଶ୍ୱର୍ଯ୍ୟ ମୁଁ ଜୟକରି ଆଣିଛି, ତାହା ତୁମେ ପାଦତଳେ ମୁଁ ଉପହାର ଦେବାପାଇଁ ଚାହେ । ତୁମ ଯଦି ଭାବୁଥାଅ, ରାମ ମୋତେ ଜୟ କରିପାରିବେ, ତାହା ତୁମେ ଶୀଘ୍ର ଭୁଲିଯାଅ । ରାମ ବିଜୟ ଆଶା ଛାଡ଼ିଦେଇଛି । ସେ ବର୍ତ୍ତମାନ ଶ୍ରୀହୀନ, ବନବାସୀ ଓ ମୁନିବ୍ରତଧାରୀ ହୋଇ ଭୂତଳ ଶଯ୍ୟାରେ ଶୋଉଛି । ସେ ଜୀବିତ ଅଛି କି ନାହିଁ, ସେ ସଂପର୍କରେ ମୋର ମଧ୍ୟ ସନ୍ଦେହ ହେଉଛି । ଗରୁଡ଼ ସର୍ପକୁ ହରଣ କରିବା ପରି ତୁମେ ମୋର ମନକୁ ହରଣ କରିଛ । ତୁମେ କ୍ଷୀଣତନୁ, ଏକମାତ୍ର ମଳିନ ପଟ୍ଟବସ୍ତ୍ର ପରିଧାନ କରିଛ । ତୁମର ଦେହରେ ଅଳଙ୍କାର ନାହିଁ । ତଥାପି ତୁମକୁ ଦେଖି ମୋର ନିଜ ପତ୍ନୀମାନଙ୍କ ଠାରେ ପ୍ରୀତି ଜାତ ହେଉ ନାହିଁ । ମୈଥିଳୀ, ତପସ୍ୟା, ବଳ ବିକ୍ରମ, ଧନ, ତେଜ, ଯଶ କେଉଁଥିରେ ରାମ ମୋର ସରି ହେବ ? ସୁନ୍ଦରୀ, ତୁମେ ମୋ ସହିତ ସୁଖରେ କ୍ରୀଡ଼ା କରି ଏହି ଲଙ୍କାନଗରୀର ସମସ୍ତ ଐଶ୍ୱର୍ଯ୍ୟ ଉପଭୋଗ କର ।

ପତିବ୍ରତା ସୀତା ଗୋଟିଏ ତୃଣ ଆଣି ରାବଣ ଓ ତାଙ୍କ ମଧ୍ୟରେ ବ୍ୟବଧାନ ରଖି କହିଲେ, ମୋତେ କାମନା ନ କରି ନିଜର ପତ୍ନୀମାନଙ୍କଠାରେ ମନ ଦିଅ । ପାପକାରୀ ଯେପରି ସିଦ୍ଧିଲାଭ କରେ ନାହିଁ, ତୁ ସେହିପରି ମୋତେ କେବେହେଲେ ଲାଭ କରିପାରିବୁ

ନାହିଁ । ମୁଁ ପତିବ୍ରତା । ଉଚ୍ଚକୁଳରେ ଜନ୍ମ ଏବଂ ବିବାହ ଦ୍ୱାରା ମୁଁ ମଧ୍ୟ ଉଚ୍ଚକୁଳ ଲାଭ କରିଛି । ମୁଁ କେବେହେଲେ ନିନ୍ଦନୀୟ କାର୍ଯ୍ୟ କରି ନ ପାରେ । ସୀତା ରାବଣ ଆଡ଼କୁ ପିଠି 'ବୁଲାଇଦେଇ ପୁଣି କହିଲେ, ମୁଁ ସାଧ୍ୱୀ ଏବଂ ପରସ୍ତ୍ରୀ । ମୁଁ ତୋର ଉପଭୋଗ୍ୟା ନୁହେଁ । ନିଶାଚର, ନିଜ ସ୍ତ୍ରୀ ଯେପରି ରକ୍ଷଣୀୟ, ପରସ୍ତ୍ରୀ ମଧ୍ୟ ସେହିପରି ରକ୍ଷଣୀୟ ଜ୍ଞାନ କରି କାର୍ଯ୍ୟକର । ଯେଉଁ ବ୍ୟକ୍ତି ନିଜ ପତ୍ନୀଠାରେ ତୁଷ୍ଟ ନୁହେଁ, ସେହି ଅସଂଯତ ଚପଳମତି ବ୍ୟକ୍ତି ସର୍ବଦା ନିନ୍ଦିତ ହୁଏ । ତୋର ବିପରୀତ ବୁଦ୍ଧି ଓ ଅନ୍ୟାୟ ଆଚରଣ ଦେଖି ମୋର ମନେହେଉଛି ଏହି ଲଙ୍କାରେ କୌଣସି ସାଧୁବ୍ୟକ୍ତି ନାହାନ୍ତି କିମ୍ବା ସଜ୍ଜନ ଥିଲେ ମଧ୍ୟ ତୁ ସେମାନଙ୍କୁ ଅନୁସରଣ କରୁ ନାହୁଁ । ଦୁର୍ନୀତିପରାୟଣ ରାଜାର ରାଜ୍ୟ ଓ ଐଶ୍ୱର୍ଯ୍ୟ ଖୁବ୍ ଶୀଘ୍ର ନଷ୍ଟ ହୁଏ । ତେଣୁ ତୋର ଜଣକର ଅପରାଧରୁ ଏହି ରତ୍ନପୁରୀ ଲଙ୍କା ଅତିରେ ନଷ୍ଟ ହେବ । ଐଶ୍ୱର୍ଯ୍ୟ ବା ଧନର ଲୋଭ ଦେଖାଇ ତୁ ମୋତେ ପ୍ରଲୋଭିତ କରିପାରିବୁ ନାହିଁ । ସୂର୍ଯ୍ୟଙ୍କର ପ୍ରଭା ଯେପରି କେବଳ ସୂର୍ଯ୍ୟଙ୍କର, ଅନ୍ୟ କାହାରି ନୁହେଁ, ମୁଁ ସେହିପରି ରାଘବଙ୍କର, ଅନ୍ୟ କାହାର ନୁହେଁ । ରାବଣ, ଯଦି ନିଜର ମଙ୍ଗଳ ଚାହୁ, ନିଜେ ଜୀବିତ ରହିବାପାଇଁ ଇଚ୍ଛା କରୁ, ତା' ହେଲେ ଭକ୍ତି ସହ ରାମଙ୍କ ପାଖରେ ମୋତେ ଅର୍ପଣ କରି ଶରଣବତ୍ସଳ ରାମଙ୍କୁ ପ୍ରସନ୍ନ କର । ଅନ୍ୟଥା ତୋର ରକ୍ଷା ନାହିଁ । ଇନ୍ଦ୍ରନିକ୍ଷିପ୍ତ ବଜ୍ର ତୋତେ ଛାଡ଼ିଦେଇପାରେ । କୃତାନ୍ତ ଯମ ମଧ୍ୟ ଛାଡ଼ି ଦେଇପାରେ, କିନ୍ତୁ ଲୋକାଧିପତି ରାମଙ୍କ ଠାରୁ ତୁ ରକ୍ଷା ପାଇପାରିବୁ ନାହିଁ । ଜ୍ୱଳନ୍ତ ସର୍ପପରି ରାମଙ୍କ ନିକ୍ଷିପ୍ତ ଶର ସବୁ ଶୀଘ୍ର ଲଙ୍କାକୁ ଗ୍ରାସ କରିବ । ରାମଙ୍କ ସହିତ ନିଜର ବଳର କଳନା କରୁଛୁ ? ଯଦି ଶକ୍ତି ଥିଲା, ରାମଙ୍କର ସମ୍ମୁଖୀନ ନ ହୋଇ ତାଙ୍କର ଅନୁପସ୍ଥିତିରେ ଆଶ୍ରମରେ ପ୍ରବେଶ କରି ତାଙ୍କର ପ୍ରିୟ ପତ୍ନୀଙ୍କୁ କାହିଁକି ଚୋର ପରି ହରଣ କରି ଆଣିଲୁ ? ବାଘକୁ ଦେଖିବା ଦୂରେ ଥାଉ, ତାର ଗନ୍ଧପାଇ ଶ୍ୱାନ ଯେପରି ପଳାଇଯାଏ, ତୋର ମଧ୍ୟ ସେହି ଅବସ୍ଥା । ତୁ କୁବେରପୁରୀ, କୈଳାସପର୍ବତ ବା ବରୁଣାଳୟ ସମୁଦ୍ର ଯେଉଁଠି ଆଶ୍ରୟ ନେଲେ ମଧ୍ୟ ଦଶରଥନନ୍ଦନ ରାମଙ୍କ ଶରରୁ ରକ୍ଷା ପାଇବୁ ନାହିଁ ।

ସୀତାଙ୍କ କଠୋର ବାକ୍ୟ ଶୁଣି ରାବଣ କ୍ରୁଦ୍ଧ ହେଲା । କହିଲା, ପୁରୁଷ ସ୍ତ୍ରୀକୁ ଯେତିକି ମଧୁର ଭାବରେ ସାନ୍ତ୍ୱନା ଦିଏ, ସେ ସେତିକି ତାର ବଶୀଭୂତ ହୁଏ । କିନ୍ତୁ ମୁଁ ଦେଖୁଛି, ତୋତେ ମୁଁ ଯେତିକି ପ୍ରିୟ ବାକ୍ୟ କହୁଛି, ତୁ ସେତିକି ମୋତେ ଭର୍ତ୍ସନା କରୁଛୁ । ଦକ୍ଷ ସାରଥି ଅପଥଗାମୀ ଅଶ୍ୱମାନଙ୍କୁ ଯେପରି ସଂଯତ କରନ୍ତି, ତୋ ପ୍ରତି ମୋର କ୍ରୋଧକୁ ମୁଁ ସେହିପରି କାମବଶରୁ ସଂଯତ ରଖୁଛି । କାମ ମନୁଷ୍ୟମାନଙ୍କ ପକ୍ଷରେ ନିଦାରୁଣ । ଥରେ ଯାହାପ୍ରତି କାମଭାବ ଜାତ ହୁଏ, ସେ କ୍ରୋଧର ପାତ୍ର ହେଲେ ମଧ୍ୟ ତା ପ୍ରତି କରୁଣା ଓ ସ୍ନେହ ସୃଷ୍ଟି ହୁଏ । ବରାଙ୍ଗନା, ତୋର ଆଚରଣ ପାଇଁ ଏବଂ ତୁ ଯେଉଁ ତାପସ ବ୍ରତର ଛଳନା କରୁଛୁ, ସେଥିପାଇଁ ତୁ ମୋର ବଧ୍ୟା ଓ ଅପମାନର ଯୋଗ୍ୟ, ମୁଁ ତୋତେ ବଧ କରୁ ନାହିଁ । ତୁ ମୋତେ ଯେପରି କଠୋର ବାକ୍ୟ କହି ଯାଉଛୁ ତାର ବଦଳରେ ତୋତେ କଠୋର ପ୍ରାଣଦଣ୍ଡ ଦେବା ଉଚିତ । କ୍ରୋଧାବେଶରେ ରାବଣ ସୀତାଙ୍କୁ ଏହା କହି ପୁଣି ସାବଧାନ କରି କହିଲା, ବରବର୍ଣ୍ଣିନୀ, ତୋତେ ଦୁଇମାସ ସମୟ ଦେଲି, ଏହି ଦୁଇମାସ

ମଧ୍ୟରେ ତୁ ଯଦି ମୋର ଶଯ୍ୟାରୋହଣ ନ କରୁ ମୋତେ ପତିରୂପେ ସ୍ୱୀକାର ନ କରୁ, ତା ହେଲେ ମୋର ସୂପକାରମାନେ ମୋର ପ୍ରାତଃଭୋଜନ ପାଇଁ ତୋତେ ଖଣ୍ଡ ଖଣ୍ଡ କରି କାଟିପକାଇବେ । ରାବଣର ଭର୍ତ୍ସନା ଶୁଣି ସେଠାରେ ଉପସ୍ଥିତ ଦେବଗନ୍ଧର୍ବକନ୍ୟାମାନେ ବିଷଣ୍ଣ ହେଲେ । ନିଜର ଓଷ୍ଠ, ନେତ୍ର ଓ ଅନ୍ୟାନ୍ୟ ମୁଖଭଙ୍ଗୀ ଦ୍ୱାରା ସୀତାଙ୍କୁ ଆଶ୍ୱାସନା ଦେବାପାଇଁ ଚେଷ୍ଟା କଲେ । ମାନିନୀ ସୀତା ଦୃଢ଼କଣ୍ଠରେ ଉତ୍ତର ଦେଲେ – ରାକ୍ଷସ, ତୋର କେହି ହିତାକାଂକ୍ଷୀ ବ୍ୟକ୍ତି ଥିବା ପରି ଜଣାଯାଉ ନାହିଁ । ଥିଲେ ଏପରି ଗର୍ହିତ କାର୍ଯ୍ୟ କରିବାପାଇଁ ତୋତେ ସେ ନିଶ୍ଚୟ ନିବାରଣ କରୁଥାଆନ୍ତେ । ତୁ ଶଶକ ହୋଇ ଦର୍ପିତ ମାତଙ୍ଗ ରାମଙ୍କର ନିନ୍ଦା କରୁଛୁ । ରାମଙ୍କ ଠାରୁ ତୁ ଯେଉଁ ମୋତେ ଅପହରଣ କରି ଆଣିଛୁ, ତୋହର ବଧପାଇଁ ତାହା ବିଧିପ୍ରେରିତ ବୋଲି ମୁଁ ମନେକରେ । ତୁ ନିଜକୁ ବୀର ବୋଲି କହୁଛୁ ଓ କୁବେରଙ୍କର ଭାଇ ବୋଲି ଗର୍ବ କରୁଛୁ । ଏପରି ଚୌର୍ଯ୍ୟବୃତ୍ତି ତୁ କାହିଁକି ଅବଲମ୍ବନ କଲୁ ?

ରାବଣ କ୍ରୋଧରେ ମୁହ୍ୟମାଣ ହୋଇ ଭୁଜଙ୍ଗ ପରି ଖରଶ୍ୱାସ ତ୍ୟାଗ କଲା ଓ କ୍ରୂର ଦୃଷ୍ଟିରେ ସୀତାଙ୍କୁ ଚାହିଁ କହିଲା, ତୁ ଯେଉଁ ତାପସ ବ୍ରତ ପାଳନ କରୁଛୁ, ତାହା ନୀତିହୀନ ଓ ନିରର୍ଥକ । ସୂର୍ଯ୍ୟ ନିଜ ତେଜରେ ଅନ୍ଧକାରକୁ ନାଶ କରିବା ପରି ଆଜି ହିଁ ତୋତେ ହତ୍ୟା କରିବି । ଏହା କହି ରାବଣ ଘୋରଦର୍ଶନା ରାକ୍ଷସୀମାନଙ୍କୁ ଆଦେଶ ଦେଲା, ସୀତା ଯେପରି ଶୀଘ୍ର ମୋର ବଶୀଭୂତ ହୁଏ, ସେଥିପାଇଁ ତୁମେ ସମସ୍ତେ ମିଶି ଚେଷ୍ଟାକର । ଭଲରେ ବୁଝାଇ ହେଉ ବା ଦଣ୍ଡ ଦ୍ୱାରା ହେଉ, ଅନୁକୂଳ ପ୍ରତିକୂଳ ସମସ୍ତ ଉପାୟ ଦ୍ୱାରା କାର୍ଯ୍ୟ ସାଧନ କର । ଏହିପରି ବାରମ୍ବାର ଆଦେଶ ଦେଇ ରାବଣ କ୍ରୋଧରେ ଗର୍ଜନ କରିବାକୁ ଲାଗିଲା । ସେତିକିବେଳେ ଧାନ୍ୟମାଳିନୀ ନାମରେ ଜଣେ ରାକ୍ଷସୀ ରାବଣ ପାଖକୁ ଯାଇ ତାକୁ ଆଲିଙ୍ଗନ କରି କହିଲା – ମହାରାଜ, ଏହି ବିବର୍ଣ୍ଣା ଦୀନା ମାନବୀଠାରେ ତୁମର କି ପ୍ରୟୋଜନ ଅଛି ? ତୁମେ ବାହୁବଳରେ ଯେଉଁ ଦିବ୍ୟ ଭୋଗ୍ୟ ବସ୍ତୁମାନ ଅର୍ଜନ କରିଛ, ତାହା ଭୋଗ କରିବା ପାଇଁ ଏହାର ଭାଗ୍ୟରେ ଲେଖା ହୋଇ ନାହିଁ, ଯେଉଁ ସ୍ତ୍ରୀ ପ୍ରଣୟ ଇଚ୍ଛା କରେ ନାହିଁ, ତାକୁ କାମନା କରୁଥିବା ପୁରୁଷର କେବଳ ଉତ୍ତେଜନା ହିଁ ସାର ହୁଏ । ଅନୁରକ୍ତା ନାରୀକୁ କାମନା କରିବାଦ୍ୱାରା ପ୍ରକୃତ ଆନନ୍ଦ ମିଳିଥାଏ । ରାକ୍ଷସୀ ଏହିପରି କହି ରାବଣକୁ ଟାଣି ନେଇଗଲା ଏବଂ ରାବଣ ହସି ହସି ମେଦିନୀ କମ୍ପିତ କରି ପ୍ରସ୍ଥାନ କଲା ।

## ୮୧ ।। ସୀତାଙ୍କୁ ହତ୍ୟାର ଧମକ

ରାବଣ ଚାଲିଯିବା ପରେ ଭୀଷଣଦର୍ଶନା ରାକ୍ଷସୀମାନେ ସୀତାଙ୍କ ପ୍ରତି କଠୋର ଭାଷାରେ ଗର୍ଜନ ତର୍ଜନ କରିବାକୁ ଲାଗିଲେ । ସେମାନେ କହିଲେ – ସୀତା, ବ୍ରହ୍ମାଙ୍କର ମାନସପୁତ୍ର ପୁଲସ୍ତ୍ୟଙ୍କ ବଂଶରେ ଜନ୍ମ, ବିଶ୍ରବାଙ୍କର ପୁତ୍ର ମହାତ୍ମା ରାବଣଙ୍କର ଭାର୍ଯ୍ୟା ହେବାପାଇଁ ତୁମେ ଭଲ ମନେ କରୁ ନାହଁ । ଆମମାନଙ୍କ କଥା ମାନି ଶତ୍ରୁମାନଙ୍କର ଭୟଉତ୍ପାଦନକାରୀ, ସଦ୍‌ବଂଶଜାତ ଦଶାନନଙ୍କୁ ତୁମେ ପତି ରୂପେ ଗ୍ରହଣ କର ।

ହରିଜଟା ନାମକ ରାକ୍ଷସୀ ମାର୍ଜାର ପରି ନେତ୍ରଦ୍ୱୟ ଘୂର୍ଣ୍ଣନ କରି କହିଲା, ଦେବରାଜ ଇନ୍ଦ୍ରଙ୍କ ସମେତ ପ୍ରଧାନ ପ୍ରଧାନ ଦେବତାମାନେ ଯାହାଙ୍କ ଦ୍ୱାରା ପରାଜିତ, ସେହି ଅମିତବିକ୍ରମୀ ବୀରଙ୍କର ଭାର୍ଯ୍ୟା ହେବାପାଇଁ କେଉଁ ଭାଗ୍ୟବତୀ ଇଚ୍ଛା ନ କରିବ ? ବିକଟା କହିଲା, ଯୁଦ୍ଧରେ ବାରମ୍ବାର ଦେବତା, ଗନ୍ଧର୍ବ, ନାଗ ଓ ଦାନବମାନଙ୍କୁ ପରାସ୍ତ କରି ରାକ୍ଷସେନ୍ଦ୍ର ରାବଣ ନିଜେ ତୁମର ପ୍ରଣୟପ୍ରାର୍ଥୀ ହୋଇଛନ୍ତି, ତୁମେ ତାଙ୍କୁ ଅତିଶୀଘ୍ର ବରଣ କର । ଦୁର୍ମୁଖୀ କହିଲା, ଯେଉଁ ରାବଣଙ୍କର ଭୟରେ ସୂର୍ଯ୍ୟ ଉତ୍ତାପ ଦିଅନ୍ତି ନାହିଁ, ବାୟୁ ପ୍ରବାହିତ ହୁଅନ୍ତି ନାହିଁ, ଯେ ଚାହିବା ମାତ୍ରେ ବୃକ୍ଷମାନେ ପୁଷ୍ପବୃଷ୍ଟି କରନ୍ତି, ପର୍ବତ ଓ ମେଘମାନେ ଜଳଦାନ କରନ୍ତି, ତୁମେ ତାଙ୍କର ଭାର୍ଯ୍ୟା ହେବାପାଇଁ ଶୀଘ୍ର ମନସ୍ଥିର କର । ସୁହାସିନୀ, ଆମେ ତୁମକୁ ଭଲ କଥା କହୁଛୁ, ତାହା ଗ୍ରହଣ କର, ନ ହେଲେ ତୁମେ ବଞ୍ଚି ରହିପାରିବ ନାହିଁ ।

ତା'ପରେ ସମସ୍ତ ରାକ୍ଷସୀ ଏକତ୍ର ହୋଇ କହିଲେ – ସୀତା, ତୁ ରାମଠାରୁ ନିଜର ମନ ଶୀଘ୍ର ଫେରାଇ ଆଣ । କାରଣ ତା ସହିତ ତୋର ଆଉ କଦାପି ମିଳନ ହେବ ନାହିଁ । ତୁ ରାକ୍ଷସରାଜ ରାବଣଙ୍କୁ ସ୍ୱାମୀରୂପେ ପାଇ ସୁଖରେ ଆନନ୍ଦରେ ବିହାର କର ।

କମଳନୟନା ଜାନକୀ ଶୋକାକୁଳ ନୟନରେ କହିଲେ, ତୁମର ଏହି ଲୋକବିରୁଦ୍ଧ ପାପପୂର୍ଣ୍ଣ ପରାମର୍ଶ ମୁଁ କଦାପି ଗ୍ରହଣ କରିବି ନାହିଁ । ମୁଁ ମାନବୀ । କେବେହେଲେ ରାକ୍ଷସର ଭାର୍ଯ୍ୟା ହେବି ନାହିଁ । ରାମ ଦୁଃଖୀ ହୁଅନ୍ତୁ, ରାଜ୍ୟହୀନ ହୁଅନ୍ତୁ, ସେ ମୋର ସ୍ୱାମୀ, ସେ ମୋର ଗୁରୁ । 'ଦୀନୋ ବା ରାଜ୍ୟହୀନୋ ବା ଯୋ ମେ ଭର୍ତ୍ତା ସ ମେ ଗୁରୁଃ' । ତୁମର କଥା ମୁଁ କେବେହେଲେ ଗ୍ରହଣ କରିବି ନାହିଁ । ତୁମ ଇଚ୍ଛା ହେଲେ ମୋତେ ମାରି ଖାଇଦେଇପାର ।

ରାକ୍ଷସୀମାନେ କ୍ରୋଧରେ କମ୍ପିଉଠି ଅସ୍ତ୍ରଶସ୍ତ୍ର ଉଠାଇ ସୀତାଙ୍କୁ ଘେରିଗଲେ । ମଳିନବସନା ଏକାକିନୀ ସୀତାଙ୍କୁ ବିନତା ନାମରେ ଏକ ଭୟଙ୍କର ରାକ୍ଷସୀ କହିଲା, ବୈଦେହୀ, ଅଳ୍ପାୟୁ ରାମ ପ୍ରତି ଅନୁରକ୍ତ ହୋଇ ତୁ ରାକ୍ଷସମାନଙ୍କର ଅଧୀଶ୍ୱର ରାବଣଙ୍କୁ ଗ୍ରହଣ କରୁ ନାହୁଁ । ଏହି ମୁହୂର୍ତ୍ତରେ ଆମେ ସମସ୍ତେ ତୋତେ ଭକ୍ଷଣ କରିବୁ । ବିକଟା ନାମକ ରାକ୍ଷସୀ କ୍ରୋଧରେ ମୁଷ୍ଟି ଉଠାଇ କହିଲା – ମୈଥିଳୀ, ତୁ ଅନେକ ଅପ୍ରିୟ କଥା କହିଲୁଣି । ତୋ ପ୍ରତି ଦୟା ଓ କୋମଳତା ଯୋଗୁଁ ତାହା ଆମେ ସହିନେଇଛୁ । ବର୍ତ୍ତମାନ ଶୋକ ତ୍ୟାଗକର, ରାବଣର ଅନ୍ତଃପୁର ମଣ୍ଡନ କର । ଲଙ୍କାର ରମଣୀୟ ଉଦ୍ୟାନ ଓ ପର୍ବତମାନଙ୍କରେ ବିହାର କର । ନଚେତ୍ ମୁଁ ତୋର ହୃତ୍‌ପିଣ୍ଡକୁ ଉତ୍ପାଟନ କରି ଭକ୍ଷଣ କରିବି । ଏକ ବୃହତ୍ ଶୂଳକୁ ଉଠାଇ ଚଣ୍ଡୋଦରୀ ନାମକ ରାକ୍ଷସୀ କହିଲା, ରାବଣ ସୀତାଙ୍କୁ ହରଣ କରି ଆଣିବା ଦିନଠାରୁ ମୁଁ ତାହାର ଯକୃତ୍, ପ୍ଲୀହା, ହୃତ୍‌ପିଣ୍ଡ ଓ ମସ୍ତକ ଭକ୍ଷଣ କରିବା ପାଇଁ ଇଚ୍ଛା କରି ଆସିଛି । ସଙ୍ଗେ ସଙ୍ଗେ ପ୍ରଭସା ନାମକ ରାକ୍ଷସୀ କହିଲା, ଏହାକୁ କାଟି ଛୋଟ ଛୋଟ ଖଣ୍ଡ କରିଦିଅ । ତାପରେ ସମସ୍ତେ ବାଣ୍ଟି ନେଇ ମଦ୍ୟ ସହିତ ଭକ୍ଷଣ କରିବା । ଶୂର୍ପଣଖା (ରାବଣର ଭଗିନୀ ନୁହେଁ) କହିଲା, ପ୍ରଭସା ଠିକ୍ କହିଛି ।

ଚାଲ ମଦ୍ୟ ସହିତ ମନୁଷ୍ୟ ମାଂସ ଆସ୍ୱାଦନ କରି ଆମ୍ଭେମାନେ ନିକୁମ୍ଭିଲା ଦେବୀଙ୍କ ପାଖରେ ନୃତ୍ୟ କରିବା ।

ରାକ୍ଷସୀମାନଙ୍କର ନିଦାରୁଣ ଭର୍ତ୍ସନା ଶୁଣି ସୀତା ରୋଦନ କରିବାକୁ ଲାଗିଲେ । ସେ ଅଶୋକବୃକ୍ଷର ଏକ ପୁଷ୍ପିତ ଶାଖାକୁ ଧରି ଦୁଃଖରେ ଠିଆ ହୋଇ ରୋଦନ କଲେ । ତାଙ୍କର ଚକ୍ଷୁରୁ ଅଶ୍ରୁଧାରା ବୋହିବାକୁ ଲାଗିଲା । ସେ ବିଳାପ କରି କହିଲେ, ହା ରାମ, ହା ଲକ୍ଷ୍ମଣ । ମୁଁ କିପରି ରାମଙ୍କ ବିରହରେ ଏପରି ଦୀନ ହୀନ ଅନାଥ ଭାବରେ ବଞ୍ଚି ରହିଛି । ନିଶ୍ଚୟ ମୋର ପୁଣ୍ୟ ଅଛି । ତା ନ ହେଲେ ମୋର ସ୍ୱାମୀଙ୍କ ବିରହରେ ମୁଁ ଏପର୍ଯ୍ୟନ୍ତ ଜୀବନ ଧାରଣ କରିବା ଅସମ୍ଭବ ହୋଇଥାନ୍ତା । ଜନ୍ମ ଜନ୍ମାନ୍ତରରେ ମୁଁ କି ପାପ କରିଥିଲି, ଯେଉଁଥିପାଇଁ ଏହି ନିଦାରୁଣ ଦୁଃଖ ଭୋଗ କରୁଛି । ଏ ରାକ୍ଷସୀମାନେ ଜଗି ରହିଥିବାବେଳେ ମୁଁ ଇଚ୍ଛା କଲେ ମଧ୍ୟ ମୋର ଜୀବନ ନେଇପାରିବି ନାହିଁ ।

ସୀତା ପୁଣି ବିଳାପ କରି କହିଲେ, ରାକ୍ଷସୀମାନେ ମୋତେ ନିଦାରୁଣ ଭାବରେ ଭର୍ତ୍ସନା କଲେ ମଧ୍ୟ ମୁଁ ସେହି ନିନ୍ଦିତ ନିଶାଚର ରାବଣକୁ ବାମପାଦରେ ମଧ୍ୟ ସ୍ପର୍ଶ କରିବି ନାହିଁ । ଏ ରାକ୍ଷସୀମାନେ ମୋତେ ଖଣ୍ଡ ଖଣ୍ଡ କରି ଛିନ୍ନଭିନ୍ନ କରିପାରନ୍ତି । ଅଗ୍ନିରେ ଜଳାଇ ଦେଇ ପାରନ୍ତି, କିନ୍ତୁ ରାବଣର ଅଭିଳାଷ କେବେହେଲେ ପୂର୍ଣ୍ଣ ହେବ ନାହିଁ । ଦୟାଳୁ ରାମଚନ୍ଦ୍ର ମୋ ପ୍ରତି ନିର୍ଦ୍ଦୟ ହୋଇଛନ୍ତି, ତା' ନ ହେଲେ ଏକାକୀ ଜନସ୍ଥାନରେ ଚଉଦହଜାର ରାକ୍ଷସଙ୍କୁ ଯେ ବିନାଶ କରିଥିଲେ, ସେ ମୋତେ କାହିଁକି ଉଦ୍ଧାର କରୁ ନାହାନ୍ତି ? ମୁଁ ଏଠାରେ ଅଛି ବୋଲି ଲକ୍ଷ୍ମଣଙ୍କର ଅଗ୍ରଜ ବୋଧହୁଏ ଜାଣନ୍ତି ନାହିଁ । ଜଟାୟୁ ଏହି ଖବର ଦେଇପାରିଥାନ୍ତେ, କିନ୍ତୁ ସେ ରାବଣ ସହିତ ଯୁଦ୍ଧକରି ନିହତ ହେଲେ । ଯଦି ମୁଁ ଏଠାରେ ଅଛି ବୋଲି ରାମ ଜାଣନ୍ତେ, ତାହାହେଲେ ସେ ନିଜର ବାଣଦ୍ୱାରା ପୃଥିବୀକୁ ରାକ୍ଷସହୀନ କରିଦିଅନ୍ତେ । ଲଙ୍କାପୁରୀକୁ ଦଗ୍ଧ କରି ଓ ମହାସମୁଦ୍ରକୁ ଶୋଷଣ କରି ନୀଚ ରାବଣର ନାମ, ଧାମ, କୀର୍ତ୍ତି ଲୋପ କରିଦିଅନ୍ତେ । କ୍ଷଣକ ମଧ୍ୟରେ ଲଙ୍କା ଶ୍ମଶାନ ଭୂମି ହୋଇଯାଆନ୍ତା ଏବଂ ଚିତାଧୂମରେ ଲଙ୍କାର ରାସ୍ତାଘାଟ ରୁଦ୍ଧ ହୋଇଯାଆନ୍ତା । ଲଙ୍କା ଯେ ଅଳ୍ପକାଳ ମଧ୍ୟରେ ଶ୍ରୀହୀନ ହେବାକୁ ଯାଉଛି, ରାବଣ ଓ ରାକ୍ଷସମାନଙ୍କ ନିଧନ ପରେ ବିଧବା ରମଣୀ ପରି ଲଙ୍କାର ଅବସ୍ଥା ହେବାକୁ ଯାଉଛି, ତାହା ଏମାନେ ଜାଣିପାରୁ ନାହାନ୍ତି । ରାବଣ ଧର୍ମ କ'ଣ ଜାଣେ ନାହିଁ । ତେଣୁ ସେ ମୋତେ ହତ୍ୟା କରିବା ବିଚିତ୍ର ନୁହେଁ । କିନ୍ତୁ ତା ପୂର୍ବରୁ ମୁଁ ରାମଙ୍କୁ କ'ଣ ଦେଖିପାରିବି ନାହିଁ ?

ସୀତା ଆଶଙ୍କା କଲେ ଯେ ରାମ ହୁଏତ ତାଙ୍କର ଶୋକରେ କାତର ହୋଇ ପ୍ରାଣ ବିସର୍ଜନ କରିଛନ୍ତି କିମ୍ବା ରାମ ବୈରାଗ୍ୟର ତାଡ଼ନାରେ ତପସ୍ୱୀ ଜୀବନ ଯାପନ କରି ତାଙ୍କର ପ୍ରୟୋଜନ ଦେଖୁ ନାହାନ୍ତି । ସୀତା ଚିନ୍ତା କଲେ, ବହୁ ଦିନ ଦୃଷ୍ଟିପଥରୁ ଅନ୍ତର ହୋଇଗଲେ ପ୍ରୀତି ଓ ବନ୍ଧୁତା ରହେ ନାହିଁ, କିନ୍ତୁ ରାମ ତ ସେପରି ବ୍ୟକ୍ତି ନୁହନ୍ତି, ଯାହାଙ୍କର ମୋ ପ୍ରତି ଥିବା ପ୍ରଣୟ ନଷ୍ଟ ହୋଇଯିବ । ଏହିପରି ସୀତା ନାନା ଆଶା ଓ ଆଶଂକା ମଧ୍ୟରେ ଶୋକାତୁରା ହୋଇ ବିଳାପ କରିବାକୁ ଲାଗିଲେ ।

## ୮୨ ।। ତ୍ରିଜଟାର ସ୍ୱପ୍ନ

ଭୀଷଣଦର୍ଶନା ରାକ୍ଷସୀମାନେ ସୀତାଙ୍କର ବିଳାପ ଶୁଣି ପୁଣି ନିଷ୍ଠୁର ଭାବରେ ତାଙ୍କୁ କହିବାକୁ ଲାଗିଲେ – ସୀତା, ଆଜି ଆମେ ଯାହା ସ୍ଥିର କରିଛୁ ନିଶ୍ଚୟ ହେବ । ଆଜି ତୋତେ ମାରି ଟିକି ଟିକି କରି ତୋର ମାଂସ ଆମେ ଭକ୍ଷଣ କରିବୁ । ଏହି ସମୟରେ ତ୍ରିଜଟା ନାମକ ଏକ ବୃଦ୍ଧା ରାକ୍ଷସୀ ନିଦରୁ ଉଠି ସେମାନଙ୍କ ପାଖକୁ ଆସି କହିଲା – ଅନାର୍ଯ୍ୟାଗଣ, ତୁମେମାନେ ନିଜେ ନିଜକୁ ହିଁ ଖାଅ । ଜନକନନ୍ଦିନୀ ଦଶରଥଙ୍କର ପ୍ରିୟ ପୁତ୍ରବଧୂ ସୀତାଙ୍କୁ ତୁମେ ଭକ୍ଷଣ କରିପାରିବ ନାହିଁ । ମୁଁ ଆଜି ଏକ ଦାରୁଣ ଲୋମହର୍ଷଣକାରୀ ସ୍ୱପ୍ନ ଦେଖିଲି । ସେଥିରୁ ଜଣାପଡୁଛି, ରାକ୍ଷସମାନଙ୍କର ବିନାଶ ହେବ ଏବଂ ସୀତାଙ୍କର ସ୍ୱାମୀ ବିଜୟୀ ହେବେ ।

ତ୍ରିଜଟାର କଥା ଶୁଣି ରାକ୍ଷସୀମାନେ ସ୍ୱପ୍ନ ବୃତ୍ତାନ୍ତ ତାକୁ ପଚାରିବାକୁ ଲାଗିଲେ । ତ୍ରିଜଟା କହିଲା, ସ୍ୱୟଂ ରାମ ଶୁକ୍ଳମାଲ୍ୟ ଓ ଶୁକ୍ଳବସ୍ତ୍ର ଧାରଣ କରି ଅନ୍ତରୀକ୍ଷଗାମୀ ସହସ୍ର ଅଶ୍ୱଯୁକ୍ତ ଏକ ଗଜଦନ୍ତ ନିର୍ମିତ ଶିବିକାରେ ଲକ୍ଷ୍ମଣଙ୍କ ସହିତ ବସିଥିଲେ । ସ୍ୱପ୍ନରେ ମୁଁ ପୁଣି ଦେଖିଲି, ସୀତା ଶୁକ୍ଳବସ୍ତ୍ର ପରିଧାନ କରି ସାଗର ପରିବେଷ୍ଟିତ ଏକ ଶ୍ୱେତ ପର୍ବତ ଉପରେ ବସିଥିଲେ । ସୂର୍ଯ୍ୟଙ୍କ ସହିତ ତାଙ୍କ ପ୍ରଭା ମିଶି ଯାଉଥିବାପରି ରାମଙ୍କ ସହିତ ସୀତା ମିଳିତ ହେଲେ । ପୁଣି ମୁଁ ରାମଙ୍କୁ ପର୍ବତାକାର ଚତୁର୍ଦ୍ଦନ୍ତ ମହାଗଜ ଉପରେ ଲକ୍ଷ୍ମଣଙ୍କ ସହିତ ବସିଥିବାର ଦେଖିଲି । ଗଜାରୂଢ଼ ରାମଲକ୍ଷ୍ମଣଙ୍କ ସହିତ ସୀତାଙ୍କ ନିକଟକୁ ଆସି ସେହି କମଳନୟନାଙ୍କୁ ଉଠାଇନେଇ ଗଜପୃଷ୍ଠରେ ବସାଇଲେ । ଏହି ମହାଗଜ ରାମଲକ୍ଷ୍ମଣ ଓ ସୀତାଙ୍କୁ ଧରି ଲଙ୍କା ଉପରେ ଆସି ଅବସ୍ଥାନ କଲା । ତା'ପରେ ସତ୍ୟ ପରାକ୍ରମ ରାମ ପୁଷ୍ପକବିମାନ ଆରୋହଣ କରି ଲକ୍ଷ୍ମଣ ଓ ସୀତାଙ୍କ ସହ ଉତ୍ତର ଦିଗକୁ ଯାତ୍ରା କଲେ ।

ତ୍ରିଜଟା କହିଲା, ମୁଣ୍ଡିତମସ୍ତକ ରାବଣ ତୈଳାକ୍ତ ଶରୀରରେ ରକ୍ତକରବୀର ମାଳା ଧାରଣ କରି ସୁରାପାନ ପୂର୍ବକ ଉନ୍ମତ୍ତ ଦେଖାଯାଉଛି । ସେ ପୁଣି ପୁଷ୍ପକବିମାନ ଉପରୁ ଭୂପତିତ ହେଉଛି । ରାବଣ ରକ୍ତଚନ୍ଦନ ବୋଳି ହୋଇ ରକ୍ତବର୍ଣ୍ଣର ମାଳା ପିନ୍ଧି ତୈଳ ପାନ କରି, ହସି ହସି, ନାଚି ନାଚି ଏକ ଗଧ ଉପରେ ଚଢ଼ି ଖୁବ୍ ଶୀଘ୍ର ଦକ୍ଷିଣଦିଗକୁ ପଳାଉଛି । ଅଳ୍ପ ସମୟରେ ଭୟାର୍ତ୍ତ ରାବଣ ମୁଣ୍ଡ ତଳକୁ କରି ଗଧ ପିଠିରୁ ପଡ଼ିଯାଉଛି । ପୁଣି ଉଠିପଡ଼ି ଭ୍ରାନ୍ତ ବିଚଳିତ ମଦୋନ୍ମତ୍ତ ଓ ବିବସ୍ତ୍ର ହୋଇ କୁବାକ୍ୟମାନ ଉଚ୍ଚାରଣ କରୁଛି ଏବଂ ନରକତୁଲ୍ୟ ଘୋର ଅନ୍ଧକାରମୟ ଦୁର୍ଗନ୍ଧ ମଳପଙ୍କ ମଧ୍ୟରେ ପ୍ରବେଶ କରି ବୁଡ଼ିଯାଉଛି । ଦକ୍ଷିଣଦିଗକୁ ଯାଇ ସେ ଏକ ପଙ୍କପୂର୍ଣ୍ଣ ହ୍ରଦରେ ପୁଣି ପ୍ରବେଶ କରୁଛି ଏବଂ ଜଣେ କୃଷ୍ଣବର୍ଣ୍ଣା ରକ୍ତବସ୍ତ୍ରା ନାରୀ କର୍ଦ୍ଦମାକ୍ତ ହୋଇ ତାର ବେକରେ ଦଉଡ଼ି ବାନ୍ଧି ତାକୁ ଟାଣିବାରେ ଲାଗିଛି । ସେଠାରେ କୁମ୍ଭକର୍ଣ୍ଣ ଓ ରାବଣର ପୁତ୍ରମାନେ ମୁଣ୍ଡିତ ଓ ତୈଳାକ୍ତ ହୋଇ ରହିଥିଲେ । ଦଶାନନ ବରାହ ଉପରେ, ଇନ୍ଦ୍ରଜିତ ଶିଶୁମାର ଓ କୁମ୍ଭକର୍ଣ୍ଣ ଓଟ ଉପରେ ବସି ଦକ୍ଷିଣ ଦିଗକୁ ଯାତ୍ରା କଲେ । ଏକମାତ୍ର ବିଭୀଷଣ ଚାରିଜଣ ମନ୍ତ୍ରୀଙ୍କ ସହ ଶ୍ୱେତଛତ୍ର ଧାରଣ କରି ଆକାଶରେ ଅବସ୍ଥାନ କରୁଥିଲେ । ରକ୍ତବସ୍ତ୍ର ରକ୍ତମାଲ୍ୟଧାରୀ ରାକ୍ଷସମାନେ ମଦ୍ୟପାନ ପୂର୍ବକ ଏକ ମହାମିଳନରେ ଯୋଗ ଦେଇଥିଲେ ଏବଂ ତାହା ଗୀତ ବାଦ୍ୟରେ

ମୁଖରିତ ହେଉଥିଲା । ରମଣୀୟ ଲଙ୍କାପୁରୀ ଗଜ-ବାଜି-ରଥ ଏବଂ ତାର ଭଗ୍ନ ଗୋପୁରତୋରଣ ସହିତ ସାଗରରେ ପତିତ ହେବାର ଦେଖାଗଲା । ଭସ୍ମୀଭୂତ ରୁକ୍ଷା ଲଙ୍କାନଗରୀର ରାକ୍ଷସବଧୂମାନେ ତୈଳପାନ କରି ଉନ୍ମତ୍ତ ହୋଇ ଅଟ୍ଟହାସ କରୁଥିଲେ । କୁମ୍ଭକର୍ଣ୍ଣ ଆଦି ଶ୍ରେଷ୍ଠ ରାକ୍ଷସମାନେ ରକ୍ତବସ୍ତ୍ର ପିନ୍ଧି ଗୋମୟ ହ୍ରଦରେ ପ୍ରବେଶ କରୁଥିଲେ ।

ସ୍ୱପ୍ନର ବୃତ୍ତାନ୍ତ ଶେଷ କରି ତ୍ରିଜଟା କହିଲା – ରାକ୍ଷସୀଗଣ, ଦୂର ହୋଇଯାଅ । ଅଚିରେ ରାମ ସୀତାଙ୍କୁ ଉଦ୍ଧାର କରିବେ । ସେ କ୍ରୁଦ୍ଧ ହୋଇ ରାକ୍ଷସମାନଙ୍କ ସହିତ ତୁମ ସମସ୍ତଙ୍କୁ ସଂହାର କରିବେ । ବନବାସ ବେଳେ ତାଙ୍କର ସହଗାମିନୀ ଭାର୍ଯ୍ୟା ସୀତା ତାଙ୍କର ଅତିଶୟ ପ୍ରିୟା ଓ ଆଦରଣୀୟା । ଗର୍ଜନ ତର୍ଜନ କରି ତାଙ୍କୁ ଯଦି ତୁମେ ଭର୍ତ୍ସନା କର, ରାଘବ ତାହା କେବେହେଲେ କ୍ଷମା ଦେବେ ନାହିଁ । ସୀତାଙ୍କୁ ନିଷ୍ଠୁର ବାକ୍ୟ କହ ନାହିଁ । ତାଙ୍କୁ ସାନ୍ତ୍ୱନା ଦେବାପରି କଥା କହ । ବୈଦେହୀଙ୍କର ଅନୁଗ୍ରହ ଭିକ୍ଷା କର । ରାକ୍ଷସମାନଙ୍କ ପାଇଁ ଘୋର ଭୟର ସମୟ ଉପସ୍ଥିତ । ବୈଦେହୀଙ୍କର ଈପ୍ସିତ ଫଳଲାଭ, ରାକ୍ଷସରାଜଙ୍କର ବିନାଶ ଓ ରାଘବଙ୍କର ବିଜୟ ମୁଁ ସ୍ପଷ୍ଟଭାବରେ ଦେଖିପାରୁଛି ।

ବୈଦେହୀଙ୍କର ବିଶାଳ ଚକ୍ଷୁ ସ୍ପନ୍ଦିତ, ବାମ ବାହୁ ଓ ବାମ ଉରୁ କମ୍ପିତ ହେବାକୁ ଲାଗିଲା । ଗୋଟିଏ ପକ୍ଷୀ ବୃକ୍ଷଶାଖାର ନୀଡ଼ ମଧ୍ୟରେ ପ୍ରବେଶ କରି ମଧୁର କୂଜନ ଦ୍ୱାରା ସୁଖଲାଭ ଆସନ୍ନ ବୋଲି ବାରମ୍ବାର ସୂଚନା ଦେଲା । ସୀତା ହୃଷ୍ଟ ହୋଇ କହିଲେ, ରାମଙ୍କର ବିଜୟ ହେଲେ ମୁଁ ତୁମମାନଙ୍କୁ ଶରଣ ଦାନ କରିବି । ସ୍ୱପ୍ନବୃତ୍ତାନ୍ତ ଶୁଣି ଓ ବହୁ ଶୁଭ ଲକ୍ଷଣ ଦେଖି ସୀତାଙ୍କର ଅବସାଦ ଦୂର ହେଲା ଏବଂ ସେ ହୃଷ୍ଟ ଓ ପ୍ରଫୁଲ୍ଲ ଦେଖାଗଲେ । ଚନ୍ଦ୍ରୋଦୟରେ ଯେପରି ଶୁକ୍ଳପକ୍ଷର ରାତ୍ରି ଶୋଭାନ୍ୱିତ ହୁଏ ସେହିପରି ଚନ୍ଦ୍ରବଦନା ସୀତାଙ୍କର ମୁଖମଣ୍ଡଳ ପ୍ରଫୁଲ୍ଲିତ ହେଲା ।

## ୮୩ ॥ ରତ୍ନମୁଦି ପ୍ରଦାନ : ମୁଁ ରାମଙ୍କର ଦୂତ

ହନୁମାନ ଶିଂଶପା ବୃକ୍ଷର ପତ୍ର ଗହଳ ମଧ୍ୟରେ ରହି ଏହି ସମସ୍ତ ବିଷୟ ଦେଖୁଥିଲେ ଓ ଶୁଣୁଥିଲେ । ସେ ଚିନ୍ତା କଲେ, ସହସ୍ର ସହସ୍ର ବାନର ଯାହାଙ୍କର ଅନ୍ୱେଷଣ କରୁଛନ୍ତି, ବର୍ତ୍ତମାନ ସେହି ସୀତାଙ୍କୁ ମୁଁ ସ୍ୱଚକ୍ଷୁରେ ଦେଖିଲି । ସୁଦକ୍ଷ ଚାର ଶତ୍ରୁର ଶକ୍ତିକୁ କଳନା କରିବାପରି ମୁଁ ରାକ୍ଷସମାନଙ୍କର ବିଶେଷତ୍ୱ, ଲଙ୍କାପୁରୀ ଓ ରାକ୍ଷସରାଜ ରାବଣର ପ୍ରଭାବ ଜାଣିପାରିଲି । ବର୍ତ୍ତମାନ ମୋର କର୍ତ୍ତବ୍ୟ ହେଉଛି, ସ୍ୱାମୀଙ୍କର ଦର୍ଶନପାଇଁ ବ୍ୟଗ୍ର ଚନ୍ଦ୍ରାନନା ସୀତାଙ୍କୁ ଆଶ୍ୱାସନା ଦେବା । ମୁଁ ଯଦି ଅସହ୍ୟ ଶୋକରେ ପୀଡ଼ିତା ସତୀ ସୀତାଙ୍କୁ ଆଶ୍ୱାସନା ନ ଦେଇ ଚାଲିଯାଏ, ତା' ହେଲେ ତାହା ନିଶ୍ଚୟ ଦୋଷାବହ ହେବ । ମୁଁ ଫେରିଗଲେ ରାମଚନ୍ଦ୍ରଙ୍କର କୌଣସି ସମ୍ବାଦ ନ ପାଇ ଓ କୌଣସି ପରିତ୍ରାଣର ଉପାୟ ନ ଦେଖି ଜନକନନ୍ଦିନୀ ପ୍ରାଣ ବିସର୍ଜନ କରିବେ । ରାମଙ୍କୁ ଯାଇ ସୀତାଙ୍କର ସମ୍ବାଦ ଦେବା

ଏବଂ ତାଙ୍କୁ ଆଶ୍ୱାସିତ କରିବା ଯେପରି ମୋର କର୍ତ୍ତବ୍ୟ, ସୀତାଙ୍କୁ ରାମଙ୍କର ସମ୍ବାଦ ଦେଇ ଆଶ୍ୱସ୍ତ କରିବା ସେହିପରି ମଧ୍ୟ କର୍ତ୍ତବ୍ୟ । କିନ୍ତୁ ରାକ୍ଷସୀମାନଙ୍କ ଆଗରେ ମୁଁ କିପରି ତାଙ୍କ ସହିତ ସାକ୍ଷାତ କରି କଥାବାର୍ତ୍ତା କରିବି ? ଏହି ରାତ୍ରି ଶେଷରେ ଯଦି ମୁଁ ତାଙ୍କୁ ଆଶ୍ୱାସିତ ନ କରେ, ତା' ହେଲେ କାଲିକି ହୁଏତ ସେ ବଞ୍ଚି ନ ପାରନ୍ତି । ସୀତା ମୋତେ କ'ଣ କହିଲେ ବୋଲି ରାମ ଯଦି ପଚାରନ୍ତି ମୁଁ ତାଙ୍କୁ କି ଉତ୍ତର ଦେବି ? ମୁଁ ଏଠାରେ ରହି ରାକ୍ଷସୀମାନଙ୍କର ଅସାବଧାନତାର ସୁଯୋଗ ନେଇ ସୀତାଙ୍କୁ ଆଶ୍ୱାସନା ଦେବି । ମୁଁ ବିଶାଳକାୟ, ପୁଣି ବାନର । ମୁଁ ମନୁଷ୍ୟ ସ୍ୱରରେ ସଂସ୍କୃତ ଭାଷାରେ କହିବି । କିନ୍ତୁ ବ୍ରାହ୍ମଣମାନଙ୍କ ପରି ଶୁଦ୍ଧ ସଂସ୍କୃତ ଭାଷାରେ ଯଦି ମୁଁ କଥା କହେ ତାହାହେଲେ ସୀତା ମୋତେ ରାବଣ ବୋଲି ମନେ କରି ଭୟ କରିବେ । ତେଣୁ ଏପରି ଭାବରେ ମୁଁ ସଂସ୍କୃତ କହିବି, ଯାହାକି ରାବଣର ଭାଷା ପରି ଶୁଦ୍ଧପୂତ ହୋଇ ନ ଥିବ, କିନ୍ତୁ ସୀତା ତା'ର ଅର୍ଥ ବୁଝିପାରୁଥିବେ । ହନୁମାନ ପୁଣି ଚିନ୍ତାକଲେ, ସୀତା ମୋର ରୂପକୁ ଦେଖି ମୋର କଥା ଶୁଣି ଭୟଭୀତ ହୋଇପାରନ୍ତି । ସେ ଚିତ୍କାର କଲେ ଭୟଙ୍କର ରାକ୍ଷସୀମାନେ ମୋତେ ଆସି ଘେରିଯାଇ ମାରିବାକୁ ବା ଧରିନେବାକୁ ଚେଷ୍ଟା କରିବେ । ମୁଁ ସେମାନଙ୍କଠାରୁ ଖସି ଯାଇ ବୃକ୍ଷକୁ ଲମ୍ଫଦେଇ ପ୍ରଧାବିତ ହେଲେ, ସେମାନେ ଭୟରେ ଚିତ୍କାର କରିପାରନ୍ତି, ତା' ହେଲେ ରାବଣର ସୈନ୍ୟମାନେ ଆସି ମୋତେ ଆକ୍ରମଣ କରିବେ । ଅବଶ୍ୟ ସେମାନଙ୍କୁ ଯୁଦ୍ଧରେ ଧ୍ୱଂସ କରିବାର ଶକ୍ତି ମୋର ଅଛି, କିନ୍ତୁ ଯୁଦ୍ଧର ଫଳାଫଳ ଅନିଶ୍ଚିତ । ସେମାନେ ମୋତେ ହତ୍ୟାକଲେ ବା ସେମାନଙ୍କ ଦ୍ୱାରା ମୁଁ ବନ୍ଦୀ ହେଲେ, ରାମଙ୍କର କାର୍ଯ୍ୟ ସାଧିତ ହୋଇପାରିବ ନାହିଁ । ସୀତାଙ୍କର ଉଦ୍ଦେଶ୍ୟ ମଧ୍ୟ ସିଦ୍ଧ ହେବ ନାହିଁ । ହିଂସ୍ର ରାକ୍ଷସମାନେ ଜନକନନ୍ଦିନୀଙ୍କୁ ହତ୍ୟା କରିପାରନ୍ତି । ତା' ହେଲେ ରାମ ଓ ସୁଗ୍ରୀବଙ୍କର କାର୍ଯ୍ୟ ନିଷ୍ଫଳ ହେବ । ତେଣୁ ଯେଉଁ କାର୍ଯ୍ୟ ଦ୍ୱାରା ନିଃସଂଶୟ ହୋଇ ମୁଁ ସୀତାଙ୍କ ସହିତ ଆଳାପ କରିପାରିବି ତାହାର ଉପାୟ ବାହାର କରିବାକୁ ହେବ । ବୁଦ୍ଧିମାନ ହନୁମାନ ଏହିପରି ଚିନ୍ତା କରି ସ୍ଥିର କଲେ, ମୁଁ ବୃକ୍ଷଶାଖାର ଅନ୍ତରାଳରେ ଲୁଚି ରହି ରାମଙ୍କର ଗୌରବ ଗାଥା ମଧୁରଭାବରେ କୀର୍ତ୍ତନ କରିବି ଓ ସୀତାଙ୍କର ବିଶ୍ୱାସଭାଜନ ହେବି ।

ହନୁମାନ ମଧୁର ସ୍ୱରରେ ରାମଙ୍କର ଚରିତ ଓ ଗୁଣ କୀର୍ତ୍ତନ କଲେ । ସେ କହିଲେ, ଇକ୍ଷ୍ୱାକୁ ବଂଶରେ ଦଶରଥ ନାମରେ ଜଣେ ଯଶସ୍ୱୀ ରାଜା ଥିଲେ । ତାଙ୍କର ଜ୍ୟେଷ୍ଠପୁତ୍ର ରାମ ଧନୁର୍ଦ୍ଧାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ । ସେ ସ୍ୱଜନ, ଜୀବଲୋକ ତଥା ଧର୍ମର ରକ୍ଷକ । ସତ୍ୟନିଷ୍ଠ ରାମ ପିତୃସତ୍ୟ ରକ୍ଷାକରି ପତ୍ନୀ ଓ ଭ୍ରାତାଙ୍କ ସହିତ ବନକୁ ନିର୍ବାସିତ ହେଲେ । ଦିନେ ସେ ଆନନ୍ଦରେ ମୃଗୟା କରି ବୁଲୁଥିବା ବେଳେ ଜନସ୍ଥାନରେ ବହୁ କାମରୂପୀ ବଳବାନ୍ ରାକ୍ଷସମାନଙ୍କୁ ବଧ କଲେ । ଖର, ଦୂଷଣ, ତ୍ରିଶିରା ଓ ରାକ୍ଷସବୀରମାନଙ୍କର ନିଧନର ସମ୍ବାଦ ଶୁଣି ରାକ୍ଷସ ରାବଣ ମାୟାମୃଗ ଦ୍ୱାରା ରାମଙ୍କୁ ପ୍ରବଞ୍ଚିତ କରି ଅନିନ୍ଦିତା ସୀତାଙ୍କୁ ହରଣ କଲା । ରାମ ବନ ମଧ୍ୟରେ ବାନର ସୁଗ୍ରୀବଙ୍କୁ ମିତ୍ର ରୂପେ ଲାଭ କରି ବାଳୀଙ୍କୁ ନିହତ କଲେ ଓ ସୁଗ୍ରୀବଙ୍କୁ ରାଜ୍ୟ ପ୍ରଦାନ କଲେ । ଏବେ

ସୁଗ୍ରୀବଙ୍କ ଆଦେଶରେ ସହସ୍ର ସହସ୍ର ବାନର ସୀତାଙ୍କ ଅନ୍ୱେଷଣ କରୁଛନ୍ତି । ମୁଁ ସଂପାତିର କଥାରେ ଶତଯୋଜନ ବିସ୍ତୃତ ସାଗର ଲଂଘନ କରି ଏଠାରେ ସୀତାଙ୍କୁ ଦେଖିବାକୁ ଆସିଛି । ରାମଙ୍କଠାରୁ ସୀତାଙ୍କର ଯେଉଁ ରୂପ, ବର୍ଣ୍ଣ ଏବଂ ଲକ୍ଷଣ ବିଷୟରେ ମୁଁ ଶୁଣିଥିଲି, ମୁଁ ତାହା ପ୍ରତ୍ୟକ୍ଷରେ ଦେଖିବାକୁ ପାଇଲି । ବାନରଶ୍ରେଷ୍ଠ ହନୁମାନ ଏତିକି କହି ଚୁପ୍ ହୋଇଗଲେ । ଏହା ଶୁଣି ସୀତା ବିସ୍ମିତ ନୟନରେ ଶିଂଶପା ବୃକ୍ଷଆଡ଼କୁ ଅନାଇଲେ । ସେ ଚାରିଆଡ଼କୁ ଚାହିଁ, ସୂର୍ଯ୍ୟପରି ତେଜୀୟାନ ଓ ବୁଦ୍ଧିମାନ୍ ବାୟୁପୁତ୍ରଙ୍କୁ ଦେଖିପାରିଲେ । ଶୁକ୍ଳବସ୍ତ୍ର ପରିହିତ ତପ୍ତକାଞ୍ଚନ ନେତ୍ର ପିଙ୍ଗଳବର୍ଣ୍ଣ ବାନରଙ୍କୁ ଦେଖି ମୈଥିଳୀ ଚିନ୍ତିତ ହେଲେ । ମଧୁର କଣ୍ଠରେ ରାମଗାଥା କୀର୍ତ୍ତନ କରିବାର ଶୁଣି ସେ ରାମଲକ୍ଷ୍ମଣଙ୍କ ନାମ ଧରି ବିଳାପ କରିବାକୁ ଲାଗିଲେ । ଏହା ସ୍ୱପ୍ନ କି ସତ୍ୟ ପ୍ରଥମେ ଜାଣିପାରିଲେ ନାହିଁ । ହନୁମାନଙ୍କୁ ଦେଖି ତାଙ୍କର ଭୟ ଜାତ ହେଲା । ସେ ଭାବିଲେ, ମୁଁ ସ୍ୱପ୍ନରେ ଏକ ବାନରକୁ ଦେଖିଲି । ବାନର ସ୍ୱପ୍ନ ଦେଖିବା ଶାସ୍ତ୍ରରେ ନିଷିଦ୍ଧ । ରାମ, ଲକ୍ଷ୍ମଣ ଓ ମୋ ପିତା ରାଜା ଜନକଙ୍କର ମଙ୍ଗଳ ତ ? କିନ୍ତୁ ମୁଁ ବୁଦ୍ଧି ଦ୍ୱାରା ବିଚାର କରି ଦେଖୁଛି, ଏହି ବାନର ଏକ ସ୍ୱପ୍ନ ନୁହେଁ ବା ଏକ କଳ୍ପିତ ବସ୍ତୁ ନୁହେଁ । ମୁଁ ବୃହସ୍ପତି, ଇନ୍ଦ୍ର, ବ୍ରହ୍ମା ଓ ଅଗ୍ନିକୁ ନମସ୍କାର କରି ଏହି ବନଚାରୀର କଥା ସତ୍ୟ ହେଉ ବୋଲି କାମନା କରୁଛି ।

ଏହି ସମୟରେ ହନୁମାନ ବୃକ୍ଷରୁ ଓହ୍ଲାଇ ଆସି ଅତି ବିନୀତ ଭାବରେ ସୀତାଙ୍କୁ ପ୍ରଣାମ କରି କୃତାଞ୍ଜଳି ହୋଇ କହିଲେ – କମଳନୟନା, ତୁମେ କିଏ ? ଏପରି କଷାୟ ବସ୍ତ୍ର ପିନ୍ଧି· ବୃକ୍ଷଶାଖାକୁ ଆଶ୍ରୟ କରି ଠିଆ ହୋଇଛ କାହିଁକି ? କେଉଁ ଶୋକରେ ତୁମ ଚକ୍ଷୁରୁ ଅଶ୍ରୁଜଳ ବହିଯାଉଛି ? ସୁରାସୁର ନାଗ, ଗନ୍ଧର୍ବ, ଯକ୍ଷ, ରକ୍ଷ, କିନ୍ନରଙ୍କର ମଧ୍ୟରୁ ତୁମେ ଜଣେ ନୁହଁତ ? ତୁମେ ନକ୍ଷତ୍ର ଲୋକରୁ ପୃଥିବୀକୁ ଖସି ପଡ଼ି ନାହଁ ତ ? ତୁମେ ଦୀର୍ଘଶ୍ୱାସ ପକାଇ ରୋଦନ କରୁଛ ଓ ରାମଙ୍କର ନାମ ବାରମ୍ବାର ଉଚ୍ଚାରଣ କରୁଛ । ତୁମେ ନିଶ୍ଚୟ ରାଜନନ୍ଦିନୀ ଓ ରାଜରାଣୀ ହୋଇଥିବ । ଜନସ୍ଥାନରୁ ରାବଣ ବଳପୂର୍ବକ ହରଣ କରି ଆଣିଥିବା ସୀତା ଯଦି ତୁମେ ହୋଇଥାଅ, ତା' ହେଲେ ତୁମେ ମୋତେ ଉତ୍ତର ଦିଅ । ତୁମର ଅସାମାନ୍ୟ ରୂପ, ତପସ୍ୱିନୀ ବେଶ ଓ ଦୀନଅବସ୍ଥା ଦେଖି ମୋର ମନେହେଉଛି ତୁମେ ନିଶ୍ଚୟ ରାମଙ୍କର ମହିଷୀ ।

ସୀତା ଉତ୍ତର ଦେଲେ, ପୃଥିବୀରେ ରାଜାମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ରାଜା ଦଶରଥଙ୍କର ମୁଁ ପୁତ୍ରବଧୂ । ବିଦେହରାଜ ଜନକଙ୍କର କନ୍ୟା ଓ ରାମଙ୍କର ପତ୍ନୀ ସୀତା । ପିତୃସତ୍ୟ ରକ୍ଷାପାଇଁ ରାମ ବନବାସ କଲାବେଳେ ମୁଁ ତାଙ୍କ ସହିତ ଆସିଥିଲି ଏବଂ ସେ ଦଣ୍ଡକାରଣ୍ୟରେ ବାସ କରୁଥିବାବେଳେ ଦୁରାତ୍ମା ରାବଣ ମୋତେ ଅପହରଣ କଲା । ରାବଣ ମୋତେ ଅନୁଗ୍ରହ କରି ବଞ୍ଚିରହିବା ପାଇଁ ମାତ୍ର ଦୁଇମାସ ସମୟ ଦେଇଛି । ଦୁଇମାସ ପରେ ମୁଁ ଆଉ ବଞ୍ଚିବି ନାହିଁ ।

ହନୁମାନ ଦୁଃଖାର୍ତ୍ତା ସୀତାଙ୍କୁ ସାନ୍ତ୍ୱନା ଦେଇ କହିଲେ – ଦେବୀ, ମୁଁ ରାମଙ୍କର ଦୂତ ଓ ତାଙ୍କର ଆଦେଶରେ ତୁମ ପାଖକୁ ଆସିଛି । ଯେଉଁ ରାମ ଶସ୍ତ୍ରଜ୍ଞ ଓ ଶାସ୍ତ୍ରଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ, ସେ ତୁମର କୁଶଳ ସମ୍ବାଦ ଜାଣିବା ପାଇଁ ମୋତେ ପଠାଇଛନ୍ତି । ତୁମ ସ୍ୱାମୀଙ୍କର ପ୍ରିୟ ସହଚର ତେଜସ୍ୱୀ ଲକ୍ଷ୍ମଣ ଶୋକାର୍ତ୍ତ ହୋଇ ତୁମକୁ ଅଭିବାଦନ କରିଛନ୍ତି ।

ରାମ ଲକ୍ଷ୍ମଣଙ୍କର କୁଶଳ ବାର୍ତ୍ତା ଶୁଣି ସୀତାଙ୍କର ସର୍ବାଙ୍ଗ ରୋମାଞ୍ଚିତ ହେଲା । ସେ ହନୁମାନଙ୍କୁ କହିଲେ, ମନୁଷ୍ୟ ବଞ୍ଚି ରହିଥିଲେ, ଶହେ ବର୍ଷ ପରେ ମଧ୍ୟ ତାକୁ ଆନନ୍ଦ ମିଳେ । ଏହି କିମ୍ବଦନ୍ତୀ ବାସ୍ତବରେ ସତ୍ୟ ମନେହେଉଛି । ଏତିକି କହି ସୀତା ପୁଣି ହନୁମାନଙ୍କୁ ସନ୍ଦେହ କରିବାକୁ ଲାଗିଲେ । ସେ ଭାବିଲେ – ଏ ନିଶ୍ଚୟ ରାବଣ, ଅନ୍ୟ ରୂପ ଧରି ଏଠାକୁ ଆସିଛି । ହନୁମାନ ସୀତାଙ୍କୁ ନମସ୍କାର କଲେ ମଧ୍ୟ ଭୟତ୍ରସ୍ତା ସୀତା ତାଙ୍କ ଆଡ଼କୁ ଚାହିଁଲେ ନାହିଁ । ହନୁମାନଙ୍କର ବନ୍ଦନା ଓ ମଧୁର ଭାଷଣ ଶୁଣି ସୀତା କହିଲେ, ତୁ ମାୟାବୀ ରାବଣ । ମାୟାରେ ତୁ ମୋର ଦୁଃଖ ଜନ୍ମାଇବା ପାଇଁ ଏଠାକୁ ଆସିଛୁ । ଜନସ୍ଥାନରେ ଭିକ୍ଷୁକ ରୂପଧାରୀ ରାବଣକୁ ମୁଁ ଦେଖିଛି । ପୁଣି ତୁ ସେହିପରି ଏକ ରୂପ ଗ୍ରହଣ କରି ମୋତେ ସନ୍ତାପିତ କରୁଛୁ । ତାହା ନିଶ୍ଚୟ ଅଶୋଭନୀୟ । କିଛି ସମୟ ପରେ ପୁଣି କହିଲେ – ଆଚ୍ଛା, ତୁମକୁ ଦେଖି ମୋ ମନରେ ପ୍ରୀତି ଜାତ ହେଉଛି । ତା ହେଲେ ତୁମେ କ'ଣ ରାମଙ୍କର ଦୂତ ? ବାନର, ତୁମେ ଯଦି ରାମଙ୍କର ଦୂତ ହୋଇଥାଅ, ତା' ହେଲେ ତୁମେ ରାମଙ୍କର ଗୁଣାବଳୀ କୀର୍ତ୍ତନ କର । ଏହିପରି ସୀତା ହନୁମାନଙ୍କୁ କେତେବେଳେ ରାବଣ ଓ କେତେବେଳେ ରାମଙ୍କର ଦୂତ ବୋଲି ମନେକରି ଆଶା ଓ ଆଶଙ୍କା ମଧ୍ୟରେ ପଡ଼ିଗଲେ ।

ସୀତାଙ୍କର ବିଶ୍ୱାସ ଜନ୍ମାଇବା ପାଇଁ ହନୁମାନ ପରମ ପ୍ରୀତିକର ରାମଙ୍କର ଗୁଣକୀର୍ତ୍ତନ କରିବାକୁ ଲାଗିଲେ । ସେ କହିଲେ – ବୈଦେହୀ, ମୁଁ ସୁଗ୍ରୀବଙ୍କର ଅମାତ୍ୟ ଓ ରାମଙ୍କର ଦୂତ ହନୁମାନ । ମୁଁ ବିଶାଳ ସାଗର ଲଂଘନ କରି ତୁମକୁ ଦର୍ଶନ କରିବା ପାଇଁ ଆସିଛି । ମୋ ବିଷୟରେ ତୁମ ମନରୁ ସମସ୍ତ ସନ୍ଦେହ ଦୂର କର । ସୀତା ହନୁମାନଙ୍କୁ ବହୁ ପ୍ରଶ୍ନ ପଚାରିଲେ । ରାମଲକ୍ଷ୍ମଣଙ୍କ ସହିତ ହନୁମାନ ଓ ବାନରମାନଙ୍କର କେବେ ମିଳନ ହେଲା, ରାମ ଓ ଲକ୍ଷ୍ମଣଙ୍କର ଶରୀରର ଗଠନ କିପରି ଓ ସେମାନଙ୍କର କି କି ବିଶେଷ ଲକ୍ଷଣ ଅଛି, ତାହା ସେ ଜାଣିବା ପାଇଁ ପଚାରିଲେ । ହନୁମାନ ରାମ ଲକ୍ଷ୍ମଣଙ୍କ ଶରୀର ଗଠନ ସବିସ୍ତାର ବର୍ଣ୍ଣନା କଲେ । ନଖଠାରୁ ଶିଖା ପର୍ଯ୍ୟନ୍ତ ତାଙ୍କର ମନୋହର ସୁଗଠିତ ଅବୟବ ଓ ରୂପକାନ୍ତିର ବ୍ୟାଖ୍ୟା କରି ସେ ରାମଙ୍କର ଅଶେଷ ଗୁଣାବଳୀର କୀର୍ତ୍ତନ କଲେ । ସୀତାଙ୍କୁ ରାବଣ ହରିନେବା ପରେ ଯାହା ସବୁ ଘଟିଯାଇଛି ତାହା ବର୍ଣ୍ଣନା କରି କହିଲେ, ରାକ୍ଷସ ତୁମକୁ ହରଣ କରି ନେଉଥିବା ବେଳେ ତୁମେ ତୁମ ଦେହରେ ଲଗାଇଥିବା ଅଳଙ୍କାରମାନ ଋଷ୍ୟମୂକ ପର୍ବତକୁ ପକାଇ ଦେଇଥିଲ । ସେତେବେଳେ ଯେଉଁ ପାଞ୍ଚଜଣ ବାନର ବସିଥିଲେ, ସେମାନଙ୍କ ମଧ୍ୟରେ ବାଳୀଙ୍କର ଭ୍ରାତା ସୁଗ୍ରୀବ ଓ ମୁଁ ବସିଥିଲୁ । ମୁଁ

ସେ ଅଳଙ୍କାର ସବୁ ଗୋଟାଇ ରଖିଥିଲି ଏବଂ ସୁଗ୍ରୀବଙ୍କ ସହ ମିତ୍ରତାପରେ ରାମ ତାହା ଦେଖି ଶୋକରେ ମୂର୍ଚ୍ଛିତ ହୋଇଗଲେ । ବର୍ତ୍ତମାନ ସେ ସବୁ ଅଳଙ୍କାର ସୁଗ୍ରୀବଙ୍କ ପାଖରେ ଗଚ୍ଛିତ ଅଛି । ରାଘବଙ୍କ ବିରହରେ ତୁମେ ଯେପରି ସନ୍ତପ୍ତ ତୁମ ବିରହରେ ସେ ସେହିପରି ଘୋର ଦୁଃଖରେ କାଳ କାଟୁଛନ୍ତି । ବହୁ ମନୋହର କାନନ, ନଦୀ, ପ୍ରପାତ, ପ୍ରସ୍ରବଣମାନଙ୍କରେ ସେ ବିଚରଣ କରୁଥିଲେ ମଧ୍ୟ ତାଙ୍କର ମନରେ ଆନନ୍ଦ ନାହିଁ । ଜନକନନ୍ଦିନୀ, ରଘୁନନ୍ଦନ ଅଚିରେ ରାବଣକୁ ସବାନ୍ଧବ ନିହତ କରି ତୁମକୁ ଉଦ୍ଧାର କରିବେ । ସେହି ଉଦ୍ଦେଶ୍ୟରେ ରାମଙ୍କର ନିର୍ଦ୍ଦେଶ ଓ ସୁଗ୍ରୀବଙ୍କ ଆଦେଶରେ ଆମେ ବାନରମାନେ ତୁମକୁ ଖୋଜିବା ପାଇଁ ସମସ୍ତ ପୃଥିବୀ ଭ୍ରମଣ କରୁଛୁ । ଅଙ୍ଗଦ, ଜାମ୍ବବାନ ପ୍ରଭୃତି ଯେଉଁମାନଙ୍କ ସହିତ ମୁଁ ଆସିଥିଲି, ସେମାନେ ଦକ୍ଷିଣ ସମୁଦ୍ରକୂଳରେ ତୁମର ସମ୍ବାଦ ଜାଣିବା ପାଇଁ ଅପେକ୍ଷା କରିଛନ୍ତି । ମୈଥିଳୀ, ମୁଁ ପବନ ଓ ଅଞ୍ଜନାଙ୍କର ପୁତ୍ର ଏବଂ ରାମଙ୍କର ଦୂତ ଭାବରେ ତୁମର ଶୁଭ ସମ୍ବାଦ ଜାଣିବା ପାଇଁ ଆସିଛି ।

ହନୁମାନ ଏହି ସମସ୍ତ ବିଷୟ ବର୍ଣ୍ଣନା କରି ସୀତାଙ୍କର ସନ୍ତୋଷ ବିଧାନ କରି ପାରିଥିଲେ ମଧ୍ୟ ତାଙ୍କର ପୂର୍ଣ୍ଣ ବିଶ୍ୱାସ ଜନ୍ମାଇବା ପାଇଁ ରାମଙ୍କଠାରୁ ଆଣିଥିବା ରତ୍ନମୁଦି ତାଙ୍କୁ ପ୍ରଦାନ କଲେ । ସେ କହିଲେ— ଦେବୀ, ରାମଙ୍କ ନାମାଙ୍କିତ ଏହି ଅଙ୍ଗୁରୀୟକୁ ଦେଖ, ତାହାହେଲେ ତୁମର ପ୍ରତ୍ୟୟ ହେବ । ସୀତା ରାମଙ୍କ ଅଙ୍ଗୁରୀୟ ହସ୍ତରେ ଗ୍ରହଣ କରି ତାକୁ ଭଲଭାବରେ ଦେଖିବାକୁ ଲାଗିଲେ । ଅଙ୍ଗୁରୀୟ ଲାଭ କରି ସ୍ୱାମୀଙ୍କୁ ଲାଭ କରିବା ଭଳି ତାଙ୍କର ଆନନ୍ଦ ଜାତ ହେଲା । ତାଙ୍କର ମନୋହର ମୁଖମଣ୍ଡଳ ରାହୁମୁକ୍ତ ଚନ୍ଦ୍ରମା ପରି ଉଜ୍ଜ୍ୱଳ ଦେଖାଗଲା । ସେ ବାନରବୀରଙ୍କର ପ୍ରଶଂସା କରି କହିଲେ— ବାନରୋତ୍ତମ, ତୁମେ ଏକାକୀ ରାକ୍ଷସମାନଙ୍କର ଭୂମି ମର୍ଦ୍ଦିତ କରିଛ । ରାବଣ ପ୍ରତି ତୁମର ତିଳେମାତ୍ର ଭୟ ନାହିଁ । ତେଣୁ ତୁମକୁ ସାମାନ୍ୟ ବାନର ବୋଲି ମୁଁ ଗ୍ରହଣ କରୁ ନାହିଁ । ତୁମର ପରାକ୍ରମ ରାମ ଜାଣନ୍ତି, ତା ନ ହେଲେ ସେ କେବେ ତୁମକୁ ଏଠାକୁ ପଠାଇ ନ ଥାନ୍ତେ । ଏବେ ରାମ ଲକ୍ଷ୍ମଣଙ୍କର କୁଶଳ ସମ୍ବାଦ ଜାଣି ମୁଁ ଆଶ୍ୱସ୍ତ ହେଲି । ସସାଗରା ପୃଥିବୀକୁ ଦଗ୍ଧ କରିବାର ଶକ୍ତି ତାଙ୍କର ଅଛି, କିନ୍ତୁ ରାଜପୁତ୍ର ରାମ ଦୁଃଖଶୋକରେ ବ୍ୟାକୁଳିତ ହୋଇ ପୁରୁଷକାରକୁ ଭୁଲି ଯାଉ ନାହାନ୍ତି ତ ? ମୁଁ ଅପେକ୍ଷା କରି ରହିଛି, କେବେ ରାମ ସୁଗ୍ରୀବଙ୍କ ବାନରସେନାଙ୍କୁ ଧରି ଲଙ୍କାକୁ ଆସିବେ ଏବଂ ତାଙ୍କର ଶରଜାଳରେ ରାବଣ ଓ ରାକ୍ଷସକୁଳର ସଂହାର କରିବେ ।

ହନୁମାନ ସୀତାଙ୍କୁ ନମସ୍କାର କରି କହିଲେ— ଦେବୀ, ଏଠାରେ ତୁମେ ଥିବା ବିଷୟରେ ରାମ ଜାଣନ୍ତି ନାହିଁ । ମୋ'ଠାରୁ ସମ୍ବାଦ ପାଇବାମାତ୍ରେ ସେ ବିଶାଳ ବାନର ଓ ଭଲ୍ଲୁକ ସୈନ୍ୟ ସହ ଏଠାକୁ ଆସି ଲଙ୍କାପୁରୀକୁ ରାକ୍ଷସଶୂନ୍ୟ କରିବେ । ମୁଁ ପୃଥିବୀର ସମସ୍ତ ବନପର୍ବତ ଓ ଫଳମୂଳଙ୍କ ନାମରେ ଶପଥ କରୁଛି, ତୁମେ ଶୀଘ୍ର ଚାରୁକୁଣ୍ଡଳଯୁକ୍ତ ବିମ୍ବୋଷ୍ଠ କମଳନୟନ ରାମଙ୍କୁ ଆକାଶରେ ପୂର୍ଣ୍ଣ ଚନ୍ଦ୍ରୋଦୟ ହେବା ପରି ଲଙ୍କାରେ ଆବିର୍ଭୂତ ହେବାର ଦେଖିବ । ତୁମ ଛଡ଼ା ରାମଙ୍କର ଅନ୍ୟ କୌଣସି ଚିନ୍ତା ନାହିଁ । ସେ ଶୟନ, ସ୍ୱପନ, ଜାଗରଣରେ ତୁମ ନାମ ହିଁ ଉଚ୍ଚାରଣ କରୁଛନ୍ତି ।

# ୮୪ ।। ସୀତାଙ୍କର ହର୍ଷ : ମଥାମଣି ପ୍ରଦାନ

ହନୁମାନଙ୍କର କଥା ଶୁଣି ଏକ ସମୟରେ ସୀତାଙ୍କ ମନରେ ଆନନ୍ଦ ଓ ଶୋକ ଜାତ ହେଲା । ଆନନ୍ଦ, କାରଣ ତାଙ୍କ ଛଡ଼ା ରାମ ଅନ୍ୟ କାହାରିକି ଚିନ୍ତା କରୁ ନାହାନ୍ତି ଏବଂ ତାଙ୍କୁ ଫେରିପାଇବା ପାଇଁ ସେ ସମସ୍ତ ଉଦ୍ୟମ କରୁଛନ୍ତି । ବିଷାଦ, ତାଙ୍କ ବିରହରେ ରାମ ଅତିଶୟ ଶୋକାତୁର ହୋଇ କାଳ ଯାପନ କରୁଛନ୍ତି । ସୀତା କହିଲେ – ବତ୍ସ ହନୁମାନ, ବିଧିର ବିଧାନ ଅଲଂଘନୀୟ । ଦେଖ, ରାମ ଲକ୍ଷ୍ମଣ ଏବଂ ମୁଁ ଗଭୀର ଶୋକରେ ନିମଗ୍ନ । ସାଗରରେ ନୌକା ଭଗ୍ନ ହେଲେ ଆରୋହୀମାନେ ସନ୍ତରଣ କରି ଯେପରି କୂଳ କିନାରା ପାଆନ୍ତି ନାହିଁ ଏବଂ ଶୋକରେ ଉଦ୍‌ବିଗ୍ନ ହୁଅନ୍ତି, ଆଜି ଠିକ୍ ସେହିପରି ଆମର ଅବସ୍ଥା । ମୋର ପତି କେବେ ରାବଣ ଓ ରାକ୍ଷସମାନଙ୍କୁ ସଂହାର କରି ବିଧ୍ୱସ୍ତ ଲଙ୍କାରେ ମୋତେ ଦେଖିପାରିବେ, ମୁଁ ଜାଣେ ନାହିଁ । ରାବଣ ଦେଇଥିବା ବର୍ଷେ ସମୟ ମଧ୍ୟରୁ ମାତ୍ର ଦୁଇମାସ ବାକି ଅଛି । ତା'ପରେ ମୁଁ ଆଉ ନ ଥିବି । ରାବଣର ଭାଇ ବିଭୀଷଣ ମୋତେ କୌଣସି ନିର୍ଯାତନା ନ ଦେବା ପାଇଁ ବହୁ ଅନୁନୟ ବିନୟ କରି କହିଛନ୍ତି । କିନ୍ତୁ ରାବଣ ତାହା ଗ୍ରହଣ କରୁନାହିଁ । ବିଭୀଷଣଙ୍କର ଜ୍ୟେଷ୍ଠକନ୍ୟା କଳା ମୋତେ ଏହି କଥା ଆସି କହିଥିଲା । ଅବିନ୍ଧ୍ୟ ନାମକ ଜଣେ ବିଦ୍ୱାନ୍ ସଚ୍ଚରିତ୍ର ବୃଦ୍ଧ ରାକ୍ଷସ ଅଛନ୍ତି । ରାବଣ ମଧ୍ୟ ତାଙ୍କୁ ସମ୍ମାନ କରେ । ସେ ରାବଣକୁ କହିଲେ ଯେ ରାମଙ୍କଦ୍ୱାରା ରାକ୍ଷସକୁଳର ବିନାଶ ସମୟ ଉପସ୍ଥିତ । କିନ୍ତୁ ରାବଣ ସେହି ହିତବାକ୍ୟ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ନୁହେଁ । ମୋ ଅନ୍ତରାତ୍ମା ପବିତ୍ର । ମୋର ସ୍ୱାମୀ ଅଶେଷ ଗୁଣର ଆଧାର । ବଳ, ବିକ୍ରମ, ଉତ୍ସାହ, ପୌରୁଷ, ଦୟା ଓ ବିଜ୍ଞତା ଆଦି ସକଳ ଗୁଣର ସେ ସମାହାର । ସେ ନିଶ୍ଚୟ ମୋତେ ଉଦ୍ଧାର କରିବେ । ନିଜର ଶୋକ ଓ ରାମଙ୍କର ଗୁଣ ବର୍ଣ୍ଣନା କରି ସୀତାଙ୍କର ମୁଖ ଅଶ୍ରୁପୂର୍ଣ୍ଣ ହୋଇଗଲା ।

ହନୁମାନ କହିଲେ – ଅନିନ୍ଦିତା, ମୁଁ ତୁମକୁ ଆଜି ହିଁ ରାକ୍ଷସମାନଙ୍କଠାରୁ ମୁକ୍ତି ଦେବି । ତୁମେ ମୋ ପୃଷ୍ଠରେ ଆରୋହଣ କର । ମୁଁ ତୁମକୁ ପିଠିରେ ବସାଇ ସାଗର ପାର ହୋଇଯିବି । ରାବଣ ସହିତ ସମଗ୍ର ଲଙ୍କାକୁ ବହନ କରିନେବାର ଶକ୍ତି ମୋର ଅଛି । ମୁଁ ତୁମକୁ ଆକାଶପଥରେ ନେଇ ରାମଙ୍କ ପାଖରେ ପହଞ୍ଚାଇ ଦେଉଛି କି ନାହିଁ, ତୁମେ ଦେଖିବ । ସୀତା ଆନନ୍ଦରେ ପୁଲକିତ ହୋଇ କହିଲେ – ହନୁମାନ, ଏତେ ଦୂର ତୁମେ ମୋତେ କିପରି ବୋହିନେବାକୁ ଇଚ୍ଛା କରୁଛ ? ଏହା ତୁମର ବାନରସ୍ୱଭାବ ବୋଲି ମୁଁ ମନେ କରୁଛି । ତୁମର ଏହି କ୍ଷୁଦ୍ର ଶରୀରରେ ତୁମେ କିପରି ଏପରି ସାହସ କରୁଛ ?

ସୀତାଙ୍କ କଥା ଶୁଣି ପବନନନ୍ଦନ ଚିନ୍ତାକଲେ, କମଳନୟନା ସୀତା ଯେ ମୋର ଶକ୍ତି ଓ ପ୍ରଭାବ ଜାଣନ୍ତି ନାହିଁ ତା ମୋର ଏକ ପରାଭବ ବୋଲି ମୁଁ ମନେ କରୁଛି । ସୀତାଙ୍କର ବିଶ୍ୱାସ ଜନ୍ମାଇବା ପାଇଁ ହନୁମାନ ନିଜର ଶରୀରକୁ ବଢ଼ାଇବାକୁ ଲାଗିଲେ । ତାଙ୍କର ଶରୀର ମେରୁ ଓ ମନ୍ଦର ପର୍ବତ ତୁଲ୍ୟ ହୋଇଗଲା । ବଜ୍ରନଖ, ବଜ୍ରଦଂଷ୍ଟ୍ର, ମହାକାୟ ମହାବଳୀ ବାନରେନ୍ଦ୍ର ସୀତାଙ୍କୁ କହିଲେ – ଦେବୀ, ମୋର ଶକ୍ତି ବଳରେ ମୁଁ ପର୍ବତ, ବନ, ପ୍ରାଚୀର ଓ ଅଟ୍ଟାଳିକା ସହିତ ଏପରିକି ରାବଣ ସହ ଲଙ୍କାପୁରୀକୁ ବୋହି ନେଇପାରିବି ।

ତୁମେ ନିଃଶଙ୍କ ହୁଅ । ଜନକନନ୍ଦିନୀ ପବନପୁତ୍ରଙ୍କର ଏହି ବିଶାଳ କାୟା ଦେଖି କହିଲେ – ମହାକପି, ତୁମର ସାହସ, ବଳ, ବାୟୁ ତୁଲ୍ୟ ଗତି, ଅଗ୍ନିସମ ତେଜ ଦେଖି ମୁଁ ଭଲଗୂପେ ଜାଣିପାରୁଛି ଯେ ତୁମ ଛଡ଼ା କେହି ଅପାର ସମୁଦ୍ରକୁ ଲଂଘନ କରିପାରି ନ ଥାନ୍ତେ । ଫେରିଯିବାପାଇଁ ତୁମର ଶକ୍ତି ଅଛି ଏବଂ ମୋତେ ନେଇଯିବାର ଶକ୍ତି ତୁମର ଅଛି । କିନ୍ତୁ କପିଶ୍ରେଷ୍ଠ, ତୁମ ସହିତ ଯିବା କେତେଦୂର ସଙ୍ଗତ ହେବ ମୁଁ ବିଚାର କରୁଛି । ତୁମେ ବାୟୁ ପରି ଦ୍ରୁତ ବେଗରେ ଯିବାବେଳେ ମୁଁ ତୁମ ପିଠିରୁ ଖସିଯାଇ ସମୁଦ୍ରରେ ପଡ଼ିଯାଇପାରେ । ତୁମେ ମୋତେ ଏଠାରୁ ହରଣ କରି ନେଇଯାଉଥିବା ଜାଣିଲେ ଦୁରାତ୍ମା ରାବଣ ତାର ଭୀମବିକ୍ରମ ରାକ୍ଷସବଳକୁ ପଠାଇବ । ତୁମେ ନିରସ୍ତ୍ର, ସଶସ୍ତ୍ର ରାକ୍ଷସମାନଙ୍କ ସହିତ ଲଢ଼ି ତୁମର ଫେରିଯିବା ସନ୍ଦେହଜନକ ହେବ । ଯେତେବେଳେ ତୁମର ଜୀବନସଂଶୟ ଉପସ୍ଥିତ ହେବ, ମୋତେ ତୁମେ କିପରି ରକ୍ଷା କରିବ ? ରାକ୍ଷସମାନେ ମୋତେ ଧରି ନେଇ ମାରିପକାଇବେ । ସବୁଠାରୁ ପ୍ରଧାନ କଥା ହେଉଛି, ତୁମେ ରାକ୍ଷସମାନଙ୍କୁ ଜୟକରି ପାରିଲେ ମଧ୍ୟ ରାମ ନିଜେ ତାହା ନ କଲେ ତାଙ୍କର ଯଶୋହାନି ହେବ । ଏହାଛଡ଼ା ମୁଁ ସ୍ୱେଚ୍ଛାରେ ଅନ୍ୟ ପୁରୁଷକୁ ସ୍ପର୍ଶ କରି ନାହିଁ କି କରିବି ନାହିଁ । ରାବଣ ଯେ ମୋତେ ବଳପୂର୍ବକ ଆଣିଲା, ସେଥିରେ ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇଥିଲି । ତେଣୁ ମୋତେ ଉଦ୍ଧାର କରିବାର ଶ୍ରେଷ୍ଠ ପନ୍ଥା ହେଉଛି, ରାମ ରାକ୍ଷସମାନଙ୍କ ସହ ଦଶଗ୍ରୀବକୁ ନିହତ କରି ମୋତେ ଏଠାରୁ ନେଇଯାଆନ୍ତୁ । କପିଶ୍ରେଷ୍ଠ, ତୁମେ ଲକ୍ଷ୍ମଣ ଓ ସୁଗ୍ରୀବଙ୍କ ସହ ମୋର ପ୍ରିୟତମଙ୍କୁ ଏଠାକୁ ନେଇଆସି ମୋତେ ଆନନ୍ଦିତ କର ।

ସୀତାଙ୍କ କଥାରେ ହନୁମାନ ପ୍ରୀତ ହେଲେ । ସେ କହିଲେ – ଶୁଭଦର୍ଶନା, ତୁମେ ଯାହା କହିଲ, ତାହା ସାଧ୍ୱୀ ସ୍ତ୍ରୀମାନଙ୍କ ଉପଯୁକ୍ତ । ତୁମ ଛଡ଼ା ଏପରି ବିନୟ ଓ ଯୁକ୍ତିଯୁକ୍ତ ବାକ୍ୟ କେହି କହି ନ ଥାନ୍ତା । ଦେବୀ, ରାମଙ୍କ ପ୍ରତି ମୋର ସ୍ନେହ ଓ ଭକ୍ତିଯୋଗୁଁ ଓ ତୁମର ଦୁଃଖ ଦେଖି ଏପରି କହୁଥିଲି । ମୋ ସହିତ ତୁମେ ଯିବ ନାହିଁ ସତ୍ୟ, କିନ୍ତୁ କିଛି ନିଦର୍ଶନ ଦାନ କର, ଯେପରିକି ତାହା ଦେଖିଲେ ରାମ ମୋତେ ବିଶ୍ୱାସ କରିବେ ।

ସୀତା କହିଲେ, ରାମଙ୍କର ବିଶ୍ୱାସ ହେବାପାଇଁ ତୁମେ ତାଙ୍କୁ ଏକ ପୂର୍ବ ବୃତ୍ତାନ୍ତ ଜଣାଇବ । ଥରେ ଚିତ୍ରକୂଟ ପର୍ବତରେ ଈଶାନକୋଣ ମନ୍ଦାକିନୀ କୂଳରେ ଏକ ଆଶ୍ରମର ଉପବନ ମଧ୍ୟରେ ରାମ ମୋର କ୍ରୋଡ଼ରେ ଉପବେଶନ କରିଥିଲେ । ଏହି ସମୟରେ ଏକ ମାଂସଭୋଜୀ କାକ ମୋତେ ତାର ଥଣ୍ଟରେ ଆଘାତ କଲା । ମୁଁ ଏକ ଯଷ୍ଟି ଉଠାଇ ତାକୁ ନିବାରଣ କଲି । କିନ୍ତୁ ସେ ନିବୃତ୍ତ ନ ହୋଇ ମୋତେ ଖୁମ୍ପିବାକୁ ଲାଗିଲା । ମୁଁ କ୍ରୁଦ୍ଧ ହୋଇ ମୋର କଟିମେଖଳା ଉପରକୁ ଟାଣୁଥିବାବେଳେ ମୋର ଲୁଗା ଖସିଗଲା । ତାହା ଦେଖି ରାମ ହାସ୍ୟକରି ମୋତେ ଥଟ୍ଟା କଲେ । ମୁଁ ରାମଙ୍କ କ୍ରୋଡ଼ରେ ବସି ଆଶ୍ୱସ୍ତ ହେଲି ଏବଂ କ୍ଳାନ୍ତି ଯୋଗୁଁ କିଛି ସମୟ ଶୋଇପଡ଼ିଲି । ଉଠିବାପରେ ଦେଖିଲି ପୁଣି ସେହି କାକ ଆସି ମୋର ସ୍ତନ ଦ୍ୱୟର ମଧ୍ୟସ୍ଥଳକୁ ଚଞ୍ଚୁରେ ଆଘାତ କଲା । ସେହି ଚଞ୍ଚୁଘାତରେ କ୍ଷତସ୍ଥାନରୁ ରକ୍ତ ବାହାରିବା ଦେଖି ରାମ କ୍ରୁଦ୍ଧ ହୋଇ ସେହି କାକକୁ ନିହତ କରିବାପାଇଁ ସ୍ଥିର କଲେ । ବାୟୁପରି ଗତିଶୀଳ ସେହି କାକ ଇନ୍ଦ୍ରଙ୍କର ପୁତ୍ର ଥିଲା ଏବଂ ମୁହୂର୍ତ୍ତକ

ମଧ୍ୟରେ ସେ ପର୍ବତ ଉପରକୁ ଉଡ଼ିଗଲା । କ୍ରୁଦ୍ଧ ରାମ ଗୋଟିଏ କୁଶକୁ ମନ୍ତ୍ରିତ କରି ବ୍ରହ୍ମାସ୍ତ୍ରରୂପେ ପ୍ରୟୋଗ କଲେ । ବାୟସ ସେହି ପ୍ରଜ୍ୱଳିତ କୁଶାସ୍ତ୍ରରୁ ପରିତ୍ରାଣ ପାଇବାପାଇଁ ଯେଉଁଆଡ଼େ ଗଲା, ସେଠାରେ ଧାବମାନ ସେହି କୁଶକୁ ଦେଖିବାକୁ ପାଇଲା । ଇନ୍ଦ୍ରାଦି ଦେବତା ଓ ମହର୍ଷିଗଣ କେହି ତାକୁ ଶରଣ ଦେଇପାରିଲେ ନାହିଁ । ଶେଷକୁ ଶରଣବତ୍ସଳ ରାମଚନ୍ଦ୍ରଙ୍କର ଶରଣ ନେଲା । ରାମ ତାକୁ ଶରଣ ଦେଲେ, କିନ୍ତୁ ବ୍ରହ୍ମାସ୍ତ୍ର ଅବ୍ୟର୍ଥ ହୋଇଥିବା ଯୋଗୁଁ ସେହି କାକର ଦକ୍ଷିଣ ଚକ୍ଷୁ ନଷ୍ଟ ହୋଇଗଲା । ଏହି ବୃତ୍ତାନ୍ତ ଦେଇ ତୁମେ ରାମଙ୍କୁ କହିବ– ମୋ ନିମନ୍ତେ ସାମାନ୍ୟ କାକ ପ୍ରତି ଯେ ବ୍ରହ୍ମାସ୍ତ୍ର ପ୍ରୟୋଗ କରିଥିଲେ, ବର୍ତ୍ତମାନ ମୋର ହରଣକାରୀ ରାକ୍ଷସ ରାବଣକୁ ସେ କିପରି କ୍ଷମା କରୁଛନ୍ତି ?

ହନୁମାନ କହିଲେ, ମୁଁ ରାମଙ୍କୁ ଏହା ଜଣାଇବି । ଆଉ ଯଦି କିଛି ରାମ ଲକ୍ଷ୍ମଣ ଓ ବାନର ବୀରମାନଙ୍କୁ ଜଣାଇବାର ଥାଏ, ତାହା ମଧ୍ୟ ତୁମେ ପ୍ରକାଶ କର । ସୀତା କହିଲେ– ହନୁମାନ, ତୁମେ ମୋର ହୋଇ ରାମଙ୍କୁ ନମସ୍କାରପୂର୍ବକ କୁଶଳ ପ୍ରଶ୍ନ ପଚାରିବ । ଯେଉଁ ଲକ୍ଷ୍ମଣ ଅଯୋଧ୍ୟାର ସମସ୍ତ ପ୍ରକାର ଭୋଗ ଐଶ୍ୱର୍ଯ୍ୟ ଓ ପିତାମାତାଙ୍କୁ ପରିତ୍ୟାଗ କରି ରାମଙ୍କୁ ଅନୁସରଣ କରି ବନବାସ କରୁଛନ୍ତି, ରାମଙ୍କୁ ଯେ ପିତୃତୁଲ୍ୟ ଓ ମୋତେ ମାତୃତୁଲ୍ୟ ବ୍ୟବହାର କରନ୍ତି, ସେହି ଧର୍ମଜ୍ଞ, ପ୍ରିୟଦର୍ଶନ ରାମଙ୍କର ପ୍ରିୟ ଭ୍ରାତା ବୀର ଓ ମନସ୍ୱୀ ଲକ୍ଷ୍ମଣଙ୍କର ମଧ୍ୟ କୁଶଳ ପ୍ରଶ୍ନ କରିବ । ମୋର ଉଦ୍ଧାର ପାଇଁ ରାମଙ୍କୁ ବାରମ୍ବାର ପ୍ରରୋଚିତ କରି କହିବ– ଦଶରଥନନ୍ଦନ, ସୀତା ଏକମାସ ମାତ୍ର ଜୀବିତ ରହିବେ । ତା' ପରେ ତାଙ୍କୁ ଆଉ ଦେଖିବ ନାହିଁ । ବରାହ ଅବତାରରେ ଭଗବାନ୍ ପାତାଳରୁ ପୃଥିବୀକୁ ଉଦ୍ଧାର କରିବାପରି ତୁମେ ରାବଣର କବଳରୁ ପୃଥିବୀର ପୁତ୍ରୀ ବନ୍ଦିନୀ ସୀତାଙ୍କୁ ଉଦ୍ଧାର କର । ଏହା କହି ସୀତା ନିଜର ବସ୍ତ୍ରରେ ବାନ୍ଧି ରଖିଥିବା ମୁକ୍ତାଖଚିତ ମଥାମଣିକୁ କାଢ଼ି ହନୁମାନଙ୍କୁ ଦେଇ କହିଲେ, ଏହା ରାମଙ୍କୁ ପ୍ରଦାନ କରିବ । ଏହାକୁ ଦେଖିଲେ ରାମଙ୍କ ମନରେ ଜନନୀଙ୍କର ଏବଂ ରାଜା ଦଶରଥଙ୍କର ସ୍ମୃତି ଜାଗରୂକ ହେବ । ସୀତା ପୁଣି କହିଲେ– ହନୁମାନ, ସୁଗ୍ରୀବ ଓ ତାଙ୍କର ଅମାତ୍ୟମାନଙ୍କୁ ଏବଂ ସମସ୍ତ ବୃଦ୍ଧ ବାନରଙ୍କୁ ମୋର କୁଶଳ ସମ୍ବାଦ ଦେବ । ମୋର ଉଦ୍ଧାର ପାଇଁ ରାମଙ୍କୁ ପ୍ରତିଦିନ ଉତ୍ସାହିତ କରି ତାଙ୍କର ପୌରୁଷ ବୃଦ୍ଧି କରାଇବ ।

ହନୁମାନ ଜନକନନ୍ଦିନୀଙ୍କ ପ୍ରଦତ୍ତ ମଥାମଣିକୁ ଶ୍ରେଷ୍ଠ ନିଦର୍ଶନ ରୂପେ ଗ୍ରହଣ କରି କୃତକୃତ୍ୟ ହେଲେ ଏବଂ ସୀତାଙ୍କଠାରୁ ବିଦାୟ ନେବା ପୂର୍ବରୁ କୃତାଞ୍ଜଳି ହୋଇ କହିଲେ– ଦେବୀ, ବିଦେହନନ୍ଦିନୀ, ରାମ ଅତିଶୀଘ୍ର ବାନର ଓ ଭଲ୍ଲୁକ ସେନା ପରିବେଷ୍ଟିତ ହୋଇ ଶତ୍ରୁମାନଙ୍କୁ ଜୟ କରିବେ ଏବଂ ତୁମର ଶୋକ ଦୂର ହେବ । ହନୁମାନ ଯିବାପାଇଁ ବାହାରିବାରୁ ସୀତା ସ୍ନେହପୂର୍ଣ୍ଣ ବାକ୍ୟରେ କହିଲେ– ଅରିନ୍ଦମ, ଯଦି ମନପାଏ, ତା' ହେଲେ ଏଠାରେ କୌଣସି ନିର୍ଜନ ସ୍ଥାନରେ ଗୋଟିଏ ଦିନ ବିଶ୍ରାମ କରିଯାଅ । ବାନର, ତୁମେ ନିକଟରେ ରହିବା ଦ୍ୱାରା ମୋର ଦାରୁଣ ଶୋକ କ୍ଷଣକ ପାଇଁ ହେଲେ ଦୂର ହୋଇଯିବ । ମୋର କେବଳ ସନ୍ଦେହ ହେଉଛି, ରାମ ଲକ୍ଷ୍ମଣ, ଋକ୍ଷ କପିସେନା ସହିତ କିପରି ଦୁସ୍ତର ସମୁଦ୍ରକୁ ପାରହେବେ । ହନୁମାନ ଉତ୍ତର ଦେଇ କହିଲେ, ଯେଉଁ ବାନର ଓ

ଭଲ୍ଲୁକ ବୀରମାନଙ୍କ କଥା ମୁଁ କହୁଛି, ସେମାନେ କାମରୂପୀ ଏବଂ ଆକାଶ ପଥରେ ବହୁବାର ସସାଗରା ଧରାକୁ ପ୍ରଦକ୍ଷିଣ କରିଛନ୍ତି । ସୁଗ୍ରୀବଙ୍କ ସମେତ ବାନର ସେନାପତିମାନେ ମୋ'ପରି ବଳଶାଳୀ । ସେମାନେ ସମସ୍ତେ ସାଗର ପାରି ହୋଇ ଲଙ୍କାକୁ ଆସିବେ ଏବଂ ମୁଁ ରାମ ଓ ଲକ୍ଷ୍ମଣଙ୍କୁ ପିଠିରେ ବସାଇ ଘେନି ଆସିବି । ଦେବୀ, ତୁମର ଭଲ ସମୟ ଆସିଗଲା । ତୁମେ ଅଚିରେ ଲଙ୍କାର ମଳୟ ପର୍ବତ ଉପରେ ବାନରମାନଙ୍କର ଗର୍ଜନ ଧ୍ୱନି ଶୁଣିପାରିବ ।

## ୮୫ ।। ଅଶୋକବନ ଭଂଜନ : ରାକ୍ଷସମାନଙ୍କ ସହିତ ଯୁଦ୍ଧ

ହନୁମାନ ସୀତାଙ୍କଠାରୁ ବିଦାୟ ନେଇ ପ୍ରସନ୍ନଚିତ୍ତରେ ଚିନ୍ତା କଲେ, ସୀତାଙ୍କ ଦର୍ଶନ ଦ୍ୱାରା ମୋର ଉଦ୍ଦେଶ୍ୟ ବହୁ ଭାବରେ ସିଦ୍ଧ ହୋଇଛି । ମାତ୍ର ଅଳ୍ପ କିଛି ବାକି ଅଛି । ସାମ, ଦାନ, ଭେଦ ଓ ଦଣ୍ଡ ଏହି ଚାରୋଟି ଉପାୟ ମଧ୍ୟରୁ ବର୍ତ୍ତମାନ ଚତୁର୍ଥ ଉପାୟଟିର ଆଶ୍ରୟ ନେବାକୁ ହେବ । ରାକ୍ଷସମାନଙ୍କ ପ୍ରତି ସାମ ନୀତି ନିଷ୍ଫଳ । ସେମାନେ ଅର୍ଥସମ୍ପନ୍ନ, ତେଣୁ ଦାନ ଦ୍ୱାରା କିଛି ଫଳ ହେବ ନାହିଁ । ସେମାନେ ବଳଦର୍ପିତ ହୋଇଥିବା ଯୋଗୁଁ ଭେଦନୀତି ମଧ୍ୟ ସେମାନଙ୍କ ପାଖରେ କାର୍ଯ୍ୟ କରିବ ନାହିଁ । ବର୍ତ୍ତମାନ ସେମାନଙ୍କ ପ୍ରତି ଦଣ୍ଡନୀତି ପ୍ରୟୋଗ କରି ନିହତ କରିବାକୁ ହେବ । ବଳବିକ୍ରମ ଦ୍ୱାରା ସେମାନଙ୍କୁ ଭୟଭୀତ କରିବା ହେଉଛି ଉପଯୁକ୍ତ ପନ୍ଥା । ଏଠାରେ ରହି ମୁଁ ଶତ୍ରୁର ବଳ ଓ ନିଜ ବଳ ମଧ୍ୟରେ କି ପ୍ରଭେଦ ଅଛି ତାହା କଳନା କରି ଯଦି ବାନରରାଜଙ୍କ ପାଖକୁ ଫେରିଯାଏ, ତା ହେଲେ ଭବିଷ୍ୟତ ସମର ପାଇଁ ତାହା ସହାୟକ ହେବ । ଦଶାନନ ସହିତ ନିଜର ବଳ ଓ ବିକ୍ରମ ପ୍ରକାଶ କଲେ ଭବିଷ୍ୟତରେ ସେ ମୋତେ ଅବଜ୍ଞା କରିପାରିବ ନାହିଁ । ନନ୍ଦନକାନନ ତୁଲ୍ୟ ଏଇ ଅଶୋକବନକୁ ଧ୍ୱଂସ କଲେ ରାବଣ ନିଶ୍ଚୟ କ୍ରୁଦ୍ଧ ହୋଇ ଯୁଦ୍ଧ କରିବ । ମୋତେ ମଧ୍ୟ ମୋର ଅତୁଳ ପରାକ୍ରମ ଦେଖାଇବା ପାଇଁ ସୁଯୋଗ ମିଳିବ ।

ଏହିପରି ଚିନ୍ତା କରି ଭୀମବିକ୍ରମ ମାରୁତି କ୍ରୁଦ୍ଧ ପ୍ରଭଞ୍ଜନ ପରି ଅଶୋକବନର ବୃକ୍ଷମାନଙ୍କୁ ଉତ୍ପାଟନ କରିବାକୁ ଲାଗିଲେ । ବୃକ୍ଷମାନେ ଭଗ୍ନ ଓ ମଥିତ ହେଲେ । ଭଗ୍ନସେତୁ ଜଳାଶୟମାନ ଜଳଶୂନ୍ୟ ହେବାକୁ ଲାଗିଲା । ପର୍ବତଶୃଙ୍ଗ ଚୂର୍ଣ୍ଣିତ ହେଲା । ଲତାଗୃହ, ଚିତ୍ରଗୃହ ସବୁ ବିନଷ୍ଟ ହେଲା । ଶିଳାଗୃହ ଅଟ୍ଟାଳିକାମାନ ଧ୍ୱସ୍ତ ବିଧ୍ୱସ୍ତ ହେଲା । ହିଂସ୍ର ଜନ୍ତୁ, ମୃଗ ପକ୍ଷୀମାନେ ଆର୍ତ୍ତରବ କରିବାକୁ ଲାଗିଲେ । ବୃକ୍ଷମାନଙ୍କର ଭାଙ୍ଗି ପଡୁଥିବା ଶବ୍ଦ ଓ ପକ୍ଷୀମାନଙ୍କର କୋଳାହଳରେ ଲଙ୍କାନିବାସୀ ରାକ୍ଷସମାନେ ଭୀତତ୍ରସ୍ତ ହେଲେ । ବିକଟବଦନା ରାକ୍ଷସୀମାନଙ୍କ ନିଦ୍ରାଭଙ୍ଗ ହେବାରୁ ଭଗ୍ନ ଅଶୋକବନର ଏହି ଦୃଶ୍ୟ ସହିତ ପର୍ବତୋପମ ଏକ ବିଶାଳ ଭୟଙ୍କର ବାନରକୁ ଦେଖି ସେମାନେ ସୀତାଙ୍କୁ ପଚାରିଲେ, ଏ ବାନର କିଏ, କେଉଁଠାରୁ ଆସିଛି ଓ କାହାପାଇଁ ଆସିଛି, ତୁମ ସହିତ ସେ କ'ଣ କଥାବାର୍ତ୍ତା କରୁଥିଲା ? ବିଶାଳାକ୍ଷୀ, ଭୟ ନ କରି ଏହାର ଉତ୍ତର ଦିଅ ।

ସୀତା କହିଲେ, ଏହାକୁ ଦେଖି ମୁଁ ଭୀତ ହୋଇଛି, କିନ୍ତୁ ଏ କିଏ ମୁଁ ଜାଣି ନାହିଁ । ଏତିକି ମୁଁ ଅନୁମାନ କରିଛି ଯେ ଏହା ଏକ କାମରୂପୀ ରାକ୍ଷସ । ବାନରରୂପ ଧାରଣ କରି ଏଠାକୁ ଆସିଛି । କାମରୂପୀ ରାକ୍ଷସମାନଙ୍କୁ ଚିହ୍ନିବାର ଶକ୍ତି ମୋର ନାହିଁ । ନିଜ ଜାତିର ହୋଇଥିବା ଯୋଗୁଁ ତୁମେମାନେ ହିଁ ତାକୁ ଚିହ୍ନିପାରିବ । କେବଳ ସାପ ହିଁ ସାପମାନଙ୍କର ଗତିବିଧି ସମ୍ପର୍କରେ ଜାଣିପାରେ । ସୀତାଙ୍କର କଥା ଶୁଣି ରାକ୍ଷସୀମାନଙ୍କ ମଧ୍ୟରୁ କେତେକ ଦୌଡ଼ିଯାଇ ରାବଣକୁ ଜଣାଇଲେ । ସେମାନେ କହିଲେ, ଏକ ଭୟାନକ ବାନର ଅଶୋକବନ ମଧ୍ୟରେ ପ୍ରବେଶ କରିଛି । ସେ ସୀତାଙ୍କ ସହିତ କଥାବାର୍ତ୍ତା କରୁଥିଲା । କିନ୍ତୁ ସେ କ'ଣ କହୁଥିଲା, ଆମେ ଯେତେ ପଚାରିଲେ ମଧ୍ୟ ସେ ମୃଗନୟନୀ ଆମକୁ କିଛି କହିବାପାଇଁ ଇଚ୍ଛା କରୁ ନାହିଁ । ସେ ଇନ୍ଦ୍ର କିମ୍ବା କୁବେରର ଦୂତ ବା ସୀତାଙ୍କୁ ଅନ୍ୱେଷଣ କରିବାପାଇଁ ରାମର ଦୂତ ହୋଇ ଆସିଛି, ତାହା ଆମେ ଜାଣୁନା । କିନ୍ତୁ ସେହି ଅଦ୍ଭୁତ ରୂପଧାରୀ ବାନର ତୁମର ମନୋହର ଅଶୋକବନକୁ ଭାଙ୍ଗି ପକାଇଲାଣି । ଭାଙ୍ଗି ନ ଥିବା କୌଣସି ସ୍ଥାନ ଆଉ ବାକି ନାହିଁ । କେବଳ ସୀତା ଯେଉଁ ସ୍ଥାନରେ ଅଛି, ସେ ସେହି ସ୍ଥାନକୁ ନଷ୍ଟ କରି ନାହିଁ । ତାହା ସୀତାର ସୁରକ୍ଷା ପାଇଁ ବା ନିଜେ କ୍ଲାନ୍ତ ହୋଇ ପଡ଼ିବା ଯୋଗୁଁ କରି ନାହିଁ, ତାହା ଜଣାଯାଉ ନାହିଁ ।

ରାକ୍ଷସୀମାନଙ୍କ କଥା ଶୁଣି ରାବଣର ଚକ୍ଷୁଦ୍ୱୟ କ୍ରୋଧରେ ରକ୍ତବର୍ଣ୍ଣ ହୋଇ ଅଗ୍ନିତୁଲ୍ୟ ଜଳିଉଠିଲା । ଜ୍ୱଳନ୍ତ ଦୀପରୁ ତୈଳବିନ୍ଦୁ ଝରିବା ପରି କ୍ରୋଧରେ ତା'ର ଚକ୍ଷୁରୁ ଅଶ୍ରୁବିନ୍ଦୁ ଝରିବାକୁ ଲାଗିଲା । ସେ ଅଶୀ ହଜାର ସଶସ୍ତ୍ର ସୈନ୍ୟଙ୍କୁ ଅଶୋକ ବନକୁ ପଠାଇଲା । ସେହି ଭୟଙ୍କର ବଳଶାଳୀ ସୈନ୍ୟଗଣ ଅଗ୍ନିପ୍ରତି ପତଙ୍ଗମାନେ ଧାବମାନ ହେବାପରି ଅଶୋକବନସ୍ଥ ହନୁମାନଙ୍କ ପ୍ରତି ଧାବମାନ ହେଲେ । ସେମାନେ ମୁଦ୍‌ଗର, ଶୂଳ, ତୋମର ଓ ଶକ୍ତିମାନ ଧରି ହନୁମାନଙ୍କୁ ବେଢ଼ିଗଲେ । କେହି କେହି ଗଦା, ପରିଘ ଓ ଶର ଦ୍ୱାରା ପ୍ରହାର କରିବାକୁ ଲାଗିଲେ । ହନୁମାନ ଲାଙ୍ଗୁଳ ପ୍ରହାର କରି ଏପରି ଏକ ସିଂହରଡ଼ି କଲେ ଯେ ଆକାଶରେ ଉଡୁଥିବା ପକ୍ଷୀମାନେ ତଳକୁ ପଡ଼ିଗଲେ । ହନୁମାନ ଉଚ୍ଚସ୍ୱରରେ ଘୋଷଣା କଲେ, ରାମଙ୍କର ଜୟ, ଲକ୍ଷ୍ମଣଙ୍କର ଜୟ ଓ ସୁଗ୍ରୀବଙ୍କର ଜୟ ହେଉ । ଅକ୍ଳେଶରେ କାର୍ଯ୍ୟ ସାଧନ କରୁଥିବା କୋଶଳେନ୍ଦ୍ର ରାମଙ୍କର ମୁଁ ଦାସ, ମୁଁ ଶତ୍ରୁମାନଙ୍କର ଦମନକାରୀ ବାୟୁପୁତ୍ର ହନୁମାନ । ହଜାରେ ରାବଣ ମଧ୍ୟ ଯୁଦ୍ଧରେ ମୋର ସମକକ୍ଷ ହେବେ ନାହିଁ । ଶିଳା ଓ ବୃକ୍ଷମାନେ ମୋର ଅସ୍ତ୍ର । ମୁଁ ସମସ୍ତ ରାକ୍ଷସଙ୍କର ସମକ୍ଷରେ ଲଙ୍କାକୁ ଦଳନ କରି ମୈଥିଳୀଙ୍କୁ ଅଭିନନ୍ଦନ କରି ସଫଳତାର ସହ ଫେରିଯିବି । ହନୁମାନଙ୍କର ସିଂହନାଦ ଶୁଣି ରାକ୍ଷସମାନେ ଭୟଭୀତ ହେଲେ । ରାବଣର ଆଦେଶରେ ସେମାନେ ବାନରଙ୍କ ସହିତ ଚତୁର୍ଦ୍ଦିଗରୁ ଲଢ଼ିବାକୁ ଲାଗିଲେ । ତୋରଣରେ ଲାଗିଥିବା ଏକ ଲୌହ ପରିଘ ଧାରଣ କରି ଇନ୍ଦ୍ର ବଜ୍ର ଦ୍ୱାରା ଦୈତ୍ୟମାନଙ୍କୁ ସଂହାର କରିବା ପରି ସେ ନିଶାଚରମାନଙ୍କୁ ସଂହାର କଲେ । ବିଶାଳ ସେନା ନିହତ ହେବା ସମ୍ବାଦ ପାଇ ରାବଣର ଚକ୍ଷୁ ଘୂର୍ଣ୍ଣିତ ହେବାକୁ ଲାଗିଲା । ସେ ଯୁଦ୍ଧଦୁର୍ମଦ ଅତୁଳ ପରାକ୍ରମୀ ପ୍ରହସ୍ତପୁତ୍ରକୁ ଯୁଦ୍ଧ କରିବାପାଇଁ ପଠାଇଲା ।

# ୮୬ ।। ଜମ୍ବୁମାଳୀ, ମନ୍ତ୍ରୀପୁତ୍ର ଓ ଅକ୍ଷକୁମାର ନିଧନ

ରାକ୍ଷସମାନଙ୍କୁ ନିହତ କରିବା ପରେ ହନୁମାନ ଚିନ୍ତାକଲେ ମୁଁ ବନକୁ ଧ୍ୱଂସ କଲି । କିନ୍ତୁ ରାକ୍ଷସମାନଙ୍କ କୁଳଦେବତାଙ୍କର ଯେଉଁ ବିଶାଳ ମନ୍ଦିର (ଚୈତ୍ୟ ପ୍ରାସାଦ) ଠିଆ ହୋଇଛି, ତାହା ଏ ପର୍ଯ୍ୟନ୍ତ ଧ୍ୱଂସ ହୋଇ ନାହିଁ । ମହାତେଜା ହନୁମାନ ପର୍ବତତୁଲ୍ୟ ଏହି ପ୍ରାସାଦ ଉପରକୁ ଉଠି ଏହାକୁ ଭାଙ୍ଗିବାକୁ ଆରମ୍ଭ କଲେ । ତାଙ୍କର ଭୟାନକ ଗର୍ଜନରେ ଲଙ୍କା ପ୍ରତିଧ୍ୱନିତ ହେଲା । ହନୁମାନ ପୁଣି ପୂର୍ବପରି ଚିତ୍କାର କରି କହିଲେ, ରାମ, ଲକ୍ଷ୍ମଣ ଓ ସୁଗ୍ରୀବଙ୍କର ଜୟ ହେଉ । ଅକ୍ଳେଶରେ କାର୍ଯ୍ୟସାଧନକାରୀ କୋଶଳେନ୍ଦ୍ର ରାମଙ୍କର ମୁଁ ଦାସ, ଶତ୍ରୁମାନଙ୍କର ସଂହାରକାରୀ ବାୟୁପୁତ୍ର ହନୁମାନ । ହଜାରେ ରାବଣ ମଧ୍ୟ ମୋର ସମକକ୍ଷ ହେବେ ନାହିଁ । ମୁଁ ରାକ୍ଷସମାନଙ୍କର ସମକ୍ଷରେ ଲଙ୍କାକୁ ମର୍ଦ୍ଦନ କରି ମୈଥିଳୀଙ୍କୁ ଅଭିବାଦନପୂର୍ବକ ସଫଳକାମ ହୋଇ ଫେରିଯିବି । ପ୍ରାସାଦରକ୍ଷୀମାନେ ହନୁମାନଙ୍କୁ ଚତୁର୍ଦ୍ଦିଗରୁ ଘେରିଯାଇ ପ୍ରହାର କଲେ । କିନ୍ତୁ ହନୁମାନ ପ୍ରାସାଦର ଏକ ସୁବର୍ଣ୍ଣଜଡ଼ିତ ସ୍ତମ୍ଭକୁ ଉପାଡ଼ି ଧରି ସେମାନଙ୍କୁ ପ୍ରହାର କଲେ । ସେ ଏହି ସ୍ତମ୍ଭକୁ ଘୂର୍ଣ୍ଣନ କରିବା ଫଳରେ ଯେଉଁ ଅଗ୍ନି ସ୍ଫୁଲିଙ୍ଗ ବାହାରିଲା ସେଥିରେ ସେହି ମନ୍ଦିରର ପ୍ରାସାଦ ଜଳିଉଠିଲା । ହନୁମାନ ଆକାଶକୁ ଉଠିଯାଇ କହିଲେ, ସୁଗ୍ରୀବଙ୍କ ବଶବର୍ତ୍ତୀ ହୋଇ ମୋ ପରି ହଜାର ହଜାର ବାନରବୀର ଆଜି ପୃଥିବୀ ଭ୍ରମଣ କରୁଛନ୍ତି । ସେମାନଙ୍କର କାହାରି ବଳ ଦଶହସ୍ତୀର ବଳଠାରୁ କମ୍ ନୁହେଁ । ବରଂ ସହସ୍ରହସ୍ତୀ ତୁଲ୍ୟ ବଳ ଧାରଣ କରିଥିବା ବହୁବୀର ସେମାନଙ୍କ ମଧ୍ୟରେ ଅଛନ୍ତି । ଆଉ ଏହି ଲଙ୍କାପୁରୀ ରହିବ ନାହିଁ । ତୁମେମାନେ ବା ରାବଣ କେହି ରହିବ ନାହିଁ । ଇକ୍ଷ୍ୱାକୁବଂଶୀୟ ବୀର ରାମଙ୍କ ସହିତ ଶତ୍ରୁତା କରି ସମସ୍ତେ ନିହତ ହେବେ ।

ରାବଣର ଆଜ୍ଞାରେ ପ୍ରହସ୍ତପୁତ୍ର ଜମ୍ବୁମାଳୀ ଲାଲ ରଙ୍ଗର ବସ୍ତ୍ର, ଲାଲରଙ୍ଗର ଫୁଲମାଳା ଓ ସୁନ୍ଦର କୁଣ୍ଡଳ ପରିଧାନ କରି ଧନୁଶର ହସ୍ତରେ ପ୍ରସ୍ଥାନ କଲା । ତାହାର ଧନୁର ଟଙ୍କାର ଧ୍ୱନିରେ ଦିଗ୍‌ବିଦିଗ ଓ ଆକାଶ କମ୍ପିଉଠିଲା । ଏକ ଗଧଯୁକ୍ତ ରଥରେ ବସି ସେ ହନୁମାନଙ୍କ ପ୍ରତି ଶୀଘ୍ର ଶର ସନ୍ଧାନ କଲା । ସେ ଅର୍ଦ୍ଧଚନ୍ଦ୍ର ବାଣରେ ହନୁମାନଙ୍କର ମୁହଁକୁ, କର୍ଣ୍ଣି ବାଣରେ ତାଙ୍କର ମସ୍ତକକୁ ଏବଂ ଦଶଟି ନାରାଚରେ କପୀଶ୍ୱରଙ୍କର ଦୁଇ ବାହୁକୁ ବିଦ୍ଧ କଲା । ବାଣରେ ବିଦ୍ଧ ହନୁମାନଙ୍କର ମୁହଁ ଆହୁରି ଲାଲ ପଡ଼ିଗଲା । କ୍ରୁଦ୍ଧ ହନୁମାନ ନିଜ ପାଖରେ ପଡ଼ିଥିବା ଏକ ବିଶାଳ ଶିଳାକୁ ଉଠାଇ ରାକ୍ଷସ ଆଡ଼କୁ ନିକ୍ଷେପ କଲେ । କିନ୍ତୁ ରାକ୍ଷସ ଦଶଟି ବାଣରେ ତାକୁ ଖଣ୍ଡ ଖଣ୍ଡ କରିଦେଲା । ହନୁମାନ ବିଶାଳ ଶାଳ ବୃକ୍ଷକୁ ଉପାଡ଼ି ଘୂରାଇବାକୁ ଲାଗିଲେ । ରାକ୍ଷସ ଚାରିବାଣରେ ଶାଳ ବୃକ୍ଷକୁ କାଟିଦେଇ ପାଞ୍ଚୋଟି ବାଣରେ ହନୁମାନଙ୍କର ବାହୁ ଏବଂ ଏଗାରଟି ବାଣରେ ତାଙ୍କ ବକ୍ଷସ୍ଥଳକୁ ଭେଦ କଲା । ହନୁମାନ ଅତ୍ୟନ୍ତ କ୍ରୁଦ୍ଧ ହୋଇ ସେହି ବିଶାଳ ପରିଘକୁ ଉଠାଇ ଜମ୍ବୁମାଳୀର ଛାତିକୁ ଆଘାତ କଲେ । ସେହି ପରିଘର ଆଘାତରେ ଜମ୍ବୁମାଳୀ ଧନୁ ଓ ରଥ ସହିତ ଚୂର୍ଣ୍ଣିଭୂତ ହୋଇଗଲା ।

ପ୍ରହସ୍ତପୁତ୍ର ଜମ୍ବୁମାଳୀର ନିଧନରେ କ୍ରୁଦ୍ଧ ଓ ବିଷଣ୍ଣ ହୋଇ ରାବଣ ଅମାତ୍ୟଙ୍କର ସାତଜଣ ବୀରପୁତ୍ରଙ୍କୁ ଯୁଦ୍ଧ କରିବାକୁ ପଠାଇଲେ । ଅସ୍ତ୍ରଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ ସେହି ଧନୁର୍ଦ୍ଧାରୀ ବୀରମାନେ ଧ୍ୱଜପତାକାଯୁକ୍ତ ରଥ ଆରୋହଣ କରି ବିଶାଳସେନା ସହିତ ହନୁମାନଙ୍କର ସମ୍ମୁଖୀନ ହେଲେ । ହନୁମାନ ସେମାନଙ୍କର ଶରରେ ଆଚ୍ଛନ୍ନ ହୋଇ ବୃଷ୍ଟିଧାରା ସମାକୀର୍ଣ୍ଣ ବିଶାଳ ପର୍ବତ ତୁଲ୍ୟ ଅଦୃଶ୍ୟ ହୋଇଗଲେ । କିନ୍ତୁ ବୀର ବାନର ଭୟଙ୍କର ଗର୍ଜନ ଦ୍ୱାରା ରାକ୍ଷସ ସୈନ୍ୟମାନଙ୍କୁ ଭୟତ୍ରସ୍ତ କରି ସେମାନଙ୍କୁ ଆଘାତ କରିବାକୁ ଲାଗିଲେ । ଅଶ୍ୱ, ହସ୍ତୀ, ରଥମାନଙ୍କୁ ପାଦରେ ଦଳନ କରି ଭୂତଳରେ ନିକ୍ଷିପ୍ତ କଲେ । ସେ ସାତଜଣ ମନ୍ତ୍ରୀପୁତ୍ର ବୀରଙ୍କ ସହିତ ସମସ୍ତ ରାକ୍ଷସସେନାଙ୍କୁ ନିର୍ମୂଳ କଲେ ।

ଏହି ସମ୍ବାଦ ଶୁଣି ରାବଣର ଭୟ ସଞ୍ଚାର ହେଲା । କିନ୍ତୁ ନିଜର ମନର ଭୟକୁ ଗୋପନ କରି ସେ ବିରୂପାକ୍ଷ, ଯୂପାକ୍ଷ, ଦୁର୍ଦ୍ଧର୍ଷ, ପ୍ରଘସ ଓ ଭାସକର୍ଣ୍ଣ ନାମକ ପାଞ୍ଚଜଣ ବୀର ସେନାପତିଙ୍କୁ ହନୁମାନଙ୍କ ବନ୍ଧନ ପାଇଁ ଆଦେଶ ଦେଲା । ସେ କହିଲା— ସେନାପତିଗଣ, ତୁମେ ଚତୁରଙ୍ଗ ବଳ ସହ ବିଶାଳ ସେନାଙ୍କୁ ନେଇ ସେହି ବନଚାରୀ ବାନରକୁ ଶାସନ କର । ସେ ବାନର ବୋଲି ମୋର ମନେ ହେଉ ନାହିଁ । ହୁଏତ ଇନ୍ଦ୍ର ନିଜର ତପୋବଳରେ ଆମକୁ ଦମନ କରିବାପାଇଁ ତାକୁ ସୃଷ୍ଟି କରିଛନ୍ତି । ମୁଁ ପୂର୍ବରୁ ବାଳୀ, ସୁଗ୍ରୀବ, ଜାମ୍ବବାନ, ନୀଳ, ଦ୍ୱିବିଦ ପ୍ରଭୃତି ବାନରମାନଙ୍କୁ ଦେଖିଛି । କିନ୍ତୁ ବୁଦ୍ଧି, ବଳ, ଉତ୍ସାହ ବା ରୂପରେ ସେମାନେ ଏହାର ସମକକ୍ଷ ହେବେ ନାହିଁ । ତେଣୁ କପି ରୂପରେ ଏକ ମହାପ୍ରାଣୀ ଆସିଛି ବୋଲି ମନେକର । ତୁମେମାନେ ମୋ ସହିତ ଇନ୍ଦ୍ରାଦି ଦେବତାମାନଙ୍କୁ ଜୟ କରି ନାଗ, ଯକ୍ଷ, ଗନ୍ଧର୍ବ, ଅସୁରଗଣଙ୍କୁ ପରାଜିତ କରିଛ । ଏଣୁ ଏହି ବ୍ୟକ୍ତିକୁ ବନ୍ଧନ କରିବା ତୁମ ପକ୍ଷରେ ଅସାଧ୍ୟ ନୁହେଁ । ଲଙ୍କାର ତୋରଣ ଉପରେ ବସିଥିବା ହନୁମାନଙ୍କ ବିନାଶ ପାଇଁ ସେମାନେ ଶତ ଶତ ଶର, ପଟ୍ଟିଶ, ଶୂଳ ଓ ମୁଦ୍‌ଗରମାନଙ୍କ ଦ୍ୱାରା ତାଙ୍କୁ ଆଘାତ କରିବାକୁ ଲାଗିଲେ । କିନ୍ତୁ ବାନରଶ୍ରେଷ୍ଠ ଏକ ପର୍ବତଶୃଙ୍ଗ ଉପାଡ଼ିଆଣି ସେମାନଙ୍କ ଉପରେ ଏପରି ଭାବେ ନିକ୍ଷେପ କଲେ, ରାବଣର ପାଞ୍ଚଜଣଯାକ ସେନାପତି ସେମାନଙ୍କର ରଥ ଓ ଅଶ୍ୱମାନଙ୍କ ସହିତ ଚିକି ଚିକି ହୋଇ ଭୂଇଁରେ ମିଶିଗଲେ । କୃତାନ୍ତ ତୁଲ୍ୟ ହନୁମାନ ଅଶ୍ୱପ୍ରହାରରେ ଅଶ୍ୱ, ଗଜ ପ୍ରହାରରେ ଗଜ, ଯୋଦ୍ଧାଙ୍କର ପ୍ରହାରରେ ଯୋଦ୍ଧାମାନଙ୍କୁ ଓ ରଥର ପ୍ରହାରରେ ରଥ ସବୁ ଧ୍ୱଂସ କଲେ । ଏମାନଙ୍କୁ ନିହତ କରି ହନୁମାନ ପୁଣି କାଳାନ୍ତକ ପରି ସେହି ତୋରଣ ଉପରେ ବସି ରହିଲେ ।

ଚତୁରଙ୍ଗସେନା ସହ ପଞ୍ଚ ସେନାପତିଙ୍କର ନିଧନ ସମ୍ବାଦ ଶୁଣି ରାବଣ ନିଜର ପୁତ୍ର ଅକ୍ଷକୁମାର ଆଡ଼କୁ ଅନାଇଲା । ରାବଣ ଦ୍ୱାରା ଉତ୍ସାହିତ ହୋଇ ଅକ୍ଷକୁମାର ସ୍ୱର୍ଣ୍ଣଭୂଷିତ ଧନୁ ଗ୍ରହଣ କରି ତପ୍ତକାଞ୍ଚନ ନିର୍ମିତ, ବାଳସୂର୍ଯ୍ୟ ପରି ଏକ ଜ୍ୟୋତିର୍ମୟ ରଥରେ ଆରୋହଣ କରି ଯୁଦ୍ଧଯାତ୍ରା କଲା । ସେ ଅଶ୍ୱ, ଗଜ, ରଥ, ପଦାତିକ ଏହି ଚତୁରଙ୍ଗ ସେନାରେ ଆକାଶ ଓ ପୃଥିବୀକୁ ପ୍ରତିଧ୍ୱନିତ କରି ହନୁମାନଙ୍କ ନିକଟରେ ପହଞ୍ଚିଲା । ସେ ନିଜର ରଥରେ ସ୍ଥିର ଭାବରେ ବସି ତିନୋଟି ତୀକ୍ଷ୍ଣ ଶର ନିକ୍ଷେପ କରି ବାନରବୀରଙ୍କୁ

ଯୁଦ୍ଧ ପାଇଁ ଆହ୍ବାନ କଲା । ହନୁମାନ ଓ ଅକ୍ଷକୁମାର ମଧ୍ୟରେ ଯୁଦ୍ଧ ଦେବାସୁରଙ୍କ ଯୁଦ୍ଧ ପରି ଭୟାନକ ଓ ଅତୁଳନୀୟ ମନେହେଲା । ଆକାଶ ରୁଦ୍ଧ ହେଲା । ବାୟୁ ପ୍ରବାହିତ ହେଲା ନାହିଁ । ସୂର୍ଯ୍ୟ ଦେଖାଗଲା ନାହିଁ ଏବଂ ସମୁଦ୍ର ବିକ୍ଷୁବ୍ଧ ହେଲା । ଲକ୍ଷ୍ୟ, ନିରୀକ୍ଷଣ, ଶରସନ୍ଧାନ ଓ ଶରମୋକ୍ଷଣ ଏହି ଚାରୋଟି କାର୍ଯ୍ୟରେ ରାବଣର ପୁତ୍ର ଏକ ଦକ୍ଷ ଯୋଦ୍ଧା ଥିଲା । ସେ ସୁବର୍ଣ୍ଣପଙ୍ଖଯୁକ୍ତ ବିଷଧର ସର୍ପତୁଲ୍ୟ ତିନୋଟି ଶର ହନୁମାନଙ୍କ ପ୍ରତି ନିକ୍ଷେପ କଲା । ସେହି ଶରରେ ହନୁମାନଙ୍କ ଶରୀର ରୁଧିରାକ୍ତ ହେଲା ଏବଂ ତାଙ୍କର ଚକ୍ଷୁ ଘୂର୍ଣ୍ଣିତ ହେବାକୁ ଲାଗିଲା । ହନୁମାନ ନିଜର କାୟାକୁ ବିସ୍ତାର କରି ମେଘତୁଲ୍ୟ ଗର୍ଜନପୂର୍ବକ ଆକାଶମଣ୍ଡଳରେ ବିଚରଣ କଲେ ଏବଂ ଅକ୍ଷକୁମାର ନିକ୍ଷିପ୍ତ ପରବର୍ତ୍ତୀ ସମସ୍ତ ଶରକୁ ବ୍ୟର୍ଥ କଲେ, କିନ୍ତୁ ରାବଣର ଏହି ବୀରପୁତ୍ର ବାନରଙ୍କର ଭୁଜକୁ ବିଦୀର୍ଣ୍ଣ କଲା । ମହାବଳୀ ହନୁମାନ ରାବଣର ଏହି ଅଳ୍ପବୟସ୍କ ପୁତ୍ରକୁ ପ୍ରଶଂସା ନ କରି ରହିପାରିଲେ ନାହିଁ । ସେ କହିଲେ, ଯୁଦ୍ଧଦୁର୍ମଦ ଏହି ବୀର ବୟସରେ ଅଳ୍ପ ହେଲେ ମଧ୍ୟ ଯୁଦ୍ଧରେ ନିପୁଣ ଏବଂ ବର୍ଷୀୟାନ ବୀରମାନଙ୍କ ସହିତ ତୁଳନୀୟ । ଏହାର ବୀରତ୍ୱ ଓ ପରାକ୍ରମ ଦେବତା ଓ ଅସୁରମାନଙ୍କୁ ମଧ୍ୟ କମ୍ପିତ କରିବ । ଯଦିବା ଏହାକୁ ମାରିବାପାଇଁ ମୋର ଇଚ୍ଛା ନାହିଁ, ତଥାପି ବର୍ଦ୍ଧିଷ୍ଣୁ ଅଗ୍ନିକୁ ଉପେକ୍ଷା କରଯାଇ ନ ପାରେ । ଏହିପରି ଶତ୍ରୁର ପରାକ୍ରମ ଓ ନିଜର କର୍ତ୍ତବ୍ୟ ଚିନ୍ତାକରି ହନୁମାନ ଅକ୍ଷକୁମାରକୁ ବଧ କରିବାପାଇଁ ସଙ୍କଳ୍ପ କଲେ । ପବନନନ୍ଦନ ଆକାଶରେ ବିଚରଣ କରି ରାବଣପୁତ୍ରର ଅଶ୍ୱଯୁକ୍ତ ରଥକୁ ଏପରି ଆଘାତ କଲେ ଯେ ତାହା ଆକାଶରୁ ଖସି ଭୂପତିତ ହେଲା । ରଥ ଭଗ୍ନ ଓ ଅଶ୍ୱମାନେ ନିହତ ହେଲେ । କିନ୍ତୁ ଅକ୍ଷକୁମାର ଧନୁ ଓ ଖଡ୍ଗ ଧରି ଆକାଶକୁ ଉଠିଗଲା । ହନୁମାନ ବେଗରେ ଅକ୍ଷର ପାଦ ଦୁଇଟିକୁ ଦୃଢ଼ ଭାବରେ ଧରି ତାକୁ ବୁଲାଇ ବୁଲାଇ ଭୂତଳରେ କଚାଡ଼ିଦେଲେ । ତାହାର ବାହୁ, ଉରୁ, କଟି ଓ ଗ୍ରୀବା ଭାଙ୍ଗିଗଲା ଏବଂ ସମସ୍ତ ଶରୀରରୁ ରକ୍ତଧାର ବହିବାକୁ ଲାଗିଲା । ଅକ୍ଷକୁମାରର ନିଧନ ରାବଣର ଭୟ ବଢ଼ାଇ ଦେଲା । ଲଙ୍କାର ଶ୍ରେଷ୍ଠବୀର ଅକ୍ଷକୁମାରକୁ ନିହତ କରି ହନୁମାନ କାଳାନ୍ତକ ତୁଲ୍ୟ ଦେଖାଗଲେ ଏବଂ ସେହି ତୋରଣ ଉପରେ ଯାଇ ବସିପଡ଼ିଲେ ।

## ୮୭ ।। ହନୁମାନଙ୍କ ବନ୍ଧନ : ଲାଙ୍ଗୁଳରେ ଅଗ୍ନିସଂଯୋଗ

ହନୁମାନଙ୍କ ଦ୍ୱାରା ଅକ୍ଷକୁମାର ନିହତ ହେବା ପରେ ରାବଣ ନିଜର ମନ ସ୍ଥିର କରି ଦେବତୁଲ୍ୟ ପୁତ୍ର ଇନ୍ଦ୍ରଜିତ୍‌କୁ ଡାକି କହିଲା, ତୁମେ ଅସ୍ତ୍ରବିତ୍ ଓ ଶସ୍ତ୍ରଧାରୀଙ୍କ ମଧ୍ୟରେ ଶ୍ରେଷ୍ଠ । ତୁମେ ସୁରାସୁରଙ୍କୁ ପରାସ୍ତ କରିଛ । ପିତାମହ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରି ବହୁ ଦିବ୍ୟାସ୍ତ୍ର ଲାଭ କରିଛ । ଯୁଦ୍ଧରେ ତୁମେ କ୍ଳାନ୍ତ ହୁଅ ନାହିଁ । ତୁମେ ବାହୁବଳ ଓ ତପୋବଳ ଦ୍ୱାରା ସୁରକ୍ଷିତ, ଦେଶକାଳଜ୍ଞ ଓ ବୁଦ୍ଧିମାନ । ଯୁଦ୍ଧରେ ଯେକୌଣସି କାର୍ଯ୍ୟ କରିବାପାଇଁ ତୁମେ ସମର୍ଥ ଓ ମୋର ତୁଲ୍ୟ ଭୁବନବିଖ୍ୟାତ ବୀର । ତୁମେ ଯୁଦ୍ଧକ୍ଷେତ୍ରରେ ଥିଲେ ବିଜୟ ସୁନିଶ୍ଚିତ ବୋଲି ମୁଁ ମନେକରେ । ମୋର କିଙ୍କରଗଣ, ଜମ୍ବୁମାଳୀ, ବୀର ମନ୍ତ୍ରିପୁତ୍ରବୃନ୍ଦ ଓ

ପଞ୍ଚ ସେନାପତି ନିହତ ହୋଇଛନ୍ତି । ଚତୁରଙ୍ଗ ସେନାସହ ଅକ୍ଷକୁମାର ମଧ୍ୟ ନିହତ ହୋଇଛି । ବାନରର ବଳ ଓ ପରାକ୍ରମ ଏବଂ ତୁମର ନିଜର ଶକ୍ତି ବିଚାର କରି ତୁମେ ଉପଯୁକ୍ତ କାର୍ଯ୍ୟପନ୍ଥା ଗ୍ରହଣ କର । ନିଜ ସହିତ ସୈନ୍ୟମାନଙ୍କୁ ନେବାର ପ୍ରୟୋଜନ ନାହିଁ । କାରଣ ଅଯଥା ସୈନ୍ୟ ନାଶ ହେବା ଉଚିତ ନୁହେଁ । ସେହି ଅଗ୍ନିତୁଲ୍ୟ ଅତୁଳ ବୀର୍ଯ୍ୟବାନ୍ ବାନରକୁ କୌଣସି ଶସ୍ତ୍ର ଦ୍ୱାରା ସଂହାର କରିବା ସମ୍ଭବ ନୁହେଁ । ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ଏବଂ ସୈନ୍ୟମାନଙ୍କ ସାହାଯ୍ୟ ନିରର୍ଥକ । ଦିବ୍ୟାସ୍ତ୍ରର ସାହାଯ୍ୟ ନିଅ । ଯୁଦ୍ଧରେ ଜୟଲାଭ କରିବାପାଇଁ ତୁମ ଛଡ଼ା ମୁଁ ଅନ୍ୟ କାହାରିକୁ ଦେଖୁ ନାହିଁ ।

ମହାତେଜା ଇନ୍ଦ୍ରଜିତ୍ ପୂର୍ଣ୍ଣିମାରେ ସମୁଦ୍ର ସ୍ଫୀତ ହେବାପରି ବୀରଦର୍ପରେ ଫୁଲିଉଠି ଯୁଦ୍ଧ ଯାତ୍ରା କଲା । ସେ ଗରୁଡ଼ ଓ ପବନତୁଲ୍ୟ ବେଗଶାଳୀ ଚାରୋଟି ତୁରଙ୍ଗଯୋଜିତ ରଥରେ ବସି ହନୁମାନ ଯେଉଁଠାରେ ଥିଲେ, ସେହି ସ୍ଥାନରେ ପହଞ୍ଚିଲା । ବାନରବୀର ହନୁମାନ ତା'ର ରଥର ଘର୍ଘର ଶବ୍ଦ ଓ ଧନୁର ଜ୍ୟା ଧ୍ୱନି ଶୁଣି ଆନନ୍ଦିତ ହେଲେ । ଇନ୍ଦ୍ରଜିତ୍ ଯୁଦ୍ଧଯାତ୍ରା କରିବାରୁ ଦିଗ୍‌ବିଦିଗ ମଳିନ ପଡ଼ିଗଲା ଓ ହିଂସ୍ରପଶୁମାନେ ଚିତ୍କାର କରିବାକୁ ଲାଗିଲେ । ହନୁମାନ ଓ ଇନ୍ଦ୍ରଜିତ୍‌ଙ୍କର ଯୁଦ୍ଧ ଦେଖିବାପାଇଁ ନାଗ, ଯକ୍ଷ, ମହର୍ଷି, ସିଦ୍ଧ ଓ ଗ୍ରହ ନକ୍ଷତ୍ରଗଣ ଆକାଶରେ ସମବେତ ହେଲେ । ପକ୍ଷୀମାନେ ଆକାଶକୁ ଆଚ୍ଛନ୍ନ କରି କଳରବ କରିବାକୁ ଲାଗିଲେ । ଇନ୍ଦ୍ରଜିତ୍ ତ୍ୱରା ଗତିରେ ଆସୁଥିବାର ଦେଖି ହନୁମାନ ନିଜର ଶରୀରକୁ ବିସ୍ତାରିତ କଲେ ଓ ବାୟୁବେଗରେ ଗତି କରି ଇନ୍ଦ୍ରଜିତ୍‌ର ବାଣମାନଙ୍କୁ ପ୍ରତିହତ କରିବାକୁ ଲାଗିଲେ । ସୁବର୍ଣ୍ଣପଙ୍ଖଯୁକ୍ତ ବଜ୍ରତୁଲ୍ୟ ଶରରାଜି ମଧ୍ୟ ବେଗ ଗତି ଦୃଷ୍ଟିରୁ ତାଙ୍କୁ ବିଦ୍ଧ କରିପାରିଲା ନାହିଁ । ଉଭୟ ହନୁମାନ ଓ ଇନ୍ଦ୍ରଜିତ୍ ପରସ୍ପରର ଛିଦ୍ର ଅନ୍ୱେଷଣ କରି କୌଣସି ଛିଦ୍ର ପାଇଲେ ନାହିଁ । ଇନ୍ଦ୍ରଜିତ୍ ଧ୍ୟାନ ଦ୍ୱାରା ଜାଣିପାରିଲା ଯେ ହନୁମାନ ଅବଧ୍ୟ । ତେଣୁ ସେ ତାଙ୍କୁ ବନ୍ଧନ କରିବାପାଇଁ ବ୍ରହ୍ମାସ୍ତ୍ର ପ୍ରୟୋଗ କଲା । ବ୍ରହ୍ମାସ୍ତ୍ରର ଆଘାତରେ କପିବର ନିଶ୍ଚେଷ୍ଟ ହୋଇ ଭୂପତିତ ହେଲେ ଏବଂ ବ୍ରହ୍ମାସ୍ତ୍ର ତାଙ୍କୁ ବନ୍ଧନ କରିଥିବା ଜାଣି ବ୍ରହ୍ମାଙ୍କର ବରଦାନ କଥା ଚିନ୍ତା କରିବାକୁ ଲାଗିଲେ । ବ୍ରହ୍ମା ତାଙ୍କୁ କହିଥିଲେ ଯେ ଏହି ଅସ୍ତ୍ରରେ ବିଦ୍ଧ ହେଲେ ତାଙ୍କର କୌଣସି ଭୟର କାରଣ ନାହିଁ । ହନୁମାନ ଭାବିଲେ, ରାକ୍ଷସମାନେ ମୋତେ ବାନ୍ଧିନେଲେ ଭଲ ହେବ । ରାବଣ ସହିତ ମୋର ସାକ୍ଷାତ କଥାବାର୍ତ୍ତା ହୋଇପାରିବ ।

ହନୁମାନ ନିଶ୍ଚେଷ୍ଟ ଭାବରେ ପଡ଼ିରହିବାରୁ ରାକ୍ଷସମାନେ ତାଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ । ସେମାନେ ଝୋଟଦୌଡ଼ି ଓ ବୃକ୍ଷ ବଳ୍କଳରେ ବଳାହୋଇଥିବା ଦଉଡ଼ି ସାହାଯ୍ୟରେ ତାଙ୍କୁ ବାନ୍ଧିପକାଇଲେ । ସେମାନେ ହନୁମାନଙ୍କୁ 'ତୁ କିଏ, କେଉଁଠାରୁ ଆସିଛୁ' ବୋଲି ପ୍ରଶ୍ନ କରି, ଏହାକୁ ହତ୍ୟାକର, ଏହାକୁ ଅଗ୍ନିରେ ଦାହ କର, ଏହାକୁ ଭକ୍ଷଣ କର ଆଦି ଧ୍ୱନି ଦେବାକୁ ଲାଗିଲେ । ରଜ୍ଜୁବନ୍ଧ ହେବା ଦ୍ୱାରା ହନୁମାନ ବ୍ରହ୍ମାସ୍ତ୍ର ବନ୍ଧନରୁ ମୁକ୍ତ ହେଲେ । ଇନ୍ଦ୍ରଜିତ୍ ମଧ୍ୟ ରାକ୍ଷସମାନଙ୍କ ମୂର୍ଖତା ବିଷୟ ଚିନ୍ତା କରି ମନେ ମନେ କହିଲା, ଅନ୍ୟ ବନ୍ଧନ ଦ୍ୱାରା ବ୍ରହ୍ମାସ୍ତ୍ର ବନ୍ଧନ ନିଷ୍ଫଳ ହୋଇଯାଏ । ଥରେ ନିଷ୍ଫଳ ହେଲେ ଦ୍ୱିତୀୟବାର ବ୍ରହ୍ମାସ୍ତ୍ର ପ୍ରୟୋଗ କରାଯାଏ ନାହିଁ । ବର୍ତ୍ତମାନ ଏହି ବାନର ବନ୍ଧନମୁକ୍ତ ହୋଇ

ଯେକୌଣସି ବିପଜ୍ଜନକ ଅବସ୍ଥା ସୃଷ୍ଟି କରିଦେଇପାରେ । କିନ୍ତୁ ହନୁମାନ ତାହା ଜାଣି ମଧ୍ୟ ନ ଜାଣିବା ପରି ବ୍ୟବହାର କଲେ । ରାକ୍ଷସମାନେ ମତ୍ତମାତଙ୍ଗ ତୁଲ୍ୟ ରଜ୍ଜୁବଦ୍ଧ ହନୁମାନଙ୍କୁ ଟାଣି ଟାଣି ନେଇ ରାବଣ ପାଖରେ ପହଞ୍ଚାଇଦେଲେ । ହନୁମାନଙ୍କୁ ଦେଖି ତେଜୋଦୀପ୍ତ ରାବଣର ଚକ୍ଷୁ କ୍ରୋଧରେ ରକ୍ତବର୍ଣ୍ଣ ହୋଇଗଲା । ତାଙ୍କ ସମ୍ପର୍କରେ ଜାଣିବାପାଇଁ ସେ ମନ୍ତ୍ରୀମାନଙ୍କୁ ଆଦେଶ ଦେଲା । ହନୁମାନ ଉତ୍ତର ଦେଲେ, ମୁଁ ବାନରରାଜ ସୁଗ୍ରୀବଙ୍କର ଦୂତରୂପେ ଏଠାକୁ ଆସିଛି ।

ହନୁମାନ ରାବଣଙ୍କୁ ଦେଖି ବିସ୍ମିତ ହେଲେ । ମହାତେଜା ରାବଣ ମୁକ୍ତାଜାଳମଣ୍ଡିତ ସୁବର୍ଣ୍ଣମୁକୁଟ ପରିଧାନ କରିଥିଲା । ସେ ପିନ୍ଧିଥିବା ଅଳଙ୍କାର ସୁବର୍ଣ୍ଣ ନିର୍ମିତ ଓ ବହୁମୂଲ୍ୟ ମଣି ଦ୍ୱାରା ଚିତ୍ରିତ । ଶରୀର ବଳିଷ୍ଠ, ସୁଗଠିତ ଓ ରକ୍ତଚନ୍ଦନଯୁକ୍ତ । ଚକ୍ଷୁ ରକ୍ତବର୍ଣ୍ଣ, ଦନ୍ତ ତୀକ୍ଷ୍ଣ ଓ ଓଷ୍ଠ ଲମ୍ବମାନ । ନୀଳାଞ୍ଜନ ଗିରି ସଦୃଶ ବିଶାଳ ବକ୍ଷରେ ଏକ ସୁନ୍ଦର ହାର ଶୋଭା ପାଉଥିଲା । ପୂର୍ଣ୍ଣଚନ୍ଦ୍ର ପରି ବଦନମଣ୍ଡଳ ମେଘ ମଧ୍ୟରେ ବାଳସୂର୍ଯ୍ୟ ପରି ଦେଖାଯାଉଥିଲା । ତା'ର ପୃଥୁଳ ବାହୁ କେୟୂରଭୂଷିତ ହୋଇ ପଞ୍ଚାଙ୍ଗୁଳି ସହିତ ପଞ୍ଚମସ୍ତକ ବିଶିଷ୍ଟ ସର୍ପ ପରି ଦେଖାଯାଉଥିଲା । ଅଳଙ୍କାରଭୂଷିତା ରମଣୀମାନେ ତାକୁ ଚାମରରେ ବ୍ୟଜନ କରୁଥିଲେ । ଦୁର୍ଦ୍ଧର, ପ୍ରହସ୍ତ, ମହାପାର୍ଶ୍ୱ ଓ ନିକୁମ୍ଭ ନାମରେ ତାର ଚାରିଜଣ ଦକ୍ଷ ମନ୍ତ୍ରୀ ପାଖରେ ବସି ପରାମର୍ଶ ଦେଉଥିଲେ । ମେରୁ ପର୍ବତରେ ସଜଳ ଜଳଦ ତୁଲ୍ୟ ଉଚ୍ଚ ସିଂହାସନରେ ଆରୂଢ଼ ରାବଣକୁ ଦେଖି ହନୁମାନ ବିମୋହିତ ହୋଇଗଲେ । ସେ କହିଲେ, ରାକ୍ଷସରାଜ ସର୍ବଲକ୍ଷଣଯୁକ୍ତ । କି ସୁନ୍ଦର ଏହାର ରୂପ, କି ଧୈର୍ଯ୍ୟ, କି ଦୀପ୍ତି, କି ପରାକ୍ରମ । ଏହି ବଳବାନ ରାକ୍ଷସେନ୍ଦ୍ର ଯଦି ଅଧର୍ମୀ ହୋଇ ନ ଥା'ନ୍ତା, ତା'ହେଲେ ଇନ୍ଦ୍ରଙ୍କ ସହିତ ଦେବଲୋକକୁ ରକ୍ଷା କରୁଥାନ୍ତା । ଏହାର ନୃଶଂସ କାର୍ଯ୍ୟ ଯୋଗୁଁ ଏ ତ୍ରିଲୋକର ଭୟ ସଞ୍ଚାର କରୁଛି । ଏ ଯଦି କ୍ରୁଦ୍ଧ ହୁଏ, ସସାଗରା ପୃଥିବୀକୁ ଏକାକାର କରିଦେଇପାରେ ।

ରାବଣ ମଧ୍ୟ ପିଙ୍ଗଳବର୍ଣ୍ଣଚକ୍ଷୁବିଶିଷ୍ଟ ହନୁମାନଙ୍କୁ ଦେଖି ଶଙ୍କିତ ହେଲା । ସେ ଭାବିଲା ଏ କ'ଣ ସ୍ୱୟଂ ନନ୍ଦୀ, କୈଳାସ ପର୍ବତରୁ ଏଠାକୁ ଆସିଛନ୍ତି । ପୂର୍ବେ କୈଳାସ ପର୍ବତରେ ମୁଁ ତାଙ୍କୁ ଉପହାସ କରିଥିବାରୁ ସେ ମୋତେ ଅଭିଶାପ ଦେଇଥିଲେ । ଏବେ ବୋଧହୁଏ ବାନର ରୂପରେ ଏଠାକୁ ଆସିଛନ୍ତି କିମ୍ୱା ଏ ବାଣାସୁର ହୋଇପାରନ୍ତି । ରାବଣ ହନୁମାନଙ୍କୁ ପଚାରିବା ପାଇଁ ପ୍ରହସ୍ତକୁ ଆଦେଶ ଦେଇ କହିଲା, ଏହି ଦୁରାତ୍ମାକୁ ପଚାର, କାହିଁକି ସେ ଏଠାକୁ ଆସିଛି । ଅଶୋକବନକୁ ଭାଙ୍ଗି ରାକ୍ଷସୀମାନଙ୍କୁ ଭୟଭୀତ କରିଛି ଏବଂ ଆମ ସହିତ ଯୁଦ୍ଧ କରିବାକୁ ସାହସ କରିଛି ? ପ୍ରହସ୍ତ ପଚାରିଲା – ବାନର, ଆଶ୍ୱସ୍ତ ହୁଅ । ଭୟ କର ନାହିଁ । ଯଦି ଇନ୍ଦ୍ରଙ୍କ ଦ୍ୱାରା ପ୍ରେରିତ ହୋଇ ରାବଣଙ୍କର ଲଙ୍କାନଗରୀକୁ ଆସିଥାଅ, ତା' ହେଲେ କହିଦିଅ, ତୁମକୁ ଛାଡ଼ି ଦିଆଯିବ । ଯଦି କୁବେର, ଯମ, ବରୁଣ ବା ବିଷ୍ଣୁଙ୍କର ଦୂତ ରୂପେ ଆସିଥାଅ ତା' ହେଲେ ମଧ୍ୟ ପ୍ରକାଶ କର । ସତ୍ୟ କହିଲେ ମୁକ୍ତି, ମିଥ୍ୟା କହିଲେ ତୁମର ଜୀବନସଂଶୟ ଘଟିବ ।

ହନୁମାନ ରାବଣକୁ କହିଲେ, ମୁଁ ଇନ୍ଦ୍ର, ଯମ, ବରୁଣ, କୁବେର ବା ବିଷ୍ଣୁଙ୍କର ଦୂତ ନୁହେଁ । ମୁଁ ଜାତିରେ ବାନର । ରାକ୍ଷସରାଜଙ୍କର ଦର୍ଶନ ଦୁର୍ଲ୍ଲଭ ବୋଲି ଜାଣି ତାଙ୍କର ଦୃଷ୍ଟି ଆକର୍ଷଣ କରିବାପାଇଁ ଅଶୋକବନକୁ ନଷ୍ଟ କରିଛି । ମୁଁ ରାକ୍ଷସମାନଙ୍କୁ ଯୁଦ୍ଧପାଇଁ ଆହ୍ୱାନ କରି ନାହିଁ । ରାକ୍ଷସମାନେ ମୋ ସହିତ ଯୁଦ୍ଧ କରିବାକୁ ଆସିବାରୁ ମୁଁ ଯୁଦ୍ଧ କରିଛି ମାତ୍ର ।

ହନୁମାନ କହିଲେ – ରାକ୍ଷସେନ୍ଦ୍ର, ମୁଁ ସୁଗ୍ରୀବଙ୍କ ଦ୍ୱାରା ପ୍ରେରିତ ରାମଙ୍କର ଦୂତ । ସୁଗ୍ରୀବ ଭ୍ରାତୃସ୍ନେହରେ ତୁମର କୁଶଳ ଜିଜ୍ଞାସା କରିଛନ୍ତି । ଇନ୍ଦ୍ରଙ୍କ ତୁଲ୍ୟ ଚତୁରଙ୍ଗ ବଳର ଅଧିକାରୀ ରାଜା ଦଶରଥଙ୍କର ଜ୍ୟେଷ୍ଠପୁତ୍ର ରାମ ପିତାଙ୍କର ଆଦେଶ ପାଳନ କରିବାପାଇଁ ନିଜର ଭାଇ ଲକ୍ଷ୍ମଣ ଓ ଭାର୍ଯ୍ୟା ସୀତାଙ୍କ ସହ ଦଣ୍ଡକାରଣ୍ୟରେ ବାସ କରୁଥିଲେ । ରାମ ତେଜସ୍ୱୀ, ଧର୍ମଜ୍ଞ ଓ ସର୍ବଶକ୍ତିମାନ । ସୀତାଙ୍କ ଅପହରଣ ପରେ ସେ ସୁଗ୍ରୀବଙ୍କ ସହିତ ମିତ୍ରତା କଲେ ଏବଂ ଯୁଦ୍ଧରେ ବାଳୀକୁ ନିହତ କରି ସୁଗ୍ରୀବଙ୍କୁ ରାଜା କରାଇଲେ । ବାଳୀଙ୍କର ବଳ ବିଷୟରେ ତୁମେ ଜାଣ । ମାତ୍ର ରାମଙ୍କର ଗୋଟିଏ ମାତ୍ର ଶର ତାଙ୍କୁ ମାରିବାପାଇଁ ଯଥେଷ୍ଟ ଥିଲା । ରାମଙ୍କର ମିତ୍ର ସୁଗ୍ରୀବ ସୀତାଙ୍କୁ ଖୋଜିବାପାଇଁ ଚତୁର୍ଦ୍ଦିଗକୁ ବାନରମାନଙ୍କୁ ପଠାଇଛନ୍ତି । ମୁଁ ପବନପୁତ୍ର ହନୁମାନ । ଶତଯୋଜନ ସମୁଦ୍ର ଅତିକ୍ରମ କରି ସୀତାଙ୍କୁ ଖୋଜିବାପାଇଁ ଏଠାକୁ ଆସିଛି । ମୁଁ ସୀତାଙ୍କୁ ତୁମର ଲଙ୍କାପୁରୀରେ ଦେଖିଲି । ତୁମେ ପ୍ରାଜ୍ଞ, ଧର୍ମ ଓ ଅର୍ଥବିତ୍, ତପୋବଳରେ ବଳୀୟାନ । ପରସ୍ତ୍ରୀକୁ ଆଣି ବନ୍ଦୀ କରି ରଖିବା ଧର୍ମବିରୁଦ୍ଧ କାର୍ଯ୍ୟ । ଧର୍ମବିରୁଦ୍ଧ କାର୍ଯ୍ୟ ସମସ୍ତ ଅନର୍ଥ ଓ ବିନାଶର ହେତୁ । ରାମଙ୍କର ଅପ୍ରିୟ କାର୍ଯ୍ୟ କରି ଦେବାସୁର ନର ନାଗ ଏହି ତ୍ରିଭୁବନରେ କେହି ସୁଖରେ ରହିପାରିବେ ନାହିଁ । ତେଣୁ ମୋ କଥା ମାନି ସୀତାଙ୍କୁ ଫେରାଇଦିଅ । ସୀତା ଶୋକପରାୟଣା । ବିଷଧର ସର୍ପପରି ତୁମ ଗୃହରେ ରହିଛନ୍ତି । ବିଷଯୁକ୍ତ ଅନ୍ନ ଭକ୍ଷଣ କରି କେହି ଯେପରି ଜୀର୍ଣ୍ଣ କରିପାରେ ନାହିଁ, ସୀତାଙ୍କୁ ମଧ୍ୟ ତୁମେ ସେହିପରି ନିଜର କରିପାରିବ ନାହିଁ । ତୁମେ ତପୋବଳରେ ବଳୀୟାନ ହୋଇ ମନେକରୁଛ, ଦେବାସୁରମାନଙ୍କର ତୁମେ ଅବଧ୍ୟ । ତୁମେ ମନେରଖ ଯେ ସୁଗ୍ରୀବ କିମ୍ବା ରାମ ଦେବତା ବା ଅସୁର ନୁହନ୍ତି । ଜଣେ ବାନର ଓ ଜଣେ ମନୁଷ୍ୟ । ଜନସ୍ଥାନ ରାକ୍ଷସମାନଙ୍କର ବଧ, ବାଳୀ ବଧ ଓ ରାମ - ସୁଗ୍ରୀବଙ୍କର ମିତ୍ରତା ବିଷୟ ଭଲ ଭାବରେ ବିଚାର କର । ମୁଁ ଏକାକୀ ତୁମର ଲଙ୍କାପୁରୀକୁ ବିନଷ୍ଟ କରିଦେଇପାରେ । କିନ୍ତୁ ରାମଙ୍କର ତାହା ଇଚ୍ଛା ନୁହେଁ । ସେ ନିଜେ ସୀତାଙ୍କ ଅପମାନର ପ୍ରତିଶୋଧ ନେଇ ଶତ୍ରୁ ସଂହାର କରିବେ ବୋଲି ପ୍ରତିଜ୍ଞା କରିଛନ୍ତି । ରାକ୍ଷସରାଜ, ସୀତାରୂପକ କାଳପାଶକୁ ନିଜ ବେକରେ ଆଉ ବାନ୍ଧ ନାହିଁ । ତୁମର ଜ୍ଞାତି, କୁଟୁମ୍ବ ଓ ମନ୍ତ୍ରୀଙ୍କ ସହିତ ଲଙ୍କାପୁରୀକୁ ଧ୍ୱଂସ ହେବାକୁ ଦିଅ ନାହିଁ । ମୁଁ ରାମଙ୍କର ଦାସ ଏବଂ ଦୂତ, ମୋ କଥା ମାନ । ବ୍ରହ୍ମା, ଇନ୍ଦ୍ର, ରୁଦ୍ର କେହି ରାମଙ୍କ ଆଗରେ ଠିଆ ହୋଇପାରିବେ ନାହିଁ, ମନେରଖ ।

ହନୁମାନଙ୍କର ଭାଷା ରାବଣକୁ ଆଦୌ ରୁଚିକର ବୋଧ ହେଲା ନାହିଁ । ସେ ହନୁମାନଙ୍କୁ ବଧ କରିବାକୁ ଆଦେଶ ଦେଲା । ରାବଣର ଭାଇ ବିଭୀଷଣ କହିଲେ –

ରାକ୍ଷସେନ୍ଦ୍ର, ପ୍ରସନ୍ନ ହୁଅ । କ୍ରୁଦ୍ଧ ନ ହୋଇ ମୋର କଥା ଶୁଣ । କାର୍ଯ୍ୟର ଭଲ ମନ୍ଦ ବିଚାର କରୁଥିବା ରାଜାମାନେ କେବେହେଲେ ଦୂତକୁ ବଧ କରନ୍ତି ନାହିଁ । ଏହି ବାନରର ବଧ ରାଜଧର୍ମ ଓ ଲୋକାଚାର ବିରୁଦ୍ଧ । ତେଣୁ ତୁମ ପକ୍ଷରେ ଆଦୌ କରଣୀୟ ନୁହେଁ । ତୁମେ ଧର୍ମଜ୍ଞ, ରାଜନୀତିନିପୁଣ ଏବଂ ପରମାର୍ଥ ତତ୍ତ୍ୱ ମଧ୍ୟ ଜାଣ । ତୁମପରି ବିଚକ୍ଷଣ ବ୍ୟକ୍ତି ଯଦି କ୍ରୋଧର ବଶବର୍ତ୍ତୀ ହୁଅନ୍ତି, ତା' ହେଲେ ଶାସ୍ତ୍ର ଓ ପାଣ୍ଡିତ୍ୟର କୌଣସି ମୂଲ୍ୟ ନାହିଁ । ଅରିନ୍ଦମ, କ୍ରୋଧର ବଶବର୍ତ୍ତୀ ନ ହୋଇ ଦୂତକୁ ଦଣ୍ଡ ଦେବା ବିଷୟରେ ଭଲ ଭାବରେ ବିଚାର କର । ରାବଣ କହିଲା – ପାପୀଲୋକକୁ ବଧ କଲେ କୌଣସି ପାପ ହୁଏ ନାହିଁ । ମୁଁ ଏହି ପାପାତ୍ମା ବାନରକୁ ବଧ କରିବି । ବିଭୀଷଣ କହିଲେ, ଲଙ୍କେଶ୍ୱର, ସବୁଦେଶରେ ସବୁ ସ୍ଥାନରେ ଦୂତମାନେ ଅବଧ୍ୟ । ଏହି ବାନର ଏକ ବଳବାନ ଶତ୍ରୁ ରୂପେ ତୁମର ବହୁ କ୍ଷତି କରିଛି । କିନ୍ତୁ ସେ ଦୂତ ହୋଇଥିବା ଯୋଗୁଁ ତୁମର ବଧର ଯୋଗ୍ୟ ନୁହେଁ । ଦୂତମାନଙ୍କ ପାଇଁ ଦଣ୍ଡ ବିଧାନ ଅଛି । ତାଙ୍କର ଅଙ୍ଗକୁ ବିରୂପ କରିବା, କଷାଘାତ କରିବା, ମସ୍ତକ ମୁଣ୍ଡନ କରିବା କିମ୍ବା ଦେହରେ କୌଣସି ଚିହ୍ନ ରଖିଦେବା ଆଦି ବ୍ୟବସ୍ଥା କରାଯାଇଛି । କିନ୍ତୁ ମୃତ୍ୟୁଦଣ୍ଡର କୌଣସି ଉଲ୍ଲେଖ ନାହିଁ । ତେଣୁ ଆପଣଙ୍କ ପରି ଶାସ୍ତ୍ରଜ୍ଞ ବ୍ୟକ୍ତି ଏହି ବାନରକୁ ବଧ କରିବା ଏକାନ୍ତ ଅନୁଚିତ । ଏହାକୁ ଯେ ପ୍ରେରଣ କରିଛି ସେ ହିଁ ତୁମର ବଧର ଯୋଗ୍ୟ । ଏହି ଦୂତ ବିନଷ୍ଟ ହେଲେ ରାମ, ଲକ୍ଷ୍ମଣ କୌଣସି ସମ୍ବାଦ ପାଇବେ ନାହିଁ । ତେଣୁ ତୁମେ ତାଙ୍କୁ କି ଶାସ୍ତି ଦେବ ? ବରଂ ଏହାକୁ ଛାଡ଼ିଦିଅ, ସେମାନେ ଉତ୍ସାହିତ ହୋଇ ଯୁଦ୍ଧ କରିବାକୁ ଆସନ୍ତୁ । ତୁମେ ତୁମର ସୈନ୍ୟଙ୍କୁ ପଠାଇ ସେମାନଙ୍କୁ ଏଠାକୁ ବାନ୍ଧି ଆଣିପାରିବ ।

ରାବଣ ଏତେବେଳକୁ ବିଭୀଷଣଙ୍କର କଥା ମାନିଲା । ସେ କହିଲା, ତୁମେ ଯାହା କହିଛ, ଯଥାର୍ଥ । ଏହାକୁ ଅନ୍ୟ ଶାସ୍ତି ଦିଆଯିବ । ଲାଙ୍ଗୁଳ ହିଁ କପିମାନଙ୍କର ପ୍ରିୟ । ତେଣୁ ଏହାର ଲାଙ୍ଗୁଳକୁ ପୋଡ଼ି ଦିଆଯାଉ । ରାକ୍ଷସମାନେ ଏହାର ଲାଙ୍ଗୁଳରେ ନିଆଁ ଲଗାଇ ସମଗ୍ର ଲଙ୍କାନଗରୀରେ ବୁଲାଇ ଆଣନ୍ତୁ ।

ରାକ୍ଷସମାନେ ରାବଣର ଆଦେଶରେ ହନୁମାନଙ୍କ ଲାଙ୍ଗୁଳରେ ଜୀର୍ଣ୍ଣବସ୍ତ୍ର ଆଣି ଗୁଡ଼ାଇବାକୁ ଲାଗିଲେ । ହନୁମାନ ତାଙ୍କ ଲାଙ୍ଗୁଳ ବହୁତ ବଢ଼ାଇଦେଲେ । ରାକ୍ଷସମାନେ ଲୁଗା ଗୁଡ଼ାଇ ତେଲ ଢାଳି ସେଥିରେ ନିଆଁ ଲଗାଇ ଦେଲେ ।

## ୮୮ ।। ଲଙ୍କା ଦହନ

ହନୁମାନ ଭାବିଲେ ରାକ୍ଷସମାନଙ୍କ ଦ୍ୱାରା ମୁଁ ନିର୍ଜିତ ହେଉଅଛି । ଏ ରାକ୍ଷସମାନେ ମୋ ଆଗରେ କିଛି ନୁହନ୍ତି । ମୁଁ ଏମାନଙ୍କ ସମସ୍ତଙ୍କ ସହିତ ଲଢ଼ିବାପାଇଁ ସମର୍ଥ । କିନ୍ତୁ ରାମଙ୍କର ପ୍ରୀତି ଦୃଷ୍ଟିରୁ ମୁଁ ଏହା କରିବି ନାହିଁ । ଏମାନେ ଲାଙ୍ଗୁଳରେ ନିଆଁ ଲଗାଇ ମୋତେ ବୁଲାଉଛନ୍ତି, ବୁଲାନ୍ତୁ । ମୁଁ ଏହାଦ୍ୱାରା ସମସ୍ତ ଲଙ୍କାନଗରୀକୁ ଭଲଭାବରେ ଦେଖିପାରିବି ।

ରାକ୍ଷସମାନେ ହନୁମାନଙ୍କୁ ଗୁପ୍ତଚର ବୋଲି ଘୋଷଣା କରି ଲାଙ୍ଗୁଳରେ ନିଆଁ ଲଗାଇ ଚାରିଆଡ଼େ ବୁଲାଇଲେ । ରାକ୍ଷସୀମାନେ ସୀତାଙ୍କୁ କହିଲେ– ସୀତା, ତୁମେ ଯେଉଁ ତାମ୍ରମୁଖ ବାନର୍ ସହିତ କଥାବାର୍ତ୍ତା କରୁଥିଲ, ତାର ଲାଙ୍ଗୁଳରେ ନିଆଁ ଲଗାଇ ତାକୁ ରାକ୍ଷସମାନେ ବୁଲାଉଛନ୍ତି । ସୀତା ଶୋକାର୍ତ୍ତ ହୋଇ ସଂଯତ ଚିତ୍ତରେ ଅଗ୍ନିଙ୍କୁ ପ୍ରାର୍ଥନା କରି କହିଲେ, ମୋର ପତିସେବା ଏବଂ ତପସ୍ୟା ଯଦି ସତ୍ୟ ହୋଇଥାଏ, ତା'ହେଲେ ଅଗ୍ନିଦେବ, ତୁମେ ହନୁମାନଙ୍କର ଦେହରେ ଶୀତଳ ହୋଇଯାଅ । ହନୁମାନ ଅଗ୍ନିର ଦହନ ଅନୁଭବ ନ କରି ବିସ୍ମିତ ହେଲେ । ଅଗ୍ନିର ଶିଖା ତାଙ୍କୁ ଶିଶିରପାତ ପରି ବୋଧ ହେଲା । ସେ ଭାବିଲେ ରାମଙ୍କୁ ସମ୍ମାନ କରିବାପାଇଁ ସମୁଦ୍ର ଓ ମୈନାକ ପର୍ବତ ମୋତେ ଅଭିନନ୍ଦନ କରିଥିଲେ । ଏବେ ସୀତାଙ୍କର ଦୟା ଓ ରାମଙ୍କର ପ୍ରଭାବ ଏବଂ ମୋର ପିତାଙ୍କର ବନ୍ଧୁତା ଯୋଗୁଁ ଅଗ୍ନି ମୋତେ ଦଗ୍ଧ କରୁ ନାହାନ୍ତି । ପର ମୁହୂର୍ତ୍ତରେ ହନୁମାନ ଚିନ୍ତାକଲେ, ବେଶି ସମୟ ମୋର ବାନ୍ଧିହୋଇ ରହିବା ଠିକ୍ ନୁହେଁ । ବର୍ତ୍ତମାନ ମୋର ପରାକ୍ରମ ଦେଖାଇବା ବେଳ । ସେହି ମୁହୂର୍ତ୍ତରେ ହନୁମାନ ସମସ୍ତ ରଜ୍ଜୁ ଛେଦନ କରି ଓ ରାକ୍ଷସମାନଙ୍କୁ ଛିନ୍ନ ଭିନ୍ନ କରି ଆକାଶକୁ ଉତ୍‌ଥିତ ହେଲେ । ସେ ନଗରର ଦ୍ୱାର ଉପରେ ବସି ପର୍ବତତୁଲ୍ୟ ଆକାର ଧାରଣ କରିବାକୁ ଲାଗିଲେ ଏବଂ ଏକ ଲୌହନିର୍ମିତ କୃଷ୍ଣବର୍ଣ୍ଣ ଗଦା ତୋରଣ ମଧ୍ୟରୁ ଗ୍ରହଣ କରି ଗର୍ଜନ କରିବାକୁ ଲାଗିଲେ । ସେ ପ୍ରଥମେ ପ୍ରହସ୍ତର ଗୃହରେ ଅଗ୍ନି ସଂଯୋଗ କଲେ । ତା' ପରେ ଇନ୍ଦ୍ରଜିତ ସମେତ ଲଙ୍କାର ସମସ୍ତ ରାକ୍ଷସବୀରଙ୍କର ଗୃହସବୁକୁ ଡେଇଁ ଡେଇଁ ଦଗ୍ଧ କରିବାକୁ ଲାଗିଲେ । ତା' ପରେ ରାବଣର ଗୃହରେ ଅଗ୍ନି ସଂଯୋଗ କରି ପ୍ରଳୟ ମେଘପରି ଗର୍ଜନ କରିବାକୁ ଲାଗିଲେ । ପବନର ସାହାଯ୍ୟରେ ଅଗ୍ନି ଅତିଶୀଘ୍ର ସେହିସବୁ ଗୃହକୁ ଭସ୍ମୀଭୂତ କଲା । ଦଗ୍ଧ ହୋଇ ଗୃହର ଛାତମାନ ଭୂତଳରେ ଖସିପଡ଼ିଲା । ଚାରିଆଡ଼େ ହାହାକାର ଶୁଣାଗଲା । ସ୍ତ୍ରୀଲୋକମାନେ ଛୋଟ ଛୋଟ ପିଲାମାନଙ୍କୁ ଧରି ଘରଛାଡ଼ି ପଳାଇଗଲେ । ରାକ୍ଷସମାନେ ମନେକଲେ, ସ୍ୱୟଂ ଅଗ୍ନି ବାନର ରୂପରେ ଉପସ୍ଥିତ ହୋଇଛନ୍ତି । ସମଗ୍ର ଲଙ୍କାପୁରୀକୁ ବେଷ୍ଟନ କରି ଏହି ପ୍ରଳୟାଗ୍ନି ଜଳିବାକୁ ଲାଗିଲା । ଏହିପରି ଲଙ୍କାନଗରୀକୁ ଦଗ୍ଧ କରି ବାୟୁପୁତ୍ର ସମୁଦ୍ର ଜଳରେ ନିଜର ଲାଙ୍ଗୁଳସ୍ଥିତ ଅଗ୍ନିକୁ ନିର୍ବାପିତ କଲେ ।

ଲଙ୍କା ଦଗ୍ଧ ହେବାପରେ ହନୁମାନଙ୍କ ମନରେ ଆଶଙ୍କା ଓ ଭୟ ଜାତ ହେଲା । ସେ ଭାବିଲେ ମୁଁ ଲଙ୍କାକୁ ଦଗ୍ଧ କରି ଘୋର ଅନୁଚିତ ଓ ପାପ କାର୍ଯ୍ୟ କରିଛି । ମୁଁ କ୍ରୋଧର ବଶବର୍ତ୍ତୀ ହୋଇ ସୀତାଙ୍କ ବିଷୟ ଚିନ୍ତା କରି ନାହିଁ । ସମଗ୍ର ଲଙ୍କା ତା'ର ବନ ଓ ଅରଣ୍ୟ ସହିତ ଯେତେବେଳେ ପୋଡ଼ିଗଲା, ସୀତା ମଧ୍ୟ ତା ସହିତ ଦଗ୍ଧ ହୋଇ ଯାଇଥିବେ । ସୀତା ବିନଷ୍ଟ ହେଲେ ମୋର ସମସ୍ତ କାର୍ଯ୍ୟ ନିଷ୍ଫଳ ହେବ । ମୋ ପକ୍ଷରେ ପ୍ରାଣ ବିସର୍ଜନ ଛଡ଼ା ଅନ୍ୟ ପନ୍ଥା ନାହିଁ । ମୋ ଦୋଷରେ କେବଳ ସୀତା ନୁହନ୍ତି, ଇକ୍ଷ୍ୱାକୁ ଓ ବାନର ବଂଶ ମଧ୍ୟ ଧ୍ୱଂସ ହୋଇଯିବ । ଅବଶ୍ୟ ସୀତା ନିଜର ସଚ୍ଚରିତ୍ର ଓ ତପସ୍ୟା ବଳରେ ହୁଏତ ରକ୍ଷା ପାଇଯାଇଥିବେ । ହନୁମାନ ଏହିପରି ଚିନ୍ତାକରି ଅଶୋକବନକୁ ପ୍ରସ୍ଥାନ କଲେ । ଶିଂଶପା ବୃକ୍ଷମୂଳରେ ସୀତା ନିରାପଦରେ ରହିଥିବା ଦେଖି ତାଙ୍କର ଆନନ୍ଦର ସୀମା

ରହିଲା ନାହିଁ । ସେ ସୀତାଙ୍କୁ ଅଭିବାଦନ କରି କହିଲେ, ମୋର ସୌଭାଗ୍ୟ, ମୁଁ ଆପଣଙ୍କୁ ଅକ୍ଷତ ଶରୀରରେ ଦେଖିପାରୁଛି । ସୀତା ଉତ୍ତର ଦେଲେ, ଶତ୍ରୁଞ୍ଜୟ ହନୁମାନ, ତୁମର ବଳ ଓ ବୁଦ୍ଧି ଦ୍ୱାରା ତୁମେ ଏକାକୀ ରାମଙ୍କର କାର୍ଯ୍ୟ ସାଧନ କରିବାପାଇଁ ସମର୍ଥ । ବର୍ତ୍ତମାନ କାକୁତ୍ସ୍ଥ ରାମ ସସୈନ୍ୟ ଲଙ୍କାକୁ ଅବରୁଦ୍ଧ କରି କିପରି ମୋତେ ଉଦ୍ଧାର କରିବେ, ତା'ର ବ୍ୟବସ୍ଥା କର । ହନୁମାନ ସୀତାଙ୍କୁ କହିଲେ, ରାମ ବାନର ଓ ଭଲ୍ଲୁକ ସେନାପରିବେଷ୍ଟିତ ହୋଇ ଶୀଘ୍ର ଏଠାକୁ ଆସି ତୁମକୁ ଉଦ୍ଧାର କରିବେ ।

ଏହାପରେ ହନୁମାନ ଜାନକୀଙ୍କୁ ଅଭିବାଦନ କରି ରାମଙ୍କୁ ଶୁଭସମ୍ବାଦ ଦେବାପାଇଁ ମନସ୍ଥ କଲେ । ଅପୂର୍ବ ବଳ ପ୍ରଦର୍ଶନ, ପ୍ରଧାନ ରାକ୍ଷସବୀରଙ୍କର ନିଧନ, ନିଜର ପରିଚୟ ପ୍ରଦାନ, ସୀତାଙ୍କୁ ସାନ୍ତ୍ୱନା, ଲଙ୍କାକୁ ବ୍ୟାକୁଳିତ ଓ ରାବଣକୁ ବଞ୍ଚିତ କରି ହନୁମାନ ଅଦ୍ଭୁତ କାର୍ଯ୍ୟ ସାଧନ କଲେ । ଅରିନ୍ଦମ ବାନରବୀର ଲଙ୍କାର ଅରିଷ୍ଟ ନାମକ ପର୍ବତ ଆରୋହଣ କରି ଲଂଘନପାଇଁ ଲବଣ ସମୁଦ୍ରକୁ ଦେଖିବାକୁ ଲାଗିଲେ । ତାପରେ ପର୍ବତକୁ ପାଦଭାରରେ ଭଗ୍ନ ଓ ମଥିତ କରି ଲମ୍ଫ ପ୍ରଦାନ ପୂର୍ବକ ଆକାଶ ମାର୍ଗରେ ଧାବିତ ହେଲେ ।

## ୮୯ ।। ହନୁମାନ ଫେରିଲେ : ବାନରଙ୍କର ଆନନ୍ଦ

ମହେନ୍ଦ୍ର ପର୍ବତ ନିକଟବର୍ତ୍ତୀ ହୋଇ ହନୁମାନ ଏପରି ଗର୍ଜନ କଲେ ଯେ ସେହି ଶବ୍ଦରେ ଦଶଦିଗ ପୂର୍ଣ୍ଣ ହୋଇଗଲା । ସେ ବାରମ୍ବାର ଗର୍ଜନ କରି ଆକାଶ ଭୂତଳ କମ୍ପିତ କଲେ । ପୂର୍ବରୁ ହନୁମାନଙ୍କ ଫେରିବା ବାଟକୁ ଚାହିଁ ବସି ରହିଥିବା ବାନରବୀରମାନେ ଦୂରରୁ ଏହି ଗର୍ଜନ ଶୁଣି ତାଙ୍କୁ ଦେଖିବା ପାଇଁ ଉତ୍କଣ୍ଠିତ ହେଲେ । ଜାମ୍ବବାନ ସେମାନଙ୍କୁ କହିଲେ, ହନୁମାନ ନିଃସନ୍ଦେହରେ କୃତକାର୍ଯ୍ୟ ହୋଇଛନ୍ତି । ତା ନ ହୋଇଥିଲେ ସେ ଏପରି ଗର୍ଜନ କରନ୍ତେ ନାହିଁ । ହନୁମାନଙ୍କୁ ଦେଖିବାପାଇଁ ବାନରମାନେ ବିଭିନ୍ନ ବୃକ୍ଷ ଓ ପର୍ବତ ଶିଖରକୁ ଲମ୍ଫ ଦେଇ ଅବସ୍ଥାନ କଲେ । ହନୁମାନ ଆନନ୍ଦରେ ମହେନ୍ଦ୍ର ପର୍ବତ ଶିଖରରେ ଓହ୍ଲାଇ ପଡ଼ି ବାନରମାନଙ୍କୁ ହର୍ଷିତ କଲେ । ମୁଁ ସୀତାଙ୍କୁ ଦେଖିଛି, ସଂକ୍ଷେପରେ ସେ ଏତିକି କହିବାରୁ ବାନରମାନେ ଅଧିକ ଜାଣିବାପାଇଁ ଚାରିଆଡ଼େ ତାଙ୍କୁ ଘେରିଗଲେ । ହନୁମାନ କହିଲେ, ଅନିନ୍ଦିତା ସୀତା ରାକ୍ଷସୀମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ କେବଳ ରାମଙ୍କର ଦର୍ଶନ ଲାଳସାରେ ଅତି ଦୁଃଖରେ ରହିଛନ୍ତି । ଜନକନନ୍ଦିନୀ ଉପବାସ ଯୋଗୁଁ ଶ୍ରାନ୍ତ, କ୍ଷୀଣ ଓ ମଳିନ ହୋଇ ପଡ଼ିଛନ୍ତି ।

ହନୁମାନ ସୀତାଙ୍କୁ ଦେଖିଛନ୍ତି, ଏହି ସମ୍ବାଦରେ ବାନରମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେମାନେ ସିଂହନାଦ, ଗର୍ଜନ ଓ କିଳିକିଳା ଧ୍ୱନି କରି ନିଜର ଆନନ୍ଦ ପ୍ରକାଶ କଲେ । ଅଙ୍ଗଦ କହିଲେ – ବାନରେନ୍ଦ୍ର, ବଳବୀର୍ଯ୍ୟରେ ତୁମେ ଅତୁଳନୀୟ । ତୁମେ ଏକାକୀ ବିସ୍ତୀର୍ଣ୍ଣ ସାଗର ଲଂଘନ କରି ଏଠାକୁ ଫେରିଆସି ଆମମାନଙ୍କ ଜୀବନ ରକ୍ଷା କରିଛ । ହନୁମାନ ମହେନ୍ଦ୍ରପର୍ବତରୁ ଲମ୍ଫଦାନ କରିବାଠାରୁ ଆରମ୍ଭ କରି ଲଙ୍କାଦହନ

ପର୍ଯ୍ୟନ୍ତ ସମସ୍ତ ବିଷୟ ବିସ୍ତାରିତ ଭାବେ ବର୍ଣ୍ଣନା କଲେ । କଥା ଶେଷକରି କହିଲେ, ରାମଙ୍କ ଉଦ୍‌ଯୋଗ ଓ ସୁଗ୍ରୀବଙ୍କର ବ୍ୟଗ୍ରତା ସଫଳ ହୋଇଛି । ସୀତାଙ୍କର ଚରିତ୍ରରେ ମୁଁ ଅଭିଭୂତ । ସେ ତପୋବଳରେ ସମସ୍ତ ସଂସାରକୁ ଧାରଣ କରିପାରନ୍ତି ଏବଂ କ୍ରୁଦ୍ଧ ହେଲେ ଏ ପୃଥିବୀକୁ ଦହନ କରିପାରନ୍ତି । ରାବଣର ମଧ୍ୟ ତପୋବଳ ଅଛି । ତା' ନ ହେଲେ ସୀତାଙ୍କର ଦେହକୁ ସ୍ପର୍ଶ କରି ସେ ବଞ୍ଚି ପାରି ନ ଥାନ୍ତା । ଅଗ୍ନିଶିଖାକୁ ହାତରେ ସ୍ପର୍ଶ କଲେ ହୁଏତ କିଛି ହୋଇ ନ ପାରେ, କିନ୍ତୁ ତପୋଦୀପ୍ତ ସୀତାଙ୍କ କ୍ରୋଧାଗ୍ନିରୁ କେହି ବର୍ତ୍ତିପାରିବ ନାହିଁ । ହନୁମାନ କହିଲେ, ବର୍ତ୍ତମାନ ରାମଙ୍କ ପାଖକୁ ଯାଇ ସମସ୍ତ ବିଷୟ ଜଣାଇବା ଆମର କର୍ତ୍ତବ୍ୟ । ଅଙ୍ଗଦ କହିଲେ – ହନୁମାନ ଲଙ୍କାଦହନ କଲେ, ବହୁ ରାକ୍ଷସଙ୍କୁ ନିହତ କଲେ, ମାତ୍ର ସୀତାଙ୍କୁ ଛାଡ଼ିଦେଇ ଆସିଲେ । ସାଙ୍ଗରେ ଆଣିଲେ ନାହିଁ । ଏହା ମୋତେ ଯଥାର୍ଥ ମନେ ହେଉ ନାହିଁ । ଆମ ମଧ୍ୟରେ ବହୁବୀର ଅଛନ୍ତି ଯେ କି ଏକାକୀ ଲଙ୍କାକୁ ଜୟ କରି ସୀତାଙ୍କୁ ଉଦ୍ଧାର କରିପାରିବେ । ମୁଁ ସେମାନଙ୍କ ମଧ୍ୟରୁ ଜଣେ । ବାନରଗଣ, ଚାଲ ଆମେ ଲଙ୍କାରେ ପ୍ରବେଶ କରି ଯୁଦ୍ଧରେ ରାବଣକୁ ନିହତ କରିବା ଓ ସୀତାଙ୍କୁ ଘେନି ଫେରିଆସିବା । ସୀତାଙ୍କୁ ଆଣି ରାମ ଓ ଲକ୍ଷ୍ମଣଙ୍କ ପାଖରେ ପହଞ୍ଚାଇ ଦେଲେ କିଷ୍କିନ୍ଧ୍ୟାର ଅନ୍ୟ ବାନରମାନଙ୍କୁ ଆଉ ଯୁଦ୍ଧ କରିବାକୁ ପଡ଼ିବ ନାହିଁ । ଜାମ୍ବବାନ କହିଲେ ରାଜକୁମାର, ତୁମେ ଯାହା କହିଲ ତାହା ଯୁକ୍ତିସଙ୍ଗତ ନୁହେଁ । କାରଣ ରାମ ଓ ସୁଗ୍ରୀବ ସୀତାଙ୍କୁ ଠାବ କରିବାପାଇଁ ଆମଙ୍କୁ ଆଦେଶ ଦେଇଛନ୍ତି, କିନ୍ତୁ ଆଣିବାପାଇଁ ନୁହେଁ । ରାଜସିଂହ ରାମ ନିଜର କୁଳମର୍ଯ୍ୟାଦା ବିଷୟରେ ଜାଣନ୍ତି । ସେ କପିମୁଖ୍ୟମାନଙ୍କ ଆଗରେ ସ୍ୱୟଂ ସୀତାଙ୍କୁ ଉଦ୍ଧାର କରିବେ ବୋଲି ପ୍ରତିଜ୍ଞା କରିଛନ୍ତି । ସେହି ପ୍ରତିଜ୍ଞା ମିଥ୍ୟା ନ ହେଉ । ଆମେମାନେ ସୀତାଙ୍କୁ ଉଦ୍ଧାର କରି ଆଣିଲେ, ସେ କେବେହେଲେ ସନ୍ତୁଷ୍ଟ ହେବେ ନାହିଁ । ଏଣୁ ଚାଲ, ସୁଗ୍ରୀବଙ୍କୁ ଏ ବିଷୟ ନିବେଦନ କରିବା ।

## ୯୦ ॥ ବାନରମାନଙ୍କ ମଧୁପାନ : ରାମଙ୍କୁ ସୀତାଙ୍କର ସନ୍ଦେଶ ପ୍ରଦାନ

ଜାମ୍ବବାନଙ୍କର ପ୍ରସ୍ତାବ ସମବେତ ବାନରଗଣ ଗ୍ରହଣ କଲେ । ହନୁମାନଙ୍କୁ ଆଗରେ ରଖି ସେମାନେ ମହେନ୍ଦ୍ରପର୍ବତରୁ ଲମ୍ଫଦେଲେ ଏବଂ ଆକାଶକୁ ଆଚ୍ଛନ୍ନ କରି ଚାଲିଲେ । ସୁଗ୍ରୀବଙ୍କ ପାଖରେ ପହଞ୍ଚିବା ପୂର୍ବରୁ ସୁଗ୍ରୀବଙ୍କର ଏକ ସୁରକ୍ଷିତ ବନ 'ମଧୁବନ' ମଧ୍ୟରେ ପ୍ରବେଶ କଲେ । ବୀର ଦଧିମୁଖ ଏହି ବନର ରକ୍ଷକ ଥିଲେ । ମଧୁପାଇଁ ଏହି ବନ ପ୍ରସିଦ୍ଧ ଥିଲା । ବାନରମାନେ ମଧୁପାନ ପାଇଁ ଅଙ୍ଗଦଙ୍କର ଅନୁମତି ଭିକ୍ଷା କଲେ । ଅଙ୍ଗଦ, ଜାମ୍ବବାନ ପ୍ରଭୃତି ବାନର ମୁଖ୍ୟମାନଙ୍କର ଅନୁମତି ଲାଭ କରି ବାନରମାନେ ସୁମିଷ୍ଟ ଫଳମୂଳ ଭକ୍ଷଣ ପୂର୍ବକ ମଧୁପାନ କରିବାକୁ ଲାଗିଲେ । ସେମାନେ ନୃତ୍ୟଗାନ, ହାସ୍ୟ ପ୍ରଳାପ ଆଦି କରି ବୃକ୍ଷରୁ ବୃକ୍ଷକୁ ଦୌଡ଼ିବାକୁ ଲାଗିଲେ । ସେମାନେ ମଧୁପାନରେ ଉନ୍ମତ୍ତ

ଥିଲେ ଏବଂ ସେମାନଙ୍କର ଲମ୍ଫ ଦ୍ୱାରା ପତ୍ର ପୁଷ୍ପ ସହିତ ବୃକ୍ଷମାନ ଧ୍ୱସ୍ତ ବିଧ୍ୱସ୍ତ ହେଲା । ଦଧିମୁଖ ବାରଣ କରିବାରୁ ବାନରମାନେ ତାଙ୍କୁ ଭର୍ତ୍ସନା କଲେ ଏବଂ ପ୍ରହାର କରିବାକୁ ଲାଗିଲେ । ହନୁମାନ କହିଲେ – ବାନରଗଣ, ତୁମେ ଆନନ୍ଦରେ ମଧୁ ପାନକର । ତୁମକୁ କିଏ ମନା କରୁଛି, ମୁଁ ତାହା ଦେଖିବି । ଅଙ୍ଗଦ ଓ ହନୁମାନଙ୍କ ଉତ୍ସାହ ପାଇ ବାନରମାନେ ଆହୁରି ବେପରବାୟ ଭାବରେ ମଧୁପାନ ଓ ରସ ଫଳ ଭକ୍ଷଣ କରିବାକୁ ଲାଗିଲେ । ଦଧିମୁଖ ତାଙ୍କର ଭୃତ୍ୟମାନଙ୍କ ସହିତ ନିନ୍ଦିତ ଓ ତାଡ଼ିତ ହୋଇ କୌଣସିମତେ ଜୀବନ ରକ୍ଷାକରି ପଳାଇଗଲେ । ସେ ସୁଗ୍ରୀବଙ୍କ ପାଖରେ ପହଞ୍ଚି ଦଣ୍ଡପ୍ରଣାମ ପୂର୍ବକ କୃତାଞ୍ଜଳି ହୋଇ କହିଲେ, ବାନରମାନେ ମଧୁବନ ଭଗ୍ନକରି ମଧୁ ଖାଇଯାଇଛନ୍ତି । ବାରମ୍ବାର ମନାକଲେ ମଧ୍ୟ ସେମାନେ ମାନୁ ନାହାନ୍ତି । ସୁଗ୍ରୀବ ଭାବିଲେ ବାନରମାନେ କୃତକାର୍ଯ୍ୟ ହୋଇ ଫେରିଛନ୍ତି, ତା' ନ ହେଲେ ସେମାନେ ଏପରି ବିଶୃଙ୍ଖଳ ହୋଇ ନ ଥା'ନ୍ତେ । କୃତକାର୍ଯ୍ୟ ବ୍ୟକ୍ତିମାନଙ୍କର ବଳ ପ୍ରୟୋଗ ଓ ଦୁର୍ବ୍ୟବହାର ସହିନେବା ଉଚିତ । ଶୀଘ୍ର ହନୁମାନ ଓ ଅନ୍ୟ ବାନରମାନଙ୍କୁ ପଠାଇଦେବାପାଇଁ ସେ ଦଧିମୁଖକୁ ଆଦେଶ ଦେଲେ । ଦଧିମୁଖ ମଧୁବନକୁ ଆସି କୃତାଞ୍ଜଳି ହୋଇ ଅଙ୍ଗଦଙ୍କଠାରେ କ୍ଷମା ପ୍ରାର୍ଥନା କଲେ । ରାମ ଓ ଲକ୍ଷ୍ମଣଙ୍କ ସହିତ ସୁଗ୍ରୀବ ସେମାନଙ୍କୁ ଦେଖିବାପାଇଁ ଉଦ୍‌ଗ୍ରୀବ ଭାବରେ ଅପେକ୍ଷା କରିଛନ୍ତି ବୋଲି ଜଣାଇଲେ । ବାନରମାନେ ଆକାଶକୁ ଆଚ୍ଛନ୍ନକରି ଏବଂ ବାୟୁଚାଳିତ ମେଘତୁଲ୍ୟ ଗର୍ଜନ କରି ସୁଗ୍ରୀବଙ୍କ ଦର୍ଶନ ପାଇଁ ଯାତ୍ରା କଲେ । ସୁଗ୍ରୀବ ରାମଙ୍କୁ କହିଲେ, ବାନରମାନେ ନିଶ୍ଚୟ ସୀତାଙ୍କୁ ସନ୍ଧାନ କରିଛନ୍ତି । ତା' ନ ହେଲେ ମୋର ସୁରକ୍ଷିତ ଦିବ୍ୟ ମଧୁବନକୁ ନଷ୍ଟ କରି ନ ଥା'ନ୍ତେ । ମୋର ଯାହା ମନେ ହେଉଛି ଏମାନଙ୍କ ମଧ୍ୟରେ ହନୁମାନ ହିଁ କେବଳ ସୀତାଙ୍କର ଦର୍ଶନ କରିଛନ୍ତି ।

## ୯୧ ॥ ହନୁମାନଙ୍କର ବାର୍ତ୍ତା

ବାନରମାନେ ଅଙ୍ଗଦ ଓ ହନୁମାନଙ୍କୁ ଅଗ୍ରବର୍ତ୍ତୀ କରି ସୁଗ୍ରୀବ ଓ ରାମଙ୍କ ନିକଟରେ ଅବତରଣ କଲେ । ମହାବଳୀ ହନୁମାନ ରାମଙ୍କୁ ପ୍ରଣାମ ଓ ସୁଗ୍ରୀବଙ୍କୁ ଅଭିବାଦନ କରି କହିଲେ, ସୀତାଙ୍କୁ ମୁଁ ଦେଖିଛି । ସେ ନିଜର ଚରିତ୍ର ରକ୍ଷା କରି କୁଶଳରେ ଅଛନ୍ତି । ହନୁମାନଙ୍କ ମୁହଁରୁ ଏହି ଅମୃତତୁଲ୍ୟ ବାକ୍ୟ ଶୁଣି ରାମ ଓ ଲକ୍ଷ୍ମଣ ବିଶେଷ ଆନନ୍ଦିତ ହେଲେ । ସୀତା ନିରାପଦରେ ଅଛନ୍ତି ବୋଲି ଶୁଣି ରାମ ଉତ୍ତର ଦେଲେ – ବାନରଗଣ, ସୀତା କେଉଁଠି ଅଛନ୍ତି ଏବଂ ମୋ ପ୍ରତି ତାଙ୍କର କି ମନୋଭାବ ଅଛି ତାହା ବର୍ଣ୍ଣନା କର । ବାନରମାନେ ହନୁମାନଙ୍କ ଆଡ଼କୁ ଅନାଇଲେ । ବାକ୍ୟପଟୁ ପବନନନ୍ଦନ ସୀତା ଦକ୍ଷିଣ ଦିଗରେ ଅଛନ୍ତି ବୋଲି ଜଣାଇ ମୁଣ୍ଡ ନୁଆଁଇ ଦକ୍ଷିଣ ଦିଗକୁ ଚାହିଁ ନମସ୍କାର କଲେ । ସ୍ୱର୍ଣ୍ଣ ନିର୍ମିତ ଦିବ୍ୟ ମଥାମଣି ରାମଙ୍କୁ ପ୍ରଦାନ କରି କୃତାଞ୍ଜଳି ହୋଇ କହିଲେ, ମୁଁ ସୀତାଙ୍କୁ ଦେଖିବାପାଇଁ ଶତଯୋଜନବିସ୍ତୃତ ସମୁଦ୍ର ଲଂଘନ କରିଛି । ଦକ୍ଷିଣସମୁଦ୍ର ତଟରେ ରାବଣର ଲଙ୍କାପୁରୀ ଅବସ୍ଥିତ । ମୁଁ ସେଠାରେ ସୀତାଙ୍କୁ ଦର୍ଶନ କରିଛି । ରାକ୍ଷସୀମାନଙ୍କ

ଦ୍ୱାରା ସେ ସର୍ବଦା ତାଡ଼ିତ ହେଉଛନ୍ତି । ସୁଖରେ ଅଭ୍ୟସ୍ତ ହୋଇ ମଧ୍ୟ ତୁମ ବିରହରେ ସେ ଘୋର ଦୁଃଖରେ କାଳାତିପାତ କରୁଛନ୍ତି । ସେ ଏକବସ୍ତ୍ରା ଭାବେ ଭୂମିଶଯ୍ୟାକୁ ଗ୍ରହଣ କରିଛନ୍ତି । ଶୀତଋତୁରେ ପଦ୍ମ ଯେପରି ମଳିନ ପଡ଼ିଯାଏ, ସେହିପରି ତାଙ୍କର ଅଙ୍ଗ ବିବର୍ଣ୍ଣ ହୋଇଛି । ରାବଣ ପ୍ରତି ତାଙ୍କର ଲେଶମାତ୍ର ଅନୁରକ୍ତି ନାହିଁ । ବରଂ ମୃତ୍ୟୁ ଶ୍ରେୟ ବୋଲି ସେ ସଙ୍କଳ୍ପ କରିଛନ୍ତି । ମୁଁ ସୀତାଙ୍କୁ ଦେଖି ଇକ୍ଷ୍ୱାକୁ ବଂଶର ଖ୍ୟାତି ଓ ଗୌରବ କୀର୍ତ୍ତନ କରିବାକୁ ଲାଗିଲି ଓ ତାଙ୍କର ବିଶ୍ୱାସଭାଜନ ହୋଇ ରାମ ସୁଗ୍ରୀବଙ୍କର ମିତ୍ରତା ବିଷୟ ବର୍ଣ୍ଣନା କଲି । ତୁମଠାରେ ଜନକନନ୍ଦିନୀ ତାଙ୍କର ଚିତ୍ତ ଅର୍ପଣ କରିଛନ୍ତି ଏବଂ ସେ ତପସ୍ୱିନୀ ଜୀବନ ଯାପନ କରୁଛନ୍ତି । ମୋତେ ଏହି ମଥାମଣି ଦାନ କରି ସେ କହିଛନ୍ତି – ବାୟୁପୁତ୍ର, ଚିତ୍ରକୂଟରେ କାକସମ୍ପର୍କୀୟ ଯେଉଁ ଘଟଣା ଘଟିଥିଲା ତାହା ରାଘବଙ୍କୁ ଜଣାଅ ଏବଂ ଏଠାରେ ଯାହା ଦେଖିଲ, ତାହା ବର୍ଣ୍ଣନା କର । ପୁଣି ରାମଙ୍କୁ କହିବ 'ତୁମେ ଯେଉଁ ମଥାମଣି ଦେଇଥିଲ ତାହା ମୁଁ ଯତ୍ନରେ ରଖିଛି । ତୁମେ ମୋର ଗଣ୍ଡସ୍ଥଳରେ ମନଃଶୀଳାର ଯେଉଁ ତିଳକ ଅଙ୍କନ କରିଥିଲ, ତାହା ସ୍ମରଣ କର । ତୁମ ପ୍ରଦତ୍ତ ଏହି ଅଙ୍ଗୁରୀୟକୁ ଦେଖି ମୁଁ ତୁମକୁ ଦେଖିଲା ପରି ଆନନ୍ଦ ଅନୁଭବ କରୁଛି । ଦଶରଥନନ୍ଦନ, ମୁଁ ଏକମାସ ପର୍ଯ୍ୟନ୍ତ ତୁମ ଅପେକ୍ଷାରେ ଜୀବନ ଧାରଣ କରି ରହିବି । ତା' ପରେ ରାକ୍ଷସମାନଙ୍କର ନିର୍ଯାତନା ଯୋଗୁଁ ଆଉ ଜୀବନ ଧରି ରହିପାରିବି ନାହିଁ ।'

ହନୁମାନ କହିଲେ, ରାବଣର ବନ୍ଦିନୀ ସେହି ଧର୍ମଚାରିଣୀ ସୀତା ମୋତେ ଯାହା କହିଥିଲେ, ତାହା ମୁଁ ତୁମକୁ ନିବେଦନ କଲି । ବର୍ତ୍ତମାନ ସମୁଦ୍ର ଲଂଘନ କରିବାପାଇଁ ଉପାୟ ନିର୍ଣ୍ଣୟ କର ।

ସୀତାଙ୍କର ମଥାମଣି ହାତରେ ଚାପିଧରି ରାମ ରୋଦନ କରିବାକୁ ଲାଗିଲେ । ଲକ୍ଷ୍ମଣ ମଧ୍ୟ ତାଙ୍କ ସହିତ ବିଳାପ କଲେ । ଶୋକାର୍ତ୍ତ ରାମ ସୁଗ୍ରୀବଙ୍କୁ କହିଲେ, ନିଜର ବତ୍ସାକୁ ଦେଖିଲେ ଧେନୁର ପହ୍ନାରୁ ଯେପରି କ୍ଷୀର ବୋହିଯାଏ, ବୈଦେହୀଙ୍କର ଏହି ମଣିକୁ ଦେଖି ସେହିପରି ମୋର ହୃଦୟ ବିଚଳିତ ହୋଇଯାଉଛି । ବିବାହ କାଳରେ ମୋର ଶ୍ୱଶୁରଙ୍କ ପ୍ରଦତ୍ତ ଏହି ମଣି ବୈଦେହୀଙ୍କ ସୀମନ୍ତରେ ଶୋଭା ପାଉଥିଲା । ଏହି ମଣି ପୁଣି ଇନ୍ଦ୍ର ଜନକଙ୍କୁ ଦେଇଥିଲେ । ଆଜି ଏହି ମଣିକୁ ଦେଖି ମୋର ପିତା ଦଶରଥ ଓ ବିଦେହରାଜ ଜନକଙ୍କୁ ଦେଖିଲା ପରି ମନେହେଉଛି । ଯେଉଁ ପ୍ରିୟାଙ୍କ ମସ୍ତକରେ ଏହା ଶୋଭା ପାଉଥିଲା, ଆଜି ମଣିକୁ ଦେଖି ମୁଁ ତାଙ୍କୁ ପାଇବା ପରି ମନେ କରୁଛି । ସୌମ୍ୟ, ବିଦେହନନ୍ଦିନୀ ସୀତା ଆଉ କ'ଣ କହିଛନ୍ତି ମୋତେ କହ । ଲକ୍ଷ୍ମଣଙ୍କୁ ଚାହିଁ ରାମ କହିଲେ – ସୌମିତ୍ରି, ବର୍ତ୍ତମାନ ସୀତାଙ୍କୁ ନ ଦେଖି ଏହି ମଣିକୁ ଦେଖି ମୋର ଦୁଃଖ ବଢ଼ିଗଲା । ଯାହା ମୁଁ ଦେଖୁଛି, ବୈଦେହୀ ମାସେ ବଞ୍ଚିରହିଲେ ଦୀର୍ଘକାଳ ବଞ୍ଚିଲେ ବୋଲି ଧରାଯିବ । କିନ୍ତୁ ସେହି କୃଷ୍ଣନୟନାଙ୍କ ବିରହରେ ମୁଁ ମୁହୂର୍ତ୍ତେ ମଧ୍ୟ ବଞ୍ଚିପାରିବି ନାହିଁ । ସେହି ସତୀ ଚାରୁନିତମ୍ବିନୀ ଭୀରୁ ସୀତା ନିଷ୍ଠୁର ରାକ୍ଷସମାନଙ୍କ ମଧ୍ୟରେ ବର୍ତ୍ତମାନ କିପରି ଅଛନ୍ତି ? ପୀଡ଼ିତ ବ୍ୟକ୍ତି ଯେପରି ଔଷଧ ଦ୍ୱାରା ଭଲ ହୋଇଯାଏ, ସେହିପରି ସୀତାଙ୍କର କଥା ଶ୍ରବଣ କରି ମୁଁ ଜୀବନ ଲାଭ କରିବି । ହନୁମାନ, ମଧୁରଭାଷିଣୀ ଜାନକୀ କିପରି ଦୁଃଖପୂର୍ଣ୍ଣ ଜୀବନଯାପନ କରୁଛନ୍ତି, ତାହା ବର୍ଣ୍ଣନା କର ।

ହନୁମାନ ଚିତ୍ରକୂଟରେ ରାମ ସୀତାଙ୍କ କୋଳରେ ଶୋଇଥିବାବେଳେ କିପରି ଏକ ବାୟସ ଆସି କ୍ଷତବିକ୍ଷତ କଲା ତାହା ସୀତା ଯେପରି କହିଥିଲେ ସେହିପରି ଅବିକଳ ବର୍ଣ୍ଣନା କଲେ । ସୀତା କହିଛନ୍ତି, 'ତୁମେ ଅସ୍ତ୍ରଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଦେବାସୁର ଗନ୍ଧର୍ବ ଯୁଦ୍ଧରେ କେହି ତୁମ ସମକକ୍ଷ ହେବେ ନାହିଁ । ତୁମର ମୋ ପ୍ରତି ଯଦି ଟିକିଏ ହେଲେ ବିଚାର ଥାଏ, ତେବେ ଶୀଘ୍ର ସୁତୀକ୍ଷ୍ଣ ନାରାଚମାନଙ୍କ ଦ୍ୱାରା ରାବଣକୁ ନିହତ କର । ମୋତେ ଉଦ୍ଧାର କରିବାପାଇଁ ପରନ୍ତପ ଲକ୍ଷ୍ମଣ କ'ଣ ଭ୍ରାତାଙ୍କର ଆଦେଶ ପାଉ ନାହାନ୍ତି ? ସେହି ରାମ, ଲକ୍ଷ୍ମଣ ମୋତେ ରକ୍ଷା କରୁ ନ ଥିବାରୁ ମୋର କିଛି ମହାପାପ ହୋଇଛି ବୋଲି ମୁଁ ମନେ କରୁଛି । ସୀତାଙ୍କର ଏହି ମଧୁର କରୁଣ ବାକ୍ୟ ଶୁଣି ମୁଁ କହିଲି, ବୈଦେହୀ, ଶୋକ କର ନାହିଁ । ଲକ୍ଷ୍ମଣଙ୍କ ସହିତ ରାମ ଯୁଦ୍ଧରେ ଶୀଘ୍ର ରାବଣକୁ ସବାନ୍ଧବ ନିହତ କରିବେ । ତୁମକୁ ମୁଁ ଦେଖିଲି । ରାମଙ୍କର ବିଶ୍ୱାସ ହେବାପାଇଁ ତୁମେ ମୋତେ ଏକ ଅଭିଜ୍ଞାନ ବା ସ୍ମୃତିପ୍ରଦାୟକ ବସ୍ତୁ ପ୍ରଦାନ କର । ମୁଁ ସୀତାଙ୍କୁ ଏକଥା ମଧ୍ୟ କହିଲି, ଦେବୀ ଜନକନନ୍ଦିନୀ, ତୁମେ ମୋ ପୃଷ୍ଠରେ ଆରୋହଣ କର, ମୁଁ ତୁମକୁ ନେଇ ରାମ, ଲକ୍ଷ୍ମଣ ଓ ସୁଗ୍ରୀବଙ୍କ ପାଖରେ ପହଞ୍ଚାଇ ଦେବି । ସୀତା କହିଲେ – କପିଶ୍ରେଷ୍ଠ, ମୁଁ ତୁମକୁ ବା କୌଣସି ପୁରୁଷକୁ କିପରି ସ୍ପର୍ଶ କରିପାରିବି ? ରାବଣ ମୋତେ ବଳପୂର୍ବକ ଅପହରଣ କରିବାରୁ ମୋର କୌଣସି ଉପାୟ ନ ଥିଲା । ତୁମେ ରାମ, ଲକ୍ଷ୍ମଣ ଏବଂ ସୁଗ୍ରୀବଙ୍କୁ ମୋର କୁଶଳ ସମ୍ବାଦ ଦେବ । ସେ ମହାବାହୁ ମୋତେ ଯେପରି ଶୀଘ୍ର ଉଦ୍ଧାର କରିବେ, ସେ ବିଷୟରେ ବାରମ୍ବାର କହି ରାକ୍ଷସୀମାନଙ୍କର ନିର୍ଯାତନା ମଧ୍ୟ ଜଣାଇବ ।

ହନୁମାନ କହିଲେ, ମୁଁ ଦିନେ ମାତ୍ର ରହି ବିଶ୍ରାମ କରି ଯିବାପାଇଁ ସୀତା ମୋତେ ଅନୁରୋଧ କରିଥିଲେ । ଅନ୍ତତଃ ଗୋଟିଏ ଦିନ ସେ ମୋ ନିକଟରେ ଅଛନ୍ତି ବୋଲି ଭାବି ଆଶ୍ୱାସନା ପାଇପାରିବେ । ଋକ୍ଷ ଓ ବାନରସେନା ସହିତ ରାମ ଓ ଲକ୍ଷ୍ମଣ କିପରି ଦୁସ୍ତର ସାଗରକୁ ଅତିକ୍ରମ କରିବେ ତାହା ମଧ୍ୟ ତାଙ୍କୁ ବିଚଳିତ କରୁଛି । ରାମ ନିଜେ ସାଗର ଲଂଘନ କରି ତାଙ୍କୁ ଉଦ୍ଧାର କଲେ ତାହା ତାଙ୍କର ଉପଯୁକ୍ତ କାର୍ଯ୍ୟ ହେବ ବୋଲି ସେ ବାରମ୍ବାର କହିଛନ୍ତି । ମୁଁ କହିଛି – ଅରିନ୍ଦମ ରାମ, ଲକ୍ଷ୍ମଣଙ୍କ ସହିତ ଶୀଘ୍ର ମୋ ପୃଷ୍ଠରେ ଆସି ଲଙ୍କାରେ ପହଞ୍ଚିବେ ଏବଂ ରାବଣକୁ ସଂବଶ ନିହତ କରି ତୁମକୁ ଉଦ୍ଧାର କରିବେ । ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ମୋ ଦ୍ୱାରା ବାରମ୍ବାର ଆଶ୍ୱସ୍ତ ହୋଇ ଜନକନନ୍ଦିନୀ ଶାନ୍ତି ଲାଭ କରିଛନ୍ତି ।

## ୯୨ ॥ ଯୁଦ୍ଧ ଯାତ୍ରା

ହନୁମାନଙ୍କ କଥା ଶୁଣି ରାମ ଅତିଶୟ ପ୍ରୀତ ହେଲେ । ସେ କହିଲେ, ବାନରବୀର ଅତି ମହତ କାର୍ଯ୍ୟ କରିଛନ୍ତି, ଯାହାକି ଏହି ସଂସାରରେ ଦୁଷ୍କର ଓ ଭୂଲୋକରେ ଅଚିନ୍ତନୀୟ । ଗରୁଡ଼, ବାୟୁ ଓ ହନୁମାନଙ୍କ ଛଡ଼ା ମୁଁ ଅନ୍ୟ କାହାରିକୁ ଦେଖୁ ନାହିଁ, ଯେ କି ମହୋଦଧି ପାର ହୋଇପାରିବ । ରାବଣର ସୁରକ୍ଷିତ ଲଙ୍କାପୁରୀରେ ଦେବ, ଦାନବ,

ଯକ୍ଷ, ଉରଗ, ଗନ୍ଧର୍ବ ପ୍ରବେଶ କରି କିଏ ଜୀବନ ଧରି ଆସିପାରିବ ? ହନୁମାନ୍ ଅସାମାନ୍ୟ ବଳବିକ୍ରମ ପ୍ରକାଶ କରି ସୁଗ୍ରୀବଙ୍କର ଭୃତ୍ୟର କାର୍ଯ୍ୟ କରିଛନ୍ତି । ପ୍ରଭୁ ଦ୍ୱାରା ଦୁଃସାଧ୍ୟ କାର୍ଯ୍ୟରେ ନିଯୁକ୍ତ ଯେଉଁ ଭୃତ୍ୟ ସେହି କାଯ୍ୟକୁ ଉତ୍ତମ ରୂପେ 'ସମ୍ପାଦନ କରି ପ୍ରଭୁର ପ୍ରିୟଭାଜନ ହୁଏ, ସେ ଶ୍ରେଷ୍ଠ ଭୃତ୍ୟ ମଧ୍ୟରେ ଗଣାଯାଏ । ଯେ କାର୍ଯ୍ୟ ସାଧନ ପାଇଁ ସମର୍ଥ ଥିଲେ ମଧ ତାର କାର୍ଯ୍ୟ ଦ୍ୱାରା ପ୍ରଭୁର ସନ୍ତୋଷଭାଜନ ହୋଇପାରେ ନାହିଁ, ସେ ମଧ୍ୟମ ଶ୍ରେଣୀର । ଯେଉଁ ବ୍ୟକ୍ତି ସମସ୍ତ ସାମର୍ଥ୍ୟ ସତ୍ତ୍ୱେ ପ୍ରଭୁର କାର୍ଯ୍ୟ କରେ ନାହିଁ, ସେ ଅଧମ ରୂପେ ଗଣାଯାଏ । ହନୁମାନ ପୁରୁଷୋତ୍ତମ । ସେ ସୁଗ୍ରୀବଙ୍କର କର୍ମ କରି ତାଙ୍କର ସନ୍ତୋଷଭାଜନ ହୋଇଛନ୍ତି । ବୈଦେହୀଙ୍କୁ ଦର୍ଶନ କରିବା ଦ୍ୱାରା ମୋତେ, ଲକ୍ଷ୍ମଣଙ୍କୁ ଓ ରଘୁବଂଶକୁ ରକ୍ଷା କରିଛନ୍ତି । ଆଜି ତାଙ୍କୁ ଉପଯୁକ୍ତ ପୁରସ୍କାର ଦେବାପାଇଁ ମୋ ପାଖରେ କିଛି ନାହିଁ । ମୁଁ କେବଳ ତାଙ୍କୁ ସ୍ନେହରେ ଆଲିଙ୍ଗନ କରୁଛି । ଏହା କହି ରାମ ପ୍ରେମପୁଲକିତ ହୋଇ ହନୁମାନଙ୍କୁ ଆଲିଙ୍ଗନ କଲେ । ପରମୁହୂର୍ତ୍ତରେ କିଛି ସମୟ ନୀରବ ଭାବରେ ବସି ସେ ଶୋକାର୍ତ୍ତ ହୋଇ ସୁଗ୍ରୀବଙ୍କୁ କହିଲେ, ସୀତାଙ୍କର ସନ୍ଧାନ କାର୍ଯ୍ୟ ସୁଚାରୁରୂପେ ହୋଇଗଲା । ବର୍ତ୍ତମାନ ସମୁଦ୍ର ବିଷୟରେ ମୁଁ ଚିନ୍ତିତ । ଏହି ଅପାର ଅଗାଧ ସମୁଦ୍ରକୁ ପାର ହୋଇ ବାନରମାନେ କିପରି ତାର ଦକ୍ଷିଣ କୂଳରେ ପହଞ୍ଚି ପାରିବେ ?

ସୁଗ୍ରୀବ କହିଲେ – ବୀର, ଅନ୍ୟ ସାଧାରଣ ବ୍ୟକ୍ତି ପରି ତୁମେ କାହିଁକି ଶୋକାର୍ତ୍ତ ହେଉଛ ? ବୈଦେହୀଙ୍କର ସନ୍ଧାନ ମିଳିଛି । ଶତ୍ରୁର ନିବାସସ୍ଥାନ ମଧ୍ୟ ଜଣାପଡ଼ିଲାଣି । ଏପରି ଅବସ୍ଥାରେ ଶୋକର କୌଣସି କାରଣ ମୁଁ ଦେଖୁ ନାହିଁ । ତୁମେ ବୁଦ୍ଧିମାନ୍, ଶାସ୍ତ୍ରଜ୍ଞ, ପଣ୍ଡିତ । ତୁମେ କ'ଣ ଜାଣ ନାହିଁ ଶୋକ ଦ୍ୱାରା ବୁଦ୍ଧି ନଷ୍ଟହୁଏ, ଲୋକ ଉଦ୍ୟମ ନ କରି ବସିଯାଏ ଏବଂ ଯେଉଁ କାର୍ଯ୍ୟ କରିବାକୁ ଯାଉଥାଏ, ତାହା ସଫଳ ହୁଏ ନାହିଁ ? ବାନର ସେନାପତିମାନଙ୍କୁ ଦେଖ, ସେମାନେ କିପରି ଆନନ୍ଦ ଉତ୍ସାହରେ ଅଛନ୍ତି । ସେମାନେ କାମରୂପୀ, ବୃକ୍ଷ ଓ ଶିଳାଯୁଦ୍ଧରେ ନିପୁଣ । ଘୋରମକରପୂର୍ଣ୍ଣ ସମୁଦ୍ରକୁ ଲଂଘନ କରି ସେମାନେ ଅଚିରେ ଲଙ୍କାରେ ପ୍ରବେଶ କରିବେ ଓ ତୁମର ଶତ୍ରୁକୁ ନିହତ କରିବେ । ତୁମର ପ୍ରିୟ କାର୍ଯ୍ୟ କରିବାପାଇଁ ଏମାନେ ଅଗ୍ନିରେ ମଧ୍ୟ ପ୍ରବେଶ କରିବାକୁ ପ୍ରସ୍ତୁତ । ତେଣୁ ସମୁଦ୍ରରେ ବନ୍ଧ ନ କରି ଲଙ୍କାରେ କିପରି ଶୀଘ୍ର ପହଞ୍ଚିବାକୁ ହେବ, ତ୍ରିକୂଟ ପର୍ବତରେ ଥିବା ଲଙ୍କାର ରାବଣ କିପରି ନିହତ ହେବ, ତାର ଉପାୟ ଚିନ୍ତାକର । ଶୂର ବ୍ୟକ୍ତି ପକ୍ଷରେ ପୁରୁଷକାର ହିଁ କର୍ତ୍ତବ୍ୟ । ତୁମେ ଶସ୍ତ୍ରଜ୍ଞ ଓ ଶାସ୍ତ୍ରଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ । ତ୍ରିଲୋକରେ ଏପରି କେହି ନାହିଁ ଯେ କି ତୁମ ଆଗରେ ଯୁଦ୍ଧରେ ଠିଆ ହୋଇପାରିବ । ଚିନ୍ତା କର ନାହିଁ । ବିଭିନ୍ନ ସୂଚନାରୁ ମୁଁ ଜାଣିପାରୁଛି, ତୁମର ବିଜୟ ସୁନିଶ୍ଚିତ ।

ସୁଗ୍ରୀବଙ୍କର ଯୁକ୍ତି ଓ ପରାମର୍ଶ ରାମଙ୍କୁ ସଙ୍ଗତ ବୋଧ ହେଲା । ସେ ହନୁମାନଙ୍କୁ କହିଲେ, ତପୋବଳରେ ହେଉ, ସମୁଦ୍ରରେ ସେତୁ ବାନ୍ଧି ହେଉ ବା ସାଗରକୁ ଶୋଷଣ କରି ହେଉ, ମୁଁ ସମୁଦ୍ର ଲଂଘନ କରିବାପାଇଁ ସମର୍ଥ । ବାନର, ବର୍ତ୍ତମାନ ମୁଁ ଜାଣିବାକୁ ଚାହେ, ଦୁର୍ଗମ ଲଙ୍କାପୁରୀରେ କେତୋଟି ଦୁର୍ଗ ଅଛି, ଦୁର୍ଗର ଦ୍ୱାର ସବୁ କିପରି ରକ୍ଷା କରାଯାଉଛି, ଲଙ୍କାର ଅନ୍ୟ କି କି ଗୁପ୍ତ ରକ୍ଷା ବ୍ୟବସ୍ଥା ରହିଛି, ରାକ୍ଷସମାନେ କିପରି ବାସଭବନ ନିର୍ମାଣ କରି ରହିଛନ୍ତି, ସେ ସମସ୍ତ ବିଷୟରେ ମୋତେ ଅବଗତ କର ।

ବାଗ୍ମୀଶ୍ରେଷ୍ଠ ହନୁମାନ ରାମଙ୍କୁ ଉତ୍ତର ଦେଲେ, ଲଙ୍କାର ସୁରକ୍ଷା ଓ ସମୃଦ୍ଧି ବିଷୟରେ ମୁଁ ଭଲଭାବରେ ଅନୁଧ୍ୟାନ କରିଛି । ଲଙ୍କା ସର୍ବଦା ଆନନ୍ଦମୁଖର, ବହୁ ଯୁଦ୍ଧାଶ୍ୱ ଓ ମତ୍ତହସ୍ତୀରେ ପୂର୍ଣ୍ଣ, ବିଶାଳ ରଥମାନଙ୍କ ଦ୍ୱାରା ସୁଶୋଭିତ । ବୀରମାନଙ୍କ ଦ୍ୱାରା ସେବିତ ଓ ଶତ୍ରୁଙ୍କ ପାଇଁ ଦୁର୍ଗମ । ଏହାର କବାଟସବୁ ଦୃଢ଼ ଓ ବିଶାଳ ଏବଂ ବୃହତ୍ ଅର୍ଗଳଯୁକ୍ତ । ତାର ପ୍ରବେଶ ଦ୍ୱାରମାନଙ୍କରେ ଶିଳାଖଣ୍ଡ ଓ ଶରକ୍ଷେପଣର ଯନ୍ତ୍ରମାନ ଖଞ୍ଜାଯାଇଛି । ତାର ଆଘାତରେ ଶତ୍ରୁସୈନ୍ୟମାନେ ସେହିଠାରେ ହିଁ ନିବାରିତ ହୁଅନ୍ତି । ଦ୍ୱାରମାନଙ୍କରେ ଶହ ଶହ ସଂଖ୍ୟାରେ ଭୀଷଣ ଲୌହମୟ ଶତଘ୍ନମାନ ରଖାଯାଇଛି । ଏହାର ଦୁର୍ଜୟ ବିଶାଳ ପ୍ରାଚୀର ସୁବର୍ଣ୍ଣନିର୍ମିତ ଏବଂ ପ୍ରବାଳ ବୈଦୂର୍ଯ୍ୟ ଓ ମଣିମୁକ୍ତାରେ ଖଚିତ । ଏହାର ଚତୁର୍ଦ୍ଦିଗରେ ଯେଉଁ ଭୟଙ୍କର ପରିଖା ରହିଛି, ତାହା ଯେପରି ଗଭୀର, ସେହିପରି କୁମ୍ଭୀର ମକର ଆଦି ଜଳଜୀବଙ୍କ ଦ୍ୱାରା ପୂର୍ଣ୍ଣ । ପ୍ରତ୍ୟେକ ଦ୍ୱାର ନିକଟରେ ପରିଖାମାନଙ୍କ ଉପରେ ଯନ୍ତ୍ରଯୁକ୍ତ ସେତୁ ନିର୍ମିତ ହୋଇଛି । ଶତ୍ରୁସୈନ୍ୟ ସେହି ସେତୁ ଉପରକୁ ଆସିଲେ, ଯନ୍ତ୍ର ସାହାଯ୍ୟରେ ସେତୁକୁ ଅବନମିତ କରି ସେମାନଙ୍କୁ ପରିଖା ଭିତରକୁ ଗଡ଼ାଇ ଦିଆଯାଏ । ପ୍ରତ୍ୟେକ ସେତୁ ଅତିଶୟ ଦୃଢ଼ ଓ ବହୁ ସ୍ୱର୍ଣ୍ଣମୟ ସ୍ତମ୍ଭ ଓ ବେଦିକାଯୁକ୍ତ ହୋଇ ରହିଛି ।

ହନୁମାନ ପୁଣି କହିଲେ – ରାଘବ, ରାବଣ ଯୁଦ୍ଧପ୍ରିୟ ଏବଂ ଧୈର୍ଯ୍ୟଶୀଳ । ସେ ନିଜ ସେନାର ତତ୍ତ୍ୱାବଧାନ କରେ । ସୁରକ୍ଷିତ ଲଙ୍କାପୁରୀରେ ଦେବତାମାନେ ମଧ୍ୟ ପ୍ରବେଶ କରିପାରିବେ ନାହିଁ । ତାହା ନଦୀଦୁର୍ଗ, ପର୍ବତଦୁର୍ଗ, ବନଦୁର୍ଗ ଓ କୃତ୍ରିମ ଦୁର୍ଗମାନଙ୍କ ଦ୍ୱାରା ରକ୍ଷିତ । ଏହାର ଚାରିପଟକୁ ବିଶାଳ ସମୁଦ୍ର ଘେରିରହିଛି । ସେଥିରେ ନୌକାରେ ଯିବାପାଇଁ ରାସ୍ତା ନାହିଁ । ଲଙ୍କାର ପୂର୍ବଦ୍ୱାରରେ ଲକ୍ଷ ଲକ୍ଷ ସୈନ୍ୟ ଢାଲ ଓ ଖଡ୍ଗ ଧରି ରହିଛନ୍ତି । ଦକ୍ଷିଣ ଦିଗରେ ଅଶ୍ୱ, ଗଜ, ରଥ ଓ ପଦାତିକ ସୈନ୍ୟମାନେ ଜଗି ରହିଛନ୍ତି । ପଶ୍ଚିମ ଓ ଉତ୍ତର ଦ୍ୱାର ମଧ୍ୟ ଏହିପରି ରଥୀ, ଅଶ୍ୱାରୋହୀ, ପଦାତିକ ସେନାଦ୍ୱାରା ସୁରକ୍ଷିତ । କିନ୍ତୁ ଏ ସମସ୍ତ ସୁରକ୍ଷା ସତ୍ତ୍ୱେ ଲଙ୍କାକୁ ଜୟ କରିବା ଆମ ପକ୍ଷରେ କଷ୍ଟକର ହେବ ନାହିଁ । କାରଣ ମୁଁ ଲଙ୍କାର ସେତୁମାନଙ୍କୁ ଭଗ୍ନ କରିଛି, ପରିଖାମାନଙ୍କୁ ଶୁଷ୍କ କରି ଦେଇଛି, ପ୍ରାଚୀରମାନଙ୍କୁ ମାଟିରେ ମିଶାଇ ଦେଇଛି ଓ ଲଙ୍କାକୁ ଦଗ୍ଧ କରିଛି । ବର୍ତ୍ତମାନ ଯେ କୌଣସି ଉପାୟରେ ସମୁଦ୍ର ଲଂଘନ ଆମର କର୍ତ୍ତବ୍ୟ । ଅଙ୍ଗଦ, ଦ୍ୱିବିଦ, ମୈନ୍ଦ, ଜାମ୍ବବାନ, ପନସ, ନଳ ଓ ନୀଳ ଆଦି ଯେଉଁ ବୀର ସେନାପତିମାନେ ଆମ ସହିତ ଅଛନ୍ତି, ସେମାନେ ଶୈଳକାନନଶୋଭିତ ପରିଖା, ପ୍ରାଚୀର ଓ ତୋରଣଯୁକ୍ତ ବିଶାଳ ଲଙ୍କାପୁରୀକୁ ଧ୍ୱଂସ କରି ସୀତାଙ୍କୁ ଉଦ୍ଧାର କରି ଆଣିବେ, ତେଣୁ ଶୀଘ୍ର ସୈନ୍ୟ ସମାବେଶ କରି ଯୁଦ୍ଧଯାତ୍ରା ପାଇଁ ଆଦେଶ ଦିଅନ୍ତୁ ।

ରାମ କହିଲେ – ସୁଗ୍ରୀବ, ଯୁଦ୍ଧଯାତ୍ରା ପାଇଁ ବର୍ତ୍ତମାନ ହିଁ ଉପଯୁକ୍ତ ସମୟ । ଆଜି ଉତ୍ତରାଫାଲ୍‌ଗୁନୀ ନକ୍ଷତ୍ର । କାଲି ହସ୍ତା ନକ୍ଷତ୍ର ସହିତ ଚନ୍ଦ୍ରଙ୍କର ସଂଯୋଗ ହେବ । ମୁଁ ଯେଉଁ ଶୁଭ ସୂଚନା ଦେଖୁଛି, ସେଥିରୁ ଯୁଦ୍ଧରେ ବିଜୟ ନିଶ୍ଚିତ ବୋଲି ମୋର ମନେ ହେଉଛି । ସେନାପତି ନୀଳ ଶତ ସହସ୍ର ବାନରସେନା ନେଇ ପଥ ପ୍ରଦର୍ଶକ ଅଗ୍ରଗାମୀ

ସେନା ଭାବରେ ଚାଲନ୍ତୁ । ଯେଉଁଠି ଶୀତଳ ଜଳ, ଫଳମୂଳ ମହୁ ଆଦି ମିଳିବ, ସେହି ବାଟ ଦେଇ ସେ ଯାଆନ୍ତୁ । ରାକ୍ଷସମାନେ ଖାଦ୍ୟ ଓ ପାନୀୟ ଯେପରି ବିଷଦ୍ୱାରା ଦୂଷିତ ନ କରନ୍ତି, ସେଥିପ୍ରତି ସେ ସାବଧାନ ହେବେ । ଗଜ, ଗବୟ ଓ ଗବାକ୍ଷ ଏହି ବାନର ସେନାପତିମାନେ ପ୍ରଧାନ ସେନାର ଆଗରେ ଚାଲନ୍ତୁ । ଋଷଭ ଓ ଗନ୍ଧମାଦନ ଏହି ସେନାର ଉଭୟ ପାର୍ଶ୍ୱକୁ ରକ୍ଷା କରନ୍ତୁ । ମୁଁ ଓ ହନୁମାନ୍, ଲକ୍ଷ୍ମଣ ଓ ଅଙ୍ଗଦ ମଧ୍ୟଭାଗରେ ଯିବୁ । ସୁଗ୍ରୀବଙ୍କ ସହିତ ସୁଷେଣ ଓ ଜାମ୍ବବାନ ବିଶାଳ ବାନରସେନାର ପୃଷ୍ଠଦେଶ ରକ୍ଷାକରି ଯିବେ ।

ସୁଗ୍ରୀବଙ୍କର ଆଦେଶରେ ବିପୁଳ ବାନରବଳ ସମୁଦ୍ର ମାଡ଼ିଯିବା ପରି ସମସ୍ତ ବନ ପର୍ବତ ପୂର୍ଣ୍ଣ କରି ଦକ୍ଷିଣ ଦିଗକୁ ମାଡ଼ିଗଲେ । କେବଳ ଲୋକବସତିପୂର୍ଣ୍ଣ ନଗର ଓ ଜନପଦମାନଙ୍କ ମଧ୍ୟରେ ସେମାନେ ପ୍ରବେଶ କଲେ ନାହିଁ । ସେମାନଙ୍କର ପାଦଭାରରେ ପୃଥିବୀ ପ୍ରକମ୍ପିତ ଓ ଗର୍ଜନ ତର୍ଜନରେ ଚତୁର୍ଦ୍ଦିଗ ପ୍ରତିଧ୍ୱନିତ ହେବାକୁ ଲାଗିଲା । ବିଶାଳ ବାନରସେନା କୌଣସିଠାରେ ବିଶ୍ରାମ ନ କରି ବେଗରେ ମାଡ଼ି ଚାଲୁଥିଲେ । ମଝିରେ ମଝିରେ ରାମ ହନୁମାନଙ୍କର କାନ୍ଧରେ ଓ ଲକ୍ଷ୍ମଣ ଅଙ୍ଗଦଙ୍କ କାନ୍ଧରେ ବସି ଯାଉଥିଲେ । ବାଟରେ ଯିବାବେଳେ ଲକ୍ଷ୍ମଣ ରାମଙ୍କୁ କହିଲେ– ରାଘବ, ଆକାଶ ଓ ପୃଥିବୀରେ ବିଜୟର ବହୁ ଶୁଭ ଲକ୍ଷଣ ମୁଁ ଦେଖିପାରୁଛି । ବାୟୁର ସ୍ପର୍ଶ ସୁଖକର । ଆକାଶ ନିର୍ମଳ । ନକ୍ଷତ୍ରଗଣ ଅଧିକ ଦୀପ୍ତ ଓ ପ୍ରକାଶମାନ । ମୃଗପକ୍ଷୀମାନେ ମଧୁର ସ୍ୱରରେ କଳରବ କରୁଛନ୍ତି । ଜଳ ନିର୍ମଳ ଓ ସ୍ୱାଦୁକର । ବନରାଜି ଫଳପୂର୍ଣ୍ଣ ।

ବାନରସେନା ସହ୍ୟ ଓ ମଳୟ ପର୍ବତ ଅତିକ୍ରମ କରି ମହେନ୍ଦ୍ର ପର୍ବତ ଆରୋହଣ କଲେ ଓ ପର୍ବତ ଶିଖରରୁ ଭୀମ ଗର୍ଜନକାରୀ ସମୁଦ୍ରକୁ ଦେଖିପାରିଲେ । ପର୍ବତରୁ ଓହ୍ଲାଇ ବେଳାବନ ମଧ୍ୟରେ ପ୍ରବେଶ କରି ଦେଖିଲେ, ପ୍ରତିମୁହୂର୍ତ୍ତରେ ସମୁଦ୍ରର ଶହ ଶହ ଲହରୀ ଶିଳାପୂର୍ଣ୍ଣ ସେହି ବିଶାଳ ବେଳାଭୂମିକୁ ଧୋଇ ଚାଲିଯାଉଛି । ରାମ ସୁଗ୍ରୀବଙ୍କୁ କହିଲେ – ବାନରରାଜ, ବର୍ତ୍ତମାନ ସମୁଦ୍ର ଲଂଘନ ସମ୍ପର୍କରେ ଉପାୟ ଚିନ୍ତା କରିବାକୁ ହେବ । ସେନାପତିମାନେ ସେମାନଙ୍କର ସୈନ୍ୟମାନଙ୍କୁ ଛାଡ଼ି କୁଆଡ଼େ ଯାଆନ୍ତୁ ନାହିଁ । ଗୁପ୍ତଚରମାନଙ୍କ ସମ୍ପର୍କରେ ସମ୍ବାଦ ପାଇବାପାଇଁ ସେମାନେ ଦକ୍ଷ ବାନରମାନଙ୍କୁ ନିଯୁକ୍ତ କରନ୍ତୁ । ଲକ୍ଷ୍ମଣ ଓ ସୁଗ୍ରୀବ ରାମଙ୍କ ପରାମର୍ଶ ଅନୁସାରେ ସମୁଦ୍ର କୂଳରେ ସୈନ୍ୟମାନଙ୍କର ଛାଉଣି ପକାଇଲେ । ସୈନ୍ୟଛାଉଣିର କୋଳାହଳ ସମୁଦ୍ରର ଗର୍ଜନକୁ ବଳିଗଲା ।

ବାନରମାନେ ସମୁଦ୍ରର ଭୀମକାନ୍ତ ଦୃଶ୍ୟ ଦେଖିବାକୁ ଲାଗିଲେ । ଅନନ୍ତ ନୀଳିମାମୟ ସାଗର କୁମ୍ଭୀର ମଗରରେ ପୂର୍ଣ୍ଣ । ଦିବସର ଶେଷ ଓ ରାତ୍ରିର ଆରମ୍ଭରେ ଫେନରାଶି ଦ୍ୱାରା ସେ ହସୁଥିଲା, ଅସଂଖ୍ୟ ତରଙ୍ଗଭଙ୍ଗରେ ନୃତ୍ୟ କରୁଥିଲା । ଚନ୍ଦ୍ରୋଦୟବେଳେ ଅସଂଖ୍ୟ ଚନ୍ଦ୍ରର ପ୍ରତିବିମ୍ବ ଧାରଣ କରିଥିଲା । ପୁଣି ଏହାର ଜଳରାଶି ବାୟୁ ଦ୍ୱାରା ସଞ୍ଚାଳିତ ହୋଇ ଆନନ୍ଦରେ ଫୁଲିଉଠି ଗଡ଼ି ଯାଉଥିଲା ।

ସାଗର ଅମ୍ବରତୁଲ୍ୟ ଓ ଅମ୍ବର ସାଗରତୁଲ୍ୟ ମନେ ହେଉଥିଲା । ଜଳରାଶି ଦୂର ଦିଗ୍‌ବଳୟରେ ମିଶିଯାଉଥିଲା ଓ ଦିଗ୍‌ବଳୟ ମଧ୍ୟ ଜଳରାଶି ସହିତ ମିଶିଯାଉଥିଲା । ଏହିପରି ରତ୍ନଯୁକ୍ତ ସାଗର ଓ ତାରକାଯୁକ୍ତ ଅମ୍ବର ଏକାକାର ହୋଇଯାଇଥିଲେ । ତରଙ୍ଗଭଙ୍ଗର ଶବ୍ଦ ଯୁଦ୍ଧରେ ସିନ୍ଧୁରାଜଙ୍କର ଭେରୀଧ୍ୱନି ପରି ଶୁଣାଯାଉଥିଲା ।

ଆକାଶରେ ଚନ୍ଦ୍ରୋଦୟ ଦେଖି ରାମ ଲକ୍ଷ୍ମଣଙ୍କୁ କହିଲେ, ବର୍ତ୍ତମାନ ସୀତାଙ୍କ କଥା ହିଁ ମୋର ବେଶି ମନେ ପଡୁଛି । ତାଙ୍କୁ ଅପହରଣ କରାଯିବାବେଳେ ସେ 'ହା ନାଥ' ବୋଲି କହିଥିଲେ । ସେ ଯେ ଅନାଥା ହୋଇ ଅପହୃତା ହେଲେ ଏବଂ ଅନାଥା ପରି ଲଙ୍କାରେ ବାସ କରୁଛନ୍ତି, ତାହା ଭାବି ମୋର ଶରୀର ଦଗ୍ଧ ହେଉଛି । ରାଜା ଜନକଙ୍କର ଦୁହିତା, ଦଶରଥଙ୍କର ପୁତ୍ରବଧୂ ଏବଂ ମୋର ପ୍ରିୟା ଆଜି କିପରି ଅସହାୟ ଭାବରେ ରାକ୍ଷସୀମାନଙ୍କ ମଧ୍ୟରେ ଶୋଇ ରହିଛନ୍ତି, ଶରତ କାଳର ଚନ୍ଦ୍ରଲେଖା ନୀଳ ମେଘମାଳା ଭେଦକରି ଦେଖାଦେବା ପରି ରାକ୍ଷସୀମାନଙ୍କ ଦ୍ୱାରା ବେଷ୍ଟିତା ସୀତା କେବେ ମୁକ୍ତହୋଇ ଦେଖାଦେବେ, କେବେ ମୁଁ ଶତ୍ରୁମାନଙ୍କୁ ଜୟ କରିବି, ସେହି କମଳଲୋଚନା ସୁନିତମ୍ବିନୀଙ୍କୁ ବିଜୟର ଲକ୍ଷ୍ମୀ ରୂପେ ଦେଖିପାରିବି, ତାହାହିଁ ଚିନ୍ତା କରୁଛି । ସନ୍ଧ୍ୟା ଉପାସନା ଆଦି କରିବାର ବେଳ ହେଲାଣି ବୋଲି କହି ଲକ୍ଷ୍ମଣ ରାମଙ୍କୁ ଆଶ୍ୱାସନା ଦେଲେ ।

## ୯୩ ।। ରାବଣର ମନ୍ତ୍ରଣା

ଭୟାବହ କାଣ୍ଡମାନ ଘଟାଇ ହନୁମାନ ଲଙ୍କାରୁ ଫେରିଯିବା ପରେ ରାବଣ ଲଜ୍ଜାରେ ଅଧୋମୁଖ ହୋଇ ରାକ୍ଷସମାନଙ୍କୁ କହିଲା, ଏକାକୀ ଏକ ବାନର ଦୁର୍ଜୟ ଲଙ୍କାପୁରୀରେ ପ୍ରବେଶ କରି ତାହାକୁ ଧ୍ୱସ୍ତ କଲା, ସୀତାଙ୍କୁ ଠାବକଲା ଏବଂ ବହୁ ରାକ୍ଷସଙ୍କୁ ନିହତ କଲା । ବର୍ତ୍ତମାନ ଆମର କର୍ତ୍ତବ୍ୟ ନିର୍ଣ୍ଣୟ କରିବା ଉଚିତ ହେବ । ରାକ୍ଷସଗଣ, ମନ୍ତ୍ରଣା ଦ୍ୱାରା ବିଜୟ ଲାଭ ହିଁ ସମ୍ଭବ । ପଣ୍ଡିତମାନଙ୍କ ମତରେ ଉତ୍ତମ, ମଧ୍ୟମ ଓ ଅଧମ ଏହି ତିନି ଶ୍ରେଣୀର ବ୍ୟକ୍ତି ଅଛନ୍ତି । ଯେଉଁ ବ୍ୟକ୍ତି ହିତକାରୀ ମନ୍ତ୍ରୀ, ମିତ୍ର ଓ ବନ୍ଧୁମାନଙ୍କ ସହିତ ମନ୍ତ୍ରଣା କରି କାର୍ଯ୍ୟ ଆରମ୍ଭ କରେ, ସେ ଉତ୍ତମ ଶ୍ରେଣୀରେ ଗଣ୍ୟ, ଯେଉଁ ବ୍ୟକ୍ତି ଏକାକୀ ମନ୍ତ୍ରଣା କରି ନିଜର ଧର୍ମ ଅନୁସାରେ କାର୍ଯ୍ୟ ଆରମ୍ଭ କରେ ତାକୁ ମଧ୍ୟମ କୁହାଯାଏ । ଯେଉଁ ବ୍ୟକ୍ତି କୌଣସି ଦୋଷ ଗୁଣ ବିଚାର ନ କରି ଜିଦ୍ ଧରି କୌଣସି କାର୍ଯ୍ୟ କରିଯାଏ, ସେ ଅଧମମାନଙ୍କ ମଧ୍ୟରେ ଗଣ୍ୟ ହୁଏ । ପୁଣି ମନ୍ତ୍ରଣାରେ ସମସ୍ତେ ଏକମତ ହୋଇ ଯେଉଁ ସିଦ୍ଧାନ୍ତରେ ପହଞ୍ଚନ୍ତି ତାହା ଉତ୍ତମ । ଯେଉଁ ମନ୍ତ୍ରଣାରେ ପ୍ରଥମେ ଭିନ୍ନ ମତ ପ୍ରକାଶ ପାଏ ଓ କାର୍ଯ୍ୟବେଳେ ଏକତା ଦେଖାଯାଏ, ତାହା ମଧ୍ୟମ । ଯେଉଁ ମନ୍ତ୍ରଣାରେ ଭିନ୍ନମତ ଓ କାର୍ଯ୍ୟରେ ଅନୈକ୍ୟ ଦେଖାଯାଏ, ତାହା ଅଧମ ଶ୍ରେଣୀର ।

ନୀତିଶାସ୍ତ୍ରରେ ଅଜ୍ଞ, ନିର୍ବୋଧ ରାକ୍ଷସମାନେ ଶତ୍ରୁପକ୍ଷର ବଳାବଳ ନ ବୁଝି କୃତାଞ୍ଜଳି ହୋଇ ରାବଣକୁ କହିଲେ – ମହାରାଜ, ପରିଘ, ଶକ୍ତି, ଶୂଳ, ପଟ୍ଟିଶ ଆଦି ଅସ୍ତ୍ର ଶସ୍ତ୍ରରେ ପରିପୂର୍ଣ୍ଣ ଆମର ବିଶାଳ ସେନା ରହିଛି । ଆପଣ କାହିଁକି ବିଷଣ୍ଣ ହେଉଛନ୍ତି ? ଆପଣ

ଭୋଗବତୀକୁ ଯାଇ ଯୁଦ୍ଧରେ ନାଗମାନଙ୍କୁ ପରାସ୍ତ କରିଛନ୍ତି, ବହୁଯକ୍ଷବେଷ୍ଟିତ କୈଳାସଶିଖରବାସୀ ଧନପତି କୁବେରଙ୍କୁ ଯୁଦ୍ଧରେ ନିର୍ଜିତ କରି ବଶୀଭୂତ କରିଛନ୍ତି । ଯକ୍ଷମାନଙ୍କୁ ନିପାତ କରି ପୁଷ୍ପକବିମାନକୁ ନେଇ ଆସିଛନ୍ତି । ଦାନବେନ୍ଦ୍ର ମୟ ଭୟରେ ଆପଣଙ୍କର ବନ୍ଧୁତା କାମନା କରି ତାଙ୍କର ଦୁହିତା ମନ୍ଦୋଦରୀଙ୍କୁ ବିବାହ କରାଇଛନ୍ତି । ଆପଣ ପାତାଳକୁ ଯାଇ ସର୍ପରାଜ ବାସୁକି ଓ ତକ୍ଷକଙ୍କୁ ବଶୀଭୂତ କରିଛନ୍ତି । ଦାନବମାନଙ୍କୁ ପରାସ୍ତ କରି ତାଙ୍କଠାରୁ ମାୟାବିଦ୍ୟା ଲାଭ କରିଛନ୍ତି । ଦୁର୍ଜୟ ଯମରାଜଙ୍କୁ ପରାସ୍ତ କରି ମୃତ୍ୟୁର ପ୍ରତିରୋଧ କରିଛନ୍ତି । ପୂର୍ବେ ଇନ୍ଦ୍ରତୁଲ୍ୟ ପରାକ୍ରମୀ ବହୁ କ୍ଷତ୍ରିୟ ବୀର ଆପଣଙ୍କ ଦ୍ୱାରା ଯୁଦ୍ଧରେ ନିହତ ହୋଇଛନ୍ତି । ରାମ ତାଙ୍କ ସହିତ ଆଦୌ ସମକକ୍ଷ ନୁହେଁ । ଇନ୍ଦ୍ରଜିତ୍ ମାହେଶ୍ୱର ଯଜ୍ଞ କରି ଦୁର୍ଲ୍ଲଭ ବର ଲାଭ କରିଛନ୍ତି । ସେ ସୁରପତି ଇନ୍ଦ୍ରଙ୍କୁ ମଧ୍ୟ ବନ୍ଦୀ କରି ଲଙ୍କାକୁ ଆଣିପାରିଥିଲେ । କେବଳ ବ୍ରହ୍ମାଙ୍କର ଅନୁରୋଧରେ ତାଙ୍କୁ ମୁକ୍ତ କରିଦେଇଥିଲେ । ରାମ ସହିତ ସମଗ୍ର ବାନରସେନାକୁ ନଷ୍ଟ କରିବାପାଇଁ ଜଣେ ଇନ୍ଦ୍ରଜିତ୍ ହିଁ ଯଥେଷ୍ଟ । ତେଣୁ ଏହି ନଗଣ୍ୟ ବିପଦରେ ଆପଣ ଆଦୌ ଚିନ୍ତିତ ହେବା ଉଚିତ ନୁହେଁ ।

ସେନାପତି ପ୍ରହସ୍ତ କୃତାଞ୍ଜଳି ହୋଇ କହିଲା – ମହାରାଜ, ଦେବ, ଦାନବ, ଗନ୍ଧର୍ବ, ପିଶାଚ, ବିହଙ୍ଗ, ଉରଗମାନଙ୍କୁ ସହଜରେ ପରାସ୍ତ କରିଯିବାବେଳେ ଦୁଇଜଣ ମନୁଷ୍ୟଙ୍କପାଇଁ ଆମର ଚିନ୍ତା କରିବା ଉଚିତ ନୁହେଁ । ଆମେମାନେ ଆମୋଦ ପ୍ରମୋଦରେ ମାତି ଅସାବଧାନ ଥିବାବେଳେ ହନୁମାନର ବଞ୍ଚନା ଆମକୁ ସହିବାକୁ ହେଲା । ବର୍ତ୍ତମାନ ମୁଁ ଥାଉ ଥାଉ ସେହି ବନଚାରୀ ମାନବ ଏଠାକୁ ଆଉଥରେ ଆସିଲେ ଜୀବନ ଧରି ଫେରିପାରିବ ନାହିଁ । ଆପଣ ମୋତେ ଆଜ୍ଞା ଦେଲେ ସମସ୍ତ ଶୈଳ, ବନ, କାନନ ସହିତ ସସାଗରା ପୃଥିବୀକୁ ମୁଁ ବାନରଶୂନ୍ୟ କରିଦେବି ।

ଦୁର୍ମୁଖ କହିଲା, ବାନର ଅପମାନ ଆମେମାନେ କେବେହେଲେ ବରଦାସ୍ତ କରିବା ନାହିଁ । ବାନରମାନେ ଅମ୍ବର, ସାଗର, ରସାତଳ ଯେଉଁଠାରେ ଶରଣ ନେଲେ ମଧ୍ୟ ମୁଁ ଏକାକୀ ସେମାନଙ୍କୁ ନିପାତ କରିବି । ବଜ୍ରଦଂଷ୍ଟ୍ର ଏକ ମାଂସ ଓ ରୁଧିରାକ୍ତ ପରିଘ ଉଠାଇ କହିଲା – ରାମ, ଲକ୍ଷ୍ମଣ ଓ ସୁଗ୍ରୀବଙ୍କୁ ଛାଡ଼ିଦେଲେ ବିଚାରା ହନୁମାନକୁ ମାରି କି ଲାଭ ହେବ ? ଆଜି ମୁଁ ସୁଗ୍ରୀବ, ରାମ ଓ ଲକ୍ଷ୍ମଣକୁ ଏହି ପରିଘ ଦ୍ୱାରା ନିହତ କରି ଓ ବାନରବାହିନୀକୁ ବିକ୍ଷୁବ୍ଧ ଓ ହୀନବଳ କରି ଏଠାକୁ ଫେରିଆସିବି । କୁମ୍ଭକର୍ଣ୍ଣପୁତ୍ର ନିକୁମ୍ଭ କହିଲା, ଆପଣମାନେ ନିଶ୍ଚିନ୍ତ ରହନ୍ତୁ, ମୁଁ ଏକାକୀ ରାମ, ଲକ୍ଷ୍ମଣ, ସୁଗ୍ରୀବ ଓ ହନୁମାନଙ୍କ ସମେତ ସମସ୍ତ ବାନରଙ୍କୁ ନିହତ କରି ଫେରିଆସିବି ।

ଏହିପରି ରାକ୍ଷସମାନେ ରାବଣଙ୍କୁ ସନ୍ତୁଷ୍ଟ କରିବାପାଇଁ କଥାରେ ପରସ୍ପର ସହିତ ପ୍ରତିଯୋଗିତା କରିବାକୁ ଲାଗିଲେ । ତା'ପରେ ବିଭୀଷଣ ଉଠି ସେମାନଙ୍କୁ ବସାଇଦେଇ ରାବଣଙ୍କୁ ପ୍ରଣାମ କରି କହିଲେ – ରାଜା, ସାମ, ଦାନ, ଭେଦ ଏହି ତିନୋଟି ଉପାୟରେ ଯେତେବେଳେ କାର୍ଯ୍ୟ ସଫଳ ନ ହୁଏ, ଚତୁର୍ଥ ଉପାୟ ଦଣ୍ଡ ବା ବିକ୍ରମ ପ୍ରକାଶ କରିବା ଦରକାର ପଡ଼େ । ଯେଉଁ ବ୍ୟକ୍ତି ଅସାବଧାନ, ଅଭିଯୁକ୍ତ କିମ୍ବା ଦୈବବଶରେ ବିପନ୍ନ

ଅବସ୍ଥାରେ ଥାଏ, ଭଲ ଭାବରେ ବିଚାର କରି ତାହା ପ୍ରତି ବଳପ୍ରୟୋଗ କଲେ ତାହା ସଫଳ ହୁଏ । କିନ୍ତୁ ଯେଉଁ ରାମ ଅସାବଧାନ ନୁହନ୍ତି, ଯେ କ୍ରୋଧକୁ ଜୟ କରିଛନ୍ତି, ନିଜ ବଳରେ ବଳୀୟାନ୍ ସେହି ଦୁର୍ଜୟ ରାମଙ୍କୁ ତୁମେ କିପରି ଓ କାହିଁକି ଆକ୍ରମଣ କରିବ ? ହନୁମାନ ଘୋର ସମୁଦ୍ର ଲଂଘନ କରି ଏଠାକୁ ଆସିବ ବୋଲି କିଏ କଳ୍ପନା କରିଥିଲା ? ନିଶାଚରଗଣ, ଶତ୍ରୁର ବଳବିକ୍ରମ ଅକଳନୀୟ । ତାକୁ ଏପରି ଭାବରେ ଅବଜ୍ଞା କରିବା ତୁମ ପକ୍ଷରେ ଠିକ୍ ହେଉ ନାହିଁ । ରାମ ରାକ୍ଷସରାଜଙ୍କର କି ଅପକାର କରିଥିଲେ, ଯେଉଁଥିପାଇଁ ଜନସ୍ଥାନରୁ ତାଙ୍କ ଭାର୍ଯ୍ୟାଙ୍କୁ ଅପହରଣ କରାଗଲା ? ଖର ନିଜର ସୀମା ଲଂଘନ କରିବାରୁ ରାମଙ୍କ ଶରରେ ନିହତ ହେଲା । ସେଥିପାଇଁ ମୁଁ କହୁଛି, ବୈଦେହୀ ଆମର ଭୟଙ୍କର ବିପଦର କାରଣ ହେବେ । ବୃଥା ବିବାଦରେ ନ ମାତି ତାଙ୍କୁ ଛାଡ଼ିଦେବା ଆମ ପକ୍ଷରେ ଉଚିତ ହେବ । ମହାରାଜ, ତୁମର ବନ୍ଧୁ ରୂପେ ତୁମର ହିତପାଇଁ କହୁଛି, ଦୁର୍ଜୟ ବିଶାଳ ବାନରସେନା ଲଙ୍କାକୁ ଅବରୋଧ କରିବା ପୂର୍ବରୁ ତୁମେ ରାମଙ୍କର ପ୍ରିୟପତ୍ନୀ ମୈଥିଳୀଙ୍କୁ ତାଙ୍କୁ ଫେରାଇ ଦିଅ । ନିଜର ସୁଖ ଓ ଧର୍ମନାଶକାରୀ କ୍ରୋଧକୁ ବର୍ଜନ କରି ଦାଶରଥିଙ୍କ ପାଖରେ ସୀତାଙ୍କୁ ଅର୍ପଣ କର ।

ବିଭୀଷଣଙ୍କର କଥା ଶୁଣି ରାକ୍ଷସରାଜ ରାବଣ ସଭା ଭାଙ୍ଗିଦେଇ ଘରକୁ ଚାଲିଗଲେ ।

ପ୍ରଭାତ ହେବାରୁ ବିଭୀଷଣ ନିଜର ଅଗ୍ରଜ ରାବଣର ଭବନରେ ପ୍ରବେଶ କରି ବିନୀତ ଭାବରେ ନମସ୍କାର କରି କହିଲେ – ମହାରାଜ, ସୀତା ଲଙ୍କାକୁ ଆସିବା ଦିନଠାରୁ ବହୁ ଅଶୁଭ ଦେଖାଯାଉଛି । ମନ୍ତ୍ରପୂର୍ବକ ଆହୁତି ଦେଲେ ମଧ୍ୟ ଅଗ୍ନିରୁ କେବଳ ଧୂଆଁ ଓ ସ୍ଫୁଲିଙ୍ଗ ଛଡ଼ା ସେପରି ତେଜ ବାହାରୁ ନାହିଁ । ରନ୍ଧନଗୃହ, ଗୋଶାଳା ଓ ବ୍ରହ୍ମସ୍ଥଳୀ (ଉପାସନା ଗୃହ) ମାନଙ୍କରେ ସରୀସୃପମାନେ ବିଚରଣ କରୁଛନ୍ତି । ହୋମଦ୍ରବ୍ୟମାନଙ୍କରେ ପିମ୍ପୁଡ଼ି ବୁଲୁଛନ୍ତି । ଗାଇମାନଙ୍କର କ୍ଷୀର କମିଯାଉଛି । ହାତୀମାନଙ୍କ ଦେହରୁ ମଦଜଳ ବହୁ ନାହିଁ, ଘୋଡ଼ାମାନେ ଦୁଃଖରେ ହ୍ରେସାରବ କରୁଛନ୍ତି । ଓଟ, ଗଧ, ଖଚର ଆଦି ପଶୁମାନେ ଲୋମହୀନ ହୋଇ କ୍ରନ୍ଦନ କରୁଛନ୍ତି, କୁଆମାନେ ଦଳ ଦଳ ହୋଇ ଗୃହ ଉପରେ ବସି କର୍କଶ ସ୍ୱରରେ ରାବ କରୁଛନ୍ତି । ଶାଗୁଣାମାନେ ନଗର ଉପରେ ଉଡୁଛନ୍ତି ଏବଂ ସକାଳ ଓ ସଞ୍ଜରେ ବିଲୁଆମାନେ ଚିତ୍କାର କରୁଛନ୍ତି । ନଗରଦ୍ୱାରରେ ହିଂସ୍ରଜନ୍ତୁମାନେ ଦଳଦଳ ହୋଇ ବିକଟ ଚିତ୍କାର କରିବାରେ ଲାଗିଛନ୍ତି । ମହାରାଜ, ଲୋଭ ଓ ମୋହବଶରୁ ମୁଁ ଏହା କହୁ ନାହିଁ । ଚାରିଆଡ଼େ ଏହି ଚର୍ଚ୍ଚା ହେଉଥିବା ଯୋଗୁଁ ମୁଁ ଆପଣଙ୍କୁ ଜଣାଇଲି । ଆପଣ ଶୀଘ୍ର ସୀତାଙ୍କୁ ଫେରାଇ ଦିଅନ୍ତୁ ।

ରାବଣ କ୍ରୋଧରେ ଉତ୍ତର ଦେଲା, ମୁଁ କୌଣସିଠାରୁ କୌଣସି ପ୍ରକାର ଭୟ ଦେଖୁ ନାହିଁ । ରାମ ସୀତାଙ୍କୁ ପୁଣି ଫେରିପାଇବାର ପ୍ରଶ୍ନ ଉଠୁ ନାହିଁ । ସେ ଦେବତାମାନଙ୍କ ସହିତ ଆସିଲେ ମଧ୍ୟ ମୋ ସହିତ ଯୁଦ୍ଧରେ ଠିଆ ହୋଇପାରିବ ନାହିଁ ।

କାମବଶରେ ସୀତାଙ୍କର ଚିନ୍ତା, ବନ୍ଧୁମାନଙ୍କ ମଧ୍ୟରେ ଅସମ୍ମାନ ଓ ନିଜର ପାପକର୍ମପାଇଁ ରାବଣ ଦିନୁଁ ଦିନ କ୍ଷୀଣ ହେବାକୁ ଲାଗିଲା । ସେ ମନ୍ତ୍ରୀ ଓ ସୁହୃଦ୍‌ମାନଙ୍କ ସହିତ ଆଉଥରେ ମନ୍ତ୍ରଣା କରିବାକୁ ସ୍ଥିର କଲା । ନିଜର ସ୍ୱର୍ଣ୍ଣମଣ୍ଡିତ ବିଶାଳ ରଥ

ଆରୋହଣ କରି ରାବଣ ସଭାଗୃହ ଅଭିମୁଖରେ ବାହାରିଲା । ଢାଲ, ତରବାରି, ଗଦା, ତୋମର ଆଦି ଅସ୍ତ୍ରଶସ୍ତ୍ର ଧରି ଓ ତେଜୋମୟ ପୋଷାକ ପରିଧାନ କରି ଗଜ ଓ ଅଶ୍ୱ ପୃଷ୍ଠରେ ରାକ୍ଷସ ଯୋଦ୍ଧାମାନେ ଆଗରେ କଡ଼ରେ ଓ ପଛରେ ରକ୍ଷୀରୂପେ ଚାଲିଥିଲେ । ରାସ୍ତା ଦୁଇପଟରେ ନଗରବାସୀ ରାକ୍ଷସମାନେ ତାର ଜୟଧ୍ୱନି କରୁଥିଲେ । ଭେରୀ ତୂରୀ ନାଦରେ ସଭାସ୍ଥଳ ଉଚ୍ଛୁଳି ପଡୁଥିଲା । ରାବଣ ଏହିପରି ଆନନ୍ଦ ଧ୍ୱନି ମଧ୍ୟରେ ସଭାଗୃହରେ ପ୍ରବେଶ କଲା । ସେଠାରେ ନିଜର ବୈଦୂର୍ଯ୍ୟମୟ ସିଂହାସନରେ ବସି ରାକ୍ଷସମାନଙ୍କୁ ଡାକିଆଣିବା ପାଇଁ ଦୂତମାନଙ୍କୁ ଆଦେଶ ଦେଲା । ଅଳ୍ପ ସମୟ ମଧ୍ୟରେ ମନ୍ତ୍ରୀ ଅମାତ୍ୟମାନଙ୍କ ସମେତ ରାକ୍ଷସ ବୀରମାନେ ଶହ ଶହ ସଂଖ୍ୟାରେ ଉପସ୍ଥିତ ହେଲେ । ରାବଣର ସାନଭାଇ ବିଭୀଷଣ ମଧ୍ୟ ସେଠାରେ ଉପସ୍ଥିତ ହୋଇ ରାବଣର ଚରଣବନ୍ଦନା କଲେ । ସମସ୍ତେ ନୀରବରେ ବସିରହି ରାବଣର ନିର୍ଦ୍ଦେଶକୁ ଉଦ୍‌ବେଗର ସହିତ ଅପେକ୍ଷା କରି ରହିଲେ ।

## ୯୪ ।। ବିଭୀଷଣଙ୍କ ପରାମର୍ଶ

ବହୁ ଯୁଦ୍ଧରେ ପରୀକ୍ଷିତ ଚତୁରଙ୍ଗ ସେନାକୁ ଶୀଘ୍ର ନଗର ରକ୍ଷା କାର୍ଯ୍ୟରେ ନିଯୁକ୍ତ କରିବାପାଇଁ ସେନାପତି ପ୍ରହସ୍ତକୁ ଆଦେଶ ଦେଇ ରାବଣ ବଜ୍ରଗମ୍ଭୀର ସ୍ୱରରେ କହିଲା – ସଭାସଦ୍‌ଗଣ, ବିପଦ ସମୟରେ ପ୍ରିୟ ଅପ୍ରିୟ, ସୁଖ ଦୁଃଖ, ଲାଭ କ୍ଷତି, ହିତ ଅହିତ, ସମସ୍ତ ବିଷୟ ତୁମମାନଙ୍କର ଜାଣିବା ଉଚିତ । ତୁମେମାନେ ଏକତ୍ର ହୋଇ ମନ୍ତ୍ରଣାପୂର୍ବକ ଯେଉଁ କାର୍ଯ୍ୟ କରିଛ, ତାହା ସବୁବେଳେ ସଫଳ ହୋଇଛି । ଆଜି ଲଙ୍କାର ଯେଉଁ ସୌଭାଗ୍ୟଶ୍ରୀ ସମ୍ଭବ ହୋଇଛି, ତାହା ତୁମମାନଙ୍କ ପାଇଁ । ତେଣୁ ଆଜି ଏକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ତୁମ ସମସ୍ତଙ୍କ ସହିତ ମୁଁ ପରାମର୍ଶ କରିବାକୁ ଚାହେ । ଆଜି ମହାବଳୀ କୁମ୍ଭକର୍ଣ୍ଣ ମଧ୍ୟ ଏଠାରେ ଉପସ୍ଥିତ । ସେ ଛ'ମାସ ଶୋଇ ରହିବାପରେ ଆଜି ଜାଗରିତ ହୋଇଛନ୍ତି । ଦଣ୍ଡକାରଣ୍ୟରୁ ରାମର ପ୍ରିୟ ମହିଷୀ ଜନକନନ୍ଦିନୀଙ୍କୁ ମୁଁ ଆଣିଥିବା କଥା ସମସ୍ତେ ଜାଣିଛ । ସେହି ଅଳସଗାମିନୀ ମୋର ଶଯ୍ୟାଶାୟିନୀ ହେବାପାଇଁ ଇଚ୍ଛା କରୁନାହିଁ । ତ୍ରିଲୋକରେ ସୀତାପରି ସୁନ୍ଦରୀ ମୁଁ ଦେଖୁ ନାହିଁ । ସୀତାକୁ ଦେଖିବାକ୍ଷଣି ମୁଁ ତାହା ପ୍ରତି କାମାର୍ତ୍ତ ହୋଇପଡ଼ିଛି । ରାମର ପ୍ରତୀକ୍ଷାରେ ସେ ବର୍ଷେ ସମୟ ମୋ'ଠାରୁ ଚାହିଁଥିଲା, ମୁଁ ତାକୁ ସେହି ସମୟ ଦେଇଛି ।

ରାବଣ କହିଲା, ରାମ ବାନରସେନାକୁ ଧରି କିପରି ସାଗର ପାର ହେବ ତାହା ମୁଁ ଚିନ୍ତା କରିପାରୁ ନାହିଁ । କିନ୍ତୁ ଜଣେ ବାନର ଯଦି ଆମମାନଙ୍କୁ ଏପରି ଗୁରୁତର ଦୁଃଖ ଦେଇପାରିଲା, ତାହାହେଲେ କେତେବେଳେ କ'ଣ ହେବ, କିଛି ଜଣାଯାଉ ନାହିଁ । ତୁମେମାନେ ଏ ବିଷୟରେ ତୁମର ସ୍ପଷ୍ଟ ମତ ବ୍ୟକ୍ତ କର । ମନୁଷ୍ୟଠାରେ ମୋର ଟିକିଏ ମାତ୍ର ଭୟ ନାହିଁ । ବର୍ତ୍ତମାନ ସୁଗ୍ରୀବ ଆଦି ବାନରମାନଙ୍କୁ ଧରି ରାମ ଲକ୍ଷ୍ମଣ ସମୁଦ୍ରର ଅପର କୂଳରେ ପହଞ୍ଚିଗଲେଣି । କି ଉପାୟ କରାଗଲେ ସୀତାଙ୍କୁ ନ ଦେଇ ଦଶରଥଙ୍କର

ଦୁଇପୁତ୍ରଙ୍କୁ ବଧ କରାଯାଇପାରିବ, ସେ ବିଷୟରେ ତୁମେମାନେ ମନ୍ତ୍ରଣା କରି ମୋତେ ପରାମର୍ଶ ଦିଅ ।

କୁମ୍ଭକର୍ଣ୍ଣ ଅତି କ୍ରୁଦ୍ଧ ହୋଇ କହିଲା – ରାଜା, ତୁମେ ରାମ ଲକ୍ଷ୍ମଣଙ୍କୁ ପ୍ରତାରିତ କରି ସୀତାଙ୍କୁ ଯେତେବେଳେ ବଳପୂର୍ବକ ହରଣ କରିଲ, ସେତେବେଳେ କାହାକୁ ପଚାରିଥିଲ ? ତୁମେ ନିଜେ ନିଜେ ସ୍ଥିର କରି ଯାହା କରିଛ, ତାହା ତୁମର ଉପଯୁକ୍ତ ହୋଇ ନାହିଁ । ମନ୍ତ୍ରୀମାନଙ୍କ ସହିତ ପରାମର୍ଶ କରି ନ୍ୟାୟସଙ୍ଗତ ଭାବରେ କାର୍ଯ୍ୟକଲେ ରାଜା କେବେ ପଶ୍ଚାତ୍ତାପ କରେ ନାହିଁ । ମନ୍ତ୍ରଣା ନ କରି ଅନ୍ୟାୟ କାର୍ଯ୍ୟ କଲେ ଅପବିତ୍ର ଯଜ୍ଞରେ ଘୃତାହୁତି ପରି ତାହା ଦୂଷଣୀୟ ହୋଇଥାଏ । ତୁମେ ପରିଣାମ ଚିନ୍ତା ନ କରି ଯେଉଁ ଗୁରୁତର ଅନ୍ୟାୟ କାର୍ଯ୍ୟ କରିଛ, ବିଷମିଶ୍ରିତ ଅନ୍ନପରି ରାମ ଯେ ଏପର୍ଯ୍ୟନ୍ତ ତୁମକୁ ନଷ୍ଟ କରି ନାହିଁ, ତାହା ତୁମର ସୌଭାଗ୍ୟ ବୋଲି ମନେ କରିବାକୁ ହେବ । ନିଶାଚର, ଯେତେବେଳେ ତୁମେ ଏହା କରିସାରିଛ, ତୁମକୁ ସାହାଯ୍ୟ କରିବା ଛଡ଼ା ମୋର ଅନ୍ୟ ଉପାୟ ନାହିଁ । ମୁଁ ପ୍ରତିଶ୍ରୁତି ଦେଉଛି ଯେ ତୁମର ଶତ୍ରୁମାନେ ଇନ୍ଦ୍ର, ସୂର୍ଯ୍ୟ, ଅଗ୍ନି, ମରୁତ, କୁବେର ଓ ବରୁଣଙ୍କ ତୁଲ୍ୟ ପରାକ୍ରମୀ ହେଲେ ମଧ୍ୟ ମୁଁ ନିଶ୍ଚୟ ସେମାନଙ୍କୁ ଯୁଦ୍ଧରେ ନିହତ କରି ତୁମର ଉଦ୍‌ବେଗ ଦୂର କରିବି । ରାମ ଯମାଳୟକୁ ଗଲେ ସୀତା ନିଶ୍ଚୟ ତୁମର ବଶବର୍ତ୍ତିନୀ ହେବ ।

ମନ୍ତ୍ରୀ ମହାପାର୍ଶ୍ୱ କୃତାଞ୍ଜଳି ହୋଇ କହିଲା – ପରନ୍ତପ, ତୁମେ ତ ସମସ୍ତଙ୍କର ପ୍ରଭୁ, ତୁମ ଉପରେ ଆଉ କାହାର ପ୍ରଭୁତ୍ୱ ରହିଛି ? ଯେଉଁ ବ୍ୟକ୍ତି ଶ୍ୱାପଦସଙ୍କୁଳ ଅରଣ୍ୟରେ ମଧୁଲାଭ କରି ମଧ୍ୟ ତାହା ପାନ କରେ ନାହିଁ, ସେ ବ୍ୟକ୍ତି ପ୍ରକୃତରେ ମୂର୍ଖ । ତୁମେ ବୈଦେହୀଙ୍କୁ ଲାଭ କରି କୁକ୍କୁଟ ସଦୃଶ ବଳପୂର୍ବକ କାହିଁକି ତାଙ୍କୁ ରମଣ କରୁ ନାହଁ । ତୁମର ଉଦ୍ଦେଶ୍ୟ ସିଦ୍ଧହେଲେ ଆଉ କାହାରିକୁ ଭୟ ନାହିଁ । ବଜ୍ରଧାରୀ ଇନ୍ଦ୍ରଙ୍କ ତୁଲ୍ୟ ତୁମର କାହାପ୍ରତି ଭୟ ହେଉଛି ? ସାମ, ଦାନ, ଭେଦ ନୀତି ଛାଡ଼ି ବର୍ତ୍ତମାନ ତୁମେ ଦଣ୍ଡର ଆଶ୍ରୟ ନିଅ ।

ରାବଣ ମହାପାର୍ଶ୍ୱଙ୍କୁ ପ୍ରଶଂସା କରି କହିଲା, ମୁଁ ପୂର୍ବର ଏକ ରହସ୍ୟ କହୁଛି ଶୁଣ । ଦିନେ ପୁଞ୍ଜିକସ୍ଥଳା ନାମରେ ଜଣେ ଅପ୍‌ସରା ଆକାଶମାର୍ଗକୁ ଆଲୋକିତ କରି ବ୍ରହ୍ମାଙ୍କ ପାଖକୁ ଯାଉଥିଲା । ତାହାର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ମୁଁ ତାକୁ ବଳପୂର୍ବକ ବିବସନା କରି ଉପଭୋଗ କରିଥିଲି । ସେ ବିଦଳିତନଳିନୀ ତୁଲ୍ୟ ବ୍ୟାକୁଳ ହୋଇ ବ୍ରହ୍ମାଙ୍କ ପାଖରେ ଅଭିଯୋଗ କରିଥିଲା । ପିତାମହ କ୍ରୁଦ୍ଧ ହୋଇ ମୋତେ ଅଭିଶାପ ଦେଇଥିଲେ, ଆଜିଠାରୁ ଯଦି କୌଣସି ସ୍ତ୍ରୀକୁ ତୁ ବଳପୂର୍ବକ ଉପଭୋଗ କରିବୁ, ତା ହେଲେ ତୋର ମସ୍ତକ ଶତଧା ବିଦୀର୍ଣ୍ଣ ହେବ । ସେହି ଶାପବଶରୁ ମୁଁ ସୀତାଙ୍କୁ ମୋର ଅଙ୍କଶାୟିନୀ କରିପାରୁ ନାହିଁ, ରାମ ଭୟରେ ନୁହେଁ । ରାମ ମୋର ବଳବିକ୍ରମ ନ ଜାଣି ଗିରିଗୁହାରେ ସୁପ୍ତ ସିଂହକୁ ଜାଗରିତ କରିବାପାଇଁ ଚେଷ୍ଟା କରୁଛି ।

ବିଭୀଷଣ କହିଲେ – ମହାରାଜ, ସୀତା ଏକ ଭୟଙ୍କର ସର୍ପତୁଲ୍ୟ । ଜାଣିଶୁଣି ସେହି ସର୍ପକୁ ତୁମେ କାହିଁକି ମାଳାରୂପେ ଧାରଣ କରିବାକୁ ଇଚ୍ଛା କରୁଛ ? ତୀକ୍ଷ୍ଣ ନଖ,

ତୀକ୍ଷ୍ଣ ଦନ୍ତ, ବିଶାଳକାୟ ବାନରମାନେ ଲଙ୍କାପୁରୀ ଆକ୍ରମଣ କରିବା ପୂର୍ବରୁ ତୁମେ ସୀତାଙ୍କୁ ଫେରାଇଦିଅ । ପବନବେଗରେ ରାମଙ୍କର ବଜ୍ରବାଣ ଆସି ରାକ୍ଷସମାନଙ୍କର ଶିରଚ୍ଛେଦନ କରିବା ପୂର୍ବରୁ ରାମଙ୍କ ହସ୍ତରେ ସୀତାଙ୍କୁ ଅର୍ପଣ କର । କୁମ୍ଭକର୍ଣ୍ଣ, ଇନ୍ଦ୍ରଜିତ୍, ମହାପାର୍ଶ୍ୱ, ମହୋଦର, କୁମ୍ଭ, ନିକୁମ୍ଭ, ଅତିକାୟ କେହି ରାମଙ୍କ ଆଗରେ ଠିଆ ହୋଇପାରିବେ ନାହିଁ । ଆକାଶ, ପାତାଳରେ ପ୍ରବେଶ କଲେ ମଧ୍ୟ ରାମଙ୍କଠାରୁ ତୁମର ରକ୍ଷା ନାହିଁ ।

ପ୍ରହସ୍ତ କହିଲା – ବିଜ୍ଞ, ଆମେ ଦେବ, ଦାନବ, ଯକ୍ଷ, ଗନ୍ଧର୍ବ, ଉରଗ କାହାରିକୁ ଭୟ କରୁ ନାହିଁ । ରାମଙ୍କୁ ଭୟ କରିବାର ପ୍ରଶ୍ନ ଉଠୁ ନାହିଁ । ବିଭୀଷଣ କହିଲେ – ପ୍ରହସ୍ତ, ରାମଙ୍କ ନିକ୍ଷିପ୍ତ ଦୁର୍ଦ୍ଧର୍ଷ ବାଣ ଏ ପର୍ଯ୍ୟନ୍ତ ତୁମର ଶରୀରକୁ ଭେଦ କରି ନାହିଁ, ସେଥିପାଇଁ ତୁମେ ଏପରି ଆତ୍ମବଡ଼ିମା ପ୍ରକାଶ କରୁଛ । ମହାରାଜ ସ୍ୱଭାବତଃ କ୍ରୋଧୀ ଓ ଅଦୂରଦର୍ଶୀ । ଦୁଃଖର ବିଷୟ, ସେ ବିପନ୍ନ ଅବସ୍ଥାରେ ଥିବାବେଳେ ତୁମପରି ଶତ୍ରୁଙ୍କ ଦ୍ୱାରା ସେ ସେବିତ ହେଉଛନ୍ତି । ରାଜାଙ୍କର, ଲଙ୍କାର ଏବଂ ସମସ୍ତ ରାକ୍ଷସଙ୍କର ଯେଉଁଥିରେ ମଙ୍ଗଳ ହେବ, ସେହିପରି ପରାମର୍ଶ ଦେଇ ତାଙ୍କୁ ସାହାଯ୍ୟ କର ।

ଇନ୍ଦ୍ରଜିତ୍ ବିଭୀଷଣଙ୍କ କଥାର ପ୍ରତିବାଦ କରି କହିଲା – କନିଷ୍ଠ ତାତ, ଭୀରୁ ବ୍ୟକ୍ତି ପରି ଆପଣ ବହୁ ନିରର୍ଥକ କଥା କହିଗଲେ । ଆମ କୁଳରେ ଯେ ଜନ୍ମ ହୋଇ ନାହିଁ, ସେ ମଧ୍ୟ ଏଭଳି କଥା କହିବ ନାହିଁ । ବଳ, ବୀର୍ଯ୍ୟ, ଧୈର୍ଯ୍ୟ ଓ ତେଜ ନ ଥାଇ ଯଦି କେହି ଜଣେ ଅଛି, ତା ହେଲେ ସେ ବିଭୀଷଣ । ଆମ ମଧ୍ୟରୁ ଯେକୌଣସି ରାକ୍ଷସ ରାମ ଲକ୍ଷ୍ମଣଙ୍କୁ ନିହତ କରିବାପାଇଁ ଯଥେଷ୍ଟ । ତେଣୁ ଏହି ଭୀରୁ ବିଭୀଷଣ କାହିଁକି ଭୟ ଦେଖାଉଛନ୍ତି ? ମୁଁ ଦେବରାଜ ଇନ୍ଦ୍ରଙ୍କୁ ବାନ୍ଧି ଆଣିଥିଲି, ବଳପୂର୍ବକ ଐରାବତର ଦାନ୍ତ ଉପାଡ଼ି ଦେଇଥିଲି । ବାରମ୍ବାର ଦେବତାମାନଙ୍କର ଦର୍ପ ଦଳନ କରିଛି । ଦାନବମୁଖ୍ୟମାନଙ୍କୁ ପରାସ୍ତ କରିଛି । ମୁଁ କାହିଁକି ଦୁଇଜଣ ସାଧାରଣ ମାନବଙ୍କୁ ଭୟ କରିବି ? ବିଭୀଷଣ ଉତ୍ତର ଦେଲେ – ବତ୍ସ, ତୁମେ ବାଳକ, ତୁମର ବୁଦ୍ଧି ଏବେ ମଧ୍ୟ ପରିପକ୍ୱ ନୁହେଁ । ତେଣୁ ଆତ୍ମନାଶପାଇଁ ଏପରି ଅର୍ଥହୀନ ପ୍ରଳାପ କରୁଛ । ବର୍ତ୍ତମାନ ରାମଙ୍କଠାରୁ ଜ୍ୟେଷ୍ଠଭ୍ରାତାଙ୍କର ଘୋର ବିପଦ ଉପସ୍ଥିତ ହୋଇଛି ବୋଲି ଜାଣି ମଧ୍ୟ ତୁମେ ତାଙ୍କ କାର୍ଯ୍ୟକୁ ଯେଭଳି ଅନୁମୋଦନ କରୁଛ, ସେଥିରୁ ମନେହୁଏ, ତୁମେ ତାଙ୍କର ନାମମାତ୍ର ପୁତ୍ର, କିନ୍ତୁ ପୁତ୍ରରୂପୀ ଶତ୍ରୁ । ତୁମପରି ଦୁଃସାହସୀ ଓ ମନ୍ଦମତି ବାଳକକୁ ଏ ସଭାକୁ ଯେ ଆଣିଛି, ସେ ଓ ତୁମେ ଉଭୟ ଦିନେ ନିହତ ହେବ ।

ବିଭୀଷଣଙ୍କର ଉପଦେଶ ରାବଣକୁ ରୁଚିକର ବୋଧ ହେଲା ନାହିଁ । ସେ କଠୋର ବାକ୍ୟରେ କହିଲା, ଘୋର ଶତ୍ରୁ ବା କ୍ରୁଦ୍ଧ ସର୍ପ ସହିତ ଜଣେ ବାସ କରିପାରେ, କିନ୍ତୁ ମିତ୍ରରୂପୀ ଶତ୍ରୁ ସହିତ ବାସ କରିବା ସମ୍ଭବ ନୁହେଁ । କୌଣସି ବ୍ୟକ୍ତି ବିପଦରେ ପଡ଼ିଲେ ତା'ର ଜ୍ଞାତିମାନେ ସବୁଠାରୁ ବେଶି ଖୁସି ହୁଅନ୍ତି । ସେମାନଙ୍କ ମଧ୍ୟରେ ଯେ ଧର୍ମଜ୍ଞ, ଦକ୍ଷ ଓ ପ୍ରତିକାର ପାଇଁ ତତ୍ପର ଥାଏ, ତାକୁ ସେମାନେ ଅପମାନିତ କରନ୍ତି । ହସ୍ତୀମାନଙ୍କର ଶତ୍ରୁ ପାଶହସ୍ତ ମନୁଷ୍ୟ ନୁହେଁ, ସେମାନଙ୍କ ମଧ୍ୟରୁ ଜଣେ ହସ୍ତୀ ଅନ୍ୟମାନଙ୍କୁ ଧରାଇ

ଦିଏ । ସେଥିପାଇଁ ଶତ୍ରୁଭୟ ଅପେକ୍ଷା ଜ୍ଞାତିଭୟ ହିଁ ଅଧିକ ଭୟଙ୍କର । ବିଭୀଷଣ, ମୋର ଏ ଐଶ୍ୱର୍ଯ୍ୟ, ତ୍ରିଲୋକରେ ମୋର ସମ୍ମାନ ଓ ଶତ୍ରୁମାନଙ୍କୁ ପରାଭବଦାନ ତୁମକୁ ଭଲ ଲାଗୁ ନାହିଁ । ମଧୁପାୟୀ ଭ୍ରମରର ବନ୍ଧୁତାରେ ଯେପରି ସ୍ଥିରତା ନ ଥାଏ, ତୁମପରି ଅନାର୍ଯ୍ୟ ଲୋକ ସହିତ ସ୍ନେହ ଓ ବନ୍ଧୁତା ସେହିପରି ନିଷ୍ଫଳ । ହସ୍ତୀ ସ୍ନାନ ପରେ ଶୁଣ୍ଢରେ ଧୂଳି ନେଇ ଯେପରି ନିଜର ଦେହକୁ କଳୁଷିତ କରେ, ତୁମପରି ଅନାର୍ଯ୍ୟ ବ୍ୟକ୍ତିର ବନ୍ଧୁତା ମଧ୍ୟ ସେହିପରି ଘୃଣ୍ୟ । କୁଳାଙ୍ଗାର, ତୋତେ ଧିକ୍, ଅନ୍ୟ କେହି ଯଦି ଏପରି କହିଥାନ୍ତା, ଏହି ମୁହୂର୍ତ୍ତରେ ସେ ଆଉ ବଞ୍ଚିରହନ୍ତା ନାହିଁ ।

ରାବଣର ଧିକ୍କାର ଶୁଣି ବିଭୀଷଣ ଗଦାହସ୍ତରେ ଆହୁରି ଚାରିଜଣ ରାକ୍ଷସଙ୍କ ସହିତ ଆକାଶକୁ ଉଠିଯାଇ କହିଲେ – ମହାରାଜ, ତୁମେ ମୋର ଜ୍ୟେଷ୍ଠ ପିତୃତୁଲ୍ୟ ମାନନୀୟ । କିନ୍ତୁ ତୁମେ ଧର୍ମପଥରେ ନାହଁ । ଯାହା ଇଚ୍ଛା ତାହା କହିଯାଉଛ । ତୁମେ ଅଗ୍ରଜ ହେଲେ ମଧ୍ୟ ତୁମର କଠୋର ବାକ୍ୟ ମୁଁ ସହିପାରୁ ନାହିଁ । ଯେପରି ତୁମର ମଙ୍ଗଳ ହେବ, ମୁଁ ତାହାହିଁ କହୁଛି । କିନ୍ତୁ କାଳର ଅଧୀନ ହେଲେ ଅସଂଯତ ବ୍ୟକ୍ତିମାନେ କେବେହେଲେ ହିତ ବାକ୍ୟ ଗ୍ରହଣ କରନ୍ତି ନାହିଁ । ରାଜା, ତୁମକୁ ଭଲ ଲାଗିବା ଭଳି କଥା କହିବା ଲୋକଙ୍କର ଅଭାବ ନାହିଁ । କିନ୍ତୁ ଅପ୍ରିୟ ହେଲେ ମଧ୍ୟ ହିତକର କଥା କହିବା ଲୋକ କମ୍ ଅଛନ୍ତି । ଶୁଣିବା ଲୋକ ମଧ୍ୟ ତାହାଠାରୁ କମ୍ ଅଛନ୍ତି । ଜ୍ୱଳନ୍ତ ଅଗ୍ନି ସଦୃଶ ରାମଙ୍କ ଶରରେ ତୁମେ ନିହତ ହେବ, ଏହା ମୁଁ ସ୍ୱଚକ୍ଷୁରେ ଦେଖିବାପାଇଁ ଇଚ୍ଛା କରେ ନାହିଁ । ଯେଉଁମାନେ ଅସ୍ତ୍ରବିତ୍ ଶୂର ଏବଂ ବଳବାନ୍ ସେମାନେ କାଳର ବଶବର୍ତ୍ତୀ ହୋଇ ଯୁଦ୍ଧରେ ବାଲୁକାର ବନ୍ଧପରି ବିପନ୍ନ ହୋଇପଡ଼ିଛନ୍ତି । ମୋର ଅନୁରୋଧ, ତୁମେ ନିଜକୁ ଓ ଲଙ୍କାପୁରୀର ରାକ୍ଷସମାନଙ୍କୁ ରକ୍ଷାକର । ତୁମର ମଙ୍ଗଳ ହେଉ । ମୁଁ ଯାଉଛି, ମୋ ବିନା ତୁମେ ସୁଖୀ ହୋଇ ରହ ।

## ୯୫ ॥ ରାମଙ୍କ ଶରଣଭିକ୍ଷା

ମୁହୂର୍ତ୍ତକ ମଧ୍ୟରେ ରାମ ଲକ୍ଷ୍ମଣ ବାନରସେନା ସହିତ ଯେଉଁଠାରେ ରହୁଥିଲେ, ବିଭୀଷଣ ସେଠାରେ ଆସି ପହଞ୍ଚିଗଲେ । ବିଦ୍ୟୁତ୍‌ପରି ତେଜୀୟାନ୍, ମେରୁ ପର୍ବତ ପରି ବିଶାଳ ବିଭୀଷଣଙ୍କୁ ତାଙ୍କର ସଶସ୍ତ୍ର ବର୍ମଧାରୀ ଚାରିଜଣ ଅନୁଚରଙ୍କ ସହିତ ଦେଖି ବାନରମାନଙ୍କ ମଧ୍ୟରେ ନାନା ସନ୍ଦେହ ସୃଷ୍ଟି ହେଲା । ସୁଗ୍ରୀବ ହନୁମାନଙ୍କୁ କହିଲେ – ଦେଖ, ଏହି ପାଞ୍ଚଜଣ ରାକ୍ଷସ ଆମକୁ ହତ୍ୟା କରିବାକୁ ଆସିଛନ୍ତି । ବାନରମାନେ ପ୍ରକାଣ୍ଡ ବୃକ୍ଷ ଓ ଶିଳାମାନ ଧରି ସୁଗ୍ରୀବଙ୍କୁ କହିଲେ, ଏହି ଦୁର୍ବୃତ୍ତ ରାକ୍ଷସମାନଙ୍କୁ ବଧ କରିବା ପାଇଁ ଆମକୁ ଆଦେଶ ଦିଅନ୍ତୁ ।

କିନ୍ତୁ ବିଭୀଷଣ ସୁଗ୍ରୀବ ଓ ବାନରମାନଙ୍କୁ ଚାହିଁ ଅବିଚଳିତ ଓ ଗମ୍ଭୀର ସ୍ୱରରେ କହିଲେ, ରାବଣ ନାମକ ଦୁର୍ବୃତ୍ତ ରାକ୍ଷସରାଜର ମୁଁ ଅନୁଜ । ମୋର ନାମ ବିଭୀଷଣ । ରାବଣ ଜନସ୍ଥାନରୁ ସୀତାଙ୍କୁ ହରଣ କରିଛି, ଜଟାୟୁଙ୍କୁ ହତ୍ୟା କରିଛି, ଅନାଥା ସୀତାଙ୍କୁ

ସେ ରାକ୍ଷସୀମାନଙ୍କ ଦ୍ୱାରା ଜଗାଇ ରଖିଛି । ରାମଙ୍କ ହସ୍ତରେ ସୀତାଙ୍କୁ ଅର୍ପଣ କରିବା ପାଇଁ ମୁଁ ରାବଣକୁ ବାରମ୍ବାର ପରାମର୍ଶ ଦେଲି । କିନ୍ତୁ ମୃତ୍ୟୁକାମୀ ବ୍ୟକ୍ତି ଯେପରି ଔଷଧ ସେବନ କରେ ନାହିଁ, ସେହିପରି କାଳର ବଶୀଭୂତ ରାବଣ ମୋର ହିତ ବାକ୍ୟ ଗ୍ରହଣ କଲା ନାହିଁ । ସେ ବହୁ କଟୁବାକ୍ୟ ପ୍ରୟୋଗ କରି ମୋତେ ତାର ଭୃତ୍ୟ ପରି ବ୍ୟବହାର କଲା । ମୁଁ ଅପମାନିତ ହୋଇ ମୋର ପୁତ୍ର ପରିବାର ଧନସମ୍ପଦ ଛାଡ଼ିଦେଇ ରାମଙ୍କର ଶରଣାଗତ ହେଉଛି । ତୁମେମାନେ ରାମଙ୍କୁ ଏହା ଜଣାଇଦିଅ ।

ସୁଗ୍ରୀବ ରାମଙ୍କୁ କହିଲେ, ରାବଣର ସାନଭାଇ ବିଭୀଷଣ ତୁମର ଶରଣ ନେବାପାଇଁ ଆସିଛି । ଅତର୍କିତ ଭାବରେ ଶତ୍ରୁ ଆମମାନଙ୍କ ଭିତରେ ପ୍ରବେଶ କରିଛି, ସୁଯୋଗ ପାଇଲେ ଭଲ୍ଲୁକ କାକମାନଙ୍କୁ ବଧ କରିବାପରି ସେ ଆମକୁ ନିଶ୍ଚୟ ହତ୍ୟା କରିବ । ବର୍ତ୍ତମାନ ଆମର ଓ ଶତ୍ରୁପକ୍ଷ ଉଭୟଙ୍କର ବଳ ଓ କୌଶଳ କଳନା କରିବା ଉଚିତ ହେବ । ମନ୍ତ୍ରଣା, ବ୍ୟୂହ ରଚନା, ରାଜନୀତିର ପ୍ରୟୋଗ ଏବଂ ଗୁପ୍ତଚରମାନଙ୍କୁ ପ୍ରେରଣ କରିବା ବିଷୟରେ ଆମେମାନେ ବିଶେଷ ଅବହିତ ହେବା ଉଚିତ । ରାକ୍ଷସମାନେ ବଳବାନ୍, ସେମାନେ ପୁଣି ଇଚ୍ଛାନୁସାରେ ବିଭିନ୍ନ ରୂପ ଧାରଣ କରିପାରନ୍ତି । ଗୋପନରେ ରହି କୁଟନୀତିର ଆଶ୍ରୟ ନେଇ ସେମାନେ ଘୋର ଅନିଷ୍ଟ କରିଥାନ୍ତି । ଏହି ବ୍ୟକ୍ତି ନିଶ୍ଚୟ ରାବଣର ଗୁପ୍ତଚର । ଆମ ମଧ୍ୟରେ ପ୍ରବେଶ କରି ଭେଦଭାବ ଭର୍ତ୍ତି କରିବ କିମ୍ବା ଆମେମାନେ ତାକୁ ବିଶ୍ୱାସ କରି ଅସାବଧାନ ଥିବାବେଳେ ଆମର ଛିଦ୍ର ଅନ୍ୱେଷଣ କରି ଆମକୁ ନିଶ୍ଚୟ ଆଘାତ କରିବ । ଶତ୍ରୁର ଭାଇ ଆମର ସାକ୍ଷାତ ଶତ୍ରୁ; ତାକୁ କିପରି ବିଶ୍ୱାସ କରାଯାଇପାରେ ? ତେଣୁ ନିଷ୍ଠୁର ଶତ୍ରୁର ଏହି ଭ୍ରାତା ଆମର ବଧର ଯୋଗ୍ୟ ।

ରାମ ସୁଗ୍ରୀବଙ୍କ କଥା ଶୁଣି ହନୁମାନ ପ୍ରଭୃତି ଅନ୍ୟ ବାନରମାନଙ୍କୁ ଡାକି କହିଲେ, ସୁଗ୍ରୀବ ଆମର ବୁଦ୍ଧିମାନ ହିତାକାଂକ୍ଷୀ ବନ୍ଧୁ । ସେ ଯାହା କହିଲେ, ତୁମେମାନେ ଶୁଣିଲ । ବର୍ତ୍ତମାନ ତୁମମାନଙ୍କର ମତ ମୁଁ ଜାଣିବାକୁ ଚାହେ । ବାନରମାନେ ନମ୍ର ଭାବରେ ଉତ୍ତର ଦେଲେ – ରାଘବ, ଏ ତ୍ରିଲୋକରେ କୌଣସି ବିଷୟ ନାହିଁ, ଯାହାକି ଆପଣ ଅବହିତ ନୁହନ୍ତି । ସୁହୃଦ୍ ବୋଲି ଆପଣ ଆମମାନଙ୍କୁ ସମ୍ମାନ ଦେବା ଉଦ୍ଦେଶ୍ୟରେ ପଚାରୁଛନ୍ତି, ତେଣୁ ବୁଦ୍ଧିମାନ ସଚିବମାନେ ତାଙ୍କର ମତବ୍ୟକ୍ତ କରନ୍ତୁ । ଅଙ୍ଗଦ କହିଲେ, ବିଭୀଷଣ ଶତ୍ରୁପକ୍ଷରୁ ଆସିଛନ୍ତି । ତାଙ୍କୁ ହଠାତ୍ ବିଶ୍ୱାସ କରିବା ଠିକ୍ ହେବ ନାହିଁ । ତାଙ୍କୁ କିଛିଦିନ ପରୀକ୍ଷା ନିରୀକ୍ଷା ମଧ୍ୟରେ ରଖାଯାଉ । ଗୁରୁତର ଦୋଷ ଦେଖିଲେ ତାଙ୍କୁ ପରିତ୍ୟାଗ କରାଯାଉ । ଯଦି ବହୁ ଗୁଣ ଥାଏ, ତା ହେଲେ ତାଙ୍କୁ ଗ୍ରହଣ କରାଯାଉ । ଶରଭ କହିଲେ, ଚାର ପଠାଇ ବିଭୀଷଣଙ୍କୁ ପରୀକ୍ଷା କରିବା ପରେ ଗ୍ରହଣ କରାଯାଉ । ଜାମ୍ବବାନ କହିଲେ, ଆପଣଙ୍କର ବଦ୍ଧମୂଳ ଶତ୍ରୁ ପାପାଚାରୀ ରାବଣ ନିକଟରୁ ଅସମୟରେ ବିଭୀଷଣ ଆସିଥିବା ଯୋଗୁଁ ସେ ଆମର ଶଙ୍କାର ପାତ୍ର ।

ସମସ୍ତଙ୍କ କଥା ଶୁଣି ସଚିବୋତ୍ତମ ହନୁମାନ ଅର୍ଥଯୁକ୍ତ ବାକ୍ୟରେ ରାମଚନ୍ଦ୍ରଙ୍କୁ କହିଲେ – ରାଜା, ତୁମେ ବୁଦ୍ଧିମାନ, ସମର୍ଥ, ବାକ୍‌ପଟୁ ଓ ଚତୁର । ବୃହସ୍ପତି ମଧ୍ୟ ତୁମକୁ କଥାରେ ବଳିଯାଇ ପାରିବେ ନାହିଁ । ଆପଣଙ୍କର ମନ୍ତ୍ରୀମାନେ ବିଭୀଷଣଙ୍କ ଦୋଷ ଗୁଣ

ପରୀକ୍ଷା ସଂପର୍କରେ ଯାହା କହିଲେ – ମୋତେ ତାହା ଯୁକ୍ତିଯୁକ୍ତ ମନେ ହେଉ ନାହିଁ । ବିଭୀଷଣଙ୍କୁ ଜାଣିବା ପାଇଁ ଚାର ନିଯୁକ୍ତି ଅନାବଶ୍ୟକ । କାରଣ ସେ ଆପଣଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ଶରଣ ଭିକ୍ଷା କରୁଛନ୍ତି । ସେ ହଠାତ୍ ଆସି ପହଞ୍ଚିବାରେ କୌଣସି ଦୋଷ ନାହିଁ । କାରଣ ସେ ରାବଣ ଦ୍ୱାରା ଅପମାନିତ ହୋଇ ତାର ଅନ୍ୟାୟ ଓ ଅନାଚାର ଦେଖି ଏବଂ ତୁମର ବୁଦ୍ଧି ଓ ବଳବିକ୍ରମ ବିଷୟରେ ଅବଗତ ହୋଇ ଏଠାକୁ ଆସିଛନ୍ତି । ଅଜଣା ଅଶୁଣା ବ୍ୟକ୍ତିଙ୍କୁ ପଠାଇ ତାଙ୍କର ମନୋଭାବ ଜାଣିବା କଥା ଯାହା କୁହାଗଲା, ତାହା ଠିକ୍ ନୁହେଁ । ସେମାନେ ତାଙ୍କୁ ଏଣୁତେଣୁ ପଚାରିପାରନ୍ତି, ଯଦ୍ୱାରା ତାଙ୍କର ଶଙ୍କା ଜାତ ହେବ । ଭଲ ମନରେ ଆସିଥିବା ମିତ୍ରକୁ ବୃଥା ପ୍ରଶ୍ନ ପଚାରିବା ଦ୍ୱାରା ତାର କେବଳ ଦୁଃଖ ଜାତ ହୁଏ । ବିଭୀଷଣଙ୍କର ମୁହଁ ଦେଖିଲେ ଓ ଯେପରି ଭାବରେ ସେ ଆସିଛନ୍ତି, ତାହା ବିଚାର କଲେ ତାଙ୍କର କୌଣସି ମନ୍ଦ ଉଦ୍ଦେଶ୍ୟ ଅଛି ବୋଲି ମୋର ମନେ ହେଉ ନାହିଁ । ତାଙ୍କର ମୁଖମଣ୍ଡଳ ପ୍ରସନ୍ନ । ସେ ଲୁଚିଛପି ଆସି ନାହାନ୍ତି । ସେ ସିଧା ସମସ୍ତଙ୍କ ସାମନାରେ ଆସି ଦେଖା ଦେଇଛନ୍ତି । ସତ୍ ବ୍ୟକ୍ତି କେବେହେଲେ କଳୁଷିତ ଚିତ୍ତରେ ଆସେ ନାହିଁ ।

ହନୁମାନ ପୁଣି କହିଲେ, କୌଣସି ବ୍ୟକ୍ତି ନିଜର ମନୋଭାବକୁ ଯେତେ ଗୋପନ ରଖିବାକୁ ଚେଷ୍ଟାକଲେ ମଧ ତାହା ରଖିପାରିବ ନାହିଁ । କୌଣସି ନା କୌଣସି ବାଟରେ ତାହା ବାହାରିପଡ଼ିବ । ବିଭୀଷଣଙ୍କ କଥାରୁ ତାଙ୍କ ଅନ୍ତରରେ କିଛି କୂଟକପଟ ଥିବାଭଳି ଜଣାଯାଉ ନାହିଁ । ଯେଉଁ କାର୍ଯ୍ୟ ଯେତେବେଳେ କରାଯିବାର କଥା ତାହା କରାଗଲେ ତାର ଶୀଘ୍ର ଫଳ ମିଳିଥାଏ । ବିଭୀଷଣ ଜାଣିଛନ୍ତି ତୁମେ ବାଳୀର ସଂହାର କରି ସୁଗ୍ରୀବଙ୍କର ଅଭିଷେକ କରାଇଛ । ରାବଣର ମିଥ୍ୟାଚାର ବିରୋଧରେ ତୁମେ ଯୁଦ୍ଧର ବିପୁଳ ଆୟୋଜନ କରୁଛ । ତେଣୁ ଆପଣଙ୍କ ପକ୍ଷରେ ରହିବା ଦ୍ୱାରା ଅନ୍ୟାୟର ବିରୋଧ କରିବା ସଙ୍ଗେ ସଙ୍ଗେ ସେ ରାଜ୍ୟଲାଭ ମଧ୍ୟ କରିପାରନ୍ତି ।

## ୯୬ ॥ 'ଅଭୟ ଦେବା ମୋର ବ୍ରତ'

ସମସ୍ତଙ୍କର କଥା ଶୁଣିସାରି ରାମ କହିଲେ, ବିଭୀଷଣ ମିତ୍ରଭାବରେ ମୋ ନିକଟକୁ ଆସିଛନ୍ତି । ଯଦିବା ତାଙ୍କର କିଛି ଦୋଷ ଥାଏ, ମୁଁ ତାଙ୍କୁ ପରିତ୍ୟାଗ କରିବି ନାହିଁ । କାରଣ ସଜ୍ଜନ ପକ୍ଷରେ ଏହାହିଁ ଶ୍ରେୟ ପନ୍ଥା ।

ସୁଗ୍ରୀବ ଏଥିରେ ସମ୍ମତ ନ ହୋଇ କହିଲେ, ଏପରି ବିପଦରେ ପଡ଼ିଥିବା ଭାଇଙ୍କୁ ଯେ ଛାଡ଼ି ଚାଲି ଆସିପାରିଲା, ସେ ଅନ୍ୟକୁ ବିପଦ ସମୟରେ ଯେ ଛାଡ଼ି ଚାଲି ନ ଯିବ, ତାହା କିଏ କହିପାରେ ? ରାମ ଲକ୍ଷ୍ମଣଙ୍କୁ କହିଲେ, ବାନରରାଜ ଯାହା କହିଲେ ମୁଁ ତାର ଉତ୍ତର ଦେଉଛି । ରାଜାମାନଙ୍କ ମଧ୍ୟରେ ଭ୍ରାତୃବିବାଦ ଅଛି । ନିଜର ଜ୍ଞାତି ଓ ପ୍ରତିବେଶୀ ଜ୍ଞାତିମାନଙ୍କୁ ସେମାନେ ସନ୍ଦେହ କରନ୍ତି । ଏପରିକି ରାଜାମାନଙ୍କର ମଙ୍ଗଳକାମୀ ଜ୍ଞାତିମାନେ ମଧ୍ୟ ସନ୍ଦେହଭାଜନ ହୋଇ ରହିଥାନ୍ତି । ତେଣୁ ରାବଣ ବିଭୀଷଣଙ୍କୁ ସନ୍ଦେହ କରିବାରେ

କୌଣସି ବିଚିତ୍ରତା ନାହିଁ । ବିଭୀଷଣ ଆସିବା ଦ୍ୱାରା ଆମେ ଶତ୍ରୁ ମଧ୍ୟରେ ଭେଦ ସୃଷ୍ଟି କରିବା । ଯଦି ନିଜ ସ୍ୱାର୍ଥରେ ରାଜ୍ୟଲାଭ ପାଇଁ ସେ ଆସିଥାନ୍ତି, ତା ହେଲେ ମଧ୍ୟ କ୍ଷତି ନାହିଁ । ମିତ୍ରବର, ସବୁ ଭାଇମାନେ ଭରତ ନୁହନ୍ତି କିମ୍ବା ସବୁ ମିତ୍ର ତୁମ ପରି ନୁହନ୍ତି ।

ତଥାପି ସୁଗ୍ରୀବଙ୍କର ହୃଦ୍‌ବୋଧ ହେଲା ନାହିଁ । ସେ ଲକ୍ଷ୍ମଣଙ୍କ ସହିତ ଉଠିପଡ଼ି କହିଲେ – ରାମ, ଆପଣ ସମସ୍ତଙ୍କୁ କ୍ଷମା ଦେଇପାରନ୍ତି । କିନ୍ତୁ ଏ ରାକ୍ଷସ ରାବଣ ଦ୍ୱାରା ପ୍ରେରିତ ହୋଇ ଏଠାକୁ ଆସିଛି । ଏହି କୂଟବୁଦ୍ଧିଯୁକ୍ତ ରାକ୍ଷସ ପ୍ରଥମେ ଆମର ବିଶ୍ୱାସ ଜନ୍ମାଇ ପରେ ଆପଣଙ୍କୁ, ଲକ୍ଷ୍ମଣଙ୍କୁ ଓ ମୋତେ ହତ୍ୟା କରିବ । ଏ ହେଉଛି ନୃଶଂସ ରାବଣର ଭାଇ । ତେଣୁ ତାର ମନ୍ତ୍ରୀମାନଙ୍କ ସହିତ ତାକୁ ବଧ କରିବା ଉଚିତ ହେବ ।

ରାମ କିଛି ସମୟ ଚିନ୍ତା କରି କହିଲେ, ରାକ୍ଷସ ବିଭୀଷଣ ଦୋଷୀ ହେଉ ବା ନିର୍ଦ୍ଦୋଷ ହେଉ, ସେ ମୋର ରକ୍ଷଣୀୟ । ସେ କେବେ ମୋର ଅନିଷ୍ଟ କରିପାରିବ ନାହିଁ । ମୁଁ ଇଚ୍ଛା କଲେ ଭୂତଳରେ ଯେତେ ରାକ୍ଷସ ଅଛନ୍ତି ସମସ୍ତଙ୍କୁ ଅଙ୍ଗୁଳି ଅଗ୍ରରେ ନିପାତ କରିପାରିବି । କିମ୍ବଦନ୍ତୀ ଅଛି ଯେ ଏକ କପୋତ ଶରଣାଗତ ଶତ୍ରୁକୁ ନିଜର ମାଂସ ଦେଇ ତୃପ୍ତ କରିଥିଲା । ନିଜର ପ୍ରାଣ ବିନିମୟରେ ଶରଣାଗତ ଶତ୍ରୁକୁ ଆଶ୍ରୟ ଦେବା ସାଧୁ ବ୍ୟକ୍ତିର କର୍ତ୍ତବ୍ୟ । ମୋର ବ୍ରତ – 'ତୁମର ହେଲି' ବୋଲି କହି ଯଦି କେହି ମୋର ଶରଣାପନ୍ନ ହୁଏ, ମୁଁ ସମସ୍ତ ପ୍ରାଣୀଙ୍କଠାରୁ ତାକୁ ନିଶ୍ଚୟ ଅଭୟ ପ୍ରଦାନ କରିବି ।

**ସକୃଦେବ ପ୍ରପନ୍ନାୟ ତବାସ୍ମୀତି ଚ ଯାଚତେ**
**ଅଭୟଂ ସର୍ବଭୂତେଭ୍ୟୋ ଦଦାମ୍ୟେତଦ୍ ବ୍ରତଂ ମମ ।**

ବିଭୀଷଣଙ୍କୁ ଅଭୟ ଦେଇ ତାଙ୍କୁ ପାଖକୁ ଆଣିବାପାଇଁ ରାମ ପରାମର୍ଶ ଦେଲେ ।

ବିଭୀଷଣ ତାଙ୍କର ଅନୁଚରଙ୍କ ସହିତ ଅନ୍ତରୀକ୍ଷରୁ ଭୂତଳକୁ ଆସି ରାମଙ୍କର ଚରଣବନ୍ଦନା କରି କହିଲେ, ମୁଁ ଅଗ୍ରଜ ରାବଣ ଦ୍ୱାରା ଅପମାନିତ ହୋଇ ସମସ୍ତ ପ୍ରାଣୀଙ୍କର ଆଶ୍ରୟଦାତା ଆପଣଙ୍କର ଶରଣ ନେଉଛି । ମୁଁ ଲଙ୍କାପୁରୀକୁ ପରିତ୍ୟାଗ କରିଚି । ଜ୍ଞାତି, ମିତ୍ର ଓ ଧନସଂପଦ ତ୍ୟାଗ କରିଛି । ଏବେ ମୋର ରାଜ୍ୟ, ଜୀବନ, ସୁଖ, ସବୁ ଆପଣଙ୍କର ଅନୁଗ୍ରହ ଉପରେ ନିର୍ଭର କରେ ।

ରାମ ବିଭୀଷଣଙ୍କୁ ସାନ୍ତ୍ୱନା ଦେଲେ ଓ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ଚାହିଁ କହିଲେ, ରାକ୍ଷସମାନଙ୍କର ବଳାବଳ ବିଷୟରେ ମୁଁ ଜାଣିବାକୁ ଚାହୁଁଛି । ବିଭୀଷଣ କହିଲେ, ରାଜପୁତ୍ର, ବ୍ରହ୍ମାଙ୍କ ବରରେ ଦଶାନନ ରାବଣ ଗନ୍ଧର୍ବ, ଉରଗ ଓ ପକ୍ଷୀ ପ୍ରଭୃତି ସବୁ ପ୍ରାଣୀଙ୍କର ଅବଧ୍ୟ । ମୋର ମଧ୍ୟମଭ୍ରାତା କୁମ୍ଭକର୍ଣ୍ଣ ତେଜସ୍ୱୀ, ବଳୀୟାନ୍ ଓ ଯୁଦ୍ଧରେ ଇନ୍ଦ୍ରଙ୍କର ସମକକ୍ଷ । ରାବଣର ସେନାପତି ପ୍ରହସ୍ତ କୈଳାସ ପର୍ବତରେ ଯୁଦ୍ଧରେ ମଣିଭଦ୍ରକୁ ପରାସ୍ତ କରିଥିଲେ । ପୁତ୍ର ଇନ୍ଦ୍ରଜିତ୍ ଇନ୍ଦ୍ରଙ୍କୁ ପରାସ୍ତ କରିଥିଲା । ସେ ମାୟାଯୁଦ୍ଧରେ ନିପୁଣ । ସେ ଅଗ୍ନିଦେବତାଙ୍କୁ ତୃପ୍ତ କରି ସଂପୂର୍ଣ୍ଣ ଅଦୃଶ୍ୟ ହୋଇ ଶତ୍ରୁମାନଙ୍କୁ ନିହତ କରେ । ମହୋଦର, ମହାପାର୍ଶ୍ୱ ଏବଂ ଅକମ୍ପନ ଆଦି ରାବଣର

ଯୁଦ୍ଧଦୁର୍ମଦ ସେନାପତିମାନେ ଇନ୍ଦ୍ରାଦି ଲୋକପାଳଙ୍କ ତୁଲ୍ୟ ଯୋଦ୍ଧା । ରାବଣ ଅପରିମିତ ସେନାର ଅଧିକାରୀ ଏବଂ ସେମାନେ ସମସ୍ତେ ମାଂସଶୋଣିତ-ଭୋଜୀ ।

ରାମ କହିଲେ – ବିଭୀଷଣ, ରାବଣର ବଳାବଳ ଶୁଣି ମୁଁ ତୁମକୁ ପ୍ରତିଶ୍ରୁତି ଦେଉଛି ଯେ ଯୁଦ୍ଧରେ ରାବଣକୁ ସବଂଶ ନିହତ କରି ତୁମକୁ ରାଜା କରିବି । ରାବଣ ରସାତଳ, ପାତାଳ ବା ବ୍ରହ୍ମାଙ୍କ ପାଖରେ ଥିଲେ ମଧ୍ୟ ରକ୍ଷା ପାଇପାରିବ ନାହିଁ । ବିଭୀଷଣ ରାମଚନ୍ଦ୍ରଙ୍କର ଚରଣବନ୍ଦନା କରି କହିଲେ, ରାକ୍ଷସଙ୍କର ନିଧନ ଓ ଲଙ୍କାଜୟ ପାଇଁ ମୁଁ ଆପଣଙ୍କୁ ସବୁମତେ ସାହାଯ୍ୟ କରିବି ।

ରାମ ବିଭୀଷଣଙ୍କୁ ଆଲିଙ୍ଗନ କରି ଲକ୍ଷ୍ମଣଙ୍କୁ କହିଲେ, ସମୁଦ୍ରରୁ ଜଳ ଆଣ । ମୁଁ ଏହିକ୍ଷଣି ବିଭୀଷଣଙ୍କୁ ରାକ୍ଷସମାନଙ୍କର ରାଜାରୂପେ ଅଭିଷିକ୍ତ କରିବି । ସଙ୍ଗେ ସଙ୍ଗେ ସମୁଦ୍ରଜଳରେ ବିଭୀଷଣଙ୍କ ଅଭିଷେକ ସଂପନ୍ନ ହେଲା ଏବଂ ବାନରମାନେ ସାଧୁ ସାଧୁ ବୋଲି ଆନନ୍ଦ ଧ୍ୱନି କଲେ ।

ହନୁମାନ, ସୁଗ୍ରୀବ ଓ ବିଭୀଷଣଙ୍କୁ ଡାକି ରାମ କହିଲେ, ଏହି ବିଶାଳ ସାଗରକୁ ଆମେ କିପରି ଲଂଘନ କରିପାରିବା ତାର ଉପାୟ ଚିନ୍ତା କର । ବିଭୀଷଣ କହିଲେ – ରାମ, ସମୁଦ୍ରର ଶରଣ ନିଅନ୍ତୁ । ଆପଣଙ୍କର ପୂର୍ବପୁରୁଷମାନେ ସାଗର ଖନନ କରିଥିବା ଯୋଗୁଁ ସମୁଦ୍ର ନିଶ୍ଚୟ ଆପଣଙ୍କର କାର୍ଯ୍ୟରେ ସାହାଯ୍ୟ କରିବେ । ସୁଗ୍ରୀବ ଓ ଲକ୍ଷ୍ମଣ କହିଲେ, ବିଭୀଷଣ ସାଧୁ ପ୍ରସ୍ତାବ ଦେଇଛନ୍ତି । ସମୁଦ୍ର ମଧ୍ୟରେ ସେତୁ ବନ୍ଧନ ନ କରି ଇନ୍ଦ୍ରାଦି ଦେବତା ମଧ୍ୟ ଲଙ୍କାରେ ପ୍ରବେଶ କରିପାରିବେ ନାହିଁ । ବର୍ତ୍ତମାନ ସେତୁବନ୍ଧନ ପାଇଁ ସମୁଦ୍ରଙ୍କର ସାହାଯ୍ୟ ଭିକ୍ଷା କରନ୍ତୁ ।

ସଙ୍ଗେ ସଙ୍ଗେ ରାମ ସମୁଦ୍ରକୂଳରେ କୁଶ ବିଛାଇ ସମୁଦ୍ରକୁ ଆରାଧନା କଲେ ।

## ୯୭ ।। ରାବଣର ଦୂତ

ଶାର୍ଦ୍ଦୂଳ ନାମରେ ରାବଣର ଏକ ଚାର ସୁଗ୍ରୀବଙ୍କ ରକ୍ଷିତ ବିଶାଳ ବାନରସେନାକୁ ଦେଖି ରାବଣକୁ କହିଲା, ବିପୁଳ ବାନର ଓ ଭଲ୍ଲୁକ ବାହିନୀ ଲଙ୍କା ଅଭିମୁଖରେ ଅଗ୍ରସର ହେଉଛନ୍ତି । ସେମାନେ ଦ୍ୱିତୀୟ ସମୁଦ୍ର ପରି ଦେଖାଯାଉଛନ୍ତି । ସେହି ସେନା ଦଶଯୋଜନବ୍ୟାପୀ ଆକାଶକୁ ଆଚ୍ଛନ୍ନ କରିଛି । ରାମଲକ୍ଷ୍ମଣ ସୀତାଙ୍କୁ ଖୋଜି ସମୁଦ୍ର କୂଳରେ ପହଞ୍ଚିଗଲେଣି । ଆପଣ ଦୂତମାନଙ୍କୁ ପଠାଇ ଶୀଘ୍ର ଏ ବିଷୟ ଅନୁସନ୍ଧାନ କରନ୍ତୁ ଏବଂ ସାମ, ଦାନ, ଭେଦ କି ନୀତି ପ୍ରୟୋଗ କରିବାକୁ ହେବ, କର ।

ରାବଣ ଶୁକ ନାମକ ରାକ୍ଷସକୁ ଆଦେଶ ଦେଇ କହିଲା – ଶୁକ, ତୁମେ ଶୀଘ୍ର ଯାଇ ସୁଗ୍ରୀବଙ୍କୁ କୋମଳ ଓ ମଧୁର ସ୍ୱରରେ କହିବ – ବାନରରାଜ, ତୁମେ ରାକ୍ଷସରାଜଙ୍କର ପୁତ୍ର ଏବଂ ସ୍ୱୟଂ ବଳୀୟାନ୍ । ତୁମର ମୋ ସହିତ କୌଣସି ବିବାଦ ବା କଳହ ନାହିଁ । ତୁମେ ମୋର ଭ୍ରାତୃତୁଲ୍ୟ । ମୁଁ ରାଜପୁତ୍ର ରାମଙ୍କ ଭାର୍ଯ୍ୟାକୁ ଅପହରଣ କରିଛି । କିନ୍ତୁ

ତୁମର ସେଥିରେ ଯାଏଆସେ କେତେ ? ତୁମେ କିଷ୍କିନ୍ଧ୍ୟାକୁ ଫେରିଯାଅ । ନର କ'ଣ ଦେବତାମାନଙ୍କ ସହିତ ଆସିଲେ ମଧ୍ୟ ବାନରମାନେ ଲଙ୍କାରେ ପ୍ରବେଶ କରିପାରିବେ ନାହିଁ ।

ଶୁକ ଏକ ପକ୍ଷୀ ରୂପ ଧରି ଉଡ଼ିଗଲା ଓ ସମୁଦ୍ର ଅତିକ୍ରମ କରିବା ପରେ ଆକାଶ ପଥରେ ରହି ସୁଗ୍ରୀବଙ୍କୁ ରାବଣର ବାର୍ତ୍ତା ଜଣାଇଲା । ତତ୍‌କ୍ଷଣାତ୍ ବାନରମାନେ ଆକାଶକୁ ଉଠିଯାଇ ତାକୁ ଧରିପକାଇଲେ ଓ ପ୍ରହାର କରି ତଳକୁ ଖସାଇଦେଲେ । ଶୁକ ରାମଙ୍କୁ ନିବେଦନ କରି କହିଲା– କାକୁତ୍ସ୍ଥ ଦୂତକୁ ହତ୍ୟା କରନ୍ତୁ ନାହିଁ । ମୁଁ ରାକ୍ଷସରାଜଙ୍କର ଦୂତ ଭାବରେ ସେ ଯାହା କହିଛନ୍ତି, ତାହାହିଁ କହିଛି । ପ୍ରଭୁଙ୍କର ଆଦେଶ ବହିର୍ଭୂତ ମୁଁ କୌଣସି କାର୍ଯ୍ୟ କରି ନାହିଁ । ମୁଁ ଦଣ୍ଡର ଯୋଗ୍ୟ ନୁହେଁ । ରାମ ଶୁକକୁ ଛାଡ଼ିଦେବା ପାଇଁ ବାନରମାନଙ୍କୁ ଆଦେଶ ଦେଲେ । ଶୁକ ତତ୍‌କ୍ଷଣାତ୍ ଦୂର ଆକାଶକୁ ଉଡ଼ିଯାଇ ସୁଗ୍ରୀବଙ୍କୁ କହିଲା, ମୁଁ ରାବଣଙ୍କୁ ତାଙ୍କ ବାର୍ତ୍ତାର କି ଉତ୍ତର ଦେବି କହନ୍ତୁ । ସୁଗ୍ରୀବ କହିଲେ, ତୁମେ ରାବଣକୁ କହିବ– ହେ ରାବଣ, ତୁ ମୋର ମିତ୍ର ନୋହୁ, ପ୍ରିୟ ନୋହୁ ବା ଉପକାରୀ ବନ୍ଧୁ ନୋହୁ । ତୁ ରାମଙ୍କର ଶତ୍ରୁ ହୋଇଥିବାରୁ ମୋର ଶତ୍ରୁ ଓ ବାଳୀ ପରି ବଧର ଯୋଗ୍ୟ । ମୁଁ ବିଶାଳ ସେନା ସହିତ ଯାଇ ତୋତେ ସବାନ୍ଧବ ସଂହାର କରିବି ଓ ଲଙ୍କାକୁ ଭସ୍ମ କରିବି ।

ଅଙ୍ଗଦ କହିଲେ, ଏ ଦୂତ ନୁହେଁ ଗୁପ୍ତଚର । ଏ ଆମର ସୈନ୍ୟବଳ କଳନା କରିବାକୁ ଆସିଛି । ଏହାକୁ ଛାଡ଼ିଦେବା ଠିକ୍ ହେବ ନାହିଁ । ସେ ଉପରକୁ ଡେଇଁପଡ଼ି ପୁଣି ଶୁକକୁ ବାନ୍ଧିଆଣିଲେ । ଶୁକ ଅନାଥ ପରି କ୍ରନ୍ଦନ କରି କହିଲା, ବାନରମାନେ ବଳପୂର୍ବକ ମୋର ପକ୍ଷଚ୍ଛେଦନ କରୁଛନ୍ତି । ମୁଁ ଯଦି ପ୍ରାଣ ହରାଏ, ତା' ହେଲେ ମୋର ସମସ୍ତ ପାପ ରାମଙ୍କୁ ଲାଗିବ । ଶୁକର କରୁଣ କ୍ରନ୍ଦନ ଶୁଣି ରାବଣ ଦୂତକୁ ମୁକ୍ତି ଦେବାପାଇଁ ରାମ ବାନରମାନଙ୍କୁ ପରାମର୍ଶ ଦେଲେ । କିନ୍ତୁ ବାନରମାନେ ଲଙ୍କାରେ ପହଞ୍ଚିବା ପର୍ଯ୍ୟନ୍ତ ଶୁକ ବନ୍ଦୀ ହୋଇ ରହିଲା ।

## ୯୮ ॥ ସେତୁ ବନ୍ଧନ

ରାମ ସମୁଦ୍ରକୂଳରେ କୁଶ ଉପରେ ବସି ସମୁଦ୍ରକୁ ଉପାସନା କଲେ । ସେ ସମୁଦ୍ରକୂଳରେ ଧାରଣା ଦେଇ ତିନିରାତି ଶୋଇରହିଲେ । କିନ୍ତୁ ଯେତେ ଉପାସନା ଓ ଅର୍ଚ୍ଚନା କଲେ ମଧ୍ୟ ସମୁଦ୍ର ପକ୍ଷରୁ କୌଣସି ଉତ୍ତର ମିଳିଲା ନାହିଁ । କ୍ରୋଧରେ ରାମଙ୍କର ଚକ୍ଷୁ ରକ୍ତବର୍ଣ୍ଣ ହୋଇଗଲା । ସେ ଲକ୍ଷ୍ମଣଙ୍କୁ କହିଲେ, ସମୁଦ୍ର ତାର ନିଜରୂପରେ ପ୍ରକାଶିତ ହେଉ ନାହିଁ । ଏହା କେବଳ ତାର ଗର୍ବର ପରିଚୟ ଦେଉଛି । ଆମେ ଶାନ୍ତି, କ୍ଷମା, ସରଳତା ଆଦି ଗୁଣର ପ୍ରଚାର କରୁଛେ । ସେଥିପାଇଁ ଆମକୁ ବେଖାତିର କରାଯାଉଛି । କିନ୍ତୁ ଯେ ଦଣ୍ଡ ଦେଇ ଜାଣେ ସେହି ଉଦ୍ଦଣ୍ଡ ବ୍ୟକ୍ତିକୁ ସମସ୍ତେ ଭୟ କରନ୍ତି ଓ ସମ୍ମାନ ଦିଅନ୍ତି । ତେଣୁ ଆଉ ଏ ସମୁଦ୍ରକୁ ପୂଜା ବା ପ୍ରାର୍ଥନା କରି ଲାଭ ନାହିଁ । ମୋର ନିକ୍ଷିପ୍ତ

ଶରରେ ଆଜି ସମୁଦ୍ରର ଗର୍ବ ଚୂର୍ଣ୍ଣ କରିବି । ଆଜି ମୁଁ ଶର ଦ୍ୱାରା ଶଂଖ-ମଗର-ମତ୍ସ୍ୟଯୁକ୍ତ ଏହି ସମୁଦ୍ରକୁ ଶୋଷଣ କରିବି । ଆଜି ସହସ୍ର ଊର୍ମିମାଳାକୁଳ ଏହି ସମୁଦ୍ରକୁ ମୁଁ ବ୍ୟାକୁଳିତ ଓ ବିକ୍ଷୋଭିତ କରିବି । ଆଜି ଏ ସମୁଦ୍ର ବିକ୍ଷୁବ୍‌ଧ ହୋଇ ବେଳାଭୂମି ଲଂଘନ କରିବ ।

ରାମ ପ୍ରଳୟାଗ୍ନି ପରି କ୍ରୋଧରେ ଜଳିଉଠି ତାଙ୍କର ଧନୁର ଜ୍ୟା ଘୋଷରେ ଜଗତକୁ କମ୍ପିତ କଲେ । ଇନ୍ଦ୍ର ବଜ୍ରାଘାତ କରିବା ପରି ଶରମାନ ତାଙ୍କ ଧନୁରୁ ମୁକ୍ତ ହୋଇ ସମୁଦ୍ରକୁ ଆଲୋଡ଼ିତ କରିବାକୁ ଲାଗିଲେ । ସମୁଦ୍ରର ତରଙ୍ଗମାନଙ୍କରୁ ଧୂମ ନିର୍ଗତ ହେଲା । ସବୁ ତରଙ୍ଗ ମିଶି ଗୋଟିଏ ଉତ୍ତାଳ ଘୂର୍ଣ୍ଣାୟମାନ ତରଙ୍ଗରେ ପରିଣତ ହେଲା । ମୀନ, ମକର, ପନ୍ନଗ ଆଦି ଜଳଚର ଜୀବମାନେ ବ୍ୟଥିତ ହେଲେ । ପାତାଳତଳବାସୀ ଦାନବମାନେ ତ୍ରସ୍ତ ହେବାକୁ ଲାଗିଲେ । ସମୁଦ୍ରରୁ ଘୋର ରବ ସୃଷ୍ଟି ହେଲା । ପୁଣି ରାମ ଧନୁକୁ ଆକର୍ଷଣ କରୁଥିବାର ଦେଖି ଲକ୍ଷ୍ମଣ ତାଙ୍କୁ ନିବାରଣ କରି କହିଲେ, ଅନ୍ତରୀକ୍ଷରେ ବ୍ରହ୍ମର୍ଷି ଓ ଦେବର୍ଷିମାନେ ରହି ଆଉ ଏପରି କର ନାହିଁ ବୋଲି ନିବାରଣ କରୁଛନ୍ତି । ତୁମ ପରି ବ୍ୟକ୍ତି କ୍ରୋଧର ବଶବର୍ତ୍ତୀ ହେବା ଉଚିତ ନୁହେଁ ।

ରାମ ସମୁଦ୍ରକୁ କଠୋର ବାକ୍ୟରେ କହିଲେ – ସମୁଦ୍ର, ମୁଁ ତୋତେ ମୁହୂର୍ତ୍ତକ ମଧ୍ୟରେ ଶୁଷ୍କ କରିଦେଇପାରେ । ଏହା କହି ରାମ ତାଙ୍କ ବିଶାଳ ଧନୁରେ ପ୍ରଚଣ୍ଡ ବ୍ରହ୍ମାସ୍ତ୍ରକୁ ସଂଯୋଗ କରି ଜ୍ୟା ଆକର୍ଷଣ କରିବାରୁ ତାର ଶବ୍ଦରେ ପର୍ବତ ସବୁ ପ୍ରକମ୍ପିତ ହେଲା । ଅନ୍ଧକାର ଚତୁର୍ଦ୍ଦିଗକୁ ଆଚ୍ଛାଦିତ କଲା । ଶତ ଶତ ଉଲ୍‌କାପାତ ହେବାକୁ ଲାଗିଲା । ପ୍ରବଳ ପ୍ରଭଞ୍ଜନ ପ୍ରବାହିତ ହେଲା । ପୃଥିବୀ ଫାଟିଯିବା ପରି ମନେ ହେଲା । ସମୁଦ୍ରର ଜଳପ୍ରବାହ ଏକ ଯୋଜନ ପର୍ଯ୍ୟନ୍ତ ବେଳାଭୂମିକୁ ଅତିକ୍ରମ କରି ମାଡ଼ିଆସିଲା । ବଜ୍ର, ବିଦ୍ୟୁତ୍ ଭୟଙ୍କର ପବନ ଓ ପ୍ରାଣୀମାନଙ୍କର ଚିତ୍କାର ଚତୁର୍ଦ୍ଦିଗରେ ମହାଭୟ ଉତ୍ପାଦନ କଲା ।

ବୈଦୂର୍ଯ୍ୟତୁଲ୍ୟ ସ୍ନିଗ୍‌ଧଶରୀର ସାଗରଦେବତା ରତ୍ନମାଳା ଧାରଣ କରି ସମୁଦ୍ର ମଧ୍ୟରୁ ଆବିର୍ଭୂତ ହେଲେ ଓ ରାମଙ୍କ ପାଖକୁ ଆସି କୃତାଞ୍ଜଳି ହୋଇ କହିଲେ, ପୃଥିବୀ, ବାୟୁ, ଆକାଶ, ଜଳ ଏବଂ ତେଜ ସେମାନେ ସର୍ବଦା ନିଜର ମାର୍ଗକୁ ଆଶ୍ରୟ କରି ରହିଥାନ୍ତି । ମୁଁ ଯେ ଅତ୍ୟନ୍ତ ଗଭୀର ଏବଂ ସହଜରେ ମୋତେ କିଏହେଲେ ଲଂଘନ କରିପାରିବେ ନାହିଁ, ତାହାହିଁ ମୋର ସ୍ୱକୀୟ ପ୍ରକୃତି । ମୁଁ କାମ, ଲୋଭ, ଭୟ ବା ବିବାଦର ବଶବର୍ତ୍ତୀ ହେଲେ ମୋର ଆଶ୍ରିତ ପଥରୁ ବିଚ୍ୟୁତ ହେବି । କିନ୍ତୁ ତୁମେ ବାନରସେନା ସହିତ ଯେପରି ମୋତେ ସହଜରେ ପାର ହୋଇପାରିବ, ମୁଁ ତାର ବ୍ୟବସ୍ଥା କରିଦେବି । କୁମ୍ଭୀର, ମକର ଆଦି ଜଳଜନ୍ତୁମାନେ ପାର ହେବାବେଳେ ବାନରମାନଙ୍କୁ ଆକ୍ରମଣ କରିବେ ନାହିଁ ଏବଂ ଯେଉଁ ଅଂଶ ଦେଇ ପାର ହେବେ ତାହା ସ୍ଥଳ ସଦୃଶ ହୋଇଯିବ ।

ରାମ କହିଲେ – ସମୁଦ୍ର, ମୋର ଏହି ବ୍ରହ୍ମଶର ଅମୋଘ । ବର୍ତ୍ତମାନ ମୁଁ ଏହାକୁ କେଉଁଠାରେ ନିପାତ କରିବି ? ସମୁଦ୍ର କହିଲେ, ଉତ୍ତର ଦିଗରେ ମୋର ଏକ ଜଳଶୂନ୍ୟ ସ୍ଥାନ ଅଛି, ତାର ନାମ ଦ୍ରୁମକୂଲ୍ୟା । ସେଠାରେ ଭୀଷଣାକୃତି ପାପୀ ଆଭୀରଜାତୀୟ

ଦସ୍ୟୁମାନେ ଅଛନ୍ତି । ସେମାନଙ୍କ ପାପ ମୋ ପକ୍ଷରେ ଅସହ୍ୟ । ତୁମେ ସେହିମାନଙ୍କ ଉପରେ ତୁମର ବାଣ ନିକ୍ଷେପ କର । ରାମଙ୍କର ଶର ସେଠାରେ ପଡ଼ି ତାହାକୁ ଏକ ଜନଶୂନ୍ୟ ମରୁଭୂମିରେ ପରିଣତ କରିଦେଲା । ବାଣାଘାତରେ ଯେଉଁ ସ୍ଥାନରେ ଏକ ବିବର ହୋଇ ଜଳରାଶି ଉତ୍‌ଥିତ ହେଲା, ତାହାର ନାମ ହେଲା ବ୍ରଣକୂପ । ରାମଙ୍କ ବରରେ ସେହି ମରୁପ୍ରାନ୍ତର ପରେ ଏକ ଉର୍ବର ଭୂମିରେ ପରିଣତ ହେଲା ଏବଂ ତାହା ଫଳମୂଳ ଓ ରସପୂର୍ଣ୍ଣ ଔଷଧୀୟ ବୃକ୍ଷରେ ପୂର୍ଣ୍ଣ ହେଲା ।

ଏହି ଅଦ୍‌ଭୁତ କାର୍ଯ୍ୟ ସାଧନ ପରେ ସମୁଦ୍ର ରାମଙ୍କୁ କହିଲେ, ତୁମ ସହିତ ଯେଉଁ ନଳ ନାମରେ ବାନର ଅଛନ୍ତି, ସେ ବିଶ୍ୱକର୍ମାଙ୍କର ଔରସଜାତ ପୁତ୍ର । ପିତାଙ୍କର ବଳରେ ବଳୀୟାନ୍ ସେହି ଉତ୍ସାହୀ ବାନର ମୋ ଉପରେ ଏକ ସେତୁ ନିର୍ମାଣ କରନ୍ତୁ । ସେ ତାଙ୍କ ପିତାଙ୍କ ପରି ଦକ୍ଷ ଶିଳ୍ପୀ । ମୁଁ ତାଙ୍କ ନିର୍ମିତ ସେତୁକୁ ଧାରଣ କରିପାରିବି । ଏହା କହି ସମୁଦ୍ର ଅନ୍ତର୍ଦ୍ଧାନ ହୋଇଯିବା ପରେ ବାନରଶ୍ରେଷ୍ଠ ନଳ କହିଲେ, ସମୁଦ୍ର ଯାହା କହିଛନ୍ତି ସତ୍ୟ । ମୋର ପିତା ବିଶ୍ୱକର୍ମାଙ୍କଠାରୁ ଶକ୍ତି ଲାଭକରି ମୁଁ ସମୁଦ୍ର ଉପରେ ଏକ ବିସ୍ତୀର୍ଣ୍ଣ ସେତୁ ନିର୍ମାଣ କରିପାରିବି । ଦଣ୍ଡ ହେଉଛି ପୁରୁଷର ଶ୍ରେଷ୍ଠ ଶକ୍ତି । ଅକୃତଜ୍ଞ ବ୍ୟକ୍ତିମାନଙ୍କଠାରେ କ୍ଷମା ଆଚରଣ, ଶାନ୍ତିବାଚନ ବା ଦାନ କାର୍ଯ୍ୟକାରୀ ହୁଏ ନାହିଁ । ବର୍ତ୍ତମାନ ରାମଙ୍କର ଦଣ୍ଡ ଭୟରେ ଅଗାଧ ସମୁଦ୍ର ସେତୁ ନିର୍ମାଣ ପାଇଁ ସ୍ୱଚ୍ଛଜଳ ହୋଇଗଲେ । ବାନରମାନେ ଆଜିହିଁ ସେତୁ ବନ୍ଧନ କାର୍ଯ୍ୟ ଆରମ୍ଭ କରନ୍ତୁ । ମୋର ଶକ୍ତି ସଂପର୍କରେ ଆଗରୁ ମୁଁ କାହାକୁ କହୁ ନ ଥିଲି, ସମୁଦ୍ର କହିବାରୁ ଆପଣମାନେ ଜାଣିଲେ ।

ସେତୁ ବନ୍ଧନ ପାଇଁ ଶତ ସହସ୍ର ସଂଖ୍ୟାରେ ବାନର ବିଶାଳ ବୃକ୍ଷ ଭଗ୍ନ କରି ସମୁଦ୍ରରେ ପକାଇଲେ । ହସ୍ତୀତୁଲ୍ୟ ପ୍ରକାଣ୍ଡ ଶିଳାମାନ ଯନ୍ତ୍ର ସାହାଯ୍ୟରେ ବୋହି ଆଣିଲେ । ତୃଣ, କାଷ୍ଠ ଓ ଶିଳାମାନ ବିପୁଳ ସଂଖ୍ୟାରେ ଜମାହେଲା ଏବଂ ନଳଙ୍କ ନିର୍ଦ୍ଦେଶରେ ସେତୁ ନିର୍ମିତ ହେବାକୁ ଲାଗିଲା । ପାଞ୍ଚଦିନ ମଧ୍ୟରେ ସୁବେଳ ପର୍ବତ ପର୍ଯ୍ୟନ୍ତ ଶହେ ଯୋଜନ ଦୀର୍ଘ ଓ ଦଶ ଯୋଜନ ପ୍ରସ୍ଥ ବିଶାଳ ସେତୁ ବନ୍ଧା ହୋଇଗଲା । ବିଭୀଷଣ ଗଦାଧାରଣ କରି ମନ୍ତ୍ରୀମାନଙ୍କ ସହିତ ସମୁଦ୍ର କୂଳରେ ଜଗିରହିଲେ ଓ ରାବଣର ଗୁପ୍ତଚର ଓ ଆକ୍ରମଣକାରୀମାନଙ୍କୁ ଚିହ୍ନିବା ଉଦ୍ଦେଶ୍ୟରେ ତାଙ୍କୁ ନିଯୁକ୍ତ କରାଗଲା । ତା'ପରେ ରାମ ଲକ୍ଷ୍ମଣ ହନୁମାନ ଓ ଅଙ୍ଗଦଙ୍କର କାନ୍ଧରେ ବସି ବାନରସେନାର ଆଗେ ଆଗେ ଚାଲିଲେ । ବାନରବାହିନୀ ସମୁଦ୍ର ପାର ହେଉଥିବାବେଳେ ସେମାନଙ୍କ କୋଳାହଳରେ ସମୁଦ୍ର ଗର୍ଜନ ଲୁଚିଗଲା । କେହି ନିଜର ବିକ୍ରମ ଦେଖାଇ ଆକାଶମାର୍ଗରେ ମଧ୍ୟ ଯାତ୍ରା କରୁଥିଲେ । ଏହିପରି ନଳଙ୍କ ନିର୍ମିତ ସେତୁବନ୍ଧରେ ବିଶାଳ ଋକ୍ଷକପିବାହିନୀ ଅପାର ପାରାବାରକୁ ପାରିହୋଇ ଗଲେ । ଯେଉଁଠାରେ ଫଳମୂଳ ଓ ଜଳ ସହଜରେ ମିଳିପାରିବ, ସୁଗ୍ରୀବଙ୍କ ଆଦେଶରେ ସେହି ସ୍ଥାନରେ ସୈନ୍ୟ ଛାଉଣି ପକାଗଲା ।

ରାମ ବହୁ ଅଶୁଭ ଲକ୍ଷଣ ଦେଖି ଲକ୍ଷ୍ମଣଙ୍କୁ କହିଲେ – ଲକ୍ଷ୍ମଣ, ଯେଉଁ ଘୋର ଯୁଦ୍ଧ ହେବାକୁ ଯାଉଛି, ସେଥିରେ ବହୁ ଭଲ୍ଲୁକ, ବାନର ଓ ରାକ୍ଷସବୀରମାନଙ୍କ ନିଧନ ହେବ ।

କଳୁଷିତ ବାୟୁ ପ୍ରବାହିତ ହେଉଛି । ବସୁନ୍ଧରା କମ୍ପିତ ଓ ପର୍ବତର ଶିଖର ଦୋଳାୟମାନ ପରି ଦେଖାଯାଉଛି । ବୃକ୍ଷମାନେ ଉପୁଡ଼ି ପଡୁଛନ୍ତି । ମେଘରୁ ଶୋଣିତବିନ୍ଦୁ ବୃଷ୍ଟି ହେଉଛି । ସନ୍ଧ୍ୟା ରକ୍ତଚନ୍ଦନ ସଦୃଶ ଦାରୁଣ ରୂପ ଧାରଣ କରିଛି । ସୂର୍ଯ୍ୟର ଦେହରେ ନୀଳବର୍ଣ୍ଣ ଚିହ୍ନ ଓ ବିଶାଳ ଧୂଳିରାଶି ମଧ୍ୟରେ ନକ୍ଷତ୍ରଗଣ ଲୁଚିଯାଉଛନ୍ତି । ଚନ୍ଦ୍ରମା ପ୍ରକାଶିତ ହେଉ ନାହିଁ । ମନେହେଉଛି, ଯୁଗାନ୍ତ କାଳ ଉପସ୍ଥିତ ।

ଏହି ସମୟରେ ଲଙ୍କାପୁରୀରେ ଭେରୀ ମୃଦଙ୍ଗ ସହ ତୁମୁଳ ଧ୍ୱନି ଶୁଣାଗଲା । ସେହି ଧ୍ୱନିରେ ବାନରମାନେ ହୃଷ୍ଟ ହୋଇ ଏପରି ଚିତ୍କାର କଲେ ଯେ ରାକ୍ଷସମାନଙ୍କୁ ସେହି ଗର୍ଜନ ଶୁଣାଗଲା । ଚିତ୍ରିତ ଧ୍ୱଜା-ପତାକାଶୋଭିତ ଲଙ୍କାପୁରୀକୁ ଦେଖି ରାମଙ୍କ ହୃଦୟରେ ସୀତାଙ୍କର ସ୍ମୃତି ଜାଗିଉଠିଲା । ମଙ୍ଗଳଗ୍ରହ ଦ୍ୱାରା ବଶୀଭୂତ ରୋହିଣୀ ନକ୍ଷତ୍ର ପରି ମୃଗନୟନା ସୀତା ରାବଣର ବନ୍ଦିନୀ ହୋଇଛନ୍ତି । କିନ୍ତୁ ସେ ନିଜକୁ ସମ୍ବରଣ କରି ଦୀର୍ଘଶ୍ୱାସ ତ୍ୟାଗ କରି ଲକ୍ଷ୍ମଣଙ୍କୁ କହିଲେ, ପର୍ବତ ଶିଖରର ଅଗ୍ରଭାଗରେ ବିଶ୍ୱକର୍ମା ନିର୍ମିତ ଲଙ୍କାପୁରୀ ଆକାଶରେ ସ୍ଥାପିତ ଏକ ଚିତ୍ରପରି ଦେଖାଯାଉଛି । ବହୁ ପୁଷ୍ପୋଦ୍ୟାନ ଏବଂ ବହୁ ବିହଙ୍ଗଯୁକ୍ତ ଫଳବୃକ୍ଷମାନଙ୍କ ଦ୍ୱାରା ଏହା ଶୋଭା ପାଉଛି । କେବଳ ଜଣେ ରାବଣର ପାପ ଯୋଗୁଁ ଏହି ରମ୍ୟ ନଗରୀ ଅଚିରେ ଧ୍ୱଂସ ହେବାକୁ ଯାଉଛି ।

ରାମ ବାନରବାହିନୀର ଯଥାର୍ଥ ଅବସ୍ଥାପନ ସଂପର୍କରେ ଆଦେଶ ଦେଲେ । ସମରଶାସ୍ତ୍ର ଅନୁଯାୟୀ ବାନରସେନାକୁ ସଂସ୍ଥାପନ କରି ସେ କହିଲେ, ଅଙ୍ଗଦ ଓ ସେନାପତି ନୀଳ ସେନାର ମଧ୍ୟ ଭାଗରେ ରହନ୍ତୁ । ବାନର ଋଷଭ ଦକ୍ଷିଣ ପାର୍ଶ୍ୱକୁ ଆଶ୍ରୟ କରନ୍ତୁ । ଗନ୍ଧମାଦନ ବାମ ପାର୍ଶ୍ୱରେ, ଜାମ୍ବବାନ୍, ସୁଷେଣ, ବିଭୀଷଣ, କୁକ୍ଷିଦେଶ ଓ ସୁଗ୍ରୀବ ପୃଷ୍ଠଭାଗ ରକ୍ଷା କରନ୍ତୁ । ମୁଁ ଲକ୍ଷ୍ମଣଙ୍କ ସହିତ ସେନାର ଅଗ୍ରଭାଗରେ ରହିବି । ସେନା ସମାବେଶ ପରେ ରାବଣର ଦୂତ ଶୁକକୁ ମୁକ୍ତି ଦେବାପାଇଁ ସେ ସୁଗ୍ରୀବଙ୍କୁ ଆଦେଶ ଦେଲେ ।

ଶୁକ ମୁକ୍ତ ହୋଇ ରାବଣ ପାଖରେ ପହଞ୍ଚିଲେ । ତାର ପକ୍ଷ ବିଦୀର୍ଣ୍ଣ ହୋଇଥିବା ଦେଖି ଚଞ୍ଚଳମତି ବାନରମାନଙ୍କର ହାବୁଡ଼ରେ ପଡ଼ି ତୋର ଏପରି ଅବସ୍ଥା ହୋଇଛି କି ବୋଲି ରାବଣ ହସି ହସି ପଚାରିଲା । ଶୁକ ଉତ୍ତର ଦେଲା, ମୁଁ ତୁମର ସନ୍ଦେଶ ଠିକ୍ ଠିକ୍ ସୁଗ୍ରୀବଙ୍କୁ ଦେଇଛି । କିନ୍ତୁ ବାନରମାନେ ମୋତେ ଧରିପକାଇ ବହୁ କଷ୍ଟ ଦେଲେ । କୋପନସ୍ୱଭାବ ବାନରମାନଙ୍କ ସହିତ କଥୋପକଥନ କରିବା ସମ୍ଭବ ନୁହେଁ । ବର୍ତ୍ତମାନ ରାମ ସମୁଦ୍ରରେ ସେତୁ ବାନ୍ଧି ସେମାନଙ୍କୁ ଘେନି ଲଙ୍କା ଉପକଣ୍ଠରେ ପହଞ୍ଚିଗଲେଣି । ହଜାର ହଜାର ସଂଖ୍ୟାରେ ଭୟାନକ ଭଲ୍ଲୁକ ବାନର ସୈନ୍ୟ ପୃଥିବୀକୁ ଆଚ୍ଛାଦନ କରି ରହିଛନ୍ତି । ଦେବ ଦାନବଙ୍କ ମଧ୍ୟରେ ଯେପରି ସନ୍ଧି ଅସମ୍ଭବ, ରାକ୍ଷସ ବାନରଙ୍କ ମଧ୍ୟରେ ସେହିପରି ସନ୍ଧି ହେବା ସମ୍ଭବ ନୁହେଁ । ବର୍ତ୍ତମାନ ତୁମ ନିକଟରେ ଦୁଇଟି ପନ୍ଥା — ସୀତାଙ୍କୁ ରାମଙ୍କ ହସ୍ତରେ ଅର୍ପଣ କର କିମ୍ବା ମହାଯୁଦ୍ଧ ପାଇଁ ପ୍ରସ୍ତୁତ ହୁଅ ।

ରାବଣର ଚକ୍ଷୁ କ୍ରୋଧରେ ରକ୍ତବର୍ଣ୍ଣ ହୋଇଗଲା । ସେ କହିଲା, ଦେବ, ଦାନବ ଓ ଗନ୍ଧର୍ବ କାହାରି ପ୍ରତି ମୋର ଭୟ ନାହିଁ । ସୀତାଙ୍କୁ ଫେରାଇଦେବାର ପ୍ରଶ୍ନ ଉଠୁ ନାହିଁ ।

ମୋର ବେଗ ଓ ବଳ କ'ଣ ତାହା ରାମ ଜାଣି ନାହିଁ । ସେଥିପାଇଁ ସେ ଏଠାକୁ ଯୁଦ୍ଧ କରିବାକୁ ଆସିଛି ।

## ୯୯ ॥ ଶୁକ ସାରଣ

ରାବଣ ଶୁକ ସାରଣ ନାମକ ତାର ଦୁଇ ମନ୍ତ୍ରୀଙ୍କୁ ଡାକି କହିଲା, ସମୁଦ୍ର ଉପରେ ସେତୁ ବନ୍ଧନ ଏକ ଅଦ୍‌ଭୁତ କାର୍ଯ୍ୟ । ରାମ ତାହା କରିବା ଦ୍ୱାରା ଯେ ତାହା ପ୍ରତି ମୋର ଶ୍ରଦ୍ଧା ବଢ଼ିଯାଇଛି, ତାହା ନୁହେଁ । ତଥାପି ଏ ବାନରମାନଙ୍କର ସଂଖ୍ୟା, ବଳ, ଅସ୍ତ୍ରଶସ୍ତ୍ର, ଯୁଦ୍ଧକୌଶଳ ଆଦି ଆମର ଜାଣିବା ଦରକାର । ତୁମେ ଲୁଚ୍ଛାୟିତ ଭାବରେ ଏ ସମସ୍ତ ସମ୍ବାଦ ସଂଗ୍ରହ କରି ଫେରିଆସ । ଶୁକ ସାରଣ ବାନରରୂପ ଧରି ବାନର ସେନାର ଶିବିର ମଧ୍ୟରେ ବୁଲିବାକୁ ଲାଗିଲେ । କିନ୍ତୁ ବିଭୀଷଣଙ୍କର ହାବୁଡ଼େ ପଡ଼ି ଧରା ପଡ଼ିଗଲେ । ବିଭୀଷଣ ସେ ଦୁହିଁଙ୍କୁ ଧରିନେଇ ରାବଣର ଗୁପ୍ତଚର ବୋଲି ରାମଙ୍କୁ ଚିହ୍ନାଇଦେଲେ । ଦୁହେଁ ଜୀବନର ଆଶା ଛାଡ଼ି ଭୟାର୍ତ୍ତ ହୋଇ କହିଲେ – ରଘୁନନ୍ଦନ, ରାବଣ ଦ୍ୱାରା ପ୍ରେରିତ ହୋଇ ଆମେ ତୁମର ସୈନ୍ୟବଳ କଳନା କରିବାକୁ ଆସିଥିଲୁ । ରାମ କହିଲେ, ଯଦି ମୋର ସେନାକୁ କଳନା କରିସାରିଛ, ତା' ହେଲେ ସ୍ୱଚ୍ଛନ୍ଦରେ ଫେରିଯାଅ, ଯଦି ତୁମର କାର୍ଯ୍ୟ ସରି ନାହିଁ, ତା' ହେଲେ ବିଭୀଷଣ ତୁମକୁ ସମସ୍ତ ସୈନ୍ୟବଳ ବୁଲାଇ ଦେଖାଇଦେବେ । ତୁମେ ନିରସ୍ତ୍ର ଭାବରେ ଆସିଥିବା ଯୋଗୁଁ ତୁମର ଜୀବନର ଭୟ ନାହିଁ ।

ରାକ୍ଷସ ଦୁହିଁଙ୍କୁ ଛାଡ଼ିଦେବାପାଇଁ କହି ରାମ କହିଲେ, ତୁମେ ଲଙ୍କାକୁ ଫେରିଯାଇ ରାବଣକୁ କହିବ ଯେ ଯେଉଁ ବାହୁବଳ ଉପରେ ଆଶ୍ରୟ କରି ସେ ସୀତାଙ୍କୁ ହରଣ କରି ଆଣିଛି, ନିଜର ସୈନ୍ୟ ଓ ବାନ୍ଧବମାନଙ୍କ ସହିତ ବର୍ତ୍ତମାନ ସେହି ବଳର ପରିଚୟ ଦେଉ । କାଲି ପ୍ରାଚୀର ତୋରଣ ଓ ରାକ୍ଷସସେନା ସହିତ ସମସ୍ତ ଲଙ୍କାପୁରୀ ଧ୍ୱସ୍ତ ହେବ ।

ଚାର ଦୁଇଜଣ ମୁକ୍ତି ପାଇ ଧର୍ମବତ୍ସଳ ରାମଙ୍କର ଜୟ ହେଉ, ଜୟ ହେଉ ବୋଲି କହି ଲଙ୍କାକୁ ଫେରିଆସିଲେ । ସେମାନେ କିପରି ଧରାପଡ଼ିଲେ ଓ ମୁକ୍ତି ଲାଭ କଲେ, ତାହା ବର୍ଣ୍ଣନା କରି ରାବଣକୁ କହିଲେ, ରାମ ଲକ୍ଷ୍ମଣ, ସୁଗ୍ରୀବ ଓ ବିଭୀଷଣ ବର୍ତ୍ତମାନ ଏକତ୍ର ହୋଇ ଏକ ମନରେ କାର୍ଯ୍ୟ କରୁଛନ୍ତି । ବଳ, ବୀର୍ଯ୍ୟ ଓ ତେଜରେ ସେମାନେ ଇନ୍ଦ୍ରତୁଲ୍ୟ । ସେମାନେ ଇଚ୍ଛାକଲେ ତୋରଣ ଓ ପ୍ରାଚୀର ସହିତ ଲଙ୍କାକୁ ଉପାଡ଼ି ଫୋପାଡ଼ି ଦେଇପାରିବେ । ଚାରିଜଣଙ୍କ ମଧ୍ୟରେ ଏକମାତ୍ର ରାମ ହିଁ ଲଙ୍କାକୁ ଧ୍ୱଂସ କରିବା ପାଇଁ ସମର୍ଥ । ବାନରସେନା ଯୁଦ୍ଧପାଇଁ ଉତ୍ସୁକ ହୋଇ ରହିଛି । ଆପଣ ରାମଙ୍କୁ ବିରୋଧ ନ କରି ଶୀଘ୍ର ସୀତାଙ୍କୁ ଫେରାଇଦିଅନ୍ତୁ । ଯୁଦ୍ଧ ନ ହୋଇ ଶାନ୍ତି ସ୍ଥାପିତ ହେଉ ।

ରାବଣ କ୍ରୁଦ୍ଧ ଓ ବିରକ୍ତ ହୋଇ କହିଲା, ଦେବ, ଦାନବ, ଗନ୍ଧର୍ବ କେହି ଆକ୍ରମଣ କଲେ ମଧ୍ୟ ମୁଁ ସୀତାଙ୍କୁ ଫେରାଇବି ନାହିଁ । ତୁମେ ବାନରମାନଙ୍କ ଦ୍ୱାରା ବହୁ କଷ୍ଟ ପାଇ ଡରିଯାଇଛ । ସେଥିପାଇଁ ସୀତାଙ୍କୁ ଫେରାଇ ଦେବା କଥା କହୁଛ । ଏ-ପୃଥିବୀରେ କିଏ

ଅଛି, ମୋତେ ଜୟ କରିପାରିବ ? ଏହା କହି ରାବଣ ଶୁକସାରଣଙ୍କ ସହିତ ତାର ଅତ୍ୟୁଚ୍ଚ ଅଟ୍ଟାଳିକା ଉପରକୁ ଉଠି ବାନରସେନାକୁ ଦେଖିବାକୁ ଲାଗିଲା । ସେ ବାନରମୁଖ୍ୟମାନଙ୍କର ବଳ ବିକ୍ରମ ବର୍ଣ୍ଣନା କରି ସେମାନଙ୍କୁ ଚିହ୍ନାଇ ଦେବାପାଇଁ କହିବାରୁ ଶୁକସାରଣ ସୁଗ୍ରୀବ, ଅଙ୍ଗଦ, ହନୁମାନ, ନଳ, ନୀଳ, ଶରଭ, ପନସ, ଗବୟ, ଗବାକ୍ଷ, ଜାମ୍ବବାନ, କେଶରୀ ଆଦି ବାନର ବୀରମାନଙ୍କ ବଳବିକ୍ରମ ଓ କୀର୍ତ୍ତି ବିସ୍ତୃତ ଭାବରେ ବର୍ଣ୍ଣନା କଲେ । ସେମାନେ କହିଲେ, ଏହି ଯୁଦ୍ଧଦୁର୍ମଦ ବାନରମାନେ ରାକ୍ଷସଙ୍କ ପରି କାମରୂପୀ ଓ ଦେବତା ଗନ୍ଧର୍ବଙ୍କ ଠାରୁ ଉତ୍ପନ୍ନ ହୋଇଛନ୍ତି । ଏମାନେ ରାମଙ୍କପାଇଁ ପ୍ରାଣ ଦେବା ନିମନ୍ତେ ପ୍ରସ୍ତୁତ ।

ରାବଣ କିଞ୍ଚିତ୍ ଉଦ୍‌ବିଗ୍ନ ହୋଇ ସେ ଦୁହିଁଙ୍କୁ ଭର୍ତ୍ସନା କରି କହିଲା, ତୁମେମାନେ ଯାହା କହିଲ, କୌଣସି ବେତନଭୋଗୀ କର୍ମଚାରୀ ରାଜାର ଆଗରେ ଏପରି କହିବାର ସାହସ କରିବ ନାହିଁ । ଯେଉଁ ଶତ୍ରୁମାନେ ଆମ ବିରୋଧରେ ଯୁଦ୍ଧ କରିବା ପାଇଁ ଉପସ୍ଥିତ ହୋଇଛନ୍ତି, ତୁମେ ସେମାନଙ୍କର ସ୍ତବଗାନ କରୁଛ । ଆଚାର୍ଯ୍ୟ, ଗୁରୁ, ବୃଦ୍ଧଲୋକଙ୍କ ପାଖରେ ରହି ତୁମର କୌଣସି ଶିକ୍ଷା ଲାଭ ହୋଇ ନାହିଁ । ରାଜନୀତି ବିଷୟରେ ତୁମର ଜ୍ଞାନ ନାହିଁ । ଥିଲେ ମଧ୍ୟ ତୁମେ ତାହାର ମର୍ମ ବୁଝି ନାହଁ । ଏପରି ମୂର୍ଖ ମନ୍ତ୍ରୀମାନଙ୍କୁ ଧରି ମୁଁ ଏତେ ଦିନ କିପରି ରାଜ୍ୟ ଶାସନ କଲି, ତାହା ଆଶ୍ଚର୍ଯ୍ୟ ଲାଗୁଛି । ମୃତ୍ୟୁକୁ ବୋଧହୁଏ ତୁମର ଭୟ ନାହିଁ, ତା' ନ ହେଲେ ତୁମେ ଏପରି କଠୋର ବାକ୍ୟ ମୋତେ କହୁ ନ ଥାନ୍ତ । ଶତ୍ରୁର ପ୍ରଶଂସକ ତୁମେ ଦୁହେଁ ପାପୀ; ପ୍ରାଣଦଣ୍ଡର ଯୋଗ୍ୟ । କିନ୍ତୁ ପୂର୍ବ ଉପକାର ସ୍ମରଣ କରି ମୁଁ ତୁମକୁ ଦଣ୍ଡ ଦେଉ ନାହିଁ । ମୋ ଆଗରୁ ଦୂର ହୁଅ, ମୋ ନିକଟକୁ ଆଉ କେବେ ଆସିବ ନାହିଁ । ତୁମ ପରି ଦୁଇଟା କୃତଘ୍ନଙ୍କୁ ମୁଁ ନ ମାରି ଆଜି ଛାଡ଼ିଦେଉଛି ।

ଶୁକ ସାରଣ ଲଜ୍ଜିତ ହୋଇ ରାବଣର ଜୟ ଜୟକାର କରି ସେଠାରୁ ଚାଲିଗଲେ । ରାବଣ ଶାର୍ଦ୍ଦୂଳ 'ନାମକ ଏକ ଚାରକୁ ଅଗ୍ରଣୀ କରି ଅନ୍ୟ ଦଳେ ଚାରଙ୍କୁ ପୁଣି ବାନରସୈନ୍ୟ-ଶିବିରକୁ ପଠାଇଲା । ସେ କହିଲା, ତୁମେ ରାମଙ୍କ ପାଖକୁ ଯାଇ ତାର ସମସ୍ତ ଖବର ମୋତେ ଆଣି ଦିଅ । ରାମର ଅନ୍ତରଙ୍ଗ ମନ୍ତ୍ରୀମାନଙ୍କର ମଧ୍ୟ ସମସ୍ତ ଖବର ସଂଗ୍ରହ କର । ସେମାନେ କେତେବେଳେ ଶୋଉଛନ୍ତି, ଉଠୁଛନ୍ତି, କ'ଣ କରିବାକୁ ଯାଉଛନ୍ତି, ସବୁ ତନ୍ନ ତନ୍ନ କରି ବୁଝ । ଶାର୍ଦ୍ଦୂଳ 'ଯେ ଆଜ୍ଞା ମହାରାଜ' ବୋଲି କହି ସୁବେଳ ପର୍ବତ ନିକଟରେ ପହଞ୍ଚି ଲୁଚିଗଲା । ବାନରସେନାକୁ ଦେଖି ରାବଣର ଚାରମାନେ ଭୟବିହ୍ୱଳ ହୋଇଗଲେ । ସେମାନଙ୍କୁ ଧରିବାପାଇଁ ବିଭୀଷଣଙ୍କୁ ବେଶି ସମୟ ଲାଗିଲା ନାହିଁ । ବନ୍ଦୀ ଚାରମାନଙ୍କୁ ବଧ କରିବା ପାଇଁ ବାନରମାନେ ମନସ୍ଥ କଲେ । କିନ୍ତୁ ଦୟାପରବଶ ରାମ ସେମାନଙ୍କୁ ମୁକ୍ତ କରିଦେଲେ । ବାନରମାନଙ୍କ ପ୍ରହାରରେ ଆହତ ଶାର୍ଦ୍ଦୂଳ ଓ ତାର ଅନୁଚରମାନେ ବହୁ କଷ୍ଟରେ ନିଃଶ୍ୱାସ ନେଇ ଲଙ୍କାକୁ ଫେରିଆସିଲେ ।

ଆହତ ଶାର୍ଦ୍ଦୂଳ କିପରି ବଞ୍ଚିଗଲା, ତାହା ରାବଣକୁ ଜଣାଇ କହିଲା, ଦୁର୍ଦ୍ଧର୍ଷ ବାନରସେନା ଲଙ୍କା ଆକ୍ରମଣ କରିବା ପାଇଁ ପ୍ରସ୍ତୁତ । ଚାର ଦ୍ୱାରା ସେମାନଙ୍କର କୌଣସି

ଭେଦ ମିଳିବ ନାହିଁ । ସେମାନେ ମୋତେ ଧରିନେଇ ଏପରି ପ୍ରହାର କଲେ ଯେ, ମୁଁ ମରୁ ମରୁ ବଞ୍ଚିଗଲି । ରାମଙ୍କ ଦୟାରୁ ମୁଁ ପ୍ରାଣ ଘେନି ପଳାଇ ଆସିଲି । ବର୍ତ୍ତମାନ ଆପଣଙ୍କ ଆଗରେ ଦୁଇଟି ପନ୍ଥା । ସୀତାଙ୍କୁ ଫେରାଇ ଦିଅନ୍ତୁ କିମ୍ବା ଯୁଦ୍ଧପାଇଁ ପ୍ରସ୍ତୁତ ହୁଅନ୍ତୁ । ରାମଙ୍କର ବଳ ଓ ପରାକ୍ରମ ଓ ବାନରସେନାର ଶକ୍ତିକୁ କୌଣସିମତେ ନ୍ୟୂନ କରି ଦେଖିବା ଉଚିତ ନୁହେଁ ।

## ୧୦୦ ॥ ରାମଙ୍କର ମାୟାମୁଣ୍ଡ

ରାବଣ ଉଦ୍‌ବିଗ୍ନ ହୋଇ ମାୟାବୀ ରାକ୍ଷସ ବିଦ୍ୟୁଜ୍ଜିହ୍ବକୁ ଡକାଇ କହିଲା, ନିଶାଚର, ତୁ ରାମର ମାୟାମୁଣ୍ଡ ଓ ବିଶାଳ ଧନୁର୍ବାଣ ପ୍ରସ୍ତୁତ କର । ବିଦ୍ୟୁଜ୍ଜିହ୍ବ ରାବଣର ଆଦେଶ ପାଳନ କରି ଅବିକଳ ରାମଙ୍କର ମୁଣ୍ଡ ଓ ଧନୁର୍ବାଣ ପ୍ରସ୍ତୁତ କଲା । ରାବଣ ଅଶୋକବନକୁ ଯାଇ ଦେଖିଲା, ସୀତା ଅଧୋମୁଖରେ ଭୂମି ଉପରେ ଚିନ୍ତାକୁଳ ହୋଇ ବସିରହିଛନ୍ତି । ସୀତା ଅନ୍ତରାତ୍ମାରେ ରାମଙ୍କୁ ଧ୍ୟାନ କରୁଥିଲେ ।

ରାବଣ କହିଲା – ଭଦ୍ରେ, ତୁ ଯାହାକୁ ଆଶ୍ରୟ କରି ମୋର କଥା ଶୁଣୁ ନ ଥିଲୁ, ଖରହନ୍ତା ତୋର ସ୍ୱାମୀ ସେହି ରାଘବ ବର୍ତ୍ତମାନ ଯୁଦ୍ଧରେ ନିହତ ହୋଇଛି । ତୁ ଆଶ୍ରୟ କରିଥିବା ବୃକ୍ଷର ମୂଳ ଛିନ୍ନ ହେଲା ଓ ତୋର ଦର୍ପ ଚୂର୍ଣ୍ଣ ହେଲା । ଏବେ ତୋର ମୃତ ପତିକୁ ଧରି ତୁ କ'ଣ କରିବୁ ? ମୋର ଭାର୍ଯ୍ୟା ହେବା ଛଡ଼ା ତୋର ଅନ୍ୟଗତି ନାହିଁ ।

ରାବଣ ପୁଣି କହିଲା, ରାମ ମୋତେ ମାରିବା ପାଇଁ ବାନରସେନାକୁ ଧରି ସମୁଦ୍ର ପାରହୋଇ ଆସିଥିଲା । ମୋର ଚାରମାନେ ତାର ସମସ୍ତ ଖବର ରଖୁଥିଲେ । ଅର୍ଦ୍ଧରାତ୍ରିରେ ରାମ ଲକ୍ଷ୍ମଣ ସହିତ ଅତର୍କିତ ଭାବେ ଶୋଇଥିବା ବେଳେ ସେନାପତି ପ୍ରହସ୍ତ ଏକ ବିଶାଳ ସେନା ନେଇ ବାନରମାନଙ୍କୁ ଆକ୍ରମଣ କରି ସଂହାର କଲା । ଏକ ଶାଣିତ ତରବାରି ଧରି ସେ ସୁପ୍ତ ରାମର ଶିରଚ୍ଛେଦନ କଲା । ବିଭୀଷଣ ପଳାଇ ଯାଉଥିଲା, ଧରାପଡ଼ି ଏବେ ଦଣ୍ଡିତ ହୋଇଛି । ସୁଗ୍ରୀବର ଗ୍ରୀବା ଓ ହନୁମାନର ହନୁ ଭାଙ୍ଗିଯାଇଛି । ସେମାନେ ମରି ଶୋଇଛନ୍ତି । ଅନ୍ୟ ବାନରବୀର ସମସ୍ତେ ନିହତ ହୋଇଛନ୍ତି । କେବଳ ଲକ୍ଷ୍ମଣ ଅଳ୍ପ କେତେକ ବାନରଙ୍କୁ ଧରି ପଳାଇଯାଇଛି । ବର୍ତ୍ତମାନ ତୁ ରାମର ଛିନ୍ନଶିର ଓ ଧନୁର୍ବାଣ ସ୍ୱଚକ୍ଷୁରେ ଦେଖ । ବିଦ୍ୟୁଜ୍ଜିହ୍ବ ସଙ୍ଗେ ସଙ୍ଗେ ଆସି ରାବଣକୁ ପ୍ରଣାମ କରି ରାମଙ୍କର ମାୟାମୁଣ୍ଡ, ଧନୁ ଓ ବାଣ ଆଣି ସୀତାଙ୍କ ଆଗରେ ଥୋଇଦେଲା ।

ରାବଣ କହିଲା – ବିଦେହରାଜନନ୍ଦିନୀ, ବର୍ତ୍ତମାନ ମୋତେ ବରଣ କର ।

ସୀତା ସେହି ଛିନ୍ନ ଶିର ଓ ମହାଧନୁକୁ ଦେଖି ବିଳାପ କରିବାକୁ ଲାଗିଲେ । ସେ କହିଲେ, କୈକେୟୀ ତୁମର ଇଚ୍ଛା ପୂର୍ଣ୍ଣ ହେଲା । ତୁମେ ବଳ୍କଳ ପିନ୍ଧାଇ ରାମଙ୍କୁ ନିର୍ବାସିତ କରିଥିଲ । ତାର ପରିଣାମରେ ରାମ ନିହତ ହେଲେ । କଟାମୁଣ୍ଡର ଚକ୍ଷୁ, କର୍ଣ୍ଣ, ମୁଖର ଗଠନ ରାମଙ୍କର ଅନୁରୂପ ଦେଖି ସୀତା କଟା କଦଳୀଗଛ ପରି ଭୂଇଁରେ ପଡ଼ିଗଲେ । ସେ ସେହି ମୁଣ୍ଡକୁ ଧରି କହିଲେ, ବୀରବ୍ରତଧାରୀ ମହାବାହୁ, ବର୍ତ୍ତମାନ ମୋର ସବୁ ଶେଷ ହୋଇଗଲା । ମୁଁ ପତିବ୍ରତା ହୋଇ ମଧ୍ୟ ତୁମେ ମୋ ଆଗରୁ ଚାଲିଗଲ । କୌଶଲ୍ୟା

ପୁତ୍ରହୀନା ହେଲେ । ମୁଁ ଅଭାଗିନୀ ବିଧବା ହୋଇଗଲି । ତୁମେ ନୀତିଜ୍ଞ, ବିପଦରୁ ରକ୍ଷା ପାଇବା କଥା ତୁମେ ଜାଣିଥିଲ । ତଥାପି ତୁମର ମୃତ୍ୟୁ କିପରି ହେଲା ? ତୁମେ ମୋତେ ନିରାଶ୍ରୟା ଭାବରେ ଛାଡ଼ି ଚାଲିଗଲ । ଗନ୍ଧ ମାଲ୍ୟ ଦ୍ୱାରା ଅର୍ଚ୍ଚିତ ତୁମର ପ୍ରିୟ ଧନୁ କ'ଣ ତୁମର ହାତରେ ନ ଥିଲା ? ତୁମେ ପିତା ଦଶରଥ ଓ ଅନ୍ୟ ପିତୃମାନଙ୍କ ସହିତ ସ୍ୱର୍ଗରେ ଯାଇ ରହିଲ । ପାଣି ଗ୍ରହଣ ବେଳେ ତୁମେ କହିଥିଲ ଯେ, ତୁମେ ଯୁଆଡ଼େ ଯିବ ମୁଁ ତୁମର ସହଚାରିଣୀ ଭାବରେ ସଙ୍ଗେ ସଙ୍ଗେ ଥିବି । କିନ୍ତୁ ଆଜି ମୋତେ ଛାଡ଼ି ତୁମେ କୁଆଡ଼େ ଚାଲିଗଲ ? ଲକ୍ଷ୍ମଣ ଫେରିଯାଇ ମାତା କୌଶଲ୍ୟାଙ୍କୁ କ'ଣ କହିବେ ଓ ସେ କିପରି ଜୀବନ ଧରି ରହିବେ ? ଯେଉଁ ରାମଚନ୍ଦ୍ର ବିଶାଳ ସମୁଦ୍ରକୁ ପାର ହୋଇଥିଲେ, ସାମାନ୍ୟ ଗୋଷ୍ପଦରେ ତାଙ୍କର ମୃତ୍ୟୁ ହେବ ଏହା କେହି କଳ୍ପନା କରିପାରିବେ ନାହିଁ । ରାବଣ, ମୋର ଶିରଚ୍ଛେଦନ କର ଏବଂ ମୋତେ ମୋର ସ୍ୱାମୀଙ୍କର ଅନୁଗାମିନୀ ହେବାକୁ ଦିଅ । ଏହିପରି ସୀତା ଦୁଃଖାର୍ତ୍ତ ହୋଇ ବିଳାପ କରିବାକୁ ଲାଗିଲେ ।

ଏହି ସମୟରେ ଏକ ଦୂତ ଆସି ରାବଣକୁ ପ୍ରଣାମ କରି କହିଲା, ସେନାପତି ପ୍ରହସ୍ତ ଓ ଅନ୍ୟମାନେ ଜରୁରୀ ପରାମର୍ଶ ପାଇଁ ଆପଣଙ୍କୁ ଅପେକ୍ଷା କରି ରହିଛନ୍ତି । ରାବଣ ଯିବା ସଙ୍ଗେ ସଙ୍ଗେ ସେହି ମାୟାମୟ ମସ୍ତକ ଓ ବିଶାଳ ଧନୁ ମଧ୍ୟ ଅନ୍ତର୍ହିତ ହୋଇଗଲା ।

## ୧୦୧ ॥ ସରମାର ସାନ୍ତ୍ୱନା

ରାବଣର ମାୟାରେ ମୋହଗ୍ରସ୍ତ ସୀତାଙ୍କୁ ଦେଖି ସୀତାଙ୍କର ପ୍ରିୟସଖୀ ସରମା ତାଙ୍କୁ ସାନ୍ତ୍ୱନା ଦେଇ କହିଲା ବୈଦେହୀ, ଶୋକ କର ନାହିଁ । ରାବଣ ଭୟରେ ମୁଁ ଆକାଶରେ ଲୁଚି ରହିଥିଲି । ରାବଣ କାହିଁକି ବ୍ୟସ୍ତ ହୋଇ ଚାଲିଗଲା, ତାର କାରଣ କହୁଛି, ଶୁଣ । ବିଶାଳାକ୍ଷୀ, ରାମଙ୍କପରି ଅନ୍ତର୍ଯାମୀ ପୁରୁଷଙ୍କୁ କେହି କେବେ ସୁପ୍ତ ଅବସ୍ଥାରେ ବଧ କରି ନ ପାରେ । ପୁରୁଷବ୍ୟାଘ୍ରଙ୍କର ଏପରି ନିଧନ ହେବା ଆଦୌ ସମ୍ଭବ ନୁହେଁ । ରାମଙ୍କ ଦ୍ୱାରା ସୁରକ୍ଷିତ ବାନରମାନଙ୍କୁ ମଧ୍ୟ କେହି ଏପରି ନିହତ କରିପାରିବ ନାହିଁ । ନୀତିଜ୍ଞ ରାମ ଏବଂ ତାଙ୍କର ଭାଇ ଲକ୍ଷ୍ମଣ ସମରବିଦ୍ୟାରେ ନିପୁଣ । ସମସ୍ତ ଶତ୍ରୁଙ୍କୁ ହତ୍ୟା କରିବା ପାଇଁ ଯେଉଁ ରାମ ସମର୍ଥ ତାଙ୍କୁ କିଏ ମାରିପାରିବ ? ନିଷ୍ଠୁର ରାବଣ ତୁମ ପ୍ରତି ମାୟାବିଦ୍ୟା ପ୍ରୟୋଗ କରିଥିଲା । ଯାହା ତୁମେ ଦେଖିଲ ତାହା ସଂପୂର୍ଣ୍ଣ ମାୟା । ରାମ ବାନରସେନା ସହିତ ସମୁଦ୍ର ପାରହୋଇ ଲଙ୍କା ନିକଟରେ ଶିବିର ସ୍ଥାପନ କଲେଣି । ସେ ଲଙ୍କା ଆକ୍ରମଣ କରୁଥିବାର ସମ୍ବାଦ ପାଇ ରାବଣ ମନ୍ତ୍ରୀମାନଙ୍କ ସହିତ ମନ୍ତ୍ରଣା କରିବାପାଇଁ ପଳାଇଗଲା । ମୈଥିଳୀ, ତୁମର ଶୋକର ସମୟ ଅତୀତ ହୋଇଯାଇଛି । ବର୍ତ୍ତମାନ ତୁମର ଶୁଭ ସମୟ ଉପସ୍ଥିତ ।

ସରମା ମଧୁରଭାଷିଣୀ, ଦୟାବତୀ ଓ ମନସ୍ୱିନୀ ଥିଲା । ସେ ସୀତାଙ୍କର ପ୍ରହରୀମାନଙ୍କ ମଧ୍ୟରେ ଅନ୍ୟତମା ରାକ୍ଷସୀ ରୂପେ ସୀତାଙ୍କ ସହିତ ମିତ୍ରତାରେ ଆବଦ୍ଧ ହୋଇଥିଲା ଏବଂ ଅନେକ ସମୟରେ ତାଙ୍କୁ ଆଶ୍ୱାସନା ଦେଉଥିଲା ।

ସରମା ସୀତାଙ୍କୁ ଏପରି କହିବା ପରେ ପରେ ଲଙ୍କାରେ ଯୁଦ୍ଧପାଇଁ ପ୍ରସ୍ତୁତ ହେଉଥିବା ସୈନ୍ୟମାନଙ୍କର ଭୀଷଣ କୋଳାହଳ ଶୁଣାଗଲା । ବଡ଼ ବଡ଼ ଢୋଲବାଦ୍ୟ ଓ ଭେରୀତୂରୀର ତୁମୁଳ ଧ୍ୱନି ସେହି କୋଳାହଳ ସହିତ ମିଶିଗଲା । ସରମା କହିଲା – ସୀତା, ବର୍ତ୍ତମାନ ଲଙ୍କାରେ ଭୟାନକ ସମରସଜ୍ଜା ଚାଲିଛି । ରାଜପଥମାନଙ୍କରେ ଚତୁରଙ୍ଗ ସେନା ପୂରି ରହିଛନ୍ତି । ରାମ ରାକ୍ଷସମାନଙ୍କ ମନରେ ମହାଭୟ ସଞ୍ଚାର କରିଛନ୍ତି । ଶୀଘ୍ର ଶତ୍ରୁମାନେ ନଷ୍ଟ ହୋଇ ତୁମର ମନୋରଥ ସିଦ୍ଧ ହେବ । ପୂର୍ଣ୍ଣଚନ୍ଦ୍ରର ଉଦୟ ଦେଖିବା ପରି ତୁମେ ତୁମର ସ୍ୱାମୀଙ୍କର ମୁଖଚନ୍ଦ୍ର ଶୀଘ୍ର ଦେଖିପାରିବ ।

ଗ୍ରୀଷ୍ମ ତାପରେ ତପ୍ତ ପୃଥିବୀ ଯେପରି ବୃଷ୍ଟି ଜଳରେ ଶାନ୍ତ ହୁଏ, ସେହିପରି ସରମାର ବାକ୍ୟ ସୀତାଙ୍କୁ ଆହ୍ଲାଦିତ କଲା । ସରମା କହିଲା, ମୋର ସାହସ ଅଛି, ମୁଁ ରାମଙ୍କ ପାଖକୁ ଯାଇ ତୁମର କୁଶଳ ସମ୍ବାଦ ଦେବି ଓ ତାଙ୍କର କୁଶଳ ସମ୍ବାଦ ନେଇ ତୁମ ପାଖକୁ ଫେରିଆସିବି । ସୀତା କହିଲେ, ଆକାଶ ମାର୍ଗରେ ଯାଇ ତୁମେ ଏହା କରିପାରିବ ବୋଲି ମୁଁ ଜାଣେ । କିନ୍ତୁ ଯଦି ମୋର ପ୍ରିୟ କାର୍ଯ୍ୟ କରିବାକୁ ଚାହଁ, ତାହେଲେ ରାବଣର ସମ୍ବାଦ ମୋତେ ଆଣିଦେବା ଦରକାର ।

ସରମା ଲୁକ୍କାୟିତ ଭାବରେ ରାବଣର ମନ୍ତ୍ରଣାକକ୍ଷରେ ରହି ସମସ୍ତ ସମ୍ବାଦ ଘେନି ଅଶୋକବନକୁ ଫେରି ଆସିଲା । ସରମା କହିଲା – ବୈଦେହୀ, ରାକ୍ଷସରାଜ ରାବଣର ଜନନୀ ଓ ବୃଦ୍ଧ ମନ୍ତ୍ରୀମାନେ ତୁମକୁ ଛାଡ଼ିଦେବାପାଇଁ ତାକୁ ବହୁତ ବୁଝାଇଲେ । ରାମଙ୍କର ଅତୁଳନୀୟ ବଳବିକ୍ରମର ବର୍ଣ୍ଣନା କରି ସେମାନେ ବହୁତ କହିଲେ । କିନ୍ତୁ ଅର୍ଥଲୋଭୀ ଯେପରି ଅର୍ଥକୁ ଛାଡ଼ିପାରେ ନାହିଁ, ସେହିପରି ରାବଣ ତୁମକୁ ମୁକ୍ତି ଦେବାକୁ ଚାହେ ନାହିଁ । ସେହି ନୃଶଂସ ନ ମରିବା ପର୍ଯ୍ୟନ୍ତ ତୁମକୁ ଛାଡ଼ିବ ନାହିଁ ।

ବାନରସେନାର ରଣଭେରୀ ଧ୍ୱନି ନିକଟତର ହେବାକୁ ଲାଗିଲା । ଚିନ୍ତାମଗ୍ନ ରାବଣ ମନ୍ତ୍ରୀମାନଙ୍କୁ ଡାକି କହିଲା, ତୁମେମାନେ ରାମର ସମୁଦ୍ର ଲଂଘନ, ତାର ପରାକ୍ରମ ଓ ସୈନ୍ୟସଂଗ୍ରହ ବିଷୟ ଶୁଣିଥିବ । ତୁମେମାନେ ମଧ୍ୟ ଅତୁଳ ବଳବିକ୍ରମର ଅଧିକାରୀ । କିନ୍ତୁ ତୁମେମାନେ କାହିଁକି ଚୁପ୍ ହୋଇ ବସିଛ ?

ରାବଣର ମାତାମହ ବୃଦ୍ଧ ମାଲ୍ୟବାନ୍ କହିଲେ – ରାବଣ, ଶୁଣ । ବିଦ୍ୱାନ ନୀତିଜ୍ଞ ରାଜା ବହୁକାଳ ଧରି ରାଜ୍ୟ ଓ ଐଶ୍ୱର୍ଯ୍ୟ ଭୋଗ କରେ ଓ ଶତ୍ରୁମାନଙ୍କୁ ବିନାଶ କରେ । ରାଜା ଯଦି ଶତ୍ରୁଠାରୁ ଅଧିକ ବଳବାନ୍ ହୁଏ, ତା' ହେଲେ ତାର ଶତ୍ରୁ ସହିତ ଯୁଦ୍ଧ କରିବା ଉଚିତ । ଯଦି ହୀନବଳ କିମ୍ବା ସମସ୍କନ୍ଧ ହୁଏ, ତା' ହେଲେ ଶତ୍ରୁ ସହିତ ସନ୍ଧି କରିବା ବାଞ୍ଛନୀୟ । ଏ କ୍ଷେତ୍ରରେ ରାମଙ୍କ ସହିତ ତୁମର ସନ୍ଧି କରିବା ଉଚିତ ହେବ । ସୀତାଙ୍କ ପାଇଁ କାହିଁକି ବାରମ୍ବାର ଲଙ୍କା ଉପରେ ଆକ୍ରମଣ ହେବ ? ଦେବ, ଋଷି, ଗନ୍ଧର୍ବ ରାମଙ୍କର ଜୟ କାମନା କରୁଛନ୍ତି । ତୁମର ଆଚରଣ ଦ୍ୱାରା ଧର୍ମ ନଷ୍ଟ ହୋଇଛି ଏବଂ ଅଧର୍ମ ଆମକୁ ଗ୍ରାସ କରିବାକୁ ଯାଉଛି । ଋଷିମାନେ ରାକ୍ଷସମାନଙ୍କ ବିରୋଧରେ ତପସ୍ୟା କରୁଛନ୍ତି । ବ୍ରାହ୍ମଣମାନେ ଯଜ୍ଞ କରୁଛନ୍ତି । ଏହାର ଫଳ ରାକ୍ଷସମାନଙ୍କ ପକ୍ଷରେ ଆଦୌ ଭଲ ହେବ ନାହିଁ । ତୁମେ ଅବଶ୍ୟ ବ୍ରହ୍ମାଙ୍କଠାରୁ ବରଲାଭ କରିଛ । ଦେବ,

ଦାନବ, ଯକ୍ଷ ସିନା ତୁମକୁ ମାରିପାରିବେ ନାହିଁ, କିନ୍ତୁ ଏବେ ନର, ବାନର, ଭଲ୍ଲୁକମାନେ ଲଙ୍କାକୁ ଅବରୋଧ କଲେଣି । ବହୁ ଅଲକ୍ଷଣ ଓ ଉତ୍ପାତମାନ ଦେଖାଯାଉଛି । ଗଧମାନଙ୍କ ବିକଟାଳ ରବ, ମେଘମାନଙ୍କ ଶୋଣିତ ବର୍ଷଣ, ଅଶ୍ୱଗଜଙ୍କର ଲୋତକ ବିସର୍ଜନ, ଧ୍ୱଜାମାନଙ୍କର ମଳିନତା, ସର୍ପ, ଶୃଗାଳ, ଗୃଧ୍ରମାନଙ୍କର ସଦଳ ବିଚରଣ ଏବଂ ଅନ୍ୟାନ୍ୟ ଅନେକ ଅସ୍ୱାଭାବିକ ଘଟଣାମାନ ଘଟିଯାଉଛି ।

ମାଲ୍ୟବାନ୍ କହିଲେ– ମହାରାଜ, ରାମ ନରରୂପଧାରୀ ସାକ୍ଷାତ୍ ବିଷ୍ଣୁ । ତା ନ ହେଲେ ସେ ସମୁଦ୍ରରେ ସେତୁ ବାନ୍ଧିବାପାଇଁ ସମର୍ଥ ହୋଇ ନ ଥାନ୍ତେ । ତୁମେ ରାମଙ୍କ ସହିତ ଶତ୍ରୁତା ତ୍ୟାଗ କରି ସନ୍ଧି ସ୍ଥାପନ କର ।

ମାତାମହଙ୍କ ଉପଦେଶ ରାବଣଙ୍କୁ ରୁଚିକର ବୋଧ ହେଲା ନାହିଁ । ସେ କାଳବଶବର୍ତ୍ତୀ ହୋଇଥିବାରୁ ରକ୍ତବର୍ଣ୍ଣ ଚକ୍ଷୁ ଦେଖାଇ କହିଲା, ତୁମେ ଶତ୍ରୁପକ୍ଷ ଗ୍ରହଣ କରି ଯେଉଁ ଅହିତ କଠୋର କଥାମାନ କହିଲ, ତାହା ମୋର କର୍ଣ୍ଣରେ ପ୍ରବେଶ କଲା ନାହିଁ । ତୁମେ ରାମଙ୍କୁ କାହିଁକି ଏପରି ସମର୍ଥ ମନେକରୁଛ ? ବନରେ ବିତାଡ଼ିତ ବାନରମାନଙ୍କୁ ସେ ଆଶ୍ରୟ କରିଛି । ସେ ମୋର କ'ଣ କରିପାରିବ ? ଦେବତାମାନେ ମୋତେ ଭୟ କରନ୍ତି । ରାକ୍ଷସମାନେ ମୋର ବଶ୍ୟତା ସ୍ୱୀକାର କରିଛନ୍ତି । ତୁମେ ମୋତେ ନ୍ୟୂନ ବୋଲି ବିଚାରି ଶତ୍ରୁର ପ୍ରଶଂସା କରୁଛ । ଶତ୍ରୁ ଦ୍ୱାରା ଉତ୍ସାହିତ ହୋଇ ନ ଥିଲେ ତୁମେ ମୋତେ ଏପରି କଠୋର କଥା କହି ନ ଥାନ୍ତ । ରାମ ସମୁଦ୍ର ଉପରେ ସେତୁ ବାନ୍ଧି ଏଠାକୁ ଆସିପାରିଥାଏ, କିନ୍ତୁ ସେ ଜୀବନ ଘେନି ଫେରିବ ନାହିଁ ।

ରାବଣଙ୍କୁ ରୁଷ୍ଟ ହେବାର ଦେଖି ମାଲ୍ୟବାନ୍ ଆଉ କିଛି କହିଲେ ନାହିଁ । ତାକୁ କୌଣସି ସତ୍ ପରାମର୍ଶ ଦେବାର ମୂଲ୍ୟ ନାହିଁ ବୋଲି ମନେକରି ସେ ଲଙ୍କାପତିଙ୍କର ଆଶୀର୍ବାଦ ଓ ଜୟଧ୍ୱନି କରି ନିଜ ଘରକୁ ଫେରିଆସିଲେ ।

## ୧୦୨ ॥ ସୁଗ୍ରୀବ-ରାବଣ ଯୁଦ୍ଧ

ରାବଣ ଲଙ୍କାପୁରୀର ସୁରକ୍ଷାପାଇଁ ପୁନରାୟ ଆଦେଶ ଦେଲା । ପୂର୍ବଦ୍ୱାର ରକ୍ଷାପାଇଁ ପ୍ରହସ୍ତକୁ, ଦକ୍ଷିଣଦ୍ୱାର ରକ୍ଷାପାଇଁ ମହାପାର୍ଶ୍ୱ ଓ ମହୋଦରଙ୍କୁ, ପଶ୍ଚିମଦ୍ୱାର ରକ୍ଷାପାଇଁ ଇନ୍ଦ୍ରଜିତ୍‌କୁ ଓ ଉତ୍ତରଦ୍ୱାର ପାଇଁ ଶୁକସାରଣଙ୍କୁ ଦାୟିତ୍ୱ ଅର୍ପଣ କଲା । ଯୁଦ୍ଧପାଇଁ ରାବଣ ପକ୍ଷରୁ ସମସ୍ତ ପ୍ରସ୍ତୁତି ଚାଲିଲା ।

ବିଭୀଷଣଙ୍କର ଚାରମାନେ ରାମଙ୍କୁ ଆସି ସମସ୍ତ ଖବର ଦେଲେ । ଲଙ୍କାର ଆକ୍ରମଣପାଇଁ କିଏ କେଉଁ ଦାୟିତ୍ୱରେ ରହିବେ ରାମ ତାହା ନିର୍ଦ୍ଦେଶ ଦେଲେ । ଲଙ୍କାର ପୂର୍ବଦ୍ୱାରକୁ ଆକ୍ରମଣ କରିବାପାଇଁ ସେନାପତି ନୀଳ ଆଦିଷ୍ଟ ହେଲେ । ଅଙ୍ଗଦ ଦକ୍ଷିଣଦ୍ୱାର, ହନୁମାନ ପଶ୍ଚିମଦ୍ୱାର, ଉତ୍ତରଦ୍ୱାରରେ ଲକ୍ଷ୍ମଣଙ୍କ ସହିତ ରାମ ନିଜେ ଦାୟିତ୍ୱରେ ରହିବାପାଇଁ ସ୍ଥିର ହେଲା । ସୁଗ୍ରୀବ, ଜାମ୍ବବାନ ଓ ବିଭୀଷଣ ସେନାର

ମଧ୍ୟଭାଗରେ ରହିଲେ । ଯୁଦ୍ଧକ୍ଷେତ୍ରରେ କୌଣସି ବାନର ମନୁଷ୍ୟରୂପ ଧାରଣ କଲେ ନାହିଁ । ଚାରିଜଣ ଅମାତ୍ୟଙ୍କ ସହିତ ବିଭୀଷଣ, ରାମ ଏବଂ ଲକ୍ଷ୍ମଣ କେବଳ ମନୁଷ୍ୟ ରୂପରେ ଶତ୍ରୁମାନଙ୍କ ସହିତ ଯୁଦ୍ଧ କରିବା ସ୍ଥିର ହେଲା ।

ତା'ପରେ ରାମ, ଲକ୍ଷ୍ମଣ ବିଭୀଷଣ, ସୁଗ୍ରୀବ ଓ ଅନ୍ୟ ବାନର ବୀରଙ୍କ ସହିତ ସୁବେଳପର୍ବତ ଆରୋହଣ କରି ଲଙ୍କାକୁ ଦର୍ଶନ କଲେ । ରମଣୀୟ ଲଙ୍କାର ଶୋଭା ବାନରମାନଙ୍କୁ ମୁଗ୍ଧ କଲା । ପୁଷ୍ପିତ ବୃକ୍ଷ ଓ ଉପବନମାନଙ୍କରେ ଲଙ୍କା ପୁଷ୍ପମୟ ଦେଖାଯାଉଥିଲା । ବିହଙ୍ଗ ଓ ଭ୍ରମରଙ୍କର ଗୁଞ୍ଜନ, ମୟୂରମାନଙ୍କ ନୃତ୍ୟ, ନିର୍ଝରମାନଙ୍କ କଳଧ୍ୱନି ଲଙ୍କାର ଶୋଭାକୁ ବଢ଼ାଇ ଦେଉଥିଲା । ଉଚ୍ଚ ବିଶାଳ ଅଟ୍ଟାଳିକା ଓ ପ୍ରାସାଦଯୁକ୍ତ ଲଙ୍କାପୁରୀ ଇନ୍ଦ୍ରଙ୍କର ଅମରାବତୀକୁ ନିନ୍ଦା କରୁଥିଲା ।

ସୁବେଳପର୍ବତ ଉପରୁ ନିଜ ଭବନର ଗୋପୁର ଉପରେ ବସିଥିବା ରାବଣକୁ ଦେଖି ସୁଗ୍ରୀବ ନିଜର କ୍ରୋଧ ସମ୍ଭାଳି ପାରିଲେ ନାହିଁ । ପର୍ବତଶିଖରରୁ ଡେଇଁପଡ଼ି ସେ ରାବଣ ପାଖରେ ପହଞ୍ଚିଗଲେ ଏବଂ ତାକୁ ତୃଣପରି ଜ୍ଞାନ କରି କଠୋର ବାକ୍ୟରେ କହିଲେ – ରାକ୍ଷସ, ମୁଁ ରାମଙ୍କର ମିତ୍ର ସୁଗ୍ରୀବ । ଆଜି ତୁ ମୋ ହାତରୁ ରକ୍ଷା ପାଇପାରିବୁ ନାହିଁ । ଏହା କହି ସହସା ଲମ୍ଫ ଦେଇ ରାବଣର ମୁକୁଟକୁ କାଢ଼ିନେଇ ଭୂଇଁରେ ଦଳିଦେଲେ । ରାବଣ କହିଲା, ସୁଗ୍ରୀବ, ଏ ପର୍ଯ୍ୟନ୍ତ ତୁ ମୋର ଦୃଷ୍ଟିର ଅନ୍ତରାଳରେ ଥାଇ ସୁଗ୍ରୀବ ହୋଇଥିଲୁ । ଏବେ ହୀନଗ୍ରୀବ ହେବୁ । ରାବଣ ଉଠିଯାଇ ସୁଗ୍ରୀବଙ୍କୁ ଟେକିଧରି କଚାଡ଼ି ଦେଲା । ସୁଗ୍ରୀବ ମଧ୍ୟ ଉଠିପଡ଼ି ରାବଣକୁ କଚାଡ଼ି ଦେଲେ । ଏହିପରି ଦୁହିଁଙ୍କ ମଧ୍ୟରେ ମଲ୍ଲଯୁଦ୍ଧ ଓ ମୁଷ୍ଟିଯୁଦ୍ଧ ଆରମ୍ଭ ହୋଇଗଲା । ସେମାନଙ୍କ ମଧ୍ୟରୁ କିଏ କେତେବେଳେ ତଳକୁ ପଡ଼ିଯାଏ ଏବଂ କିଏ ଉପରକୁ ଉଠିଯାଏ । ଉଭୟ ମୁଥ, ଚାପୁଡ଼ା ଓ କହୁଣୀ ମାରି ପରସ୍ପରକୁ ବ୍ୟଥିତ କଲେ । ଉଭୟ ପ୍ରସିଦ୍ଧ ମଲ୍ଲଯୋଦ୍ଧା ଥିବାରୁ ବହୁ ସମୟ ପର୍ଯ୍ୟନ୍ତ ଲଢ଼ିବାକୁ ଲାଗିଲେ । ରାବଣ ଦେଖିଲା, ମାୟାବଳର ଆଶ୍ରୟ ନ ନେଲେ ସୁଗ୍ରୀବଙ୍କୁ ପରାସ୍ତ କରିହେବ ନାହିଁ । ରାବଣର ମାୟା ରଚନା ଦେଖିପାରି ସୁଗ୍ରୀବ ସଙ୍ଗେ ସଙ୍ଗେ ଆକାଶକୁ ଉଠିଗଲେ ଏବଂ ଲମ୍ଫଦେଇ ରାମଙ୍କ ପାଖରେ ପହଞ୍ଚି ସବୁ କଥା ଜଣାଇଲେ ।

ସୁଗ୍ରୀବଙ୍କୁ ଫେରିଆସିବାର ଦେଖି ବାନର ଯୂଥପତିମାନେ ହର୍ଷଧ୍ୱନି କଲେ । ସୁଗ୍ରୀବଙ୍କ ଦେହରେ କ୍ଷତଚିହ୍ନ ଦେଖି ରାମ ତାଙ୍କୁ ଆଲିଙ୍ଗନ କରି କହିଲେ, ମୋ ସହିତ ପରାମର୍ଶ ନ କରି ତୁମେ ଯେଉଁ ଦୁଃସାହସିକ କାର୍ଯ୍ୟ କଲ, ତାହା ରାଜା ପକ୍ଷରେ ଅନୁଚିତ । ଆମ ସମସ୍ତଙ୍କୁ ତୁମେ ଚିନ୍ତାରେ ପକାଇଦେଲ । ତୁମର ଯଦି କିଛି ହୋଇଯାଇଥାନ୍ତା, ମୋର, ଲକ୍ଷ୍ମଣଙ୍କର ଓ ବାନରବଳର କି ଅବସ୍ଥା ହୋଇଥାନ୍ତା ?

ସୁଗ୍ରୀବ କହିଲେ – ରାଘବ, ମୁଁ ନିଜର ବଳ ବିଷୟରେ ଅବଗତ । ତୁମ ସ୍ତ୍ରୀ ଅପହରଣକାରୀ ରାବଣକୁ ଦେଖି ମୋର କ୍ରୋଧ ବଢ଼ିଗଲା । ତେଣୁ ମୁଁ ନିଜକୁ ସମ୍ବରଣ କରିପାରିଲି ନାହିଁ ।

ସୁବେଳ ପର୍ବତରୁ ଓହ୍ଲାଇ ଆସି ରାମ ନିଜର ସେନା ପରିଦର୍ଶନ କଲେ ଓ ଯୁଦ୍ଧର ସମୟ ଉପସ୍ଥିତ ହୋଇଥିବା ଜାଣି ଲଙ୍କାଦୁର୍ଗ ଅଭିମୁଖରେ ଯାତ୍ରା କଲେ । ଧନୁଶର ଧରି

ଆଗରେ ରାମ ଏବଂ ତାଙ୍କ ପଛରେ ବିଭୀଷଣ, ସୁଗ୍ରୀବ, ହନୁମାନ, ଜାମ୍ବବାନ, ନଳ, ନୀଳ ଓ ଲକ୍ଷ୍ମଣ ଯାତ୍ରା କଲେ । ସାଗରର ଗର୍ଜନତୁଲ୍ୟ ଲଙ୍କାର ପ୍ରାକାର ତୋରଣ ଶୈଳକାନନକୁ ଧ୍ୱନିତ କରି ବିପୁଳ ବାନରସେନା ପ୍ରଧାବିତ ହେଲା । ଏହି ବାନରବାହିନୀ ବିଶାଳ ଶିଳା ଓ ବୃକ୍ଷମାନ ଧାରଣ କରି ଦୁର୍ଦ୍ଧର୍ଷ ଲଙ୍କାପୁରୀକୁ ଘେରିଗଲେ । ରାବଣ ଜଗିଥିବା ଉତ୍ତରଦ୍ୱାରରେ ରାମଚନ୍ଦ୍ର, ପୂର୍ବଦ୍ୱାରରେ ନୀଳ, ଦକ୍ଷିଣଦ୍ୱାରରେ ଅଙ୍ଗଦ ଓ ପଶ୍ଚିମଦ୍ୱାରରେ ହନୁମାନ ଅବସ୍ଥିତ ହେଲେ । ବାନରସେନା ମଧ୍ୟଭାଗରେ ସୁଗ୍ରୀବ ସୈନ୍ୟଚାଳନାର ଦାୟିତ୍ୱରେ ରହିଲେ ।

## ୧୦୩ ।। ରାବଣକୁ ଅଙ୍ଗଦଙ୍କ ଅପମାନ

ରାବଣକୁ ଶେଷ ସୁଯୋଗ ଦେବାପାଇଁ ରାମ ଅଙ୍ଗଦଙ୍କୁ ଦୂତରୂପେ ପଠାଇବାପାଇଁ ସ୍ଥିର କଲେ । ସେ ବାଳୀପୁତ୍ରଙ୍କୁ ଡାକି କହିଲେ ସୌମ୍ୟ, ତୁମେ ଲଙ୍କାର ପ୍ରାଚୀର ଲଂଘନ କରି ରାବଣ ପାଖରେ ପହଞ୍ଚି କହ – ''ଶ୍ରୀହୀନ ନଷ୍ଟବୁଦ୍ଧି ରାକ୍ଷସ, ଦେବ, ଗନ୍ଧର୍ବ, ଯକ୍ଷ, ଅପ୍ସରା ଓ ଋଷିମାନଙ୍କ ଉପରେ ତୋର ଅତ୍ୟାଚାର ସୀମା ଲଂଘନ କଲାଣି । ବର୍ତ୍ତମାନ ଯେଉଁ ଦର୍ପରେ ତୁ ସୀତାଙ୍କୁ ହରଣ କରି ଆଣିଛୁ ଆଜି ତାର ପରିଚୟ ଦେବାର ବେଳ ଆସିଛି । ସୀତାଙ୍କୁ ଫେରାଇଦେଇ ତୁ ମୋର ଶରଣ ନ ପଶିଲେ, ସବଂଶ ନିହତ ହେବୁ ଏବଂ ମୋର ଶରଣାଗତ ବିଭୀଷଣ ଲଙ୍କାର ରାଜା ହେବେ'' ।

ଅଙ୍ଗଦ ଆକାଶମାର୍ଗରେ ଗତିକରି ରାବଣ ଭବନରେ ପହଞ୍ଚିଲେ । ମୂର୍ତ୍ତିମନ୍ତ ଅଗ୍ନିତୁଲ୍ୟ ଦଣ୍ଡାୟମାନ ହୋଇ ଅଙ୍ଗଦ କହିଲେ – ନୃଶଂସ ରାବଣ, ତୁ ମୋର ପିତା ବାଳୀଙ୍କର ନାମ ଶୁଣିଥିବୁ । ମୁଁ ସେହି ଅଙ୍ଗଦ, କୋଶଳରାଜ ରାମଙ୍କର ଦୂତ । ଅମାତ୍ୟ, ପୁତ୍ର, ଜ୍ଞାତି ଓ ବାନ୍ଧବମାନଙ୍କ ସହିତ ମୁଁ ତୋତେ ନିହତ କରିବି । ତୋର ମୃତ୍ୟୁ ହେଲେ ଦେବ, ଦାନବ, ଗନ୍ଧର୍ବ ଓ ଋଷିମାନଙ୍କ ସମେତ ତ୍ରିଲୋକ ନିରୁଦ୍‌ବେଗ ହେବ । ଯଦି ସତ୍‌କାରପୂର୍ବକ ପ୍ରଣାମ କରି ଶ୍ରୀରାମଙ୍କ ହାତରେ ବୈଦେହୀଙ୍କୁ ଅର୍ପଣ ନ କରୁ ତା'ହେଲେ ତୋର ନିଧନ ଓ ବିଭୀଷଣଙ୍କର ରାଜୈଶ୍ୱର୍ଯ୍ୟ ଲାଭ ସୁନିଶ୍ଚିତ ।

କ୍ରୋଧରେ ଅଧୀର ହୋଇ ରାବଣର ଚକ୍ଷୁ ରକ୍ତବର୍ଣ୍ଣ ହୋଇଗଲା । ଏହି ଦୁର୍ବୁଦ୍ଧି ବାନରକୁ ଶୀଘ୍ର ହତ୍ୟାକର ବୋଲି ସେ ତାର ସଚିବମାନଙ୍କୁ ଆଦେଶ ଦେଲା । ଚାରିଜଣ ଭୟଙ୍କର ନିଶାଚର ଅଙ୍ଗଦଙ୍କୁ ଧରିପକାଇଲେ । ଅଙ୍ଗଦ ସେମାନଙ୍କୁ ଧରି ହଠାତ୍ ଆକାଶକୁ ଉଠିଯିବାରୁ ସେମାନେ ସମସ୍ତେ କଚାଡ଼ି ହୋଇ ତଳେ ପଡ଼ିଗଲେ । ରାବଣର ପର୍ବତତୁଲ୍ୟ ଉଚ୍ଚ ଅଟ୍ଟାଳିକା ଦେଖି ବାଳୀପୁତ୍ର ପଦାଘାତ ଦ୍ୱାରା ତାର ଶିଖରକୁ ଭାଙ୍ଗିଦେଲେ । ତାଙ୍କର ଭୟଙ୍କର ହୁଙ୍କାର ଧ୍ୱନିରେ ଲଙ୍କାକୁ ପ୍ରକମ୍ପିତ କରି ଆକାଶ ମାର୍ଗରେ ପୁଣି ରାମଙ୍କ ନିକଟକୁ ଫେରିଆସିଲେ । ଅଟ୍ଟାଳିକା ଧ୍ୱସ୍ତ ହେବାର ଦେଖି ରାବଣ କ୍ରୋଧରେ ଦୀର୍ଘନିଃଶ୍ୱାସ ପକାଇବାକୁ ଲାଗିଲା । ବାନରମାନେ ଉତ୍ସାହିତ ହୋଇ ଲଙ୍କାକୁ

ଏପରି ଭାବରେ ଘେରିଗଲେ ଯେ ତାର ସମସ୍ତ ପ୍ରାଚୀର ବାନରମୟ ହୋଇଗଲା । ଯୁଦ୍ଧଦୁର୍ମଦ ବାନରମାନେ ରାମଚନ୍ଦ୍ର, ଲକ୍ଷ୍ମଣ ଓ ସୁଗ୍ରୀବଙ୍କର ଜୟନାଦ କରିବାକୁ ଲାଗିଲେ ।

## ୧୦୪ ।। ଲଙ୍କାରେ ଯୁଦ୍ଧ

ବାନରସେନା ଲଙ୍କାକୁ ଘେରିଯାଇଥିବା ଜାଣି ରାବଣ ଶୀଘ୍ର ସେମାନଙ୍କ ବିରୋଧରେ ଯୁଦ୍ଧ ଘୋଷଣା କଲା । ଦେବାସୁର ଯୁଦ୍ଧପରି ରାକ୍ଷସ ଓ ବାନରଙ୍କ ମଧ୍ୟରେ ଯୁଦ୍ଧ ଲାଗିଗଲା । ଅଙ୍ଗଦଙ୍କ ସହିତ ଇନ୍ଦ୍ରଜିତ୍, ସଂପାତି ସହିତ ପ୍ରଜଂଘ, ହନୁମାନଙ୍କ ସହିତ ଜମ୍ବୁମାଳୀ, ବିଭୀଷଣଙ୍କ ସହିତ ମିତ୍ରଘ୍ନ, ନୀଳଙ୍କ ସହିତ ନିକୁମ୍ଭ, ସୁଗ୍ରୀବଙ୍କ ସହିତ ପ୍ରଭସ, ଲକ୍ଷ୍ମଣଙ୍କ ସହିତ ବିରୂପାକ୍ଷ ଏବଂ ରାମଙ୍କ ସହିତ ଅଗ୍ନିକେତୁ ସମେତ ଚାରିଜଣ ରାକ୍ଷସବୀରଙ୍କର ଯୁଦ୍ଧ ହେଲା ।

ଇନ୍ଦ୍ରଜିତ୍ ଅଙ୍ଗଦଙ୍କୁ ଗଦାଘାତ କଲା । ସେହି ଗଦାକୁ ନେଇ ଅଙ୍ଗଦ ଇନ୍ଦ୍ରଜିତ୍‌ର ସୁବର୍ଣ୍ଣଚିତ୍ରିତ ରଥ, ଅଶ୍ୱ ଏବଂ ସାରଥିଙ୍କୁ ଚୂର୍ଣ୍ଣ କଲେ । ବାନର ସଂପାତିର ଆଘାତରେ ପ୍ରଜଂଘ ନିହତ ହେଲା । ହନୁମାନଙ୍କ ପ୍ରତି ଜମ୍ବୁମାଳୀ ଏକ ବଳବାନ୍ ଶକ୍ତି ପ୍ରହାର କଲା । ଆହତ ହନୁମାନ ଜମ୍ବୁମାଳୀର ରଥରେ ଚଢ଼ିଯାଇ ତାକୁ ମୁଷ୍ଟିଘାତ ଦ୍ୱାରା ନିହତ କଲେ । ବିଭୀଷଣଙ୍କର ଗଦାପ୍ରହାରରେ ମିତ୍ରଘ୍ନର ମୃତ୍ୟୁ ହେଲା । ସୁଗ୍ରୀବ ଏକ ବିଶାଳ ବୃକ୍ଷ ସାହାଯ୍ୟରେ ପ୍ରଭସକୁ ହତ୍ୟା କଲେ । ଲକ୍ଷ୍ମଣଙ୍କ ଶରରେ ବିରୂପାକ୍ଷ ନିହତ ହେଲା ଏବଂ ଯେଉଁ ଚାରିଜଣ ରାକ୍ଷସବୀର ରାମଙ୍କ ସହିତ ଲଢ଼ିବାକୁ ଆସିଥିଲେ, ସେମାନେ ତାଙ୍କର ଶରରେ ଛିନ୍ନମସ୍ତକ ହୋଇ ଭୂପତିତ ହେଲେ । ନୀଳ ନିକୁମ୍ଭର ରଥରୁ ଚକ କାଢ଼ିନେଇ ତାରି ସାହାଯ୍ୟରେ ତାକୁ ନିହତ କଲେ । ସୁଷେଣଙ୍କର ଶିଳାଘାତରେ ବିଦ୍ୟୁତ୍‌ମାଳୀ ନିହତ ହେଲା । ଏହିପରି ରାବଣର ରାକ୍ଷସଯୋଦ୍ଧାମାନେ ଯୁଦ୍ଧରେ ନିହତ ଓ ପରାଜିତ ହେଲେ; ରଥ, ଅଶ୍ୱ, ଗଜ ଭଗ୍ନ ହେଲା । ରାକ୍ଷସ ଓ ବାନରଙ୍କର ମୃତଦେହରେ ରଣଭୂମି ବିକୀର୍ଣ୍ଣ ହେଲା ।

ସୂର୍ଯ୍ୟାସ୍ତ ହେଲେ ମଧ୍ୟ ସେଦିନର ଯୁଦ୍ଧ ଶେଷ ହେଲା ନାହିଁ । ରାକ୍ଷସମାନେ ବିଭିନ୍ନ ଅସ୍ତ୍ରଶସ୍ତ୍ର ଧରି ଏବଂ ବାନରମାନେ ଶିଳା ଓ ବୃକ୍ଷମାନ ଧରି ପରସ୍ପର ପ୍ରତି ଧାବିତ ହେଲେ । ସେହି ନିବିଡ଼ ଅନ୍ଧକାର ମଧ୍ୟରେ ଚାରିଆଡୁ କେବଳ ମାର ମାର ଶବ୍ଦ ଶୁଣାଯାଉଥିଲା । ରାକ୍ଷସମାନେ ବାନରମାନଙ୍କୁ ଓ ଭୟାନକ ବାନରମାନେ ରାକ୍ଷସମାନଙ୍କୁ ଧରି ଭକ୍ଷଣ କରିବାକୁ ଲାଗିଲେ । ଯୁଦ୍ଧଭୂମିରେ ରକ୍ତନଦୀ ବହିଲା । ରାବଣର ଛଅଜଣ ସେନାପତି ରାମଙ୍କୁ ଆକ୍ରମଣ କରିବାକୁ ଆସୁଥିଲେ । ଯଜ୍ଞଶତ୍ରୁ, ମହାପାର୍ଶ୍ୱ, ମହୋଦର, ବଜ୍ରଦଂଷ୍ଟ, ଶୁକ ଓ ସାରଣ ରାମଙ୍କ ବାଣରେ ବିଦୀର୍ଣ୍ଣ ହୋଇ ଯୁଦ୍ଧ ଛାଡ଼ି ପଳାଇଗଲେ । ଅଗ୍ନିଶିଖା ପରି ରାମଙ୍କର ଶରଜାଳରେ ଦିଗ୍‌ବିଦିଗ ଉଜ୍ଜ୍ୱଳ ଦେଖାଗଲା । ଅଗ୍ନିରେ ପତଙ୍ଗ ପରି ରାକ୍ଷସମାନେ ତାଙ୍କର ବାଣାଘାତରେ ସହସ୍ର ସହସ୍ର

ସଂଖ୍ୟାରେ ନିହତ ହେବାର ଦେଖି ଅଙ୍ଗଦ ଦ୍ୱାରା ନିର୍ଜିତ ଇନ୍ଦ୍ରଜିତ୍ ସମସ୍ତଙ୍କଠାରୁ ଅଦୃଶ୍ୟ ରହି ମାୟାଯୁଦ୍ଧ ଅବଲମ୍ବନ କଲା । ସେ ପ୍ରବଳ ବେଗରେ ଶର ସନ୍ଧାନ କରି ରାମଲକ୍ଷ୍ମଣ ଓ ବାନରବୀରମାନଙ୍କୁ କ୍ଷତ ବିକ୍ଷତ କରିବାକୁ ଲାଗିଲା । ରାମ ଇନ୍ଦ୍ରଜିତ୍‌ର ସନ୍ଧାନ ନେବାପାଇଁ ଅଙ୍ଗଦ ସମେତ ଦଶଜଣ ବାନର ଯୂଥପତିଙ୍କୁ ଆଦେଶ ଦେଲେ । ରାବଣପୁତ୍ର ଲୁଚିରହି ଶରଦ୍ୱାରା ସେମାନଙ୍କୁ ଏପରି କ୍ଷତବିକ୍ଷତ କଲା ଯେ ମେଘମଣ୍ଡଳରେ ଲୁଚ୍ଛାୟିତ ସୂର୍ଯ୍ୟ ପରି ସେମାନେ ଇନ୍ଦ୍ରଜିତ୍‌କୁ ଦେଖିପାରିଲେ ନାହିଁ । ଅନ୍ତର୍ଦ୍ଧାନ ହୋଇଯାଇ ସେ ରାମଲକ୍ଷ୍ମଣଙ୍କୁ କହିଲା, ମୁଁ ଅଦୃଶ୍ୟ ଭାବରେ ଯୁଦ୍ଧକଲେ ଦେବରାଜ ଇନ୍ଦ୍ର ମଧ୍ୟ ମୋତେ ଦେଖିପାରିବେ ନାହିଁ । ବର୍ତ୍ତମାନ ତୁମର ଶେଷ ସମୟ ଆସିଗଲା । କ୍ରୁଦ୍ଧ ଇନ୍ଦ୍ରଜିତ୍ ସଙ୍ଗେ ସଙ୍ଗେ ବିଷଧର ସର୍ପମାନଙ୍କୁ ଶରରୂପେ ପ୍ରୟୋଗ କରି ରାମ-ଲକ୍ଷ୍ମଣଙ୍କୁ ନାଗପାଶରେ ବନ୍ଧନ କଲା । ଇନ୍ଦ୍ରଜିତ୍ ଦ୍ୱାରା ବାରମ୍ବାର ଏହିପରି ଶରବିଦ୍ଧ ଓ ନାଗପାଶରେ ବଦ୍ଧ ହୋଇ ରାମ ଓ ଲକ୍ଷ୍ମଣ କମ୍ପିତ କଳେବରରେ ଭୂପତିତ ହେଲେ । ସେମାନେ କିଛି ଦେଖିପାରିଲେ ନାହିଁ । ସେମାନଙ୍କ ଶରୀରରେ ଆଙ୍ଗୁଳେ ମାତ୍ର ସ୍ଥାନ ଖାଲି ନ ଥିଲା । ଏପରିକି ହସ୍ତାଙ୍ଗୁଳିମାନ ମଧ୍ୟ ବିଦ୍ଧ ହୋଇଥିଲା । ଶରବିଦ୍ଧ ରାମ ଲକ୍ଷ୍ମଣ ଅଚେତନ ହୋଇ ବୀରଶଯ୍ୟାରେ ଶୋଇ ରହିଲେ । ବାନରବୀରମାନେ କିଛି ଉପାୟ ନ ପାଇ ସେ ଦୁହିଁଙ୍କୁ ଘେରି ବସି ଶୋକାର୍ତ୍ତ ଭାବରେ ରୋଦନ କରିବାକୁ ଲାଗିଲେ ।

## ୧୦୫ ॥ ନାଗପାଶରେ ରାମଲକ୍ଷ୍ମଣ

ସୁଗ୍ରୀବ, ବିଭୀଷଣ, ନୀଳ, ଅଙ୍ଗଦ, ସୁଷେଣ ଆଦି ବାନରମୁଖ୍ୟସେନାପତିମାନେ ସେଠାରେ ଉପସ୍ଥିତ ହୋଇ ଶୋକରେ କାତର ହେଲେ । ଇନ୍ଦ୍ରଜିତ୍ କେଉଁଠାରେ ଅଛି, ସେମାନେ ଆକାଶକୁ ନିରୀକ୍ଷଣ କରି ମଧ୍ୟ ଜାଣିପାରିଲେ ନାହିଁ । କେବଳ ବିଭୀଷଣ ମାୟାବଳରେ ତାକୁ ଦେଖିପାରିଲେ । ଇନ୍ଦ୍ରଜିତ୍ ଆନନ୍ଦରେ ରାକ୍ଷସମାନଙ୍କୁ କହିଲା, ଖରଦୂଷଣ ହତ୍ୟାକାରୀ ରାମଲକ୍ଷ୍ମଣଙ୍କୁ ଦେଖ । ସେମାନେ ମୋ ଦ୍ୱାରା ନିହତ ହେଲେ । ଏହି ବନ୍ଧନରୁ ସେମାନଙ୍କୁ କେହି ମୁକ୍ତ କରିପାରିବେ ନାହିଁ । ଯାହାର କଥା ଚିନ୍ତାକରି ମୋର ପିତା ଉନିଦ୍ର ରଜନୀ ଯାପନ କରୁଥିଲେ, ବର୍ଷାକାଳୀନ ନଦୀ ପରି ଲଙ୍କା ବ୍ୟାକୁଳିତ ହେଉଥିଲା, ମୁଁ ଆଜି ସେହି ଅନର୍ଥର ମୂଳ ପିତୃଶତ୍ରୁ ରାମଙ୍କୁ ନିହତ କଲି । ଆଜି ଯୁଦ୍ଧଭୂମିରେ ରାମଲକ୍ଷ୍ମଣ ସମେତ ବାନରବଳର ପରାକ୍ରମ ବ୍ୟର୍ଥ ହେଲା । ଏହା କହିବା ସଙ୍ଗେ ସଙ୍ଗେ ଇନ୍ଦ୍ରଜିତ୍ ନୀଳ, ମୈନ୍ଦ, ଦ୍ୱିବିଦ, ଜାମ୍ବବାନ୍, ଗବାକ୍ଷ, ହନୁମାନ, ଅଙ୍ଗଦ ଆଦି ବାନର ଯୂଥପତିମାନଙ୍କୁ ବାରମ୍ବାର ବହୁ ବାଣରେ ଆହତ କଲା । ଅଗ୍ନିତୁଲ୍ୟ କଷ୍ଟଦାୟକ ଶରମାନଙ୍କ ଦ୍ୱାରା ବାନରବୀରମାନଙ୍କୁ ଆହତ କରି ଇନ୍ଦ୍ରଜିତ୍ ଅଟ୍ଟହାସ୍ୟ କରି କହିଲା, ଗୋଟିଏ ମାତ୍ର ଶରରେ ରାମ ଲକ୍ଷ୍ମଣଙ୍କୁ ସନ୍ଧାନ କରି ବାନରସେନାକୁ ମୁଁ ପରାସ୍ତ କଲି ।

ଇନ୍ଦ୍ରଜିତ୍‌ର ବୀରତ୍ୱ ଦେଖି ରାକ୍ଷସମାନେ ଘୋର ଗର୍ଜନପୂର୍ବକ ତାର ପ୍ରଶଂସା କରିବାକୁ ଲାଗିଲେ । ରାମଲକ୍ଷ୍ମଣଙ୍କୁ ନିହତ ବୋଲି ମନେକରି ଇନ୍ଦ୍ରଜିତ୍ ରାକ୍ଷସସେନା ସହିତ

ବିଜୟଗର୍ବରେ ଲଙ୍କାପୁରୀରେ ପ୍ରବେଶ କଲା ।

ରାମଲକ୍ଷ୍ମଣଙ୍କୁ ବାଣବିଦ୍ଧ ହୋଇ ଅଚେତନ ଭାବେ ଶୋଇଥିବାର ଦେଖି ସୁଗ୍ରୀବ ରୋଦନ କରିବାକୁ ଲାଗିଲେ । ବିଭୀଷଣ କହିଲେ, ଏତେବେଳେ ତୁମେ ଭୀତ ହୁଅ ନାହିଁ । ଶୋକରେ ଅଶ୍ରୁପାତ କର ନାହିଁ । ଯୁଦ୍ଧରେ ସବୁବେଳେ ଗୋଟିଏ ପକ୍ଷ ଜୟଲାଭ କରେ ନାହିଁ । ଯଦି ଆମର ଭାଗ୍ୟବଳ ଥାଏ, ତା'ହେଲେ ରାମଲକ୍ଷ୍ମଣ ନିଶ୍ଚୟ ଉଠିବେ । ବାନରରାଜ, ପ୍ରକୃତିସ୍ଥ ହୁଅ । ମୋ ପରି ନିରାଶ ବ୍ୟକ୍ତିକୁ ସାନ୍ତ୍ୱନା ଦିଅ । ରାମଲକ୍ଷ୍ମଣ ସତ୍ୟଧର୍ମରେ ରହିଛନ୍ତି । ସେମାନଙ୍କର ମରଣର ଭୟ ନାହିଁ । ସଂଜ୍ଞାହୀନ ଥିବା ପର୍ଯ୍ୟନ୍ତ ରାମଲକ୍ଷ୍ମଣଙ୍କୁ ଜଗିରହି ରକ୍ଷାକର ।

ବିଭୀଷଣ ପୁଣି କହିଲେ – ସୁଗ୍ରୀବ, ତୁମେ ନିଜେ ଧୈର୍ଯ୍ୟ ହରାଇଲେ ବାନରସେନା ମଧ୍ୟ ଧୈର୍ଯ୍ୟ ହରାଇବେ । ସେମାନେ ଭୀତ ଅବସ୍ଥାରେ ଅଛନ୍ତି । ଏଠାରୁ ପଳାଇଯିବାପାଇଁ ସେମାନେ ପରସ୍ପର କାନରେ କୁହାକୁହି ହେଉଛନ୍ତି । ସେମାନଙ୍କ ମନରୁ ଭୟ ଦୂର କର । ଏହା କହି ବିଭୀଷଣ ବାନରମାନଙ୍କ ପାଖକୁ ଯାଇ ସେମାନଙ୍କୁ ଆଶ୍ୱାସନା ଦେବାକୁ ଲାଗିଲେ ।

ଇନ୍ଦ୍ରଜିତ୍ ଲଙ୍କାରେ ପହଞ୍ଚି ରାବଣଙ୍କୁ ପ୍ରଣାମ କରି ଜଣାଇଲା ଯେ ରାମଲକ୍ଷ୍ମଣ ନିହତ ହୋଇଛନ୍ତି । ରାବଣ ଆନନ୍ଦରେ ସିଂହାସନରୁ ଡେଇଁପଡ଼ି ଇନ୍ଦ୍ରଜିତ୍‌କୁ କୁଣ୍ଢାଇପକାଇଲା ଏବଂ ତାର ମସ୍ତକ ଆଘ୍ରାଣ କରି ସମସ୍ତ ବିଷୟ ଜାଣିବାପାଇଁ ଇଚ୍ଛାକଲା । ଇନ୍ଦ୍ରଜିତ୍‌ଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ଅଶୋକବନରେ ସୀତାଙ୍କୁ ଜଗିଥିବା ତ୍ରିଜଟା ପ୍ରଭୃତି ରାକ୍ଷସୀମାନଙ୍କୁ ଡାକି କହିଲା, ତୁମେ ସୀତାକୁ କହ, ରାମଲକ୍ଷ୍ମଣ ଇନ୍ଦ୍ରଜିତ୍ ଦ୍ୱାରା ନିହତ ହୋଇଛନ୍ତି । ବୈଦେହୀକୁ ପୁଷ୍ପକବିମାନରେ ବସାଇ ଯୁଦ୍ଧକ୍ଷେତ୍ରକୁ ନେଇଯାଅ, ଯେପରିକି ତାର ମୃତ ପତିକୁ ଦେଖି ତାର ବିଶ୍ୱାସ ଜନ୍ମିବ । ଯାହାର ବଳଗର୍ବରେ ସେ ମୋତେ ଏତେଦିନ ଅବଜ୍ଞା କରି ଆସୁଥିଲା, ଆଜି ତାକୁ ନିହତ ହେବାର ଦେଖି ସେ ନିଶ୍ଚୟ ମୋତେ ବରଣ କରିବ ।

## ୧୦୬ ।। ରାମ ନିହତ ନୁହନ୍ତି : ସୀତାଙ୍କୁ ଆଶ୍ୱାସନା

ରାକ୍ଷସୀମାନେ ସୀତାଙ୍କୁ ପୁଷ୍ପକ ବିମାନରେ ବସାଇ ଯୁଦ୍ଧଭୂମିକୁ ନେଇଗଲେ । ସୀତା ନିହତ ବାନରସେନା ଓ ଶରବିଦ୍ଧ ଭୂତଳଶାୟୀ ରାମଲକ୍ଷ୍ମଣଙ୍କୁ ଦେଖି ରୋଦନ କରିବାକୁ ଲାଗିଲେ । 'ଯେଉଁ ଜ୍ଞାନୀ ବ୍ୟକ୍ତିମାନେ ମୋତେ ସଦା ସୌଭାଗ୍ୟବତୀ ଓ ପୁତ୍ରବତୀ ହେବି ବୋଲି କହିଥିଲେ, ଆଜି ସେମାନଙ୍କର ବାଣୀ ମିଥ୍ୟା ପ୍ରମାଣିତ ହେଲା । ଯେଉଁସବୁ ଚିହ୍ନପାଇଁ କୁଳବତୀ ରମଣୀମାନେ ପତିମାନଙ୍କ ସହିତ ସିଂହାସନରେ ଅଭିଷିକ୍ତ ହୁଅନ୍ତି, ମୋର ସେ ସମସ୍ତ ଲକ୍ଷଣ ଥିବା ସତ୍ତ୍ୱେ ଆଜି ମୁଁ ଅଭାଗିନୀ ବିଧବା ହୋଇଗଲି । ମୋ ପାଇଁ ସାଗର ଲଂଘନ କରି ରାମ ଲକ୍ଷ୍ମଣ ଗୋଷ୍ପଦ ପରିମିତ ଜଳରେ ନିମଜ୍ଜିତ ହେଲେ । ସମସ୍ତ ଦିବ୍ୟ ଅସ୍ତ୍ର ଜାଣିଥିଲେ ମଧ୍ୟ ମାୟାବଳରେ ରାକ୍ଷସ ତାଙ୍କୁ ନିହତ କଲା ।

ରାମଙ୍କର ଶତ୍ରୁ ହୋଇ କେହି ଜୀବନ ଧରି ଫେରିବ ନାହିଁ । କିନ୍ତୁ ମୁଁ ଦେଖୁଛି କାଳ ବଳୀୟାନ । ଯମକୁ କେହି ଜୟ କରିପାରିବେ ନାହିଁ ।' ସୀତା ଏହିପରି ଘୋର ଶୋକରେ ରୋଦନ କରିବାକୁ ଲାଗିଲେ ।

ବିଳାପକାରିଣୀ ସୀତାଙ୍କୁ ସାନ୍ତ୍ୱନା ଦେଇ ତ୍ରିଜଟା କହିଲା – ଦେବୀ, ଦୁଃଖ କର ନାହିଁ । ତୁମର ପତି ଜୀବିତ ଅଛନ୍ତି । କାରଣ ତୁମର ପତି ମୃତ ହୋଇଥିଲେ ଏହି ପୁଷ୍ପକବିମାନ ତୁମକୁ ବସାଇ ଉଡ଼ିପାରନ୍ତା ନାହିଁ । କାରଣ ଦିବ୍ୟ ବିମାନ ବିଧବାମାନଙ୍କୁ ବସାଇ ନିଏ ନାହିଁ । ପୁଣି ସେନାପତିଙ୍କ ମୃତ୍ୟୁ ହେଲେ ସୈନ୍ୟମାନେ ଯେପରି ନିରୁଦ୍ୟମ ହୋଇ ଇତସ୍ତତଃ ହୁଅନ୍ତି, ଏହି ବାନରସେନା ଆଜି ସେପରି ହେଉ ନାହିଁ । କୌଣସି ଉଦ୍‌ବେଗ ନ ଦେଖାଇ ବାନରବୀରଗଣ ରାମଙ୍କୁ ଜଗି ରହିଛନ୍ତି । ରାମ ଲକ୍ଷ୍ମଣଙ୍କ ମୁଖମଣ୍ଡଳ ଦର୍ଶନ କର । ତାହା ପ୍ରଫୁଲ୍ଲ ଦେଖାଯାଉଛି । ମୃତବ୍ୟକ୍ତିଙ୍କ ମୁଖ ଏପରି ପ୍ରସନ୍ନ ହୁଏ ନାହିଁ । ମନୁଷ୍ୟ ମରିଗଲେ ତାର ମୁଖ ବିକୃତ, ଶ୍ରୀହୀନ ହୋଇଯାଏ । ତପସ୍ୱିନୀ, ମୁଁ ତୁମକୁ କେବେ ମିଥ୍ୟା କହି ନାହିଁ କି କହିବି ନାହିଁ । କାରଣ ତୁମେ ତ ତୁମର ସ୍ୱଭାବ ଚରିତ୍ର ଦ୍ୱାରା ମୋର ମନକୁ ଅଧିକାର କରିନେଇଛ । ତ୍ରିଜଟାର କଥା ଶୁଣି ସୀତା ଆଶ୍ୱସ୍ତ ହୋଇ କହିଲେ – ତ୍ରିଜଟା, ତୁମର କଥା ସତ୍ୟ ହେଉ ।

## ୧୦୭ ।। ରାମଙ୍କର ସଂଜ୍ଞାଲାଭ ଓ ଶୋକ

ଅଚେତନ ଭାବରେ ରୁଧିରାକ୍ତ ଦେହରେ ଶୋଇରହି ରାମଲକ୍ଷ୍ମଣ ସର୍ପପରି ନିଃଶ୍ୱାସ ତ୍ୟାଗ କରୁଥିଲେ । ସୁଗ୍ରୀବ ଆଦି ବାନରଶ୍ରେଷ୍ଠମାନେ ଶୋକାର୍ତ୍ତ ଭାବରେ ତାଙ୍କର ଚାରିପଟେ ଘେରି ବସିଥିଲେ । ପ୍ରଥମେ ରାମ ସଂଜ୍ଞା ଲାଭକରି ଲକ୍ଷ୍ମଣଙ୍କୁ ଦେଖି ବ୍ୟାକୁଳ ହେବାକୁ ଲାଗିଲେ । ରାମ କହିଲେ, ସୁମିତ୍ରାଙ୍କର ପ୍ରିୟପୁତ୍ର ଲକ୍ଷ୍ମଣ ଯଦି ନିହତ ହୋଇଥାନ୍ତି, ତା' ହେଲେ ମୁଁ ଏଠାରେ ପ୍ରାଣ ବିସର୍ଜନ କରିବି । ତାଙ୍କୁ ଛାଡ଼ି ଜୀବନ ବା ସୀତାଙ୍କଠାରେ ମୋର ପ୍ରୟୋଜନ ନାହିଁ । କାରଣ ସୀତାଙ୍କ ପରି ପତ୍ନୀ ମିଳିପାରନ୍ତି, କିନ୍ତୁ ଲକ୍ଷ୍ମଣ ପରି ଭ୍ରାତା କଦାପି ମିଳିବ ନାହିଁ । ମୁଁ ଲକ୍ଷ୍ମଣଙ୍କୁ ସାଙ୍ଗରେ ଘେନି ବନକୁ ଆସିଥିଲି । ତାଙ୍କୁ ନ ନେଇ ମୁଁ କିପରି ଅଯୋଧ୍ୟା ଫେରିଯିବି ? ଭରତ, ଶତ୍ରୁଘ୍ନ ଓ ମାତା ସୁମିତ୍ରାଙ୍କୁ କି ଜବାବ ଦେବି ? ମୋର ଦୁଃଖବେଳେ ଲକ୍ଷ୍ମଣ ସାନ୍ତ୍ୱନା ଦେଉଥିଲେ । ବର୍ତ୍ତମାନ ମୁଁ ଶୋକାର୍ତ୍ତ ଭାବରେ ରୋଦନ କରୁଥିବାବେଳେ ସେ ଚୁପ୍ ହୋଇ ଶୋଇ ରହିଛନ୍ତି । ଲକ୍ଷ୍ମଣଙ୍କ ତୁଲ୍ୟ ଯୋଦ୍ଧା ସଂସାରରେ ନାହାନ୍ତି । କାର୍ତ୍ତବୀର୍ଯ୍ୟାର୍ଜୁନ ମଧ୍ୟ ତାଙ୍କର ସମକକ୍ଷ ହେବେ ନାହିଁ । ଦେବରାଜ ଇନ୍ଦ୍ରଙ୍କ ଅସ୍ତ୍ରକୁ ସେ ଯୁଦ୍ଧରେ ନଷ୍ଟ କରିଦେଇପାରନ୍ତି ।

ରାମ ପୁଣି ରୋଦନ କରି କହିଲେ, ଯେଉଁ ଲକ୍ଷ୍ମଣ ବହୁମୂଲ୍ୟ ଶଯ୍ୟାରେ ଶୋଇ ରହିବାର କଥା, ଆଜି ତାଙ୍କର ମୃତଦେହ ଭୂତଳରେ ପଡ଼ିରହିଛି । ବିଭୀଷଣ, ମୁଁ ତୁମକୁ ରାଜା କରିବାପାଇଁ କହିଥିଲି । ବର୍ତ୍ତମାନ ମୋର ବାକ୍ୟ ଅସତ୍ୟ ହେଉଥିବା ଯୋଗୁଁ ମୁଁ ନିଶ୍ଚୟ ଭସ୍ମୀଭୂତ ହେବି । ସୁଗ୍ରୀବ, ମୋ ବିନା ରାବଣ ତୁମକୁ ଅସହାୟ ମନେକରି

ଆକ୍ରମଣ କରିବ । ତେଣୁ ଅଙ୍ଗଦ, ନଳ, ନୀଳଙ୍କୁ ନେଇ ତୁମେ କିଷ୍କିନ୍ଧ୍ୟା ଫେରିଯାଅ । ହନୁମାନ ଯେଉଁ କାର୍ଯ୍ୟ କରିଛନ୍ତି ତାହା କେହି କରିପାରିବ ନାହିଁ । ଅଙ୍ଗଦ, ଜାମ୍ବବାନ, ଗବୟ, ଗବାକ୍ଷ ଆଦି ବାନରବୀରମାନେ ଯୁଦ୍ଧରେ ବହୁ ଯଶ ଅର୍ଜନ କରିଛନ୍ତି । ମୋ ପାଇଁ ସେମାନେ ପ୍ରାଣର ମମତା ଛାଡ଼ିଦେଇଛନ୍ତି । ବାନରେନ୍ଦ୍ର, ମିତ୍ର ମିତ୍ରପାଇଁ ଯାହା କରିପାରେ, ତାହା ତୁମେ ମୋ ପାଇଁ କରିଛ । ଏବେ ମୁଁ ତୁମକୁ ସମ୍ମତି ଦେଉଛି, ତୁମେ ଫେରିଯାଅ ।

ରାମଚନ୍ଦ୍ରଙ୍କ କଥାଶୁଣି ବାନରମାନଙ୍କର ଚକ୍ଷୁ ଲୋତକାର୍ଦ୍ର ହେଲା । ଏହି ସମୟରେ ଯୁଦ୍ଧଭୂମିରେ ଅନ୍ୟତ୍ର ବାନରମାନଙ୍କୁ ସାନ୍ତ୍ୱନା ଦେଇସାରି ବିଭୀଷଣ ସେଠାକୁ ଆସୁଥିଲେ । ନୀଳାଞ୍ଜନକାନ୍ତି ବିଶାଳକାୟ ବିଭୀଷଣଙ୍କୁ ଆସୁଥିବାର ଦେଖି ବାନରମାନେ ମନେକଲେ ଇନ୍ଦ୍ରଜିତ୍ ଆସୁଛି । ସେମାନେ ଇତସ୍ତତଃ ପଳାୟନ କଲେ । ବିଭୀଷଣ ରାମଙ୍କର ଜୟ ହେଉ ବୋଲି ଆଶୀର୍ବାଦ କଲେ । ତାଙ୍କୁ ଦେଖି ଜାମ୍ବବାନ୍ ବାନରମାନଙ୍କୁ ଆଶ୍ୱାସନା ଦେଇ ଫେରାଇ ଆଣିଲେ । ବିଭୀଷଣ ହାତରେ ଜଳ ଆଣି ରାମ, ଲକ୍ଷ୍ମଣଙ୍କ ଚକ୍ଷୁ ଧୌତ କରି କହିଲେ, କପଟଯୁଦ୍ଧରେ ମୋର ଭ୍ରାତୁଷ୍ପୁତ୍ର ଇନ୍ଦ୍ରଜିତ୍ ଏପରି ଦଶା ଘଟାଇଛି । ମୁଁ ଯାହାଙ୍କର ବଳବିକ୍ରମକୁ ଆଶ୍ରୟ କରିଥିଲି, ସେ ଦୁହିଁଙ୍କର ଏ ଅବସ୍ଥା ଦେଖି ମୁଁ ବିପନ୍ନ ହୋଇଛି । ରାବଣର ମନସ୍କାମନା ସିଦ୍ଧ ହେଲା ବୋଲି ଜାଣୁଛି ।

ବିଭୀଷଣଙ୍କୁ ଆଲିଙ୍ଗନ କରି ସୁଗ୍ରୀବ କହିଲେ– ଧର୍ମଜ୍ଞ, ତୁମେ ନିଶ୍ଚୟ ଲଙ୍କାର ରାଜପଦ ଲାଭ କରିବ । ରାମ, ଲକ୍ଷ୍ମଣ କୌଣସି ରୋଗରେ ପୀଡ଼ିତ ହୋଇ ନାହାନ୍ତି । ସେମାନେ ଶୀଘ୍ର ସୁସ୍ଥ ହୋଇ ରାବଣକୁ ସବଂଶ ନିହତ କରିବେ ।

## ୧୦୮ ॥ ନାଗପାଶରୁ ମୁକ୍ତି

ସୁଗ୍ରୀବ ନିଜ ପାଖରେ ବସିଥିବା ଶ୍ୱଶୁର ସୁଷେଣଙ୍କୁ କହିଲେ, ରାମଲକ୍ଷ୍ମଣ ସଂଜ୍ଞା ଲାଭ କଲେ ତୁମେ ସେମାନଙ୍କୁ ନେଇ କିଷ୍କିନ୍ଧ୍ୟାକୁ ଚାଲିଯାଅ । ମୁଁ ରାବଣକୁ ସବଂଶ ନିହତ କରି ସୀତାଙ୍କୁ ଫେରାଇ ଆଣିବି । ସୁଷେଣ କହିଲେ, ମୁଁ ସ୍ୱଚକ୍ଷୁରେ ଦେବାସୁର ଯୁଦ୍ଧ ଦେଖିଛି । ଶାସ୍ତ୍ରଜ୍ଞ ଦାନବମାନେ ମାୟାବଳରେ ଦେବତାମାନଙ୍କୁ ବାରମ୍ବାର ନିହତ କରୁଥିଲେ । କିନ୍ତୁ ମନ୍ତ୍ରବିଦ୍ୟା ଓ ଔଷଧର ପ୍ରୟୋଗରେ ବୃହସ୍ପତି ସେମାନଙ୍କୁ ଚିକିତ୍ସା କରି ସୁସ୍ଥ କରି ଦେଉଥିଲେ । ବୃହସ୍ପତିଙ୍କର ସେହି ଔଷଧର ନାମ ବିଶଲ୍ୟକରଣୀ । କ୍ଷୀରସମୁଦ୍ରରେ ଯେଉଁଠାରେ ଅମୃତ ମନ୍ଥନ କରାଯାଇଥିଲା, ସେଠାରେ ଚନ୍ଦ୍ର ଓ ଦ୍ରୋଣ ନାମରେ ଦୁଇଟି ପର୍ବତ ଅଛି । ସେହି ପର୍ବତରେ ଏହି ଔଷଧ ମିଳିବ । ବାୟୁପୁତ୍ର ହନୁମାନ ସେଠାକୁ ଯାଇ ଏହି ଔଷଧ ଆଣିପାରିବେ ।

ଏହି ସମୟରେ ପ୍ରଚଣ୍ଡ ବାୟୁ ପ୍ରବାହିତ ହେଲା । ମେଘ ଘୋଡ଼ାଇ ସେଥିରେ ବିଜୁଳି ଚମକିଲା । ସମୁଦ୍ରର ଜଳ ବିକ୍ଷୁବ୍ଧ ଓ ପୃଥିବୀ କମ୍ପମାନ ହେଲା । ବିଶାଳ ବୃକ୍ଷମାନ ଉପୁଡ଼ି ପଡ଼ିଲେ । ସମୁଦ୍ରବାସୀ ନାଗମାନେ ଭୀତତ୍ରସ୍ତ ହୋଇ ଲୁଚିଗଲେ । ବାନରମାନେ ଦେଖିଲେ, ଜ୍ୱଳନ୍ତ ପାବକ ତୁଲ୍ୟ ବିନତାନନ୍ଦନ ଗରୁଡ଼ ସେଠାରେ ଉପସ୍ଥିତ ହୋଇଛନ୍ତି ।

ତାଙ୍କୁ ଆସିବାର ଦେଖି ଯେଉଁ ଶରରୂପୀ ନାଗମାନେ ରାମଲକ୍ଷ୍ମଣଙ୍କୁ ବନ୍ଧନ କରିଥିଲେ, ସେମାନେ ଭୟରେ ପଳାୟନ କଲେ । ଗରୁଡ଼ ରାମଲକ୍ଷ୍ମଣଙ୍କୁ ଅଭିବାଦନ କରି ନିଜ ହସ୍ତରେ ସେ ଦୁହିଁଙ୍କର ମୁଖମାର୍ଜନ କଲେ । ତାଙ୍କର କରସ୍ପର୍ଶରେ ରାମଲକ୍ଷ୍ମଣଙ୍କର କ୍ଷତସ୍ଥାନମାନ ଶୁଷ୍କ ହୋଇଗଲା ଓ ସେମାନେ ସୁବର୍ଣ୍ଣତୁଲ୍ୟ କାନ୍ତିଯୁକ୍ତ ହୋଇ ତେଜ, ବୀର୍ଯ୍ୟ, ବଳ ଓ ଉତ୍ସାହରେ ଦ୍ୱିଗୁଣିତ ହେଲେ । ଗରୁଡ଼ ସେ ଦୁହିଁଙ୍କୁ ଉଠାଇ ଆଲିଙ୍ଗନ କରିବା ପରେ ରାମ କହିଲେ, ଇନ୍ଦ୍ରଜିତ୍ ଯୋଗୁଁ ଆମେ ଯେଉଁ ଘୋର ବିପଦରେ ପଡ଼ିଥିଲୁ ତୁମ ଅନୁଗ୍ରହରୁ 'ଆମେ ସେଥିରୁ ମୁକ୍ତ ହେଲୁ । ଆମର ପୂର୍ବବଳ ଓ ତେଜ ଫେରି ଆସିଲା । ପିତା ଦଶରଥଙ୍କ ଦର୍ଶନରେ ଆମର ଯେପରି ଆନନ୍ଦ ହୋଇଥାନ୍ତା, ତୁମକୁ ଦେଖି ଆମେ ସେହିପରି ଆନନ୍ଦ ଲାଭ କରୁଛୁ । ତୁମର ଦିବ୍ୟ ଅଳଙ୍କାର, ଦିବ୍ୟମାଳା, ପରିଧେୟ ବସ୍ତ୍ର ଓ ରୂପକାନ୍ତି ଦେଖି ଆମେ ତୁମ ସମ୍ପର୍କରେ ଜାଣିବାକୁ ଚାହୁଁଛୁ ।

ବିହଙ୍ଗରାଜ ଉତ୍ତର ଦେଲେ – କାକୁତ୍ସ୍ଥ ମୁଁ ତୁମର ସଖା ଓ ବାହାରେ ବୁଲୁଥିବା ତୁମର ଦ୍ୱିତୀୟ ପ୍ରାଣତୁଲ୍ୟ । ମୋର ନାମ ଗରୁଡ଼ । ଇନ୍ଦ୍ରଜିତ୍ ମାୟାବଳରେ ତୁମକୁ ନାଗପାଶରେ ବନ୍ଧନ କରିଥିବାର ଜାଣି ସେଥିରୁ ତୁମକୁ ମୁକ୍ତ କରିବାପାଇଁ ମୁଁ ଆସିଥିଲି । କାରଣ ଯକ୍ଷ, ରକ୍ଷ, ଦେବାସୁର, ଋଷି ବା ଗନ୍ଧର୍ବ କେହି ତୁମକୁ ଏଥିରୁ ମୁକ୍ତ କରିପାରି ନ ଥାନ୍ତେ । ଏପରିକି ଦେବରାଜ ଇନ୍ଦ୍ର ମଧ୍ୟ ନୁହନ୍ତି । ତୁମେ ସରଳଯୋଦ୍ଧା, କପଟଯୋଧୀ ରାକ୍ଷସମାନଙ୍କ ପ୍ରତି ଏଣିକି ସତର୍କ ହୋଇ ଯୁଦ୍ଧ କର । ମୁଁ କିପରି ତୁମର ସଖା, ଜାଣିବାପାଇଁ ତୁମର କୌତୂହଳ ହୋଇପାରେ । ଯୁଦ୍ଧରେ ବିଜୟ ଲାଭ ପରେ ତାହା ତୁମେ ଜାଣିପାରିବ । ତୁମର ଶୁଭ ସମୟ ଉପସ୍ଥିତ । ତୁମେ ଖୁବ୍ ଶୀଘ୍ର ରାବଣଙ୍କୁ ସଂହାର କରି ସୀତାଙ୍କୁ ଉଦ୍ଧାର କରିବ । ଗରୁଡ଼ ରାମଙ୍କୁ ପୁଣି ଥରେ ଆଲିଙ୍ଗନ କରି ପବନବେଗରେ ଆକାଶରେ ପ୍ରସ୍ଥାନ କଲେ ।

ହୃଷ୍ଟ ବାନରମାନେ ବାହୁସ୍ଫୋଟ ଓ ସିଂହନାଦ କରିବାକୁ ଲାଗିଲେ । ସେମାନଙ୍କର ଗର୍ଜନ ଲଙ୍କାପୁରୀକୁ କମ୍ପିତ କଲା ।

## ୧୦୯ ।। ଧୂମ୍ରାକ୍ଷ-ବଜ୍ରଦଂଷ୍ଟ୍ର-ଅକମ୍ପନ-ପ୍ରହସ୍ତର ନିଧନ

ରାବଣ ସେହି ଗର୍ଜନ ଶୁଣି ଶଙ୍କିତ ହେଲା । ସେ ମନ୍ତ୍ରୀମାନଙ୍କୁ ଡାକି କହିଲା, ଇନ୍ଦ୍ରଜିତ୍‌ର ତୀକ୍ଷ୍ଣ ଶରରେ ରାମଲକ୍ଷ୍ମଣ ବାନ୍ଧି ହୋଇ ପଡ଼ିରହିଛନ୍ତି । ତଥାପି କାହିଁକି ବାନରମାନଙ୍କର ଆନନ୍ଦଧ୍ୱନି ଶୁଣାଯାଉଛି ? ଏଥିପାଇଁ ମୋ ମନରେ ଶଙ୍କା ଜାତ ହେଉଛି ।

ରାବଣର ଆଦେଶରେ ଲଙ୍କାର ପ୍ରାଚୀର ଉପରକୁ ଯାଇ ରାକ୍ଷସମାନେ ଫେରିଆସି ବିଷଣ୍ଣ ବଦନରେ କହିଲେ, ଇନ୍ଦ୍ରଜିତ୍ ଯେଉଁ ରାମଲକ୍ଷ୍ମଣଙ୍କୁ ଶରରେ ବନ୍ଧନ କରିଥିଲେ, ସେମାନେ ବର୍ତ୍ତମାନ ସେହି ବନ୍ଧନରୁ ମୁକ୍ତ ହୋଇଛନ୍ତି । ତାହା ଶୁଣି ରାବଣର ମୁଖ ମଳିନ

ପଡ଼ିଗଲା । ସେ ଚିନ୍ତିତ ହୋଇ କହିଲା, ଇନ୍ଦ୍ରଜିତ୍ ଯେଉଁ ଅମୋଘ ସର୍ପଶରରେ ସେ ଦୁହିଁଙ୍କୁ ବାନ୍ଧିପକାଇଥିଲା, ସେଥିରୁ କେହି ମୁକ୍ତ ହେବା ସମ୍ଭବ ନୁହେଁ । ବର୍ତ୍ତମାନ ରାକ୍ଷସବଂଶର ଜୀବନ ସଂଶୟ ଉପସ୍ଥିତ । ନାଗରାଜ ବାସୁକିର ତେଜ ପରି ତେଜୀୟାନ ସର୍ପଶର ନିଷ୍ଫଳ ହୋଇଗଲା ।

କ୍ରୁଦ୍ଧ ଲଙ୍କେଶ୍ୱର ରାମଙ୍କୁ ସଂହାର କରିବାପାଇଁ ରାକ୍ଷସବୀର ଧୂମ୍ରାକ୍ଷକୁ ଆଦେଶ ଦେଲା । ଧୂମ୍ରାକ୍ଷ ବିଭିନ୍ନ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ବିଶାଳ ରାକ୍ଷସସେନାକୁ ଘେନି ଯୁଦ୍ଧଯାତ୍ରା କଲା ଏବଂ ପଶ୍ଚିମଦ୍ୱାରରେ ଯେଉଁଠି ହନୁମାନ ଥିଲେ, ସେଠାରେ ତାଙ୍କୁ ଓ ବାନରମାନଙ୍କୁ ପ୍ରଚଣ୍ଡ ବେଗରେ ଆକ୍ରମଣ କଲା । କିନ୍ତୁ ପ୍ରକୃତି ତାର ସହାୟକ ହେଲା ନାହିଁ । ବଜ୍ରପାତ ସହିତ ପବନ ପ୍ରତିକୂଳ ଦିଗରେ ପ୍ରବାହିତ ହେଲା । ଅନ୍ଧକାରରେ ଦିଗ୍‌ବିଦିଗ ଦେଖାଗଲା ନାହିଁ । ଏକ ଭୟଙ୍କର ଗୃଧ୍ର ଆସି ଧୂମ୍ରାକ୍ଷର ରଥର ଧ୍ୱଜା ଉପରେ ବସିପଡ଼ିଲା ।

ରାକ୍ଷସ ଓ ବାନରଙ୍କ ମଧ୍ୟରେ ତୁମୁଳ ଯୁଦ୍ଧ ଆରମ୍ଭ ହେଲା । ରାକ୍ଷସମାନେ ଶରରେ ବାନରମାନଙ୍କୁ ବିଦ୍ଧ କଲେ । ଗଦା, ମୁଦ୍‌ଗର, ପରିଘ ଓ ତ୍ରିଶୂଳ ଦ୍ୱାରା ସେମାନଙ୍କୁ ହତାହତ କଲେ । ବାନର ଯୂଥପତିମାନେ ଅସ୍ତ୍ରାଘାତରେ କ୍ରୁଦ୍ଧ ହୋଇ ବିଶାଳ ବୃକ୍ଷ ଓ ଶିଳାଖଣ୍ଡମାନ ଧରି ରାକ୍ଷସମାନଙ୍କୁ ପ୍ରହାର କରିବାକୁ ଲାଗିଲେ । ରାକ୍ଷସ ଓ ବାନରସୈନ୍ୟ ନିହତ ହୋଇ ଓ ରଥ, ଗଜ, ଅଶ୍ୱ ଭଗ୍ନ ବିଦ୍ଧଳିତ ହୋଇ ପର୍ବତ ଆକାରରେ ପଡ଼ି ରହିଲେ । ପରେ ସମସ୍ତ ରାକ୍ଷସସେନା ବାନରମାନଙ୍କ ଦ୍ୱାରା ପରାଜିତ ହୋଇ ପଳାୟନ କଲା । ହନୁମାନଙ୍କ ଚକ୍ଷୁ କ୍ରୋଧରେ ରକ୍ତବର୍ଣ୍ଣ ହୋଇଗଲା । ସେ ଏକ ବିଶାଳ ଶିଳାଖଣ୍ଡରେ ଧୂମ୍ରାକ୍ଷର ରଥ, ଗଜ, ଅଶ୍ୱ ଭୂପାତିତ କଲେ । ଧୂମ୍ରାକ୍ଷ ରଥରୁ ଡେଇଁପଡ଼ି ହନୁମାନଙ୍କ ଆଡ଼କୁ ଏକ କଣ୍ଟକିତ ଗଦା ନିକ୍ଷେପ କଲା । ବାନରବୀର ତାହାକୁ ଏଡ଼ାଇ ଦେଇ ଗିରିଶୃଙ୍ଗ ପରି ଏକ ବିଶାଳ ଶିଳାଖଣ୍ଡକୁ ଧୂମ୍ରାକ୍ଷର ମସ୍ତକ ଉପରେ ଛେଚିଦେଲେ । ଧୂମ୍ରାକ୍ଷର ମୃତ୍ୟୁ ଦେଖି ଯେଉଁ ଅଳ୍ପ କେତେକ ରାକ୍ଷସ ଯୁଦ୍ଧ ଭୂମିରେ ଥିଲେ, ସେମାନେ ଭୟରେ ପଳାୟନ କଲେ ।

ଧୂମ୍ରାକ୍ଷର ନିଧନ ପରେ ରାବଣ ମାୟାବୀ ବଜ୍ରଦଂଷ୍ଟ୍ରକୁ ବହୁ ଅଶ୍ୱ, ଗଜ ଓ ପଦାତିକ ସୈନ୍ୟ ସହିତ ଯୁଦ୍ଧଭୂମିକୁ ପଠାଇଲା । ମେଘ ଗର୍ଜନ ପରି ଗର୍ଜନ କରୁଥିବା ସେହି ବିଶାଳସେନା ଦକ୍ଷିଣଦ୍ୱାର ବାଟେ ଲଙ୍କାରୁ ବାହାରିଲା । ବାନରଯୂଥପତି ଅଙ୍ଗଦ ସେମାନଙ୍କ ପାଇଁ ଅପେକ୍ଷା କରି ରହିଥିଲେ । ସେ ପ୍ରଥମେ ସେମାନଙ୍କ ଉପରେ ଆକ୍ରମଣ କଲେ । ରାକ୍ଷସ ଓ ବାନରମାନଙ୍କ ମଧ୍ୟରେ ଯେଉଁ ଭୟାବହ ଯୁଦ୍ଧ ହେଲା, ସେଥିରେ ଉଭୟ ବାନର ଓ ରାକ୍ଷସ ବହୁ ସଂଖ୍ୟାରେ ନିହତ ହେଲେ । ପାଶହସ୍ତ ଯମ ପରି ବଜ୍ରଦଂଷ୍ଟ୍ର ଅବିରତ ଗତିରେ ଶରବର୍ଷଣ କରି ବାନରସୈନ୍ୟ ସଂହାର କରିବାକୁ ଲାଗିଲା । ଅଙ୍ଗଦ ଆଉ ଅପେକ୍ଷା ନ କରି ବଜ୍ରଦଂଷ୍ଟ୍ରକୁ ଦ୍ୱନ୍ଦ୍ୱଯୁଦ୍ଧକୁ ଆହ୍ୱାନ କଲେ । ସମକକ୍ଷ ଯୋଦ୍ଧା ଭାବରେ ସେମାନେ ବହୁ ସମୟ ଯୁଦ୍ଧ କରିବା ପରେ ଅଙ୍ଗଦ ଶିଳାଘାତରେ ବଜ୍ରଦଂଷ୍ଟ୍ରର ଅଶ୍ୱ ଓ ରଥକୁ ଚୂର୍ଣ୍ଣ କଲେ ଏବଂ ଏକ ଶାଣିତ ଖଡ୍‌ଗାଘାତରେ ରାକ୍ଷସର ଶିରଚ୍ଛେଦନ କଲେ । ବଜ୍ରଦଂଷ୍ଟ୍ରର ସୈନ୍ୟମାନେ ଭୟତ୍ରସ୍ତ ହୋଇ ଲଙ୍କାକୁ ପଳାୟନ କଲେ ।

ବଜ୍ରଦଂଷ୍ଟ୍ର ନିଧନ ସମ୍ବାଦ ଶୁଣି ରାବଣ ଲଙ୍କାର ଅନ୍ୟତମ ସେନାପତି ଓ ଶ୍ରେଷ୍ଠ ଯୋଦ୍ଧା ଅକମ୍ପନଙ୍କୁ ଯୁଦ୍ଧଭୂମିକୁ ପଠାଇଲା । ରାକ୍ଷସ ଓ ବାନରମାନଙ୍କର ପଦାଘାତରେ ଏକ ଧୂଳିପଟଳ ରଣଭୂମିରେ ଛାଇ ହୋଇଗଲା ଏବଂ ସେଥିରେ କେହି କାହାକୁ ଦେଖିପାରିଲେ ନାହିଁ । ଧୂଳିର ଅନ୍ଧକାର ମଧ୍ୟରେ ବାନରମାନେ ବାନରମାନଙ୍କୁ ରାକ୍ଷସମାନେ ରାକ୍ଷସମାନଙ୍କୁ ଚିହ୍ନି ନ ପାରି ପ୍ରହାର କରିବାକୁ ଲାଗିଲେ । କ୍ରମେ ଯୁଦ୍ଧଭୂମିରେ ଏତେ ରକ୍ତପାତ ହେଲା ଯେ ସେଥିରେ ଭୂମି ସିକ୍ତ ହୋଇ ଆଉ ଧୂଳି ଉଠିଲା ନାହିଁ । କ୍ରୁଦ୍ଧ ଅକମ୍ପନ ଧନୁଷ୍ଟଙ୍କାରରେ ଯୁଦ୍ଧଭୂମିକୁ କମ୍ପିତ କରି ପ୍ରବଳ ଶର ବର୍ଷଣ ଦ୍ୱାରା ବାନରସେନାଙ୍କୁ ଧ୍ୱଂସ କରିବାକୁ ଲାଗିଲା । ତାର ଶରରେ ଛିନ୍ନ ଭିନ୍ନ ହୋଇ ବାନରସୈନ୍ୟମାନେ ପଳାୟନ କଲେ । ହନୁମାନ ବାନରସେନାଙ୍କୁ ଉତ୍ସାହିତ କରି ଅକମ୍ପନ ପ୍ରତି ଧାବମାନ ହେଲେ । ସେ ଏକ ପ୍ରକାଣ୍ଡ ଶୈଳ ଉତ୍ପାଟନ କରି ରାକ୍ଷସକୁ ନିକ୍ଷେପ କଲେ । କିନ୍ତୁ ରାକ୍ଷସ ଅର୍ଦ୍ଧଚନ୍ଦ୍ର ଶରମାନଙ୍କ ଦ୍ୱାରା ସେହି ଶିଳାକୁ ଖଣ୍ଡ ଖଣ୍ଡ କରିଦେଲା । କ୍ରୁଦ୍ଧ ହନୁମାନ ଏକ ବିଶାଳ ବୃକ୍ଷ ଉତ୍ପାଟନ କରି ସବେଗରେ ଅକମ୍ପନ ମସ୍ତକରେ ପ୍ରହାର କଲେ । ଅକମ୍ପନ ନିହତ ହୋଇ ଭୂପତିତ ହେଲା ଏବଂ ଭୟାର୍ତ୍ତ ଓ ପରାଜିତ ରାକ୍ଷସସେନା ଲଙ୍କାରେ ପ୍ରବେଶ କଲା ।

ଅକମ୍ପନ ନିଧନରେ ରାବଣ କିଛି ସମୟ ନିର୍ବାକ୍ ହୋଇ ରହିଗଲା । ରାକ୍ଷସ ବୀରମାନେ ଏପରି ନିହତ ଓ ପରାସ୍ତ ହେଉଥିବାର ଦେଖି ସେ ତାର ସେନାପତି ପ୍ରହସ୍ତଙ୍କୁ କହିଲା, ଏହି ଅବସ୍ଥାରୁ ଲଙ୍କାକୁ ରକ୍ଷା କରିବାକୁ ହେଲେ ମାତ୍ର ଚାରିଜଣ ବ୍ୟକ୍ତିଙ୍କୁ ମୁଁ ଦେଖିପାରୁଛି । ମୁଁ, କୁମ୍ଭକର୍ଣ୍ଣ, ଇନ୍ଦ୍ରଜିତ୍ ଓ ତୁମେ । ତୁମେ ଶୀଘ୍ର ଯୁଦ୍ଧଯାତ୍ରା କର । ବାନରସେନାଙ୍କୁ ପରାଜିତ କରି ରାମଲକ୍ଷ୍ମଣଙ୍କୁ ବଶୀଭୂତ କର ।

ପ୍ରହସ୍ତ କହିଲା, 'ମହାରାଜ, ପୂର୍ବରୁ ବିଜ୍ଞ ମନ୍ତ୍ରୀମାନେ ସମସ୍ତଙ୍କର ମଙ୍ଗଳ ନିମନ୍ତେ ସୀତାଙ୍କୁ ପ୍ରଦାନ କରିବାପାଇଁ ତୁମକୁ ପରାମର୍ଶ ଦେଇଥିଲେ । ଅବଶ୍ୟ ତାହା ହେଲା ନାହିଁ । ବର୍ତ୍ତମାନ ନିଜର ପ୍ରାଣ, ସ୍ତ୍ରୀ, ପୁତ୍ର, ଧନ ଓ ପରିବାର ବିନିମୟରେ ମୁଁ ତୁମର କାର୍ଯ୍ୟ ସାଧନ କରିବାପାଇଁ ପ୍ରସ୍ତୁତ । ଏହା କହି ପ୍ରହସ୍ତ ବିଶାଳ ରାକ୍ଷସସେନାଙ୍କୁ ଘେନି ଯୁଦ୍ଧଭୂମିକୁ ବାହାରିଲା । ନରାନ୍ତକ ଆଦି ଚାରିଜଣ ପ୍ରଧାନ ସହାୟକ ସେନାପତି ତାହା ସହିତ ଯୁଦ୍ଧଯାତ୍ରା କଲେ । ଯାତ୍ରାବେଳେ ଉଲ୍କାପାତ, ଶୃଗାଳ ଓ ମାଂସଭୋଜୀ ପକ୍ଷୀମାନଙ୍କର ଚିତ୍କାର ପ୍ରଭୃତି ବହୁ ଅଶୁଭ ଲକ୍ଷଣ ଦେଖାଗଲା । ପ୍ରହସ୍ତ ଏକ ବିଶାଳ ରଥରେ ବସି ଯୁଦ୍ଧକ୍ଷେତ୍ରକୁ ଆସୁଥିବାର ଦେଖି ରାମ ବିଭୀଷଣଙ୍କୁ ଏହି ବୀର ଯୋଦ୍ଧାର ପରିଚୟ ଜିଜ୍ଞାସା କଲେ । ବିଭୀଷଣ ଉତ୍ତର ଦେଲେ, ରାବଣର ସେନାପତି ପ୍ରହସ୍ତ ଯୁଦ୍ଧ କରିବାପାଇଁ ଆସୁଛି ।

ପ୍ରହସ୍ତର ନେତୃତ୍ୱରେ ରାକ୍ଷସସେନା ଓ ନୀଳଙ୍କର ନେତୃତ୍ୱରେ ବାନରସେନା ପ୍ରବଳ ଯୁଦ୍ଧରେ ପ୍ରବୃତ୍ତ ହେଲେ । ଦ୍ୱିବିନ୍ଦ, ଜାମ୍ବବାନ, ଦୁର୍ମୁଖ, ତାର, ନୀଳଙ୍କୁ ସହାୟତା କରି ଯୁଦ୍ଧ କଲେ । ସେମାନେ ଜଣ ଜଣ କରି ନରାନ୍ତକ ପ୍ରଭୃତି ଚାରିଜଣ ରାକ୍ଷସ ସେନାପତିଙ୍କୁ ନିହତ କଲେ । ବସନ୍ତଋତୁରେ ଅରଣ୍ୟ ପୁଷ୍ପିତପଳାଶ ବୃକ୍ଷମାନଙ୍କ ଦ୍ୱାରା ଅରୁଣ ବର୍ଣ୍ଣ

ଦେଖାଯାଉଥିବା ପରି ରକ୍ତପ୍ରବାହରେ ରଣଭୂମି ଅରୁଣାୟିତ ହେଲା । ପ୍ରହସ୍ତ ଅବିଚଳିତ ଗତିରେ ବାନର ସୈନ୍ୟମାନଙ୍କୁ ସଂହାର କରିବାକୁ ଲାଗିଲା । ସେନାପତି ନୀଳ ପ୍ରହସ୍ତ ସମ୍ମୁଖରେ ଉପସ୍ଥିତ ହୋଇ ତାକୁ ସବେଗରେ ନିବାରଣ କଲେ । ବୃଷଭ ବର୍ଷାର ଜଳକୁ ସହ୍ୟ କରିବାପରି ନୀଳ ପ୍ରହସ୍ତର ଶରବୃଷ୍ଟି ସହିଗଲେ । ମାତ୍ର ଅଳ୍ପ ସମୟ ପରେ କ୍ରୁଦ୍ଧ ନୀଳ ଏକ ପ୍ରକାଣ୍ଡ ଶାଳବୃକ୍ଷ ଧରି ପ୍ରହସ୍ତର ଅଶ୍ୱମାନଙ୍କୁ ନିହତ କଲେ ଓ ତାର ଧନୁକୁ ହାତରୁ ଛଡ଼ାଇଆଣି ଭାଙ୍ଗି ପକାଇଲେ । ପ୍ରହସ୍ତ ଏକ ଭୟଙ୍କର ମୁଷଳ ଧରି ରଥରୁ ଡେଇଁପଡ଼ିଲା । ଦନ୍ତାଘାତ ପ୍ରତି ଭ୍ରୂକ୍ଷେପ ନ କରି ଦୁଇ ମତ୍ତହସ୍ତୀ ଯୁଦ୍ଧ କରିବା ପରି ନୀଳ ଓ ପ୍ରହସ୍ତ ଲଢ଼ିବାକୁ ଲାଗିଲେ । ନୀଳ ପ୍ରହସ୍ତର ମୁଷଳକୁ ନିବାରଣ କରି ଏକ ବିଶାଳ ଶିଳା ଖଣ୍ଡ ନିକ୍ଷେପ କରି ତାହାର ମସ୍ତକକୁ ବିଦୀର୍ଣ୍ଣ କଲେ । ପ୍ରହସ୍ତ ଛିନ୍ନମୂଳ ବୃକ୍ଷ ପରି ଭୂପତିତ ହେଲା । ଏହିପରି ରାବଣର ମୁଖ୍ୟ ସେନାପତି ପ୍ରହସ୍ତ ବାନରବୀର ସେନାପତି ନୀଳଙ୍କ ଦ୍ୱାରା ନିହତ ହେଲା । ରାମ ଓ ଲକ୍ଷ୍ମଣ ବିଜୟୀ ନୀଳଙ୍କୁ ଆଲିଙ୍ଗନ କରି ପ୍ରଶଂସା କଲେ ।

## ୧୧୦ ॥ ରାବଣର ପରାଜୟ

ଅଗ୍ନିପୁତ୍ର ନୀଳଙ୍କ ଦ୍ୱାରା ପ୍ରହସ୍ତର ନିଧନ ସମ୍ବାଦ ଶୁଣି କ୍ରୁଦ୍ଧ ଓ ଶୋକାର୍ତ୍ତ ରାବଣ କହିଲା, ଯେଉଁ ପ୍ରହସ୍ତ ଦେବରାଜ ଇନ୍ଦ୍ରଙ୍କର ଦର୍ପ ହରଣ କରିଥିଲା, ସେ ଆଜି ବାନରମାନଙ୍କ ଦ୍ୱାରା ନିହତ ହୋଇଛି । ତେଣୁ ଏହି ଶତ୍ରୁକୁ ଆଉ ଅବଜ୍ଞା କରାଯାଇ ନ ପାରେ । ଏଣୁ ମୋତେ ନିଜେ ଯୁଦ୍ଧ ଯାତ୍ରା କରିବାକୁ ହେବ । ଅଗ୍ନିବନକୁ ଦଗ୍ଧ କରିବାପରି ମୁଁ ଶରାଘାତରେ ରାମଲକ୍ଷ୍ମଣ ସମେତ ବାନରସେନାକୁ ଦଗ୍ଧ କରିବି ଓ ବାନରଙ୍କ ରକ୍ତରେ ପୃଥିବୀକୁ ତର୍ପଣ କରିବି । ଦୀପ୍ତିମାନ୍ ଅଶ୍ୱଯୁକ୍ତ ଏକ ଉଜ୍ଜ୍ୱଳ ରଥରେ ଆରୋହଣ କରି ରାବଣ ଏକ ବିଶାଳ ରାକ୍ଷସସେନାକୁ ଘେନି ଯୁଦ୍ଧଯାତ୍ରା କଲା । ରାବଣ ସହିତ ଇନ୍ଦ୍ରଜିତ୍, ଅତିକାୟ, ମହୋଦର, କୁମ୍ଭ, ନିକୁମ୍ଭ ଆଦି ରାକ୍ଷସ ବୀରମାନେ ଉତ୍କୃଷ୍ଟ ରଥରେ ଆରୋହଣ କରି ଯାତ୍ରା କଲେ । ରାବଣ ରୁଦ୍ରଗଣ ପରିବେଷ୍ଟିତ ମହାଦେବଙ୍କ ପରି ଚତୁର୍ଦ୍ଦିଗରେ ଭୟର ସଞ୍ଚାର କଲା । ରାବଣର ଦୀପ୍ତିମନ୍ତ ତେଜୀୟାନ ରୂପକୁ ଦେଖି ରାମ ଅଭିଭୂତ ହେଲେ । ସେ ବିଭୀଷଣକୁ କହିଲେ, ଆଜି ପାପାତ୍ମା ରାବଣକୁ ଉପଯୁକ୍ତ ଶାସ୍ତି ଦେଇ ସୀତା ହରଣର ପ୍ରତିଶୋଧ ନେବି ।

ରାବଣ ରାକ୍ଷସ-ସେନାପତିମାନଙ୍କୁ କହିଲା, ତୁମେମାନେ ଲଙ୍କାର ବିଭିନ୍ନ ଦ୍ୱାର, ଚାରଣଭୂମି ଓ ମନ୍ଦିରମାନଙ୍କୁ ରକ୍ଷାକର । ସମସ୍ତେ ଆସିଯିବା ଫଳରେ ଆମର ଛିଦ୍ର ଜାଣିପାରି ଶତ୍ରୁସେନା ନଗରୀ ଉପରେ ଆକ୍ରମଣ କରିବେ । ସେମାନଙ୍କୁ ପଠାଇଦେଇ ରାବଣ ଏକାକୀ ବାନରସେନା ଉପରେ ପ୍ରହାର କଲା । ସୁଗ୍ରୀବ ଏକ ବୃକ୍ଷ ସମେତ ଶୈଳଶୃଙ୍ଗକୁ ଉତ୍ପାଟନ କରି ରାବଣ ଉପରେ ନିକ୍ଷେପ କଲେ । ରାବଣ ସୁବର୍ଣ୍ଣପୁଙ୍ଖଯୁକ୍ତ ଶରମାନଙ୍କ ଦ୍ୱାରା ତାହାକୁ ଖଣ୍ଡ ଖଣ୍ଡ କରିଦେଲା ଏବଂ ଜ୍ୱଳନ୍ତ ବଜ୍ରପରି ଏକ ଭୟାନକ କାଳାନ୍ତକ ଶରରେ ସୁଗ୍ରୀବଙ୍କୁ ଆହତ କଲା । ସୁଗ୍ରୀବଙ୍କୁ ଅଚେତନ ଓ ଧରାଶାୟୀ ଦେଖି

ଗବୟ, ଗବାକ୍ଷ, ଋଷଭ ଓ ନଳ ଆଦି ବାନରବୀରମାନେ ବିଶାଳ ଶିଳାଖଣ୍ଡମାନ ଧରି ରାବଣଙ୍କୁ ଆକ୍ରମଣ କରିବାକୁ ଲାଗିଲେ । କିନ୍ତୁ ରାବଣର ତୀକ୍ଷ୍ଣ ଶରରେ ଆହତ ହୋଇ ଭୟାର୍ତ୍ତ ଭାବରେ ସେମାନେ ପଳାଇଯାଇ ରାମଙ୍କର ଶରଣାପନ୍ନ ହେଲେ । ରାବଣ ଏକ ଭୟାନକ ତେଜୀୟାନ୍ ଧନୁ ଧରି ଶରାଘାତରେ ବାନରସେନାକୁ ଛିନ୍ନଭିନ୍ନ କରିବାକୁ ଲାଗିଲା ।

ହନୁମାନ ରାବଣର ରଥ ନିକଟରେ ପହଞ୍ଚି କହିଲେ – ରାବଣ, ତୁ ଦେବ, ଦାନବ, ଯକ୍ଷ, ଗନ୍ଧର୍ବ ଓ ରାକ୍ଷସଙ୍କ ଦ୍ୱାରା ନିହତ ହେବୁ ନାହିଁ ବୋଲି ବରଲାଭ କରିଛୁ । କିନ୍ତୁ ବାନରମାନେ ହିଁ ତୋର ଭୟସଞ୍ଚାର କରିଛନ୍ତି । ବର୍ତ୍ତମାନ ମୋର ଏହି ପଞ୍ଚାଙ୍ଗୁଳି ବିଶିଷ୍ଟ ବାହୁ ତୋର ପ୍ରାଣ ହରଣ କରିବ । ରାବଣ କହିଲା – ବାନର, ତୋର କେତେ ଶକ୍ତି ଅଛି ଆଜି ମୁଁ ଦେଖିବାକୁ ଚାହେଁ । ତୁ ଯେତେ ପାରିବୁ ମୋତେ ପ୍ରହାର କର । ତୋର ବଳବିକ୍ରମର ପରୀକ୍ଷା ହେବା ପରେ ମୁଁ ତୋତେ ସଂହାର କରିବି । ହନୁମାନ କହିଲେ, ମୁଁ ପୂର୍ବରୁ ତୋର ପୁତ୍ର ଅକ୍ଷକୁ ନିହତ କରିଛି । ତାହା କ'ଣ ତୁ ଭୁଲିଗଲୁ ? ରାବଣ କ୍ରୁଦ୍ଧ ହୋଇ ହନୁମାନଙ୍କର ବକ୍ଷସ୍ଥଳକୁ ଏକ ଚପେଟାଘାତ କଲା । ସେହି ଆଘାତରେ ବାୟୁପୁତ୍ର ମୁହୁର୍ମୁହୁଃ କମ୍ପିତ ହୋଇ ରାବଣକୁ ଏପରି ଏକ ଚପେଟାଘାତ କଲେ ଯେ ଭୂମିକମ୍ପବେଳେ ପର୍ବତ କମ୍ପିତ ହେବାପରି ରାବଣ ବିଚଳିତ ହୋଇଗଲା । ରାବଣ କହିଲା, 'ସାଧୁ ସାଧୁ' ବାନର, ତୁ ମୋର ଯଥାର୍ଥ ପ୍ରତିଦ୍ୱନ୍ଦ୍ୱୀ ।

ହନୁମାନ କହିଲେ, ମୁଁ ତୋର ସାଧୁବାଦରେ ଆଦୌ ଉଲ୍ଲସିତ ହେଉ ନାହିଁ । କାରଣ ମୋର ପ୍ରହାର ଖାଇ ତୁ ଏ ପର୍ଯ୍ୟନ୍ତ ବଞ୍ଚି ରହିଛୁ । ବର୍ତ୍ତମାନ ମୋ ସହିତ ଲଢ଼ । ମୋର ମୁଷ୍ଟିପ୍ରହାରରେ ତୁ ଯମାଳୟକୁ ଯିବୁ । ରାବଣ କ୍ରୁଦ୍ଧ ହୋଇ ତାର ଦକ୍ଷିଣ ମୁଷ୍ଟି ହନୁମାନଙ୍କ ବକ୍ଷସ୍ଥଳରେ ଆଘାତ କଲା । ହନୁମାନ ସେଥିରେ ଥରିଯାଇ ଇତସ୍ତତଃ ହୋଇଗଲେ । ରାବଣ ହନୁମାନଙ୍କୁ ଛାଡ଼ି ମର୍ମଭେଦୀ ଶରମାନଙ୍କ ଦ୍ୱାରା ବାନରସେନାପତି ନୀଳଙ୍କୁ ପୀଡ଼ିତ କଲା । ନୀଳ ଏକ ଶୈଳଶୃଙ୍ଗ ରାବଣକୁ ନିକ୍ଷେପ କଲେ । ରାବଣ ଶରଦ୍ୱାରା ସେହି ଗିରିଶୃଙ୍ଗକୁ ଖଣ୍ଡ ଖଣ୍ଡ କରିଦେଲା । ମାତ୍ର ନୀଳ ସେଥିରେ ଭୀତ ନ ହୋଇ ବିଶାଳ ବୃକ୍ଷମାନ ରାବଣକୁ ନିକ୍ଷେପ କଲେ । ରାବଣ ଶରଦ୍ୱାରା ସେ ସବୁ ମଧ୍ୟ କାଟିପକାଇଲା । ନୀଳ ନିଜର ଶରୀରକୁ କ୍ଷୁଦ୍ରାକାର କରି ରାବଣର ଧ୍ୱଜା ଉପରେ ବସିଗଲେ । ସେହି ରୂପରେ ସେ ରାବଣର ଧନୁ ଓ ମୁକୁଟ ଉପରେ ମଧ୍ୟ ଡେଇଁବାକୁ ଲାଗିଲେ । ନୀଳଙ୍କର କୃତିତ୍ୱକୁ ବାନରମାନେ ପ୍ରଶଂସା କରି ଆନନ୍ଦ ଧ୍ୱନି କଲେ । ରାବଣ ନୀଳଙ୍କୁ ଲକ୍ଷ୍ୟ କରି ଏକ ପ୍ରାଣଘାତକ ଆଗ୍ନେୟାସ୍ତ୍ର ପ୍ରୟୋଗ କଲା ଏବଂ ସେହି ଅସ୍ତ୍ରାଘାତରେ ନୀଳ ଅଚେତନ ହୋଇ ପଡ଼ିଗଲେ ।

ରାବଣ ତାର ପ୍ରଜ୍ୱଳିତ ଧନୁର ଟଙ୍କାରରେ ରଣଭୂମିକୁ କମ୍ପିତ କଲା ଏବଂ ରଣଦୁର୍ମଦ ଲକ୍ଷ୍ମଣଙ୍କୁ ତା ଆଗରେ ଦଣ୍ଡାୟମାନ ହୋଇଥିବା ଦେଖି କହିଲା, ରାଘବ, ଆଜି ଭାଗ୍ୟକ୍ରମେ ତୁ ମୋର ସମ୍ମୁଖକୁ ଆସିଛୁ । ତୋର ଶେଷ ସମୟ ଉପସ୍ଥିତ ହେଲାଣି ।

ଲକ୍ଷ୍ମଣ ଉତ୍ତର ଦେଲେ – ରାକ୍ଷସ, ଆତ୍ମପ୍ରଶଂସା ନ କରି ବର୍ତ୍ତମାନ ତୋର ବଳ ଓ ପରାକ୍ରମ ଦେଖା । ରାବଣ ସୁବର୍ଣ୍ଣପୁଙ୍ଖଯୁକ୍ତ ସାତଟି ତୀକ୍ଷ୍ଣ ଶର ଲକ୍ଷ୍ମଣଙ୍କୁ ନିକ୍ଷେପ କଲା, ମାତ୍ର ସାପର ଫଣା କଟିଯିବା ପରି ଲକ୍ଷ୍ମଣଙ୍କ ବାଣରେ ସେହି ସବୁ ଶର ଅଧାବାଟରୁ କଟିଗଲା । କ୍ରୁଦ୍ଧ ରାବଣ ଲକ୍ଷ୍ମଣଙ୍କ ପ୍ରତି ଅବିରତ ଶରବୃଷ୍ଟି କରିବାକୁ ଲାଗିଲା । କିନ୍ତୁ ସୌମିତ୍ରି କ୍ଷୁର, ଅର୍ଦ୍ଧଚନ୍ଦ୍ର, ଉଲ୍ଲ ବାଣମାନ ପ୍ରୟୋଗ କରି ତାହା ସବୁ ଖଣ୍ଡ ଖଣ୍ଡ କରିଦେଲେ । ତାପରେ ଲକ୍ଷ୍ମଣ ଅଗ୍ନିତୁଲ୍ୟ ଏକ ଭୟଙ୍କର ବଜ୍ରବାଣ ରାବଣ ପ୍ରତି ନିକ୍ଷେପ କଲେ । କିନ୍ତୁ ରାବଣ ତାହା ମଧ କାଟିଦେଲା । ରାବଣ କାଳାନ୍ତକତୁଲ୍ୟ ଶିବଙ୍କର ପ୍ରଦତ୍ତ ଏକ ଶରଦ୍ୱାରା ଲକ୍ଷ୍ମଣଙ୍କୁ ଆଘାତ କରି ବିଚଳିତ କଲା । କିନ୍ତୁ ମୁହୂର୍ତ୍ତକ ମଧ୍ୟରେ ରାମାନୁଜ ରାବଣର ଧନୁକୁ ଛିନ୍ନ କରି ଏପରି ଆହତ କଲେ ଯେ ରାବଣ ଅଚେତନ ହୋଇ ପଡ଼ିଗଲା । ମୁହୂର୍ତ୍ତକ ପରେ ସେ ଚେତନା ଲାଭ କରି ବ୍ରହ୍ମାଙ୍କର ପ୍ରଦତ୍ତ ଅଗ୍ନିତୁଲ୍ୟ ତେଜୀୟାନ ଏକ ମହାଶକ୍ତି ଲକ୍ଷ୍ମଣଙ୍କ ପ୍ରତି ନିକ୍ଷେପ କଲା । ଲକ୍ଷ୍ମଣ ସେହି ଶକ୍ତିକୁ ଅଗ୍ନିବାଣମାନଙ୍କ ଦ୍ୱାରା ପ୍ରତିହତ କଲେ ସତ୍ୟ, କିନ୍ତୁ ଏହି ଶକ୍ତି ତାଙ୍କର ବକ୍ଷସ୍ଥଳକୁ ବିନ୍ଧ କଲା । ସେହି ଶକ୍ତିର ଆଘାତରେ ସେ ବିହ୍ୱଳ ହୋଇପଡ଼ିଲେ । ରାବଣ ଏହି ସୁଯୋଗରେ ତାଙ୍କୁ ଧରିନେବାପାଇଁ ଚେଷ୍ଟାକରି ତାଙ୍କୁ ଦୁଇ ଭୁଜରେ ଟେକିବାକୁ ଚେଷ୍ଟାକଲା । ମାତ୍ର ଗୁରୁଭାର ଯୋଗୁଁ ଉଠାଇପାରିଲା ନାହିଁ । ଲକ୍ଷ୍ମଣ ମୂର୍ଚ୍ଛାଗତ ଅବସ୍ଥାରେ ମଧ ବିଷ୍ଣୁଙ୍କର ଅଂଶ ବୋଲି ନିଜକୁ ସ୍ମରଣ କଲେ ଏବଂ ମେରୁ ଓ ମନ୍ଦରଗିରିଠାରୁ ତାଙ୍କର ଶରୀର ଆହୁରି ଭାରୀ ହୋଇଗଲା । ହନୁମାନ ଦ୍ରୁତବେଗରେ ରାବଣର ବକ୍ଷସ୍ଥଳରେ ଏକ ବଜ୍ରମୁଷ୍ଟି ପ୍ରହାର କଲେ ଏବଂ ଏଥିରେ ରାବଣ ଥରି ଥରି ଝଂଘମାଡ଼ି ଭୂଇଁରେ ପଡ଼ିଗଲା । ତାର ଆଖି, କାନ, ମୁହଁ ବାଟରେ ରକ୍ତଧାର ବହିବାକୁ ଲାଗିଲା ଓ ରଥ ଉପରେ ସେ ସଂଜ୍ଞାହୀନ ହୋଇ ବସିଗଲା । ଏହି ଅବସରରେ ହନୁମାନ ଲକ୍ଷ୍ମଣଙ୍କୁ ଦୁଇବାହୁରେ ଟେକିଧରି ରାମଙ୍କ ପାଖକୁ ନେଇଗଲେ । ହନୁମାନଙ୍କ ପାଇଁ ଲକ୍ଷ୍ମଣଙ୍କ ଦେହ ବହୁତ ଉଶ୍ୱାସ ହୋଇଗଲା । ରାବଣର ଶକ୍ତି ମଧ ଲକ୍ଷ୍ମଣଙ୍କର ଦେହରୁ ବାହାରି ରାବଣର ରଥ ଉପରେ ତାର ପୂର୍ବସ୍ଥାନକୁ ଚାଲିଗଲା ।

ରାବଣ ସଂଜ୍ଞାଲାଭ କରି ପୁଣି ଏକ ବିଶାଳ ଧନୁ ଧାରଣ କରି ବାନରସେନା ଉପରେ ପ୍ରହାର କରିବାକୁ ଲାଗିଲା । ବାନରମାନେ ଭୀତତ୍ରସ୍ତ ହୋଇ ସାହସ ହରାଉଥିବାର ଦେଖି ରାମ ନିଜେ ରାବଣ ସହିତ ଯୁଦ୍ଧ କରିବାପାଇଁ ଅଗ୍ରସର ହେଲେ । ହନୁମାନ କହିଲେ, ବିଷ୍ଣୁ ଯେପରି ଗରୁଡ଼ଙ୍କ ପୃଷ୍ଠରେ ଆରୋହଣ କରି ଯୁଦ୍ଧ କରନ୍ତି, ଆପଣ ସେହିପରି ମୋର ପୃଷ୍ଠରେ ଆରୋହଣ କରି ରାକ୍ଷସ ସହିତ ଶୀଘ୍ର ଯୁଦ୍ଧ କରନ୍ତୁ । ରାମ ବାନରେନ୍ଦ୍ରଙ୍କ ପୃଷ୍ଠରେ ଆରୋହଣ କରି ରାବଣର ସମ୍ମୁଖୀନ ହେଲେ । ତାଙ୍କର ଧନୁଷ୍ଟଙ୍କାର ବଜ୍ରଧ୍ୱନି ପରି ଚତୁର୍ଦ୍ଦିଗକୁ ନିନାଦିତ କଲା । ରାମ ରାବଣକୁ କହିଲେ – ରାକ୍ଷସରାଜ, ରହ ରହ, ତୁ ଯେଉଁ ଦୁଷ୍କର୍ମ କରିଛୁ, ସେଥିରୁ କେବେହେଲେ ରକ୍ଷା ପାଇବୁ ନାହିଁ । ଇନ୍ଦ୍ର, ସୂର୍ଯ୍ୟ, ବ୍ରହ୍ମା, ରୁଦ୍ର ଯାହାର ଆଶ୍ରୟ ନେଲେ ମଧ ଏବଂ ଦିଗ୍‌ବିଦିଗ ଯେଉଁ ଆଡ଼କୁ ପଳାଇଲେ ମଧ ତୋତେ କେହି ରକ୍ଷା କରିପାରିବେ ନାହିଁ । ରାବଣ କ୍ରୁଦ୍ଧ ହୋଇ ରାମଙ୍କର ବାହନ

ହନୁମାନଙ୍କୁ ତୀକ୍ଷ୍ଣ ଶରରେ ପ୍ରହାର କଲା । ରାମ କାଳବିଳମ୍ବ ନ କରି ଉତ୍କୃଷ୍ଟ ପୁଙ୍ଖଯୁକ୍ତ ଶରମାନଙ୍କ ଦ୍ୱାରା ରାବଣର ଛତ୍ର, ପତାକା, ଅଶ୍ୱ, ସାରଥି ସହିତ ରଥକୁ ଚୂର୍ଣ୍ଣ କଲେ ଏବଂ ତାର ବିଶାଳ ବକ୍ଷରେ ଏକ ବଜ୍ରତୁଲ୍ୟ ଶର ପ୍ରହାର କଲେ । ଅଶନିପାତ ପରି ସେହି ଶରାଘାତରେ ରାବଣ କାତର ହୋଇପଡ଼ିଲା । ତାହା ହାତରୁ ଧନୁଶର ଖସିଗଲା । ତାକୁ ଏପରି ବିହ୍ୱଳ ଅବସ୍ଥାରେ ଦେଖି ରାମ ଏକ ଜ୍ୱଳନ୍ତ ଅର୍ଦ୍ଧଚନ୍ଦ୍ର ଅସ୍ତ୍ର ଦ୍ୱାରା ତାର କିରୀଟକୁ ଛିନ୍ନ କଲେ । ରାବଣ ବିଷହୀନ ସର୍ପ ପରି ତେଜହୀନ ହୋଇ କ'ଣ କରିବ, ଚିନ୍ତା କରିପାରିଲା ନାହିଁ ।

ରାମ କହିଲେ – ରାକ୍ଷସ, ତୁ ଯୁଦ୍ଧରେ ବହୁ ଭୟଙ୍କର କର୍ମ କରି କ୍ଲାନ୍ତଶ୍ରାନ୍ତ ହୋଇପଡ଼ିଛୁ । ତେଣୁ ଆଜି ତୋତେ ନିହତ ନ କରି ଛାଡ଼ିଦେଉଛି । ଲଙ୍କାକୁ ପଳାଇଯାଇ ଶୀଘ୍ର ସୁସ୍ଥ ହେବା ପରେ ପୁଣି ରଥାରୋହଣପୂର୍ବକ ଧନୁ ଧାରଣ କରି ମୋ ସହିତ ଲଢ଼ିବାକୁ ଆସ । ସେତେବେଳେ ତୋ ସହିତ ପ୍ରକୃତ ବଳପରୀକ୍ଷା ହେବ ।

ହତଦର୍ପ ରାବଣ ରାମଙ୍କ ଦ୍ୱାରା ନିର୍ଜ୍ଜିତ ଓ ପରାଜିତ ହୋଇ ଲଙ୍କାକୁ ପଳାଇଗଲା ।

## ୧୧୧ ॥ 'କୁମ୍ଭକର୍ଣ୍ଣକୁ ଉଠାଅ'

ରାବଣ କାଞ୍ଚନମୟ ସିଂହାସନ ଉପରେ ବସି ରାକ୍ଷସମାନଙ୍କୁ କହିଲା, ମୁଁ ଇନ୍ଦ୍ରଙ୍କର ସମକକ୍ଷ ହୋଇ ସାମାନ୍ୟ ମନୁଷ୍ୟ ଦ୍ୱାରା ପରାଜିତ ହେଲି । ମୁଁ ଯେଉଁ କଠୋର ତପସ୍ୟା କରିଥିଲି, ତାହା ବ୍ୟର୍ଥ ହେଲା । ବ୍ରହ୍ମା ମୋତେ ଏହି ଭୟଙ୍କର କଥା କହିଥିଲେ ଯେ ମନୁଷ୍ୟମାନଙ୍କଠାରୁ ମୋର ଭୟ ରହିବ । ବର୍ତ୍ତମାନ ତାହାହିଁ ସଫଳ ହେଉଛି । ମୁଁ ଦେବ, ଦାନବ, ଗନ୍ଧର୍ବ, ଯକ୍ଷ, ରାକ୍ଷସ, ପନ୍ନଗମାନଙ୍କର ଅବଧ୍ୟ ବୋଲି ବର ଲାଭ କଲି । କିନ୍ତୁ ମନୁଷ୍ୟଦ୍ୱାରା ଅବଧ୍ୟ ହେବି, ଏ ବର ମୁଁ ମାଗି ନ ଥିଲି । ପୂର୍ବେ ଇକ୍ଷ୍ୱାକୁବଂଶର ରାଜା ଅନରଣ୍ୟ ମୋତେ ଅଭିଶାପ ଦେଇଥିଲେ – ଦୁର୍ମତି ରାକ୍ଷସ, ମୋ ବଂଶରେ ଏପରି ଏକ ବୀରପୁରୁଷ ଜନ୍ମ ହେବ, ଯେ କି ପୁତ୍ର, ଅମାତ୍ୟ, ସୈନ୍ୟ, ସାମନ୍ତ, ଅଶ୍ୱ ଓ ସାରଥିଙ୍କ ସହିତ ତୋତେ ଯୁଦ୍ଧରେ ନିହତ କରିବ । ମୋର ମନେହୁଏ, ଦଶରଥାତ୍ମଜ ରାମ ସେହି ବ୍ୟକ୍ତି ଭାବରେ ଜନ୍ମିଛନ୍ତି । ମୁଁ ପୂର୍ବେ ବେଦମତୀକୁ ବଳପୂର୍ବକ ଧର୍ଷଣ କରିଥିଲି । ସେ ମୋତେ ଅଭିଶାପ ଦେଇଥିଲା । ବର୍ତ୍ତମାନ ସେହି ବେଦମତୀ ଜନକନନ୍ଦିନୀ ରୂପେ ଜନ୍ମ ଗ୍ରହଣ କରିଛି ।

ଉମା, ନନ୍ଦୀଶ୍ୱର, ରମ୍ଭା ଓ ବରୁଣକନ୍ୟା ପୁଞ୍ଜିକସ୍ଥଳା ଏମାନେ ମଧ୍ୟ ଅଭିଶାପ ଦେଇଥିଲେ । ଋଷିମାନଙ୍କର କଥା କଦାପି ମିଥ୍ୟା ହୁଏ ନାହିଁ । ରାକ୍ଷସଗଣ, ବର୍ତ୍ତମାନ ଉପସ୍ଥିତ ବିପଦରୁ କିପରି ରକ୍ଷା ମିଳିବ, ତୁମେମାନେ ତାର ବ୍ୟବସ୍ଥା କର । ଦେବ, ଦାନବମାନଙ୍କ ଦର୍ପହାରୀ କୁମ୍ଭକର୍ଣ୍ଣ ବ୍ରହ୍ମାଙ୍କ ଶାପରୁ ଶୋଇ ରହିଛି । ତାକୁ ଶୀଘ୍ର ଉଠାଅ । ରାକ୍ଷସସେନା ନଗରର ଦ୍ୱାରମାନଙ୍କରେ ସାବଧାନ ହୋଇ ଜଗିରହନ୍ତୁ । କୁମ୍ଭକର୍ଣ୍ଣ ଗାଢ଼ ନିଦ୍ରାରେ ସୁଖରେ ଓ ନିଶ୍ଚିନ୍ତରେ ଶୋଇରହିଛି । ସେ ଥରେ ନିଦ୍ରା ଗଲେ ଛଅ ମାସ,

ସାତମାସ, ଆଠମାସ ବା ନଅମାସ ପର୍ଯ୍ୟନ୍ତ ଶୋଇରହେ । କୁମ୍ଭକର୍ଣ୍ଣ ବୀରମାନଙ୍କ ଅଗ୍ରଣୀ ଏବଂ ରାକ୍ଷସମାନଙ୍କର ମୁଖ୍ୟ । ସେ ଜାଗରିତ ହେଲେ ରାମ, ଲକ୍ଷ୍ମଣ ଓ ବାନରମାନଙ୍କୁ ସଂହାର କରିବ । କିନ୍ତୁ ସେ ମୂଢ଼ ଗ୍ରାମୀଣ ବ୍ୟକ୍ତି ପରି ଦୈହିକ ସୁଖରେ ଶୋଇ ରହିଛି । ଏପରି ବିପଦ ପଡ଼ିଥିବାବେଳେ ସେ ଯଦି ଆମର ସହାୟ ନ ହେଲା, ସେ ଇନ୍ଦ୍ରତୁଲ୍ୟ ଯୋଦ୍ଧା ହୋଇ ଶୋଇରହିବାର ମୂଲ୍ୟ କ'ଣ ?

ରାବଣର ଆଦେଶରେ ରାକ୍ଷସମାନେ ଗନ୍ଧଦ୍ରବ୍ୟ, ମାଲ୍ୟ, ଭୋଜନ ସାମଗ୍ରୀ ଆଦି ଧରି କୁମ୍ଭକର୍ଣ୍ଣର ନିବାସଗୁହା ମଧ୍ୟରେ ପ୍ରବେଶ କଲେ । ସେମାନେ ଦେଖିଲେ କୁମ୍ଭକର୍ଣ୍ଣ ପର୍ବତ ପରି ଶୋଇଛି । ତାର ଦେହ ରୋମାଞ୍ଚିତ, ନାସାପୁଟ ଭୀଷଣ ଓ ମୁଖଗହ୍ୱର ପାତାଳ ପରି ଗଭୀର ଓ ବିଶାଳ । ତାର ଦେହରୁ ମାଂସ ଓ ଶୋଣିତର ଗନ୍ଧ ନିର୍ଗତ ହେଉଥିଲା । ପ୍ରଖର ନିଶ୍ୱାସବାୟୁରେ ସେମାନେ ଠିଆ ହୋଇ ପାରୁ ନ ଥିଲେ । ଅତି କଷ୍ଟରେ ନିଜକୁ ସ୍ଥିର ରଖି ସେମାନେ ତା ନିକଟକୁ ଯାଇ ତାକୁ ଉଠାଇବାକୁ ଚେଷ୍ଟା କଲେ । କୁମ୍ଭକର୍ଣ୍ଣ କାଞ୍ଚନର ବାହୁବନ୍ଧ ଓ କିରୀଟ ପିନ୍ଧି ଶୋଇଥିଲା । ରାକ୍ଷସମାନେ ତା ଆଗରେ ରାଶି ରାଶି ମୃଗ, ମହିଷ, ବରାହ ମାଂସ ଆଣି ପର୍ବତ ପରିମାଣରେ ଜମା କଲେ । ପାନୀୟରୂପେ ରକ୍ତ ଓ ମଦ୍ୟର କଳସ ରଖାଇଲେ । ନିଦ୍ରିତ କୁମ୍ଭକର୍ଣ୍ଣ ଦେହରେ ଚନ୍ଦନ ଲେପନ କରି ଓ ସୁଗନ୍ଧମାଳା ପିନ୍ଧାଇ ଦେଇ ବାହୁସ୍ଫୋଟ ଓ ଚିତ୍କାର କରିବାକୁ ଲାଗିଲେ ।

ଢୋଲ, ଶଙ୍ଖ, ଭେରୀ ସହିତ ତୁମୁଳ କୋଳାହଳ ଓ ସିଂହନାଦ କରି ସେମାନେ କୁମ୍ଭକର୍ଣ୍ଣକୁ ଉଠାଇବାପାଇଁ ଚେଷ୍ଟା କଲେ । କିନ୍ତୁ ତାର ନିଦ୍ରାଭଙ୍ଗ ହେଲା ନାହିଁ । ଗଦା, ମୁଷଳ, ମୁଦ୍‌ଗର, ଶିଳା ଓ ବୃକ୍ଷମାନଙ୍କ ଦ୍ୱାରା ପ୍ରହାର କରିବାକୁ ଲାଗିଲେ । କିନ୍ତୁ ପ୍ରବଳ ପ୍ରଭଞ୍ଜନ ପରି କୁମ୍ଭକର୍ଣ୍ଣର ନିଶ୍ୱାସବାୟୁ ଆଗରେ ସେମାନେ ଠିଆ ହୋଇପାରିଲେ ନାହିଁ । ହଜାର ହଜାର ରାକ୍ଷସ ତୁମୁଳ ବାଦ୍ୟଧ୍ୱନି, ଗର୍ଜନ ତର୍ଜନ କରି ଘୋଡ଼ା, ଓଟ, ଗଧ ଓ ହାତୀମାନଙ୍କୁ ତାହା ଉପରେ ଚଲାଇ ଦେଲେ । ମୁଦ୍‌ଗର ଓ ମୁଷଳ୍ ଆଦି ଅସ୍ତ୍ରଶସ୍ତ୍ର ନେଇ ତାକୁ ପ୍ରହାର କରିବାକୁ ଲାଗିଲେ । ସେଥିରେ ମଧ୍ୟ କୁମ୍ଭକର୍ଣ୍ଣ ନ ଉଠିବାରୁ ଶତସଂଖ୍ୟକ କଳସରେ ପାଣି ଆଣି ତାର କାନରେ ଢାଳିବାକୁ ଲାଗିଲେ । ଦାନ୍ତରେ କାନକୁ କାମୁଡ଼ି, ବାଳକୁ ଓଟାରି ଏକସାଙ୍ଗରେ ବହୁ ଅସ୍ତ୍ର ଶସ୍ତ୍ର ପ୍ରହାର କରି ସେମାନେ ଯେତେ ଚେଷ୍ଟା କଲେ ମଧ୍ୟ ଅଭିଶପ୍ତ କୁମ୍ଭକର୍ଣ୍ଣର ନିଦ ଭାଙ୍ଗିଲା ନାହିଁ । ତା'ପରେ ସେମାନେ ଏକସହସ୍ର ହସ୍ତୀ, ସୁପ୍ତ ରାକ୍ଷସର ଶରୀର ଉପରେ ଚଲାଇବା ଫଳରେ କୁମ୍ଭକର୍ଣ୍ଣ ସାମାନ୍ୟ ସୁଖସ୍ପର୍ଶ ଅନୁଭବ କଲା ଏବଂ ନିଦରୁ ଉଠିଲା ।

କୁମ୍ଭକର୍ଣ୍ଣ ଆଗରେ ଥୁଆ ହୋଇଥିବା ରାଶି ରାଶି ମାଂସ ଭୋଜନ କରି, ରକ୍ତ ଓ ମଦ୍ୟପାନ କରି ତୃପ୍ତ ହେଲା ଏବଂ ଆଖି ଖୋଲି ରାକ୍ଷସମାନଙ୍କ ଆଡ଼କୁ ଚାହିଁ କହିଲା, ତୁମେମାନେ କାହିଁକି ମୋର ନିଦ୍ରା ଭାଙ୍ଗିଦେଲ ? ରାଜାଙ୍କର କୁଶଳ ତ ? କୌଣସି ଭୟର କାରଣ ନାହିଁ ତ ? ଯଦି ଅନ୍ୟ କାହାରିଠାରୁ ମହାଭୟ ଉପସ୍ଥିତ ହୋଇଥାଏ ଏବଂ ସେଥିପାଇଁ ତୁମେମାନେ ମୋତେ ଜାଗରିତ କରିଥାଅ, ତା'ହେଲେ ମୁଁ ଆଜି ସେହି ଭୟ

ଦୂର କରିବି । ମହେନ୍ଦ୍ର ପର୍ବତକୁ ଭୂମିସାତ୍ କରି ଅଗ୍ନିର ତେଜକୁ ଶୀତଳ କରି ରାଜକାର୍ଯ୍ୟ ସାଧନ କରିବି ।

ରାବଣର ମନ୍ତ୍ରୀ ଯୂପାକ୍ଷ କୃତାଞ୍ଜଳି ହୋଇ କହିଲା, ଦେବତାମାନଙ୍କଠାରୁ ଆମର କୌଣସି ଭୟ ନାହିଁ । କିନ୍ତୁ ମନୁଷ୍ୟମାନଙ୍କୁ ଆମର ଭୟ ରହିଛି । ଯୁଦ୍ଧରେ କ'ଣ ଘଟିଯାଇଛି ବର୍ଣ୍ଣନା କରି ରାମ କିପରି ରାବଣକୁ କବଳିତ କରି ପ୍ରାଣରେ ନ ମାରି ଛାଡ଼ି ଦେଇଛନ୍ତି, ତାହା ସେମାନେ ପ୍ରକାଶ କଲେ । କୁମ୍ଭକର୍ଣ୍ଣ କହିଲା, ଯୂପାକ୍ଷ, ମୁଁ ରାମଲକ୍ଷ୍ମଣ ସମେତ ବାନରସେନାଙ୍କୁ ନିହତ କରିସାରି ରାବଣ ସହିତ ଦେଖା କରିବି । ଆଜି ବାନରମାନଙ୍କର ରକ୍ତରେ ରାକ୍ଷସମାନେ ତୃପ୍ତ ହେବେ । ମୁଁ ନିଜେ ରାମଲକ୍ଷ୍ମଣଙ୍କର ରକ୍ତପାନ କରିବି ।

ରାବଣର ସଚିବ ମହୋଦର କହିଲା, ତୁମେ ପ୍ରଥମେ ରାବଣଙ୍କର କଥା ଶୁଣ । ତା'ପରେ ସମସ୍ତ କଥା ବିଚାର କରି ଶତ୍ରୁ ସହିତ ଯୁଦ୍ଧ କରିବ ଓ ବିଜୟ ହାସଲ କରିବ ।

କୁମ୍ଭକର୍ଣ୍ଣ ଶଯ୍ୟାତ୍ୟାଗ କରି ମୁଖ ପ୍ରକ୍ଷାଳନ ଓ ସ୍ନାନାଦି ଶେଷ କଲା ଏବଂ କଳସ କଳସ ଧରି ରଖା ହୋଇଥିବା ମଦ୍ୟ ପାନ କରି କିଞ୍ଚିତ୍ ଉତ୍ତେଜିତ ଅବସ୍ଥାରେ ରାବଣର ଗୃହକୁ ଯାତ୍ରା କଲା । ଲଙ୍କାର ବାହାରେ ଥିବା ବାନର ଦଳପତିମାନେ ସେହି ବିଶାଳକାୟ ଅଦ୍‌ଭୁତ ରାକ୍ଷସକୁ ଦେଖି ଭୟଭୀତ ହେଲେ । ରାମ ମଧ୍ୟ ସୁବର୍ଣ୍ଣକିରୀଟୀ ପର୍ବତୋପମ ରାକ୍ଷସକୁ ଦେଖି ବାନରସେନାର ଭୟସଞ୍ଚାର ହେଉଥିବାର ଲକ୍ଷ୍ୟ କଲେ । ସେ ବିଭୀଷଣଙ୍କୁ ପଚାରିଲେ, ଏହି ଅତିକାୟ ରାକ୍ଷସ କିଏ, ଯାହାକୁ ଦେଖି ବାନରମାନେ ପଳାଉଛନ୍ତି ? ମୁଁ ଏପରି ଏକ ଅଦ୍‌ଭୁତ ପ୍ରାଣୀ ପୂର୍ବରୁ କେବେ ଦେଖି ନ ଥିଲି । ବିଭୀଷଣ କହିଲେ, ଏ ହେଉଛି ଇନ୍ଦ୍ର ଓ ଯମଙ୍କୁ ପରାସ୍ତ କରିଥିବା ବିଶ୍ରବାଙ୍କ ପୁତ୍ର କୁମ୍ଭକର୍ଣ୍ଣ । ଏହା ସହିତ ଯେଉଁମାନେ ଯୁଦ୍ଧ କରିଛନ୍ତି, ଦେବତା, ଦାନବ, ଯକ୍ଷ, ଗନ୍ଧର୍ବ, କିନ୍ନର, ଭୁଜଙ୍ଗ, ସମସ୍ତେ ପରାସ୍ତ ହୋଇଛନ୍ତି । କୁମ୍ଭକର୍ଣ୍ଣ ଜନ୍ମରୁ ହିଁ କ୍ଷୁଧାତୁର । ସେ ଜନ୍ମ ହେବାମାତ୍ରେ ବହୁ ପ୍ରାଣୀଙ୍କୁ ଭକ୍ଷଣ କରି ପକାଇଲା ଏବଂ ଏହିପରି ପ୍ରତିଦିନ ଭକ୍ଷଣ କରିବାକୁ ଲାଗିଲା । ପ୍ରାଣୀମାନଙ୍କୁ ଭୟାର୍ତ୍ତ ଦେଖି କୁମ୍ଭକର୍ଣ୍ଣକୁ ମାରିବା ପାଇଁ ଇନ୍ଦ୍ର ବଜ୍ର ପ୍ରହାର କରିଥିଲେ, କିନ୍ତୁ ସେଥିରେ ସେ ନ ମରି କ୍ରୋଧରେ ଗର୍ଜନ କଲା ଏବଂ ଇନ୍ଦ୍ରହସ୍ତୀ ଐରାବତର ଦାନ୍ତକୁ ଉପାଡ଼ିଆଣି ଇନ୍ଦ୍ରଙ୍କ ବକ୍ଷରେ ପ୍ରହାର କଲା । ଇନ୍ଦ୍ର ଦେବତାମାନଙ୍କ ସହିତ ବ୍ରହ୍ମାଙ୍କ ପାଖକୁ ପଳାଇଗଲେ ଏବଂ କୁମ୍ଭକର୍ଣ୍ଣ କିପରି ପ୍ରଜାମାନଙ୍କୁ ଭକ୍ଷଣ କରୁଛି, ଦେବତାମାନଙ୍କୁ ଆକ୍ରମଣ କରୁଛି, ଆଶ୍ରମମାନଙ୍କୁ ଧ୍ୱଂସ କରୁଛି ଓ ପରସ୍ତ୍ରୀ ହରଣ କରୁଛି ତାହା ସ୍ୱୟମ୍ଭୂଙ୍କୁ ନିବେଦନ କଲେ । ପିତାମହ ବ୍ରହ୍ମା କୁମ୍ଭକର୍ଣ୍ଣକୁ ଡକାଇ ତାର ରୂପ ଦେଖି ବିବ୍ରତ ହେଲେ । ସେ ତାକୁ ଅଭିଶାପ ଦେଲେ ଯେ ମୃତବ୍ୟକ୍ତି ପରି ସେ ଏଣିକି ଶୋଇରହିବ । କୁମ୍ଭକର୍ଣ୍ଣର ଭ୍ରାତା ରାବଣ ବ୍ରହ୍ମାଙ୍କୁ ନିବେଦନ କଲା – ପ୍ରଭୁ, ସୁବର୍ଣ୍ଣର ବୃକ୍ଷ ବର୍ଦ୍ଧିତ ହୋଇ ଫଳଦାନ କରିବା ପୂର୍ବରୁ ତୁମେ ତାକୁ କର୍ତ୍ତନ କରୁଛ । କୁମ୍ଭକର୍ଣ୍ଣ ବିଶ୍ରବାଙ୍କର ପୁତ୍ର ଏବଂ ତୁମର ନାତି । ନାତିକୁ ଏପରି ଅଭିଶାପ ଦେବା ଠିକ୍ ହେଉ ନାହିଁ । ଅବଶ୍ୟ ତୁମର କଥା ମିଥ୍ୟା ହେବ ନାହିଁ । କିନ୍ତୁ ସେ କେତେବେଳେ ଶୋଇବ, କେତେବେଳେ ଉଠିବ, ସେ ସମୟ

ତୁମେ ସ୍ଥିର କରିଦିଅ । ବ୍ରହ୍ମା କହିଲେ, ସେ ଛଅମାସ ଶୋଇବ ଓ ଗୋଟିଏ ଦିନ ମାତ୍ର ଉଠିବ । ଏହି ଦିନକ ମଧ୍ୟରେ ସେ ତାର କ୍ଷୁଧା, ତୃଷା ନିବାରଣ କରିବ । ବିଭୀଷଣ କହିଲେ, କୁମ୍ଭକର୍ଣ୍ଣ ମନକୁ ଉଠି ନାହିଁ । ବିପଦ୍‌ଗ୍ରସ୍ତ ହୋଇ ରାବଣ ତାକୁ ଉଠାଇଛି ।

ରାମ ବାନରସେନାପତି ନୀଳଙ୍କୁ ଡାକି କହିଲେ, ସୈନ୍ୟମାନେ ଲଙ୍କାର ଫାଟକ, ଯାତାୟାତ ପଥ ଓ ସେତୁମାନ ଅବରୁଦ୍ଧ କରି ରଖନ୍ତୁ । ବୃକ୍ଷ ଓ ଶିଳା ଧରି ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ରହନ୍ତୁ । ବିଭୀଷଣ କହିବାମତେ ଏହି ପ୍ରଚାର କରାଯାଉ ଯେ, କୁମ୍ଭକର୍ଣ୍ଣ ଏକ ରାକ୍ଷସ ନୁହେଁ, ଏହା ଏକ ଯନ୍ତ୍ର । ରାବଣ ଯୁଦ୍ଧପାଇଁ ତାହା ସଂଗ୍ରହ କରିଛି । ତା' ହେଲେ ବାନରମାନେ ଭୟଭୀତ ହେବେ ନାହିଁ । ନୀଳ ରାମଙ୍କର ଆଦେଶ ଅନୁସାରେ ପ୍ରଚାର କରାଇଲେ ଓ ବାନରସେନାଙ୍କୁ ଯୁଦ୍ଧପାଇଁ ପ୍ରସ୍ତୁତ କଲେ ।

କୁମ୍ଭକର୍ଣ୍ଣ ରାବଣଗୃହରେ ପ୍ରବେଶ କରି ଜ୍ୟେଷ୍ଠଭ୍ରାତାଙ୍କର ଚରଣ ବନ୍ଦନା କଲା । ରାବଣ ତାକୁ ଆଲିଙ୍ଗନ କରି କହିଲା – ମହାବୀର, ତୁମର ସୁଖ ନିଦ୍ରା ଭାଙ୍ଗିଯିବାରୁ ତୁମେ କ୍ରୁଦ୍ଧ ଓ ବିରକ୍ତ ହୋଇଛ । କିନ୍ତୁ ବହୁଦିନ ଧରି ଶୋଇ ରହିବା ଯୋଗୁଁ ଶତ୍ରୁପୀଡ଼ିତ ଲଙ୍କାର ଅବସ୍ଥା ତୁମେ ଜାଣ ନାହିଁ । ସମୁଦ୍ରରେ ସେତୁ ବନ୍ଧନ କରି ସୁଗ୍ରୀବ ଓ ବାନରସେନା ସହିତ ରାମ ଲଙ୍କା ଆକ୍ରମଣ କରିଛି । ମୁଖ୍ୟ ରାକ୍ଷସବୀରମାନେ ବାନରମାନଙ୍କ ଦ୍ୱାରା ନିହତ ହୋଇଛନ୍ତି । କିନ୍ତୁ ତାହା ତୁଳନାରେ ବାନରମାନଙ୍କର ବିଶେଷ କ୍ଷତି ହୋଇ ନାହିଁ । ବାନରମାନଙ୍କ ପରାଜୟ ସଂପର୍କରେ ମୁଁ ସନ୍ଦିହାନ । ମୁଁ ଭୟାର୍ତ୍ତ । ତୁମେ ମୋର ସହାୟକ ହୋଇ ଲଙ୍କାପୁରୀକୁ ରକ୍ଷାକର । ପ୍ରଚଣ୍ଡ ପବନ ଶାରଦୀୟ ମେଘକୁ ଯେପରି ହଟାଇନିଏ, ତୁମେ ସେହିପରି ନିଜର ତେଜରେ ଶତ୍ରୁବାହିନୀକୁ ଛିନ୍ନଭିନ୍ନ କର । ଯୁଦ୍ଧଦୁର୍ମଦ, ତୁମେ ଲଙ୍କାର ମଙ୍ଗଳ କାର୍ଯ୍ୟ କର ।

କୁମ୍ଭକର୍ଣ୍ଣ ହାସ୍ୟପୂର୍ବକ ଉତ୍ତର ଦେଲା, ପୂର୍ବେ ମନ୍ତ୍ରଣା ସମୟରେ ତୁମ କାର୍ଯ୍ୟରେ ଆମେ ଯେଉଁ ଦୋଷ ଦର୍ଶାଇଥିଲୁ, ତୁମେ ତାହା ଶୁଣିଲ ନାହିଁ । ହିତର ବିପରୀତ କାର୍ଯ୍ୟ କରି ବର୍ତ୍ତମାନ ସେହି ପାପକର୍ମର ଫଳ ତୁମକୁ ଭୋଗ କରିବାକୁ ହେଉଛି । ପ୍ରଥମରୁ ତୁମେ ବୁଝି ବିଚାରି କାର୍ଯ୍ୟ କଲ ନାହିଁ । ବଳଦର୍ପରେ ପରିଣାମକୁ ବିଚାର ନ କରି କାର୍ଯ୍ୟ କରିଗଲ । ଐଶ୍ୱର୍ଯ୍ୟମଦମତ୍ତ ହୋଇ ଯେଉଁ ବ୍ୟକ୍ତି ହିତର ବିପରୀତ କାର୍ଯ୍ୟମାନ କରିଯାଏ, ତାହାର କାର୍ଯ୍ୟ ସର୍ବଦା ଦୋଷଦୁଷ୍ଟ ହୁଏ । ରାଜାର ଉଚିତ, ବୁଦ୍ଧିମାନ ମନ୍ତ୍ରୀ ଓ ସୁହୃଦ୍‌ମାନଙ୍କୁ ପରାମର୍ଶ କରି କାର୍ଯ୍ୟ କରିବା, ଦେଶକାଳକୁ ବିଚାର କରି ଧର୍ମ, ଅର୍ଥ ଓ କାମର ସେବା କରିବା ବାଞ୍ଛନୀୟ । ଶତ୍ରୁକୁ ଅବଜ୍ଞା କରି ଆତ୍ମରକ୍ଷା ବିଷୟରେ ସାବଧାନ ନ ହେଲେ ଅନର୍ଥ ହିଁ ସାର ହୁଏ ଓ ପରିମାଣରେ ବ୍ୟକ୍ତି ନିଜ ସ୍ଥାନରୁ ବିତାଡ଼ିତ ହୁଏ । ତୁମର ଅନୁଜ ବିଭୀଷଣ ପୂର୍ବରୁ ତୁମକୁ ଯେଉଁ ହିତକର ଓ ଯୁକ୍ତିଯୁକ୍ତ କଥା କହିଥିଲା ତାହା ତୁମର କରିବା ଉଚିତ ଥିଲା । ବର୍ତ୍ତମାନ ତୁମେ ଯାହା ଠିକ୍ ଭାବୁଛ, ତାହା କର ।

କୁମ୍ଭକର୍ଣ୍ଣର ଠୋକ୍‌ଠୋକ୍ କଥା ଶୁଣି ରାବଣ କ୍ରୁଦ୍ଧ ହୋଇ କହିଲା; କୁମ୍ଭକର୍ଣ୍ଣ ମୁଁ ତୋର ଜ୍ୟେଷ୍ଠଭ୍ରାତା, ଗୁରୁତୁଲ୍ୟ । ତୁ ମୋତେ ଉପଦେଶ ଦେବାକୁ ଚେଷ୍ଟା କର ନାହିଁ । ଯାହା ହେବାର କଥା ହୋଇଯାଇଛି । ସେ ସଂପର୍କରେ ଶୋଚନା କରି କିଛି ଲାଭ ନାହିଁ । ଯଦି

ତୋର ନିଜର ବଳବିକ୍ରମ ଅଛି ଓ ମୋଠାରେ ସ୍ନେହ ଅଛି, ତା'ହେଲେ ମୋର ବିପଦବେଳରେ ନିଜର କର୍ତ୍ତବ୍ୟ ସଂପାଦନ କର । ଦୁଃଖ ଓ ବିପଦ ସମୟରେ ଯେ ସାହାଯ୍ୟ କରେ, ସେ ହିଁ ପ୍ରକୃତ ବନ୍ଧୁ ।

ରାବଣର କ୍ରୋଧ ଓ ବିରକ୍ତି ଦେଖି କୁମ୍ଭକର୍ଣ୍ଣ ତାକୁ ସାନ୍ତ୍ୱନା ଦେଇ କହିଲା, ରାକ୍ଷସେନ୍ଦ୍ର, କ୍ରୋଧ ପରିତ୍ୟାଗ କରି ପ୍ରକୃତିସ୍ଥ ହୁଅ । ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ତୁମର ମନଦୁଃଖର କାରଣ ନାହିଁ । ତୁମେ ଯାହାପାଇଁ ବ୍ୟଥିତ ହେଉଛ, ମୁଁ ତାକୁ ନିଶ୍ଚୟ ନିହତ କରିବି । କିନ୍ତୁ ସମସ୍ତ ଅବସ୍ଥାରେ ତୁମର ଯେପରି ଭଲ ହେବ, ସେହିପରି ହିତକର କଥା କହିବା ମୋର କର୍ତ୍ତବ୍ୟ ବୋଲି ମନେକରେ ।

କୁମ୍ଭକର୍ଣ୍ଣ ଆସ୍ଫାଳନ କରି କହିଲା, ଆଜି ଯୁଦ୍ଧରେ ରାମଲକ୍ଷ୍ମଣ ନିହତ ହେବେ, ବାନରସେନା ପରାସ୍ତ ହୋଇ ପଳାୟନ କରିବେ । ଶତ୍ରୁକୁ ଶେଷ କରି ଆଜି ମୁଁ ଶୋକାତୁର ଲଙ୍କାର ଲୋତକ ପୋଛିଦେବି । ଅରିନ୍ଦମ, ମୋର ଅସ୍ତ୍ରଶସ୍ତ୍ରରେ ପ୍ରୟୋଜନ ନାହିଁ । ସୈନ୍ୟସାମନ୍ତ ଦରକାର ନାହିଁ । ମୋର ବିପୁଳ ଭୁଜ ବଳରେ ମୁଁ ବଜ୍ରଧାରୀ ଇନ୍ଦ୍ରକୁ ମଧ ନିହତ କରିପାରେ । ମୋର ଶକ୍ତି ତୁମେ ଜାଣ । ମୁଁ କ୍ରୁଦ୍ଧ ହେଲେ ଦେବତାମାନେ ନିହତ ହୋଇ ଭୂମିଶଯ୍ୟାରେ ଶୟନ କରିବେ । ଉଲ୍‌କାପାତ ପରି ସୂର୍ଯ୍ୟ, ଗ୍ରହ ଓ ନକ୍ଷତ୍ରମାନେ ଭୂପତିତ ହେବେ । ସମୁଦ୍ର ଶୁଷ୍କ ହୋଇଯିବ । ପର୍ବତମାନେ ଚୂର୍ଣ୍ଣ ହେବେ ଓ ମେଦିନୀ ବିଦୀର୍ଣ୍ଣ ହେବ । ବର୍ତ୍ତମାନ ମୁଁ ଯୁଦ୍ଧକୁ ଯାଉଛି । ରାମକୁ ଯମାଳୟକୁ ପଠାଇ ଫେରିଆସିବି । ଚିରକାଳପାଇଁ ସୀତା ତୁମର ବଶବର୍ତ୍ତିନୀ ହୋଇ ରହିବ ।

ରାବଣର ମନ୍ତ୍ରୀ ମହୋଦର କହିଲା – କୁମ୍ଭକର୍ଣ୍ଣ, ତୁମେ ସତ୍‌କୁଳରେ ଜନ୍ମ । କିନ୍ତୁ ତୁମର ଉଗ୍ର ସ୍ୱଭାବ ଓ ଅହଂକାର ଯୋଗୁଁ ତୁମେ କର୍ତ୍ତବ୍ୟ ନିର୍ଣ୍ଣୟ କରିପାର ନାହିଁ । ରାକ୍ଷସେନ୍ଦ୍ର ରାବଣ ନୀତି ଓ ଅନୀତି କ'ଣ ଜାଣନ୍ତି । କିନ୍ତୁ ବାଲ୍ୟକାଳରୁ ଉଗ୍ରସ୍ୱଭାବ ଯୋଗୁଁ ବହୁତ କହିବା ହିଁ ତୁମର ଅଭ୍ୟାସ ହୋଇଯାଇଛି । ଦେଶ କାଳ, ଲାଭ, କ୍ଷତି ସବୁ ବିଚାର କରି କାର୍ଯ୍ୟ କରିବା ରାକ୍ଷସରାଜ ରାବଣଙ୍କୁ ଜଣାଅଛି । ତୁମେ ବୁଦ୍ଧିର ପ୍ରୟୋଗ ନ କରି କେବଳ ବଳ ଉପରେ ନିର୍ଭର କରି ଚାଲିଛ । ଚିନ୍ତାଶୂନ୍ୟ ସ୍ଥୂଳବୁଦ୍ଧି ବ୍ୟକ୍ତି ପରି ତୁମେ ଏକାକୀ ରାମର ସମ୍ମୁଖୀନ ହେବାପାଇଁ ଇଚ୍ଛା କରୁଛ । ତୁମେ କ'ଣ ଜାଣ ନାହିଁ ରାମ ଏକାକୀ ଜନସ୍ଥାନରେ ସହସ୍ର ସହସ୍ର ରାକ୍ଷସଙ୍କୁ ନିହତ କରିଛି ? ରାମର ଭୟରେ ଲଙ୍କାର ରାକ୍ଷସମାନେ କିପରି ଭୀତ ଓ କମ୍ପିତ ହେଉଛନ୍ତି, ତାହା କ'ଣ ତୁମେ ଦେଖୁ ନାହଁ ? ତୁମେ ଏକାକୀ ରାମର ସମ୍ମୁଖୀନ ହେବାକୁ ଯାଇ କ୍ରୁଦ୍ଧ ସିଂହ ଓ ସୁପ୍ତ ସର୍ପକୁ ଉଠାଇବାପାଇଁ ଚେଷ୍ଟା କରୁଛ । ତେଣୁ ତୁମର ଏକାକୀ ଯୁଦ୍ଧ ଯାତ୍ରାର ଆସ୍ଫାଳନ ଏକ ନିର୍ବୋଧତା ବୋଲି ମୁଁ ମନେ କରୁଛି ।

ମହୋଦର ରାବଣଙ୍କୁ କହିଲା, ସୀତାଙ୍କୁ ପ୍ରଲୋଭନ ଦେଖାଇ ନିଜର ବଶକୁ ଆଣିବାକୁ ଚେଷ୍ଟା କରନ୍ତୁ । କୁମ୍ଭକର୍ଣ୍ଣଙ୍କ ସହିତ ମୁଁ ଓ ଅନ୍ୟ ଦୁଇଜଣ ରାକ୍ଷସବୀର ଯୁଦ୍ଧ କରିବାକୁ ଯାଉଛୁ । ଆମେ ଯୁଦ୍ଧରେ ଜୟଲାଭ କଲେ ଭଲ କଥା । ନ ହେଲେ ରାମନାମାଙ୍କିତ ଶରରେ କ୍ଷତବିକ୍ଷତ ହୋଇ ଯୁଦ୍ଧକ୍ଷେତ୍ରରୁ ପଳାଇଆସିବୁ ଏବଂ ରାମଲକ୍ଷ୍ମଣଙ୍କୁ ଭକ୍ଷଣ କରି

ଆମେ ଫେରିଆସିଛୁ ବୋଲି ପ୍ରଚାର କରିବୁ । ଆପଣ ଚାରମାନଙ୍କ ଦ୍ୱାରା ମଧ୍ୟ ଲଙ୍କାରେ ତାହା ପ୍ରଚାର କରାଇଦେବେ । ଭୃତ୍ୟମାନଙ୍କୁ ବିଭିନ୍ନ ଉପହାର ଦ୍ରବ୍ୟ ବିତରଣ କରିବେ । ତା'ପରେ ନିଜେ ଅଶୋକବନକୁ ଯାଇ ସୀତାଙ୍କୁ ଏହି ବାର୍ତ୍ତା ଦେଇ ଓ ଧନରତ୍ନର ଲୋଭ ଦେଖାଇ ଆପଣାର କରିବା ପାଇଁ ଚେଷ୍ଟା କରିବେ ।

କୁମ୍ଭକର୍ଣ୍ଣ ମହୋଦରକୁ ଭର୍ତ୍ସନା କରି କହିଲା – ପଣ୍ଡିତମ୍ମନ୍ୟ ମହୋଦର, ପଣ୍ଡିତଶୂନ୍ୟ ରାଜାମାନଙ୍କର ବୁଦ୍ଧିହୀନ ଚାଟୁକାରଙ୍କ ପରି ତୁମେ କଥାବାର୍ତ୍ତା କରୁଛ । ତୁମର କଥା ରାଜାଙ୍କୁ ରୁଚିକର ହୋଇପାରେ । କିନ୍ତୁ ତୁମପରି ଯୁଦ୍ଧରେ ଭୀରୁ କାପୁରୁଷ ବ୍ୟକ୍ତିର ରାଜାଙ୍କର ମନ ନେବାପାଇଁ ଏପରି କଥା କହିବା ଠିକ୍ ନୁହେଁ । ଖାଲି ପ୍ରିୟ କଥା କହି ରାଜାଙ୍କର ସମସ୍ତ କାର୍ଯ୍ୟ ତୁମେମାନେ ହିଁ ନଷ୍ଟ କରୁଛ । ସେଥିପାଇଁ ଆଜି ଲଙ୍କାର ଏ ଦୁର୍ଦ୍ଦଶା ଘଟିଛି । ରାଜକୋଷ କ୍ଷୀଣ, ସୈନ୍ୟମାନେ ନିହତ ଓ ରାଜା ଏକମାତ୍ର ଜୀବିତ ଅଛନ୍ତି । ଛଦ୍ମବେଶଧାରୀ ବନ୍ଧୁରୂପୀ ଶତ୍ରୁ ହୋଇ ତୁମେ ରାଜାଙ୍କୁ କୁପରାମର୍ଶ ଦେବାରେ ଲାଗିଛ । ତୁମମାନଙ୍କର ଦୁର୍ନୀତି ଫଳରେ ଲଙ୍କାରେ ଯେଉଁ ଅବସ୍ଥା ସୃଷ୍ଟି ହୋଇଛି, ତାହା ଦୂର କରିବାପାଇଁ ମୁଁ ଶତ୍ରୁ ସହ ଯୁଦ୍ଧ କରିବା ପାଇଁ ଯାଉଛି ।

ରାବଣ ହସି ହସି କହିଲା – କୁମ୍ଭକର୍ଣ୍ଣ, ମହୋଦର ରାମଙ୍କ ବଳବିକ୍ରମ ଦେଖି ଭୟଭୀତ ହୋଇଯାଇଛି । ଯୁଦ୍ଧ କରିବା ପାଇଁ ତାର ପ୍ରବୃତ୍ତି ନାହିଁ । ରାକ୍ଷସମାନଙ୍କର ବିପଦ ଉପସ୍ଥିତ ହେବାରୁ ମୁଁ ତୁମକୁ ହିଁ ଜାଗରିତ କଲି । ତୁମ ପରି ମୋର କେହି ବଳବାନ୍ ବନ୍ଧୁ ଓ ସହାୟକ ନାହାନ୍ତି । ତେଣୁ ଶତ୍ରୁର ବିନାଶପାଇଁ ପାଶହସ୍ତ ଯମପରି ତୁମେ ଶୂଳ ଧାରଣ ପୂର୍ବକ ଯୁଦ୍ଧଯାତ୍ରା କର ଓ ରାମ ଲକ୍ଷ୍ମଣ ଓ ବାନରମାନଙ୍କୁ ଭକ୍ଷଣ କର ।

## ୧୧୨ ॥ କୁମ୍ଭକର୍ଣ୍ଣ ବଧ

ସ୍ୱର୍ଣ୍ଣଖଚିତ ଏକ ଲୌହମୟ ଶୂଳ ଧରି କୁମ୍ଭକର୍ଣ୍ଣ ଯୁଦ୍ଧପାଇଁ ପ୍ରସ୍ତୁତ ହେଲା । ସେ ରାବଣକୁ କହିଲା, ସୈନ୍ୟସାମନ୍ତ ଥାଆନ୍ତୁ । ମୁଁ ଏକାକୀ ଯିବି । ରାବଣ କିନ୍ତୁ ସେଥିରେ ରାଜି ହେଲା ନାହିଁ । ବିଶାଳ ସେନା ଦ୍ୱାରା ବେଷ୍ଟିତ ହୋଇ ଯୁଦ୍ଧକୁ ଯିବାପାଇଁ ତାକୁ ପରାମର୍ଶ ଦେଲା । ମଣିମୟ ହାର ଓ ସୁବର୍ଣ୍ଣର ଅଙ୍ଗୁରୀୟ ଆଦି ତାକୁ ପିନ୍ଧାଇଦେଇ ବିଦାୟ ଦେଲା । ସମସ୍ତ ଅଳଙ୍କାରରେ ଭୂଷିତ ହୋଇ ରାବଣକୁ ଆଲିଙ୍ଗନ, ପ୍ରଦକ୍ଷିଣ ଓ ପ୍ରଣାମ କରି କୁମ୍ଭକର୍ଣ୍ଣ ଯୁଦ୍ଧଯାତ୍ରା କଲା । ରଥ, ହସ୍ତୀ, ଅଶ୍ୱ ଓ ପଦାତିକ ସମେତ ଚତୁରଙ୍ଗ ବଳ ତାକୁ ଅନୁସରଣ କଲେ । ରାକ୍ଷସମାନେ ଘୋର ଗର୍ଜନ କରି କୁମ୍ଭକର୍ଣ୍ଣର ପଛେ ପଛେ ଚାଲିଲେ । ସେ ନିଜ ସୈନ୍ୟମାନଙ୍କର ବ୍ୟୂହ ରଚନା କରି ସେମାନଙ୍କୁ କହିଲା – ରାକ୍ଷସଗଣ, ଅଗ୍ନି ପତଙ୍ଗମାନଙ୍କୁ ଦଗ୍ଧ କରିବା ପରି ମୁଁ ବାନର ଯୂଥପତିମାନଙ୍କୁ ଦଗ୍ଧ କରିବି, କିନ୍ତୁ ବନଚାରୀ ବାନର ମାନଙ୍କର କ'ଣ ଅପରାଧ ? ରାମ ଓ ଲକ୍ଷ୍ମଣ ହିଁ ଲଙ୍କା ଅବରୋଧର ମୂଳ କାରଣ । ତେଣୁ ସେ ଦୁହିଁଙ୍କୁ ଆଜି ମୁଁ ନିହତ କରିବି । ତାକୁ ସମର୍ଥନ କରି ରାକ୍ଷସମାନେ ଘୋରନାଦ କଲେ । ସେଥିରେ ସାଗର କମ୍ପିତ ହେଲା ।

ମେଘ ଧୂମବର୍ଣ୍ଣ, ଚାରିଆଡ଼େ ଉଲ୍କା ବୃଷ୍ଟି, ଶୃଗାଳମାନଙ୍କର ଚିତ୍କାର ଆଦି ବହୁ ଅଶୁଭ ଲକ୍ଷଣ ଦେଖାଗଲା । ଏହି ସବୁ ଉତ୍ପାତ ଦେଖି ମଧ୍ୟ କୁମ୍ଭକର୍ଣ୍ଣ ଯମଦ୍ୱାରା ପ୍ରେରିତ ହୋଇ ଯିବାପରି ରଣକ୍ଷେତ୍ରକୁ ଧାବମାନ ହେଲା । ତାକୁ ଦେଖିବାମାତ୍ରେ ବାନରମାନେ ପଳାଇଗଲେ । କୁମ୍ଭକର୍ଣ୍ଣ ସମୁଦ୍ର ଓ ପର୍ବତକୁ କମ୍ପିତ କରି ଘୋର ଗର୍ଜନ କରିବାକୁ ଲାଗିଲା । ବାନର ଯୂଥପତିମାନେ ପଳାଇଯିବାର ଦେଖି ଅଙ୍ଗଦ କହିଲେ– ନିଜର ଆଭିଜାତ୍ୟ, ବଳବିକ୍ରମ ଭୁଲିଯାଇ ତୁମେମାନେ କାହିଁକି ପଳାଉଛ ? ତୁମେ ଯାହାକୁ ଦେଖି ପଳାଇଯାଉଛ ତାହା ଏକ ବିଭୀଷିକା ମାତ୍ର । ନିଜର ବିକ୍ରମ ଦ୍ୱାରା ଆମେ ତାହା ଶୀଘ୍ର ଦୂର କରିପାରିବା । ଅଙ୍ଗଦଙ୍କ ଦ୍ୱାରା ଆଶ୍ୱସ୍ତ ହୋଇ ବାନରଗଣ ବୃକ୍ଷ ଓ ଶିଳାମାନ ଧରି ଯୁଦ୍ଧକ୍ଷେତ୍ରକୁ ଫେରିଆସିଲେ । କୁମ୍ଭକର୍ଣ୍ଣ ସେମାନଙ୍କ ଦ୍ୱାରା ଶିଳା ଓ ବୃକ୍ଷରେ ତାଡ଼ିତ ହୋଇ ମଧ୍ୟ ଟିକିଏ ହେଲେ ବିଚଳିତ ହେଲା ନାହିଁ । ବରଂ ବନାଗ୍ନିପରି ବାନରବଳଙ୍କୁ ମନ୍ଥନ କଲା । ବାନର ସେନାପତିମାନେ ରୁଧିରାକ୍ତ ହୋଇ ଭୂପତିତ ହେଲେ ଏବଂ ବାନରସୈନ୍ୟମାନେ ପୃଷ୍ଠଭଙ୍ଗ ଦେଇ ଚତୁର୍ଦ୍ଦିଗକୁ ପଳାୟନ କଲେ । ଅଙ୍ଗଦ ସେମାନଙ୍କୁ ପୁଣି ନିବର୍ତ୍ତାଇ କହିଲେ, ନିଜର ବଳବିକ୍ରମ ଭୁଲିଯାଇ ତୁମେମାନେ ଅନାର୍ଯ୍ୟଙ୍କ ପରି ଭୟଭୀତ ହୋଇ କାହିଁକି ପଳାଇଯାଉଛ ? ଭୀରୁ ପରି ପଳାୟନ କରିବା ମୃତ୍ୟୁଠାରୁ ମଧ୍ୟ ଅଧିକ ଯନ୍ତ୍ରଣାଦାୟକ । ତୁମେ ଯୋଦ୍ଧାର ପଥ ଅବଲମ୍ବନ କର ।

ଅଙ୍ଗଦଙ୍କ କଥାରେ ଫେରିଆସି ବାନର ଯୂଥପତିଗଣ ପୁଣି ଏକ ସଙ୍ଗରେ କୁମ୍ଭକର୍ଣ୍ଣଙ୍କୁ ଆକ୍ରମଣ କଲେ । କିନ୍ତୁ ରାକ୍ଷସ ସେଥିରେ ଟିକିଏ ହେଲେ ହଲ ଚଲ ହେଲା ନାହିଁ । ସେ ମୁହୂର୍ତ୍ତକ ମଧ୍ୟରେ ହଜାର ହଜାର ବାନରସୈନ୍ୟଙ୍କୁ ନିହତ କରିବାକୁ ଲାଗିଲା । ଶହ ଶହ ବାନରଙ୍କୁ ଗୋଡ଼ାଇ ଭକ୍ଷଣ କଲା । ହନୁମାନ ଆକାଶରେ ରହି ବିଶାଳ ଗିରିଶୃଙ୍ଗ ଓ ବୃକ୍ଷମାନ କୁମ୍ଭକର୍ଣ୍ଣର ମସ୍ତକକୁ ନିକ୍ଷେପ କଲେ । କିନ୍ତୁ ସେ ଶୂଳାଗ୍ରରେ ତାହା ଖଣ୍ଡ ଖଣ୍ଡ କରିଦେଲା । ବାୟୁପୁତ୍ର ଏକ ପ୍ରକାଣ୍ଡ ଶୈଳଶୃଙ୍ଗ ଧରି କୁମ୍ଭକର୍ଣ୍ଣର ସମ୍ମୁଖୀନ ହେଲେ । ଏହି ଶୃଙ୍ଗର ଆଘାତରେ ରାକ୍ଷସବୀର ବ୍ୟଥିତ ହେଲା । ମାତ୍ର ପ୍ରକୃତିସ୍ଥ ହୋଇ ସେହି ପ୍ରକାଣ୍ଡ ଅଗ୍ନିତୁଲ୍ୟ ଶୂଳରେ ହନୁମାନଙ୍କ ବକ୍ଷକୁ ଆଘାତ କରି ବିଦୀର୍ଣ୍ଣ କଲା । ହନୁମାନ ଏଥିରେ ବିହ୍ୱଳ ହୋଇ ରକ୍ତବାନ୍ତି କଲେ । ମାତ୍ର ପରମୁହୂର୍ତ୍ତରେ ପ୍ରକୃତିସ୍ଥ ହୋଇ ଭୟଙ୍କର ଗର୍ଜନ କରିବାକୁ ଲାଗିଲେ । ହନୁମାନଙ୍କ ଅବସ୍ଥା ଦେଖି ବାନରମାନେ ପୁଣି ଭୟରେ ପଳାଇଲେ । ନୀଳ ଏକ ପ୍ରକାଣ୍ଡ ଶୈଳଶୃଙ୍ଗ କୁମ୍ଭକର୍ଣ୍ଣ ପ୍ରତି ନିକ୍ଷେପ କଲେ । ମାତ୍ର ମୁଷ୍ଟିର ଆଘାତରେ ରାକ୍ଷସ ତାକୁ ଚୂର୍ଣ୍ଣ ବିଚୂର୍ଣ୍ଣ କଲା । ଯେଉଁ ପାଞ୍ଚଜଣ ବାନରବୀର କୁମ୍ଭକର୍ଣ୍ଣ ସହିତ ଏକତ୍ର ଲଢୁଥିଲେ, ସେମାନଙ୍କର ଅବସ୍ଥା ବିପନ୍ନ ହେଲା । ସେ ଭୁଜଦ୍ୱାରା ଋଷଭଙ୍କୁ ଚାପିଧରି ତଳକୁ ପକାଇଦେଲା । ଋଷଭ ରକ୍ତଧାରା ବମନ କଲେ । ମୁଷ୍ଟି ଆଘାତରେ ଶରଭ, ଜାନୁ ପ୍ରହାରରେ ନୀଳ, ଚପେଟାଘାତରେ ଗବାକ୍ଷ ଓ ପାଦଦ୍ୱାରା ଗନ୍ଧମାଦନଙ୍କୁ ଆଘାତ ଦେଇ ସଂଜ୍ଞାହୀନ କଲା । ଅନ୍ୟ ଯେଉଁ ବାନରମାନେ ତାକୁ ଆକ୍ରମଣ କରିବାକୁ ଗଲେ ସେ ସେମାନଙ୍କୁ ହାତରେ ଧରିନେଇ ଭକ୍ଷଣ କଲା । ବାନରସେନା ମଧ୍ୟରେ ହାହାକାର ପଡ଼ିଗଲା ।

ଅଙ୍ଗଦ ଏକ ବିଶାଳ ଶିଳାରେ କୁମ୍ଭକର୍ଣ୍ଣର ମସ୍ତକକୁ ଆଘାତ କଲେ । କୁମ୍ଭକର୍ଣ୍ଣ କ୍ରୁଦ୍ଧ ହୋଇ ଅଙ୍ଗଦଙ୍କ ଉପରକୁ ଶୂଳ ନିକ୍ଷେପ କଲା । କିନ୍ତୁ ଅଙ୍ଗଦ ଦେହକୁ ଲଘୁ କରିଦେଇ ଶୂଳର ଗତିପଥରୁ ଅପସରିଯିବାରୁ ତାହା ଲକ୍ଷ୍ୟଭ୍ରଷ୍ଟ ହୋଇ ଭୂପତିତ ହେଲା । କୁମ୍ଭକର୍ଣ୍ଣ ଅଙ୍ଗଦଙ୍କୁ ମୁଷ୍ଟି ପ୍ରହାରରେ ମୂର୍ଚ୍ଛିତ କରି ସୁଗ୍ରୀବଙ୍କ ପ୍ରତି ଧାବିତ ହେଲା । ସୁଗ୍ରୀବ ଏକ ବିଶାଳ ଗିରିଶୃଙ୍ଗକୁ ଉପାଡ଼ିଆଣି ଘୂରାଇ ଘୂରାଇ କୁମ୍ଭକର୍ଣ୍ଣ ପ୍ରତି ନିକ୍ଷେପ କଲେ । କିନ୍ତୁ କୁମ୍ଭକର୍ଣ୍ଣ ନିଜର ବିଶାଳ ଭୁଜଦ୍ୱାରା ତାହାକୁ ବ୍ୟର୍ଥ କଲା । ସୁଗ୍ରୀବଙ୍କର ପ୍ରାଣସଂହାର ପାଇଁ ସେ ତାର ସୁବର୍ଣ୍ଣମଣ୍ଡିତ ଶୂଳ ତାଙ୍କ ପ୍ରତି ନିକ୍ଷେପ କଲା । କିନ୍ତୁ ହନୁମାନ ଡେଇଁପଡ଼ି ତାକୁ ଦୁଇ ହାତରେ ଭାଙ୍ଗି ପକାଇଲେ । କୁମ୍ଭକର୍ଣ୍ଣ ଶୀଘ୍ର ଏକ ଶୈଳଶୃଙ୍ଗ ଉତ୍ପାଟନ କରି ତୀବ୍ର ବେଗରେ ସୁଗ୍ରୀବଙ୍କୁ ଆଘାତ କରି ମୂର୍ଚ୍ଛିତ କଲା ଏବଂ ତାଙ୍କୁ ଉଠାଇନେଇ ଝଞ୍ଜାପବନ ମେଘମାଳାକୁ ଉଡ଼ାଇ ନେବାପରି ତୀବ୍ରବେଗରେ ଚାଲିଗଲା । ରାକ୍ଷସମାନେ ସିଂହନାଦ କଲେ । କୁମ୍ଭକର୍ଣ୍ଣ ଭାବିଲା, ବାନରରାଜଙ୍କୁ ହରଣ କରି ନେଇଗଲେ ରାମ ସହିତ ସମସ୍ତ ବାନରସେନା ଭୟଗ୍ରସ୍ତ ଓ ବିନଷ୍ଟ ହେବେ । ସୁଗ୍ରୀବ କୁମ୍ଭକର୍ଣ୍ଣ ହସ୍ତରେ ବନ୍ଦୀ ହେବା ଫଳରେ ବାନରସୈନ୍ୟମାନେ ପୁଣି ଭୟରେ ପଳାୟନ କଲେ । କୁମ୍ଭକର୍ଣ୍ଣ ସୁଗ୍ରୀବଙ୍କୁ ଧରି ବୀରଦର୍ପରେ ଲଙ୍କାରେ ପ୍ରବେଶ କଲା । ତାର ମସ୍ତକରେ ପୁଷ୍ପ ଓ ଲାଜା ବୃଷ୍ଟି ହେବାକୁ ଲାଗିଲା । ଲାଜାର ଗନ୍ଧ ଓ ଶୀତଳ ବାୟୁ ଫଳରେ ସୁଗ୍ରୀବ ସଂଜ୍ଞା ଲାଭକରି ସେ କି ଅବସ୍ଥାରେ ପଡ଼ିଛନ୍ତି ତାହା ଅନୁଭବ କଲେ । କୁମ୍ଭକର୍ଣ୍ଣ କବଳରୁ ଶୀଘ୍ର ମୁକ୍ତ ନ ହେଲେ ତାଙ୍କର ଜୀବନ ବିପନ୍ନ, ଏହା ମନେକରି ସେ ତୀକ୍ଷ୍ଣ ଦନ୍ତ ଓ ନଖାଘାତରେ କୁମ୍ଭକର୍ଣ୍ଣର ନାସିକା ଓ କର୍ଣ୍ଣଦ୍ୱୟ ଛେଦନ କରି ପାଦରେ ତାକୁ ଆଘାତ କରିବାକୁ ଲାଗିଲେ । ନାସା, କର୍ଣ୍ଣ ଛିନ୍ନ ହେବାରୁ କୁମ୍ଭକର୍ଣ୍ଣ ସୁଗ୍ରୀବଙ୍କୁ ଭୂତଳରେ ନିକ୍ଷେପ କରି ପାଦରେ ପେଷିଦେବାକୁ ଇଚ୍ଛା କଲା । କିନ୍ତୁ ସୁଗ୍ରୀବ କନ୍ଦୁକ ପରି ଉତ୍‌ଥିତ ହୋଇ ଲମ୍ଫ ପ୍ରଦାନପୂର୍ବକ ରାମଙ୍କ ପାଖରେ ପହଞ୍ଚିଗଲେ ।

କୁମ୍ଭକର୍ଣ୍ଣ କ୍ରୁଦ୍ଧ ହୋଇ ଏକ ମୁଦ୍‌ଗର ଧାରଣ କରି ପୁଣି ଯୁଦ୍ଧକ୍ଷେତ୍ରକୁ ଧାବିତ ହେଲା । ଯୁଗାନ୍ତକାଳୀନ ମୃତ୍ୟୁପରି ସେ ପୁଣି ବାନରସୈନ୍ୟମାନଙ୍କୁ ନିହତ ଓ ଭକ୍ଷଣ କରିବାକୁ ଲାଗିଲା । ଲକ୍ଷ୍ମଣ କ୍ରୋଧରେ କୁମ୍ଭକର୍ଣ୍ଣର ସମ୍ମୁଖୀନ ହୋଇ ତୀକ୍ଷ୍ଣ ଶରଦ୍ୱାରା ତାର ସୁବର୍ଣ୍ଣମୟ କବଚକୁ ବିଦୀର୍ଣ୍ଣ କଲେ । କୁମ୍ଭକର୍ଣ୍ଣ ଲକ୍ଷ୍ମଣଙ୍କୁ ଅବଜ୍ଞା କରି କହିଲା, ତୁ ବୟସରେ ବାଳକ ହେଲେ ମଧ୍ୟ ତୋର ବୀରତ୍ୱରେ ମୁଁ ସନ୍ତୁଷ୍ଟ ହୋଇଛି । କିନ୍ତୁ ତୋର ବିନାଶ ମୋର ଲକ୍ଷ୍ୟ ନୁହେଁ । ରାମ ମୋର ଲକ୍ଷ୍ୟ, ତାକୁ ନିହତ କଲେ ତୁମମାନଙ୍କୁ ମାରିବାପାଇଁ ବେଶି ସମୟ ଲାଗିବ ନାହିଁ । ମୁଁ ସମସ୍ତ ବାନରବଳକୁ ଅଳ୍ପ ସମୟ ମଧ୍ୟରେ ସଂହାର କରିବି । ଲକ୍ଷ୍ମଣ ହାସ୍ୟ କରି କହିଲେ, ମହାବୀର ରାମ ଅଚଳ ପର୍ବତ ପରି ଦଣ୍ଡାୟମାନ । ମୋ ସହିତ ଆଗ ଯୁଦ୍ଧ କରି ତାଙ୍କ ପାଖକୁ ଯିବୁ । କିନ୍ତୁ କୁମ୍ଭକର୍ଣ୍ଣ ଲକ୍ଷ୍ମଣଙ୍କୁ ଅବଜ୍ଞା କରି ରାମଙ୍କ ଆଡ଼କୁ ଧାବମାନ ହେଲା ।

ରାମ ଭୀଷଣ ରୌଦ୍ରଶରରେ କୁମ୍ଭକର୍ଣ୍ଣର ହୃଦୟକୁ ବିଦୀର୍ଣ୍ଣ କଲେ ଓ ଅସଂଖ୍ୟ ଶରଜାଳରେ ତାର ଶରୀରକୁ ଜର୍ଜରିତ କଲେ । ତାହାର ହସ୍ତରୁ ମୁଦ୍‌ଗର ଖସିପଡ଼ିଲା ଓ

କ୍ଷଣକ ମଧ୍ୟରେ ସେ ନିରସ୍ତ୍ର ହୋଇଗଲା । ସେ ଏକ ପର୍ବତ ଶୃଙ୍ଗ ଘୂର୍ଣ୍ଣନ କରି ରାମଙ୍କୁ ନିକ୍ଷେପ କଲା । ରାମ ତାକୁ ଶରାଘାତରେ ଶୀଘ୍ର ଖଣ୍ଡନ କରି ଏକ ସୁବର୍ଣ୍ଣମଣ୍ଡିତ ବାଣଦ୍ୱାରା କୁମ୍ଭକର୍ଣ୍ଣର ବର୍ମ୍ମ ଛେଦନ କଲେ । କ୍ରୁଦ୍ଧ କୁମ୍ଭକର୍ଣ୍ଣ ବିକଟାଳ ହାସ୍ୟ କରି କହିଲା – ରାମ, ମୁଁ ବିରାଧ ବା କବନ୍ଧ ନୁହେଁ, ମୋତେ ଖର ବୋଲି ମନେ କର ନାହିଁ । ମୁଁ ବାଳୀ ବା ମାରୀଚ ମଧ୍ୟ ନୁହେଁ, ମୁଁ କୁମ୍ଭକର୍ଣ୍ଣ । ଦେବ, ଦାନବ, ଯକ୍ଷ, ଗନ୍ଧର୍ବମାନଙ୍କର ବିଜେତା । ବର୍ତ୍ତମାନ ତୋ ସହିତ ମୋର ପ୍ରକୃତ ବଳ ପରୀକ୍ଷା ହେବ ଓ ଅଚିରେ ତୁ ମୋର ଭକ୍ଷ୍ୟ ହେବୁ । ରାମ ଅଯଥା ବାକ୍ୟ ବ୍ୟୟ ନ କରି ଅମୋଘ ଶରମାନ କୁମ୍ଭକର୍ଣ୍ଣପ୍ରତି ପ୍ରୟୋଗ କଲେ । ଯେଉଁ ସମସ୍ତ ଶରରେ ସେ ସପ୍ତଶାଳ ବିଦୀର୍ଣ୍ଣ କରିଥିଲେ, ଯାହାର ଆଘାତରେ ବାଳୀକୁ ନିହତ କରିଥିଲେ, ସେ ସମସ୍ତ ଶର କୁମ୍ଭକର୍ଣ୍ଣ ଶରୀରରେ ପ୍ରବେଶ କରି ତାକୁ ତିଳେ ମାତ୍ର ବିଚଳିତ କରିପାରିଲା ନାହିଁ । ସେ ଏକ ରକ୍ତାକ୍ତ ବିଶାଳ ମୁଦ୍‌ଗର ଘୂରାଇ ରାମଙ୍କ ପ୍ରତି ନିକ୍ଷେପ କଲା । କିନ୍ତୁ ପ୍ରତାପୀ ରାଘବ ବାୟବ୍ୟ ଅସ୍ତ୍ର ସାହାଯ୍ୟରେ ରାକ୍ଷସର ମୁଦ୍‌ଗରଯୁକ୍ତ ବାହୁକୁ ଛେଦନ କଲେ । ଦୁହିଁଙ୍କର ଯୁଦ୍ଧ ଦେଖୁଥିବା ରାକ୍ଷସ ଓ ବାନରମାନେ ରାମଙ୍କର ପରାକ୍ରମ ଦେଖି ବିସ୍ମିତ ହେଲେ । କୁମ୍ଭକର୍ଣ୍ଣ ଅନ୍ୟ ହସ୍ତରେ ଏକ ବୃକ୍ଷ ଉତ୍ପାଟନ କରି ରାମଙ୍କ ପ୍ରତି ଧାବିତ ହେଲା । ରାମ ସ୍ୱର୍ଣ୍ଣଖଚିତ ଐନ୍ଦ୍ରାସ୍ତ୍ର ବଳରେ ବୃକ୍ଷସମେତ ତାର ସେହି ଉଦ୍ୟତ ହସ୍ତକୁ ଛେଦନ କଲେ । ଛିନ୍ନବାହୁ ରାକ୍ଷସ ବିଚଳିତ ନ ହୋଇ ପୁଣି ଗର୍ଜନ କରି ଆସୁଥିବାର ଦେଖି ରାମ ଦୁଇଟି ଶାଣିତ ବାଣରେ ତାର ପଦଦ୍ୱୟକୁ ଛେଦନ କରି ପକାଇଲେ । ଏହିପରି କୁମ୍ଭକର୍ଣ୍ଣର ନାସା, କର୍ଣ୍ଣ, ବାହୁ ଓ ପାଦଦ୍ୱୟ ଛିନ୍ନ ହେଲା । କିନ୍ତୁ ରାହୁ ଚନ୍ଦ୍ରମାକୁ ଗ୍ରାସ କରିବାକୁ ଆସିବା ପରି ସେ ମୁଖବ୍ୟାଦନ କରି ରାମଚନ୍ଦ୍ରଙ୍କୁ ଗ୍ରାସ କରିବାପାଇଁ ଦୌଡ଼ିଆସିଲା । ରାମ ଅଗଣିତ ଶରରେ ରାକ୍ଷସର ମୁଖଗହ୍ୱର ପୂର୍ଣ୍ଣ କରି ତାକୁ ବାକ୍‌ଶକ୍ତିହୀନ କରିଦେଲେ । ତା'ପରେ ଏକ ଦୀପ୍ତିମନ୍ତ କାଳାନ୍ତକ ଓ ବ୍ରହ୍ମଦଣ୍ଡ ତୁଲ୍ୟ ଇନ୍ଦ୍ରାସ୍ତ୍ର ଗ୍ରହଣ କରି କୁମ୍ଭକର୍ଣ୍ଣ ପ୍ରତି ନିକ୍ଷେପ କଲେ । ସୂର୍ଯ୍ୟ ଓ ଅଗ୍ନିତୁଲ୍ୟ ସେହି ତେଜୀୟାନ ଅସ୍ତ୍ର ଦଶଦିଗକୁ ଆଲୋକିତ କରି କୁମ୍ଭକର୍ଣ୍ଣର କୁଣ୍ଡଳଯୁକ୍ତ ମସ୍ତକକୁ ଛେଦନ କଲା । କୁମ୍ଭକର୍ଣ୍ଣର ଶରୀର ସମୁଦ୍ରରେ ପତିତ ହେଲା ଓ ତାର ମସ୍ତକ ଲଙ୍କା ଉପରେ ପଡ଼ି ଅନେକ ଗୃହ ତୋରଣ ଓ ପ୍ରାଚୀର ଭଗ୍ନ କଲା । ରାକ୍ଷସମାନେ ଆର୍ତ୍ତନାଦ କରି ଭୟରେ ପଳାୟନ କଲେ । କୁମ୍ଭକର୍ଣ୍ଣର ନିଧନରେ ଦେବତା ଓ ଋଷିମାନେ ଆକାଶରେ ରହି ରାମଚନ୍ଦ୍ରଙ୍କୁ ଧନ୍ୟ ଧନ୍ୟ କଲେ । ବାନରସେନା ମଧ୍ୟରେ ପ୍ରବଳ ଆନନ୍ଦ ଖେଳିଗଲା ।

## ୧୧୩ ॥ ଅତିକାୟ ପ୍ରମୁଖ ରାବଣର ବୀରପୁତ୍ରମାନଙ୍କର ମୃତ୍ୟୁ

କୁମ୍ଭକର୍ଣ୍ଣର ନିଧନ ସମ୍ବାଦ ଦେବାକୁ ଯାଇ ରାକ୍ଷସମାନେ ରାବଣକୁ କହିଲେ – ମହାରାଜ, ଆପଣଙ୍କର ଭ୍ରାତା କୁମ୍ଭକର୍ଣ୍ଣ କୃତାନ୍ତତୁଲ୍ୟ କାଳଦ୍ୱାରା ପ୍ରେରିତ ହୋଇ ନିହତ ହେଲେ । ସେ ବାନରସୈନ୍ୟମାନଙ୍କୁ ଭକ୍ଷଣ କରି ରଣସ୍ଥଳରୁ ସେମାନଙ୍କୁ ବିତାଡ଼ିତ

କରିଦେଇଥିଲେ । କିନ୍ତୁ ରାମଙ୍କ ପ୍ରବଳ ତେଜଃ ପ୍ରଭାବରେ ତାଙ୍କ ତେଜ ସ୍ତିମିତ ହୋଇଗଲା । ତାଙ୍କର କଣ୍ଠ, ଜାନୁ ଓ ବାହୁଛିନ୍ନ ଏବଂ ଶରୀର ରକ୍ତାକ୍ତ ହେଲା । ତାଙ୍କର ପର୍ବତତୁଲ୍ୟ ବିଶାଳ ଦେହ ସମୁଦ୍ରରେ ପଡ଼ି ଅର୍ଦ୍ଧ ନିମଜ୍ଜିତ ହୋଇଛି ଓ ବିଶାଳ ଶିର ଲଙ୍କା ଉପରେ ପଡ଼ିଛି ।

ଭ୍ରାତାର ନିଧନବାର୍ତ୍ତାରେ ରାବଣ ମୂର୍ଚ୍ଛିତ ହେଲା । କିଛି ସମୟ ପରେ ସେ ସଂଜ୍ଞା ଲାଭ କରି ବ୍ୟାକୁଳ ଭାବରେ ରୋଦନକରି କହିଲା – ବୀର କୁମ୍ଭକର୍ଣ୍ଣ ତୁ ମୋର ଏବଂ ମୋର ଆତ୍ମୀୟସ୍ୱଜନଙ୍କର ହୃଦୟର ଶଲ୍ୟ ଉନ୍ମୁକ୍ତ ନ କରି ଆମକୁ ପରିତ୍ୟାଗ କରି ଚାଲିଗଲୁ । ତୋର ଭୁଜବଳକୁ ଆଶ୍ରୟ କରି ମୁଁ ନିର୍ଭୟରେ ରହିଥିଲି । କିନ୍ତୁ ଦେବତା ଦାନବମାନେ ଯାହାକୁ ଭୟ କରୁଥିଲେ, ସେ ଆଜି ରାମର ବାଣରେ ନିହତ ହେଲା । ଇନ୍ଦ୍ରବଜ୍ରର ଆଘାତକୁ ଯେ ଅନାୟାସରେ ସହିପାରିଥିଲା, ସେ କିପରି ରାମର ଶରାଘାତରେ ଧରାଶାୟୀ ହେଲା ? ଦେବତା ଓ ଋଷିମାନେ ତୋର ମୃତ୍ୟୁରେ ଆଜି ଆନନ୍ଦିତ ହୋଇଛନ୍ତି । ଏଣିକି ବାନରମାନେ ଲଙ୍କାର ଦୁର୍ଗ ଓ ଦ୍ୱାରଦେଶରେ ଅକ୍ଳେଶରେ ପ୍ରବେଶ କରିବେ । ତୋତେ ହରାଇ ମୋ ରାଜପଦ ଦରକାର ନାହିଁ । ସୀତାକୁ ରଖି ମଧ ଲାଭ ନାହିଁ । ଭ୍ରାତୃହନ୍ତା ରାମକୁ ଯୁଦ୍ଧରେ ନିହତ କରି ନ ପାରିଲେ ମୋର ମରଣ ଶ୍ରେୟସ୍କର ହେବ । ବିଭୀଷଣ ମୋତେ ଯେଉଁ ହିତ ପରାମର୍ଶ ଦେଇଥିଲା, ମୋହବଶରୁ ତାହା ମୁଁ ଶୁଣିଲି ନାହିଁ । ବର୍ତ୍ତମାନ ତାର ଫଳ ପାଉଛି ।

ରାବଣର ପୁତ୍ର ଦେବାନ୍ତକ, ନରାନ୍ତକ, ତ୍ରିଶିରା ଓ ଅତିକାୟ ପିତୃବ୍ୟଙ୍କ ମୃତ୍ୟୁରେ ରୋଦନ କରୁଥିଲେ । କିନ୍ତୁ ରାବଣକୁ ଶୋକାତୁର ଦେଖି ତ୍ରିଶିରା କହିଲା – ମହାରାଜ, ଆପଣ ବଳବିକ୍ରମରେ ବିଶ୍ୱ ବିଜୟ କରିବାକୁ ସମର୍ଥ । ବ୍ରହ୍ମାଙ୍କର ପ୍ରଦତ୍ତ ସମସ୍ତ ଶକ୍ତି, କବଚ, ଶର ଓ ଶରାସନ ଆପଣଙ୍କର ଅଛି । ଆପଣ ସାମାନ୍ୟ ଲୋକ ପରି ଶୋକ କରୁଛନ୍ତି କାହିଁକି ? ଗରୁଡ଼ ସର୍ପମାନଙ୍କୁ ପରାସ୍ତ କରିବା ପରି ମୁଁ ଯୁଦ୍ଧଯାତ୍ରା କରି ଆପଣଙ୍କର ଶତ୍ରୁମାନଙ୍କୁ ସଂହାର କରିବି ।

ପୁତ୍ରର ସାନ୍ତ୍ୱନାବାଣୀରେ ରାବଣ ଆଶ୍ୱସ୍ତ ହେଲା ।'ସେ ପୁତ୍ରମାନଙ୍କୁ ନାନାବିଧ ଅଳଙ୍କାରରେ ଭୂଷିତ କରି ଆଶୀର୍ବାଦପୂର୍ବକ ଯୁଦ୍ଧକୁ ଯିବାପାଇଁ ବିଦାୟ ଦେଲା । ରାବଣର ପୁତ୍ରମାନେ ଇନ୍ଦ୍ରତୁଲ୍ୟ ଯୋଦ୍ଧା ଥିଲେ । ସେମାନେ ବିଶାଳ ରାକ୍ଷସବାହିନୀ ସହିତ ବାନରସେନାକୁ ଆକ୍ରମଣ କଲେ । ବାନର ଓ ରାକ୍ଷସମାନଙ୍କ ମଧ୍ୟରେ ତୁମୁଳ ଯୁଦ୍ଧ ହେଲା । ନରାନ୍ତକ ଏକ ବେଗଗାମୀ ଅଶ୍ୱପୃଷ୍ଠରେ ବସି ବାନରସେନା ଓ ସୈନ୍ୟମାନଙ୍କୁ ମଥିତ କରିବାକୁ ଲାଗିଲା । ରାକ୍ଷସର ପ୍ରତିରୋଧ କରିବା ପାଇଁ ସୁଗ୍ରୀବ ଅଙ୍ଗଦଙ୍କୁ ଆଦେଶ ଦେଲେ । ଅଙ୍ଗଦ ନରାନ୍ତକର ଅଶ୍ୱକୁ ନିହତ କରି ଏକ ବଜ୍ରମୁଷ୍ଟିରେ ତାର ବକ୍ଷକୁ ଆଘାତ କଲେ । ନରାନ୍ତକ ବଜ୍ରାହତ ପର୍ବତ ପରି ଭୂପତିତ ହେଲା ।

ତ୍ରିଶିରା ଓ ଦେବାନ୍ତକ ଅଙ୍ଗଦଙ୍କ ସହିତ ଯୁଦ୍ଧ କରୁ କରୁ ହନୁମାନଙ୍କ ବଶବର୍ତ୍ତୀ ହେଲେ । ତାଙ୍କର ବଜ୍ରମୁଷ୍ଟିର ପ୍ରହାରରେ ଦେବାନ୍ତକର ମସ୍ତକ ଚୂର୍ଣ୍ଣ ହେଲା । ତ୍ରିଶିରା ଏକ କାଳାନ୍ତକ ଶକ୍ତି ହନୁମାନଙ୍କ ପ୍ରତି ନିକ୍ଷେପ କଲା, ବାନରବୀର ଉପରକୁ ଉଠିଯାଇ

ସେହି ଶକ୍ତିକୁ ଦୁଇଖଣ୍ଡ କରିଦେଲେ ଏବଂ ତ୍ରିଶିରା ହସ୍ତରୁ ଖଡ଼୍‌ଗ ଛଡ଼ାଇ ନେଇ ମୁକୁଟ ସହିତ ତାର ମସ୍ତକକୁ ଛିନ୍ନ କଲେ । ତ୍ରିଶିରା, ଦେବାନ୍ତକ ଓ ନରାନ୍ତକର ନିଧନ ପରେ ରାକ୍ଷସସେନା ଚତୁର୍ଦ୍ଦିଗକୁ ପଳାୟନ କଲେ । ସେମାନଙ୍କୁ ସାହାଯ୍ୟ କରିବାକୁ ଆସି ମହୋଦର ଓ ମହାପାର୍ଶ୍ୱ ବାନର ସେନାପତି ନୀଳ ଓ ଋଷଭଙ୍କ ଦ୍ୱାରା ନିହତ ହେଲେ ।

ଭ୍ରାତାମାନଙ୍କର ନିଧନରେ ବ୍ୟଥିତ ରାବଣପୁତ୍ର ବୀର ଅତିକାୟ ରାକ୍ଷସସୈନ୍ୟମାନଙ୍କୁ ଏକତ୍ର କରି ବାନରସେନାଙ୍କୁ ଆକ୍ରମଣ କଲା । ପର୍ବତତୁଲ୍ୟ ଅତିକାୟ ପ୍ରକାଣ୍ଡ ଧନୁ ଧରି ସହସ୍ର ଅଶ୍ୱଯୋଜିତ ସୁନ୍ଦର ରଥରେ ଆରୋହଣ କଲା ଓ ବିଦ୍ୟୁତ୍‌ଯୁକ୍ତ ମେଘ ପରି ଶୋଭା ପାଇବାକୁ ଲାଗିଲା । ତାକୁ ଦେଖି ରାମ ବିଭୀଷଣଙ୍କୁ ପଚାରିଲେ – ଏ ରାକ୍ଷସ କିଏ ? ବିଭୀଷଣ କହିଲେ, ଏ ହେଉଛି ରାବଣର ପୁତ୍ର ଅତିକାୟ, ଯେ କି ତାର ପିତୃତୁଲ୍ୟ ଯୋଦ୍ଧା । ସେ ସମସ୍ତ ଶସ୍ତ୍ର ଓ ଶାସ୍ତ୍ରରେ ପଣ୍ଡିତ ଓ ବୃଦ୍ଧମାନଙ୍କର ଅନୁଗତ । ସାମ, ଦାନ, ଦଣ୍ଡ, ଭେଦ ଏହି ଚାରିପ୍ରକାର ରାଜନୀତି ପ୍ରୟୋଗ କରିବାରେ ସେ ପ୍ରବୀଣ । ରାବଣ ତାର ବାହୁବଳକୁ ବହୁଭାବରେ ଆଶ୍ରୟ କରିଥାଏ । ବ୍ରହ୍ମାଙ୍କ ବରରେ ସେ ଦେବାସୁରଙ୍କର ଅବଧ୍ୟ । ସେ ଇନ୍ଦ୍ରଙ୍କର ବଜ୍ରକୁ ଓ ବରୁଣଙ୍କର ପାଶକୁ ପ୍ରତିହତ କରିଛି । ଆପଣ ଶୀଘ୍ର ଏହାର ବିନାଶ କରନ୍ତୁ । ନଚେତ୍ ଏହି ରାକ୍ଷସ ବାନର ସୈନ୍ୟମାନଙ୍କୁ ଅଚିରେ ଛିନ୍ନ ଭିନ୍ନ କରିଦେବ ।

ବିଭୀଷଣ କହୁ କହୁ ଅତିକାୟର ନିର୍ଘାତ ଆକ୍ରମଣରେ ବାନରସେନା ଛତ୍ରଭଙ୍ଗ ଦେଲେ । କୁମୁଦ, ଦ୍ୱିବିନ୍ଦ, ମୈନ୍ଦ, ନୀଳ ଓ ଶରଭ ଏ ଛଅଜଣ ବାନର ସେନାପତି ଏକ ସଙ୍ଗରେ ଅତିକାୟର ପ୍ରତିରୋଧ କରିବାକୁ ଯାଇ ପରାସ୍ତ ହେଲେ । ରାମଙ୍କର ସମ୍ମୁଖୀନ ହୋଇ ଅତିକାୟ କହିଲା, ଧନୁର୍ବାଣ ହସ୍ତରେ ମୁଁ ରଥାରୋହଣ କରି ଉପସ୍ଥିତ । ସାମାନ୍ୟ ଲୋକ ସହିତ ମୁଁ ଯୁଦ୍ଧ କରିବାକୁ ଚାହେ ନାହିଁ । ଯାହାର ଶକ୍ତି ଓ ସାମର୍ଥ୍ୟ ଅଛି ସେ ମୋ ସହିତ ଯୁଦ୍ଧ କରୁ ।

ଲକ୍ଷ୍ମଣ କ୍ରୁଦ୍ଧ ହୋଇ ଧନୁଷ୍ଟଙ୍କାର କଲେ । ଅତିକାୟ କହିଲା – ସୌମିତ୍ରି, ତୁ ବାଳକ, ତୁ ଫେରିଯା, ମୋ ପରି କାଳାନ୍ତକ ସହିତ ତୁ କାହିଁକି ଯୁଦ୍ଧ କରିବାକୁ ଇଚ୍ଛା କରୁଛୁ ? ଲକ୍ଷ୍ମଣ ଉତ୍ତର ଦେଲେ – ଦୁରାତ୍ମା, ତୁ ଜଣେ ବାକ୍ୟବୀର । ଯଦି ଶକ୍ତି ଅଛି, ତୋର ବଳବିକ୍ରମ ପ୍ରକାଶ କର । ଅତିକାୟ ଓ ଲକ୍ଷ୍ମଣଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ଦେବ, ଦୈତ୍ୟ ଓ ମହର୍ଷିଗଣ ସେମାନଙ୍କର ଯୁଦ୍ଧ ଦେଖିବାକୁ ଆସିଲେ । ମହାବୀର ଅତିକାୟ ଯେଉଁସବୁ ଅସ୍ତ୍ରଶସ୍ତ୍ର ପ୍ରୟୋଗ କଲା, ଲକ୍ଷ୍ମଣ ତାକୁ ମୁହୂର୍ତ୍ତକ ମଧ୍ୟରେ କାଟିଦେଉଥିଲେ । ଅତିକାୟ ଏକ ସର୍ପାକାର ତୀକ୍ଷ୍ଣ ଶରରେ ଲକ୍ଷ୍ମଣଙ୍କର ବକ୍ଷସ୍ଥଳକୁ ବିଦ୍ଧକଲା । ଲକ୍ଷ୍ମଣ ମୂର୍ଚ୍ଛିତ ହୋଇ ମୁହୂର୍ତ୍ତକ ମଧ୍ୟରେ ସଂଜ୍ଞା ଲାଭକଲେ । ସେ ସୁତୀକ୍ଷ୍ଣ ଶରଦ୍ୱାରା ଅତିକାୟର ଅଶ୍ୱ, ସାରଥି ଓ ଧ୍ୱଜାକୁ କାଟିଦେଲେ । କୌଣସି ଦୈବଅସ୍ତ୍ରରେ ଯେତେବେଳେ ଲକ୍ଷ୍ମଣ ଅତିକାୟକୁ ବିଦ୍ଧ କରିପାରିଲେ ନାହିଁ, ସେତେବେଳେ ବାୟୁଦେବ ଲକ୍ଷ୍ମଣଙ୍କ ପାଖକୁ ଆସି କହିଲେ, ଏହି ରାକ୍ଷସ ବ୍ରହ୍ମାଙ୍କର ଦତ୍ତ ଅଭେଦ୍ୟ କବଚ ଧାରଣ କରିଛି । ବ୍ରହ୍ମାସ୍ତ୍ର ବିନା ଏହାର ମୃତ୍ୟୁ ସମ୍ଭବ ନୁହେଁ । ଲକ୍ଷ୍ମଣ ଧନୁଷ୍ଟଙ୍କାରରେ ପୃଥିବୀ ଓ

ଆକାଶମଣ୍ଡଳକୁ କମ୍ପିତ କରି ରାକ୍ଷସ ପ୍ରତି ବଜ୍ରତୁଲ୍ୟ ବ୍ରହ୍ମାସ୍ତ୍ର ନିକ୍ଷେପ କଲେ । ଅତିକାୟ ପ୍ରେରିତ ସମସ୍ତ ଅସ୍ତ୍ରଶସ୍ତ୍ର ବ୍ରହ୍ମାସ୍ତ୍ରକୁ ବ୍ୟର୍ଥ ଓ ବାରଣ କରିପାରିଲା ନାହିଁ । ସେହି ଅସ୍ତ୍ର ମୁହୂର୍ତ୍ତକ ମଧ୍ୟରେ ତାହାର କିରୀଟଯୁକ୍ତ ମସ୍ତକକୁ ଛିନ୍ନ କରି ଭୂପାତିତ କଲା ।

## ୧୧୪ ।। ଇନ୍ଦ୍ରଜିତ୍‌ର ମାୟାଯୁଦ୍ଧ

ବୀରପୁତ୍ରମାନଙ୍କର ନିଧନରେ ରାବଣ ଶୋକାକୁଳ ହେଲା । ସେ କହିଲା, ଯେଉଁ ବୀରମାନଙ୍କୁ ଦେବାସୁର, ଯକ୍ଷ, ଗନ୍ଧର୍ବ ଓ ପନ୍ନଗ ପରାସ୍ତ କରିପାରି ନ ଥିଲେ, ଆଜି ସେମାନେ ରାମର ଶରରେ ଭୂତଳଶାୟୀ ହୋଇଛନ୍ତି । ଏପରି କୌଣସି ବୀର ନାହିଁ ଯେ କି ସୁଗ୍ରୀବ ବିଭୀଷଣଙ୍କ ସହିତ ରାମଲକ୍ଷ୍ମଣଙ୍କୁ ପରାସ୍ତ କରିପାରିବ । ମୁଁ ଦେଖୁଛି, ଏହି ରାମ ନାରାୟଣ ଛଡ଼ା ଅନ୍ୟ କେହି ନୁହନ୍ତି ।

ରାବଣକୁ ଏପରି ଶୋକାର୍ତ୍ତ ଦେଖି ଇନ୍ଦ୍ରଜିତ୍ କହିଲା, ମୁଁ ଜୀବିତ ଥିବା ପର୍ଯ୍ୟନ୍ତ ଆପଣ ମୋହାବିଷ୍ଟ ହେବା ଉଚିତ ନୁହେଁ । ମୋର ଶରର ବେଗ ସହିବାପାଇଁ ଏ ତ୍ରିଲୋକରେ କୌଣସି ଯୋଦ୍ଧା ନାହାନ୍ତି । ମୁଁ ଦୈବ ଓ ପୁରୁଷକାର ଉପରେ ନିର୍ଭର କରୁଛି । ମୋର ଅବ୍ୟର୍ଥ ଶରରେ ଆଜି ମୁଁ ରାମଲକ୍ଷ୍ମଣଙ୍କୁ ନିହତ କରିବି ।

ଇନ୍ଦ୍ରଜିତ୍ ଗର୍ଦ୍ଦଭଯୋଚିତ ରଥ ଆରୋହଣ କରି ଯୁଦ୍ଧଯାତ୍ରା କଲା । ତାହାର ଅନୁଚରମାନେ ହସ୍ତୀ, ଅଶ୍ୱ, ବ୍ୟାଘ୍ର, ବୃଶ୍ଚିକ, ମାର୍ଜାର, ଉଷ୍ଟ୍ର, ସର୍ପ, ଶୂକର, ସିଂହ, ଶୃଗାଳ, କାକ, ହଂସ ଓ ମୟୂର ପୃଷ୍ଠରେ ଆରୋହଣ କରି ପ୍ରାସ, ମୁଦ୍‌ଗର, ପରଶୁ, ଗଦା ଓ ପରିଘମାନ ଧାରଣ କରି ଅଗ୍ରସର ହେଲେ । ଶଙ୍ଖ ଓ ଭେରୀ ନାଦରେ ଦିଗ୍‌ବିଦିଗ ପୂର୍ଣ୍ଣ ହେଲା । ଇନ୍ଦ୍ରଜିତ ଯୁଦ୍ଧଭୂମିରେ ରଥର ଚତୁର୍ଦ୍ଦିଗରେ ରାକ୍ଷସମାନଙ୍କୁ ଅବସ୍ଥାପିତ କରି ଅଗ୍ନିଙ୍କର ପ୍ରୀତିପାଇଁ ହୋମ ଆରମ୍ଭ କଲା । ମନ୍ତ୍ରୋଚ୍ଚାରଣ ପୂର୍ବକ ମାଲ୍ୟ, ଗନ୍ଧ, ଲାଜା ଓ ହବି ଅଗ୍ନିରେ ଆହୁତି ଦେଇ ଶସ୍ତ୍ର ଓ ଧନୁର ପୂଜା କରାଇଲା । ଏକ କୃଷ୍ଣବର୍ଣ୍ଣ ଛାଗର ଗଳଦେଶକୁ ଧାରଣ କରି ତାକୁ ଅଗ୍ନିରେ ଆହୁତି ଦେଲା । ଧୂମହୀନ ଅଗ୍ନି ଶିଖା ବିସ୍ତାର କରି ପ୍ରଜ୍ୱଳିତ ହେବାକୁ ଲାଗିଲା ଓ ଅଗ୍ନିରେ ବହୁ ବିଜୟସୂଚକ ଚିହ୍ନମାନ ଦେଖାଗଲା । ତପ୍ତକାଞ୍ଚନବର୍ଣ୍ଣ ଅଗ୍ନିରେ ପୂର୍ଣ୍ଣାହୁତି ଦେଇ ବ୍ରହ୍ମାଙ୍କ ପ୍ରଦତ୍ତ ବ୍ରହ୍ମାସ୍ତ୍ର ଦ୍ୱାରା ଧନୁ ଓ ରଥକୁ ଅଭିମନ୍ତ୍ରିତ କରି ସେ ମନ୍ତ୍ରଦ୍ୱାରା ଦେବତାମାନଙ୍କୁ ଆହ୍ୱାନ କଲା । ତା'ପରେ ଧନୁ, ଅସି, ଶୂଳ ଓ ଅଶ୍ୱ, ରଥ ଓ ସାରଥିଙ୍କ ସହିତ ଆକାଶରେ ଅନ୍ତର୍ହିତ ହୋଇଗଲା ।

ରାକ୍ଷସମାନେ ବାନରବଳ ଉପରେ ଆକ୍ରମଣ କଲେ । ଇନ୍ଦ୍ରଜିତ୍ ଆକାଶରେ ଅଦୃଶ୍ୟ ରହି ବାନରବୀରମାନଙ୍କୁ ଶରାଘାତ କରିବାକୁ ଲାଗିଲା । ଗନ୍ଧମାଦନ, ନଳ, ମୈନ୍ଦ, ଜାମ୍ବବାନ, ସୁଗ୍ରୀବ, ଋଷଭ, ଅଙ୍ଗଦ, ହନୁମାନ, ଦ୍ୱିବିନ୍ଦ, ସୁଷେଣ, ଗଜ ଓ ଗବାକ୍ଷ ଆଦିଙ୍କୁ ସେ ଶରାଘାତରେ ମୃତତୁଲ୍ୟ କରି ଧରାତଳଶାୟୀ କଲା । ସମଗ୍ର ବାନରସେନା ରାକ୍ଷସର ମାୟାରେ ମୋହିତ ହୋଇ ଶରାଘାତରେ ଭୂତଳଶାୟୀ ହେଲେ । ସେନାପତିମାନଙ୍କ ସମେତ ବାନରସେନାଙ୍କୁ ଛିନ୍ନ ଭିନ୍ନ କରି ଶରବୃଷ୍ଟି ଦ୍ୱାରା ସେ ରାମ

ଲକ୍ଷ୍ମଣଙ୍କୁ ଆଚ୍ଛନ୍ନ କଲା । ରାମ ଲକ୍ଷ୍ମଣଙ୍କୁ କହିଲେ – ଇନ୍ଦ୍ରଜିତ୍ ମାୟାବଳରେ ଅଦୃଶ୍ୟ ହୋଇ ବ୍ରହ୍ମାସ୍ତ୍ର ପ୍ରୟୋଗ କରିଛି । ସ୍ୱୟଂଭୂ ହିଁ ଏହାର ଅସ୍ତ୍ରରୂପେ କାର୍ଯ୍ୟ କରୁଛନ୍ତି । ବର୍ତ୍ତମାନ ଏହା ବିରୋଧରେ ଯୁଦ୍ଧ କରି ଲାଭ ନାହିଁ । ବରଂ ଶରବିଦ୍ଧ ଭାବରେ ଆମେମାନେ ଧରାଶାୟୀ ହୋଇ ସଂଜ୍ଞାହୀନ ହେବା ପରି ପଡ଼ି ରହିବା । ଆମକୁ ଏପରି ଅବସ୍ଥାରେ ଦେଖି ଇନ୍ଦ୍ରଜିତ୍ ନିଶ୍ଚୟ ବିଜୟଗର୍ବରେ ଲଙ୍କାକୁ ଫେରିଯିବ ।

ରାମଲକ୍ଷ୍ମଣ ଧରାଶାୟୀ ହେବା ପରେ ଠିକ୍ ତାହାହିଁ ହେଲା । ଇନ୍ଦ୍ରଜିତ୍ ବିଜୟ ଗର୍ବରେ ରାବଣ ରକ୍ଷିତ ଲଙ୍କାପୁରୀରେ ପ୍ରବେଶ କଲା ।

ରାମଲକ୍ଷ୍ମଣ ମୋହଗ୍ରସ୍ତ । ସୁଗ୍ରୀବ, ଅଙ୍ଗଦ, ନୀଳ ଓ ଜାମ୍ବବାନ୍ ଉତ୍ଥାନ ଶକ୍ତି ରହିତ । କେବଳ ବିଭୀଷଣ ବାନରବୀରମାନଙ୍କୁ ଆଶ୍ୱାସନା ଦେଇ କହିଲେ, ବର୍ତ୍ତମାନ ଭୟ ବା ବିଷାଦର ସମୟ ନୁହେଁ । ସ୍ୱୟଂଭୂ ବ୍ରହ୍ମାଙ୍କର ସମ୍ମାନ ରକ୍ଷାପାଇଁ ରାମଲକ୍ଷ୍ମଣ ଏପରି ନିଶ୍ଚେଷ୍ଟ ଭାବରେ ପଡ଼ି ରହିଛନ୍ତି, ସେ ଦୁହିଁଙ୍କର କିଛି ହେବ ନାହିଁ ।

ହନୁମାନ କହିଲେ – ବିଭୀଷଣ, ଇନ୍ଦ୍ରଜିତ୍‌ର ବ୍ରହ୍ମାସ୍ତ୍ରରେ ଆମର ସମସ୍ତ ସୈନ୍ୟ ପ୍ରାୟ ନିହତ ହୋଇଛନ୍ତି । ଯେଉଁମାନେ ଜୀବିତ ଅଛନ୍ତି, ସେମାନଙ୍କୁ ଆଶ୍ୱସ୍ତ କରିବା ଆମର କର୍ତ୍ତବ୍ୟ । ସେମାନେ ମଶାଲ ହାତରେ ଧରି ରଣଭୂମିରେ ବୁଲି ବୁଲି କାହାର କ'ଣ ହୋଇଛି, ଦେଖିବାକୁ ଲାଗିଲେ । ମୃତପ୍ରାୟ ବାନରସେନାପତିମାନଙ୍କ ମଧ୍ୟରେ ବୃଦ୍ଧ ଜାମ୍ବବାନଙ୍କୁ ସେମାନେ ଖୋଜି ବାହାର କଲେ । ବିଭୀଷଣ ତାଙ୍କୁ ସମ୍ବୋଧନ କରିବାରୁ ସେ ଅତି କଷ୍ଟରେ କହିଲେ, ମୁଁ ଆଖି ଖୋଲି ପାରୁ ନାହିଁ । ତୁମକୁ ଦେଖି ପାରୁ ନାହିଁ । ପବନପୁତ୍ର ଆଞ୍ଜନେୟ ଜୀବିତ ଅଛନ୍ତି ତ ?

ବିଭୀଷଣ ପଚାରିଲେ – ଆର୍ଯ୍ୟ, ଆପଣ ରାମଲକ୍ଷ୍ମଣଙ୍କ କଥା ନ ପଚାରି ହନୁମାନଙ୍କ କଥା କାହିଁକି ପଚାରିଲେ ? ଜାମ୍ବବାନ୍ ଉତ୍ତର ଦେଲେ – ରାକ୍ଷସରାଜ, ହନୁମାନ ଜୀବିତ ଥିଲେ ଆମେମାନେ ସମସ୍ତେ ଜୀବିତ ବୋଲି ଧରିନେବାକୁ ହେବ । ତାଙ୍କର ଯଦି ମୃତ୍ୟୁ ହୋଇଥାଏ, ତା'ହେଲେ ଆମମାନଙ୍କର ମୃତ୍ୟୁ ସୁନିଶ୍ଚିତ । ପବନତୁଲ୍ୟ ବେଗଗାମୀ ଓ ଅଗ୍ନିତୁଲ୍ୟ ତେଜୀୟାନ୍ ହନୁମାନ କେବଳ ଆମର ଜୀବନ ରକ୍ଷା କରିପାରନ୍ତି ।

ହନୁମାନ ପାଦସ୍ପର୍ଶ କରି ଜାମ୍ବବାନଙ୍କୁ ଅଭିବାଦନ କଲେ । ଜାମ୍ବବାନ୍ କହିଲେ, ଅରିନ୍ଦମ, ତୁମେ ଶୀଘ୍ର ସମୁଦ୍ର ପାରହୋଇ ହିମାଳୟକୁ ଯାତ୍ରା କର । ସେଠାରେ କାଞ୍ଚନମୟ ଅତ୍ୟୁଚ୍ଚ ଋଷଭ ପର୍ବତ ଓ କୈଳାସଶିଖର ଦେଖିବାକୁ ପାଇବ । ଏହି ଦୁଇ ପର୍ବତ ମଧ୍ୟରେ ଏକ ଅତୁଳପ୍ରଭାନ୍ୱିତ ଔଷଧଯୁକ୍ତ ପର୍ବତ ଅଛି । ସେହି ପର୍ବତର ଶିଖର ଦଶଦିଗକୁ ଆଲୋକିତ କରି ମୃତସଂଜୀବନୀ, ବିଶଲ୍ୟକରଣୀ ଆଦି ଔଷଧିବୃକ୍ଷ ଧାରଣ କରିଛି । ତୁମେ ଶୀଘ୍ର ସେ ସବୁ ଔଷଧିସଂଗ୍ରହ କରି ଏଠାକୁ ଫେରିଆସ ଓ ବାନରମାନଙ୍କୁ ଜୀବନ୍ଦାନ ଦିଅ । ହନୁମାନ ତ୍ରିକୂଟ ଶିଖର ଆରୋହଣ କରି ସମୁଦ୍ରକୁ ପ୍ରଣାମ କଲେ ଓ ପବନବେଗରେ ଲମ୍ଫ ଦେଇ ସମୁଦ୍ର ପାର ହୋଇଗଲେ । ତାପରେ ବିଷ୍ଣୁଙ୍କର କରାଙ୍ଗୁଳିଚ୍ୟୁତ ଚକ୍ରପରି ତୀବ୍ର ବେଗରେ ଯାଇ ହିମାଳୟ ପର୍ବତରେ ଉପସ୍ଥିତ ହେଲେ । ସେ ଔଷଧିପର୍ବତକୁ ନିରୂପଣ କରି ଜାମ୍ବବାନ ଯେଉଁ ଔଷଧ ଆଣିବାକୁ କହିଥିଲେ, ତାହା

ଖୋଜିବାକୁ ଲାଗିଲେ । କିନ୍ତୁ ଔଷଧିବୃକ୍ଷମାନ ତାଙ୍କୁ ଦେଖି ହଠାତ୍ ଅଦୃଶ୍ୟ ହୋଇଗଲେ । ବୀର ହନୁମାନ କ୍ରୁଦ୍ଧ ହୋଇ ପର୍ବତକୁ କହିଲେ, ରାମଙ୍କ କାର୍ଯ୍ୟରେ ଏହାହିଁ କ'ଣ ତୁମର ସହଯୋଗ ? ତୁମକୁ ଶିକ୍ଷାଦେବା ପାଇଁ ବର୍ତ୍ତମାନ ମୁଁ କ'ଣ କରୁଚି, ଦେଖ । ପର୍ବତଶୃଙ୍ଗକୁ ଉତ୍ପାଟନ କରି ସେ ମହାବେଗରେ ଫେରିଆସିଲେ । ସେ ଯୁଦ୍ଧଭୂମିରେ ଅବତରଣ କରିବାମାତ୍ରେ ଔଷଧିର ଗନ୍ଧକୁ ଆଘ୍ରାଣ କରି ବାନରମାନେ ସୁସ୍ଥ ଓ ନୀରୋଗ ହୋଇ ଉଠିବସିଲେ । ନିହତ ବାନରମାନେ ପୁନର୍ଜୀବିତ ହେଲେ । ନିହତ ରାକ୍ଷସମାନଙ୍କୁ ରାବଣ ସମୁଦ୍ରରେ ଫିଙ୍ଗିଦେଇଥିବା ଯୋଗୁଁ ରାକ୍ଷସମାନେ ପୁନର୍ଜୀବନ ଲାଭ କରିପାରିଲେ ନାହିଁ ।

ସୁଗ୍ରୀବ ହନୁମାନଙ୍କୁ କହିଲେ, କୁମ୍ଭକର୍ଣ୍ଣ ନିହତ ଓ ରାବଣର ବହୁ ସେନାପତି ଓ ପୁତ୍ର ବିନଷ୍ଟ ହୋଇଛନ୍ତି । ବର୍ତ୍ତମାନ ଲଙ୍କାକୁ ରକ୍ଷା କରିବାପାଇଁ କେହି ନାହାନ୍ତି । ତେଣୁ ବାନରମାନେ ନିଆଁ ହୁଳା ଧରି ଲଙ୍କାରେ ପଶି ଲଙ୍କାକୁ ଜଳାଇ ଦିଅନ୍ତୁ ।

ସୂର୍ଯ୍ୟାସ୍ତ ପରେ ବାନରମାନେ ନିଆଁହୁଳା ଧରି ଦ୍ୱାରରକ୍ଷୀ ରାକ୍ଷସମାନଙ୍କୁ ଡରାଇଦେଇ ଲଙ୍କାରେ ପ୍ରବେଶ କଲେ । ସେମାନେ ଆନନ୍ଦରେ ଲଙ୍କାର ତୋରଣ, ପ୍ରାସାଦ ଓ ଅଟ୍ଟାଳିକାମାନଙ୍କରେ ଅଗ୍ନିସଂଯୋଗ କରିବାକୁ ଲାଗିଲେ । ଅଳ୍ପକାଳ ମଧ୍ୟରେ ଅଗ୍ନି ସମଗ୍ର ଲଙ୍କାକୁ ବ୍ୟାପିଗଲା । ଆକସ୍ମିକ ଅଗ୍ନିକାଣ୍ଡରେ ଜୀବନ ରକ୍ଷା କରିବାପାଇଁ ରାକ୍ଷସମାନେ ସ୍ତ୍ରୀ ପୁତ୍ରଙ୍କ ସହିତ ଘର ଛାଡ଼ି ପଳାଇବାକୁ ଲାଗିଲେ । ଅଳ୍ପ ସମୟ ମଧ୍ୟରେ ଐଶ୍ୱର୍ଯ୍ୟଶାଳିନୀ ଲଙ୍କାପୁରୀ ଶ୍ରୀହୀନ ହୋଇଗଲା । ରାମ ଲକ୍ଷ୍ମଣଙ୍କର ଧନୁର ଟଙ୍କାର, ବାନରମାନଙ୍କର ତୁମୁଳ କୋଳାହଳ ଓ ରାକ୍ଷସମାନଙ୍କର ଆର୍ତ୍ତନାଦରେ ଚତୁର୍ଦ୍ଦିଗ କମ୍ପିତ ହେଲା । ସେହି ଭୀଷଣ ରାତ୍ରି ରାକ୍ଷସମାନଙ୍କ ପକ୍ଷରେ ଏକ କାଳରାତ୍ରି ହେଲା ।

ନିଆଁହୁଳା ଧରି ବାନରମାନେ ଲଙ୍କାଦ୍ୱାରରେ ଉପସ୍ଥିତ ହେବାର ଦେଖି କ୍ରୁଦ୍ଧ ରାବଣ କୁମ୍ଭକର୍ଣ୍ଣର ପୁତ୍ର କୁମ୍ଭ ଓ ନିକୁମ୍ଭଙ୍କୁ ଯୁଦ୍ଧପାଇଁ ପଠାଇଲା । ସେମାନେ ଯୂପାକ୍ଷ, ବିରୂପାକ୍ଷ, ପ୍ରଜଂଘ ଓ ଅକମ୍ପନ ପ୍ରଭୃତି ବୀରମାନଙ୍କୁ ଅଗ୍ରବର୍ତ୍ତୀ କରି ଯୁଦ୍ଧଯାତ୍ରା କଲେ । ରାକ୍ଷସ ଓ ବାନରଙ୍କ ମଧ୍ୟରେ ଯେଉଁ ତୁମୁଳ ସଂଗ୍ରାମ ହେଲା, ସେଥିରେ କୁମ୍ଭ ସୁଗ୍ରୀବଙ୍କ ଦ୍ୱାରା, ନିକୁମ୍ଭ ହନୁମାନଙ୍କ ଦ୍ୱାରା ନିହତ ହେଲା । ଯୂପାକ୍ଷ ଆଦି ରାକ୍ଷସବୀରମାନେ ବାନର ସେନାପତିମାନଙ୍କର ନିଦାରୁଣ ପ୍ରହାରରେ ପ୍ରାଣବିସର୍ଜନ କଲେ ।

କୁମ୍ଭ ଓ ନିକୁମ୍ଭ ନିହତ ହେବାରୁ ରାବଣ ଖରପୁତ୍ର ମକରାକ୍ଷକୁ ଯୁଦ୍ଧକ୍ଷେତ୍ରକୁ ପ୍ରେରଣ କଲା । ଭୀଷଣାକୃତି ରାକ୍ଷସମାନଙ୍କ ଦ୍ୱାରା ବେଷ୍ଟିତ ହୋଇ ମକରାକ୍ଷ ବାନରସେନାକୁ ପ୍ରଚଣ୍ଡ ବେଗରେ ଆକ୍ରମଣ କଲା । ମକରାକ୍ଷ ଗର୍ଜନ କରି କହିଲା, ମୁଁ ଆଜି ପିତୃହନ୍ତା ରାମ ଓ ଲକ୍ଷ୍ମଣର ବିନାଶ କରି ସେମାନଙ୍କର ରକ୍ତରେ ତର୍ପଣ କରିବି । ସେ ରାମଙ୍କ ପାଖକୁ ଆସି ଗର୍ଜନ କରିବାକୁ ଲାଗିଲା ଓ ଯୁଦ୍ଧ ପାଇଁ ତାଙ୍କୁ ଆହ୍ୱାନ କଲା । ରାମ ହାସ୍ୟ କରି ଶରାଘାତରେ ମକରାକ୍ଷର ଧନୁକୁ ଛେଦନ କରି ଏବଂ ସାରଥି ଓ ଅଶ୍ୱମାନଙ୍କୁ ନିପାତିତ କରି ଏକ ଭୟାନକ ଆଗ୍ନେୟାସ୍ତ୍ରରେ ରାକ୍ଷସର ବକ୍ଷକୁ ବିଦୀର୍ଣ୍ଣ କଲେ । ବଜ୍ରାହତ ପର୍ବତ ପରି ଖରପୁତ୍ର ମକରାକ୍ଷ ରାମଙ୍କର ବାଣରେ ନିହତ ହେଲା ।

ମକରାକ୍ଷ ନିହତ ହୋଇଥିବା ଶୁଣି ରାବଣ କ୍ରୋଧରେ ଦାନ୍ତକୁ କଟମଟ କରି ଇନ୍ଦ୍ରଜିତ୍‌କୁ ଡାକି କହିଲା – ବୀର, ଦୃଶ୍ୟ ବା ଅଦୃଶ୍ୟ ଭାବରେ ଯୁଦ୍ଧ କରି ହେଉ, ତୁ ଶୀଘ୍ର ରାମ ଲକ୍ଷ୍ମଣଙ୍କୁ ନିହତ କର । ମନୁଷ୍ୟ ବୋଲି ଅବଜ୍ଞା କର ନାହିଁ ।

ଇନ୍ଦ୍ରଜିତ୍ ଆହୁତିଦାନ ପୂର୍ବକ ଅଗ୍ନିକୁ ତୃପ୍ତ କରି ସୁବର୍ଣ୍ଣମଣ୍ଡିତ ରଥରେ ଆରୋହଣ କରି ଯୁଦ୍ଧଯାତ୍ରା କଲା । ସେ ଆକାଶରେ ଅଦୃଶ୍ୟ ରହି ରାମ ଲକ୍ଷ୍ମଣଙ୍କ ପ୍ରତି ବହୁ ତୀକ୍ଷ୍ଣ ଶର ପ୍ରୟୋଗ କରିବାକୁ ଲାଗିଲା । ମାୟାବଳରେ ଚତୁର୍ଦ୍ଦିଗ ଅନ୍ଧକାର ହୋଇଗଲା । କେବଳ ଅଦୃଶ୍ୟ ଇନ୍ଦ୍ରଜିତ୍ ବୃଷ୍ଟିଧାରା ପରି ରାମଲକ୍ଷ୍ମଣଙ୍କ ପ୍ରତି ଶର ବର୍ଷଣ କରିବାକୁ ଲାଗିଲା । ରାମଲକ୍ଷ୍ମଣ ତାର ପ୍ରତିକାର କରି ନ ପାରି ଶରବିଦ୍ଧ ହୋଇ ବ୍ୟଥିତ ହେଲେ ।

## ୧୧୫ ।। ମାୟାସୀତା

ଏହି ସମୟରେ ଇନ୍ଦ୍ରଜିତ୍ ମାୟାବଳରେ ତାର ରଥ ମଧ୍ୟରେ ଏକ ମାୟାମୟୀ ସୀତା ସ୍ଥାପନ କଲା । ଇନ୍ଦ୍ରଜିତ୍ ରଥରେ ବସିଥିବା ମଳିନାଙ୍ଗୀ ମୈଥିଳୀଙ୍କୁ ଦେଖି ଅଶ୍ରୁଜଳରେ ହନୁମାନଙ୍କର ବକ୍ଷ ପ୍ଲାବିତ ହେବାକୁ ଲାଗିଲା । ବାନରମାନଙ୍କ ଆଗରେ ଇନ୍ଦ୍ରଜିତ୍ ମାୟାସୀତାଙ୍କର କେଶ ଆକର୍ଷଣ କରି ତାର କୋଷମୁକ୍ତ ଅସିରେ ତାଙ୍କୁ ଆଘାତ କରିବାକୁ ଲାଗିଲା । ମାୟାସୀତା 'ହା ରାମ ହା ରାମ' ବୋଲି ରୋଦନ କରିବାକୁ ଲାଗିଲେ । ହନୁମାନ କଠୋର ବାକ୍ୟରେ କହିଲେ – ପାପିଷ୍ଠ, ସୀତା ରାଜ୍ୟ ଓ ଗୃହତ୍ୟାଗ କରି ତପସ୍ୱିନୀ ଭାବରେ ଦୁଃଖରେ କାଳଯାପନ କରୁଛନ୍ତି । କେଉଁ ଅପରାଧରେ ତୁ ତାଙ୍କୁ ହତ୍ୟା କରିବାକୁ ଯାଉଛୁ ? ସ୍ତ୍ରୀ ବଧର ଉପଯୁକ୍ତ ଦଣ୍ଡ ତୋତେ ଭୋଗିବାକୁ ପଡ଼ିବ ।

ଏହା କହି ସଶସ୍ତ୍ର ବାନରମାନଙ୍କ ସହ ହନୁମାନ ଇନ୍ଦ୍ରଜିତ୍‌କୁ ଆକ୍ରମଣ କଲେ । ଇନ୍ଦ୍ରଜିତ୍ କହିଲା – ହନୁମାନ, ସୁଗ୍ରୀବ, ରାମ ଓ ତୁମେମାନେ ଯାହାପାଇଁ ଲଙ୍କାରେ ଆସି ଯୁଦ୍ଧ କରୁଛ, ସେହି ସୀତାକୁ ମୁଁ ସଂହାର କରିବି । ଏହାର ମୃତ୍ୟୁ ପରେ ତୁମେମାନେ ସମସ୍ତେ ମୋ ଦ୍ୱାରା ନିହତ ହେବ । ଶତ୍ରୁ ମନରେ ପୀଡ଼ା ଦେବାପାଇଁ ଯାହା ଦରକାର, ତାହା ଯୁଦ୍ଧରେ କର୍ତ୍ତବ୍ୟ । ସେହି ଦୃଷ୍ଟିରୁ ସ୍ତ୍ରୀ ହତ୍ୟା ଅପରାଧ ନୁହେଁ । ଏହା କହି ଇନ୍ଦ୍ରଜିତ୍ ସଙ୍ଗେ ସଙ୍ଗେ ରୋଦନ କରୁଥିବା ମାୟାମାୟୀ ସୀତାଙ୍କର ଶିର ଛେଦନ କଲା ।

ଏହି ଦୃଶ୍ୟ ଦେଖି ବାନରମାନେ ଚତୁର୍ଦ୍ଦିଗକୁ ପଳାୟନ କଲେ । ହନୁମାନ କୌଣସିମତେ ସେମାନଙ୍କୁ ଏକତ୍ର କରି କିଛି ସମୟ ଯୁଦ୍ଧ ପରେ ବାନରସେନାକୁ କହିଲେ, ତୁମେମାନେ ଯୁଦ୍ଧରୁ ବିରତ ହୁଅ । ଯେଉଁ ସୀତାଙ୍କ ପାଇଁ ଆମେ ଜୀବନକୁ ପାଣି ଛଡ଼ାଇ ଲଢୁଥିଲେ, ସେ ବର୍ତ୍ତମାନ ନିହତ । ଚାଲ, ରାମ ଓ ସୁଗ୍ରୀବଙ୍କ ପାଖକୁ ଯାଇ ସେମାନଙ୍କର ନିର୍ଦ୍ଦେଶକୁ ଅପେକ୍ଷା କରିବା ।

ହନୁମାନଙ୍କଠାରୁ ସୀତାଙ୍କର ନିଧନ ସମ୍ବାଦ ଶୁଣି ଛିନ୍ନବୃକ୍ଷପରି ରାମ ସଂଜ୍ଞାହୀନ ହୋଇ ପଡ଼ିଗଲେ । ଲକ୍ଷ୍ମଣ ରାମଙ୍କୁ ଆଶ୍ୱାସନା ଦେଇ କହିଲେ – ଆର୍ଯ୍ୟ, ତୁମେ ଧର୍ମଜ୍ଞ, ଜିତେନ୍ଦ୍ରିୟ, କିନ୍ତୁ ଧର୍ମ ତୁମକୁ ଏହି ବିପଦରୁ ରକ୍ଷା କରିପାରିଲା ନାହିଁ । ତୁମେ ରାଜ୍ୟ ଓ

ଅର୍ଥ ତ୍ୟାଗ କରି ଧର୍ମ ରକ୍ଷାପାଇଁ ବନବାସ କଲ । ତୁମର ପ୍ରିୟ ପତ୍ନୀଙ୍କୁ ରାକ୍ଷସ ଅପହରଣ କଲା ଏବଂ ଆଜି ଲଙ୍କାରେ ତୁମକୁ ଏପରି ପରାଭବ ଭୋଗ କରିବାକୁ ପଡ଼ୁଛି । ତେଣୁ ମୁଁ ମନେକରୁଛି, ଧର୍ମ ନିରର୍ଥକ । ଧର୍ମନିଷ୍ଠ ବ୍ୟକ୍ତିମାନଙ୍କର ପୁରୁଷାର୍ଥ ନଷ୍ଟ ହୋଇଯାଏ । ସୀତାଙ୍କର ବିନାଶ ସମ୍ବାଦ ପାଇ ମୋର କ୍ରୋଧ ବଢ଼ିଯାଇଛି । ମୁଁ ତୁମ ନିକଟରେ ପ୍ରତିଜ୍ଞା କରୁଛି, ରଥ, ଗଜ, ଅଶ୍ୱ ସହିତ ଏ ଲଙ୍କାପୁରୀକୁ, ସୀତାହରଣକାରୀ ରାବଣକୁ ନିପାତିତ ନ କରିବାଯାଏ ମୁଁ ଶାନ୍ତିରେ ରହିପାରିବି ନାହିଁ ।

ନୀଳାଞ୍ଜନକାନ୍ତି ବିଭୀଷଣ ଆସି ଦେଖିଲେ ରାମ ଶୋକରେ ଅଧୀର । ବାନରମାନେ ସଜଳନୟନରେ ତାଙ୍କୁ ବେଷ୍ଟନ କରି ବସିଛନ୍ତି ଏବଂ ଭ୍ରାତୃବତ୍ସଳ ଲକ୍ଷ୍ମଣ ତାଙ୍କୁ ଆଶ୍ୱାସନା ଦେଉଛନ୍ତି । ବିଭୀଷଣ ଉଦ୍‌ଗ୍ରୀବ ହୋଇ ପଚାରିଲେ, ଏପରି ଶୋକର କାରଣ କ'ଣ ? ଲକ୍ଷ୍ମଣ ସାଶ୍ରୁନୟନରେ କହିଲେ – ସୌମ୍ୟ, ଇନ୍ଦ୍ରଜିତ୍ ସୀତାଙ୍କର ପ୍ରାଣ ସଂହାର କରିଥିବା ସଂବାଦ ହନୁମାନଙ୍କ ମୁହଁରୁ ଶୁଣି ରାମ ଶୋକରେ କାତର ହୋଇପଡ଼ିଛନ୍ତି । ଲକ୍ଷ୍ମଣଙ୍କ କଥା ଶେଷ ହେବା ପୂର୍ବରୁ ବିଭୀଷଣ ରାମଙ୍କୁ କହିଲେ, ହନୁମାନ ଯାହା କହିଛନ୍ତି ସମୁଦ୍ର ଶୋଷଣ ପରି ତାହା ଏକ ଅସମ୍ଭବ କଥା । ସୀତାଙ୍କ ପ୍ରତି ଦୁରାତ୍ମା ରାବଣର ଅଭିପ୍ରାୟ କ'ଣ ମୁଁ ଜାଣେ । ତେଣୁ ସୀତାଙ୍କୁ ସେ କଦାପି ଆଘାତ କରିବ ନାହିଁ । ମୁଁ ସୀତାଙ୍କୁ ଫେରାଇ ଦେବାପାଇଁ ବାରମ୍ବାର ତାକୁ ଅନୁରୋଧ କରିଛି । କିନ୍ତୁ ସେ ସେଥିରେ କର୍ଣ୍ଣପାତ କରି ନାହିଁ । ସୀତାଙ୍କୁ ବଧ କରିବା ତ ଦୂରର କଥା, ରାବଣ ଛଡ଼ା ସୀତାଙ୍କୁ କେହି ଯେପରି ଦେଖି ନ ପାରନ୍ତି, ତାର ସେ କଠୋର ବ୍ୟବସ୍ଥା କରିଛି । ଏ ହେଉଛି ମାୟାବୀ ଇନ୍ଦ୍ରଜିତ୍‌ର କାର୍ଯ୍ୟ । ସେ ମାୟାମୟୀ ସୀତାଙ୍କର ପ୍ରାଣସଂହାର କରି ବାନରମାନଙ୍କୁ ମୋହିତ କରିଛି । ଆଜି ସେ ନିକୁମ୍ଭିଳା ନାମକ ଯଜ୍ଞମଣ୍ଡପରେ ତାର ଯଜ୍ଞ ଶେଷ କରିବ । ଅଗ୍ନିକୁ ସନ୍ତୁଷ୍ଟ କରି ଯଜ୍ଞକୁ ନିର୍ବିଘ୍ନରେ ଶେଷ କରିପାରିଲେ ଯୁଦ୍ଧରେ ତାକୁ କେହି ଜୟ କରିପାରିବେ ନାହିଁ । ସେ ବାନରମାନଙ୍କୁ ଭ୍ରମରେ ପକାଇ ମୋହଗ୍ରସ୍ତ କରି ଯଜ୍ଞକାର୍ଯ୍ୟ ଶେଷ କରିନେବାକୁ ଚାହେ । ବର୍ତ୍ତମାନ ବିଘ୍ନ ଘଟାଇ ତାର ଯଜ୍ଞ ଭଙ୍ଗ କରିବାକୁ ହେବ । ସେଥିପାଇଁ ସୈନ୍ୟବଳ ଧରି ଲକ୍ଷ୍ମଣ ମୋ ସହିତ ଆସନ୍ତୁ । ଇନ୍ଦ୍ରଜିତ୍‌ର ବିନାଶର ଭାର ଆପଣ ଲକ୍ଷ୍ମଣଙ୍କ ଉପରେ ନ୍ୟସ୍ତ କରନ୍ତୁ । ବ୍ରହ୍ମା ପୂର୍ବେ ଇନ୍ଦ୍ରଜିତ୍‌କୁ ବର ଦେଇ କହିଥିଲେ – ଇନ୍ଦ୍ରଜିତ୍, ଯଦି ତୁ ନିକୁମ୍ଭିଳାରେ ଯଜ୍ଞ କାର୍ଯ୍ୟ ଶେଷ କରି ନ ପାରୁ ଓ ଶତ୍ରୁ ବିଘ୍ନ ଘଟାଇ ତୋର ଯଜ୍ଞ ଭଙ୍ଗ କରେ, ତା'ହେଲେ ତୋର ମୃତ୍ୟୁ ସୁନିଶ୍ଚିତ । ବର୍ତ୍ତମାନ ଲକ୍ଷ୍ମଣଙ୍କ ଶରାଘାତରେ ଯଜ୍ଞଭଙ୍ଗ ଓ ଇନ୍ଦ୍ରଜିତ୍‌ର ବିନାଶ ଅବଶ୍ୟମ୍ଭାବୀ ।

## ୧୧୬ ।। ନିକୁମ୍ଭିଳା ଯଜ୍ଞଭଙ୍ଗ : ଇନ୍ଦ୍ରଜିତ୍ ବଧ

ଲକ୍ଷ୍ମଣ ସୁବର୍ଣ୍ଣର ଧନୁ ଖଡ୍‌ଗ ଓ ତୂଣୀର ଧାରଣ କରି ରାମଚନ୍ଦ୍ରଙ୍କର ପାଦସ୍ପର୍ଶ କରି କହିଲେ, ଆଜି ମୋର ଶରାଘାତରେ ଇନ୍ଦ୍ରଜିତ୍‌ର ଶରୀର ଖଣ୍ଡ ଖଣ୍ଡ ହେବ ।

ବାନରସେନା ଓ ବିଭୀଷଣଙ୍କ ସହିତ ଲକ୍ଷ୍ମଣ ନିକୁମ୍ଭିଲା ଅଭିମୁଖରେ ଯାତ୍ରା କଲେ । ଅଙ୍ଗଦ, ହନୁମାନ ଓ ବିଭୀଷଣ ଲକ୍ଷ୍ମଣଙ୍କର ପାଖେ ପାଖେ ରହିଲେ ।

ଯଜ୍ଞସ୍ଥଳକୁ ରକ୍ଷା କରିବାପାଇଁ ଇନ୍ଦ୍ରଜିତ୍ ରାକ୍ଷସସେନାର ଏକ ବ୍ୟୂହ ରଚନା କରିଥିଲା । ସେହି ବ୍ୟୂହର ନିକଟରେ ପହଞ୍ଚି ବିଭୀଷଣ ଲକ୍ଷ୍ମଣଙ୍କୁ କହିଲେ, ଏହି ସୈନ୍ୟମାନଙ୍କୁ ଛିନ୍ନ ଭିନ୍ନ କରିପାରିଲେ, ତୁମେ ଇନ୍ଦ୍ରଜିତ୍ ପାଖରେ ପହଞ୍ଚିପାରିବ ।

ଲକ୍ଷ୍ମଣ ରାକ୍ଷସସେନାକୁ ପ୍ରଚଣ୍ଡ ଆକ୍ରମଣ କରି ଶରବର୍ଷଣ କରିବାକୁ ଲାଗିଲେ । ବିଶାଳ ବୃକ୍ଷ ଓ ଶିଳାମାନ ଧାରଣ କରି ବାନରମାନେ ପ୍ରହାର କଲେ । ଉଭୟ ସେନାର ସଂଘର୍ଷରେ ଲଙ୍କା କମ୍ପିତ ହେବାକୁ ଲାଗିଲା । ନିଜର ସୈନ୍ୟବଳ ଏହି ଭାବରେ ବିମର୍ଦ୍ଦିତ ଓ ବିନଷ୍ଟ ହେବାର ଦେଖି ଇନ୍ଦ୍ରଜିତ୍ ତାର ଯଜ୍ଞ ସଂପନ୍ନ କରିପାରିଲା ନାହିଁ । ବୃକ୍ଷବେଷ୍ଟିତ ଯଜ୍ଞସ୍ଥଳର ଘନ ଅନ୍ଧକାର ମଧ୍ୟରୁ ବାହାରିଆସି ସେ ସୁସଜ୍ଜିତ ରଥରେ ଆରୋହଣ କଲା । ତାକୁ ଦେଖି ରାକ୍ଷସମାନେ ଯୁଦ୍ଧ କରିବା ପାଇଁ ଉତ୍ସାହିତ ହେଲେ । କିନ୍ତୁ ହନୁମାନ ବିଶାଳ ବୃକ୍ଷ ଧାରଣ କରି କାଳାନ୍ତକ ତୁଲ୍ୟ ରାକ୍ଷସମାନଙ୍କୁ ନିପାତ କରିବାକୁ ଲାଗିଲେ । ହନୁମାନଙ୍କ ଦ୍ୱାରା ରାକ୍ଷସସେନା ଏପରି ବିପନ୍ନ ହେବାର ଦେଖି ରଥାରୂଢ଼ ଇନ୍ଦ୍ରଜିତ୍ ଏକ ସମୟରେ ବହୁ ଅସ୍ତ୍ରଶସ୍ତ୍ର ନିକ୍ଷେପ କରି ହନୁମାନଙ୍କୁ ଆକ୍ରମଣ କଲା । କିନ୍ତୁ ବଜ୍ରପରି ଦୃଢ଼ଶରୀର ମାରୁତି ଇନ୍ଦ୍ରଜିତ୍‌ର ଏହି ଶରବର୍ଷଣ ସହିଯାଇ କହିଲେ, ଯଦି ତୁ ପ୍ରକୃତରେ ଯୋଦ୍ଧା ହୋଇଥାଉ, ତା'ହେଲେ ମୋ ସହିତ ବାହୁଯୁଦ୍ଧ କର । ମୋ ନିକଟରୁ ପ୍ରାଣ ଘେନି ଯାଇପାରିବୁ ନାହିଁ । ଇନ୍ଦ୍ରଜିତ୍ ହନୁମାନଙ୍କୁ କିପରି ସଂହାର କରିବ, ସେଥିପାଇଁ ଧନୁ ଆସ୍ଫାଳନ କରିବାକୁ ଲାଗିଲା । ବିଭୀଷଣ ଲକ୍ଷ୍ମଣଙ୍କୁ କହିଲେ – ଦେଖ, ବାସବଙ୍କୁ ଜୟ କରିଥିବା ରାବଣର ପୁତ୍ର ଇନ୍ଦ୍ରଜିତ୍ ହନୁମାନଙ୍କୁ ବଧ କରିବା ପାଇଁ ଇଚ୍ଛା କରୁଛି । ତୁମେ ବର୍ତ୍ତମାନ ଶତ୍ରୁବିଦାରଣକାରୀ ଏକ ପ୍ରାଣାନ୍ତକ ଶରରେ ଇନ୍ଦ୍ରଜିତ୍‌କୁ ସଂହାର କର ।

ବିଭୀଷଣ ଧନୁର୍ଦ୍ଧର ଲକ୍ଷ୍ମଣଙ୍କୁ ଘେନି ସବେଗରେ ଏକ ମହାବନରେ ପ୍ରବେଶ କଲେ । ସେଠାରେ ନୀଳମେଘତୁଲ୍ୟ ଏକ ଭୟଙ୍କର ବଟବୃକ୍ଷକୁ ଦେଖାଇ କହିଲେ, ଏହିଠାରେ ରାବଣର ପୁତ୍ର ଭୂତମାନଙ୍କୁ ବଳି ଉପହାର ଦେଇସାରିବା ପରେ ଯୁଦ୍ଧକୁ ଯାତ୍ରାକରେ ଏବଂ ଯୁଦ୍ଧରେ ସମସ୍ତଙ୍କର ଅଦୃଶ୍ୟ ହୋଇ ତୀକ୍ଷ୍ଣ ଶରାଘାତରେ ଶତ୍ରୁମାନଙ୍କୁ ବଧ ବା ବନ୍ଧନ କରେ । ବର୍ତ୍ତମାନ ସେହି ବଳବାନ୍ ରାକ୍ଷସ ଏହି ବଟମୂଳକୁ ଆସି ନାହିଁ । ତେଣୁ ସେ ଆଉ ଅଦୃଶ୍ୟ ହୋଇପାରିବ ନାହିଁ । ତୁମେ ତୀକ୍ଷ୍ଣ ଶରରେ ଅଶ୍ୱ ଓ ସାରଥି ସହିତ ଇନ୍ଦ୍ରଜିତ୍‌କୁ ନିହତ କର । ତାହା ଶୁଣି ମିତ୍ରମାନଙ୍କର ଆନନ୍ଦଦାୟକ ସୌମିତ୍ରି ସେଠାରେ ରହି ତାଙ୍କର ବିଚିତ୍ର ଧନୁ ଆସ୍ଫାଳନ କରିବାକୁ ଲାଗିଲେ ।

ଇନ୍ଦ୍ରଜିତ୍ ଧନୁ ଓ କବଚ ଧାରଣପୂର୍ବକ ଏକ ଅଗ୍ନିବର୍ଣ୍ଣ ରଥରେ ଆରୋହଣ କରି କଠୋର ବାକ୍ୟରେ ବିଭୀଷଣଙ୍କୁ କହିଲା – ରାକ୍ଷସ, ଏଠାରେ ତୁମର ଜନ୍ମ ଓ ଏଠାରେ ତୁମେ ବଢ଼ିଛ । ତୁମେ ମୋର ପିତାଙ୍କର ସୋଦର ଏବଂ ମୋର ପିତୃବ୍ୟ । ତୁମେ କିପରି ପୁତ୍ରର ଦ୍ରୋହ ଆଚରଣ କରୁଛ ? ଦୁର୍ମତି, ତୁମର ଜାତି, ଧର୍ମ, କୁଳ, ଜ୍ଞାତି, ସ୍ୱଜନ, ସୁହୃଦ୍ ବୋଲି କେହି ନାହାନ୍ତି ? ତୁମେ ସ୍ୱଜନଙ୍କୁ ଛାଡ଼ି ପରର ଦାସତ୍ୱ ସ୍ୱୀକାର କରିଛ ।

ତୁମର ଏହି ନୀଚବୃତ୍ତି ସର୍ବଥା ଘୃଣ୍ୟ ଓ ନିନ୍ଦନୀୟ । ଗୁଣବାନ୍ ଶତ୍ରୁ ଅପେକ୍ଷା ଗୁଣହୀନ ସ୍ୱଜନ ଶ୍ରେୟସ୍କର । ଯେ ସ୍ୱପକ୍ଷ ଛାଡ଼ି ଶତ୍ରୁପକ୍ଷରେ ଯୋଗ ଦିଏ, ସ୍ୱପକ୍ଷ ଧ୍ୱଂସ ପରେ ଶତ୍ରୁ ମଧ୍ୟ ତାକୁ ବିନାଶ କରେ ।

ଇନ୍ଦ୍ରଜିତ୍‌ର କଠୋର ଭର୍ତ୍ସନା ଶୁଣି ବିଭୀଷଣ କହିଲେ – ରାକ୍ଷସ, ତୁ ମୋର ସ୍ୱଭାବ ଚରିତ୍ର ଜାଣୁ । ମୁଁ କ୍ରୂରକର୍ମା ରାକ୍ଷସବଂଶରେ ଜାତ ହେଲେ ମଧ୍ୟ ସ୍ୱଭାବରେ ନୃଶଂସ ନୁହେଁ । ନିଦାରୁଣ ଅଧର୍ମ କାର୍ଯ୍ୟରେ ମୁଁ କେବେ ରତ ହୁଏ ନାହିଁ । ଯେଉଁ ପାପୀ ବ୍ୟକ୍ତି ଧର୍ମରୁ ଚ୍ୟୁତ ହୁଏ, ହିଂସା, ପରସ୍ୱ ହରଣ, ପରଦାର ଗମନ କରେ, ତାକୁ ହାତରେ ଧରିଥିବା ବିଷଧର ସର୍ପପରି ବା ଜ୍ୱଳନ୍ତ ଗୃହପରି ଶୀଘ୍ର ପରିତ୍ୟାଗ କରିବା ପାଇଁ ପଣ୍ଡିତମାନେ କହିଛନ୍ତି । ଏହି ସବୁ ଦୋଷ ମୋର ଭାଇ ରାବଣର ସମସ୍ତ ଗୁଣକୁ ଘୋଡ଼ାଇ ପକାଇଛି । ସେଥିପାଇଁ ମୋର ପିତୃତୁଲ୍ୟ ଜ୍ୟେଷ୍ଠଭ୍ରାତାକୁ ମୁଁ ପରିତ୍ୟାଗ କରିବା ପାଇଁ ବାଧ୍ୟ ହୋଇଛି । ତୋର ପିତା ଓ ତୋ ପରି ଅଭିମାନୀ ଦୁର୍ବିନୀତ ବାଳକପାଇଁ ଲଙ୍କାପୁରୀ ନାରଖାର ହୋଇଯିବ । ବର୍ତ୍ତମାନ କାଳର ପାଶରେ ଆବଦ୍ଧ ଲକ୍ଷ୍ମଣଙ୍କ ଶରାଘାତରୁ ଅବ୍ୟାହତି ପାଇ ତୁ ଜୀବନ ଘେନି ଫେରିପାରିବୁ ନାହିଁ । ବୀର, ବର୍ତ୍ତମାନ ବୃଥା ବାକ୍ୟ ବ୍ୟୟ ନ କରି ତୋର ସମସ୍ତ ସଞ୍ଚିତ ଶର ପ୍ରୟୋଗ କରି ସାଧ୍ୟମତେ ଯୁଦ୍ଧ କର ।

ରଥାରୋହୀ ଇନ୍ଦ୍ରଜିତ୍ ହନୁମାନଙ୍କ ପୃଷ୍ଠରେ ଆରୋହଣ କରିଥିବା ଲକ୍ଷ୍ମଣଙ୍କୁ ଦେଖି କ୍ରୁଦ୍ଧ ହୋଇ କହିଲା, ଅଗ୍ନିରେ ତୁଳାରାଶି ଜଳିଯିବା ପରି ଆଜି ମୋର ଶରାଘାତରେ ତୁମମାନଙ୍କର ଅବସ୍ଥା ହେବ । ତୁମେ ଦୁଇଭାଇ ପୂର୍ବେ ମୋର ବଜ୍ରତୁଲ୍ୟ ଶରରେ ସଂଜ୍ଞାହୀନ ହୋଇ ପଡ଼ିଥିଲ, ତାହା କଣ ଏତେ ଶୀଘ୍ର ଭୁଲିଗଲଣି ?

ଲକ୍ଷ୍ମଣ କହିଲେ – ଇନ୍ଦ୍ରଜିତ୍, ସେତେବେଳେ ତସ୍କର ପରି ଲୁଚି ରହି ତୁ ଯୁଦ୍ଧ କରୁଥିଲୁ । ସେଥିରେ କୌଣସି ପୁରୁଷକାର ବା ବୀରଧର୍ମ ନ ଥିଲା । ବର୍ତ୍ତମାନ ବୃଥା ଆସ୍ଫାଳନ ନ କରି ନିଜର ପ୍ରକୃତ ବଳ ଥିଲେ ଦେଖାଅ । ଇନ୍ଦ୍ରଜିତ୍ ସର୍ପପରି ଗର୍ଜନକାରୀ ବିଷାକ୍ତ ଶରମାନ ଦ୍ରୁତବେଗରେ ପ୍ରୟୋଗ କରି ଲକ୍ଷ୍ମଣଙ୍କର ଶରୀରକୁ ବିଦ୍ଧ ଓ ଆହତ କଲା । ଲକ୍ଷ୍ମଣ ପ୍ରଦୀପ୍ତ ସର୍ପ ପରି ପାଞ୍ଚଟି ଶରରେ ଇନ୍ଦ୍ରଜିତ୍‌ର ବକ୍ଷବନ୍ଧ କଲେ । ଉଭୟ ବଳବାନ୍, ତେଜସ୍ୱୀ, ସମସ୍ତ ଅସ୍ତ୍ରଶସ୍ତ୍ରରେ ସୁପଣ୍ଡିତ ଥିଲେ । ସେମାନେ ପରସ୍ପରର ନିଧନ ପାଇଁ ଘୋର ଯୁଦ୍ଧରେ ପ୍ରବୃତ୍ତ ହେଲେ । ବହୁସମୟ ଯୁଦ୍ଧପରେ ଇନ୍ଦ୍ରଜିତ୍‌ର ମୁଖ ବିବର୍ଣ୍ଣ ହେବାର ଦେଖି ବିଭୀଷଣ ଲକ୍ଷ୍ମଣଙ୍କୁ କହିଲେ, ବର୍ତ୍ତମାନ ଏହାର ମୃତ୍ୟୁ ସମୟ ଉପସ୍ଥିତ, ତୁମେ ଶୀଘ୍ର ତତ୍ପର ହୋଇ ଯୁଦ୍ଧ କର । ଲକ୍ଷ୍ମଣ ବଜ୍ରତୁଲ୍ୟ ଏକ ତୀକ୍ଷ୍ଣ ଶର ଇନ୍ଦ୍ରଜିତ୍‌କୁ ନିକ୍ଷେପ କଲେ । ବିଷାକ୍ତ ସର୍ପ ପରି ସେହି ଶର ଇନ୍ଦ୍ରଜିତ୍‌କୁ ବିଦ୍ଧକଲା । ମୁହୂର୍ତ୍ତକ ପରେ ସଂଜ୍ଞା ଲାଭକରି ସେ ଲକ୍ଷ୍ମଣଙ୍କ ପ୍ରତି ଶତଶର, ହନୁମାନଙ୍କ ପ୍ରତି ଦଶ ଓ ବିଭୀଷଣଙ୍କ ପ୍ରତି ଅସଂଖ୍ୟ ଶର ପ୍ରୟୋଗ କରି ସେମାନଙ୍କୁ ଆହତ କଲା । ଲକ୍ଷ୍ମଣ ଏଥିରେ ଆଦୌ ବିଚଳିତ ହେଲେ ନାହିଁ । ସେ ଭୀଷଣ ଶରାଘାତରେ ତାର ସ୍ୱର୍ଣ୍ଣବର୍ମକୁ ଛିନ୍ନ କଲେ । ଇନ୍ଦ୍ରଜିତ୍‌ର ସର୍ବାଙ୍ଗରୁ ଶୋଣିତ ପ୍ରବାହିତ ହେବାକୁ ଲାଗିଲା । କ୍ରୁଦ୍ଧ

ଇନ୍ଦ୍ରଜିତ୍‌ର ଶରରେ ଲକ୍ଷ୍ମଣଙ୍କର କବଚ ମଧ୍ୟ ଛିନ୍ନଭିନ୍ନ ହୋଇଗଲା । ଉଭୟ ଉଭୟଙ୍କ ଶରରେ କ୍ଷତବିକ୍ଷତ ହେଲେ ମଧ୍ୟ ଅକ୍ଳାନ୍ତ ଭାବରେ ଯୁଦ୍ଧ କରିବାକୁ ଲାଗିଲେ । ସେମାନେ ଏପରି ଭାବରେ ଯୁଦ୍ଧ କରୁଥିଲେ ଯେ ସେମାନଙ୍କର ହସ୍ତର କ୍ଷିପ୍ରତା, ଧନୁଧାରଣ, ଶରନିକ୍ଷେପ ଓ ଲକ୍ଷ୍ୟଭେଦ କେହି ଦେଖି ପାରୁ ନ ଥିଲେ । ଆକାଶ ଶରାଚ୍ଛନ୍ନ ଓ ଭୂମଣ୍ଡଳ ଅଦୃଶ୍ୟ ହେଲା ।

ଲକ୍ଷ୍ମଣ ଚାରୋଟି ଶରରେ ଇନ୍ଦ୍ରଜିତ୍‌ର ଅଶ୍ୱମାନଙ୍କୁ ଆହତ କରି ଏକ ଭଲ୍ଲାସ୍ତ୍ରରେ ସାରଥିର ଶିରଚ୍ଛେଦନ କଲେ । ଇନ୍ଦ୍ରଜିତ୍ ନିଜେ ରଥର ସାରଥି ହୋଇ ଯୁଦ୍ଧ କଲା, ମାତ୍ର ବାନରମାନଙ୍କ ଦ୍ୱାରା ତାର ଅଶ୍ୱମାନେ ନିହତ ହେବାରୁ ସେ ରଥରୁ ଡେଇଁପଡ଼ି ଲକ୍ଷ୍ମଣଙ୍କୁ ଆକ୍ରମଣ କଲା । ସେ କ୍ଷିପ୍ର ଗତିରେ ଲଙ୍କାକୁ ଧାଇଁଯାଇ ଏକ ବେଗବାନ୍ ଅଶ୍ୱଯୁକ୍ତ ରଥରେ ପୁଣି ଯୁଦ୍ଧଭୂମିରେ ଉପସ୍ଥିତ ହେଲା । ଇନ୍ଦ୍ରଜିତ୍‌ର କାର୍ଯ୍ୟରେ ବିସ୍ମିତ ହୋଇ ଲକ୍ଷ୍ମଣ ତାର ଧନୁକୁ ଛିନ୍ନ କରି ପାଞ୍ଚଟି ଶରରେ ତାର ବକ୍ଷ ବିଦୀର୍ଣ୍ଣ କଲେ ଓ ରାକ୍ଷସର ନିଧନ ପାଇଁ ଏକ ସ୍ୱର୍ଣ୍ଣମଣ୍ଡିତ ଭୟାବହ ଅସ୍ତ୍ର ଧାରଣ କଲେ । ବହୁକାଳରୁ ପୂଜିତ ସେହି ଶ୍ରେଷ୍ଠ ଐନ୍ଦ୍ରାସ୍ତ୍ରକୁ ଧନୁରେ ସଂଯୋଜନ କରି ଲକ୍ଷ୍ମଣ କହିଲେ, ଯଦି ଦାଶରଥି ରାମ ଧର୍ମାତ୍ମା, ସତ୍ୟସନ୍ଧ ଓ ବୀରତ୍ୱରେ ଅପ୍ରତିଦ୍ୱନ୍ଦ୍ୱୀ ହୋଇଥାନ୍ତି, ତା'ହେଲେ ଏହି ଶରରେ ରାବଣର ପୁତ୍ର ନିହତ ହେଉ ।

**ଧର୍ମାତ୍ମା ସତ୍ୟସନ୍ଧଶ୍ଚ ରାମୋ ଦାଶରଥିର୍ଯଦି**
**ପୌରୁଷେ ଚାପ୍ରତିଦ୍ୱନ୍ଦ୍ୱ ସ୍ତଦେନଂ ଜହି ରାବଣିମ୍ ।**

ଲକ୍ଷ୍ମଣଙ୍କର ଧନୁରୁ ମୁକ୍ତ ହୋଇ ସେହି ଶର ସୁନ୍ଦର ଶିରସ୍ତ୍ରାଣ ଉଜ୍ଜ୍ୱଳକୁଣ୍ଡଳଯୁକ୍ତ ଇନ୍ଦ୍ରଜିତ୍‌ର ମସ୍ତକକୁ କର୍ତ୍ତନ କରି ଭୂପାତିତ କଲା । ବିଭୀଷଣଙ୍କ ସମେତ ବାନରମାନେ ହର୍ଷଧ୍ୱନି କଲେ । ଦେବ, ଋଷି, ଗନ୍ଧର୍ବ ଓ ଅପ୍‌ସରାମାନେ ଆନନ୍ଦିତ ହେଲେ । ଭୟଭୀତ ହୋଇ ରାକ୍ଷସମାନେ ଲଙ୍କାକୁ ପଳାୟନ କଲେ । ବାନରବୀରମାନେ 'ଲକ୍ଷ୍ମଣଙ୍କର ଜୟ' 'ଲକ୍ଷ୍ମଣଙ୍କର ଜୟ' ବୋଲି ଧ୍ୱନି କରିବାକୁ ଲାଗିଲେ । ଲକ୍ଷ୍ମଣ ରାମଙ୍କ ନିକଟକୁ ଯାଇ ତାଙ୍କୁ ଅଭିବାଦନ କଲେ ଏବଂ ଇନ୍ଦ୍ରଜିତ୍‌ର ନିଧନ ସମ୍ବାଦ ଜଣାଇଲେ । ରାମ ଆନନ୍ଦରେ କହିଲେ – ଲକ୍ଷ୍ମଣ, ଇନ୍ଦ୍ରଜିତ୍‌କୁ ନିହତ କରି ତୁମେ ଅସାଧ୍ୟ ସାଧନ କରିଛ । ବର୍ତ୍ତମାନ ଯୁଦ୍ଧରେ ଆମର ଜୟ ହେଲା ବୋଲି ମନେକର । ସେ ଲକ୍ଷ୍ମଣଙ୍କୁ କୋଳାଗ୍ରତ କରି ବାରମ୍ବାର ତାଙ୍କର ମସ୍ତକକୁ ଚୁମ୍ବନ କରିବାକୁ ଲାଗିଲେ ।

## ୧୧୭ ।। ରାବଣର ରୁଦ୍ରରୂପ

ମନ୍ତ୍ରୀମାନଙ୍କ ମୁହଁରୁ ଇନ୍ଦ୍ରଜିତ୍‌ର ମୃତ୍ୟୁସମ୍ବାଦ ପାଇ ରାବଣ ମୂର୍ଚ୍ଛାହୋଇ ପଡ଼ିଗଲା । ବହୁ ସମୟ ପରେ ସଂଜ୍ଞା ଲାଭ କରି ସେ ବିଳାପ କରି କହିଲା, ବତ୍ସ, ବୀରଶ୍ରେଷ୍ଠ, ଯୁଦ୍ଧରେ ଇନ୍ଦ୍ରଙ୍କୁ ପରାସ୍ତ କରି ଲକ୍ଷ୍ମଣ ହସ୍ତରେ କିପରି ନିହତ ହେଲୁ ? ଯାହାର କ୍ରୋଧରେ ଯମ

ଶରବିଦ୍ଧ ଓ ମନ୍ଦର ପର୍ବତର ଶୃଙ୍ଗମାନେ ଚୂର୍ଣ୍ଣ ହୋଇପାରନ୍ତି, ସାମାନ୍ୟ ଲକ୍ଷ୍ମଣ କିପରି ତାକୁ ନିହତ କଲା ? ରାଜାର କାର୍ଯ୍ୟରେ ଯୁଦ୍ଧରେ ଜୀବନ ଦେଇ ତୁ ନିଶ୍ଚୟ ସ୍ୱର୍ଗଲାଭ କରିଛୁ । ଯୋଦ୍ଧାମାନଙ୍କ ପାଇଁ ଏହାହିଁ ଏକମାତ୍ର ପନ୍ଥା ବୋଲି ନିର୍ଦ୍ଧାରିତ ହୋଇଛି । ତୋର ମୃତ୍ୟୁରେ ଋଷି, ଦେବତା ଓ ଲୋକପାଳଗଣ ନିଶ୍ଚୟ ଆଜି ସୁଖନିଦ୍ରା ଲାଭ କରିଥିବେ । ଆଜି ଇନ୍ଦ୍ରଜିତହୀନ ହୋଇ ସକାନନ ପୃଥିବୀ ମୋତେ ଶୂନ୍ୟ ଜଣାଯାଉଛି । ଆଜି ତାର ବିରହରେ ଅନ୍ତଃପୁରର ବଧୂମାନଙ୍କର କରୁଣ ବିଳାପ ମୋତେ ଶୁଣିବାକୁ ହେବ । ପରନ୍ତପ, ଯୁବରାଜ ପଦ, ତୋର ପ୍ରିୟ ଲଙ୍କାପୁରୀ, ରାକ୍ଷସ ବନ୍ଧୁଗଣ, ମାତା, ଭାର୍ଯ୍ୟା ଓ ମୋତେ ତ୍ୟାଗ କରି ତୁ କୁଆଡ଼େ ଚାଲିଗଲୁ ? ରାମ ଲକ୍ଷ୍ମଣ ଓ ସୁଗ୍ରୀବ ଏବେ ମଧ୍ୟ ଜୀବିତ ଓ ମୋର ହୃଦୟ ଶଲ୍ୟବିଦ୍ଧ ହୋଇ ରହିଛି । ସେଥିରୁ ତୁ ମୋତେ ମୁକ୍ତ ନ କରି କିପରି ଏକାକୀ ଛାଡ଼ି ଚାଲିଗଲୁ ?

ସ୍ୱଭାବରେ ରାବଣ କୋପନ-ସ୍ୱଭାବ । ପୁଣି ପୁତ୍ରର ମୃତ୍ୟୁ ତାର କ୍ରୋଧ ବଢ଼ାଇ ଦେଲା । କ୍ରୋଧରେ ତାର ଭ୍ରୂକୁଞ୍ଚିତ ହେଲା । ମୁଖରୁ ଧୂମଯୁକ୍ତ ଅଗ୍ନି ନିର୍ଗତ ହେଲା । ଚକ୍ଷୁ ରକ୍ତବର୍ଣ୍ଣ ହୋଇଗଲା । ଜ୍ୱଳନ୍ତ ଦୀପଶିଖାରୁ ତୈଳବିନ୍ଦୁ ପତିତ ହେବାପରି ତାର ରୋଷରକ୍ତ ନୟନରୁ ଅଶ୍ରୁବିନ୍ଦୁ ଝରିବାକୁ ଲାଗିଲା । ରାବଣର ରୁଦ୍ରରୂପ ଦେଖି ରାକ୍ଷସମାନେ ସଂତ୍ରସ୍ତ ହେଲେ । କେହି ତାର ପାଖରେ ରହିବାକୁ ସାହସ କଲେ ନାହିଁ । ରାବଣ ଗର୍ଜନ କରି କହିଲା, ମୁଁ ଦୁଷ୍କର ତପସ୍ୟା ଦ୍ୱାରା ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରିଛି । ତାଙ୍କର ବରରେ ମୁଁ ବଳୀୟାନ ହୋଇ ଦେବାସୁରଙ୍କୁ ଭୟ କରେ ନାହିଁ । ବିପଦକୁ ମୋର ଭ୍ରୂକ୍ଷେପ ନାହିଁ । ବ୍ରହ୍ମା ମୋତେ ଯେଉଁ ଉଜ୍ଜ୍ୱଳ କବଚ ଦେଇଛନ୍ତି, ଇନ୍ଦ୍ର ବଜ୍ର ମଧ୍ୟ ତାକୁ ଛେଦନ କରିପାରିବ ନାହିଁ । ସ୍ୱୟଂଭୂ ମୋତେ ଯେଉଁ ଧନୁଶର ଦେଇଛନ୍ତି, ତାହା ବଳରେ ମୁଁ ଦେବତାମାନଙ୍କୁ ଜୟ କରିଥିଲି । ତୁମେ ଶତ ତୂର୍ଯ୍ୟନାଦ କରି ସେହି କବଚ ଓ ଧନୁଶର ଘେନିଆସ । ଆଜି ତାହାର ସାହାଯ୍ୟରେ ମୁଁ ରାମଲକ୍ଷ୍ମଣଙ୍କୁ ବିନାଶ କରିବି ।

ପର ମୁହୂର୍ତ୍ତରେ ରାବଣ କହିଲା, ମୋର ପୁତ୍ର ଇନ୍ଦ୍ରଜିତ୍ ବାନରମାନଙ୍କୁ ପ୍ରବଞ୍ଚିତ କରି ମାୟାସୀତାକୁ ହତ୍ୟା କରିଥିଲା । ମୁଁ ଆଜି ପ୍ରକୃତ ସୀତାକୁ ହତ୍ୟା କରି ତାହା ସତ୍ୟ ବୋଲି ପ୍ରମାଣିତ କରିବି । ଏହା କହି କୋଷମୁକ୍ତ କୃପାଣକୁ ଉତ୍ତୋଳନ କରି ତାର ମନ୍ତ୍ରୀ ଓ ସ୍ତ୍ରୀମାନଙ୍କ ସହ ରାବଣ ଅଶୋକବନକୁ ଯାତ୍ରା କଲା । ରାକ୍ଷସମାନେ ସିଂହନାଦ କରି ତାକୁ ଉତ୍ସାହିତ କଲେ । ଅସିହସ୍ତ ଜିଘାଂସୁ ରାବଣକୁ ଦେଖି ଶୋକାର୍ତ୍ତା ସୀତା ବିଳାପ କରିବାକୁ ଲାଗିଲେ ।

ସୁପାର୍ଶ୍ୱ ନାମକ ରାବଣର ଜଣେ ବୁଦ୍ଧିମାନ୍ ମର୍ମଜ୍ଞ ଅମାତ୍ୟ ଦଶାନନକୁ ନିବାରଣ କରି କହିଲା— ରାକ୍ଷସେନ୍ଦ୍ର, ଆପଣ କୁବେରଙ୍କର ଅନୁଜ । ବେଦବିଦ୍ୟାରେ ପାରଙ୍ଗମ, ସ୍ୱକର୍ତ୍ତବ୍ୟରତ । ଆପଣ ଧର୍ମକୁ ଉପେକ୍ଷା କରି କ୍ରୋଧପରବଶ ହୋଇ ବୈଦେହୀଙ୍କୁ ହତ୍ୟା କରିବାକୁ କିପରି ଇଚ୍ଛା କରୁଛନ୍ତି ? ନାରୀ କେବେ ସଂଯତ ଗୃହସ୍ଥର ବଧ୍ୟ ହୋଇପାରେ ? ଆପଣଙ୍କର କ୍ରୋଧ ଆପଣ ରାମ ପ୍ରତି ପ୍ରଦର୍ଶନ କରନ୍ତୁ । ରଥାରୋହୀ ହୋଇ ଏହି ଉନ୍ମୁକ୍ତ ଖଡ୍‌ଗରେ ରାମର ବିନାଶ କରନ୍ତୁ ଏବଂ ମୈଥିଳୀକୁ ଲାଭ କରନ୍ତୁ । ରାବଣ ସୁପାର୍ଶ୍ୱର ପରାମର୍ଶ ଗ୍ରହଣ କରି ଗୃହକୁ ଫେରିଗଲା ।

## ୧୧୮ ॥ ଲକ୍ଷ୍ମଣ ଶକ୍ତିଭେଦ

ପୁତ୍ରଶୋକରେ କ୍ରୁଦ୍ଧ ଓ କାତର ରାବଣ ଯୁଦ୍ଧପାଇଁ ପ୍ରସ୍ତୁତ ହେଲା । ପରଦିନ ସୂର୍ଯ୍ୟୋଦୟ ପୂର୍ବରୁ ସେ ବିଶାଳ ରାକ୍ଷସସେନା ସହିତ ଯୁଦ୍ଧଭୂମିରେ ଉପସ୍ଥିତ ହେଲା । ବାନର ଓ ରାକ୍ଷସମାନଙ୍କ ମଧ୍ୟରେ ତୁମୁଳ ଯୁଦ୍ଧରେ ହସ୍ତୀ ରଥ ଅଶ୍ୱ ଓ ପତାକାମାନ ଛିନ୍ନ ଭିନ୍ନ ହୋଇପଡ଼ିଲା । ରାକ୍ଷସସେନା ବାନରସେନା ତୁଳନାରେ ଅଳ୍ପ ଥିବାଯୋଗୁଁ ବହୁ ବାନର ଜଣେ ଜଣେ ରାକ୍ଷସ ଉପରେ ଲମ୍ଫ ଦେଇ ତାକୁ ମାରିବାକୁ ଲାଗିଲେ । ବିଶାଳକାୟ ରାକ୍ଷସମାନେ ଗଦା, ଖଡ୍‌ଗ, ପରଶୁ ଆଦି ସାହାଯ୍ୟରେ ବାନରମାନଙ୍କୁ ନିହତ କଲେ ଓ ବାନରସୈନ୍ୟମାନଙ୍କୁ ପରାଭୂତ କରିବାକୁ ଲାଗିଲେ । ରାମ ବାନରମାନଙ୍କ ଦୁର୍ଦ୍ଦଶା ଦେଖି ପ୍ରବଳ ଶରଜାଳରେ ରାକ୍ଷସମାନଙ୍କୁ ଦଗ୍ଧ କଲେ । ରାମ ଏପରି ଅସଂଖ୍ୟ ଶର ମୁହୂର୍ତ୍ତକ ମଧ୍ୟରେ ପ୍ରୟୋଗ କରୁଥିଲେ ଯେ ରାକ୍ଷସସେନା ସହସ୍ର ମୂର୍ତ୍ତିରେ ରାମ ଯୁଦ୍ଧ କରୁଥିବାର ଅନୁଭବ କଲା । ରାବଣର ତିନିଜଣ ଅମାତ୍ୟ ବିରୂପାକ୍ଷ, ମହୋଦର, ମହାପାର୍ଶ୍ୱ ସୁଗ୍ରୀବ ଓ ଅଙ୍ଗଦଙ୍କ ଦ୍ୱାରା ନିହତ ହେଲେ ।

ଅମାତ୍ୟଗଣ ନିହତ, ଲଙ୍କା ଅବରୁଦ୍ଧ ଓ ବିଶାଳ ସେନା ଛିନ୍ନ ବିଚ୍ଛିନ୍ନ ହେଉଥିବା ଦେଖି ରାବଣ ସାରଥିକୁ କହିଲା, ଆଜି ରାମଲକ୍ଷ୍ମଣଙ୍କୁ ନିହତ କରି ମୁଁ ମୋର ମୃତ ସ୍ୱଜନଙ୍କର ପ୍ରତିଶୋଧ ନେବି । ରାବଣ ଏକ ନିଦାରୁଣ ଆଗ୍ନେୟାସ୍ତ୍ର ପ୍ରୟୋଗ କରି ବାନରମାନଙ୍କୁ ପୋଡ଼ିପକାଇଲା । ବ୍ରହ୍ମାଙ୍କ ନିର୍ମିତ ଏହି ଅସ୍ତ୍ର ଆଗରେ କେହି ଠିଆ ହୋଇପାରିଲେ ନାହିଁ । ବାନରମାନେ ଚତୁର୍ଦ୍ଦିଗକୁ ପଳାୟନ କଲେ । ଲକ୍ଷ୍ମଣଙ୍କ ସହ ରାମ ତାଙ୍କର ବିଶାଳ ଧନୁର ଟଙ୍କାରରେ ଦିଗ୍‌ବିଦିଗ ପ୍ରକମ୍ପିତ କରି ରାବଣର ସମ୍ମୁଖୀନ ହେଲେ । ରାମଙ୍କର ଶରାଘାତରେ ରାକ୍ଷସ ସୈନ୍ୟମାନେ ଶତ ଶତ ସଂଖ୍ୟାରେ ଭୂପତିତ ହେଲେ । ଲକ୍ଷ୍ମଣଙ୍କର ତୀକ୍ଷ୍ଣ ଶର ରାବଣ ଉପରେ ପଡ଼ିବାକୁ ଲାଗିଲା । ସେ ତାକୁ ସହଜରେ ନିବାରଣ କରି ରାମଙ୍କ ସହିତ ଲଢ଼ିବାପାଇଁ ଉପସ୍ଥିତ ହେଲା । ପୁତ୍ରଶୋକରେ କ୍ରୁଦ୍ଧ କାତର ରାବଣ ବିଷଧରତୁଲ୍ୟ ବହୁ ଭୟାନକ ବାଣ ନିକ୍ଷେପ କଲା । ମାତ୍ର ରାମ ତାହା ଭଲ୍ଲାସ୍ତ୍ରମାନଙ୍କ ଦ୍ୱାରା କାଟିପକାଇଲେ । ଉଭୟଙ୍କ ଶରଜାଳରେ ଆକାଶ ଆଚ୍ଛନ୍ନ ହୋଇ ଗବାକ୍ଷ ପରି ଦେଖାଗଲା । ରାବଣର ଶରମାନ ରାମଙ୍କର ଲଲାଟ ବିଦ୍ଧ କରିବାରୁ ସେ କ୍ରୁଦ୍ଧ ହୋଇ ମନ୍ତ୍ରିତ ରୁଦ୍ର ଶରମାନ ନିକ୍ଷେପ କଲେ । କିନ୍ତୁ ଏହି ମହାଭୟାନକ ତେଜୀୟାନ ଶରମାନ ରାବଣର ଅବ୍ୟର୍ଥ କବଚ ଭେଦ କରି ପାରିଲା ନାହିଁ । ରାବଣ ହୃଷ୍ଟ ହୋଇ ଅସୁରାସ୍ତ୍ର ନିକ୍ଷେପ କଲା । ଏଥିରୁ ସିଂହ-ବ୍ୟାଘ୍ର- ଗୃଧ୍ର- ସର୍ପ- କାକମୁଖ ଶରମାନେ ବାହାରିଲେ । କିନ୍ତୁ ଆଗ୍ନେୟାସ୍ତ୍ରମାନଙ୍କ ଦ୍ୱାରା ରାମ ଶୀଘ୍ର ତାଙ୍କୁ କାଟିଦେଲେ ।

ଅସ୍ତ୍ର ନିଷ୍ଫଳ ହେବାର ଦେଖି ରାବଣ ମୟଦାନବ ନିର୍ମିତ ଏକ ଭୟାନକ ଅସ୍ତ୍ରକୁ ରାମଙ୍କ ପ୍ରତି ନିକ୍ଷେପ କଲା । ସେହି ଅସ୍ତ୍ରରୁ ବଜ୍ରତୁଲ୍ୟ ଶୂଳ, ଗଦା, ମୁଷଳ, ମୁଦ୍‌ଗର ଆଦି ବାହାରିବାକୁ ଲାଗିଲା । ରାମ ରୌଦ୍ରାସ୍ତ୍ର ଦ୍ୱାରା ସେ ସବୁକୁ ନଷ୍ଟ କରିଦେଲେ । ରାବଣ ପୁଣି ଏକ ଅସ୍ତ୍ରଦ୍ୱାରା ବହୁ ଦୀପ୍ତିମନ୍ତ ଚକ୍ର ନିକ୍ଷେପ କଲା । କିନ୍ତୁ ତାହା ମଧ୍ୟ ରାମଙ୍କ ବାଣରେ କର୍ତ୍ତିତ ହେଲା । ରାବଣ ଦଶଟି ବାଣରେ ରାମଙ୍କର ମର୍ମସ୍ଥଳକୁ ବିଦ୍ଧକଲା ।

ମାତ୍ର ସେଥିରେ ସେ ବିଚଳିତ ନ ହୋଇ ବହୁ ଶରଦ୍ୱାରା ରାବଣକୁ ଶରବିଦ୍ଧ କଲେ । ଲକ୍ଷ୍ମଣ ଅନୁଭବ କଲେ ଯେ ଯୁଦ୍ଧ ଠିକ୍ ଭାବରେ ଯାଉ ନାହିଁ । ତେଣୁ ସେ ତେଜୀୟାନ ତୀକ୍ଷ୍ଣ ଶରମାନଙ୍କର ଆଘାତରେ ରାବଣର ଧ୍ୱଜାକୁ ଛିନ୍ନ କରି ତାର ସାରଥିର କୁଣ୍ଡଳଶୋଭିତ ମସ୍ତକକୁ କର୍ତ୍ତନ କଲେ । ପାଞ୍ଚଟି ଶରରେ ରାବଣର ଧନୁକୁ କାଟିପକାଇଲେ । ବିଭୀଷଣଙ୍କ ଗଦାଘାତରେ ରାବଣର ଅଶ୍ୱମାନେ ନିହତ ହେଲେ । ରାବଣ ବିଭୀଷଣଙ୍କ ପ୍ରତି ଏକ ଶକ୍ତିଶାଳୀ ବର୍ଚ୍ଛା ନିକ୍ଷେପ କଲା । କିନ୍ତୁ ଲକ୍ଷ୍ମଣ ଅଧାବାଟରେ ତାହା କାଟିପକାଇଲେ । ରାବଣ ଚନ୍ଦନଚର୍ଚ୍ଚିତ କାଞ୍ଚନମଣ୍ଡିତ ମହାଶକ୍ତି ବିଭୀଷଣଙ୍କ ପ୍ରତି ପ୍ରୟୋଗ କଲା । ମିତ୍ରର ପ୍ରାଣହରଣ କରିବାକୁ ଆସୁଥିବା ସେହି ଶକ୍ତିକୁ ଲକ୍ଷ୍ମଣ ଶରଦ୍ୱାରା କାଟି ପକାଇଲେ ।

ରାବଣ ଲକ୍ଷ୍ମଣଙ୍କ ଉପରେ କ୍ରୁଦ୍ଧ ହୋଇ କହିଲା, ତୁ ଏହି ତେଜୀୟାନ ଶକ୍ତିର ମୁହଁରୁ ବିଭୀଷଣକୁ ବଞ୍ଚାଇଦେଲୁ, କିନ୍ତୁ ମୋ ନିକ୍ଷିପ୍ତ ରକ୍ତଚିହ୍ନିତ ମହାଶକ୍ତି ଖୁବ୍ ଶୀଘ୍ର ତୋର ପ୍ରାଣ ହରଣ କରିବ । ମୟଦାନବ ନିର୍ମିତ ସେହି ଶତ୍ରୁଘାତୀ ମହାଶକ୍ତି ପ୍ରବଳବେଗରେ ବଜ୍ରପାତ ପରି ଶବ୍ଦ କରି ଲକ୍ଷ୍ମଣଙ୍କର ବକ୍ଷକୁ ଭେଦ କଲା । ବକ୍ଷ ବିଦୀର୍ଣ୍ଣ ହେବାରୁ ଲକ୍ଷ୍ମଣ ଭୂମି ଉପରେ ପଡ଼ିଗଲେ । ଲକ୍ଷ୍ମଣଙ୍କ ପତନରେ ରାମଙ୍କୁ ବିଷଣ୍ଣ ଓ ବ୍ୟଗ୍ର ଦେଖି ରାବଣ ତାଙ୍କ ପ୍ରତି ଅବିରତ ଗତିରେ ଶରବର୍ଷଣ କରିବାକୁ ଲାଗିଲା । ଲକ୍ଷ୍ମଣଙ୍କ ଶରୀରରୁ ରାମ ସେହି ଶକ୍ତିକୁ ବାହାର କରିଆଣି ଭାଙ୍ଗିପକାଇଲେ । ଲକ୍ଷ୍ମଣଙ୍କୁ ଘେରି ରହି ରକ୍ଷା କରିବାପାଇଁ ସୁଗ୍ରୀବ ଓ ହନୁମାନଙ୍କୁ ଆଦେଶ ଦେଇ ସେ ରାବଣର ସମ୍ମୁଖୀନ ହେଲେ । ତାଙ୍କର ଧନୁଷ୍ଟଙ୍କାର ଓ ଭୟାନକ ଶରାଘାତରେ ରାବଣ ଭୟ ପାଇ ପଳାଇଗଲା ।

ରାବଣର ଶକ୍ତି ପ୍ରହାରରେ ଲକ୍ଷ୍ମଣଙ୍କର ଅଚେତନ ରୁଧିରାକ୍ତ ଶରୀରକୁ ଦେଖି ରାମ ବିଚଳିତ ହୋଇ ବିଳାପ କରି କହିଲେ, ଲକ୍ଷ୍ମଣ ନିହତ ହେଲେ ଏହି ଯୁଦ୍ଧରେ ମୋର ପ୍ରୟୋଜନ ନାହିଁ । ସୀତା ଓ ପ୍ରାଣ ପ୍ରତି ମଧ ମୋର ମମତା ନାହିଁ । ଦେଶ ଦେଶରେ ସ୍ତ୍ରୀ ମିଳିପାରନ୍ତି, ବନ୍ଧୁ ମିଳିପାରନ୍ତି, କିନ୍ତୁ ସହୋଦର ଭାଇ ମିଳିବେ ନାହିଁ । ରାମଙ୍କୁ ଏହିପରି ବିଳାପ କରୁଥିବାର ଦେଖି ବାନରବୀର ସୁଷେଣ ଆଶ୍ୱାସନା ଦେଇ କହିଲେ – ଲକ୍ଷ୍ମଣ ମରି ନାହାନ୍ତି । ତାଙ୍କର ଶରୀର ଓ ମୁଖ ବିବର୍ଣ୍ଣ ଦେଖାଯାଉ ନାହିଁ । କରତଳ ପଦ୍ମପରି ରକ୍ତବର୍ଣ୍ଣ ଓ ଚକ୍ଷୁ ପ୍ରସନ୍ନ ଦେଖାଯାଉଛି । ଏହା କେବେହେଲେ ମୃତ୍ୟୁର ଲକ୍ଷଣ ନୁହେଁ । ସୁଷେଣ ହନୁମାନଙ୍କୁ ଚାହିଁ କହିଲେ, ସୌମ୍ୟ, ଜାମ୍ବବାନ୍ ପୂର୍ବରୁ ତୁମକୁ ଯେଉଁ ଔଷଧି ପର୍ବତ କଥା କହିଥିଲେ, ତୁମେ ସେଠାକୁ ଯାଇ ବିଶଲ୍ୟକରଣୀ, ସଞ୍ଜୀବନୀ, ସବର୍ଣ୍ଣକରଣୀ, ସନ୍ଧାନକରଣୀ, ଏହି ଔଷଧମାନ ଶୀଘ୍ର ନେଇଆସ । ହନୁମାନ ପର୍ବତଶିଖରକୁ ଯାଇ ଔଷଧିମାନଙ୍କୁ ଚିହ୍ନି ନ ପାରି ଚିନ୍ତିତ ହେଲେ । ସେ ଶୀଘ୍ର ସେହି ଶିଖରକୁ ଉତ୍ପାଟନ କରି ଅତି ବେଗରେ ଉଡ଼ିଆସିଲେ । ଶୈଳଶିଖରରୁ ସେହି ଔଷଧମାନ ବାହାର କରି ସୁଷେଣ ଲକ୍ଷ୍ମଣଙ୍କୁ ତାହା ଆଘ୍ରାଣ କରାଇବାରୁ ଲକ୍ଷ୍ମଣ ସୁସ୍ଥ ହୋଇ ଉଠିବସିଲେ । ମରଣ ମୁହଁରୁ ତାଙ୍କୁ ଫେରିଆସିଥିବାର ଦେଖି ବାନରବୀରମାନେ ତୁମୁଳ ହର୍ଷଧ୍ୱନି କଲେ ଏବଂ ସୁଷେଣ ଓ ହନୁମାନଙ୍କର ପ୍ରଶଂସା କରିବାକୁ ଲାଗିଲେ ।

ରାମ ଲକ୍ଷ୍ମଣଙ୍କୁ ଆଲିଙ୍ଗନ କରି କହିଲେ– ସୌମିତ୍ରି, ତୁମେ ବଞ୍ଚି ନ ଥିଲେ ସୀତାଙ୍କଠାରେ ବା ଏ ଯୁଦ୍ଧରେ ମୋର କୌଣସି ପ୍ରୟୋଜନ ନ ଥିଲା । ଲକ୍ଷ୍ମଣ କହିଲେ – ସତ୍ୟପ୍ରତିଜ୍ଞ, ଆପଣ ନିଜର ପରାକ୍ରମ ଦେଖାଇ ଆଜି ହିଁ ରାବଣକୁ ବଧ କରନ୍ତୁ । ସୂର୍ଯ୍ୟ ଅସ୍ତାଚଳକୁ ଯିବା ପୂର୍ବରୁ ଆପଣ ଦୁରାତ୍ମା ରାବଣକୁ ନିହତ କରି ନିଜର ପ୍ରତିଜ୍ଞା ପାଳନ କରନ୍ତୁ ।

## ୧୧୯ ।। ରାବଣର ଅନ୍ତିମ ଯୁଦ୍ଧ

ଏହି ସମୟରେ ରାବଣ ଲଙ୍କାରୁ ଅନ୍ୟ ଏକ ରଥରେ ବସି ଯୁଦ୍ଧଭୂମିରେ ଉପସ୍ଥିତ ହେଲା । ରାବଣ ରଥାରୋହୀ ଓ ରାମ ପଦାତିକ ହୋଇ ଯୁଦ୍ଧ କରୁଥିବାର ଦେଖି ଦେବତା ଓ ଗନ୍ଧର୍ବମାନେ ଭାବିଲେ, ଏହା ଏକ ଅସମାନ ଯୁଦ୍ଧ । ସେମାନେ ସୁବର୍ଣ୍ଣଚିତ୍ରିତ, ବୈଦୂର୍ଯ୍ୟଖଚିତ ଇନ୍ଦ୍ରଙ୍କର ରଥ ରାମଙ୍କ ପାଇଁ ପଠାଇଲେ । ଇନ୍ଦ୍ରଙ୍କ ସାରଥି ମାତଳି ସେହି ରଥ ଘେନିଆସି ରାମଙ୍କୁ କୃତାଞ୍ଜଳି ହୋଇ କହିଲେ, ଆପଣଙ୍କର ବିଜୟପାଇଁ ଇନ୍ଦ୍ର ଏହି ରଥ ପଠାଇଛନ୍ତି । ଏହି ରଥରେ ଇନ୍ଦ୍ରଙ୍କର ପ୍ରଦତ୍ତ ବିଶାଳ ଧନୁ, ଅଗ୍ନିତୁଲ୍ୟ କବଚ, ସୂର୍ଯ୍ୟଙ୍କ ପରି ଦୀପ୍ତିମାନ ଶକ୍ତି ଓ ବାଣମାନ ଅଛି । ଆପଣ ଏହି ରଥରେ ଆରୋହଣ କରି ରାବଣର ବିନାଶ କରନ୍ତୁ । ରାମ ଇନ୍ଦ୍ରପ୍ରଦତ୍ତ ରଥରେ ଆରୋହଣ କରି ରାବଣ ସହିତ ଯୁଦ୍ଧ କଲେ । ରାମ ଓ ରାବଣଙ୍କ ମଧ୍ୟରେ ଏକ ଭୟାନକ ଦ୍ୱୈରଥ ଯୁଦ୍ଧ ଆରମ୍ଭ ହେଲା । ରାବଣ ରାମଙ୍କର ନିଧନ ଉଦ୍ଦେଶ୍ୟରେ ବହୁ ଦୈବାସ୍ତ୍ର ନିକ୍ଷେପ କଲା । କିନ୍ତୁ ରାମ ସେହି ଅସ୍ତ୍ରମାନଙ୍କୁ ଅନ୍ୟ ଦୈବାସ୍ତ୍ରମାନଙ୍କ ଦ୍ୱାରା କାଟି ପକାଇଲେ । ରାବଣ ଏକ ଭୟାନକ ଅସ୍ତ୍ର ଦ୍ୱାରା ଇନ୍ଦ୍ରଙ୍କ ରଥର ସ୍ୱର୍ଣ୍ଣମୟ ଧ୍ୱଜାକୁ କାଟିଦେଲା । ଅଶ୍ୱମାନଙ୍କୁ ଓ ସାରଥି ମାତଳିଙ୍କୁ ଆହତକଲା । ବହୁବାଣରେ ରାମଙ୍କୁ ପୀଡ଼ିତ କରିବାକୁ ଲାଗିଲା । ଦୈତ୍ୟ ଓ ଋଷି, ଗନ୍ଧର୍ବ, ଉରଗ ଓ ବିହଙ୍ଗମାନେ ରାମ ରାବଣଙ୍କର ଏହି ଦ୍ୱୈରଥ ଯୁଦ୍ଧ ଦେଖୁଥିଲେ । ଦାନବମାନେ ରାବଣର ଜୟ, ଦେବତାମାନେ ରାମଙ୍କର ଜୟ କାମନା କରୁଥିଲେ । ରାବଣ ଉତ୍ସାହିତ ହୋଇ ରାମଙ୍କୁ ବଧ କରିବାପାଇଁ ଏକ ଭୟାନକ ଶୂଳ ନିକ୍ଷେପ କଲା । ଇନ୍ଦ୍ର ବଜ୍ରତୁଲ୍ୟ ସେହି ଭୟାନକ ଶୂଳ ପ୍ରଳୟକାଳୀନ ଅଗ୍ନିପରି ମହାବେଗରେ ଆସିବାକୁ ଲାଗିଲା । ରାବଣ ଘୋର ଗର୍ଜନ କରି କହିଲା – ରାମ, ବଜ୍ରତୁଲ୍ୟ କଠୋର ଏହି ଶୂଳ ଯାଇ ଲକ୍ଷ୍ମଣ ସହିତ ତୋର ପ୍ରାଣ ଶୀଘ୍ର ହରଣ କରିବ । ରାମ ସେହି ଭୟଙ୍କର ଶୂଳକୁ ଦେଖି ଆଦୌ ବିଚଳିତ ହେଲେ ନାହିଁ ଏବଂ ବର୍ଷା ଦ୍ୱାରା ପ୍ରଳୟର ଅଗ୍ନି ନିର୍ବାପିତ ହେବାପରି ଇନ୍ଦ୍ରପ୍ରଦତ୍ତ ଶକ୍ତିର ସାହାଯ୍ୟରେ ସେହି ଶୂଳକୁ ଦ୍ୱିଖଣ୍ଡିତ କଲେ । ସେ ରାବଣର ଅଶ୍ୱମାନଙ୍କୁ ଶରବିଦ୍ଧ କରି ତୀକ୍ଷ୍ଣ ଶରାଘାତରେ ରାବଣର ବକ୍ଷକୁ ବିଦୀର୍ଣ୍ଣ କଲେ ଏବଂ ତିନୋଟି ଶରରେ ତାର ଲଲାଟକୁ ବିଦ୍ଧ କଲେ । କ୍ରୁଦ୍ଧ ରାବଣ ଯେତେ ସଂଖ୍ୟାରେ ଶର ନିକ୍ଷେପ କରିବାକୁ ଲାଗିଲା, ରାମ ତାହା କ୍ଷିପ୍ରହସ୍ତରେ କାଟି ଦେଉଥିଲେ । ଏହି ସମୟରେ ରାମ ସୀତାଙ୍କର ଅନାଥ ଅବସ୍ଥା ଚିନ୍ତା କରି କହିଲେ ଦୁର୍ମତି ରାବଣ, ଜନସ୍ଥାନରେ ମୁଁ ନ

ଥିବାବେଳେ ବଳପୂର୍ବକ ତୁ ମୋର ପତ୍ନୀକୁ ନେଇଆସିଛୁ । ଚୋର ପରି ପରଦାର ଅପହରଣ କରି ନିଜକୁ ବୀର ବୋଲି ବୋଲାଉଛୁ । ନିର୍ଲ୍ଲଜ, ଆଜି ମୋର ଶର ଦ୍ୱାରା ତୋର କୁଣ୍ଡଳଶୋଭିତ ଶିର ଶରୀରରୁ ଛିନ୍ନ ହୋଇ ଭୂପତିତ ହେବ ଓ ତୋର ବକ୍ଷ ଉପରେ ବସି ଗୃଧ୍ରମାନେ ରକ୍ତପାନ କରିବେ ।

ରାମଙ୍କର ଶରୀରର ବଳ, ଅସ୍ତ୍ରବଳ, ପରାକ୍ରମ ଓ ମନୋବଳ ଦ୍ୱିଗୁଣିତ ହେଲା । ସେ ଅସଂଖ୍ୟ ଶର ବର୍ଷଣରେ ରାବଣକୁ ଏପରି ନିପୀଡ଼ିତ କଲେ ଯେ, ସେ ବିଚଳିତ ହୋଇ ଆଉ କୌଣସି ଅସ୍ତ୍ର ବା ଶର ପ୍ରୟୋଗ କରିପାରିଲା ନାହିଁ । ରାବଣର ପ୍ରାଣ ସଙ୍କଟ ଦେଖି ସାରଥି ଯୁଦ୍ଧଭୂମିରୁ ରଥକୁ ଘେନି ପଳାଇଲା । ରାବଣ କ୍ରୋଧରେ ରକ୍ତଚକ୍ଷୁ ହୋଇ ସାରଥିକୁ କହିଲା, ଦୁର୍ବୁଦ୍ଧି, ମୋତେ ଅବଜ୍ଞା କରି ମନଇଚ୍ଛା ତୁ କିପରି ମୋର ରଥକୁ ଫେରାଇ ଆଣିଲୁ ? ତୁ କଣ ଭାବିଚୁ ମୁଁ ହୀନବୀର୍ଯ୍ୟ, ଅସମର୍ଥ, ଦୁର୍ବଳ, ପୌରୁଷଶୂନ୍ୟ ହୋଇଗଲି ? ମୋତେ କଣ ନିରସ୍ତ୍ର ଦେଖି ପଳାଇଆସିଲୁ ? ଅନାର୍ଯ୍ୟ, ତୁ ମୋର ଚିରକାଳ ସଞ୍ଚିତ ଯଶ, ବୀର୍ଯ୍ୟ, ତେଜ ଓ ବିଶ୍ୱାସକୁ ନାଶ କଲୁ । ମୋ ପରି ପରାକ୍ରମୀ ଯୋଦ୍ଧାକୁ ତୁ କାପୁରୁଷ କରିଦେଲୁ । ଦୁର୍ମତି, ତୁ ମୋହବଶରୁ ଏହା କରି ନାହୁଁ । ଶତ୍ରୁଠାରୁ ଉତ୍କୋଚ ଗ୍ରହଣ କରି ଏହା କରିଛୁ ବୋଲି ମୋର ବିଶ୍ୱାସ ଜନ୍ମିଛି । ତୋର କାର୍ଯ୍ୟ କୌଣସି ହିତୈଷୀ ବନ୍ଧୁର କାର୍ଯ୍ୟ ନୁହେଁ । ଏହା ଏକ ଶତ୍ରୁର କାର୍ଯ୍ୟ । ଭଲ ଗତି ଅଛି ତ ବର୍ତ୍ତମାନ ଶୀଘ୍ର ମୋର ରଥ ରଣଭୂମିକୁ ଫେରାଇ ନେ ।

ସାରଥି ନମ୍ରଭାବରେ ଉତ୍ତର ଦେଲା – ମହାରାଜ, ମୁଁ ଭୀତ ନୁହେଁ, ମୋହଗ୍ରସ୍ତ ନୁହେଁ, ଶତ୍ରୁଠାରୁ ଉତ୍କୋଚ ନେଇ ନାହିଁ । ମୁଁ ପାଗଳ ନୁହେଁ । ଆପଣଙ୍କ ପ୍ରତି ମୋର ସ୍ନେହର ଅଭାବ ନାହିଁ । ଆପଣଙ୍କର ଉପକାର ମଧ୍ୟ ମୁଁ ଭୁଲି ନାହିଁ । ମୁଁ ଆପଣଙ୍କର ମଙ୍ଗଳ କାମନାରେ ଆପଣଙ୍କର ଯଶରକ୍ଷା କରିବାପାଇଁ ଉଚିତ କାର୍ଯ୍ୟ କରିଛି । ମୁଁ ଦେଖିଲି ରଣରେ ଆପଣ କ୍ଳାନ୍ତ ଶ୍ରାନ୍ତ ହୋଇଛନ୍ତି । ଆପଣଙ୍କ ମୁହଁରେ ପ୍ରସନ୍ନତା ନାହିଁ, ରଥର ଅଶ୍ୱମାନେ ଅତିଶୟ କ୍ଳାନ୍ତ ଓ ଅବସନ୍ନ ହୋଇଛନ୍ତି । ବହୁ ଅମଙ୍ଗଳସୂଚକ ସଙ୍କେତ ମିଳୁଛି । ଏପରି ଅବସ୍ଥାରେ ସାରଥିର ଯାହା କର୍ତ୍ତବ୍ୟ, ତାହା ମୁଁ କରିଛି । ମୁଁ ମନଇଚ୍ଛାରେ ଯୁଦ୍ଧଭୂମି ଛାଡ଼ି ଆସି ନାହିଁ । ଭୃତ୍ୟର ପ୍ରଭୁପ୍ରତି ଥିବା ସ୍ନେହ ଓ ମମତା ଦୃଷ୍ଟିରୁ ମୁଁ ଏହା କରିଛି । ଅରିନ୍ଦମ, ବର୍ତ୍ତମାନ ଆପଣଙ୍କ ଆଜ୍ଞା ଅନୁସାରେ ମୁଁ କାର୍ଯ୍ୟ କରିବି ।

ରାବଣ କହିଲା – ସାରଥି, ରଥକୁ ନେଇ ରାମ ସମ୍ମୁଖରେ ଉପସ୍ଥିତ କର । ଶତ୍ରୁକୁ ନ ମାରି ରାବଣ କେବେ ଯୁଦ୍ଧଭୂମିରୁ ଫେରିବ ନାହିଁ ।

## ୧୨୦ ॥ 'ଆଦିତ୍ୟ ହୃଦୟ ଜପକର'

ଯୁଦ୍ଧକ୍ଷେତ୍ରରେ ରାମଙ୍କୁ ଶାନ୍ତ ଓ ଚିନ୍ତିତ ଦେଖି ଏବଂ ଯୁଦ୍ଧପାଇଁ ରାବଣ ଉପସ୍ଥିତ ହେବା ଦେଖି ଦେବତାଙ୍କ ସହିତ ଯୁଦ୍ଧ ଦେଖିବାକୁ ଆସିଥିବା ଅଗସ୍ତ୍ୟ ଋଷି ରାମଙ୍କ ପାଖକୁ ଆସି

କହିଲେ – ମହାବାହୁ ରାମ, ଏକ ସନାତନ ଓ ଗୋପନୀୟ ବିଷୟ ତୁମକୁ କହୁଛି ଶୁଣ, ଯଦ୍ୱାରା ତୁମେ ଯୁଦ୍ଧରେ ଶତ୍ରୁଙ୍କୁ ଜୟ କରିପାରିବ । ତାହା ହେଉଛି 'ଆଦିତ୍ୟହୃଦୟ ସ୍ତୋତ୍ର' ଏହି ପବିତ୍ର ସ୍ତୋତ୍ର ପାଠକଲେ ସମସ୍ତ ଶତ୍ରୁଙ୍କର ବିନାଶ ହୁଏ । ସକଳ ମଙ୍ଗଳଦାୟକ ଏହି ସର୍ବପାପହାରକ ସ୍ତୋତ୍ର ନିତ୍ୟ ପଠନୀୟ । ଏହାଦ୍ୱାରା ଚିନ୍ତା ଓ ଶୋକ ଦୂର ହୁଏ । ଆୟୁର ବୃଦ୍ଧି ହୁଏ । ଦେବତା ଓ ଅସୁରମାନଙ୍କର ପୂଜ୍ୟ ଅଂଶୁମାଳୀ ଭୁବନଭାସ୍କରଙ୍କୁ ତୁମେ ପୂଜା କର । ସେ ସମସ୍ତ ଦେବତାଙ୍କର ଆତ୍ମା । ତାଙ୍କର କିରଣଜାଳ ଦ୍ୱାରା ସେ ଦେବାସୁର ସମସ୍ତ ଲୋକଙ୍କୁ ରକ୍ଷା କରନ୍ତି । ସେ ସ୍ୱୟଂ ବ୍ରହ୍ମା, ବିଷ୍ଣୁ, ଶିବ, ସ୍କନ୍ଦ, ମହେନ୍ଦ୍ର, କୁବେର, ଯମ, ଚନ୍ଦ୍ର ଏବଂ ବରୁଣ । ସେ ପିତୃଗଣ, ବସୁଗଣ, ମରୁଦ୍‌ଗଣ, ମନୁ, ବାୟୁ, ଅଗ୍ନି, ପ୍ରଜାମାନଙ୍କର ପ୍ରାଣସ୍ୱରୂପ ଓ ଋତୁମାନଙ୍କର କର୍ତ୍ତା । ସେ ନକ୍ଷତ୍ର, ଗ୍ରହ ଓ ତାରାମାନଙ୍କର ଅଧିପତି, ତେଜୀୟାନମାନଙ୍କ ମଧ୍ୟରେ ସବୁଠାରୁ ତେଜସ୍ୱୀ । ସେ ତମୋଘ୍ନ ଓ ଶତ୍ରୁଘ୍ନ । କୃତଘ୍ନମାନଙ୍କର ବିନାଶକାରୀ । ସେ କବି ଓ ବିଶ୍ୱକର୍ମା, ସମସ୍ତ ପ୍ରାଣୀଙ୍କର ସ୍ରଷ୍ଟା, ପାଳନକର୍ତ୍ତା ଓ ନିୟନ୍ତା । କେହି ଯଦି ଘୋର ବିପଦରେ ପଡ଼ିଥାଏ ଭୟଙ୍କର ଅରଣ୍ୟ ଭିତରେ ବା ଭୟଭୀତ ଅବସ୍ଥାରେ ଥାଏ, ସେ ତାଙ୍କର ନାମ କୀର୍ତ୍ତନ କଲେ ଅବସନ୍ନ ହୁଏ ନାହିଁ ।

ଅଗସ୍ତ୍ୟ କହିଲେ – ରାଘବ, ତୁମେ ଏକାଗ୍ରଚିତ୍ତରେ ଦେବଦେବ ସୂର୍ଯ୍ୟଙ୍କୁ ଯୁଦ୍ଧରେ ବିଜୟ ଲାଭପାଇଁ ପୂଜାକର । ଏହି ସୂର୍ଯ୍ୟସ୍ତବକୁ ତିନିଥର ଜପ କଲେ ତୁମେ ନିଶ୍ଚୟ ବିଜୟୀ ହେବ । ହେ ମହାବାହୁ, ଏହି ମୁହୂର୍ତ୍ତରେ ତୁମେ ରାବଣଙ୍କୁ ବଧ କରିବ ।

## ୧୨୧ ॥ ରାବଣର ନିଧନ

ଅଗସ୍ତ୍ୟଙ୍କର ଉପଦେଶ ଶୁଣି ରାମଙ୍କର ଶୋକ ଦୂର ହୋଇଗଲା । ଭକ୍ତିପୂର୍ବକ ସୂର୍ଯ୍ୟଙ୍କୁ ଚାହିଁ ସେ ଆଦିତ୍ୟ ହୃଦୟ ସ୍ତୋତ୍ର ପାଠକଲେ । ସେ ଶୁଚି ମନରେ ଧନୁ ଧାରଣ କରି ରାବଣକୁ ବଧ କରିବାପାଇଁ ପ୍ରସ୍ତୁତ ହେଲେ । ରଥାରୋହୀ ରାବଣ ବେଗରେ ରାମଙ୍କ ଆଡ଼କୁ ଆସୁଥିବାର ଦେଖି ସେ ମାତଳିଙ୍କୁ କହିଲେ, ତୁମେ ଶୀଘ୍ର ରଥ ଚଳାଇ ରାବଣର ସମ୍ମୁଖୀନ ହୁଅ । ଆଜି ମୁଁ ଏକାଗ୍ର ଭାବରେ ଯୁଦ୍ଧ କରି ଏହାର ବିନାଶ ସାଧନ କରିବି । ରାବଣର ସମ୍ମୁଖୀନ ହୋଇ ରାମ ଇନ୍ଦ୍ରଦତ୍ତ ଧନୁକୁ ଉଠାଇଲେ । ଏହି ସମୟରେ ଲଙ୍କାରେ ବହୁ ଅଶୁଭ ସଙ୍କେତ ଦେଖାଗଲା । ରାବଣର ରଥ ଉପରେ ରୁଧିର ବର୍ଷା ହେଲା । ତାର ରଥ ଉପରେ ଗୃଧ୍ରମାନେ ଚକ୍ରାକାରରେ ବୁଲିଲେ । ଦିନ ଥାଉଁ ଥାଉଁ ସନ୍ଧ୍ୟାରାଗ ପରି ଚତୁର୍ଦ୍ଦିଗରେ ମନ୍ଦାରପୁଷ୍ପତୁଲ୍ୟ ରକ୍ତବର୍ଣ୍ଣର ପ୍ରଭା ଛାଇ ହୋଇଗଲା । ଜୋରରେ ଧୂଳି ଉଡ଼ି ଆକାଶ ଅଦୃଶ୍ୟ ହେଲା । ଏହିପରି ଦାରୁଣ ଉତ୍ପାତମାନ ଦେଖି ରାବଣର ସୈନ୍ୟମାନେ ଭୟଭୀତ ହେଲେ ।

ରାମଙ୍କର ବାଣରେ ରାବଣର ରଥଧ୍ୱଜା କଟିଗଲା । ରାବଣ କ୍ରୋଧରେ ରାମଙ୍କ ରଥର ଅଶ୍ୱମାନଙ୍କୁ ଶରବିଦ୍ଧ କଲା । କିନ୍ତୁ ସେଥିରେ ସେମାନେ ବିଚଳିତ ହେଲେ ନାହିଁ ।

ଏହି ଦ୍ୱୈରଥ ଯୁଦ୍ଧରେ ଦେବ, ଗନ୍ଧର୍ବ, ଋଷି ଓ ଅପ୍ସରାମାନେ ରାମ ରାବଣଙ୍କର ଯୁଦ୍ଧର କୌଣସି ତୁଳନୀୟ ଦୃଷ୍ଟାନ୍ତ ପାଇଲେ ନାହିଁ । ଯେପରି ଆକାଶର ଉପମା ହିଁ ଆକାଶ, ସାଗରର ଉପମା ହିଁ ନିଜେ ସାଗର, ସେହିପରି ରାମ ରାବଣ ଯୁଦ୍ଧ ଅନୁପମ ଥିଲା ।

'ଗଗନଂ ଗଗନାକାରଂ ସାଗରଃ ସାଗରୋପମଃ
ରାମ-ରାବଣୟୋର୍ଯୁଦ୍ଧଃ ରାମ-ରାବଣୟୋରିବ ।'

ରାମ କ୍ରୁଦ୍ଧ ହୋଇ କ୍ଷୁରଧାରତୁଲ୍ୟ ଏକ ସର୍ପାକାର ବାଣ ନିକ୍ଷେପ କରି ରାବଣର କୁଣ୍ଡଳଶୋଭିତ ଶିରକୁ କାଟିଦେଲେ । ତତ୍କ୍ଷଣାତ୍ ରାବଣର କାନ୍ଧରୁ ଆଉ ଏକ ମୁଣ୍ଡ ବାହାରି ଆସିଲା । ରାମ ଖୁବ୍ ଶୀଘ୍ର ତାର ଦ୍ୱିତୀୟ ମୁଣ୍ଡକୁ କାଟିଦେଲେ । ତତ୍କ୍ଷଣାତ୍ ତୃତୀୟ ମସ୍ତକ ବାହାରି ଆସିଲା । ଏହିପରି ରାମ ଶହେ ଥର ମୁଣ୍ଡ କାଟି ମଧ୍ୟ ରାବଣକୁ ମାରିପାରିଲେ ନାହିଁ । କାରଣ ଗୋଟିଏ ମୁଣ୍ଡ କଟିଗଲା ପରେ ତାର ଆହୁରି ଏକ ମୁଣ୍ଡ ବାହାରି ଆସୁଥିଲା ।

ରାମ ଏହି ଅଦ୍ଭୁତ ଦୃଶ୍ୟ ଦେଖି ବିସ୍ମିତ ହେଲେ । ସେ ଚିନ୍ତାକଲେ ଯେଉଁ ଶରରେ ମୁଁ ମାରୀଚ ଓ ଦୂଷଣଙ୍କୁ ମାରିଥିଲି, ବିରାଧ ଓ କବନ୍ଧଙ୍କୁ ହତ୍ୟା କରିଥିଲି, ବାଳିବଧ ପୂର୍ବରୁ ସପ୍ତଶାଳ ବୃକ୍ଷକୁ କାଟି ପକାଇଥିଲି, ସେହି ସବୁ ଶର ରାବଣ ପାଖରେ ପହଞ୍ଚି କାହିଁକି ନିସ୍ତେଜ ହୋଇଯାଉଛି ? ସେ ରାବଣର ଛାତିକୁ ବହୁ ତୀକ୍ଷ୍ଣ ଶର ବିନ୍ଧ କରିବାକୁ ଲାଗିଲେ । କିନ୍ତୁ ସେଥିରେ ରାବଣର କିଛି ହେଲା ନାହିଁ । ସେ ରାମଙ୍କ ଉପରକୁ ଗଦା ଓ ମୁଷଳମାନ ପ୍ରହାର କଲା । ଜଣାଗଲା, ଏହି ଯୁଦ୍ଧ ଶେଷ ହେବ ନାହିଁ ଏବଂ ରାମ ଜୟଲାଭ କରିପାରିବେ ନାହିଁ ।

ମାତଳି ରାମଙ୍କୁ କହିଲେ – ପ୍ରଭୁ, ଦେବତାମାନଙ୍କ ଦ୍ୱାରା କଥିତ ରାବଣର ବିନାଶର ଦିନ ଆଜି ଉପସ୍ଥିତ । ଶୀଘ୍ର ବ୍ରହ୍ମାସ୍ତ୍ର ଦ୍ୱାରା ଆପଣ ଏହାକୁ ନିହତ କରନ୍ତୁ । ରାମ ତୂଣୀରରୁ ବ୍ରହ୍ମଶର ବାହାର କଲେ । ବିଷଧର ସର୍ପର ଖରଶ୍ୱାସ ପରି ସେହି ଅସ୍ତ୍ର ଶବ୍ଦ କରୁଥିଲା । ବ୍ରହ୍ମାଙ୍କଠାରୁ ପାଇଥିବା ଏହି ଅସ୍ତ୍ରକୁ ଅଗସ୍ତ୍ୟ ରାମଙ୍କୁ ଦାନ କରିଥିଲେ । ଏହି କାଳାଗ୍ନିତୁଲ୍ୟ ଭୟଙ୍କର ତେଜୀୟାନ ଶରକୁ ରାମ ଧନୁରେ ସଂଯୋଗ କରିବାରୁ ପୃଥିବୀ ପ୍ରକମ୍ପିତ ହେଲା । ରାମ ବାରମ୍ବାର ଧନୁଷ୍ଟଙ୍କାର ପୂର୍ବକ ବ୍ରହ୍ମଶର ନିକ୍ଷେପ କଲେ । ତାହା ପ୍ରବଳ ବେଗରେ ଦୁରନ୍ତ ରାବଣର ବକ୍ଷକୁ ଭେଦ କରି ତାର ପ୍ରାଣ ସଂହାର କଲା । ଶତ୍ରୁରକ୍ତରଞ୍ଜିତ ଶର ନିଜ କାର୍ଯ୍ୟ ଶେଷ କରି ପୁଣି ରାମଙ୍କ ତୂଣୀରରେ ପ୍ରବେଶ କଲା । ରାବଣ ନିହତ ହୋଇ ଭୂପତିତ ହେବାରୁ ରାକ୍ଷସମାନେ ଭୟଭୀତ ହୋଇ ପଳାଇଗଲେ । ବିଜୟୀ ବାନରସେନା ତୁମୁଳ ହର୍ଷଧ୍ୱନି କରିବାକୁ ଲାଗିଲେ । ଆକାଶରୁ ରାମଙ୍କ ରଥ ଉପରେ ପୁଷ୍ପବୃଷ୍ଟି ହେବାକୁ ଲାଗିଲା । ଦେବତା ଓ ଋଷିମାନେ ସାଧୁ ସାଧୁ ବୋଲି କହିଲେ । ପବନ ଶାନ୍ତ, ଆକାଶ ଓ ଦିଗ୍‌ବିଦିଗ ନିର୍ମଳ ଦେଖାଗଲା । ପୃଥିବୀ ଆଉ କମ୍ପିତ ହେଲା ନାହିଁ । ସୁଖକର ବାୟୁ ପ୍ରବାହିତ ହେଲା । ସୁଗ୍ରୀବ ବିଭୀଷଣ ପ୍ରଭୃତି ଏହି ବିଜୟପାଇଁ ରାମଙ୍କୁ ଅଭିନନ୍ଦନ କରି ସେମାନଙ୍କର ହର୍ଷ ଓ ଆନନ୍ଦ ପ୍ରକାଶ କଲେ ।

କିନ୍ତୁ ପରମୁହୂର୍ତ୍ତରେ ନିଜର ନିହତ ଜ୍ୟେଷ୍ଠଭ୍ରାତାକୁ ଦେଖି ବିଭୀଷଣ ବିଳାପ କରିବାକୁ ଲାଗିଲେ । "ନୀତିଜ୍ଞ, ପରାକ୍ରାନ୍ତ, ବିଖ୍ୟାତ ବୀର, ଆଜି ମହାମୂଲ୍ୟ ଶଯ୍ୟା ଛାଡ଼ି ତୁମେ ଭୂତଳ ଶଯ୍ୟାରେ ଶୋଇ ରହିଛ । ତୁମର ଦୀର୍ଘ ବାହୁ ଓ ପ୍ରଭାମୟ ମୁକୁଟ ଭୂଲୁଣ୍ଠିତ । ମୁଁ ତୁମକୁ ଆଗରୁ କହିଥିଲି, କିନ୍ତୁ କାମ ଓ ମୋହର ବଶୀଭୂତ ହୋଇ ତୁମକୁ ମୋ କଥା ରୁଚିକର ହେଲା ନାହିଁ । ତୁମପରି ଶସ୍ତ୍ରଧାରୀ ଓ ଶ୍ରେଷ୍ଠ ବୀରର ମୃତ୍ୟୁଫଳରେ ସୂର୍ଯ୍ୟ ପୃଥିବୀ ଉପରେ ପଡ଼ିଗଲେ, ଚନ୍ଦ୍ରମା ଅନ୍ଧକାରରେ ମଗ୍ନ ହୋଇଗଲେ । ଅଗ୍ନିଙ୍କର ତେଜ ପ୍ରଶମିତ ହେଲା ଓ ସଂସାରରେ ଉଦ୍ୟମ ଓ ଉତ୍ସାହ ଶେଷ ହୋଇଗଲା । ତୁମର ମୃତ୍ୟୁରେ ଧୈର୍ଯ୍ୟ, ସହିଷ୍ଣୁତା, ତପୋବଳ ଓ ଶୌର୍ଯ୍ୟ ଏକ ଦୃଢ଼ମୂଳ ବୃକ୍ଷ ଉପୁଡ଼ିପଡ଼ିବା ପରି ଭୁଶୁଡ଼ିଗଲା । ତୁମେ ଧୂଳିଧୂସରିତ ଦେହରେ ଶୋଇଥିବାବେଳେ ଲଙ୍କାର ଗୌରବ ଧୂଳିସାତ୍ ହୋଇଗଲା ।"

ରାମ ବିଭୀଷଣଙ୍କୁ ସାନ୍ତ୍ୱନା ଦେଇ କହିଲେ, ପ୍ରବଳ ପରାକ୍ରାନ୍ତ ରାବଣ ନିଜର ସମସ୍ତ ଉତ୍ସାହ ଓ ସାମର୍ଥ୍ୟ ଦେଖାଇ ଯୁଦ୍ଧ କରିଛନ୍ତି । ସେ ମୃତ୍ୟୁକୁ ଭୟ କରି ନାହାନ୍ତି । କ୍ଷାତ୍ରଧର୍ମରେ ସ୍ଥିର ରହି ଯୁଦ୍ଧରେ ନିହତ ହୋଇଛନ୍ତି । ସେହି ବୀରୋଚିତ ମରଣ ପାଇଁ ଶୋକ କରାଯାଏ ନାହିଁ । ବୀର ଯୁଦ୍ଧରେ ଶତ୍ରୁକୁ ବଧ କରେ ବା ଶତ୍ରୁଦ୍ୱାରା ନିହତ ହୁଏ । ତେଣୁ ତୁମେ ଶୋକ ତ୍ୟାଗକରି ପରବର୍ତ୍ତୀ କର୍ତ୍ତବ୍ୟ ଚିନ୍ତାକର ।

ଶୋକାତୁର ବିଭୀଷଣ ରାବଣଙ୍କର ଗୁଣ ବାହୁନି କହିଲେ, ମୋର ଏହି ପ୍ରିୟ ଭ୍ରାତା ଇନ୍ଦ୍ର ଓ ଦେବତାମାନଙ୍କ ସହିତ ଯୁଦ୍ଧରେ କେବେ ପରାସ୍ତ ହୋଇ ନ ଥିଲେ । କିନ୍ତୁ ସମୁଦ୍ର ଲହରୀ ବେଳାଭୂମିରେ ବାଧାପାଇ ଯେପରି ଭାଙ୍ଗିଯାଏ, ସେହିପରି ଯୁଦ୍ଧରେ ଆପଣଙ୍କର ସମ୍ମୁଖକୁ ଆସି ତାଙ୍କର ବିନାଶ ହେଲା । ରାଘବ, ସେ ଇଷ୍ଟଦେବ ଓ ଗୁରୁମାନଙ୍କର ଅର୍ଚ୍ଚନା କରିଛନ୍ତି, ଉପଭୋଗ୍ୟ ବସ୍ତୁ ଭୋଗ କରିଛନ୍ତି । ଭୃତ୍ୟମାନଙ୍କୁ ପାଳନ କରିଛନ୍ତି । ମିତ୍ରମାନଙ୍କୁ ଧନ ଦାନ କରିଛନ୍ତି ଓ ଶତ୍ରୁମାନଙ୍କୁ ଶାସନ କରିଛନ୍ତି । ସେ ବେଦଜ୍ଞ, ତପସ୍ୱୀ, କର୍ମବୀର ଥିଲେ । ବର୍ତ୍ତମାନ ଆପଣଙ୍କ ଅନୁମତି ନେଇ ମୁଁ ତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା କରିବାକୁ ଚାହେଁ ।

ରାମ କହିଲେ, ମୃତ୍ୟୁ ପରେ ସମସ୍ତ ଶତ୍ରୁତାର ଶେଷ ହୁଏ । ମୋର ପ୍ରୟୋଜନ ସିଦ୍ଧ ହୋଇଛି । ତୁମେ ତୁମର ଭାଇଙ୍କର ସଂସ୍କାର କର । ସେ ତୁମର ଯେପରି ସ୍ୱଜନ, ମୋର ମଧ୍ୟ ସେହିପରି ସ୍ୱଜନ ବୋଲି ମନେକର ।

ରାବଣ ରାମଙ୍କ ଦ୍ୱାରା ନିହତ ହୋଇଥିବା ଶୁଣି ରାବଣର ସ୍ତ୍ରୀମାନେ ବାଳମୁକୁଳା କରି ଓ କାନ୍ଦି କାନ୍ଦି ଯୁଦ୍ଧଭୂମିକୁ ଆସିଲେ । କବନ୍ଧ ଓ କର୍ଦ୍ଦମପୂର୍ଣ୍ଣ ରଣଭୂମିରେ ସେମାନେ ରାବଣର ଶବକୁ ଦେଖି 'ହା ନାଥ, ହା ଆର୍ଯ୍ୟପୁତ୍ର' ବୋଲି କହି ଉଚ୍ଚସ୍ୱରରେ ବିଳାପ କରିବାକୁ ଲାଗିଲେ । ଛିନ୍ନ ବନଲତା ପରି ଶୋକାର୍ତ୍ତ ଭାବରେ ରାବଣର ମୃତଦେହ ଉପରେ ପଡ଼ିଗଲେ । କେହି ତାର ଗଳା ଧରି ବା କେହି ତାର ଗୋଡ଼ ଧରି କାନ୍ଦିବାକୁ ଲାଗିଲେ । 'ଇନ୍ଦ୍ର ଓ ଯମଙ୍କୁ ଯେ ଭୟଭୀତ କରି ରଖିଥିଲେ, ଦେବାସୁର, ନାଗ, ଗନ୍ଧର୍ବ, ଯାହାଙ୍କୁ ଭୟଭୀତ କରିପାରୁ ନ ଥିଲେ, ସେ କିପରି ଜଣେ ପଦାତିକ ମନୁଷ୍ୟଦ୍ୱାରା ନିହତ

ହେଲେ ? ମଙ୍ଗଳକାମୀ ସାଧୁମାନଙ୍କର କଥା ନ ଶୁଣି, ବିଭୀଷଣଙ୍କ ହିତ ବାକ୍ୟରେ କର୍ଣ୍ଣପାତ ନ କରି ଆଜି ତାଙ୍କର ଏ ଅବସ୍ଥା ଘଟିଲା ଏବଂ ଆମମାନଙ୍କୁ ବୈଧବ୍ୟ ଦଶା ଭୋଗ କରିବାକୁ ପଡ଼ିଲା, ଏହିପରି କହି ସେମାନେ କ୍ରନ୍ଦନ କରିବାକୁ ଲାଗିଲେ ।

ରାବଣର ଜ୍ୟେଷ୍ଠ ଓ ପ୍ରିୟତମା ପତ୍ନୀ ମନ୍ଦୋଦରୀ ଦୁଃଖରେ ବିଳାପ କରି କହିଲେ, କୁବେରଙ୍କର ଅନୁଜ ଓ ଯୋଦ୍ଧା ଭାବରେ ତୁମେ ଜଗତରେ ବିଖ୍ୟାତ । ତୁମେ କ୍ରୁଦ୍ଧ ହେଲେ ଇନ୍ଦ୍ର ମଧ୍ୟ ତୁମ ସମ୍ମୁଖରେ ଠିଆ ହୋଇପାରୁ ନ ଥିଲେ । ଗନ୍ଧର୍ବ, ଚାରଣ ଓ ଋଷିମାନେ ଭୟରେ ପଳାଇ ଯାଉଥିଲେ । ଆଜି ସାମାନ୍ୟ ମନୁଷ୍ୟ ରାମଙ୍କ ଦ୍ୱାରା ତୁମେ ନିହତ ହେଲ । ତ୍ରିଲୋକବିଜୟୀ ରାବଣ ବନଚାରୀ ମନୁଷ୍ୟ ଦ୍ୱାରା ନିହତ ହେଲେ, ଏହା କିପରି ସମ୍ଭବ ହେଲା ? ମୋର ମନେହେଉଛି, ନିଶ୍ଚୟ ରାମ ରୂପରେ ସ୍ୱୟଂ କୃତାନ୍ତ ଏଠାକୁ ଆସିଛନ୍ତି କିମ୍ବା ସନାତନ ପରମାତ୍ମା ଶଙ୍ଖ, ଚକ୍ର, ଗଦାଧାରୀ ସତ୍ୟପରାକ୍ରମ ଭଗବାନ୍ ବିଷ୍ଣୁ ରାମ ରୂପରେ ମନୁଷ୍ୟ ହୋଇ ଅବତୀର୍ଣ୍ଣ ହୋଇଛନ୍ତି । ତା' ନ ହେଲେ ଜନସ୍ଥାନରେ ସେ ଏକାକୀ ଚଉଦହଜାର ରାକ୍ଷସଙ୍କୁ ବଧ କରି ନ ଥା'ନ୍ତେ । ତାଙ୍କର ଦୂତ ହନୁମାନ ଦୁର୍ଭେଦ୍ୟ ଲଙ୍କାପୁରୀରେ ପ୍ରବେଶ କରିପାରି ନ ଥା'ନ୍ତା । ସମୁଦ୍ରରେ ସେତୁ ବନ୍ଧନ ସମ୍ଭବ ହୋଇ ନ ଥା'ନ୍ତା ।

ମନ୍ଦୋଦରୀ ପୁଣି ବିଳାପ କରି କହିଲେ – ରାକ୍ଷସେନ୍ଦ୍ର, ପୂର୍ବେ ଇନ୍ଦ୍ରିୟମାନଙ୍କୁ ଜୟକରି ତୁମେ ତ୍ରିଭୁବନବିଜୟୀ ହୋଇଥିଲ । ଏବେ ଇନ୍ଦ୍ରିୟମାନେ ତୁମକୁ ଜୟ କଲେ । ତା ନ ହୋଇଥିଲେ ନିଜର ବିନାଶ ପାଇଁ ତୁମେ ସୀତାଙ୍କୁ ହରଣ କରି ନ ଥା'ନ୍ତ । ଯେ ପୃଥିବୀ ଠାରୁ କ୍ଷମାଶୀଳା, ପତିବ୍ରତା ଗୁଣରେ ସମସ୍ତଙ୍କର ମାନନୀୟା, ଦୟନୀୟ ଅବସ୍ଥାରେ ସେହି ଅନବଦ୍ୟାଙ୍ଗୀ ସୀତାଙ୍କୁ ତୁମେ ଛଦ୍ମବେଶରେ ଅପହରଣ କଲ । ଆଜି ସେହି ପତିବ୍ରତାଙ୍କର ତପସ୍ୟାର ଅଗ୍ନି ତୁମକୁ ଭସ୍ମୀଭୂତ କରିଛି । ତୁମର ଅନ୍ତଃପୁରରେ ସୀତାଙ୍କଠାରୁ ଅଧିକ ସୁନ୍ଦରୀ ସ୍ତ୍ରୀ ଥିଲେ । ଗୁଣ, ବିଦ୍ୟା ଓ ରୂପରେ ସୀତା ମୋଠାରୁ ଅଧିକ ନୁହନ୍ତି । କିନ୍ତୁ ତୁମେ କାମାସକ୍ତ ହୋଇ ତାହା ଚିନ୍ତା କଲ ନାହିଁ । ଭାଗ୍ୟର ବିପର୍ଯ୍ୟୟ ନ ହେଲେ ଏହା ଘଟି ନ ଥା'ନ୍ତା । ତୁମର ଅନୁଜ ବିଭୀଷଣ, କୁମ୍ଭକର୍ଣ୍ଣ ଓ ମୋର ପିତାଙ୍କର ଉପଦେଶ ତୁମେ ମାନିଲ ନାହିଁ । ମୁଁ କେତେ ଭାଗ୍ୟବତୀ ନ ଥିଲି ? ମୋର ପିତା ଥିଲେ ଦାନବରାଜ ମୟ, ମୋର ଭର୍ତ୍ତା ଥିଲେ ରାକ୍ଷସମାନଙ୍କର ପ୍ରଭୁ ଓ ଲଙ୍କାର ରାଜା, ମୋର ପୁତ୍ର ଥିଲା ଇନ୍ଦ୍ରଙ୍କର ବିଜେତା । ଆଜି ସେ ସବୁ କୁଆଡ଼େ ଚାଲିଗଲା ? ମୁଁ ଅନାଥା ଅସହାୟା ବିଧବା ହୋଇ ରହିଗଲି ।

ସ୍ତ୍ରୀମାନଙ୍କୁ ସାନ୍ତ୍ୱନା ଦେଇ ରାବଣର ଅନ୍ତ୍ୟେଷ୍ଟିକ୍ରିୟା ଶୀଘ୍ର ଶେଷ କରିବାପାଇଁ ରାମ ବିଭୀଷଣଙ୍କୁ ଆଦେଶ ଦେଲେ ।

ରାବଣବଧ ଦେଖିସାରିବା ପରେ ଦେବ, ଗନ୍ଧର୍ବ, ଦାନବମାନେ ନିଜ ନିଜର ସ୍ଥାନକୁ ଚାଲିଗଲେ । ରାମ ମାତଳିଙ୍କୁ ବହୁମାନ୍ୟ କରି ଇନ୍ଦ୍ରଙ୍କର ରଥକୁ ଫେରାଇ ଦେଲେ । ସେ ସୁଗ୍ରୀବଙ୍କୁ ଆଲିଙ୍ଗନ କରି ଲକ୍ଷ୍ମଣଙ୍କୁ କହିଲେ, ବିଭୀଷଣଙ୍କୁ ଶୀଘ୍ର ଲଙ୍କାର ରାଜପଦରେ ଅଭିଷିକ୍ତ କର । ଲକ୍ଷ୍ମଣ ସୁବର୍ଣ୍ଣ ଘଟରେ ସମୁଦ୍ରରୁ ଜଳ ଆଣି ଏବଂ ବିଭୀଷଣଙ୍କୁ ଉପଯୁକ୍ତ

ଆସନରେ ବସାଇ ଲଙ୍କାର ରାଜପଦରେ ଅଭିଷିକ୍ତ କଲେ । ଲଙ୍କାର ରାକ୍ଷସମାନେ ଅକ୍ଷତ, ମିଷ୍ଟାନ୍ନ ଓ ପୁଷ୍ପ ଆଦି ବିଭୀଷଣଙ୍କୁ ଯାହା ଉପହାର ଦେଲେ, ବିଭୀଷଣ ତାହା ରାମ ଓ ଲକ୍ଷ୍ମଣଙ୍କୁ ନିବେଦନ କଲେ । ରାମ ହନୁମାନଙ୍କୁ କହିଲେ – ସୌମ୍ୟ, ବିଭୀଷଣଙ୍କର ଅନୁମତି ନେଇ ତୁମେ ଲଙ୍କାରେ ପ୍ରବେଶ କର ଏବଂ ବୈଦେହୀଙ୍କୁ ମୋର ଶୁଭ ସମ୍ବାଦ ଜଣାଇଦିଅ । ରାବଣ ମୋ ଦ୍ୱାରା ନିହତ, ଏହି ସମ୍ବାଦ ଦେଇ ଓ ମୈଥିଳୀଙ୍କର ସମ୍ବାଦ ଘେନି ମୋ ପାଖକୁ ଫେରିଆସ ।

## ୧୨୨ ।। ସୀତାଙ୍କ ଅଗ୍ନିପରୀକ୍ଷା

ହନୁମାନ ଅଶୋକବନକୁ ଯାଇ ଉଦାସ ଭାବରେ ବସିରହିଥିବା ସୀତାଙ୍କୁ ପ୍ରଣାମ କଲେ । ସେ କହିଲେ – ବୈଦେହୀ, ସୁଗ୍ରୀବ ଓ ଲକ୍ଷ୍ମଣଙ୍କ ସହିତ ରାମ କୁଶଳରେ ଅଛନ୍ତି । ବିଭୀଷଣ ଓ ବାନରମାନଙ୍କ ସାହାଯ୍ୟରେ ଶତ୍ରୁକୁ ବିନାଶ କରି ରାମ ତୁମ ପାଖକୁ ଏହି କୁଶଳ ସମ୍ବାଦ ପଠାଇଛନ୍ତି ଏବଂ ତୁମର କୁଶଳ ସମ୍ବାଦ ତାଙ୍କୁ ଜଣାଇବାପାଇଁ କହିଛନ୍ତି ।

ଏହି ସମ୍ବାଦ ଶୁଣି ଆନନ୍ଦରେ ସୀତାଙ୍କର ବାକ୍‌ସ୍ଫୂର୍ତ୍ତି ହେଲା ନାହିଁ । ସେ ଗଦ୍‌ଗଦ ହୋଇ କହିଲେ, ମୋ ପତିଙ୍କର ଏ ବିଜୟ ସମ୍ବାଦ ଶୁଣି ମୋର ଏପରି ଆନନ୍ଦ ହେଉଛି ଯେ ମୁଁ କିଛି କହିପାରୁ ନାହିଁ । ଏହି ମଙ୍ଗଳ ସମ୍ବାଦ ଦେଇଥିବା ଯୋଗୁଁ ତୁମକୁ ମୁଁ କ'ଣ ବା ପୁରସ୍କାର ଦେବି ? ପୃଥିବୀରେ ଏପରି କୌଣସି ବସ୍ତୁ ନାହିଁ, ଯାହାକି ତୁମପାଇଁ ଉପଯୁକ୍ତ ପୁରସ୍କାର ହେବ । ଧନ, ରତ୍ନ, ସୁବର୍ଣ୍ଣର ଅଳଙ୍କାର ବା ତ୍ରିଲୋକର ରାଜ୍ୟ ମଧ୍ୟ ଏଥିପାଇଁ ଯଥେଷ୍ଟ ହେବ ନାହିଁ ।

ହନୁମାନ କୃତାଞ୍ଜଳି ହୋଇ କହିଲେ – ଦେବୀ, ଏପରି ସ୍ନେହପୂର୍ଣ୍ଣ ବାକ୍ୟ ପତିଙ୍କର ପ୍ରିୟ ହିତ ଓ ବିଜୟକାମିନୀ ତୁମ ପକ୍ଷରେ ହିଁ କେବଳ ଉପଯୁକ୍ତ । ଏପରି ସାରଗର୍ଭକ ସ୍ନେହମୟ ବଚନ ଶୁଣି ମୋର ଧନ, ରତ୍ନ ଓ ଦେବଦୁର୍ଲ୍ଲଭ ରାଜ୍ୟ ଦରକାର ନାହିଁ । ବର୍ତ୍ତମାନ ଶତ୍ରୁକୁ ନିହତ କରି ବିଜୟୀ ରାମ ନିଶ୍ଚିନ୍ତ ହୋଇଛନ୍ତି ।

ସୀତା ହନୁମାନଙ୍କର ବଳ, ବିକ୍ରମ, ସାମର୍ଥ୍ୟ, ବିନୟ ଓ ବାକ୍‌ପଟୁତା ଆଦି ବିଭିନ୍ନ ଗୁଣର ପ୍ରଶଂସା କଲେ ଏବଂ ସେ ରାମଙ୍କର ବିଜୟ ସମ୍ବାଦ ଆଣି ଏପରି ମଧୁର ବାକ୍ୟରେ ତାଙ୍କୁ ଦେଇଥିବା ଯୋଗୁଁ ତାଙ୍କୁ ପୁଣି ଥରେ ସାଧୁବାଦ ଦେଲେ ।

ହନୁମାନ କହିଲେ – ଦେବୀ, ଏହି ରାକ୍ଷସୀମାନେ ଅଶୋକବନରେ ରହି ତୁମକୁ ବହୁ କଷ୍ଟ ଦେଇଛନ୍ତି । ତୁମକୁ ସବୁବେଳେ ଭୟ ଦେଖାଇ ଅନେକ କଠୋର କଥା କହିଛନ୍ତି । ଏବେ ତୁମେ ଆଜ୍ଞାଦେଲେ ମୁଁ ମୁଷ୍ଟି ପ୍ରହାର ବା ପଦାଘାତରେ ସେମାନଙ୍କୁ ବିନଷ୍ଟ କରିବି । ଯଶସ୍ୱିନୀ ଜନକନନ୍ଦିନୀ ହନୁମାନଙ୍କୁ କହିଲେ – ବାନରୋତ୍ତମ, ଏମାନେ ଦାସୀମାତ୍ର । ରାବଣର ଆଶ୍ରୟରେ ରହି ତାର ଆଜ୍ଞା ପାଳନ କରୁଥିଲେ । ତେଣୁ ଏମାନଙ୍କ ଉପରେ

କ୍ରୁଦ୍ଧ ହେବା ଅନୁଚିତ । ମୁଁ ମୋର ଭାଗ୍ୟଦୋଷ ଓ ପୂର୍ବ ଦୁଷ୍କୃତରୁ ଦୁଃଖ ଭୋଗ କରିଛି । ରାବଣ ଆଜ୍ଞାରେ ଏମାନେ ମୋ ପ୍ରତି ଯାହା ବ୍ୟବହାର କରିଛନ୍ତି, ସେଥିପାଇଁ ମୁଁ ତାଙ୍କୁ ଦୋଷ ଦେଉ ନାହିଁ । ଅନ୍ୟର ପ୍ରରୋଚନାରେ ଯେଉଁମାନେ ପାପକାର୍ଯ୍ୟ କରନ୍ତି, ବିଜ୍ଞ ବ୍ୟକ୍ତି ତାଙ୍କ ପ୍ରତି ପ୍ରତିଶୋଧ ଆଚରଣ କରନ୍ତି ନାହିଁ । କାରଣ ଆଚାର ହିଁ ସଚ୍ଚରିତ୍ରଯୁକ୍ତ ସାଧୁବ୍ୟକ୍ତିମାନଙ୍କର ଅଳଙ୍କାରସ୍ୱରୂପ । କୌଣସି ଦୋଷ ବା ଅପରାଧ ନ ଥିବା ବ୍ୟକ୍ତି ସଂସାରରେ କ୍ୱଚିତ୍ ଦେଖାଯା'ନ୍ତି ।

ହନୁମାନ ସୀତାଙ୍କ ଉତ୍ତରରେ ମୁଗ୍ଧ ହେଲେ । ସେ କହିଲେ – ଯଶସ୍ୱିନୀ, ବର୍ତ୍ତମାନ ରାମଙ୍କୁ ମୁଁ କ'ଣ ସନ୍ଦେଶ ଦେବି ? ସୀତା କହିଲେ – ବାନରଶ୍ରେଷ୍ଠ ମୁଁ କେବଳ ମୋର ସ୍ୱାମୀଙ୍କର ଦର୍ଶନ ଇଚ୍ଛାକରେ । ହନୁମାନ କହିଲେ – ବୈଦେହୀ, ଅଚିରେ ତୁମେ ଲକ୍ଷ୍ମଣଙ୍କ ସହିତ ରାମଙ୍କର ଚନ୍ଦ୍ରମୁଖ ଦର୍ଶନ କରିବ ।

ହନୁମାନ ରାମଙ୍କୁ ଆସି କହିଲେ – ପ୍ରଭୁ, ବର୍ତ୍ତମାନ ଶୋକସନ୍ତପ୍ତ ବୈଦେହୀଙ୍କୁ ଆପଣ ଶୀଘ୍ର ସାକ୍ଷାତ ଦିଅନ୍ତୁ । ସେ ଆପଣଙ୍କର ବିଜୟ ସମ୍ବାଦ ପାଇ ଅତିଶୟ ଆନନ୍ଦିତ ହୋଇଛନ୍ତି । ସେ ଲକ୍ଷ୍ମଣଙ୍କ ସହିତ ଆପଣଙ୍କୁ ଦେଖିବାପାଇଁ ଇଚ୍ଛା ପ୍ରକାଶ କରିଛନ୍ତି ।

ରାମଙ୍କର ଚକ୍ଷୁ ଲୋତକପୂର୍ଣ୍ଣ ହୋଇଗଲା । ସେ କିଛି ସମୟ ଚିନ୍ତାକରି ଦୀର୍ଘନିଃଶ୍ୱାସ ପକାଇ ବିଭୀଷଣଙ୍କୁ କହିଲେ, ତୁମେ ସ୍ନାନ କରାଇ ଦିବ୍ୟାଳଙ୍କାର ଭୂଷିତା ସୀତାଙ୍କୁ ମୋ ପାଖକୁ ଶୀଘ୍ର ଘେନିଆସ । ରାମଙ୍କର ଆଦେଶ ଅନୁସାରେ ବିଭୀଷଣ ସୀତାଙ୍କ ପାଖକୁ ଯାଇ ରାମଙ୍କର ଆଜ୍ଞା ଜଣାଇଲେ । ସୀତା ଉତ୍ତର ଦେଲେ – ରାକ୍ଷସେନ୍ଦ୍ର, ମୁଁ ଅସ୍ନାତ ଅବସ୍ଥାରେ ମୋର ସ୍ୱାମୀଙ୍କୁ ଦେଖିବାପାଇଁ ଚାହେ । ବିଭୀଷଣ ଉତ୍ତର ଦେଲେ, ଆପଣଙ୍କର ଭର୍ତ୍ତା ରାଜା ରାମ ଆପଣଙ୍କୁ ଯେଉଁ ଆଜ୍ଞା ଦେଉଛନ୍ତି ଆପଣଙ୍କର ତାହା ପାଳନ କରିବା ଉଚିତ । ସ୍ୱାମୀ ଦେବତା ବୋଲି ମାନିନେଇଥିବା ପତିବ୍ରତା ସତୀ 'ତାହା ହିଁ ହେବ' ବୋଲି କହି ସ୍ନାନ ସାରି ଦିବ୍ୟ ଅଳଙ୍କାରମାନ ପରିଧାନ କଲେ ।

ରାକ୍ଷସ ପ୍ରହରୀମାନଙ୍କ ସହିତ ସୀତାଙ୍କୁ ଏକ ଶିବିକାରେ ବସାଇ ବିଭୀଷଣ ରାମଙ୍କ ନିକଟକୁ ନେଇଗଲେ । ସେ ରାମଙ୍କ ପାଖକୁ ଯାଇ ପ୍ରଣାମ କରି ସୀତାଙ୍କଠାରୁ ଆଣିଥିବା ସମ୍ବାଦ ଜଣାଇଲେ । ରାମଙ୍କ ମନରେ ଏକ ସଙ୍ଗରେ କ୍ରୋଧ, ହର୍ଷ ଓ ବିଷାଦ ଭାବ ଜାତହେଲା । ସେ ବିଭୀଷଣଙ୍କୁ କହିଲେ, ବୈଦେହୀଙ୍କୁ ଶୀଘ୍ର ମୋ ପାଖକୁ ଘେନିଆସ ।

ସୀତାଙ୍କ ଆସିବାର ବାଟ କରିବାପାଇଁ କଞ୍ଚୁକୀମାନେ ବେତ୍ର ହସ୍ତରେ ଋକ୍ଷବାନର ଓ ରାକ୍ଷସମାନଙ୍କୁ ହଟାଇଦେବାକୁ ଚେଷ୍ଟା କଲେ । ଦୟାଳୁ ରାମ ବିଭୀଷଣଙ୍କୁ ଭର୍ତ୍ସନା କରି କହିଲେ, ତୁମେ କାହିଁକି ଏମାନଙ୍କୁ ଏପରି ହଟାଇବାରେ ଲାଗିଛ ? ଏମାନେ ସମସ୍ତେ ମୋର ସ୍ୱଜନ । ତେଣୁ ତୁମ ଲୋକମାନଙ୍କୁ ଏଥିରୁ କ୍ଷାନ୍ତ କରାଅ । ସ୍ତ୍ରୀମାନଙ୍କ ନିମନ୍ତେ ଗୃହ, ବସ୍ତ୍ର, ପ୍ରାଚୀର ଓ ପରଦାର ଆବରଣ ଆବରଣ ନୁହେଁ । ସ୍ତ୍ରୀମାନଙ୍କର ନିଜର ଚରିତ୍ର ହିଁ ସେମାନଙ୍କ ପ୍ରକୃତ ଆବରଣ । ଯୁଦ୍ଧଭୂମିରେ, ସ୍ୱଜନର ବିୟୋଗରେ, ରାଷ୍ଟ୍ରବିପ୍ଳବ ଓ ସ୍ୱୟଂବର ସଭାରେ, ଯଜ୍ଞଶାଳାରେ ବା ବିବାହକର୍ମବେଳେ ବିନା

ପରଦାରେ ସ୍ତ୍ରୀଲୋକଙ୍କର ଆସିବା ଦୋଷାବହ ନୁହେଁ । ସୀତାଙ୍କର ବର୍ତ୍ତମାନ ଦୁଃଖର ବେଳ । ସେ ଯୁଦ୍ଧଭୂମିକୁ ଆସିଛନ୍ତି ଏବଂ ମୁଁ ଏଠାରେ ଉପସ୍ଥିତ ଅଛି । ତେଣୁ ସର୍ବସମକ୍ଷରେ ତାଙ୍କୁ ଏଠାକୁ ଆଣିବାରେ କୌଣସି ଅସୁବିଧା ମୁଁ ଦେଖୁ ନାହିଁ । ବିଭୀଷଣ ବିନୟର ସହିତ ସୀତାଙ୍କୁ ଘେନିଆସିଲେ । ଲକ୍ଷ୍ମଣ, ସୁଗ୍ରୀବ, ହନୁମାନ ପ୍ରଭୃତି ରାମଙ୍କର କଥା ଶୁଣି ବ୍ୟଥିତ ହେଲେ । ସୀତା ଲଜ୍ଜାରେ ଏପରି ସଙ୍କୁଚିତ ହୋଇଗଲେ ଯେ ସେ ନିଜ ଶରୀରରେ ଲୀନ ହୋଇଯିବା ପରି ଦେଖାଗଲେ । ସେ ବିଭୀଷଣଙ୍କର ଆଗେ ଆଗେ ରାମଙ୍କ ନିକଟରେ ଆସି ପହଞ୍ଚିଲେ ଏବଂ 'ଆର୍ଯ୍ୟପୁତ୍ର' ବୋଲି ଏତିକି କହି କାନ୍ଦିପକାଇଲେ । ସେ ଏକ ସମୟରେ ବିସ୍ମୟ, ସ୍ନେହ, ଆନନ୍ଦର ବଶବର୍ତ୍ତୀ ହୋଇ ବହୁ ସମୟ ପର୍ଯ୍ୟନ୍ତ ନିଜର ପତିଦେବତାଙ୍କର ସୌମ୍ୟମୁଖ ଦର୍ଶନ କରିବାକୁ ଲାଗିଲେ ।

ସୀତାଙ୍କୁ ପାଖରେ ଠିଆ ହୋଇଥିବା ଦେଖି ରାମ ନିଜର ହୃଦୟର ଭାବ ପ୍ରକାଶ କରି କହିଲେ – ଭଦ୍ରେ, ମୁଁ ଯୁଦ୍ଧରେ ଶତ୍ରୁକୁ ଜୟ କରି ତୁମକୁ ଉଦ୍ଧାର କରିଚି । ପୁରୁଷକାର ଦ୍ୱାରା ଯାହା କରାଯାଇପାରେ, ମୁଁ ତାହା କରିଛି । ମୋର କ୍ରୋଧ ଶାନ୍ତ ହୋଇଛି ଏବଂ ଶତ୍ରୁର ପ୍ରତିଶୋଧ ନିଆଯାଇଛି । ଆଜି ମୋର ପ୍ରତିଜ୍ଞାରୁ ମୁଁ ଉତ୍ତୀର୍ଣ୍ଣ ହୋଇଛି । ମୋର ଅନୁପସ୍ଥିତିରେ ଚଞ୍ଚଳମତି ରାକ୍ଷସ ତୁମକୁ ଅପହରଣ କରିଥିଲା । ସେହି ଦୈବକୃତ ଦୋଷକୁ ମନୁଷ୍ୟ ହୋଇ ମୁଁ ଦୂରକରି ଦେଇଛି । ଯେଉଁ ହୀନବଳ ବ୍ୟକ୍ତି ଅପମାନର ପ୍ରତିଶୋଧ ନେଇପାରେ ନାହିଁ, ତାର ପୁରୁଷକାର ମୂଲ୍ୟହୀନ । ହନୁମାନ, ସୁଗ୍ରୀବ ଓ ବିଭୀଷଣଙ୍କର ପରିଶ୍ରମ ସଫଳ ହୋଇଛି ।

ଏହାଶୁଣି ମୃଗନୟନା ସୀତାଙ୍କର ବିସ୍ତାରିତ ଚକ୍ଷୁ ଅଶ୍ରୁପୂର୍ଣ୍ଣ ହୋଇଉଠିଲା ।

ତା'ପରେ ରାମ ଅତି କ୍ରୁଦ୍ଧ ହୋଇ ଭ୍ରୂକୁଟି କୁଞ୍ଚନ କରି ସମସ୍ତଙ୍କ ସମ୍ମୁଖରେ ସୀତାଙ୍କୁ କହିଲେ – ସୀତା, ତୁମେ ଜାଣିରଖିବା ଉଚିତ, ତୁମପାଇଁ ମୁଁ ଏହି ସଂଗ୍ରାମ, ଏହି ପରିଶ୍ରମ କରି ନାହିଁ । ସୁହୃଦ୍‌ମାନଙ୍କର ବଳରେ ମୁଁ ଯେଉଁ ବିପଦରୁ ଉତ୍ତୀର୍ଣ୍ଣ ହୋଇଛି, ତାହା ତୁମପାଇଁ ନୁହେଁ । ମୁଁ ନିଜର ଚରିତ୍ର ଓ ବିଖ୍ୟାତ ଇକ୍ଷ୍ୱାକୁ ବଂଶର ମର୍ଯ୍ୟାଦାକୁ କଳଙ୍କ ଓ ଅପବାଦରୁ ରକ୍ଷା କରିବାପାଇଁ ଏହା କରିଛି । ସୀତା, ତୁମର ଚରିତ୍ର ପ୍ରତି ମୋର ସନ୍ଦେହ ହୋଇଛି । ନେତ୍ରରୋଗୀ ଆଗରେ ଦୀପଶିଖା ଯେପରି ଅସହ୍ୟ ହୁଏ, ତୁମର ଉପସ୍ଥିତି ମୋ ପାଇଁ ସେହିପରି ଅସହ୍ୟ ହୋଇଛି । ଜନକନନ୍ଦିନୀ, ମୁଁ ତୁମକୁ ଅନୁମତି ଦେଉଛି, ତୁମର ଯେଉଁଆଡ଼େ ଇଚ୍ଛା, ସେଆଡ଼େ ଯାଅ । ତୁମଠାରେ ମୋର କୌଣସି ପ୍ରୟୋଜନ ନାହିଁ । ଉଚ୍ଚକୁଳଜାତ କେଉଁ ତେଜସ୍ୱୀ ପୁରୁଷ ପରଗୃହରେ ରହିଥିବା ସ୍ତ୍ରୀକୁ ନିଜର ବୋଲି ଗ୍ରହଣ କରିପାରିବ ? ରାବଣ ତୁମକୁ ନିଜର କୋଳରେ ବସାଇ ଆଣିଛି । ତୁମେ ତାର ଅସଦ୍ ଦୃଷ୍ଟିରେ ପଡ଼ିଛ । ତେଣୁ ତୁମପ୍ରତି ମୋର ଆଉ କୌଣସି ମମତା ନାହିଁ । ତୁମେ ଯେଉଁଠିକି ଚାହ, ସେଠାକୁ ଯାଇପାର । ଲକ୍ଷ୍ମଣ, ଭରତ, ସୁଗ୍ରୀବ ଓ ବିଭୀଷଣ ଯାହାକୁ ଇଚ୍ଛାକର, ତାଙ୍କ ପାଖରେ ରହିପାର । ତୁମର ଦିବ୍ୟ ସୁନ୍ଦର ରୂପ ଦେଖି ରାବଣ କେବେହେଲେ ବେଶିଦିନ ଧୈର୍ଯ୍ୟ ଧରି ରହିପାରି ନ ଥିବ । ତେଣୁ ମୋର ମନ ସ୍ଥିର କରି ମୁଁ ତୁମକୁ ଜଣାଇଦେଲି । ମୋର ସ୍ଥିର ସିଦ୍ଧାନ୍ତ ଜାଣିରଖ ।

ଯେଉଁ ସୀତା ନିଜର ପ୍ରିୟତମଙ୍କ ମୁହଁରୁ ପ୍ରିୟ କଥା ଶୁଣିବାପାଇଁ ଏତେକାଳ ଦୁଃଖରେ ଆଶା ବାନ୍ଧି ରହିଥିଲେ, ବର୍ତ୍ତମାନ ଏହି କଥା ଶୁଣି ଗଜ ଦ୍ୱାରା ଛିନ୍ନ ସଲ୍ଲକୀଲତା ପରି ସେ କାନ୍ଦିବାକୁ ଲାଗିଲେ । ତାଙ୍କର ଚକ୍ଷୁରୁ ଲୋତକ ଧାରା ଅବାରିତ ଗତିରେ ପ୍ରବାହିତ ହେଲା । ମାତ୍ର ଅଳ୍ପ କ୍ଷଣ ପରେ ସେ ଅଶ୍ରୁ ପୋଛି ନିଜକୁ ସମ୍ଭରଣ କରି ଧୀର ଅଥଚ ଦୃଢ଼ସ୍ୱରରେ କହିଲେ, ନୀଚ ଗ୍ରାମ୍ୟ ବ୍ୟକ୍ତି ତାର ସ୍ତ୍ରୀ ସହିତ କଳହ କରିବାପରି ତୁମ ମୁଖରୁ ଏପରି କର୍ଣ୍ଣକଟୁକର ରୁକ୍ଷ ଭାଷା ମୁଁ କେବେ ଆଶା କରି ନ ଥିଲି । ତୁମେ ମୋ ସମ୍ପର୍କରେ ଯାହା ଭାବୁଛ, ମୁଁ ତାହା ନୁହେଁ । ମୋର ଚରିତ୍ର ଓ ଧର୍ମରେ ମୁଁ ସର୍ବଦା ସ୍ଥିର ହୋଇ ରହିଛି । ରାବଣ ବଳପୂର୍ବକ ମୋତେ ଅପହରଣ କରି ମୋର ଗାତ୍ରକୁ ସ୍ପର୍ଶ କରିଛି । ମୁଁ ସେତେବେଳେ ଅସହାୟ ବିବଶ ଅବସ୍ଥାରେ ରହିଥିଲି । ତେଣୁ ମୋର ସେଥିରେ କୌଣସି ଅପରାଧ ନାହିଁ । ମନ ମୋର ଅଧୀନ ଓ ହୃଦୟ ତୁମଠାରେ ସମର୍ପିତ ଥିଲା । କିନ୍ତୁ ମୋର ଶରୀର ପରାଧୀନ ଥିଲା । ରାଘବ, ଦୀର୍ଘକାଳ ମୋ ସମ୍ପର୍କରେ ଆସି ଯଦି ତୁମେ ମୋର ମନୋଭାବ ଜାଣିପାରିଲ ନାହିଁ, ତା'ହେଲେ ମୁଁ ଚିରକାଳ ପାଇଁ ଶେଷ ହୋଇଗଲି । ରାଘବ, ମୋତେ ଦେଖିବାପାଇଁ ତୁମେ ବୀର ହନୁମାନଙ୍କୁ ପଠାଇଥିଲ । ସେତେବେଳେ ତୁମେ ମୋତେ ବିସର୍ଜନ କରିଛ ବୋଲି ଜଣାଇଦେବା ଉଚିତ ଥିଲା । ତା' ହେଲେ ସେହି ବାନରଙ୍କ ସମ୍ମୁଖରେ ମୁଁ ପ୍ରାଣତ୍ୟାଗ କରିଥା'ନ୍ତି । ତୁମକୁ ଏତେ ସଂଗ୍ରାମ ଓ ଶ୍ରମ କରିବାକୁ ପଡ଼ି ନ ଥା'ନ୍ତା । ତୁମେ ଜୀବନସଂଶୟରେ ପଡ଼ି ନ ଥା'ନ୍ତ କିମ୍ବା ତୁମର ସହୃଦ୍‌ମାନେ ଏତେ ଦୁଃଖକଷ୍ଟ ଭୋଗି ନ ଥାନ୍ତେ । ଇତର ଲୋକ ଇତର ସ୍ତ୍ରୀଙ୍କ ସହିତ ବ୍ୟବହାର କରିବାପରି ତୁମେ କ୍ରୋଧର ବଶବର୍ତ୍ତୀ ହୋଇ ମୋତେ ଏପରି ବ୍ୟବହାର କରୁଛ । ତୁମେ କ'ଣ ଜାଣ ନାହିଁ, ମୁଁ ରାଜା ଜନକଙ୍କ କନ୍ୟା, ବସୁଧାର ଗର୍ଭରୁ ଉତ୍ପନ୍ନ, ବାଲ୍ୟକାଳରୁ ତୁମର ପାଣି ଗ୍ରହଣ କରି ତୁମ ପ୍ରତି ଅନୁରକ୍ତ ହୋଇ ରହିଛି ? ତୁମ ପ୍ରତି ମୋର ଏକାନ୍ତ ଭକ୍ତି, ଶ୍ରଦ୍ଧା, ଅନୁରକ୍ତି, ସବୁ ତୁମେ ପଛକୁ ପକାଇଦେଲ ?

ସୀତା ସଙ୍ଗେ ସଙ୍ଗେ ଲକ୍ଷ୍ମଣଙ୍କୁ କହିଲେ, ମୁଁ ମିଥ୍ୟା ବାଦରେ ପୀଡ଼ିତ ହୋଇ ବଞ୍ଚି ରହିବାକୁ ଚାହେ ନାହିଁ । ସର୍ବସମ୍ମୁଖରେ ମୋର ସ୍ୱାମୀ ମୋତେ ପରିତ୍ୟାଗ କରିଛନ୍ତି । ତୁମେ ମୋ ପାଇଁ ଶୀଘ୍ର ଚିତା ପ୍ରସ୍ତୁତ କର । ମୁଁ ସେଥିରେ ପ୍ରବେଶ କରିବି । ତାହାହିଁ ମୋର ଉପଯୁକ୍ତ ସ୍ଥାନ । ଲକ୍ଷ୍ମଣ କ୍ରୁଦ୍ଧ ହୋଇ ରାମଙ୍କ ଆଡ଼କୁ ଦୃଷ୍ଟିପାତ କଲେ । ରାମ ଚୁପ୍ ହୋଇ ମୁହଁ ତଳକୁ କରି ରହିବାରୁ ସେ ସଙ୍ଗେ ସଙ୍ଗେ ସୀତାଙ୍କ ପାଇଁ ଏକ ଚିତା ପ୍ରସ୍ତୁତ କଲେ ।

ବୈଦେହୀ ରାମଙ୍କୁ ପ୍ରଦକ୍ଷିଣ କରି ଦେବତା ଓ ବ୍ରାହ୍ମଣମାନଙ୍କୁ ପ୍ରଣାମ କରି ଜଳନ୍ତା ଚିତାନଳ ନିକଟରେ କୃତାଞ୍ଜଳି ହୋଇ କହିଲେ, ଯଦି ମୋର ଚିତ୍ତ ରାଘବଙ୍କ ଠାରେ ଅଟଳ ରହିଥାଏ, ମୋତେ ଦୁଶ୍ଚରିତ୍ରା ବୋଲି ସେ ମନେ କରୁଥିଲେ ମଧ୍ୟ ଯଦି ମୋର ଚରିତ୍ର ଶୁଦ୍ଧ ହୋଇଥାଏ ଏବଂ କାୟମନୋବାକ୍ୟରେ ମୁଁ ଧର୍ମଜ୍ଞ ରାମଙ୍କ ଛଡ଼ା ଅନ୍ୟ କାହାରିକୁ ସ୍ଥାନ ଦେଇ ନ ଥାଏ, ତା'ହେଲେ ହେ ଲୋକସାକ୍ଷୀ ଅଗ୍ନିଦେବ, ମୋତେ ତୁମେ ରକ୍ଷାକର । ସୂର୍ଯ୍ୟ, ଚନ୍ଦ୍ର, ବାୟୁ, ଦିଗ୍‌ବିଦିଗ ଦିବସ, ରାତ୍ରି, ସନ୍ଧ୍ୟା ଓ ପୃଥିବୀ ସମସ୍ତେ ମୋତେ ଚରିତ୍ରବତୀ ବୋଲି ଜାଣନ୍ତି । ତେଣୁ ହେ ପାବକ, ତୁମେ ମୋତେ ରକ୍ଷାକର ।

ଏହା କହି ବୈଦେହୀ ଅଗ୍ନିଦେବତାଙ୍କୁ ପ୍ରଦକ୍ଷିଣ କରି ଓ ନିଜର ଶରୀର ପ୍ରତି କୌଣସି ମମତା ନ ରଖି ଜ୍ୱଳନ୍ତ ଚିତାରେ ପ୍ରବେଶ କଲେ । ସ୍ୱର୍ଣ୍ଣାଳଙ୍କାରଭୂଷିତା ସୁବର୍ଣ୍ଣବର୍ଣ୍ଣା ସୀତା ଘୃତାହୁତି ଦେବାପରି ନିଜର ଶରୀରକୁ ଅଗ୍ନିରେ ଆହୁତି ଦେବାର ଦେଖି ଉପସ୍ଥିତ ଆବାଳବୃଦ୍ଧବନିତା ହାୟ ହାୟ କରିବାକୁ ଲାଗିଲେ ।

ଏହି ସମୟରେ କୁବେର, ଯମ, ଇନ୍ଦ୍ର, ବରୁଣ, ମହାଦେବ ଓ ବ୍ରହ୍ମା, ସୂର୍ଯ୍ୟସନ୍ନିଭ ବିମାନମାନଙ୍କ ଉପରେ ବସି ଲଙ୍କାରେ ସେହି ସ୍ଥାନରେ ଉପସ୍ଥିତ ହେଲେ ଏବଂ ନିଜର ବିପୁଳ ଭୁଜ ଉତ୍ତୋଳନ କରି କହିଲେ – ରାମ, ତୁମେ ସମସ୍ତ ଲୋକଙ୍କର କର୍ତ୍ତା, ଜ୍ଞାନୀମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଅଗ୍ନିରେ ପ୍ରବେଶ କରିଥିବା ସୀତାଙ୍କୁ ତୁମେ କିପରି ଉପେକ୍ଷା କରୁଛ ? ତୁମେ ବସୁମାନଙ୍କ ମଧ୍ୟରେ ଋତଧାମା, ତୁମେ ପ୍ରଜାପତି । ତୁମେ ଅଷ୍ଟମରୁଦ୍ର, ପଞ୍ଚମ ସାଧ୍ୟ, ଅଶ୍ୱିନୀକୁମାର ଦୁହେଁ ତୁମର କର୍ଣ୍ଣ, ସୂର୍ଯ୍ୟ ଓ ଚନ୍ଦ୍ର ତୁମର ଚକ୍ଷୁ, ତୁମେ ପୃଥିବୀର ଆଦି, ଅନ୍ତ ଓ ମଧ୍ୟ ଭାବରେ ବିଦ୍ୟମାନ, ତୁମେ ସାଧାରଣ ବ୍ୟକ୍ତିଙ୍କ ପରି ବୈଦେହୀଙ୍କୁ ଅବଜ୍ଞା କରିଛ । ରାମ କହିଲେ, ମୁଁ ରାଜା ଦଶରଥଙ୍କ ପୁତ୍ର ରାମ ନାମକ ମନୁଷ୍ୟ, ମୁଁ କିଏ, କାହାର ଏବଂ କାହିଁକି ସଂସାରକୁ ଆସିଛି, ତାହା ଜାଣେ ନାହିଁ । ଆପଣ ତାହା କହନ୍ତୁ । ବ୍ରହ୍ମା କହିଲେ – ରାମ, ତୁମେ ସ୍ୱୟଂ ସତ୍ୟପରାକ୍ରମ ଚକ୍ରଧାରୀ ନାରାୟଣ, ତୁମେ ଅକ୍ଷୟ ସତ୍ୟ ଓ ଧର୍ମ, ଶରଣ୍ୟ ଓ ଶରଣବତ୍ସଳ, ପୁରାଣ ପୁରୁଷୋତ୍ତମ ।

ବ୍ରହ୍ମା କହିବା ପରେ ଅଗ୍ନିଦେବ ବାଳସୂର୍ଯ୍ୟ ତୁଲ୍ୟ ରକ୍ତାମ୍ବରଧରା ତପ୍ତକାଞ୍ଚନବର୍ଣ୍ଣା ବୈଦେହୀଙ୍କୁ କୋଳରେ ଧରି ଚିତାରୁ ଉତ୍‌ଥିତ ହେଲେ । ସୀତାଙ୍କୁ ସମର୍ପଣ କରି ରାମଙ୍କୁ କହିଲେ – ରାମ, ଏହି ତୁମର ନିଷ୍ପାପା ପତ୍ନୀ ବୈଦେହୀ । ମନ, ଧ୍ୟାନ, ବାକ୍ୟ ବା ଚକ୍ଷୁରେ ସେ ସର୍ବଦା ତୁମପ୍ରତି ଅନୁରକ୍ତା ରହିଛନ୍ତି । ରାବଣର ସମସ୍ତ ଭୟ, ଭର୍ତ୍ସନା, ପ୍ରଲୋଭନ ସତ୍ତ୍ୱେ ତୁମଠାରୁ ତାଙ୍କର ମନ ବିଚ୍ୟୁତ ହୋଇ ନାହିଁ । ସେହି ବିଶୁଦ୍ଧହୃଦୟା ସୀତାଙ୍କୁ ତୁମେ ନିଃସଙ୍କୋଚରେ ଗ୍ରହଣ କର ।

ସୀତାଙ୍କୁ ଗ୍ରହଣ କରି ରାମ ଅଗ୍ନିଦେବତାଙ୍କୁ କହିଲେ, ତ୍ରିଭୁବନରେ ସୀତା ନିଷ୍ପାପା ବୋଲି ମୁଁ ଜାଣେ । କିନ୍ତୁ ସେ ରାବଣର ଅନ୍ତଃପୁରରେ ବହୁଦିନ ଧରି ରହିଥିଲେ । ମୁଁ ଯଦି ତାଙ୍କୁ ବିଶୁଦ୍ଧ ବୋଲି ପ୍ରମାଣିତ ନ କରି ଗ୍ରହଣ କରିଥାନ୍ତି, ତା'ହେଲେ ଲୋକେ କହିଥାନ୍ତେ ଯେ ଦଶରଥଙ୍କ ପୁତ୍ର ରାମ ମୂର୍ଖ ଓ କାମୁକ । ମୁଁ ଭଲରୂପେ ଜାଣେ, ଅନନ୍ୟହୃଦୟା ସୀତା ମୋ ଠାରେ ତାଙ୍କର ଚିତ୍ତକୁ ସମ୍ପୂର୍ଣ୍ଣ ସମର୍ପଣ କରିଛନ୍ତି । ପତିବ୍ରତାର ଧର୍ମ ବଳରେ ସେ ରାବଣଠାରୁ ନିଜକୁ ରକ୍ଷା କରିଛନ୍ତି । ବର୍ତ୍ତମାନ ସେ ଅଗ୍ନିରେ ପ୍ରବେଶ କରି ସମସ୍ତ ଲୋକରେ ନିଜର ଶୁଦ୍ଧ ଚରିତ୍ରକୁ ପ୍ରମାଣିତ କଲେ । ମୁଁ ତାଙ୍କୁ ଅମ୍ଲାନ ଚିତ୍ତରେ ଗ୍ରହଣ କରୁଛି ।

ମହେଶ୍ୱରଙ୍କ ପ୍ରସାଦରେ ଦଶରଥ ପିତୃଲୋକରୁ ଆସି ରାମଙ୍କୁ କହିଲେ, ବତ୍ସ, ତୁମେ ପୁରାଣ ପୁରୁଷୋତ୍ତମ ବିଷ୍ଣୁଙ୍କର ଅବତାର ରୂପରେ ଜନ୍ମଗ୍ରହଣ କରି ମୋତେ ଓ ମୋର ବଂଶକୁ ଉଦ୍ଧାର କରିଛ । ଏବେ ଲକ୍ଷ୍ମଣ ଓ ସୀତାଙ୍କ ସହ ଅଯୋଧ୍ୟା ଫେରିଯାଅ । ଭାଇମାନଙ୍କ ସହିତ ରାଜ୍ୟ ଶାସନ କରି ଯଶସ୍ୱୀ ଓ ଦୀର୍ଘଜୀବୀ ହୁଅ । ଦଶରଥ

ଭ୍ରାତୃସେବାପାଇଁ ଲକ୍ଷ୍ମଣଙ୍କୁ ପ୍ରଶଂସା କଲେ । ସେ ସୀତାଙ୍କୁ କହିଲେ – ବୈଦେହୀ, ରାମଙ୍କ ପ୍ରତି ତୁମର କ୍ରୋଧ ପରିତ୍ୟାଗ କର । ତୁମର ମଙ୍ଗଳପାଇଁ ତୁମକୁ ଶୁଦ୍ଧବୋଲି ପ୍ରମାଣିତ କରିବାପାଇଁ ସେ ତୁମକୁ ଏପରି କହିଥିଲେ । ପତିସେବା ବିଷୟରେ ତୁମକୁ ବା ମୁଁ କ'ଣ ଉପଦେଶ ଦେବି ? ଦଶରଥ ଏହିପରି ପୁତ୍ର ଓ ପୁତ୍ରବଧୂଙ୍କୁ ଉପଦେଶ ଦେଇ ଏକ ଜ୍ୟୋତିର୍ମୟ ବିମାନରେ ଇନ୍ଦ୍ରଲୋକକୁ ଫେରିଗଲେ ।

ଇନ୍ଦ୍ର ରାମଙ୍କୁ କହିଲେ – ରାମ, ଆମେମାନେ ତୁମ ପ୍ରତି ପ୍ରସନ୍ନ ଏବଂ ତୁମକୁ ଖାଲି ଦେଖି ଫେରିଯିବା ଆମ ପକ୍ଷରେ ଠିକ୍ ହେବ ନାହିଁ । ତୁମର କିଛି ମନୋବାଞ୍ଛା ଥିଲେ ପ୍ରକାଶ କର । ରାମ କହିଲେ, ଯେଉଁ ବାନରମାନେ ମୋ ପାଇଁ ଯୁଦ୍ଧ କରି ନିହତ ହୋଇଛନ୍ତି, ସେମାନେ ସମସ୍ତେ ପୁନର୍ଜୀବନ ଲାଭ କରନ୍ତୁ । ବାନରମାନେ ଯେଉଁଠାରେ ରହିବେ, ସେଠାରେ ଦୁର୍ଭିକ୍ଷ ଓ ଅକାଳ ପଡ଼ିଲେ ମଧ୍ୟ ସେମାନଙ୍କୁ ସର୍ବଦା ନିର୍ମଳ ଜଳ ଓ ପ୍ରଚୁର ଫଳମୂଳ ମିଳୁ । ଇନ୍ଦ୍ର ବାନରମାନଙ୍କୁ ପୁନର୍ଜୀବିତ କରି ରାମଙ୍କର ମନୋବାଞ୍ଛା ପୂର୍ଣ୍ଣ କଲେ ଏବଂ ତାଙ୍କର ଦ୍ୱିତୀୟ ବର ମଧ୍ୟ ସ୍ୱୀକାର କଲେ । ବାନରମାନେ ଜୀବିତ ହୋଇ ନିଦ୍ରାରୁ ଜାଗରିତ ହେବା ପରି ମନେ କଲେ ।

ଇନ୍ଦ୍ରାଦି ଦେବତାମାନେ ରାମ, ଲକ୍ଷ୍ମଣଙ୍କ ଠାରୁ ବିଦାୟ ନେଇ ଦେବଲୋକକୁ ଫେରିଗଲେ ।

## ୧୨୩ ॥ ପୁଷ୍ପକ ବିମାନରେ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ

ପରଦିନ ପ୍ରଭାତରେ ବିଭୀଷଣ ରାମଙ୍କୁ କହିଲେ ରାଘବ, ଆପଣଙ୍କର ସ୍ନାନ ପାଇଁ ଅଙ୍ଗରାଗ, ବସ୍ତ୍ର, ଆଭରଣ, ଚନ୍ଦନ, ମାଲ୍ୟ ଆଦି ଏହି କମଳନୟନା ନାରୀମାନେ ଧରି ଉପସ୍ଥିତ ଅଛନ୍ତି । ସେମାନେ ଆପଣଙ୍କୁ ବିଧିପୂର୍ବକ ସ୍ନାନ କରାଇବେ । ରାମ କହିଲେ, ତୁମେ ସୁଗ୍ରୀବ ଆଦି ପ୍ରଧାନ ବାନରଙ୍କୁ ସ୍ନାନପାଇଁ ନିମନ୍ତ୍ରଣ କର । କିନ୍ତୁ କୈକେୟୀପୁତ୍ର ଭରତ ମୋ ପାଇଁ ବହୁ ଦୁଃଖରେ କାଳଯାପନ କରୁଛନ୍ତି । ମୁଁ ତାଙ୍କୁ ନ ଦେଖି ସ୍ନାନ କରିବା ବା ମୂଲ୍ୟବାନ ବସ୍ତ୍ର, ଅଳଙ୍କାର ଆଦି ଧାରଣ କରିବା ଇଚ୍ଛା କରୁ ନାହିଁ । ଆମେ କିପରି ଶୀଘ୍ର ଅଯୋଧ୍ୟାକୁ ଫେରିଯିବୁ ତାର ବ୍ୟବସ୍ଥା କର ।

ବିଭୀଷଣ ଉତ୍ତର ଦେଲେ, ଯେଉଁ ପୁଷ୍ପକ ବିମାନ ରାବଣ ବଳପୂର୍ବକ କୁବେରଙ୍କଠାରୁ ହରଣ କରିଥିଲେ, ତାହା ପ୍ରସ୍ତୁତ ହୋଇ ରହିଛି । ଆପଣଙ୍କୁ ଦିନକ ମଧ୍ୟରେ ତାହା ଅଯୋଧ୍ୟାରେ ପହଞ୍ଚାଇଦେବ । ଆଜି ଦିନକ ପାଇଁ ସୈନ୍ୟ ଓ ସୁହୃଦ୍‌ମାନଙ୍କ ସହିତ ଲଙ୍କାରେ ମୋର ଆତିଥ୍ୟ ଗ୍ରହଣ କରନ୍ତୁ । କାଲି ପ୍ରସନ୍ନ ଚିତ୍ତରେ ଅଯୋଧ୍ୟା ଫେରିଯିବେ । ରାମ କହିଲେ – ସୌମ୍ୟ, ତୁମେ ତୁମର ଉଦ୍ୟମ ଓ ବନ୍ଧୁତା ଦ୍ୱାରା ମୋର ଯଥେଷ୍ଟ ସତ୍କାର କରିଛ । ଏବେ ମୋର ଯେଉଁ ଭାଇ ଚିତ୍ରକୂଟ ଆସି ମୋତେ ଫେରାଇ ନେବାପାଇଁ ପ୍ରାର୍ଥନା କରି ଫେରିଯାଇଥିଲା, ସେଇ ଭରତର କଥା ମୋର ମନେପଡୁଛି । କୌଶଲ୍ୟା, ସୁମିତ୍ରା, କୈକେୟୀ ଓ ଅନ୍ୟାନ୍ୟ ସ୍ୱଜନ ଓ ପୁରବାସୀଙ୍କୁ ଦେଖିବାକୁ ମନ

ଚଞ୍ଚଳ ହୋଇଉଠୁଛି । ରାକ୍ଷସେନ୍ଦ୍ର, ଦୁଃଖ ନ କରି ମୋତେ ଅନୁଗ୍ରହପୂର୍ବକ ଆଜି ହିଁ ବିଦାୟ ଦିଅ ।

ପୁଷ୍ପରେ ସଜ୍ଜିତ ପୁଷ୍ପକ ବିମାନରେ ରାମ ଲକ୍ଷ୍ମଣ ଓ ସୀତାଙ୍କ ସହିତ ଆରୋହଣ କଲେ । ତାହା ପୂର୍ବରୁ ଯଥେଷ୍ଟ ଧନରତ୍ନ ଏବଂ ଅଳଙ୍କାର ଦେଇ ବାନରମାନଙ୍କୁ ସମ୍ବର୍ଦ୍ଧିତ କରିବାପାଇଁ ସେ ବିଭୀଷଣଙ୍କୁ ଅନୁରୋଧ କଲେ । ବିଭୀଷଣ ବାନରମାନଙ୍କୁ ଉପଢ଼ୌକନ ଦ୍ୱାରା ସନ୍ତୁଷ୍ଟ କରାଇଲେ । ରାମ ସୁଗ୍ରୀବଙ୍କୁ କହିଲେ – ବାନରରାଜ, ତୁମେ ହିତକାମୀ ବନ୍ଧୁର ଯାହା କରିବାର କଥା, ତାହା କରିଛ । ବର୍ତ୍ତମାନ ବାନର ସୈନ୍ୟମାନଙ୍କୁ ନେଇ କିଷ୍କିନ୍ଧ୍ୟାକୁ ଫେରିଯାଅ । ସେ ବିଭୀଷଣଙ୍କୁ କହିଲେ, ନିଷ୍କଣ୍ଟକ ଲଙ୍କାରାଜ୍ୟ ଭୋଗକର ।

ରାମ ସମସ୍ତଙ୍କଠାରୁ ବିଦାୟ ନେଇ ଯିବାକୁ ବାହାରିବାରୁ ବିଭୀଷଣ, ସୁଗ୍ରୀବ ଓ ବାନରବୀରମାନେ ଅଯୋଧ୍ୟାରେ ରାମଙ୍କର ଅଭିଷେକ ଦେଖିବାପାଇଁ ଇଚ୍ଛାପ୍ରକାଶ କଲେ । ରାମ ମଧ୍ୟ ଆଗ୍ରହରେ ସେମାନଙ୍କୁ ନିମନ୍ତ୍ରଣ ଜଣାଇଲେ । ଏହିପରି ବିଭୀଷଣ, ସୁଗ୍ରୀବ ଓ ହନୁମାନ ଆଦି ବାନରବୀରମାନଙ୍କୁ ଘେନି ରାମ, ଲକ୍ଷ୍ମଣ ଓ ସୀତା ପୁଷ୍ପକ ବିମାନରେ ଯାତ୍ରା କଲେ । ବିମାନ ଉଡ଼ିଯିବାବେଳେ ରାମ ସୀତାଙ୍କୁ ବିଭିନ୍ନ ଦର୍ଶନୀୟ ଓ ସ୍ମରଣୀୟ ସ୍ଥାନମାନ ଦେଖାଇବାକୁ ଲାଗିଲେ । ଯୁଦ୍ଧଭୂମି ଅତିକ୍ରମ କରି ସେତୁବନ୍ଧ ଉପରେ ଉଡ଼ିଯିବାବେଳେ ରାମ କହିଲେ – ବିଶାଳାକ୍ଷୀ, ଏହିଠାରେ ବାନରବୀର ନଳ ଦୁଷ୍କର ସେତୁବନ୍ଧ ନିର୍ମାଣ କରିଛନ୍ତି । କିଛି ସମୟ ପରେ ପୁଣି କହିଲେ, ଏଇ ଦେଖ ଉଦ୍ୟାନମାଳିନୀ କିଷ୍କିନ୍ଧ୍ୟା, ସୁଗ୍ରୀବଙ୍କର ରମ୍ୟ ରାଜଧାନୀ । ଏଠାରେ ମୁଁ ବାନରଶ୍ରେଷ୍ଠ ବାଳୀଙ୍କୁ ନିହତ କରିଥିଲି । ସୀତା ବାନରମାନଙ୍କର ପତ୍ନୀମାନଙ୍କୁ ସାଙ୍ଗରେ ନେବାକୁ କହିବାରୁ ବିମାନ ସେମାନଙ୍କୁ ନେବାପାଇଁ କିଷ୍କିନ୍ଧ୍ୟାରେ ଅବତରଣ କଲା ।

ପରେ ପରେ ଗିରିକାନନ ବେଷ୍ଟିତ, ରାମଙ୍କର ବିରହସ୍ମୃତି ଜଡ଼ିତ ମନୋରମ ପମ୍ପା ସରୋବର ଦେଖାଗଲା । ଯେଉଁଠାରେ ଶବରୀ ସହିତ ତାଙ୍କର ଦେଖାହୋଇଥିଲା, ଯେଉଁଠାରେ ସେ କବନ୍ଧରାକ୍ଷସକୁ ମାରିଥିଲେ, ଯେଉଁଠି ରାବଣ ସହିତ ଜଟାୟୁଙ୍କର ଯୁଦ୍ଧ ହୋଇଥିଲା ଏବଂ ଜନସ୍ଥାନର ଯେଉଁ ନିର୍ଜନ ଆଶ୍ରମ ଓ ପର୍ଣ୍ଣକୁଟୀରରେ ସେମାନେ ରହୁଥିଲେ, ସେ ସମସ୍ତ ସୀତାଙ୍କୁ ଦେଖାଇ ଆନନ୍ଦ ପ୍ରକାଶ କଲେ । ନିର୍ମଳସଲିଳା ଗୋଦାବରୀ ନଦୀ, ମହର୍ଷି ଅଗସ୍ତ୍ୟଙ୍କର ଆଶ୍ରମ ଆଦି ଦେଖାଇ ଯେଉଁଠାରେ ରାମ ବିରାଧ ରାକ୍ଷସକୁ ନିହତ କରିଥିଲେ ଏବଂ ଯେଉଁଠାରେ ମହର୍ଷି ଅତ୍ରିଙ୍କ ପତ୍ନୀ ତପସ୍ୱିନୀ ଅନସୂୟା ସୀତାଙ୍କୁ ଆଶୀର୍ବାଦ ଦେଇଥିଲେ ସବୁ ସେ ମନେପକାଇଦେଲେ । ଚିତ୍ରକୂଟକୁ ଦେଖି ଭରତଙ୍କର ସ୍ମୃତି ଜାଗରିତ ହେଲା । ଭରଦ୍ୱାଜଙ୍କର ଆଶ୍ରମ, ଶୃଙ୍ଗବେରପୁର ଓ ସରଯୂତୀରସ୍ଥ ଅଯୋଧ୍ୟା ନଗରୀ ଦୂରରୁ ଦେଖାଗଲା । ରାମ କହିଲେ – ବୈଦେହୀ, ତୁମେ ବର୍ତ୍ତମାନ ଫେରିଆସିଲ । ଏହି ରମ୍ୟ ନଗରୀକୁ ପ୍ରଣାମ କର । ବିଭୀଷଣ ଓ ବାନରମାନେ ଇନ୍ଦ୍ରଙ୍କ ଅମରାବତୀ ପରି ସମୃଦ୍ଧିଶାଳୀ ଅଯୋଧ୍ୟାକୁ ଦେଖି ଆନନ୍ଦିତ ହେଲେ ।

ଦୂରରୁ ଅଯୋଧ୍ୟା ଦେଖାଯାଉଥିଲେ ମଧ୍ୟ ରାମ ଭରଦ୍ୱାଜ ଆଶ୍ରମରେ ଓହ୍ଲାଇ ଋଷି ଭରଦ୍ୱାଜଙ୍କୁ ପ୍ରଣିପାତ କଲେ । ଭରଦ୍ୱାଜ ଗୋଟିଏ ଦିନ ରହି ତାଙ୍କର ଆତିଥ୍ୟ ଗ୍ରହଣ

କରିବାପାଇଁ ରାମଙ୍କୁ ଅନୁରୋଧ ଜଣାଇବାରୁ ରାମ ପରଦିନ ଅଯୋଧ୍ୟା ଫେରିଯିବାପାଇଁ ସ୍ଥିର କଲେ ।

ରାମ ହନୁମାନଙ୍କୁ ଡାକି କହିଲେ, ତୁମେ ଆଗରେ ଅଯୋଧ୍ୟାକୁ ଯାତ୍ରା କର । ବାଟରେ ନିଷାଦରାଜ ଗୁହକଙ୍କର କୁଶଳ ଜିଜ୍ଞାସା କରି ଅଯୋଧ୍ୟାରେ ଭରତଙ୍କୁ ମୋର କୁଶଳ ସମ୍ବାଦ ଜଣାଇଦେବ । ବିଭୀଷଣ, ସୁଗ୍ରୀବ ଓ ବାନରବୀରମାନଙ୍କ ସହିତ ମୁଁ ଅଯୋଧ୍ୟା ନିକଟରେ ପହଞ୍ଚିବା କଥା ତାଙ୍କୁ ଜଣାଇ ତାଙ୍କର କି ପ୍ରତିକ୍ରିୟା ହେବ, ତାହା ବୁଝିବ । ଏତେବଡ଼ ରାଜ୍ୟ ଓ ଐଶ୍ୱର୍ଯ୍ୟ ଲାଭକରି ଭରତଙ୍କର କିଛି ପରିବର୍ତ୍ତନ ହୋଇଥିବା ଲକ୍ଷ୍ୟ କଲେ ମୋତେ ଆସି ଜଣାଇବ ।

ରାମଙ୍କର ଆଦେଶ ଅନୁସାରେ ହନୁମାନ ଶୃଙ୍ଗବେରପୁରରେ ଗୁହକଙ୍କୁ ସାକ୍ଷାତକରି ଅଯୋଧ୍ୟା ଉପକଣ୍ଠ ନନ୍ଦୀଗ୍ରାମରେ ପହଞ୍ଚିଲେ । ସେଠାରେ ମୃଗଚର୍ମ ଓ ବଲ୍କଳ ପରିହିତ ଜଟାଧାରୀ ଭରତଙ୍କୁ ଦେଖିଲେ । ଧର୍ମଜ୍ଞ ଭରତ ଭୋଗବିଳାସର ବହୁ ଦୂରରେ ରହି ତପସ୍ୱୀର ଜୀବନ ଯାପନ କରୁଥିଲେ ଏବଂ ରାମଙ୍କର ପାଦୁକାକୁ ଆଗରେ ରଖି ରାଜ୍ୟଶାସନ କରୁଥିଲେ । ବାନରବୀର ତ୍ୟାଗପୂତ ଭରତଙ୍କ ଆଚରଣରେ ଅଭିଭୂତ ହେଲେ । ସେ ଭରତଙ୍କ ସହିତ ମିଳିତ ହୋଇ କହିଲେ, ରାଜକୁମାର, ଆପଣଙ୍କର ଦୁଃଖର ଦିନ ଶେଷ ହୋଇଛି । ରାମ ସୀତା ଓ ଲକ୍ଷ୍ମଣଙ୍କ ସହିତ ଫେରି ଆସୁଛନ୍ତି ଏବଂ ବର୍ତ୍ତମାନ ଭରଦ୍ୱାଜ ଆଶ୍ରମରେ ଅବସ୍ଥାନ କରୁଛନ୍ତି ।

ଭରତ ଆନନ୍ଦରେ ମୂର୍ଚ୍ଛିତ ହେଲେ । ତାଙ୍କର ନୟନରୁ ଆନନ୍ଦାଶ୍ରୁ ବହିବାକୁ ଲାଗିଲା । ସେ କହିଲେ – ସୌମ୍ୟ, ତୁମେ ଏହି ପ୍ରିୟ ସମ୍ବାଦ ଦେଇଥିବାରୁ ତୁମକୁ ଲକ୍ଷେ ଗାଭୀ, ଏକଶତ ଗ୍ରାମ ଓ ଅଳଙ୍କାରଯୁକ୍ତା ଷୋଡ଼ଶ ସୁନ୍ଦରୀଯୁବତୀଙ୍କୁ ଉପହାର ଦେଉଛି । ବନଯାତ୍ରାଠାରୁ ରାବଣ ବଧ ପର୍ଯ୍ୟନ୍ତ ରାମଙ୍କର ଚତୁର୍ଦ୍ଦଶବର୍ଷ ବନବାସର କାହାଣୀ ସବିସ୍ତାର ବର୍ଣ୍ଣନା କରି ହନୁମାନ କହିଲେ, କାଲି ପୁଷ୍ୟା ନକ୍ଷତ୍ରରେ ରାମ ଏଠାକୁ ଫେରି ଆସୁଛନ୍ତି ଓ ଭ୍ରାତାଙ୍କ ସହିତ ଆପଣଙ୍କର ପୁନର୍ମିଳନ ଘଟୁଛି । କୃତାଞ୍ଜଳିପୂର୍ବକ ରାମଙ୍କୁ ସ୍ମରଣ କରି ଭରତ କହିଲେ, ଆଜି ବହୁ ପ୍ରତୀକ୍ଷା ପରେ ମୋର ମନୋରଥ ପୂର୍ଣ୍ଣ ହେଲା ।

## ୧୨୪ ॥ ରାମାଭିଷେକ

ଅଯୋଧ୍ୟାରେ ରାମଙ୍କର ସମ୍ବର୍ଦ୍ଧନାର ସମସ୍ତ ଆୟୋଜନ କରିବା ନିମନ୍ତେ ଭରତ ଶତ୍ରୁଘ୍ନଙ୍କୁ ଆଦେଶ ଦେଲେ । ରାଜପଥ, ପ୍ରାସାଦ ଓ ମନ୍ଦିରମାନ ସୁସଜ୍ଜିତ ହେଲା । ଆବାଳବୃଦ୍ଧବନିତା ଅଯୋଧ୍ୟାର ନାଗରିକଗଣ ଚତୁରଙ୍ଗ ସେନା, ବ୍ରାହ୍ମଣ, ଅମାତ୍ୟ ଓ ଆଠଜଣ ମନ୍ତ୍ରୀଙ୍କ ସହିତ ନନ୍ଦୀଗ୍ରାମରେ ସହସ୍ର ସହସ୍ର ସଂଖ୍ୟାରେ ଉପସ୍ଥିତ ହେଲେ । ବନ୍ଦୀମାନେ ସ୍ତୁତି ପାଠ କଲେ । ଦୁନ୍ଦୁଭି ବାଜିଉଠିଲା । ଧର୍ମଜ୍ଞ ଭରତ ଜ୍ୟେଷ୍ଠଭ୍ରାତାଙ୍କର ପାଦୁକାଦ୍ୱୟ ମସ୍ତକରେ ରଖି ଶ୍ୱେତଛତ୍ର ଓ ଚାମର ଧରି ଆଗେ ଆଗେ ଖାଲି ପାଦରେ ଚାଲିଲେ ।

ଏହି ସମୟରେ ଦୂର ଆକାଶରେ ପୁଷ୍ପକବିମାନ ଦେଖାଗଲା । ସେଠାରେ ଉପସ୍ଥିତ ସ୍ତ୍ରୀ, ବାଳକ, ଯୁବକ, ବୃଦ୍ଧ ସମସ୍ତେ 'ହେଇ ରାମ ଆସିଗଲେ' ବୋଲି ଆନନ୍ଦ ଧ୍ୱନି କରିବାକୁ ଲାଗିଲେ । ପୁଷ୍ପକ ବିମାନ ଅବତରଣ କରିବାମାତ୍ରେ ତାଙ୍କୁ ପ୍ରଣାମ କରି ସ୍ୱାଗତ କରୁଥିବା ଭରତଙ୍କୁ ରାମ ଉଠାଇନେଇ ଆଲିଙ୍ଗନ କଲେ । ଭରତ ଲକ୍ଷ୍ମଣଙ୍କୁ ଅଭିନନ୍ଦନ, ସୀତାଙ୍କର ପଦବନ୍ଦନା ଓ ବିଭୀଷଣ, ସୁଗ୍ରୀବ, ଜାମ୍ବବାନ ଓ ଅଙ୍ଗଦ ଆଦି ବାନରବୀରମାନଙ୍କୁ ଆଲିଙ୍ଗନ କଲେ । ରାମ ଶୋକରେ କ୍ଷୀଣା ଓ ବିଷଣ୍ଣା ମାତା କୌଶଲ୍ୟାଙ୍କର ପଦବନ୍ଦନା କଲେ । ସୁମିତ୍ରା ଓ କୈକେୟୀଙ୍କୁ ଅଭିବାଦନ କରି ନାଗରିକମାନଙ୍କର ସମ୍ବର୍ଦ୍ଧନା ଗ୍ରହଣ କଲେ । ରାଜ-ସନ୍ନ୍ୟାସୀ ଭରତ ଯେଉଁ ପାଦୁକାଦ୍ୱୟକୁ ଉପାସନା କରି ଚଉଦବର୍ଷ ରାଜ୍ୟ ଶାସନ କରିଥିଲେ, ତାହା ତାଙ୍କୁ ପିନ୍ଧାଇଦେଲେ ।

ଭରତ କହିଲେ – ରାଘବ, ଆପଣ ମୋର ମାତାଙ୍କ ବରକୁ ସମ୍ମାନ କରି ମୋତେ ଯେଉଁ ରାଜ୍ୟ ଦେଇଥିଲେ, ତାହା ମୁଁ ବର୍ତ୍ତମାନ ଆପଣଙ୍କୁ ଫେରାଇଦେଉଛି । ବନବାସ କରି ଆପଣ ବହୁଦୁଃଖ ଭୋଗ କରିଛନ୍ତି । ବର୍ତ୍ତମାନ ରାଜସିଂହାସନରେ ଅଭିଷିକ୍ତ ହୋଇ ରାଜାର କର୍ତ୍ତବ୍ୟପାଳନ କରନ୍ତୁ । ରାମଙ୍କର ଶୁଭ ଅଭିଷେକ ପାଇଁ ପ୍ରସ୍ତୁତି ଚାଲିଲା । ରାମଚନ୍ଦ୍ରଙ୍କର ଚଉଦବର୍ଷ ଧରି ବଢ଼ିଥିବା ଜଟା ଓ ଶ୍ମଶ୍ରୁକୁ କ୍ଷୌର କରିବାପାଇଁ ନିପୁଣ ନାପିତମାନେ ଶତ୍ରୁଘ୍ନଙ୍କ ଆଦେଶରେ ରାମଙ୍କୁ ଘେରିଗଲେ । ରାମ ଜଟାମୁକ୍ତ ହୋଇ ସ୍ନାନ ଶେଷରେ ଚନ୍ଦନ, ଅଗୁରୁ ଆଦି ଅଙ୍ଗରାଗ ଲଗାଇ ବହୁମୂଲ୍ୟ ବସ୍ତ୍ର ଓ ଅଳଙ୍କାର ପରିଧାନ କଲେ । ଭରତ, ଲକ୍ଷ୍ମଣ, ବାନରରାଜ ଓ ରାକ୍ଷସରାଜ ବିଭୀଷଣ ସ୍ନାନାଦି ଶେଷ କଲେ । ଶତ୍ରୁଘ୍ନ ରାମ ଓ ଲକ୍ଷ୍ମଣଙ୍କୁ ବହୁମୂଲ୍ୟ ହାର ଆଣି ପିନ୍ଧାଇଲେ । ଦଶରଥଙ୍କର ପତ୍ନୀମାନେ ସୀତାଙ୍କର ପ୍ରସାଧନ ଦାୟିତ୍ୱ ଗ୍ରହଣ କଲେ । କୌଶଲ୍ୟା ବାନରପତ୍ନୀମାନଙ୍କୁ ଯତ୍ନର ସହ ଅଳଙ୍କୃତ କରାଇଲେ ।

ଶତ୍ରୁଘ୍ନଙ୍କ ଆଦେଶରେ ସାରଥି ସୁମନ୍ତ୍ର ଏକ ସୁନ୍ଦର ଜ୍ୟୋତିର୍ମୟ ରଥ ଆଣି ରାମଙ୍କ ନିକଟରେ ଉପସ୍ଥିତ ହେଲେ । ରାମ ସେହି ରଥରେ ଆରୋହଣ କରି ନଗର ଅଭିମୁଖରେ ଯାତ୍ରା କଲେ । ଭରତ ଅଶ୍ୱର ରଶ୍ମି, ଶତ୍ରୁଘ୍ନ ଶ୍ୱେତଛତ୍ର ଓ ଲକ୍ଷ୍ମଣ ଚାମର ଧାରଣ କରି ରାମଙ୍କ ପାଖରେ ଠିଆହେଲେ । ବିଭୀଷଣ ଆଲଟ ପକାଇଲେ । ତାଙ୍କ ସହିତ ଯାଉଥିବା ମନ୍ତ୍ରୀ ଓ ନଗରବାସୀଙ୍କୁ ରାମ ସୁଗ୍ରୀବଙ୍କର ମିତ୍ରତା, ହନୁମାନଙ୍କର ବୀରତ୍ୱ, ରାକ୍ଷସମାନଙ୍କର ବଳବିକ୍ରମ ଓ ବିଭୀଷଣଙ୍କର ସାହାଯ୍ୟ ବୃତ୍ତାନ୍ତ ବର୍ଣ୍ଣନା କଲେ । ଅଯୋଧ୍ୟାବାସୀମାନେ ଆନନ୍ଦ ଓ ବିସ୍ମୟରେ ତାହା ଶୁଣିବାକୁ ଲାଗିଲେ ।

ଭରତ ସୁଗ୍ରୀବଙ୍କୁ କହିଲେ, ରାମଙ୍କର ଅଭିଷେକ ପାଇଁ ସମୁଦ୍ରରୁ ଜଳ ଆଣିବାର ବ୍ୟବସ୍ଥା କର । ସୁଗ୍ରୀବ ବାନରବୀରମାନଙ୍କୁ ପ୍ରେରଣ କରି ଚାରି ସମୁଦ୍ରରୁ ଚାରୋଟି ଜଳପୂର୍ଣ୍ଣ ସ୍ୱର୍ଣ୍ଣଘଟ ଆଣି ପହଞ୍ଚାଇଦେଲେ । ପାଞ୍ଚଶହ ନଦୀର ଜଳ ମଧ୍ୟ କଳସରେ ପୂର୍ଣ୍ଣ କରି ଅଣାଗଲା । ଶତ୍ରୁଘ୍ନ କୁଳପୁରୋହିତ ବଶିଷ୍ଠଙ୍କୁ ଅଭିଷେକ ପାଇଁ ନିମନ୍ତ୍ରିତ କଲେ । ବଶିଷ୍ଠ ସୀତାଙ୍କୁ ରାମଙ୍କ ସହିତ ଏକ ରତ୍ନମୟ ପୀଠ ଉପରେ ବସାଇ, ବାମଦେବ, ଜାବାଳି, କାଶ୍ୟପ, ଗୌତମ ଆଦି ମୁନିମାନଙ୍କ ସହ ସୁଗନ୍ଧ ଜଳରେ ରାମଙ୍କର ଅଭିଷେକ

ସମାପନ କଲେ । ପୂର୍ବେ ଇକ୍ଷ୍ୱାକୁ ବଂଶର ରାଜାମାନେ ବ୍ରହ୍ମାଙ୍କ ନିର୍ମିତ ଯେଉଁ ରତ୍ନକିରୀଟ ପରିଧାନ କରି ଅଭିଷେକ ହେଉଥିଲେ, ରାମ ତାହା ପରିଧାନ କଲେ । ଶତ୍ରୁଘ୍ନ ଶ୍ୱେତଛତ୍ର ଧାରଣ କଲେ, ସୁଗ୍ରୀବ ଚାମର ପକାଇଲେ, ବିଭୀଷଣ ତାଙ୍କୁ ଶ୍ୱେତପଦ୍ମଯୁକ୍ତ କାଞ୍ଚନର ମାଳା ଉପହାର ଦେଲେ । ଇନ୍ଦ୍ରଙ୍କ ପ୍ରଦତ୍ତ ଏକ ମୁକ୍ତାଖଚିତ ମଣିମୟ ହାର ପବନଙ୍କ ଦ୍ୱାରା ଆନୀତ ହେଲା । ରାମ ବ୍ରାହ୍ମଣମାନଙ୍କୁ ଶତସହସ୍ର ଅଶ୍ୱ, ଧେନୁ, ବୃଷ ଓ କୋଟି କୋଟି ସ୍ୱର୍ଣ୍ଣମୁଦ୍ରା ପ୍ରଦାନ କଲେ । ସୁଗ୍ରୀବ, ଅଙ୍ଗଦ ଓ ବାନରବୀରମାନଙ୍କୁ ସୁବର୍ଣ୍ଣ ଓ ରତ୍ନମୟ ହାରମାନ ଉପହାର ଦିଆଗଲା । କୃଷ୍ଣନୟନା ସୀତା ବାନରଶ୍ରେଷ୍ଠ ହନୁମାନଙ୍କୁ ସବୁଠାରୁ ସୁନ୍ଦର ଓ ମୂଲ୍ୟବାନ ହାର ନିଜ ଗଳାରୁ କାଢ଼ି ଉପହାର ଦେଲେ । ହନୁମାନ ସୀତାଙ୍କ ପ୍ରଦତ୍ତ ସେହି ହାରକୁ ପିନ୍ଧି କୃତକୃତ୍ୟ ହେଲେ ।

ରାମଙ୍କ ଅଭିଷେକ ପରେ ସୁଗ୍ରୀବ, ବିଭୀଷଣ ଓ ବାନରବୀରମାନେ ରାମଙ୍କଠାରୁ ବିଦାୟ ନେଇ ନିଜ ଦେଶକୁ ଫେରିଗଲେ । ରାମ ଲକ୍ଷ୍ମଣଙ୍କୁ କହିଲେ, ଆମର ପୂର୍ବପୁରୁଷମାନେ ଯେଉଁ ରାଜ୍ୟକୁ ବାହୁବଳରେ ଶାସନ କରୁଥିଲେ, ତୁମେ ତାହା ମୋ ସହିତ ମିଶି ଶାସନ କର ଏବଂ ଯୁବରାଜ ପଦ ଗ୍ରହଣ କର । ରାମ ଯେତେ କହିଲେ ମଧ ଲକ୍ଷ୍ମଣ ତାହା ଗ୍ରହଣ କଲେ ନାହିଁ । ଅନନ୍ତର ରାମ ଭରତଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କଲେ । ରାମ ଅଶ୍ୱମେଧ, ବାଜପେୟ ଆଦି ବହୁ ଯଜ୍ଞ କରି ଦୀର୍ଘକାଳ ସୁଖଶାନ୍ତିରେ ରାଜ୍ୟ .ଶାସନ କଲେ । ତାଙ୍କର ଶାସନରେ କୌଣସି ସ୍ତ୍ରୀ ବୈଧବ୍ୟ ଦୁଃଖ ଭୋଗ କଲେ ନାହିଁ । ହିଂସ୍ର ଜନ୍ତୁମାନଙ୍କଠାରୁ ଭୟ ରହିଲା ନାହିଁ । ରୋଗ ଭୟ, ଦସ୍ୟୁ ଭୟ ଦୂର ହେଲା । ସନ୍ତାନମାନଙ୍କର ଅକାଳ ମୃତ୍ୟୁର ଦୁଃଖ ପିତାମାତାଙ୍କୁ ହେଲା ନାହିଁ । ହିଂସା ପରିବର୍ତ୍ତେ ଧର୍ମପଥରେ ରହି ସମସ୍ତେ କାର୍ଯ୍ୟ କଲେ । ଯଥାସମୟରେ ବର୍ଷା ହେଉଥିଲା । ବୃକ୍ଷମାନେ ନିତ୍ୟ ପୁଷ୍ପିତ ଓ ପ୍ରଚୁର ଫଳଭାରରେ ଅବନତ ରହୁଥିଲେ । ପ୍ରଜାମାନେ ଧର୍ମପରାୟଣ, ସତ୍ୟବାଦୀ ଓ ଶୁଭଲକ୍ଷଣଯୁକ୍ତ ହେଲେ । ଚାରିଆଡ଼େ ଶାନ୍ତି ସନ୍ତୋଷ ଓ ଆନନ୍ଦ ବିରାଜମାନ ହୋଇ ଜଗତ ରାମମୟ ହୋଇଗଲା ।

## ୧୨୫ ॥ ଫଳଶ୍ରୁତି

ପୂର୍ବକାଳରେ ମହର୍ଷି ବାଲ୍ମୀକି ଏହି ଆଦିକାବ୍ୟ ରଚନା କରିଥିଲେ । ଏହି ଗ୍ରନ୍ଥ ପାଠକଲେ କୀର୍ତ୍ତି, ଯଶ ଓ ଆୟୁବୃଦ୍ଧି ହୁଏ । ରାଜାମାନେ ବିଜୟ ଲାଭ କରନ୍ତି । ଏହି ଗ୍ରନ୍ଥର ପାଠକ ଓ ଶ୍ରବଣକର୍ତ୍ତା ଉଭୟ ପାପରୁ ମୁକ୍ତ ହୁଅନ୍ତି । ପୁତ୍ରକାମୀ ବ୍ୟକ୍ତି ପୁତ୍ରଲାଭ ଓ ଧନକାମୀ ଧନଲାଭ କରେ । ନାରୀମାନେ ପୁତ୍ରବତୀ ହୁଅନ୍ତି । ବିଦେଶଯାତ୍ରୀ ବ୍ୟକ୍ତି ଫେରିଆସି ସ୍ୱଜନଙ୍କ ସହିତ ମିଳିତ ହୁଏ । ରାମଙ୍କର ବିଜୟଗାଥା ଯେଉଁମାନେ ଶ୍ରଦ୍ଧାର ସହିତ ଶୁଣନ୍ତି, ସେମାନେ ସମସ୍ତ ଦୁର୍ଗତିରୁ ମୁକ୍ତିଲାଭ କରନ୍ତି । ରାମଙ୍କଠାରୁ ସେମାନଙ୍କର ଅଭୀଷ୍ଟ ବରଲାଭ ଓ ସେମାନଙ୍କର ମନୋବାଞ୍ଛା ପୂର୍ଣ୍ଣ ହୁଏ । ଭକ୍ତିର ସହିତ ଏହି ରାମାୟଣ ଗ୍ରନ୍ଥକୁ ଯେଉଁମାନେ ଲେଖନ୍ତି, ସେମାନେ ସ୍ୱର୍ଗଲୋକ ଲାଭ କରନ୍ତି ।

# ପରିଶିଷ୍ଟ—୧

# ଉତ୍ତରକାଣ୍ଡ

## ୧ ।। ରାବଣର ପୂର୍ବ ବୃତ୍ତାନ୍ତ

ରାମାଭିଷେକ ପରେ ଅଗସ୍ତ୍ୟ, କଶ୍ୟପ, ଜମଦଗ୍ନି, ଭରଦ୍ୱାଜ ପ୍ରଭୃତି ମହର୍ଷିମାନେ ରାମଙ୍କର ଅଭିନନ୍ଦନପାଇଁ ଉପସ୍ଥିତ ହେଲେ । ସେମାନେ କହିଲେ, ରାବଣ ଓ ଇନ୍ଦ୍ରଜିତ୍‌ର ପରାଭବ ଏକ ଆଶ୍ଚର୍ଯ୍ୟର ବିଷୟ ।

ରାବଣର ବଂଶବୃତ୍ତାନ୍ତ ବର୍ଣ୍ଣନା କରି ମହର୍ଷି ଅଗସ୍ତ୍ୟ କହିଲେ, ସତ୍ୟଯୁଗରେ ବ୍ରହ୍ମର୍ଷି ପୁଲସ୍ତ୍ୟ ଥିଲେ ବ୍ରହ୍ମାଙ୍କର ପୁତ୍ର । ରାଜର୍ଷି ତୃଣବିନ୍ଦୁଙ୍କର କନ୍ୟା ପୁଲସ୍ତ୍ୟଙ୍କୁ ସନ୍ତୁଷ୍ଟ କରି ପୁତ୍ରଭିକ୍ଷା କଲେ । ତାଙ୍କ ଗର୍ଭରୁ ବିଶ୍ରବାଙ୍କର ଜନ୍ମହେଲା । ବିଶ୍ରବାଙ୍କର ଜ୍ୟେଷ୍ଠପୁତ୍ର ବୈଶ୍ରବଣ । ଭରଦ୍ୱାଜଙ୍କ କନ୍ୟା ଦେବବନ୍ଦିନୀଙ୍କ ଗର୍ଭରୁ ତାଙ୍କର ଜନ୍ମ । ବ୍ରହ୍ମାଙ୍କ ବରରେ ସେ କୁବେର ହୋଇଥିଲେ । ସେ ପୁଷ୍ପକ ବିମାନ ଲାଭ କରି ମୟଦାନବ ରଚିତ ଲଙ୍କାପୁରୀରେ ବାସ କଲେ ।

ପ୍ରଜାପତି ବ୍ରହ୍ମାଙ୍କ ଦ୍ୱାରା ପ୍ରଥମେ ଜଳସୃଷ୍ଟି ଓ ପରେ ପ୍ରାଣୀମାନଙ୍କର ସୃଷ୍ଟିହେଲା । 'ଆମେ ଜଳକୁ ରକ୍ଷା କରିବୁ' (ରକ୍ଷାମଃ) ବୋଲି ଯେଉଁ ଦଳେ ପ୍ରାଣୀ ବାହାରି କହିଲେ, ସେମାନଙ୍କର ନାମ ହେଲା ରାକ୍ଷସ । ଯେଉଁମାନେ କହିଲେ, 'ଜଳର ପୂଜା କରିବୁ' (ଯକ୍ଷାମଃ) ସେମାନେ ହେଲେ ଯକ୍ଷ । ସୁକେଶ ରାକ୍ଷସ ସହିତ ଗନ୍ଧର୍ବକନ୍ୟା ଦେବବତୀଙ୍କର ବିବାହ ହେଲା । ତାଙ୍କର ତିନିପୁତ୍ର ହେଲେ, ମାଲ୍ୟବାନ, ସୁମାଳୀ ଓ ମାଳୀ । ବ୍ରହ୍ମାଙ୍କୁ ତପସ୍ୟାରେ ସନ୍ତୁଷ୍ଟ କରି ସେମାନେ ପ୍ରଥମେ ଲଙ୍କାରେ ବାସ କରୁଥିଲେ । କିନ୍ତୁ ସେମାନଙ୍କର ବଂଶଧରଙ୍କର ଉତ୍ପାତରେ ଅତିଷ୍ଠ ହୋଇ ଦେବତା ଓ ରାକ୍ଷସମାନେ ନାରାୟଣଙ୍କର ଶରଣ ନେଲେ । ପୀତାମ୍ବର ବିଷ୍ଣୁ ଶଙ୍ଖ, ଚକ୍ର, ଗଦା, ଧନୁ ଓ ଖଡ଼୍‌ଗ ଧରି ରାକ୍ଷସ ସୈନ୍ୟକୁ ବିଧ୍ୱସ୍ତ କଲେ ଓ ମାଳୀକୁ ବଧ କଲେ । ସୁମାଳୀ ଓ ମାଲ୍ୟବାନ୍ ପଳାଇଯାଇ ପାତାଳରେ ବାସକଲେ ।

ସୁମାଳୀର କନ୍ୟା କୈକସୀ ବିଶ୍ରବାଙ୍କୁ ସନ୍ତୁଷ୍ଟ କରି ତିନି ପୁତ୍ର ଓ ଏକ କନ୍ୟା ଲାଭ କଲେ । ଏହି ପୁତ୍ରମାନେ ହେଲେ, ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣ ଏବଂ କନ୍ୟା ଶୂର୍ପଣଖା । ଦିନେ କୁବେର ପୁଷ୍ପକ ରଥରେ ଚଢ଼ି ବିଶ୍ରବାଙ୍କ ପାଖକୁ ଆସିଲେ । କୈକସୀ କୁବେରଙ୍କର ଐଶ୍ୱର୍ଯ୍ୟ ଦେଖାଇ ପୁତ୍ର ରାବଣଙ୍କୁ କହିଲେ, ତୁମେ ଏହାଙ୍କ ପରି ହୁଅ ।

ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣ ଘୋର ତପସ୍ୟା କରି ବ୍ରହ୍ମାଙ୍କୁ ସନ୍ତୁଷ୍ଟ କଲେ । ରାବଣ କହିଲା, ଦୈତ୍ୟ, ଦାନବ, ଦେବତା, ରାକ୍ଷସ, ଯକ୍ଷ, ବିହଙ୍ଗ, ନାଗ କେହି ତାକୁ ମାରିପାରିବେ ନାହିଁ । ରାବଣ ମନୁଷ୍ୟକୁ ଅବଜ୍ଞା କରୁଥିବା ଯୋଗୁଁ ଏମାନଙ୍କ ମଧ୍ୟରେ

ମନୁଷ୍ୟ କଥା କହିଲା ନାହିଁ । ବ୍ରହ୍ମା କହିଲେ, ତାହାହିଁ ହେବ । ବିଭୀଷଣ ବ୍ରହ୍ମବିଦ୍ୟା ଲାଭ କରି ଧର୍ମଜ୍ଞ ହେବାପାଇଁ ପ୍ରାର୍ଥନା କଲେ । ବ୍ରହ୍ମା ତାଙ୍କୁ ମଧ 'ତଥାସ୍ତୁ' କହି ବର ଦେଲେ । କୁମ୍ଭକର୍ଣ୍ଣ ଜନ୍ମରୁ କ୍ଷୁଧାତୁର ହୋଇ ସବୁ ପ୍ରାଣୀଙ୍କୁ ଭକ୍ଷଣ କରୁଥିବାରୁ ବ୍ରହ୍ମା ତାଙ୍କୁ ବର ନ ଦେଇ ବର୍ଷର ଅଧିକାଂଶ ସମୟ ସେ ଶୋଇରହିବ ବୋଲି କହିଲେ । ବଳଦୃପ୍ତ ରାବଣ ତାର ସେନାପତି ପ୍ରହସ୍ତଙ୍କୁ କୁବେରଙ୍କ ପାଖକୁ ପଠାଇ ଲଙ୍କା ଅଧିକାର କଲା । କିଛି ଦିନ ପରେ କୈଳାସ ପର୍ବତରେ ରହୁଥିବା କୁବେରଙ୍କୁ ଯୁଦ୍ଧରେ ହରାଇ ସେ ପୁଷ୍ପକ ବିମାନ ହସ୍ତଗତ କଲା । ମୟଦାନବର କନ୍ୟା ମନ୍ଦୋଦରୀକୁ ବିବାହ କରି ସେ ନିଜର ଶ୍ୱଶୁରଠାରୁ ଏକ ଅମୋଘ ଶକ୍ତିଅସ୍ତ୍ର ଲାଭ କରିଥିଲା । ଏହି ଶକ୍ତି ପରେ ସେ ଲକ୍ଷ୍ମଣଙ୍କ ପ୍ରତି ପ୍ରୟୋଗ କରିଥିଲା ।

ରାବଣ କୈଳାସ ପର୍ବତର ପାଦଦେଶକୁ ଯାଇ ମହାଦେବଙ୍କୁ ସ୍ଥାନଚ୍ୟୁତ କରିବାପାଇଁ ଇଚ୍ଛାକଲା । ଶିବଙ୍କର ବାହନ ନନ୍ଦୀଙ୍କର ବାନରମୁଖ ଦେଖି ସେ ଉଚ୍ଚସ୍ୱରରେ ହସିବାକୁ ଲାଗିଲା । ନନ୍ଦୀ କ୍ରୁଦ୍ଧ ହୋଇ ଅଭିଶାପ ଦେଲେ, ମୋ ସଦୃଶ ବାନରମାନେ ଜନ୍ମହୋଇ ତୋର ବଂଶକୁ ଧ୍ୱଂସ କରିବେ । ଶିବଙ୍କୁ ଅବଜ୍ଞା କରି ରାବଣ ନିଜ ବାହୁବଳରେ କୈଳାସ ପର୍ବତକୁ ଉଠାଇବାକୁ ଲାଗିଲା । ପର୍ବତବାସୀ ଶିବଙ୍କର ଅନୁଚରମାନେ କମ୍ପିତ ହେବାରୁ ମହାଦେବ ନିଜ ଗୋଡ଼ର ବୁଢ଼ାଆଙ୍ଗୁଠିରେ ପର୍ବତକୁ ଚାପିଦେଲେ । ସେଥିରେ ରାବଣର ବାହୁ ଚାପି ହୋଇଗଲା ଓ ସେ ଘୋର ଗର୍ଜନ କରି ରୋଦନ କରିବାକୁ ଲାଗିଲା । ପୂର୍ବରୁ ସେ ଦଶାନନ ଥିଲା । ସେ ଏପରି ରାବ କଲା ଯେ ତାର ନାମ ସେହିଦିନଠାରୁ ରାବଣ ହୋଇଗଲା । ପରେ ସ୍ତବଦ୍ୱାରା ମହାଦେବଙ୍କୁ ସନ୍ତୁଷ୍ଟ କରି ଚନ୍ଦ୍ରହାସ ନାମକ ଏକ ପ୍ରଚଣ୍ଡ ଖଡ୍‌ଗ ଲାଭ କଲା ।

## ୨ ॥ ଇନ୍ଦ୍ରଜିତ୍, ବେଦବତୀ, କାର୍ତ୍ତବୀର୍ଯ୍ୟ, ବାଳୀ, ଅନରଣ୍ୟ

ରାବଣ ବ୍ରହ୍ମା ଓ ଶିବଙ୍କ ବରରେ ନିର୍ଭୟ ହୋଇ ଦେବତା, ଋଷି ଓ ମନୁଷ୍ୟ ସମସ୍ତଙ୍କୁ କଷ୍ଟ ଦେବାକୁ ଲାଗିଲା । ବେଦବତୀ ନାମକ ଏକ ସୁନ୍ଦରୀ କନ୍ୟା ଜଟା ଓ ମୃଗଚର୍ମ ଧାରଣ କରି ହିମାଳୟରେ ତପସ୍ୟା କରୁଥିଲେ । ତାଙ୍କର ରୂପରେ ମୁଗ୍ଧ ହୋଇ ରାବଣ ତାଙ୍କୁ ବିବାହ କରିବାପାଇଁ ପ୍ରସ୍ତାବ ଦେଲା । ବେଦବତୀ କହିଲେ, ମୁଁ ବିଷ୍ଣୁଙ୍କ ଛଡ଼ା କାହାରିକୁ ବରଣ କରିବି ନାହିଁ । ସେଥିପାଇଁ ମୁଁ ତପସ୍ୟା କରୁଛି । ସେ ବେଦବତୀଙ୍କର କେଶ ଆକର୍ଷଣ କରି ବଳାତ୍କାର କରିବାରୁ ସେ ଅଭିଶାପ ଦେଲେ, ମୁଁ ତୋର ବଧ ପାଇଁ କୌଣସି ଜଣେ ଧାର୍ମିକ ରାଜାର ଅଯୋନିସମ୍ଭୂତା କନ୍ୟା ରୂପେ ଜନ୍ମ ହେବି । ଏହା କହି ସେ ଜ୍ୱଳନ୍ତ ଚିତାରେ ଝାସ ଦେଲେ । ପରେ ବେଦବତୀ ସୀତାରୂପେ ଜନ୍ମ ହେଲେ ।

ରାବଣ ସମସ୍ତ ଦେବତା ଓ ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲା । ଇନ୍ଦ୍ରଙ୍କ ସହିତ ଯୁଦ୍ଧରେ ରାବଣର ସୈନ୍ୟମାନେ ବହୁସଂଖ୍ୟାରେ ମୃତାହତ ହୋଇ ପରାସ୍ତ ଓ ରାବଣ ବନ୍ଦୀ ହେବାକୁ ବସିଥିଲା । କିନ୍ତୁ ମାୟାଯୁଦ୍ଧରେ ରାବଣପୁତ୍ର ମେଘନାଦ ଇନ୍ଦ୍ରଙ୍କୁ ପରାସ୍ତ କରି

ବନ୍ଦୀ କଲା । ବ୍ରହ୍ମାଙ୍କ ଅନୁରୋଧରେ ଇନ୍ଦ୍ର ମୁକ୍ତ ହେଲେ । ସେହିଦିନଠାରୁ ମେଘନାଦ ଇନ୍ଦ୍ରଜିତ୍ ନାମରେ କଥିତ ହେଲା । ରାବଣ ପାତାଳରେ ନାଗରାଜଙ୍କର ନଗରୀ ଭୋଗବତୀକୁ ଆକ୍ରମଣ କରି ଅଧିକାର କଲା । ନିବାତ କବଚ ନାମରେ ଦୈତ୍ୟଗଣଙ୍କ ସହିତ ତାର ଯୁଦ୍ଧ ହେଲା । ମାତ୍ର କେହି କାହାକୁ ହରାଇ ନ ପାରି ଅଗ୍ନିକୁ ସାକ୍ଷୀ ରଖି ମିତ୍ର ହେଲେ । ପଶ୍ଚିମ ସମୁଦ୍ରର ଦ୍ୱୀପରେ ଏକ ଗହ୍ୱର ମଧ୍ୟରେ ଭଗବାନ୍ କପିଳ ନିଦ୍ରିତ ଥିଲେ । ଲକ୍ଷ୍ମୀ ତାଙ୍କୁ ଚାମର ସେବା କରୁଥିଲେ । ରାବଣ ଲକ୍ଷ୍ମୀଙ୍କୁ ଧରିବାକୁ ଯିବାରୁ ସେହି ସୁପ୍ତପୁରୁଷ ଏପରି ଅଟ୍ଟହାସ କଲେ ଯେ ଚେର ସହିତ ଉପୁଡ଼ି ପଡ଼ିବା ଗଛ ପରି ରାବଣ ଭୂଇଁରେ ପଡ଼ିଗଲା । ସେହି ପୁରୁଷ କହିଲେ, ରାବଣ ତୋର ମୃତ୍ୟୁର ସମୟ ଆସି ନାହିଁ । ତେଣୁ ମୁଁ ତୋତେ ଏବେ ନିହତ କରୁ ନାହିଁ ।

ରାବଣ ପ୍ରସିଦ୍ଧବୀର ସହସ୍ରାର୍ଜୁନ ବା କାର୍ତ୍ତବୀର୍ଯ୍ୟଙ୍କର ରାଜଧାନୀ ମାହିଷ୍ମତୀ ଆକ୍ରମଣ କଲା । ସହସ୍ରାର୍ଜୁନ ରାବଣ ସହିତ ଯୁଦ୍ଧ କରି ତାକୁ ବନ୍ଦୀ କଲେ । ପୁଲସ୍ତ୍ୟ ଋଷି ରାବଣକୁ ମୁକ୍ତି ଦେବାପାଇଁ ନିବେଦନ କରି କହିବାରୁ ଅର୍ଜୁନ ତାକୁ ଛାଡ଼ି ଦେଇଥିଲେ ।

ରାବଣ ବାଳୀକୁ ଜୟ କରିବାପାଇଁ କିଷ୍କିନ୍ଧ୍ୟାରେ ପହଞ୍ଚିଲା । ବାଳୀର ଅମାତ୍ୟମାନେ ରାବଣକୁ କହିଲେ, ରାଜା ଚାରି ସମୁଦ୍ରକୁ ସ୍ନାନ କରିବାକୁ ଯାଇଛନ୍ତି । ତୁମେ ପର୍ବତ ପରି ପଡ଼ିଥିବା ଏହି ଶଙ୍ଖଧବଳ ଅସ୍ଥିମାନଙ୍କୁ ଦେଖିଥିବ । ଯେଉଁମାନେ ପୂର୍ବେ ଯୁଦ୍ଧ କରିବା ଇଚ୍ଛାରେ ବାଳୀଙ୍କ ପାଖକୁ ଆସିଥିଲେ ସେମାନଙ୍କର ଏହି ଅବସ୍ଥା ହୋଇଛି । ଏହା ଦେଖି ମଧ୍ୟ ବାଳୀଙ୍କ ସହିତ ଯୁଦ୍ଧକରି ତୁମର ଯଦି ମରିବାର ଇଚ୍ଛା ଥାଏ, ତା'ହେଲେ ଦକ୍ଷିଣ ସମୁଦ୍ରକୁ ଯାଅ । ସେଠାରେ ବାଳୀଙ୍କୁ ଦେଖିବ । ରାବଣ ଦକ୍ଷିଣସମୁଦ୍ରକୁ ଯାଇ ଦେଖିଲା, ସୂର୍ଯ୍ୟ ପରି ତେଜୋଦୀପ୍ତ ବାଳୀ ମୌନ ଭାବରେ ଠିଆହୋଇ ମନ୍ତ୍ର ଜପ କରୁଛନ୍ତି । ରାବଣ ଚୁପ ଚୁପ ତାଙ୍କୁ ପଛରୁ ଧରିବାକୁ ଆସିଲା । ବାଳୀ ତାହା ଜାଣିପାରିଲେ । ସେ ମୁହଁ ନ ଫେରାଇ, ରାବଣ ନିକଟବର୍ତ୍ତୀ ହେବାରୁ ତାକୁ ଧରିପକାଇ କାଖରେ ଜାକି ଧରିଲେ । ରାବଣ ଯେତେ ଚେଷ୍ଟା କଲେ ମଧ୍ୟ ଖସିପାରିଲା ନାହିଁ । ବାଳୀ ଚାରିସମୁଦ୍ରରେ ସନ୍ଧ୍ୟାବନ୍ଦନା ଶେଷ କରି ରାବଣକୁ ମୁକ୍ତ କରି ହସି ହସି କହିଲେ, ତୁ ପାମର କେଉଁଠୁ ଆସିଛୁ ? ରାବଣ ଆଶ୍ଚର୍ଯ୍ୟ ହୋଇ ଚାହିଁରହି କହିଲା, ବାନରେନ୍ଦ୍ର, ମୁଁ ରାକ୍ଷସମାନଙ୍କର ରାଜା ରାବଣ । ତୁମର ବଳ ନ ଜାଣି ଦ୍ରୋହ ଆଚରଣ କରିଛି । ବର୍ତ୍ତମାନ ଚିରସ୍ଥାୟୀ ବନ୍ଧୁତା କାମନା କରେ । ରାବଣର ଗର୍ବ ଖର୍ବକରି ବାଳୀ ତାକୁ ମୁକ୍ତ କଲେ ଓ ତାର ବନ୍ଧୁତାର ପ୍ରସ୍ତାବ ଗ୍ରହଣ କଲେ ।

ସୁରଥ, ଗାଧି, ପୁରୁରବା ଆଦି ବହୁ ପ୍ରତାପୀ ରାଜା ରାବଣ ସହିତ ଯୁଦ୍ଧ ନ କରି ତାର ବଶ୍ୟତା ସ୍ୱୀକାର କରିଥିଲେ । କିନ୍ତୁ ଅଯୋଧ୍ୟାର ରାଜା ଅନରଣ୍ୟ ତା'ସହିତ ଯୁଦ୍ଧ କଲେ । ଯୁଦ୍ଧରେ ଅନରଣ୍ୟ ରାବଣଦ୍ୱାରା ଆହତ ହୋଇ ରଥରୁ ନିପତିତ ହେଲେ । ରାବଣ ହାସ୍ୟ କରି ପଚାରିଲା, ଭୋଗବିଳାସରେ ମତ୍ତ ରହି ତୁମେ ମୋର ବଳ ବିକ୍ରମ ଜାଣିପାରିଲ ନାହିଁ ? ମୁମୂର୍ଷୁ ଅନରଣ୍ୟ କହିଲେ, ରାବଣ, ଆତ୍ମଗର୍ବ କରି ଲାଭ ନାହିଁ ।

ଯଦି ମୁଁ ଦାନ ପୁଣ୍ୟ ତପଦ୍ୱାରା ଧର୍ମରେ ପ୍ରଜାପାଳନ କରିଥାଏ, ତା'ହେଲେ ମୋ ବଂଶରେ ଦାଶରଥି ରାମ ଜନ୍ମ ହୋଇ ତୋତେ ନିହତ କରିବେ ।

ଅଗସ୍ତ୍ୟ ଆଦି ଋଷିମାନେ ଏହିପରି ରାବଣର ପୂର୍ବ ବୃତ୍ତାନ୍ତ ବର୍ଣ୍ଣନା କରି ରାମଙ୍କଦ୍ୱାରା ଅଭିନନ୍ଦିତ ହୋଇ ଫେରିଗଲେ ।

## ୩ ।। ହନୁମାନଙ୍କ ପ୍ରାର୍ଥନା

ଅଯୋଧ୍ୟାରେ କିଛିକାଳ ଅବସ୍ଥାନ କରି ମିଥିଳାର ରାଜା ଜନକ, ଭରତଙ୍କ ମାତୁଳ କେକୟର ଯୁବରାଜ ଯୁଧାଜିତ୍, କାଶୀରାଜ ପ୍ରତର୍ଦ୍ଦନ ଆଦି ନିଜ ନିଜ ଦେଶକୁ ଫେରିଗଲେ । ରାଜାମାନଙ୍କ ପାଖରୁ ଯାହାସବୁ ଉପହାର ଆସିଥିଲା, ରାମ ତାକୁ ସୁଗ୍ରୀବ, ବିଭୀଷଣ ଓ ବାନରମାନଙ୍କ ମଧ୍ୟରେ ବାଣ୍ଟିଦେଲେ । ନିଜର ଗଳାରୁ ମୂଲ୍ୟବାନ ଅଳଙ୍କାରମାନ କାଢ଼ି ଅଙ୍ଗଦ ଓ ହନୁମାନଙ୍କୁ ପିନ୍ଧାଇ ଦେଲେ । ନୀଳ, ସୁଷେଣ ଓ ଜାମ୍ବବାନ୍ ଆଦି ବୀରମାନଙ୍କୁ ବହୁମୂଲ୍ୟ ସୁବର୍ଣ୍ଣ, ହୀରକ ଓ ରତ୍ନହାର ଆଦି ଦାନ କରି କହିଲେ, ତୁମେମାନେ ମୋର ପରମ ମିତ୍ର, ମୋର ଶରୀରର ଅଙ୍ଗବିଶେଷ, ମୋର ଭାଇ । ସେ ବାନରରାଜ ସୁଗ୍ରୀବଙ୍କ ମିତ୍ରତାର ବହୁ ପ୍ରଶଂସା କଲେ ଏବଂ ଅଙ୍ଗଦଙ୍କୁ ଯୁବରାଜ ଓ ହନୁମାନଙ୍କୁ ମନ୍ତ୍ରୀ କରି ସୁଖରେ ରାଜ୍ୟ ଶାସନ କରିବାପାଇଁ ପରାମର୍ଶ ଦେଲେ । ବିଭୀଷଣଙ୍କର ସହାୟତା ପାଇଁ ଧନ୍ୟବାଦ ଦେଇ ତାଙ୍କୁ ତାଙ୍କର ରାକ୍ଷସ ଅନୁଚରମାନଙ୍କ ସହିତ ବିଦାୟ ଦେଲେ ।

ବିଦାୟ ନେବା ପୂର୍ବରୁ ହନୁମାନ କହିଲେ – ପ୍ରଭୁ, ତୁମ ପ୍ରତି ମୋର ସ୍ନେହ ଓ ଭକ୍ତି ଅବିଚଳିତ ରହୁ । ଯେତେଦିନ ପୃଥିବୀରେ ରାମ କଥାର କୀର୍ତ୍ତନ ହେଉଥିବ, ସେତେଦିନ ପର୍ଯ୍ୟନ୍ତ ମୁଁ ବଞ୍ଚିରହିଥିବି । ରାମ ହନୁମାନଙ୍କୁ ଆଲିଙ୍ଗନ କରି କହିଲେ, କପିଶ୍ରେଷ୍ଠ, ନିଶ୍ଚୟ ତୁମର ମନୋବାଞ୍ଛା ପୂର୍ଣ୍ଣ ହେବ ।

ରାମଙ୍କ ଦ୍ୱାରା ଆଲିଙ୍ଗିତ ହୋଇ ସୁଗ୍ରୀବ, ବିଭୀଷଣ ଓ ବାନରମାନେ ସଜଳ ନୟନରେ ବିଦାୟ ନେଲେ ।

## ୪ ।। ଅଯୋଧ୍ୟାରେ ଜନରବ : ସୀତା ବିସର୍ଜନ

ରାମ ନିଜର ଭାଇମାନଙ୍କ ସହିତ ସୁଖରେ କାଳଯାପନ କଲେ । ସେ ପୁଷ୍ପକ ବିମାନକୁ କୁବେରଙ୍କୁ ଫେରାଇ ଦେଇଥିଲେ । କୁବେରଙ୍କ ଆଜ୍ଞାରେ ପୁଷ୍ପକ ବିମାନ ପୁଣି ରାମଙ୍କ ପାଖକୁ ଫେରିଆସି କହିଲା – ପ୍ରଭୁ, କୁବେର ତୁମର ବ୍ୟବହାର ପାଇଁ ମୋତେ ପଠାଇଛନ୍ତି । ତୁମେ ସାଦରେ ଗ୍ରହଣ କର । ରାମ କୁବେରଙ୍କ ପ୍ରତି କୃତଜ୍ଞତା ଜଣାଇ ପୁଷ୍ପକ ବିମାନକୁ ଗ୍ରହଣ କଲେ ।

ରାମ ପୂର୍ବାହ୍ନରେ ଧର୍ମକାର୍ଯ୍ୟ ଶେଷକରି ଦିନର ଶେଷଭାଗରେ ଅନ୍ତଃପୁରକୁ ଯାଉଥିଲେ । ସୀତା ପ୍ରାତଃକାଳରେ ଦେବସେବା କରୁଥିଲେ, ଶାଶୁମାନଙ୍କର ସେବା କରୁଥିଲେ ଏବଂ ପରେ ବସ୍ତ୍ରାଳଙ୍କାର ଆଦି ପରିଧାନ କରି ରାମଙ୍କ ପାଖକୁ ଆସୁଥିଲେ । କିଛିଦିନ ପରେ ସୀତାଙ୍କର ଗର୍ଭଲକ୍ଷଣ ଦେଖାଗଲା । ରାମ କହିଲେ, ତୁମର ସନ୍ତାନ ଲାଭ ହେବାକୁ ଯାଉଛି । ବର୍ତ୍ତମାନ ତୁମେ କ'ଣ ଇଚ୍ଛା କରୁଛ, କହ । ସୀତା କହିଲେ – ରାଘବ, ମୁଁ ଋଷିମାନଙ୍କର ପବିତ୍ର ତପୋବନମାନଙ୍କୁ ଦେଖିବାକୁ ଇଚ୍ଛା କରେ । ରାମ କହିଲେ – ବୈଦେହୀ, ଅଚିରେ ତୁମର ଇଚ୍ଛା ପୂର୍ଣ୍ଣ ହେବ ।

ଏହି ସମୟରେ ଅଯୋଧ୍ୟାରେ ଏକ ଜନରବ ହେଉଥିଲା । ଦୂତମାନଙ୍କ ମୁଖରୁ ତାହା ଶୁଣିପାରି ରାମ ଚିନ୍ତିତ ହେଲେ । ଲୋକ କୁହାକୁହି ହେଉଥିଲେ, ପୂର୍ବେ ରାବଣ ଯେଉଁ ସୀତାଙ୍କୁ କୋଳରେ ଧରି ଲଙ୍କାକୁ ନେଇଯାଇ ଅଶୋକ ବନରେ ରଖିଥିଲା, ରାମ ସେ ସୀତାଙ୍କୁ କିପରି ଗ୍ରହଣ କଲେ ଓ ତାଙ୍କୁ ଆଣି କିପରି ପାଖରେ ରଖିଛନ୍ତି ? ଆମର ସ୍ତ୍ରୀମାନେ ଅନ୍ୟଘରେ ରହି ଫେରିଆସିଲେ ଆମେ ତାଙ୍କୁ ଗ୍ରହଣ କରିବା ତ ? କାରଣ ପ୍ରଜାହିଁ ରାଜାଙ୍କୁ ଆଦର୍ଶ ବୋଲି ଗ୍ରହଣ କରନ୍ତି ।

ରାମ ତାଙ୍କର ଭ୍ରାତାମାନଙ୍କୁ ଡାକି କହିଲେ, ବର୍ତ୍ତମାନ ମୁଁ ଏକ ଧର୍ମସଙ୍କଟ ମଧ୍ୟରେ ଗତି କରୁଛି । ମହାନ୍ ବିଖ୍ୟାତ ଇକ୍ଷ୍ୱାକୁବଂଶରେ ମୋର ଜନ୍ମ । ସୀତା ମଧ୍ୟ ଯଶସ୍ୱୀ ମିଥିଳା ରାଜବଂଶରେ ଜନ୍ମ ହୋଇଛନ୍ତି । ରାବଣ ବଧ ପରେ ସୀତା ଘୋର ଅଗ୍ନିପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଆମମାନଙ୍କ ଆଗରେ ଏବଂ ଦେବତା, ଋଷି ଓ ସର୍ବସାଧାରଣଙ୍କ ସମକ୍ଷରେ ପ୍ରମାଣିତ କରିଦେଲେ ଯେ ସେ ନିଷ୍ପାପା । ମୋର ଅନ୍ତରାତ୍ମାରେ ଶୁଦ୍ଧଚରିତ୍ରା ସୀତାଙ୍କ ସମ୍ପର୍କରେ ଅଣୁମାତ୍ର ସନ୍ଦେହ ନାହିଁ । କିନ୍ତୁ ଲୋକାପବାଦରେ ଆଜି ମୁଁ ଜର୍ଜରିତ । ଅପବାଦ ଭୟରେ ମୁଁ ମୋର ଜୀବନ ବିସର୍ଜନ ଦେଇପାରେ ଓ ତୁମମାନଙ୍କୁ ମଧ୍ୟ ପରିତ୍ୟାଗ କରିପାରେ । ତେଣୁ ଲକ୍ଷ୍ମଣ, ତୁମେ କାଲି ପ୍ରଭାତରେ ସୁମନ୍ତ୍ରଙ୍କ ରଥରେ ସୀତାଙ୍କୁ ନେଇ ଗଙ୍ଗାକୂଳରେ ବାଲ୍ମୀକିଙ୍କ ଆଶ୍ରମ ନିକଟରେ ବିସର୍ଜନ କର । ମୋର ପାଦ ଛୁଇଁ ନିୟମ କର, ମୋ କଥାରେ ପ୍ରତିବାଦ କରିବ ନାହିଁ । ଯେଉଁ ବ୍ୟକ୍ତି ପ୍ରତିବାଦ କରିବ ସେ ମୋର ଶତ୍ରୁ ବୋଲି ଜାଣିବ । ସୀତା ଗଙ୍ଗାକୂଳରେ ଋଷିଙ୍କ ଆଶ୍ରମ ଦେଖିବାପାଇଁ ମୋତେ ଅନୁରୋଧ କରିଛନ୍ତି । ତେଣୁ ତୁମେ ତାଙ୍କୁ ନେଇଗଲେ ସେ କିଛି ସନ୍ଦେହ କରିବେ ନାହିଁ ।

ପରଦିନ ପ୍ରଭାତରେ ବିଷଣ୍ଣ ଲକ୍ଷ୍ମଣ ସୁମନ୍ତ୍ରଙ୍କ ଦ୍ୱାରା ରଥ ପ୍ରସ୍ତୁତ କରି ସୀତାଙ୍କୁ ଘେନି ଯାତ୍ରା କଲେ । ପ୍ରଥମ ଦିନ ଗୋମତୀ କୂଳର ଏକ ଆଶ୍ରମରେ ସେ ରାତ୍ରିଯାପନ କଲେ । ଦ୍ୱିତୀୟ ଦିନ ସେ ଆଉ ନିଜର ଶୋକ ସମ୍ବରଣ କରିପାରିଲେ ନାହିଁ । ଉଚ୍ଚସ୍ୱରରେ ରୋଦନ କରିବାକୁ ଲାଗିଲେ । ସୀତା ଏପରି ଶୋକର କାରଣ କ'ଣ ବୋଲି ଯେତେ ପଚାରିଲେ ମଧ୍ୟ ଲକ୍ଷ୍ମଣ କିଛି କହିଲେ ନାହିଁ ।

ଭାଗୀରଥୀ କୂଳରେ ରଥ ପହଞ୍ଚିଲା । ଲକ୍ଷ୍ମଣ ସୁମନ୍ତ୍ରଙ୍କୁ ଅପେକ୍ଷା କରିବାକୁ କହି ସୀତାଙ୍କ ସହିତ ଏକ ନୌକାରେ ଆରୋହଣ କଲେ । ନୌକା ପରପାରରେ ପହଞ୍ଚିବାରୁ

ଲକ୍ଷ୍ମଣ ସଜଳ ନୟନରେ ମୁହଁ ତଳକୁ ପୋତି କହିଲେ – ଦେବୀ, ତୁମେ ମୋତେ କ୍ଷମା କର । ମୋର ଅପରାଧ ଧର ନାହିଁ । ଏତିକି କହି ଶୋକରେ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ଲକ୍ଷ୍ମଣଙ୍କର ଶୋକର କାରଣ ସୀତା ଜାଣିପାରିଲେ ନାହିଁ । ସେ କଥା କଣ ବୋଲି ବାରମ୍ବାର ପଚାରିବାରୁ ଲକ୍ଷ୍ମଣ ରୋଦନ କରି କହିଲେ, ଅଯୋଧ୍ୟାରେ ଆପଣଙ୍କ ସମ୍ପର୍କରେ ଯେଉଁ ଅପବାଦ ରଟିତ ହେଉଛି, ତାହା ଶୁଣି ରାମ ଆପଣଙ୍କୁ ବାଲ୍ମୀକିଙ୍କ ଆଶ୍ରମ ନିକଟରେ ଗଙ୍ଗାକୂଳରେ ବିସର୍ଜନ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି । ସେ କହିଛନ୍ତି ଯେ ଆପଣ ନିଷ୍ପାପା, କିନ୍ତୁ ଲୋକାପବାଦ ଭୟରେ ତାଙ୍କୁ ଏହା କରିବାକୁ ପଡୁଛି । ବାଲ୍ମୀକି ମୁନି ପିତା ଦଶରଥଙ୍କର ବନ୍ଧୁ । ଏଠାରେ ଆପଣ ତାଙ୍କ ଆଶ୍ରମରେ ରହି ଉପବାସ ଆଦି ବ୍ରତ ପାଳନ କରି ରହନ୍ତୁ । ରାମଙ୍କୁ ହୃଦୟରେ ରଖି ଅବସ୍ଥାନ କରନ୍ତୁ । ଦେବୀ, ମୋର ଅପରାଧ ଧରନ୍ତୁ ନାହିଁ । ଲକ୍ଷ୍ମଣଙ୍କ କଥା ଶୁଣି ଶୋକାର୍ତ୍ତା ସୀତା ଭୂମିରେ ମୂର୍ଚ୍ଛିତା ହୋଇ ପଡ଼ିଗଲେ । କିଛି ସମୟ ପରେ ସଂଜ୍ଞା ଲାଭ କରି କହିଲେ – ଲକ୍ଷ୍ମଣ, ଦୁଃଖ ଭୋଗ କରିବାପାଇଁ ବିଧାତା ମୋତେ ଜନ୍ମ ଦେଇଛନ୍ତି । ମୁଁ ପୂର୍ବଜନ୍ମରେ କି ପାପ କରିଥିଲି, କେଉଁ ସ୍ତ୍ରୀକୁ ତାର ସ୍ୱାମୀଠାରୁ ଛଡ଼ାଇ ନେଇଥିଲି, ଯାହାର ଫଳ ମୋତେ ଏ ଜନ୍ମରେ ଭୋଗ କରିବାକୁ ପଡୁଛି । ମୋର ସତୀତ୍ୱ ବିଷୟରେ ରାମଙ୍କର କୌଣସି ସନ୍ଦେହ ନ ଥିଲେ ମଧ୍ୟ ଓ ମୋର ଶୁଦ୍ଧ ସ୍ୱଭାବକୁ ହୃଦୟରେ ଅନୁଭବ କରି ମଧ୍ୟ କିପରି ମୋତେ ସେ ପରିତ୍ୟାଗ କଲେ ? ପୂର୍ବେ ଯେଉଁ ବନବାସ କରିଥିଲି, ତାହା ପତିଙ୍କ ସହିତ ତାଙ୍କ ସେବାରେ ରହି କରିଥିଲି । ଏବେ ଏକାକିନୀ ପରିତ୍ୟକ୍ତ ଅବସ୍ଥାରେ ମୁଁ ମୁନିମାନଙ୍କୁ କ'ଣ କହିବି ? ସେମାନେ ପଚାରିଲେ କେଉଁ ଦୋଷପାଇଁ ରାମ ମୋତେ ବିସର୍ଜନ କଲେ ବୋଲି କହିବି ? ଏହା ଅପେକ୍ଷା ଗଙ୍ଗାର ଗର୍ଭରେ ଆତ୍ମବିସର୍ଜନ ଦେବା ଠିକ୍ ହୋଇଥାନ୍ତା । କିନ୍ତୁ ମୁଁ ଏହା କଲେ ମୋର ସ୍ୱାମୀଙ୍କର ସନ୍ତାନ ଓ ରାଜବଂଶ ନଷ୍ଟ ହେବ । ସୌମିତ୍ରି, ତୁମେ ରାଜାର ଆଜ୍ଞା ପାଳନ କରି ଏହି ଅଭାଗିନୀକୁ ଏଠାରେ ଛାଡ଼ି ଚାଲିଯାଅ । ମୋର ଶାଶୁମାନଙ୍କର ପାଦ ଛୁଇଁ ସେମାନଙ୍କୁ ମୋର ପ୍ରଣାମ ଜଣାଇଦେବ । ତୁମେ ରାଜାଙ୍କର ଚରଣବନ୍ଦନା କରି କହିବ, ସୀତା ତୁମ ପ୍ରତି ଏକାନ୍ତ ଅନୁରକ୍ତା, ଭକ୍ତିମତୀ ଓ ହିତକାରିଣୀ ବୋଲି ଜାଣ । ତାଙ୍କୁ ତ୍ୟାଗ କରି ତୁମେ ଯଦି ଅପବାଦ ଭୟରୁ ମୁକ୍ତ ହୁଅ, ତା' ହେଲେ ତାକୁ ସେ ଶୁଦ୍ଧ ଚିତ୍ତରେ ଗ୍ରହଣ କରୁଛନ୍ତି । ତୁମପାଇଁ ତାଙ୍କର ଶରୀର ଧ୍ୱଂସ ହେଲେ ମଧ୍ୟ ସେ ଚିନ୍ତିତ ନୁହନ୍ତି ।

ସୀତାଙ୍କୁ ପ୍ରଣାମ ଓ ପ୍ରଦକ୍ଷିଣ କରି ଲକ୍ଷ୍ମଣ ଘୋର ଦୁଃଖରେ ପ୍ରତ୍ୟାବର୍ତ୍ତନ କଲେ । ଲକ୍ଷ୍ମଣ ଯିବାପରେ ସୀତା ଅନାଥା ଭାବରେ ବିଳାପ କରି ଭୂଲୁଣ୍ଠିତ ହେଲେ ।

ସୀତାଙ୍କୁ ଦେଖି ମୁନିକୁମାରମାନେ ବାଲ୍ମୀକିଙ୍କର ପାଖକୁ ଯାଇ କହିଲେ – ଭଗବନ୍, ଲକ୍ଷ୍ମୀତୁଲ୍ୟା ଏକ ଦୀପ୍ତିମତୀ ନାରୀ ଗଙ୍ଗାକୂଳରେ ବସି ରୋଦନ କରୁଛନ୍ତି । ସେ ନିଶ୍ଚୟ କୌଣସି ମହାତ୍ମାଙ୍କର ପତ୍ନୀ । ଆପଣ ନିଜେ ସେଠାକୁ ଯାଇ ଦେଖନ୍ତୁ । ବାଲ୍ମୀକି ସୀତାଙ୍କ ପାଖରେ ପହଞ୍ଚି ମଧୁର ବାକ୍ୟରେ କହିଲେ, ସୀତା, ତୁମେ ଦଶରଥଙ୍କର ପୁତ୍ରବଧୂ, ଜନକଙ୍କର କନ୍ୟା ଓ ରାମଙ୍କର ପତ୍ନୀ । ପତିବ୍ରତା, ମୁଁ ତୁମକୁ ସ୍ୱାଗତ କରୁଛି ।

ତୁମେ ଏଠାକୁ ଆସୁଥିବାବେଳେ ମୁଁ ଧ୍ୟାନମଗ୍ନ ଥାଇ ସମସ୍ତ ବିଷୟ ଜାଣିପାରିଥିଲି । ମୈଥିଳୀ, ମୁଁ ଜାଣେ ତୁମେ ଶୁଦ୍ଧଚରିତ୍ରା । ତୁମକୁ ପାପ ସ୍ପର୍ଶ କରି ନାହିଁ । ତୁମେ ନିଶ୍ଚିନ୍ତ ରହ । ତୁମର ସମସ୍ତ ଦାୟିତ୍ୱ ମୁଁ ଗ୍ରହଣ କରୁଛି । ମୋର ଆଶ୍ରମର ପାଖରେ ବହୁ ବୃଦ୍ଧ ତପସ୍ୱୀ ତପସ୍ୟା କରୁଛନ୍ତି । ସେ ତୁମକୁ କନ୍ୟାପରି ପାଳନ କରିବେ । ଯେପରି ତୁମେ ନିଜ ଘରେ ରହୁଥିଲ, ଏଠାରେ ସେହିପରି ରହ । ଦୁଃଖ କର ନାହିଁ । ବାଲ୍ମୀକିଙ୍କର ପଦବନ୍ଦନା କରି ସୀତା ତାଙ୍କର ଆଶ୍ରମକୁ ଗଲେ । ତପସ୍ୱୀମାନଙ୍କୁ ଡାକି ବାଲ୍ମୀକି କହିଲେ, ଏ ହେଉଛନ୍ତି ଶୁଦ୍ଧଚରିତ୍ରା ସୀତା, ରାମ ତାଙ୍କୁ ପରିତ୍ୟାଗ କରିଛନ୍ତି । ତୁମେମାନେ ତାଙ୍କୁ କନ୍ୟାଜ୍ଞାନରେ ପରମ ସ୍ନେହରେ ପାଳନ କର ।

## ୫ ॥ କୁକୁରର ନ୍ୟାୟ ଦାବି

ରାମ ପ୍ରତ୍ୟହ ସକାଳେ ଧର୍ମସିଂହାସନରେ ବସି ନ୍ୟାୟ ବିଚାର କରୁଥିଲେ । ବଶିଷ୍ଠାଦି ଋଷି ଓ ନୀତିଜ୍ଞ ଅମାତ୍ୟମାନେ ତାଙ୍କୁ ସାହାଯ୍ୟ କରୁଥିଲେ । ଦିନେ ରାମ ଲକ୍ଷ୍ମଣଙ୍କୁ କହିଲେ, ନ୍ୟାୟପାଇଁ ରାଜଦ୍ୱାରରେ ଯେଉଁମାନେ ଅପେକ୍ଷା କରିଛନ୍ତି, ସେମାନଙ୍କୁ ଡାକିଆଣ । ଲକ୍ଷ୍ମଣ କହିଲେ, କୌଣସି ପ୍ରାର୍ଥୀ ଉପସ୍ଥିତ ନାହାନ୍ତି । ରାମରାଜ୍ୟରେ ରୋଗ ବ୍ୟାଧି ନ ଥିଲା । କେହି ହିଂସାଚରଣ କରୁ ନ ଥିଲେ । ଶିଶୁ ବାଳକ ବା ଯୁବାମୃତ୍ୟୁ ନ ଥିଲା । ଠିକ୍ ସମୟରେ ବର୍ଷା ହେଉଥିଲା ଓ ପ୍ରଚୁର ଶସ୍ୟ ଓ ଫଳ ଉତ୍ପନ୍ନ ହେଉଥିଲା । ରାମ ଲକ୍ଷ୍ମଣଙ୍କୁ କହିଲେ, ଏହା ଶାସନର ଶୁଭ ଲକ୍ଷଣ । ତଥାପି କେହି କାଳେ ଥାଇପାରନ୍ତି, ତୁମେ ଆଉଥରେ ଦେଖିଆସ ।

ଲକ୍ଷ୍ମଣ ଦ୍ୱାରଦେଶରେ ଦେଖିଲେ, ଗୋଟାଏ କୁକୁର ଭୁକିବାରେ ଲାଗିଛି । ଲକ୍ଷ୍ମଣ ସେହି କୁକୁରକୁ ରାଜସଭାକୁ ଆସିବାକୁ କହିବାରୁ ସେ ଉତ୍ତର ଦେଲା, ଦେବାଳୟ, ଅଗ୍ନିହୋତ୍ରୀ ବ୍ରାହ୍ମଣମାନଙ୍କ ଘର ଓ ରାଜପ୍ରାସାଦରେ ଅଗ୍ନି, ବାୟୁ, ଇନ୍ଦ୍ର ଓ ସୂର୍ଯ୍ୟ ଅବସ୍ଥାନ କରନ୍ତି । ସେଥିପାଇଁ ମୋ ପରି ଏକ ନୀଚ ଜୀବ ସେଠାକୁ ଯିବା ଉଚିତ ହେବ ନାହିଁ । ଲକ୍ଷ୍ମଣ ରାମଙ୍କୁ ଯାଇ ଏକଥା କହିବାରୁ ରାମ ଲକ୍ଷ୍ମଣଙ୍କୁ କହିଲେ, କୁକୁରକୁ ରାଜସଭାକୁ ଡାକିଆଣ ।

କୁକୁରକୁ ରାମ ଅଭୟ ଦେବାରୁ ସେ ଗୁହାରି ଜଣାଇ କହିଲା, ସର୍ବାର୍ଥସିଦ୍ଧ ନାମରେ ଜଣେ ଭିକ୍ଷୁକ ବ୍ରାହ୍ମଣ ଅକାରଣରେ ମୋର ମସ୍ତକରେ ପ୍ରହାର କରି ମୋତେ କ୍ଷତବିକ୍ଷତ କରିଛି । ରାମ ଭିକ୍ଷୁକକୁ ଡକାଇଲେ । ସେ କହିଲା, ମହାରାଜ, ମୁଁ କ୍ଷୁଧିତ ଅବସ୍ଥାରେ ଭିକ୍ଷା କରିବାକୁ ଯିବାବେଳେ ଏ କୁକୁର ବାଟରେ ଶୋଇଥିଲା । ଯେତେ କହିଲେ ମଧ୍ୟ ଉଠିଲା ନାହିଁ । ମୁଁ କ୍ରୋଧରେ ତାକୁ ପ୍ରହାର କଲି । ମୋର ଦୋଷ ଯୋଗୁଁ ଯେ କୌଣସି ଦଣ୍ଡପାଇଁ ମୁଁ ପ୍ରସ୍ତୁତ ଅଛି । ବିଶେଷତଃ ତୁମ ଦ୍ୱାରା ଦଣ୍ଡିତ ହେଲେ ମୋର ନରକର ଭୟ ରହିବ ନାହିଁ ।

କି ଦଣ୍ଡ ଦିଆଯିବ ବୋଲି ରାମ ଅମାତ୍ୟମାନଙ୍କୁ ପଚାରିଲେ । ବଶିଷ୍ଠାଦି ଋଷି ଓ ଅମାତ୍ୟମାନେ କହିଲେ, ବ୍ରାହ୍ମଣମାନଙ୍କୁ ଦଣ୍ଡ ଦିଆଯିବା ଉଚିତ ନୁହେଁ । କୁକୁର ସଙ୍ଗେ ସଙ୍ଗେ ରାମଙ୍କୁ କହିଲା – ମହାରାଜ, ଏହି ବ୍ରାହ୍ମଣଙ୍କୁ ଆପଣ କାଳିଞ୍ଜରର ମଠର କୁଳପତି (ମହନ୍ତ) କରିଦିଅନ୍ତୁ । ରାମ ସେଥିରେ ସମ୍ମତି ଦେଲେ । ବ୍ରାହ୍ମଣର ମୁଣ୍ଡରେ ମହନ୍ତର ଶିରପା ବାନ୍ଧି ତାକୁ ହାତୀର ପିଠିରେ ବସାଇ କାଳିଞ୍ଜର ପଠାଇଦେଲେ । ସଭାସଦ୍‌ମାନେ ହାସ୍ୟପୂର୍ବକ କହିଲେ – ମହାରାଜ, ଆପଣ ଅପରାଧୀକୁ ଦଣ୍ଡ ଦେଲେ ନା ପୁରସ୍କାର ଦେଲେ ? ରାମ କହିଲେ, ତୁମେମାନେ ବୁଝି ନାହଁ । ସେ କୁକୁର ବୁଝିଛି ।

ରାମଙ୍କର ଆଜ୍ଞାରେ କୁକୁର କହିଲା, ମୁଁ ପୂର୍ବେ ସେହି କାଳିଞ୍ଜରର କୁଳପତି ବା ମହନ୍ତ ଥିଲି । ବହୁ ଯତ୍ନରେ ଦେବତା ବ୍ରାହ୍ମଣ ଅତିଥି ଅଭ୍ୟାଗତଙ୍କର ସେବା କରୁଥିଲି । ସମସ୍ତେ ଖାଇସାରିବା ପରେ ନିଜେ ଖାଉଥିଲି । ମଠର ସମ୍ପତ୍ତିକୁ ସାଧାରଣଙ୍କ ସମ୍ପତ୍ତି ବୋଲି ମନେକରି ଚଳୁଥିଲି । ତଥାପି ମୋର ଏହି ଅବସ୍ଥା ହେଲା । ଏ ବ୍ରାହ୍ମଣ ଯେପରି କ୍ରୋଧୀ, ନୃଶଂସ, ଅଧାର୍ମିକ, ସେ କୁଳପତି ହେଲେ ପୁତ୍ର ପୌତ୍ରାଦିକ୍ରମେ ପୁରୁଷ ପୁରୁଷ ଧରି ନରକଗାମୀ ହେବ । ସବାନ୍ଧବ ଯଦି କାହାରିକୁ ପାପପଙ୍କରେ ବୁଡ଼ାଇବାକୁ ଥାଏ, ତା' ହେଲେ ତାକୁ ଗୋ ବ୍ରାହ୍ମଣ ଦେବତାମାନଙ୍କ ସମ୍ପତ୍ତିର ଦାୟିତ୍ୱରେ କୁଳପତି ବା ମହନ୍ତ କରି ରଖିଦେବା ଦରକାର ।

## ୬ ।। ଲବକୁଶଙ୍କର ଜନ୍ମ : ଲବଣାସୁର ବଧ

ଦିନେ ରାମଙ୍କ ରାଜସଭାରେ ମହର୍ଷି ଚ୍ୟବନଙ୍କ ସହ ଯମୁନା ତୀରର କେତେ ତପସ୍ୱୀ ଆସି ଅଭିଯୋଗ କଲେ ଯେ ମଧୁରାକ୍ଷସର ପୁତ୍ର ମହାବଳୀ ଲବଣାସୁର ସମଗ୍ର ଲୋକଙ୍କର ଭୟ ଓ ପୀଡ଼ାର କାରଣ ହୋଇଛି । ବିଶେଷତଃ ଆମମାନଙ୍କୁ ସର୍ବଦା ଉତ୍‌ପୀଡ଼ନ କରୁଛି । ଶିବଙ୍କ ପ୍ରଦତ୍ତ ଶୂଳ ଧାରଣ କଲେ ତାକୁ କେହି ପାରିବେ ନାହିଁ । ଆମକୁ ରକ୍ଷା କରିବାକୁ କେହି ନାହାନ୍ତି । ଆପଣ ସସୈନ୍ୟ ରାବଣକୁ ନିହତ କରିଥିବାର ଶୁଣି ଆପଣଙ୍କ ପାଖକୁ ଆସିଛୁ । ଆପଣ ହିଁ ତାକୁ ବଧ କରି ଆମକୁ ରକ୍ଷା କରିପାରିବେ ।

ରାମ ରାକ୍ଷସର ବଧପାଇଁ ମୁନିମାନଙ୍କୁ ପ୍ରତିଶ୍ରୁତି ଦେଇ ଶତ୍ରୁଘ୍ନଙ୍କୁ ଏହି ଦାୟିତ୍ୱ ଦେଲେ । ଲବଣକୁ ନିହତ କରି ସେଠାରେ ମଧୁପୁରୀ ରାଜ୍ୟ ସ୍ଥାପନ କରି ରାଜପଣ କରିବାପାଇଁ ମଧ୍ୟ ସେ ତାଙ୍କୁ ଆଦେଶ ଦେଲେ । ସେଥିପାଇଁ ପୂର୍ବରୁ ସେ ଶତ୍ରୁଘ୍ନଙ୍କୁ ଅଭିଷିକ୍ତ କରାଇଲେ ।

ରାମଙ୍କର ଆଦେଶ ପାଇ ଓ ତାଙ୍କଠାରୁ ବିଷ୍ଣୁଙ୍କର ଦତ୍ତ ଏକ ଅମୋଘ ଶର ଲାଭ କରି ଶତ୍ରୁଘ୍ନ ଲବଣବଧ ନିମିତ୍ତ ଯାତ୍ରା କଲେ । ରାମ କହିଲେ, ମଧୁ ଓ କୈଟଭର ବିନାଶ ପାଇଁ ବିଷ୍ଣୁ ପୂର୍ବେ ଏହି ଶରକୁ ସୃଷ୍ଟି କରିଥିଲେ । ଏଥିରେ ବହୁ ଲୋକ କ୍ଷୟ ହେବ ବୋଲି ମୁଁ ରାବଣ ବିରୋଧରେ ଏହାକୁ ପ୍ରୟୋଗ କରି ନ ଥିଲି । ଲବଣ ଆହାର ସଂଗ୍ରହ କରି

ଯିବାବେଳେ ଶିବଙ୍କର ପ୍ରଦତ୍ତ ଶୂଳକୁ ଘରେ ରଖିଦେଇ ଯାଏ । ସେ ଆହାର ସଂଗ୍ରହ କରି ଘରକୁ ଫେରୁଥିବାବେଳେ ତୁମେ ତାକୁ ଯୁଦ୍ଧପାଇଁ ଆହ୍ୱାନ କରିବ ଏବଂ ଏହି ଶରରେ ତାର ପ୍ରାଣ ସଂହାର କରିବ ।

ଆଗରେ ସୈନ୍ୟମାନଙ୍କୁ ପଠାଇଦେଇ କିଛି ଦିନ ପରେ ଶତ୍ରୁଘ୍ନ ଯାତ୍ରା କଲେ । ରାତି କଟାଇବାପାଇଁ ସେ ବାଲ୍ମୀକିଙ୍କର ଆଶ୍ରମରେ ପହଞ୍ଚିଲେ । ବାଲ୍ମୀକି ତାଙ୍କୁ ଫଳମୂଳ ଭୋଜନ ଦ୍ୱାରା ତୃପ୍ତ କରି ସତ୍କାର କଲେ ।

ଶତ୍ରୁଘ୍ନ ବାଲ୍ମୀକିଙ୍କର ପର୍ଣ୍ଣଶାଳାରେ ଥିବାବେଳେ ରାତ୍ରିର ମଧ୍ୟଭାଗରେ ସୀତାଙ୍କର ଦୁଇ ଯମଜ ପୁତ୍ର ଜନ୍ମ ହେଲେ । ବାଲ୍ମୀକି ଅତିଶୟ ଆନନ୍ଦିତ ହୋଇ ମନ୍ତ୍ରପୂତ କୁଶ-ଗୁଚ୍ଛରେ ଜ୍ୟେଷ୍ଠ ପୁତ୍ରକୁ ମାର୍ଜନା କରିବାପାଇଁ ବୃଦ୍ଧମାନଙ୍କୁ ପରାମର୍ଶ ଦେଲେ । କନିଷ୍ଠପୁତ୍ରକୁ କୁଶ ଗୁଚ୍ଛର ଅଧୋଭାଗରେ ମାର୍ଜନା କରିବାପାଇଁ କହିଲେ । ତେଣୁ ଜ୍ୟେଷ୍ଠପୁତ୍ରର ନାମ ହେଲା କୁଶ ଓ ଏହି କୁଶଗୁଚ୍ଛର ଛୋଟ ବା ତଳ ଭାଗରେ ମାର୍ଜନା କରାଯାଇଥିବା ଯୋଗୁଁ କନିଷ୍ଠର ନାମ ହେଲା ଲବ । ଶତ୍ରୁଘ୍ନ ସୀତାଙ୍କର ପୁତ୍ରଜନ୍ମ ଓ ନାମକରଣ ଆଦି ସବୁ ଶୁଣି ଆଜି ମୋର କି ସୌଭାଗ୍ୟ ବୋଲି କହି ଆନନ୍ଦିତ ହେଲେ । ପରଦିନ ସକାଳେ ବାଲ୍ମୀକିଙ୍କଠାରୁ ବିଦାୟ ନେଇ ମଧୁରାଜ୍ୟକୁ ଯାତ୍ରାକଲେ ।

ସାତଦିନ ପରେ ଯମୁନା କୂଳରେ ପହଞ୍ଚି ମହର୍ଷି ଚ୍ୟବନଙ୍କ ଆଶ୍ରମରେ ସେ ରାତ୍ରି ଯାପନ କଲେ । ସକାଳବେଳା ଲବଣାସୁର ଆହାର ସଂଗ୍ରହ କରିବାକୁ ଯାଇଥିବା ବେଳେ ସେ ମଧୁପୁରର ଦ୍ୱାରଦେଶରେ ଧର୍ନୁବାଣ ଧରି ତାର ଫେରିବାପାଇଁ ଜଗି ରହିଲେ । ରାକ୍ଷସ ଫେରିବା ପରେ ଶତ୍ରୁଘ୍ନ ତାଙ୍କୁ ଦ୍ୱନ୍ଦ୍ୱ ଯୁଦ୍ଧପାଇଁ ଆହ୍ୱାନ କଲେ । ସେ ତାର ଅସ୍ତ୍ର ଆଣି ଯୁଦ୍ଧ କରିବ ବୋଲି କହିବାରୁ ଶତ୍ରୁଘ୍ନ କହିଲେ, କାପୁରୁଷ, ଅସ୍ତ୍ର ଆଣିବା ନାଁରେ ଡରି ପଳାଉଛୁ ? ଲବଣ ବୃକ୍ଷ ଓ ଶିଳା ଧରି ତାଙ୍କ ସମ୍ମୁଖକୁ ଯୁଦ୍ଧ କରିବାକୁ ଆସିଲା । ଲବଣ ପ୍ରେରିତ ଏକ ମହାବୃକ୍ଷର ଆଘାତରେ ଶତ୍ରୁଘ୍ନ ମୂର୍ଚ୍ଛିତ ହେଲେ । କିନ୍ତୁ ସଙ୍ଗେ ସଙ୍ଗେ ସଂଜ୍ଞା ଲାଭ କରି ରାମଙ୍କ ପ୍ରଦତ୍ତ ଶରରେ ଲବଣାସୁରର ପ୍ରାଣ ହରଣ କଲେ ।

ଲବଣ ବଧ ପରେ ରାମଙ୍କର ଆଜ୍ଞାନୁସାରେ ଶତ୍ରୁଘ୍ନ ସେଠାରେ ରମଣୀୟ ମଧୁପୁରୀ ରାଜ୍ୟ ସ୍ଥାପନ କଲେ ।

## ୭ ॥ ଶମ୍ବୂକ ବଧ

ଶତ୍ରୁଘ୍ନ ଯିବାପରେ ଦିନେ ରାମ ପ୍ରଜାମାନଙ୍କର ଦୁଃଖ ଶୁଣିବାପାଇଁ ରାଜସଭାରେ ବସିଥିଲେ । ଜଣେ ବ୍ରାହ୍ମଣ ତାଙ୍କର କିଶୋର ପୁତ୍ରକୁ ଆଣି ଏହି ସମୟରେ ରାଜଦ୍ୱାରରେ ରୋଦନ କରି କହିଲେ, ପୂର୍ବଜନ୍ମରେ କୌଣସି ଦୁଷ୍କୃତ ପାଇଁ ମୋର ଏହି ପୁତ୍ରର ମୃତ୍ୟୁ ହୋଇଛି । ଏ ଜନ୍ମରେ ମୁଁ କୌଣସି ମିଥ୍ୟା କହି ନାହିଁ ବା ପାପ କରି ନାହିଁ ! ତେଣୁ କାହିଁକି

ମୋର ପୁତ୍ରର ମୃତ୍ୟୁ ହେଲା ? ରାଜାର ପାପ ପ୍ରଜାକୁ ଲାଗେ । ନିଶ୍ଚୟ ରାମଙ୍କର କିଛି ମହାପାପ ଯୋଗୁଁ ମୋର ପୁତ୍ରର ଅକାଳ ମୃତ୍ୟୁ ଘଟିଛି । ରାମ ତୁମେ ଏହି ବାଳକକୁ ଜୀବିତ କର । ନଚେତ୍ ମୋର ପତ୍ନୀ ସହିତ ମୁଁ ଏଠାରେ ଆତ୍ମହତ୍ୟା କରିବି ।

ରାମ ବିଷଣ୍ଣ ହୋଇ ବଶିଷ୍ଠାଦି ଋଷି ଓ ନିଜର ଭାଇମାନଙ୍କୁ ଏହି ଅପମୃତ୍ୟୁର କାରଣ ପଚାରିଲେ । ଏହି ସମୟରେ ନାରଦ ଉପସ୍ଥିତ ହୋଇ କହିଲେ, ସତ୍ୟଯୁଗରେ କେବଳ ବ୍ରାହ୍ମଣମାନେ ତପସ୍ୟା କରୁଥିଲେ । ତେଣୁ ଅକାଳ ମୃତ୍ୟୁ ହେଉ ନ ଥିଲା । ତ୍ରେତା ଯୁଗରେ କ୍ଷତ୍ରିୟମାନେ ମଧ ତପସ୍ୟା କଲେ । ତେଣୁ ପୃଥିବୀକୁ ଏକପାଦ ଅଧର୍ମ ଗ୍ରାସିଗଲା । ଦ୍ୱାପରରେ ବୈଶ୍ୟମାନେ ତପସ୍ୟା କରିବେ ଏବଂ ଘୋର କଳି ଯୁଗରେ ଶୂଦ୍ରମାନେ ତପସ୍ୟା କରିବେ । ବର୍ତ୍ତମାନ ଦେଖାଯାଉଛି ଯୁଗଧର୍ମକୁ ଲଂଘନ କରି ନିଶ୍ଚୟ କେହି ଶୂଦ୍ର ତୁମ ରାଜ୍ୟରେ ତପସ୍ୟା କରୁଛି । ତୁମେ ଶୀଘ୍ର ତାର ପ୍ରତିକାର କର ।

କିଏ ଏପରି ତପସ୍ୟା କରୁଛି ତାହା ଜାଣିବାପାଇଁ ରାଜ୍ୟସାରା ଖୋଜାଗଲା । ଦେଖାଗଲା, ଦକ୍ଷିଣଦିଗରେ ତଳକୁ ମୁହଁ ଓ ଉପରକୁ ଗୋଡ଼ କରି ଜଣେ ତପସ୍ୱୀ କଠୋର ତପସ୍ୟା କରୁଛନ୍ତି । ରାମ ସେହି ତପସ୍ୱୀଙ୍କୁ ଏପରି କଠୋର ତପସ୍ୟାର କାରଣ ପଚାରିବାରୁ ସେ କହିଲେ, ରାମ ମୁଁ ଦେବଲୋକ ଜୟ କରିବାପାଇଁ ଚାହେ । ମୁଁ ସତ୍ୟ କହୁଛି, ମୋର ନାମ ଶମ୍ବୂକ । ମୁଁ ଜାତିରେ ଶୂଦ୍ର । ରାମ ସଙ୍ଗେ ସଙ୍ଗେ କୋଷମୁକ୍ତ କୃପାଣରେ ତାହାର ଶିରଚ୍ଛେଦନ କଲେ । ଦେବତାମାନେ ପୁଷ୍ପବୃଷ୍ଟି କଲେ । ଇନ୍ଦ୍ର ବର ଦେବାକୁ ଚାହିଁବାରୁ ରାମ କହିଲେ, ବ୍ରାହ୍ମଣଙ୍କର ବାଳକ ପୁତ୍ର ପୁନର୍ଜୀବିତ ହୁଅନ୍ତୁ । ବ୍ରାହ୍ମଣପୁତ୍ର ଜୀବନ ଲାଭ କଲେ ।

## ୮ ।। କୁଶଲବଙ୍କର ରାମାୟଣ ଗାନ

ରାମ ସମସ୍ତଙ୍କ ସହିତ ପରାମର୍ଶ କରି ଅଶ୍ୱମେଧ ଯଜ୍ଞ କରିବାପାଇଁ ସ୍ଥିର କଲେ । ବିଭୀଷଣ, ସୁଗ୍ରୀବ, ବହୁ ରାଜା, ଋଷି ଓ ଧର୍ମଜ୍ଞ ବ୍ରାହ୍ମଣମାନଙ୍କୁ ଏହି ଯଜ୍ଞପାଇଁ ନିମନ୍ତ୍ରଣ କରାଗଲା । ବିପୁଳ ଆୟୋଜନ ସହ ବର୍ଷାଧିକ କାଳ ଏହି ଯଜ୍ଞ ଅନୁଷ୍ଠିତ ହେଲା ।

ମହର୍ଷି ବାଲ୍ମୀକି ଶିଷ୍ୟମାନଙ୍କ ସହ ସେହି ଯଜ୍ଞକୁ ଆସି ତାଙ୍କ ପାଇଁ ନିର୍ଦ୍ଦିଷ୍ଟ କୁଟୀରରେ ଅବସ୍ଥାନ କଲେ । ସେ ତାଙ୍କର ଶିଷ୍ୟ ଲବ ଓ କୁଶଙ୍କୁ କହିଲେ, ତୁମେ ଯଜ୍ଞସ୍ଥଳକୁ ଯାଇ ରାମାୟଣ ଶୁଣାଅ । ଯେଉଁ ସ୍ଥାନରେ ଋଷି ଓ ବ୍ରାହ୍ମଣମାନେ ରହୁଛନ୍ତି, ସେଠାରେ, ରାଜ ମାର୍ଗରେ, ଅଭ୍ୟାଗତ ରାଜାମାନଙ୍କର ଗୃହରେ ଏବଂ ରାମଚନ୍ଦ୍ରଙ୍କର ଭବନଦ୍ୱାରରେ ମଧୁର ସ୍ୱରରେ ରାମାୟଣ ଗାନ କର ।

ପ୍ରଭାତ ହେବାରୁ ମୈଥିଳୀଙ୍କର ଦୁଇ ଯମଜ ପୁତ୍ର କୁଶ ଓ ଲବ ବିଭିନ୍ନ ସ୍ଥାନକୁ ଯାଇ ରାମାୟଣ ଗାନ କରିବାକୁ ଲାଗିଲେ । ବୀଣାଧ୍ୱନି ସହିତ ସୁଲଳିତ ସଙ୍ଗୀତର ସ୍ୱରରେ ଉଚ୍ଚାରିତ ସେମାନଙ୍କର ସୁନ୍ଦର ମଧୁର ଗାନ ଯଜ୍ଞସ୍ଥଳକୁ ମୁଗ୍ଧ ଓ ଚମତ୍କୃତ କଲା । କୁଶ

ଲବ ପ୍ରଥମରୁ ବିଂଶସର୍ଗ ଗାନ ଶେଷକଲେ । ରାମ ତାଙ୍କର ଭାଇମାନଙ୍କୁ କହିଲେ, ଏମାନଙ୍କୁ ଅଷ୍ଟାଦଶ ସହସ୍ର ସୁବର୍ଣ୍ଣ ମୁଦ୍ରା ଦାନକର । ତା ଛଡ଼ା ସେମାନେ ଯାହା ଚାହିଁବେ, ତାହା ମଧ୍ୟ ଦିଅ । ଲବକୁଶ କହିଲେ, ଆମେ ଧନ ନେଇ କଣ କରିବୁ ? ଆମେ ଫଳମୂଳଭୋଜୀ ବନବାସୀ । ବନରେ ସୁବର୍ଣ୍ଣମୁଦ୍ରା କ'ଣ ଦରକାର ହେବ ? ଏହି ଉତ୍ତରରେ ସମସ୍ତେ ବିସ୍ମିତ ହେଲେ । ରାମ ପଚାରିଲେ, ଏହି କାବ୍ୟ କେତେବଡ଼ ଏବଂ କିଏ ଏହାର ରଚୟିତା, ସେ କେଉଁଠି ରହନ୍ତି ? କୁଶ ଲବ ଉତ୍ତର ଦେଲେ, ଏହି କାବ୍ୟ ମହର୍ଷି ବାଲ୍ମୀକି ରଚନା କରିଛନ୍ତି । ଏଥିରେ ଚବିଶହଜାର ଶ୍ଲୋକ ଅଛି । ମୁନିଶ୍ରେଷ୍ଠ ବାଲ୍ମୀକି ଏହି ଯଜ୍ଞସ୍ଥଳର ଅଳ୍ପ ଦୂରରେ ରହୁଛନ୍ତି ।

## ୯ ॥ 'ବସୁଧା ବିଦୀର୍ଣ୍ଣ ହୁଅ'

ରାମାୟଣ ଗାନ ଓ ବାଳକମାନଙ୍କର ଉତ୍ତର ଶୁଣି ଓ ସେମାନଙ୍କର ଚେହେରା ଦେଖି ସେମାନେ ଯେ ତାଙ୍କର ଓ ସୀତାଙ୍କର ଦୁଇ ଯମଜ ପୁତ୍ର, ଏଥିରେ ରାମଙ୍କର ସନ୍ଦେହ ରହିଲା ନାହିଁ । ସେ ଦୂତମାନଙ୍କୁ ଡକାଇ ଆଜ୍ଞା ଦେଲେ, ମହାମୁନି ବାଲ୍ମୀକିଙ୍କ ପାଖକୁ ଯାଇ ତୁମେ ତାଙ୍କୁ ମୋର ନିବେଦନ ଜଣାଅ । ଯଦି ସୀତା ଶୁଦ୍ଧଚରିତ୍ରା ଓ ପାପଶୂନ୍ୟା, ସେ ମୁନିଙ୍କର ଆଦେଶ ନେଇ ଏଠାକୁ ଆସି ପୁଣି ଥରେ ତାହା ପ୍ରମାଣ କରି ଦେଖାଇ ଦିଅନ୍ତୁ । ମୁନିଙ୍କର କ'ଣ ଇଚ୍ଛା ଓ ସୀତାଙ୍କର କ'ଣ ଇଚ୍ଛା, ତୁମେମାନେ ବୁଝି ଆସି ମୋତେ ଖବର ଦିଅ । ବାଲ୍ମୀକି କହିଲେ, ରାମଙ୍କର ଯାହା ଇଚ୍ଛା, ତାହାହିଁ ହେବ । ରାମ ସଭାସ୍ଥ ଋଷି, ରାଜା ଓ ଅନ୍ୟ ଅତିଥିମାନଙ୍କୁ କହିଲେ, କାଲି ପ୍ରଭାତରେ ସୀତା ଏଠାକୁ ଆସିବେ ଏବଂ ଆପଣମାନେ ତାଙ୍କ ଶପଥ ଶୁଣିବେ । ପ୍ରଭାତ ହେବାରୁ ବଶିଷ୍ଠ, ବିଶ୍ୱାମିତ୍ର, ଦୁର୍ବାସା, ନାରଦ ଆଦି ଋଷି, ରାକ୍ଷସ ଓ ବାନରଗଣ ଏବଂ ହଜାର ହଜାର ସଂଖ୍ୟାରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ସୀତାଙ୍କର ସଚ୍ଚରିତ୍ର ଓ ଆତ୍ମଶୁଦ୍ଧି ଦେଖିବାପାଇଁ ସେଠାରେ ଉପସ୍ଥିତ ହେଲେ ।

ବାଲ୍ମୀକି ସୀତାଙ୍କୁ ନେଇ ସେଠାରେ ପହଞ୍ଚିଲେ । ସୀତା ଅଧୋମୁଖୀ ଓ କୃତାଞ୍ଜଳି ହୋଇ ବାଷ୍ପାକୁଳ ନେତ୍ରରେ ରାମଙ୍କୁ ଚିନ୍ତା କରି ଜନସମାଗମ ମଧ୍ୟରେ ବାଲ୍ମୀକିଙ୍କର ଅନୁଗମନ କଲେ । ସମସ୍ତ ସଭା ଶୋକାକୁଳ ହୋଇ ଆର୍ତ୍ତନାଦ କଲା ।

କଷାୟବସ୍ତ୍ରପରିହିତା ତପସ୍ୱିନୀ ସୀତାଙ୍କୁ ସଙ୍ଗରେ ଧରି ରାମଙ୍କ ନିକଟରେ ଉପସ୍ଥିତ ହୋଇ ମହର୍ଷି ବାଲ୍ମୀକି କହିଲେ, ଏହି ସେହି ପତିବ୍ରତା, ଧର୍ମଚାରିଣୀ ସୀତା, ଯାହାଙ୍କୁ ତୁମେ ଲୋକାପବାଦ ଭୟରେ ବିସର୍ଜନ କରିଥିଲ । ବୈଦେହୀଙ୍କର ଏହି ଯମଜ ବାଳକ ତୁମର ପୁତ୍ର । ମୁଁ ଋଷିବଂଶରେ ଜନ୍ମ । ମୁଁ ଶପଥ କରି କହୁଛି, ସୀତାଙ୍କର ଚରିତ୍ର ଶୁଦ୍ଧ, ତାଙ୍କୁ ପାପ ସ୍ପର୍ଶ କରି ନାହିଁ ।

ରାମ କୃତାଞ୍ଜଳି ହୋଇ ବାଲ୍ମୀକିଙ୍କୁ କହିଲେ – ଭଗବାନ୍, ଆପଣ ଯାହା କହୁଛନ୍ତି, ତାହା ଠିକ୍ । ସୀତାଙ୍କର ଚରିତ୍ର ଶୁଦ୍ଧ । ସେ ଲଙ୍କାରେ ଅଗ୍ନିପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ତେଣୁ ତାଙ୍କୁ ମୁଁ ଅଯୋଧ୍ୟାକୁ ଆଣିଲି । କିନ୍ତୁ ଏଠାରେ ଭୟାନକ ଲୋକାପବାଦ ଯୋଗୁଁ ମୁଁ ତାଙ୍କୁ ତ୍ୟାଗ କରିବାକୁ ବାଧ୍ୟ ହୋଇଛି । ଏହ ଯମଜ ବାଳକ କୁଶ, ଲବ ମୋର ପୁତ୍ର ବୋଲି ମଧ୍ୟ ମୁଁ ଜାଣେ । ବର୍ତ୍ତମାନ ସମସ୍ତଙ୍କର ସମ୍ମୁଖରେ ସୀତା ପୁଣି ଥରେ ତାଙ୍କର ଶୁଦ୍ଧ ଚରିତ୍ରର ପ୍ରମାଣ ଦିଅନ୍ତୁ ।

ଏହି ସମୟରେ ଚତୁର୍ଦ୍ଦିଗରେ ପବିତ୍ର ସୁଗନ୍ଧ ବାୟୁ ପ୍ରବାହିତ ହେଲା । ସତ୍ୟଯୁଗ ଆସିଗଲା ବୋଲି ଲୋକେ ଅନୁଭବ କଲେ । ସୀତା କୃତାଞ୍ଜଳି ଓ ଅଧୋମୁଖ ହୋଇ କହିଲେ, ଯଦି ରାଘବଙ୍କ ଛଡ଼ା ମୁଁ ମନେ ମନେ ଅନ୍ୟ କାହାରିକୁ ଚିନ୍ତା କରି ନ ଥାଏ, ତା' ହେଲେ ହେ ମାଧବୀ ଦେବୀ (ବସୁମାତା), ତୁମେ ବିଦୀର୍ଣ୍ଣ ହୋଇ ମୋତେ ଆଶ୍ରୟ ଦିଅ । ଯଦି କାୟମନୋବାକ୍ୟରେ ମୁଁ ରାମଙ୍କ ଛଡ଼ା କାହାରିକୁ ଅର୍ଚ୍ଚନା କରି ନ ଥାଏ, ତା'ହେଲେ ହେ ବସୁମାତା, ତୁମେ ବିଦୀର୍ଣ୍ଣ ହୋଇ ମୋତେ ଆଶ୍ରୟ ଦିଅ । ଯଦି ରାମଙ୍କ ଛଡ଼ା ମୁଁ ଅନ୍ୟ କାହାରିକୁ ଜାଣେ ନାହିଁ ଏବଂ ମୁଁ ଯାହା କହୁଛି, ତାହା ଯଦି ସତ୍ୟ ହୋଇଥାଏ, ତା'ହେଲେ ହେ ବସୁମାତା, ତୁମେ ବିଦୀର୍ଣ୍ଣ ହୋଇ ମୋତେ ଆଶ୍ରୟ ଦିଅ ।

ଏହି ସମୟରେ ଭୂକମ୍ପ ହୋଇ ଧରଣୀ ବିଦୀର୍ଣ୍ଣ ହେଲା । ସେଥିରୁ ଏକ ଆଶ୍ଚର୍ଯ୍ୟଜନକ ଦିବ୍ୟ ସିଂହାସନ ଉତ୍‌ଥିତ ହେଲା । ତାହା ସହିତ ଦେବୀରୂପିଣୀ ବସୁଧା ଆବିର୍ଭୂତା ହେଲେ । ପୃଥିବୀଦେବୀ ସୀତାଙ୍କୁ ସ୍ୱାଗତ କରି ଦୁଇଭୁଜରେ ତାଙ୍କୁ ଉଠାଇ ନେଇ ସେହି ସିଂହାସନରେ ବସାଇଲେ । ସୀତାଙ୍କ ସହ ସେହି ସିଂହାସନ ପୁଣି ରସାତଳକୁ ଚାଲିଗଲା ।

ଆକାଶରୁ ପୁଷ୍ପବୃଷ୍ଟି ହେଲା । ଅନ୍ତରୀକ୍ଷରୁ ଦେବତାମାନେ ସାଧୁ ସାଧୁ ବୋଲି କହିବାକୁ ଲାଗିଲେ । ସେମାନେ କହିଲେ – ଧନ୍ୟ ସୀତା, ଧନ୍ୟ ତୁମର ମହାନ୍ ଚରିତ୍ର । ଅନ୍ତରୀକ୍ଷ, ଭୂତଳ, ପାତାଳ, ସ୍ଥାବର, ଜଙ୍ଗମ ସମସ୍ତେ ବିସ୍ମିତ ହୋଇ ହର୍ଷଧ୍ୱନି କରିବାକୁ ଲାଗିଲେ ।

କିନ୍ତୁ ଏହି ହର୍ଷଧ୍ୱନି ଓ ସାଧୁବାଦ ମଧ୍ୟରେ ରାମ ଯଜ୍ଞକାଷ୍ଠରେ ଭରା ଦେଇ ମୁହଁ ତଳକୁ କରି ଅଶ୍ରୁପାତ କରିବାକୁ ଲାଗିଲେ । କିଛି ସମୟ ପରେ ସେ ଶୋକ ଓ କ୍ରୋଧରେ କହିଲେ, ଲକ୍ଷ୍ମୀ ସ୍ୱରୂପିଣୀ ସୀତାଙ୍କର ଅନ୍ତର୍ଦ୍ଧାନ ଯୋଗୁଁ ମୁଁ ଅତିଶୟ ଶୋକାର୍ତ୍ତ । ମୁଁ ସମୁଦ୍ରର ପରପାରରୁ ତାଙ୍କୁ ଉଦ୍ଧାର କରିଛି । ବସୁନ୍ଧରା, ତୁମେ ଶୀଘ୍ର ସୀତାଙ୍କୁ ଫେରାଇ ଦିଅ । ତୁମେ ମୋର ଶ୍ୱଶ୍ରୂ; ସୀତାଙ୍କୁ ଫେରାଇ ନ ଦେଲେ ନିଜେ ବିଦୀର୍ଣ୍ଣ ହୋଇ ମୋ ପାଇଁ ପଥ ପ୍ରସ୍ତୁତ କର । ମୁଁ ସେଠାରେ ତାଙ୍କ ସହିତ ଯାଇ ମିଳିତ ହେବି ।

ସେଠାରେ ଦେବତାମାନଙ୍କ ସହିତ ବ୍ରହ୍ମା ଉପସ୍ଥିତ ହୋଇ କହିଲେ, ସତ୍ୟବ୍ରତ ରାମ, ଦୁଃଖ କର ନାହିଁ । ସୀତା ତୁମକୁ ଏକାନ୍ତ ଆଶ୍ରୟ କରି ନିଜର ତପୋବଳରେ ନାଗଲୋକକୁ ପ୍ରସ୍ଥାନ କରିଛନ୍ତି । ସ୍ୱର୍ଗରେ ପୁଣି ତାଙ୍କ ସହିତ ତୁମର ମିଳନ ହେବ । ଏ

ପର୍ଯ୍ୟନ୍ତ ତୁମର ଜୀବନବୃତ୍ତାନ୍ତ ତୁମେ ରାମାୟଣରୁ ଶୁଣିଲ । ଭବିଷ୍ୟତରେ କ'ଣ ହେବାକୁ ଯାଉଛି, ଏହି ରାମାୟଣରେ ବର୍ଣ୍ଣିତ ହୋଇଛି । ତୁମେ ତାହା ଶ୍ରବଣ କର ।

ଯଜ୍ଞ ଶେଷ ହେଲା । ସୀତାଙ୍କ ବିହୁନରେ ରାମଙ୍କୁ ଚତୁର୍ଦ୍ଦିଗ ଶୂନ୍ୟ ଦେଖାଗଲା । ତାଙ୍କ ମନରେ ଆଦୌ ଶାନ୍ତି ରହିଲା ନାହିଁ । ସେ ଅନ୍ୟପତ୍ନୀ ଗ୍ରହଣ ନ କରି ସୀତାଙ୍କର କାଞ୍ଚନପ୍ରତିମା ଗଢ଼ି ରଖିଲେ ଏବଂ ସେହି ପ୍ରତିମାକୁ ପାଖରେ ବସାଇ ଅନ୍ୟ ବହୁ ଯଜ୍ଞ ଅନୁଷ୍ଠାନ କଲେ ।

କିଛି କାଳ ପରେ ମାତା କୌଶଲ୍ୟାଙ୍କର ମୃତ୍ୟୁ ହେଲା । ତାଙ୍କ ପରେ ସୁମିତ୍ରା ଓ କୈକେୟୀ ମଧ ଦେହତ୍ୟାଗ କଲେ ।

ରାମ ପୂର୍ବରୁ ଶତ୍ରୁଘ୍ନଙ୍କୁ ମଧୁପୁରୀରେ ରାଜା କରିଥିଲେ । ଏବେ ଭରତଙ୍କୁ ସିନ୍ଧୁ ନଦୀର ଉତ୍ତର ପଶ୍ଚିମକୁ ପଠାଇ ନୂତନ ରାଜ୍ୟ ସ୍ଥାପନ କଲେ । ଭରତଙ୍କର ଦୁଇ ପୁତ୍ର ତକ୍ଷଶିଳା ଓ ପୁଷ୍କଳାବତୀ ନଗରୀ ସ୍ଥାପନ କରି ସେଠାରେ ରାଜପଣ କଲେ । ଲକ୍ଷ୍ମଣଙ୍କର ଦୁଇ ପୁତ୍ର ମଧ ଉତ୍ତର ଓ ପଶ୍ଚିମରେ ନୂତନ ରାଜ୍ୟ ସ୍ଥାପନ କରି ସେଠାରେ ରାଜା ହେଲେ ।

## ୧୦ ।। 'ସମୟ ହୋଇଗଲାଣି'

କିଛିକାଳ ପରେ ତପସ୍ୱୀ ରୂପରେ କାଳ ଆସି ରାଜଦ୍ୱାରରେ ଉପସ୍ଥିତ ହେଲେ । ସେ ଲକ୍ଷ୍ମଣଙ୍କୁ କହିଲେ, ତୁମେ ରାଜାଙ୍କୁ କହ, ମୁଁ ମହର୍ଷି ଅତିବଳଙ୍କର ଦୂତ ହୋଇ ଆସିଛି । ତାଙ୍କୁ ଦର୍ଶନ କରିବା ପାଇଁ ଚାହେ । ରାମ ତପସ୍ୱୀଙ୍କୁ ସାକ୍ଷାତ ଦେଲେ ଏବଂ କେଉଁ କାରଣରୁ ସେ ଆସିଛନ୍ତି ତାହା ଜଣାଇବା ପାଇଁ କହିଲେ । ତପସ୍ୱୀରୂପୀ କାଳ କହିଲେ, ମୋର ଯାହା କହିବାର କଥା ମୁଁ ତୁମ୍ଭଙ୍କୁ ଗୋପନରେ କହିବି । ରାମ ଲକ୍ଷ୍ମଣଙ୍କୁ କହିଲେ, ତୁମେ ପ୍ରହରୀକୁ ହଟାଇ ଦେଇ ନିଜେ ଦ୍ୱାର ରକ୍ଷା କର । ମୋର ଆଦେଶ ଲଂଘନ କରି ଯଦି କେହି ମୋତେ ଆସି ସାକ୍ଷାତ୍ କରେ ବା ଆମର କଥାବାର୍ତ୍ତା ଶୁଣେ, ତା'ହେଲେ ସେ ନିଶ୍ଚୟ ମୋର ବଧ ହେବ ।

ଏକାନ୍ତରେ କାଳ ରାମଙ୍କୁ କହିଲେ – ମହାରାଜ, ମୋତେ ନିଜେ ବ୍ରହ୍ମା ପଠାଇଛନ୍ତି । ମୁଁ ହେଉଛି ଜଗତର ସଂହାରକର୍ତ୍ତା କାଳ । ବିଷ୍ଣୁଙ୍କର ଅଂଶ ଭାବରେ ଯେଉଁଥିପାଇଁ ତୁମେ ଏ ଜଗତକୁ ଆସିଥିଲ, ତାହା ପୂର୍ଣ୍ଣ ହୋଇଛି । ସଂସାରରୁ ମଧ ତୁମର ବିଦାୟ ନେବାର ସମୟ ହୋଇଗଲାଣି । ବର୍ତ୍ତମାନ ତୁମେ ନିଜର ବିଷ୍ଣୁଲୋକକୁ ଫେରିଯାଅ ।

ବ୍ରହ୍ମାଙ୍କର ବାର୍ତ୍ତା ଶୁଣି ରାମ ଅଳ୍ପ ହସି କହିଲେ, ମୋର ଅବତାର ଶେଷ ହୋଇଛି । ମୁଁ ଯେଉଁଠୁ ଆସିଛି ବର୍ତ୍ତମାନ ମୁଁ ସେଠାକୁ ଫେରିଯିବି । ଏଥିରେ ଟିକିଏ ହେଲେ ଚିନ୍ତା କରିବାର କାରଣ ନାହିଁ ।

ତାପସରୂପୀ କାଳଙ୍କ ସହିତ ରାମ କଥାବାର୍ତ୍ତା କରୁଛନ୍ତି, ଏହି ସମୟରେ ଦୁର୍ବାସା ଆସି ରାଜଦ୍ୱାରରେ ପହଞ୍ଚିଲେ ଏବଂ ଶୀଘ୍ର ରାମଚନ୍ଦ୍ରଙ୍କ ସହିତ ସାକ୍ଷାତ ପାଇଁ ଜିଦ୍ ଧରିଲେ ।

ଦ୍ୱାରରେ ଥାଇ ଲକ୍ଷ୍ମଣ କୃତାଞ୍ଜଳି ହୋଇ କହିଲେ, ଋଷିଶ୍ରେଷ୍ଠ, ଯାହା କହିବାର କଥା ମୋତେ କହନ୍ତୁ, ନଚେତ୍ ଟିକିଏ ଅପେକ୍ଷା କରନ୍ତୁ । କ୍ରୋଧରେ ଅଧୀର ହୋଇ ଦୁର୍ବାସା କହିଲେ, ବର୍ତ୍ତମାନ ମୁଁ ରାମଙ୍କୁ ସାକ୍ଷାତ୍ କରିବାକୁ ଚାହେଁ । ତାହା ନ ହେଲେ ତୁମକୁ, ତୁମର ଭ୍ରାତା ରାମ, ଭରତ ଓ ଅନ୍ୟ ସମସ୍ତଙ୍କୁ ଅଭିଶାପ ଦେଇ ତୁମର ବଂଶନାଶ କରିବି । ଲକ୍ଷ୍ମଣ କୌଣସି ଉପାୟ ନ ପାଇ ତାଙ୍କୁ ରାମଙ୍କ ପାଖରେ ପହଞ୍ଚାଇଦେଲେ । ରାମ ପ୍ରଣାମ କରି ପଚାରିବାରୁ ଦୁର୍ବାସା କହିଲେ, ମୁଁ ବହୁଦିନ ତପସ୍ୟା କରି ଉପବାସରେ ରହିଛି । ମୋର ଭୂରି ଭୋଜନ ଦରକାର । ଭୋଜନ ପରେ ଦୁର୍ବାସା ରାମଙ୍କୁ ଆଶୀର୍ବାଦ କରି ପ୍ରସ୍ଥାନ କଲେ । ଲକ୍ଷ୍ମଣ ରାମଙ୍କର ପ୍ରତିଜ୍ଞା ରକ୍ଷା କରିବାପାଇଁ କହିଲେ – ରାଘବ, ମୁଁ ଆପଣଙ୍କର ଆଜ୍ଞା ଲଂଘନ କରିଚି । ବର୍ତ୍ତମାନ ନିଃସଙ୍କୋଚରେ ମୋତେ ମୃତ୍ୟୁଦଣ୍ଡ ପ୍ରଦାନ କରନ୍ତୁ ।

ରାମଚନ୍ଦ୍ର କହିଲେ – ସୌମିତ୍ରି, ମୁଁ ତୁମକୁ ମୃତ୍ୟୁଦଣ୍ଡ ଦେଇପାରିବି ନାହିଁ । କିନ୍ତୁ ମୁଁ ତୁମକୁ ପରିତ୍ୟାଗ କରୁଛି । କାରଣ ପ୍ରିୟଜନର ପରିତ୍ୟାଗ ମୃତ୍ୟୁଦଣ୍ଡ ସହିତ ସମାନ । ଲକ୍ଷ୍ମଣ ତତ୍କ୍ଷଣାତ୍ ରାଜପ୍ରାସାଦ ତ୍ୟାଗ କରି ସରଯୂକୂଳରେ ଯୋଗସ୍ଥ ଭାବରେ ବସିରହି ପ୍ରାଣ ବିସର୍ଜନ କଲେ ।

## ୧୧ ॥ ମହାପ୍ରସ୍ଥାନ

ଲକ୍ଷ୍ମଣଙ୍କୁ ବିସର୍ଜନ ପରେ ରାମ ଶୋକାର୍ତ୍ତ ହେଲେ । ସେ ପୁରୋହିତ ମନ୍ତ୍ରୀ ପ୍ରଜାବର୍ଗଙ୍କୁ ଡାକି କହିଲେ, ମୁଁ ଭରତକୁ ରାଜ୍ୟ ଦେଇ ବନଗମନ କରିବି । ପ୍ରଜାବର୍ଗ ଶୋକାର୍ତ୍ତ ହୋଇ ବିଳାପ କଲେ । ଭରତ କହିଲେ, ଆପଣଙ୍କ ବିନା ରାଜ୍ୟଭୋଗ କ'ଣ ସ୍ୱର୍ଗସୁଖ ମଧ ମୋର ଦରକାର ନାହିଁ । ଲବ କୁଶଙ୍କୁ କୋଶଳର ରାଜପଦରେ ଅଭିଷିକ୍ତ କରନ୍ତୁ । ଶତ୍ରୁଘ୍ନଙ୍କ ପାଖକୁ ଶୀଘ୍ର ଦୂତ ପଠାଇ ଆମର ମହାପ୍ରସ୍ଥାନର ଖବର ଦିଅ । ପ୍ରଜାମାନେ କହିଲେ, ରାମ ଯୁଆଡ଼େ ଯିବେ, ଆମେ ତାଙ୍କର ଅନୁସରଣ କରିବୁ ।

ରାମ କୁଶ ଓ ଲବଙ୍କୁ ଦକ୍ଷିଣ ଓ ଉତ୍ତର କୋଶଳର ରାଜପଦରେ ଅଭିଷିକ୍ତ କଲେ । ବିନ୍ଧ୍ୟ ପର୍ବତର ପାଖରେ କୁଶାବତୀ ନଗରୀରେ କୁଶ ଓ ଶ୍ରାବସ୍ତିପୁରୀରେ ଲବ ରାଜ୍ୟ ଶାସନ କଲେ । ଦୂତମାନେ ଦିନ ରାତି ବିଶ୍ରାମ ନ କରି ଶତ୍ରୁଘ୍ନଙ୍କୁ ଖବର ଦେଲେ । ସେ କାଳବିଳମ୍ବ ନ କରି ତାଙ୍କ ଦୁଇ ପୁତ୍ରଙ୍କୁ ମଧୁରା ଓ ବୈଦିଶପୁରୀରେ ରାଜା କରାଇ ଅଯୋଧ୍ୟା ଫେରିଆସି ରାମଙ୍କୁ କହିଲେ, ମହାରାଜ, ମୁଁ ଆପଣଙ୍କର ଅନୁଗମନ କରିବି ।

ରାମ ବିଭୀଷଣଙ୍କୁ କହିଲେ, ଯେତେଦିନ ପ୍ରଜାମାନେ ଥିବେ, ସେତେଦିନ ତୁମେ ଲଙ୍କାରେ ଜୀବିତ ରହିବ । ହନୁମାନଙ୍କୁ କହିଲେ, ତୁମେ ଚିରଞ୍ଜୀବୀ ହେବ । ହନୁମାନ ଉତ୍ତର ଦେଲେ, ପ୍ରଭୁ ପବିତ୍ର ରାମଚରିତ ପ୍ରଚଳିତ ଥିବା ପର୍ଯ୍ୟନ୍ତ ମୁଁ ଆପଣଙ୍କ ଆଜ୍ଞାନୁସାରେ ଜୀବିତ ରହିବି ।

ପରଦିନ ପ୍ରଭାତରେ ରାମ ସୂକ୍ଷ୍ମବସ୍ତ୍ର ପରିଧାନ କରି ଦୁଇ ହସ୍ତରେ କୁଶ ଧାରଣ କରି ମହାପ୍ରସ୍ଥାନ ପାଇଁ ପ୍ରସ୍ତୁତ ହେଲେ । ଭରତ, ଶତ୍ରୁଘ୍ନ ଓ ଅଯୋଧ୍ୟାର ପ୍ରଜାବର୍ଗ ତାଙ୍କର ସଙ୍ଗେ ସଙ୍ଗେ ଚାଲିଲେ । ଅଯୋଧ୍ୟା ଜନଶୂନ୍ୟ ହୋଇଗଲା । ବାନରମାନେ ମଧ୍ୟ ରାମଙ୍କର ଅନୁଗାମୀ ହେଲେ ।

ଅର୍ଦ୍ଧଯୋଜନ ପଥ ଅତିକ୍ରମ କରି ରାମ ସରଯୂତୀରରେ ପହଞ୍ଚିବାକ୍ଷଣି ସୁଖପ୍ରଦ ସୁଗନ୍ଧ ବାୟୁ ପ୍ରବାହିତ ହେଲା । ଦେବଗଣ ପୁଷ୍ପବୃଷ୍ଟି କଲେ । ବ୍ରହ୍ମା ଅନ୍ତରୀକ୍ଷରେ ଥାଇ କହିଲେ – ହେ ବିଷ୍ଣୁ, ହେ ରାଘବ, ତୁମେ ତୁମର ଦେବପ୍ରତିମ ଭାଇମାନଙ୍କ ସହିତ ଫେରିଆସ । ତୁମେ ନିଜର ଜ୍ୟୋତିର୍ମୟ ବିଷ୍ଣୁମୂର୍ତ୍ତି ବା ଆକାଶ, ଯେ କୌଣସି ରୂପରେ ପ୍ରବେଶ କର ।

ରାମ ନିଜର ଅନୁଜମାନଙ୍କ ସହିତ ବୈଷ୍ଣବତେଜରେ ପ୍ରବେଶ କଲେ । ସେ ପିତାମହଙ୍କୁ କହିଲେ, ମୋର ଅନୁଗାମୀ ପ୍ରଜାବର୍ଗ ମୋ ସହିତ ଦେହତ୍ୟାଗ କରୁଛନ୍ତି । ଏମାନେ ମୋର ଏକାନ୍ତ ଭକ୍ତ । ଏମାନେ କେଉଁ ଲୋକକୁ ଯାତ୍ରା କରିବେ, ଆପଣ ସ୍ଥିର କରନ୍ତୁ । ବ୍ରହ୍ମା ବ୍ରହ୍ମଲୋକର ନିକଟସ୍ଥ ସନ୍ତାନକ ଲୋକ ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ କଲେ । ବାନର ଓ ଭଲ୍ଲୁକମାନେ ଯେଉଁ ଦେବତାମାନଙ୍କର ଅଂଶ ରୂପେ ଜନ୍ମ ଗ୍ରହଣ କରିଥିଲେ, ସେମାନେ ଦେବଲୋକରେ ସେହିସବୁ ଶରୀରରେ ପ୍ରବେଶ କଲେ । ସୁଗ୍ରୀବ ସୂର୍ଯ୍ୟମଣ୍ଡଳରେ ମିଶିଗଲେ । ଅନ୍ୟ ସମସ୍ତ ଇତର ପ୍ରାଣୀ ସରଯୂର ଜଳରେ ପ୍ରାଣ ବିସର୍ଜନ ଦେଇ ସ୍ୱର୍ଗଲୋକ ଲାଭ କଲେ ।

# ପରିଶିଷ୍ଟ—୨

## ରାମାୟଣରେ କଥିତ ପ୍ରଧାନ ପ୍ରଧାନ ପାତ୍ର, ସ୍ଥାନ ଓ ଅସ୍ତ୍ରଶସ୍ତ୍ରାଦିର ନାମ

| | |
|---|---|
| ଅକମ୍ପନ | ଲଙ୍କାର ରାକ୍ଷସଯୋଦ୍ଧା । ଜନସ୍ଥାନରୁ ପଳାଇ ଆସି ରାବଣଙ୍କୁ ଖର ଦୂଷଣ ବଧ ବାର୍ତ୍ତା ଦେଇଥିଲା । |
| ଅଗସ୍ତ୍ୟ | ପ୍ରସିଦ୍ଧ ଋଷି : ସମୁଦ୍ରପାନ କରିଥିଲେ; ରାବଣ ସହିତ ଶେଷ ଯୁଦ୍ଧରେ ରାମଙ୍କୁ ଆଦିତ୍ୟହୃଦୟ ମନ୍ତ୍ର ଦେଇଥିଲେ । |
| ଅଙ୍ଗ | ଗଙ୍ଗାନଦୀର ଦକ୍ଷିଣବର୍ତ୍ତୀ ରାଜ୍ୟ; ଆଧୁନିକ ଭାଗଲପୁର । |
| ଅଙ୍ଗଦ | ବାଳୀପୁତ୍ର, କିଷ୍କିନ୍ଧ୍ୟାର ଯୁବରାଜ, ପ୍ରସିଦ୍ଧ ବାନରବୀର । |
| ଅଜ | ଇକ୍ଷ୍ୱାକୁ ବଂଶର ପ୍ରସିଦ୍ଧ ରାଜା, ଦଶରଥଙ୍କର ପିତା । |
| ଅଞ୍ଜନା | ହନୁମାନଙ୍କର ମାତା । |
| ଆଞ୍ଜନେୟ | ହନୁମାନଙ୍କର ଅନ୍ୟନାମ । |
| ଅତିକାୟ | ରାବଣର ପୁତ୍ର; ବିଖ୍ୟାତ ରାକ୍ଷସ ଯୋଦ୍ଧା । |
| ଅତିବଳ | ବିଶ୍ୱାମିତ୍ର ରାମଙ୍କୁ ଦେଇଥିବା କ୍ଷୁଧାତୃଷ୍ଣାନିବାରଣ ମନ୍ତ୍ର । |
| ଅତ୍ରି | ସୁପ୍ରସିଦ୍ଧ ଋଷି; ବନବାସବେଳେ ରାମ ତାଙ୍କର ଆତିଥ୍ୟ ଗ୍ରହଣ କରିଥିଲେ । |
| ଅଦିତି | କଶ୍ୟପଙ୍କର ପତ୍ନୀ; ଇନ୍ଦ୍ର ସୂର୍ଯ୍ୟାଦି ଦେବତାଙ୍କର ମାତା । |
| ଅନରଣ୍ୟ | ଇକ୍ଷ୍ୱାକୁ ବଂଶୀୟ ରାଜା; ରାମଙ୍କ ଦ୍ୱାରା ନିହତ ହେବ ବୋଲି ରାବଣଙ୍କୁ ଭବିଷ୍ୟତ୍‌ବାଣୀ ଶୁଣାଇଥିଲେ । |
| ଅନସୂୟା | ପ୍ରସିଦ୍ଧ ତପସ୍ୱିନୀ; ଅତ୍ରିଙ୍କର ପତ୍ନୀ; ବନବାସବେଳେ ସୀତାଙ୍କୁ ଅଳଙ୍କାର ଦାନ କରିଥିଲେ । |
| ଅନୁଷ୍ଟୁପ୍ | ରାମାୟଣର ଛନ୍ଦ । ବିଶ୍ୱର ପ୍ରଥମ ଶ୍ଳୋକ ଏହି ଛନ୍ଦରେ ବାଲ୍ମୀକିଙ୍କ ଦ୍ୱାରା ରଚିତ ହୋଇଥିଲା । |
| ଅମରାବତୀ | ଇନ୍ଦ୍ରପୁରୀ; ଦେବତାମାନଙ୍କର ରାଜଧାନୀ । |
| ଅଯୋଧ୍ୟା | କୋଶଳର ରାଜଧାନୀ; ଆଧୁନିକ ଅଯୋଧ୍ୟା । |
| ଅୟୋମୁଖୀ | ଲକ୍ଷ୍ମଣଙ୍କୁ ପ୍ରେମ ନିବେଦନ କରିଥିବା ଭୟାନକ ରାକ୍ଷସୀ । |
| ଅଳକାପୁରୀ | କୈଳାସ ପର୍ବତରେ କୁବେରଙ୍କର ରାଜଧାନୀ । |
| ଅଶ୍ୱତର | ଖଚର । |
| ଅଂଶୁମାନ୍ | ସଗରଙ୍କର ପୌତ୍ର, ଭଗୀରଥଙ୍କର ପିତାମହ । |
| ଅଶ୍ୱପତି | କୈକେୟୀଙ୍କର ପିତା; କେକୟର ରାଜା । |
| ଅଶୋକବନ | ଲଙ୍କାରେ ରାବଣର ପ୍ରସିଦ୍ଧ ଉପବନ, ଯେଉଁଠାରେ ସୀତା ଅବସ୍ଥାନ କରୁଥିଲେ । |

| | |
|---|---|
| ଅସମଞ୍ଜ | ଅଯୋଧ୍ୟାର ଅତ୍ୟାଚାରୀ ରାଜପୁତ୍ର; ପରେ ପିତାଙ୍କ ଦ୍ୱାରା ରାଜ୍ୟରୁ ନିର୍ବାସିତ । |
| ଅହଲ୍ୟା | ଗୌତମ ଋଷିଙ୍କ ପତ୍ନୀ; ଇନ୍ଦ୍ରଙ୍କ ସହିତ ସହବାସ ଦୋଷରୁ ଅଭିଶପ୍ତା; ରାମଙ୍କ ଦ୍ୱାରା ମୁକ୍ତ । |
| ଅକ୍ଷକୁମାର | ରାବଣର ବୀରପୁତ୍ର । |
| ଆଭୀର | ଉତ୍ତର ସମୁଦ୍ରକୂଳରେ ଥିବା ଦସ୍ୟୁଦଳ; ରାମଙ୍କ ଶରରେ ନିହତ । |
| ଇନ୍ଦ୍ରଜିତ୍ | ରାବଣର ପୁତ୍ର; ଇନ୍ଦ୍ରଙ୍କୁ ଜୟ କରିଥିବା ସୁପ୍ରସିଦ୍ଧ ଯୋଦ୍ଧା । |
| ଇଲ୍ୱଳ | ନିଷ୍ଠୁର ନରମାଂସଭୋଜୀ ରାକ୍ଷସ; ଅଗସ୍ତ୍ୟଙ୍କ କୋପାନଳରେ ଦଗ୍ଧ ହୋଇଥିଲା । |
| ଇକ୍ଷ୍ୱାକୁ | ରାମଙ୍କର ପୂର୍ବଜ ପ୍ରସିଦ୍ଧ ରାଜା; ଯାହାଙ୍କ ନାମରେ ଇକ୍ଷ୍ୱାକୁ ବଂଶ ପ୍ରସିଦ୍ଧ । |
| ଉର୍ମିଳା | ଲକ୍ଷ୍ମଣଙ୍କର ପତ୍ନୀ । |
| ଐନ୍ଦ୍ରାସ୍ତ୍ର | ଇନ୍ଦ୍ର ନାମରେ ମନ୍ତ୍ରିତ ଅସ୍ତ୍ର । |
| ଐରାବତ | ଇନ୍ଦ୍ର ହସ୍ତୀ; ଇନ୍ଦ୍ରଜିତ୍ ଏହାର ଦନ୍ତ ଭଗ୍ନ କରିଥିଲା । |
| ଋଷ୍ୟମୂକ | କିଷ୍କିନ୍ଧ୍ୟାର ପ୍ରସିଦ୍ଧ ପର୍ବତ, ଯେଉଁଠି ସୁଗ୍ରୀବ ହନୁମାନ ପ୍ରଭୃତି ବାନରବୀରମାନେ ଆଶ୍ରୟ ନେଇଥିଲେ । |
| ଋଷ୍ୟଶୃଙ୍ଗ | ଦଶରଥଙ୍କର ପୁତ୍ରେଷ୍ଟି ଯଜ୍ଞପାଇଁ ଅଯୋଧ୍ୟାକୁ ଆନୀତ ଋଷି । |
| ଋଷଭ | ବାନର ଯୂଥପତି; ରାମଙ୍କର ସହାୟକ । |
| କବନ୍ଧ | ଅଭିଶପ୍ତ ଦାନବ, ରାମଙ୍କୁ ସୁଗ୍ରୀବଙ୍କ ସହିତ ମିତ୍ରତା ପାଇଁ ଉପଦେଶ ଦେଇଥିଲା । |
| କଶ୍ୟପ | ଋଷି, ଦେବ, ଦାନବ, ଯକ୍ଷ, ଗନ୍ଧର୍ବ, ନାଗ, ବିହଙ୍ଗ ଆଦି ପ୍ରାଣିଜଗତର ଜନକ । |
| କାର୍ତ୍ତବୀର୍ଯ୍ୟ | ଅନ୍ୟନାମ ସହସ୍ରାର୍ଜୁନ, ପ୍ରସିଦ୍ଧ ରାଜା ଓ ଯୋଦ୍ଧା; ରାବଣକୁ ବନ୍ଦୀ କରିଥିଲେ ଏବଂ ପରଶୁରାମଙ୍କ ଦ୍ୱାରା ନିହତ ହୋଇଥିଲେ । |
| କିନ୍ନର | ଅଶ୍ୱମୁଖ ଦେବଯୋନିବିଶେଷ । |
| କିଷ୍କିନ୍ଧ୍ୟା | ରାମାୟଣକାଳୀନ ପ୍ରସିଦ୍ଧ ରାଜ୍ୟ; ଆଧୁନିକ କର୍ଣ୍ଣାଟକର ଉତ୍ତର-ମହୀଶୂର ଅଞ୍ଚଳ । |
| କୁବେର | ଯକ୍ଷମାନଙ୍କର ଅଧୀଶ୍ୱର; ଧନରକ୍ଷକ, ଉତ୍ତରଦିଗର ଦିକ୍‌ପାଳ । |
| କୁଶ | ରାମଙ୍କର ଜ୍ୟେଷ୍ଠପୁତ୍ର, ରାମାୟଣ-ଗାୟକ । |
| କୁମ୍ଭ | ରାକ୍ଷସଯୋଦ୍ଧା; କୁମ୍ଭକର୍ଣ୍ଣର ପୁତ୍ର । |
| କୁମ୍ଭକର୍ଣ୍ଣ | ରାବଣର ଭ୍ରାତା; ବିଖ୍ୟାତ ଯୋଦ୍ଧା; ନିଦ୍ରାପରବଶ । |
| କେକୟ | ଆଧୁନିକ ପଞ୍ଜାବର ଉତ୍ତର-ପଶ୍ଚିମ ଅଞ୍ଚଳ । |
| କେଶରୀ | ବାନର ଯୂଥପତି, ହନୁମାନଙ୍କର ପାଳକ ପିତା । |
| କୈକେୟୀ | ଦଶରଥଙ୍କର ପ୍ରିୟତମା ରାଣୀ; ଭରତଙ୍କର ମାତା; ଦଶରଥଙ୍କଠାରୁ ବରମାଗି ରାମଙ୍କୁ ନିର୍ବାସିତ କରିଥିଲେ । |

| | |
|---|---|
| କୈଳାସ | ହିମାଳୟ ପର୍ବତମାଳାର ଅଂଶ, ଶିବଙ୍କର ଓ କୁବେରଙ୍କର ଅଧିଷ୍ଠାନ ରୂପେ ଖ୍ୟାତ । |
| କୋଦଣ୍ଡ | ରାମଙ୍କର ପ୍ରକାଣ୍ଡ ଧନୁ । |
| କୋଶଳ | ଅଯୋଧ୍ୟାରୁ ଜବଲପୁର ପର୍ଯ୍ୟନ୍ତ ବିଶାଳ ରାଜ୍ୟ । |
| କୌଶଲ୍ୟା | ଦଶରଥଙ୍କର ଜ୍ୟେଷ୍ଠରାଣୀ, ରାମଙ୍କର ଜନନୀ । |
| କ୍ରୌଞ୍ଚ | ଏକଜାତୀୟ ବଗପକ୍ଷୀ, କେତେକଙ୍କ ମତରେ କାଣ୍ଡିଆ ବଗ । |
| ଖର | ଜନସ୍ଥାନର ରାକ୍ଷସରାଜ । |
| ଗବ, ଗବୟ, ଗବାକ୍ଷ | ବାନର ଯୂଥପତିବୃନ୍ଦ । |
| ଗନ୍ଧର୍ବ | ସ୍ୱର୍ଗବାସୀ ସଙ୍ଗୀତଜ୍ଞଗଣ । |
| ଗରୁଡ଼ | ବିହଙ୍ଗରାଜ, ବିନତାଙ୍କ ପୁତ୍ର, ରାମ ଲକ୍ଷ୍ମଣଙ୍କୁ ନାଗପାଶରୁ ମୁକ୍ତ କରିଥିଲେ । |
| ଗାଧି | କାନ୍ୟକୁବ୍ଜର ରାଜା, ବିଶ୍ୱାମିତ୍ରଙ୍କର ପିତା । |
| ଗୁହ/ଗୁହକ | ନିଷାଦରାଜ, ରାମଙ୍କର ପ୍ରିୟ ମିତ୍ର । |
| ଗୋଲାଙ୍ଗୁଳ | ଗୋରୁଲାଙ୍ଗୁଳ ପରି ଲାଙ୍ଗୁଳ ଥିବା ଏକ ଜାତୀୟ କୃଷ୍ଣମୁଖ ବାନର । |
| ଗୋଷ୍ପଦ | ଗୋରୁଖୁରା ବୁଡ଼ିବାପରି ସାମାନ୍ୟ ମାତ୍ର ଜଳଥିବା ସ୍ଥାନ । |
| ଚିତ୍ରକୂଟ | ଉତ୍ତରପ୍ରଦେଶ ବାନ୍ଦା ଜିଲ୍ଲାରେ ଅବସ୍ଥିତ ପର୍ବତ, ରାମଙ୍କର ପ୍ରଥମ ବନବାସର ଆବାସ ସ୍ଥାନ । |
| ଚୈତ୍ରବନ | କୁବେରଙ୍କର ମନୋରମ ଉଦ୍ୟାନ । |
| ଜନକ | ମିଥିଳାର ରାଜା; ସୀତାଙ୍କର ପିତା । |
| ଜନସ୍ଥାନ | ଦଣ୍ଡକାରଣ୍ୟର ଅଂଶବିଶେଷ; ଏହିଠାରେ ରାମ ଖର ଓ ଦୂଷଣଙ୍କୁ ନିହତ କରିଥିଲେ ଓ ରାବଣ ସୀତାଙ୍କୁ ଚୋରାଇ ନେଇଥିଲା । |
| ଜମଦଗ୍ନି | ପ୍ରସିଦ୍ଧ ଋଷି;ପରଶୁରାମଙ୍କର ପିତା । |
| ଜଟାୟୁ | ଗୃଧ୍ରରାଜ; ଦଶରଥଙ୍କର ମିତ୍ର; ସୀତାଙ୍କର ସହାୟକ । |
| ଜହ୍ନୁ | ଋଷି; ଗଙ୍ଗାଙ୍କୁ ଚଳୁ କରି ପୁଣି ବାହାର କରିଥିଲେ । ସେଥିପାଇଁ ଗଙ୍ଗା ଜହ୍ନୁଙ୍କର କନ୍ୟାଭାବରେ ଜାହ୍ନବୀ ନାମରେ ପରିଚିତା । |
| ଜାନକୀ | ଜନକଙ୍କର କନ୍ୟା; ସୀତାଙ୍କର ଅନ୍ୟନାମ । |
| ଜାବାଳି | ଋଷି, ଦଶରଥଙ୍କର ମନ୍ତ୍ରୀ । |
| ଜାମ୍ବବାନ୍ | ପ୍ରସିଦ୍ଧ ଯୋଦ୍ଧା; ଭଲ୍ଲୁକରାଜ, ହନୁମାନଙ୍କର ଉତ୍ସାହଦାତା । |
| ତାଡ଼କା | ମୁନିଋଷିଙ୍କର ପୀଡ଼ାଦାତ୍ରୀ ଦାରୁଣ ରାକ୍ଷସୀ; ରାମଙ୍କ ଦ୍ୱାରା ନିହତ ହୋଇଥିଲା । |
| ତାର | ବାନର ଯୋଦ୍ଧା ଓ ଯୂଥପତି । |
| ତାରା | ବାଳୀ-ପତ୍ନୀ, ଅଙ୍ଗଦଙ୍କର ମାତା । |
| ତୋମର | ଏକ ପ୍ରକାର କ୍ଷେପଣାସ୍ତ୍ର । |
| ତ୍ରିଜଟା | ଅଶୋକବନରେ ସୀତାଙ୍କର ସଖୀ, ରାକ୍ଷସୀ । |

| | |
|---|---|
| ତ୍ରିବିକ୍ରମ | ବାମନ ଅବତାରୀ ବିଷ୍ଣୁ, ତ୍ରିପାଦରେ ଆକାଶ ପୃଥିବୀ ଓ ପାତାଳକୁ ଆଚ୍ଛାଦିତ କରିଥିଲେ । |
| ତ୍ରିଶିରା | ଖରର ସେନାପତି । |
| ତ୍ରିଶଙ୍କୁ | ଇକ୍ଷ୍ୱାକୁବଂଶୀୟ ରାଜା ଯାହାଙ୍କ ପାଇଁ ବିଶ୍ୱାମିତ୍ର ଦ୍ୱିତୀୟ ସ୍ୱର୍ଗ ସୃଷ୍ଟି କରିଥିଲେ । |
| ଦନୁ | କବନ୍ଧ ରାକ୍ଷସର ଅନ୍ୟନାମ । |
| ଦଣ୍ଡକ, ଦଣ୍ଡକାରଣ୍ୟ | ନର୍ମଦା ଓ ଗୋଦାବରୀ ମଧ୍ୟବର୍ତ୍ତୀ ବିଶାଳ ଅରଣ୍ୟାଞ୍ଚଳ । |
| ଦଶରଥ | ଅଯୋଧ୍ୟାର ରାଜା; ରାମଙ୍କର ପିତା । |
| ଦର୍ଭ | ଏକ ପ୍ରକାର କୁଶ ଘାସ । |
| ଦାନବ | ଦନୁ ଓ କଶ୍ୟପଙ୍କର ପୁତ୍ରଗଣ; ଦେବତାମାନଙ୍କର ଶତ୍ରୁ । |
| ଦିଲୀପ | ଇକ୍ଷ୍ୱାକୁ ବଂଶର ପ୍ରସିଦ୍ଧ ରାଜା; ଭଗୀରଥଙ୍କର ପିତା । |
| ଦୁନ୍ଦୁଭି | ବଳଗର୍ବୀ ରାକ୍ଷସ; ବାଳୀ ସହିତ ଯୁଦ୍ଧରେ ନିହତ । |
| ଦୂଷଣ | ଖରର ଅନ୍ୟତମ ସେନାପତି । |
| ଧୂମ୍ରାକ୍ଷ | ରାବଣର ସେନାପତି । |
| ନନ୍ଦୀଗ୍ରାମ | ଅଯୋଧ୍ୟା ଉପକଣ୍ଠବର୍ତ୍ତୀ ଗ୍ରାମ । ଏଠାରେ ଭରତ ରାମଙ୍କ ବନବାସ ସମୟରେ ତାଙ୍କର କଠଉ ପୂଜା କରି ରାଜ୍ୟ ଶାସନ କରୁଥିଲେ । |
| ନରାନ୍ତକ | ଲଙ୍କାର ରାକ୍ଷସ ଯୋଦ୍ଧା, ରାବଣର ପୁତ୍ର । |
| ନଳ | ଦେବଶିଳ୍ପୀ ବିଶ୍ୱକର୍ମାଙ୍କ ପୁତ୍ର ବାନରବୀର; ସେତୁବନ୍ଧର ନିର୍ମାତା । |
| ନାଗପାଶ | ଇନ୍ଦ୍ରଜିତ୍ ଏହି ମନ୍ତ୍ରିତ ସର୍ପଶର ଦ୍ୱାରା ରାମଲକ୍ଷ୍ମଣଙ୍କୁ ବାନ୍ଧି ଅଚେତ କରିଥିଲା । |
| ନାରଦ | ଦେବର୍ଷି; ରାମଚରିତ ଲେଖିବାରେ ବାଲ୍ମୀକିଙ୍କର ଉତ୍ସାହଦାତା । |
| ନିକୁମ୍ଭ | କୁମ୍ଭକର୍ଣ୍ଣ ପୁତ୍ର; ରାକ୍ଷସଯୋଦ୍ଧା । |
| ନିକୁମ୍ଭିଳା | ଲଙ୍କାର ପ୍ରସିଦ୍ଧ ବଟବୃକ୍ଷ, ଯାହାର ତଳରେ ଇନ୍ଦ୍ରଜିତ୍ ଯଜ୍ଞ କରି ଅଜେୟ ହେଉଥିଲା । |
| ନୀଳ | ଅଗ୍ନିଙ୍କର ପୁତ୍ର; ସୁଗ୍ରୀବଙ୍କ ବାନରସେନାର ସେନାପତି । |
| ନିଷାଦ | ଏକ ଜାତୀୟ ଶବର । |
| ପଞ୍ଚବଟୀ | ଜନସ୍ଥାନରେ ଥିବା ରାମଙ୍କର ଆଶ୍ରମ । |
| ପମ୍ପା | ପୁରାଣପ୍ରସିଦ୍ଧ; ଆଧୁନିକ କର୍ଣ୍ଣାଟକର ଏକ ରମଣୀୟ ହ୍ରଦ । |
| ପରଶୁରାମ | ଜମଦଗ୍ନିଙ୍କର ପୁତ୍ର; ବିଷ୍ଣୁଙ୍କର ଷଷ୍ଠ ଅବତାର; ରାମ ତାଙ୍କୁ ପରାଜିତ କରି ବିଷ୍ଣୁକଳା ହରଣ କରିଥିଲେ । |
| ପ୍ରଜାପତି | ବ୍ରହ୍ମା; ଜଗତର ସୃଷ୍ଟିକର୍ତ୍ତା । |
| ପ୍ରସ୍ରବଣ ଗିରି | କିଷ୍କିନ୍ଧ୍ୟା ନିକଟରେ ଅବସ୍ଥିତ ରମଣୀୟ ପର୍ବତ, ଯେଉଁଠି ରାମ ଅବସ୍ଥାନ କରିଥିଲେ । |

| | |
|---|---|
| ପ୍ରହସ୍ତ | ରାବଣର ସେନାପତି । |
| ପାରିଜାତ | ସ୍ୱର୍ଗର ନନ୍ଦନକାନନର ଶ୍ରେଷ୍ଠ ପୁଷ୍ପ । |
| ପୁଷ୍ପକବିମାନ | କୁବେରଙ୍କଠାରୁ ଅପହୃତ ଇଚ୍ଛାଗାମୀ ରାବଣର ରଥ । |
| ମକରାକ୍ଷ | ରାକ୍ଷସବୀର; ଖରର ପୁତ୍ର । |
| ମନ୍ଦର | ପ୍ରସିଦ୍ଧ ପର୍ବତ; ଦେବତାମାନେ ସମୁଦ୍ର ମନ୍ଥନ ବେଳେ ଏହାକୁ ମନ୍ଥନଦଣ୍ଡ କରିଥିଲେ । |
| ମନ୍ଥରା | କୈକେୟୀଙ୍କର ଦାସୀ, ରାମଙ୍କର ବନବାସ ଓ ଭରତଙ୍କର ରାଜ୍ୟଲାଭ-ଏହି ଦୁଇ ବର ରାଜା ଦଶରଥଙ୍କୁ ମାଗିବାପାଇଁ ସେ କୈକେୟୀଙ୍କୁ ପ୍ରବର୍ତ୍ତାଇ ଥିଲା । |
| ମଳୟଗିରି : | ଋଷ୍ୟମୂକର ନିକଟବର୍ତ୍ତୀ ଚନ୍ଦନବୃକ୍ଷଶୋଭିତ ମନୋରମ ପର୍ବତ । |
| ମୟ, ମୟଦାନବ | ଦାନବମାନଙ୍କର ଶ୍ରେଷ୍ଠ ଶିଳ୍ପୀ । |
| ମହାପାର୍ଶ୍ୱ, ମହୋଦର | ରାବଣର ମନ୍ତ୍ରୀଦ୍ୱୟ । |
| ମାଲ୍ୟବନ୍ତ | କିଷ୍କିନ୍ଧ୍ୟାର ମନୋରମ ପର୍ବତ । |
| ମାରୀଚ | ପ୍ରସିଦ୍ଧ ରାକ୍ଷସ, ରାବଣଦ୍ୱାରା ମାୟାମୃଗ ରୂପେ ରାମଙ୍କୁ ଭୁଲାଇବାପାଇଁ ପ୍ରେରିତ ହୋଇଥିଲା । |
| ମାଲ୍ୟବାନ୍ | ରାବଣର ମାତାମହ, ଯେ କି ସୀତାଙ୍କୁ ଫେରାଇଦେବାପାଇଁ ପରାମର୍ଶ ଦେଇଥିଲା । |
| ମାତଙ୍ଗ | ପ୍ରସିଦ୍ଧ ମହର୍ଷି । ରାମଭକ୍ତ ଶବରୀ ତାଙ୍କର ସେବା କରୁଥିଲା । |
| ମାତଳି | ଇନ୍ଦ୍ରଙ୍କ ରଥର ସାରଥି । ରାବଣ ସହିତ ଶେଷ ଯୁଦ୍ଧବେଳେ ରାମଙ୍କର ସାରଥି ଥିଲେ । |
| ମାରୁତି | ମରୁତଙ୍କର ପୁତ୍ର । ହନୁମାନଙ୍କର ଅନ୍ୟନାମ । |
| ମିଥିଳା | ବିଦେହ ରାଜ୍ୟର ରାଜଧାନୀ । ସୀତାଙ୍କର ଜନ୍ମଭୂମି । ଆଧୁନିକ ବିହାରର ଏକ ପ୍ରସିଦ୍ଧ ଅଞ୍ଚଳ । |
| ମେଘନାଦ | ଇନ୍ଦ୍ରଜିତ୍‌ର ଅନ୍ୟନାମ । ଜନ୍ମବେଳେ ସେ ମେଘତୁଲ୍ୟ ଗର୍ଜନ କରିଥିଲା । |
| ମେନକା | ସ୍ୱର୍ଗର ଅପ୍ସରା । ବିଶ୍ୱାମିତ୍ରଙ୍କ ତପୋଭଙ୍ଗ କରିଥିଲେ । |
| ମୈନ୍ଦ | ବାନର ଯୂଥପତି ଓ ଯୋଦ୍ଧା |
| ମୈନାକ | ସମୁଦ୍ରଗର୍ଭସ୍ଥ ପର୍ବତ । ହନୁମାନଙ୍କ ଲଙ୍କା ଯାତ୍ରାବେଳେ ଏହି ପର୍ବତ ଜଳରୁ ଉତ୍‌ଥିତ ହୋଇ ହନୁମାନଙ୍କୁ ଆଶ୍ରୟ ଦେବାପାଇଁ ଇଚ୍ଛା କରିଥିଲା । |
| ଯକ୍ଷ | କୁବେରଙ୍କର ପ୍ରଜା ଓ ତାଙ୍କର ଧନରକ୍ଷକ । |
| ଯୁଧାଜିତ୍ | କେକୟର ଯୁବରାଜ; ଭରତଙ୍କର ମାତୁଳ । |
| ଯୂପାକ୍ଷ | ରାକ୍ଷସଯୋଦ୍ଧା । |

| | |
|---|---|
| ରଘୁ | ଇକ୍ଷ୍ୱାକୁ ବଂଶର ପ୍ରସିଦ୍ଧ ରାଜା । ତାଙ୍କର ନାମାନୁସାରେ ଏହାକୁ ରଘୁବଂଶ ମଧ୍ୟ କୁହାଯାଏ । |
| ରମ୍ଭା | ସ୍ୱର୍ଗର ଅପ୍‌ସରା; ଇନ୍ଦ୍ର କଠୋର ତପସ୍ୟା କରୁଥିବା ଋଷିମାନଙ୍କୁ ପ୍ରଲୋଭିତ କରିବାପାଇଁ ତାଙ୍କୁ ପଠାଉଥିଲେ । |
| ରାଘବ | ରଘୁବଂଶଜାତ; ରାମଙ୍କର ଅନ୍ୟନାମ । |
| ରାମ | ଦଶରଥଙ୍କ ପୁତ୍ର; ବିଷ୍ଣୁଙ୍କର ସପ୍ତମ ଅବତାର; ରାଜା ଓ ପୁରୁଷମାନଙ୍କ ମଧ୍ୟରେ ଶ୍ରେଷ୍ଠ; ରାମାୟଣର ନାୟକ । |
| ରାବଣ | ବିଶ୍ରବାଙ୍କ ପୁତ୍ର ଓ ଲଙ୍କାର ରାଜା । ତ୍ରିଲୋକ ବିଜୟୀ, ବେଦଜ୍ଞ ଓ ନୀତିଜ୍ଞ । କିନ୍ତୁ ଲମ୍ପଟ, ପରସ୍ୱ ଓ ପରଦାରହରଣକାରୀ । |
| ରୁଦ୍ରାସ୍ତ୍ର | ରୁଦ୍ରଙ୍କର ପ୍ରଦତ୍ତ ମନ୍ତ୍ରିତ ଅସ୍ତ୍ର । |
| ରୋମା | ସୁଗ୍ରୀବଙ୍କର ପତ୍ନୀ । |
| ଲଙ୍କା | ରାବଣର ରାଜଧାନୀ, ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ ମନୋରମ ନଗରୀ । |
| ଲଙ୍କାଦେବୀ | ଲଙ୍କାର ରକ୍ଷାପାଇଁ ରାବଣ ଦ୍ୱାରା ନିଯୁକ୍ତ; ହନୁମାନଙ୍କୁ ବାଧାଦେଇ ପରାଜିତ ହୋଇଥିଲେ । |
| ଲବ | ରାମଙ୍କର ପୁତ୍ର; କୁଶଙ୍କର ଯମଜ ଭ୍ରାତା; ରାମାୟଣର ଗାୟକ । |
| ଲକ୍ଷ୍ମଣ | ଦଶରଥଙ୍କର ପୁତ୍ର, ସୁମିତ୍ରାଙ୍କର ଜ୍ୟେଷ୍ଠ ଯମଜ ସନ୍ତାନ; ରାମଙ୍କର ଅନୁଗତ ଭ୍ରାତା, ଭକ୍ତ ଓ ସହଚର । |
| ଲୋମପାଦ | ଅଙ୍ଗରାଜ୍ୟର ରାଜା, ବୃଷ୍ଟିପାଇଁ ଋଷ୍ୟଶୃଙ୍ଗଙ୍କୁ ଅଣାଇଥିଲେ । |
| ବଜ୍ର | ଇନ୍ଦ୍ରଙ୍କର ଅମୋଘ ଅସ୍ତ୍ର । |
| ବଜ୍ରଦଂଷ୍ଟ୍ର | ରାବଣର ବିଶ୍ୱସ୍ତ ସେନାପତି । |
| ବଳି | ଦୈତ୍ୟରାଜ, ଦାନପାଇଁ ପ୍ରସିଦ୍ଧ; ବାମନଙ୍କ ପାଦରେ ପାତାଳକୁ ଯାଇ ରାଜପଣ କଲେ । |
| ବ୍ରହ୍ମାସ୍ତ୍ର | ବ୍ରହ୍ମାଙ୍କର ପ୍ରଦତ୍ତ ଅମୋଘ ଅସ୍ତ୍ର । ଏହି ଅସ୍ତ୍ରରେ ରାମ ରାବଣକୁ ନିହତ କରିଥିଲେ । |
| ବଶିଷ୍ଠ | ଇକ୍ଷ୍ୱାକୁ ବଂଶର କୁଳପୁରୋହିତ; ସୁପ୍ରସିଦ୍ଧ ବ୍ରହ୍ମର୍ଷି । |
| ବାତାପି | କ୍ରୂରକର୍ମା ଦାନବ; ଅଗସ୍ତ୍ୟଙ୍କ ଦ୍ୱାରା ନିହତ ହୋଇଥିଲା । |
| ବାମନ | ବିଷ୍ଣୁଙ୍କର ପଞ୍ଚମ ଅବତାର । ଛଳରେ ବଳିକୁ ପାତାଳକୁ ଚାପିଥିଲେ । |
| ବାରୁଣାସ୍ତ୍ର | ବରୁଣଙ୍କର ମନ୍ତ୍ରିତ ଅସ୍ତ୍ର । |
| ବାଳୀ | କିଷ୍କିନ୍ଧ୍ୟାର ରାଜା; ଇନ୍ଦ୍ରପୁତ୍ର; ଭୁବନବିଖ୍ୟାତ ଯୋଦ୍ଧା । |
| ବାଲ୍ମୀକି | ପ୍ରସିଦ୍ଧ ଋଷି; ଆଦିକବି ଓ ରାମାୟଣର ରଚୟିତା । |

| | |
|---|---|
| ବିଦେହ | ରାଜର୍ଷି ଜନକଙ୍କ ଦ୍ୱାରା ଶାସିତ ରାଜ୍ୟ, ଏହାର ରାଜଧାନୀ ମିଥିଳା । ଗଙ୍ଗାର ଦକ୍ଷିଣରେ ଅବସ୍ଥିତ । |
| ବିରାଧ | ଶାପଗ୍ରସ୍ତ ଗନ୍ଧର୍ବ; ଯେକି ରାକ୍ଷସ ରୂପରେ ଦଣ୍ଡକାରଣ୍ୟରେ ବିଚରଣ କରୁଥିଲା । |
| ବିଶ୍ୱକର୍ମା | ସ୍ୱର୍ଗର ଶିଳ୍ପୀ । |
| ବିଶ୍ୱାମିତ୍ର | ପ୍ରସିଦ୍ଧ ଋଷି; ରାମଲକ୍ଷ୍ମଣଙ୍କୁ ମିଥିଳାକୁ ନେଇଥିଲେ । କଠୋର ତପସ୍ୟା ଦ୍ୱାରା ବ୍ରହ୍ମର୍ଷି ହୋଇ ବଶିଷ୍ଠଙ୍କର ସମକକ୍ଷ ହୋଇଥିଲେ । |
| ବିଶ୍ରବା | ଋଷି, ରାବଣର ପିତା । |
| ବିଦ୍ୟୁଜ୍ଜିହ୍ୱ | ରାବଣର ଅନୁଚର । ରାବଣର ଆଦେଶରେ ରାମଙ୍କର ମାୟାମୁଣ୍ଡ ରଚନା କରିଥିଲା । |
| ବିନ୍ଧ୍ୟାଚଳ | ଭାରତର ମଧ୍ୟ ଭାଗରେ ଥିବା ବିଶାଳ ପର୍ବତମାଳା । |
| ବିଭୀଷଣ | ରାବଣର କନିଷ୍ଠ ଭ୍ରାତା; ଧର୍ମଜ୍ଞ, ଲଙ୍କାର ଯୁଦ୍ଧରେ ରାମଙ୍କ ସହିତ ଯୋଗ ଦେଇଥିଲେ । |
| ବେଦବତୀ | ରୂପସୀ ତପସ୍ୱିନୀ, ରାବଣ ବଳାତ୍କାର କରିଥିବାରୁ ତାକୁ ଅଭିଶାପ ଦେଇ ସୀତା ରୂପେ ଜନ୍ମ ହୋଇଥିଲେ । |
| ବୈଦେହୀ | ବିଦେହପୁତ୍ରୀ; ସୀତାଙ୍କର ଅନ୍ୟନାମ । |
| ବୃତ୍ର | ଦେବଲୋକବିଜୟୀ, ଇନ୍ଦ୍ରଙ୍କ ବଜ୍ରରେ ନିହତ ହୋଇଥିଲା । |
| ଭଗୀରଥ | ଦିଲୀପଙ୍କର ପୁତ୍ର; ପୃଥିବୀକୁ ଗଙ୍ଗାଙ୍କୁ ଆଣିଥିଲେ । |
| ଭରତ | ଦଶରଥ ଓ କୈକେୟୀଙ୍କର ପୁତ୍ର । ରାମଙ୍କ ପ୍ରତି ଅଟଳ ଭକ୍ତି ହେତୁରୁ ରାଜସନ୍ନ୍ୟାସୀ ଭାବରେ ଅଯୋଧ୍ୟା ଶାସନ କରୁଥିଲେ । |
| ଭରଦ୍ୱାଜ | ପ୍ରସିଦ୍ଧ ଋଷି; ବନବାସବେଳେ ରାମ ତାଙ୍କର ପ୍ରୟାଗସ୍ଥିତ ଆଶ୍ରମକୁ ଯାଇ ଆଶୀର୍ବାଦ ଭିକ୍ଷା କରିଥିଲେ । |
| ଭାର୍ଗବ | ଭୃଗୁପୁତ୍ର, ପରଶୁରାମଙ୍କର ଅନ୍ୟନାମ |
| ଭୋଗବତୀ | ନାଗରାଜ ବାସୁକିଙ୍କର ପାତାଳସ୍ଥିତ ରାଜଧାନୀ । |
| ଶତଘ୍ନୀ | ଏକ ଜାତୀୟ କ୍ଷେପଣାସ୍ତ୍ର । |
| ଶତ୍ରୁଘ୍ନ | ଦଶରଥ ଓ ସୁମିତ୍ରାଙ୍କର ପୁତ୍ର; ଲକ୍ଷ୍ମଣଙ୍କର ଯମଜ ଭ୍ରାତା । |
| ଶବରୀ | ତପସ୍ୱିନୀ; ରାମ ତାଙ୍କର ଆତିଥ୍ୟ ସ୍ୱୀକାର କରିଥିଲେ । |
| ଶବ୍ଦଭେଦୀ | ଶବ୍ଦଶୁଣି ଯେଉଁ ଅବ୍ୟର୍ଥ ବାଣର ପ୍ରୟୋଗ କରାଯାଏ; ଦଶରଥ ଏହି ବାଣରେ ଋଷିକୁମାରଙ୍କୁ ହତ୍ୟା କରି ଅଭିଶପ୍ତ ହୋଇଥିଲେ । |
| ଶରଭଙ୍ଗ | ପ୍ରସିଦ୍ଧ ଋଷି; ରାମଙ୍କୁ ଦର୍ଶନ କରି ଦେହତ୍ୟାଗ କରିଥିଲେ । |
| ଶୁକ ସାରଣ | ରାବଣର ଦୁଇଜଣ ଦୂତ, ବାନରସେନାକୁ କଳନା କରିବାକୁ ଆସି ବନ୍ଦୀ ହୋଇଥିଲେ । |

| | |
|---|---|
| ଶୂର୍ପଣଖା | ରାବଣର ଭଉଣୀ; ରାମଙ୍କର ପ୍ରଣୟପ୍ରାର୍ଥିନୀ ହୋଇ ସୀତାଙ୍କୁ ଗ୍ରାସ କରିବାକୁ ଆସିବାରୁ ଲକ୍ଷ୍ମଣ ତାର କର୍ଣ୍ଣ ଓ ନାସିକା ଛେଦନ କରିଥିଲେ । |
| ଶୃଙ୍ଗବେରପୁର : | ଅଯୋଧା ଛାଡ଼ି ବନବାସବେଳେ ରାମ ଏଠାରେ ନିଷାଦରାଜ ଗୁହକଙ୍କର ଆତିଥ୍ୟ ଗ୍ରହଣ କରିଥିଲେ । ଆଧୁନିକ ମିର୍ଜାପୁରର ନିକଟ; ଗଙ୍ଗାକୂଳବର୍ତ୍ତୀ ଗ୍ରାମ । |
| ସଗର | ଇକ୍ଷ୍ୱାକୁ ବଂଶର ପ୍ରସିଦ୍ଧ ରାଜା, ଏହାଙ୍କର ପୁତ୍ରମାନେ ପୃଥିବୀ ଖନନ କରି ସମୁଦ୍ରର ବୃଦ୍ଧି ଘଟାଇଥିଲେ । ତେଣୁ ସମୁଦ୍ରର ଅନ୍ୟନାମ ସାଗର । |
| ସଂପାତି | ଗୃଧ୍ରରାଜ, ଜଟାୟୁଙ୍କର ଜ୍ୟେଷ୍ଠଭ୍ରାତା, ରାବଣ ଲଙ୍କାରେ ସୀତାଙ୍କୁ ରଖିଥିବା ସମ୍ବାଦ ବାନରମାନଙ୍କୁ ଦେଇଥିଲେ । |
| ସପ୍ତଶାଳ | ବାଳୀଙ୍କର ବଧପାଇଁ ରାମ ପ୍ରଥମେ ସପ୍ତଶାଳ ଭେଦ କରି ସୁଗ୍ରୀବଙ୍କର ବିଶ୍ୱାସ ଜନ୍ମାଇଥିଲେ । |
| ସ୍ୱୟଂପ୍ରଭା | ତପସ୍ୱିନୀ, ମୟଦାନବଙ୍କ ପ୍ରେୟସୀ ହେମାର ସହଚରୀ । ବାନରମାନଙ୍କୁ ବିଳରୁ ଉଦ୍ଧାର କରିଥିଲେ । |
| ସରମା | ବିଭୀଷଣଙ୍କର ପତ୍ନୀ; ସୀତାଙ୍କର ହିତକାରିଣୀ । |
| ସରଯୂ | ଗଙ୍ଗାର ଉପନଦୀ; ଅନ୍ୟନାମ ଘର୍ଘରା । ଅଯୋଧ୍ୟା ପାଖରେ ପ୍ରବାହିତ, ମାନସ ସରୋବରରୁ ଏହାର ଉତ୍ପତ୍ତି । |
| ସିଦ୍ଧ | ଅଷ୍ଟସିଦ୍ଧି ଲାଭ କରିଥିବା ବା ସ୍ୱର୍ଗୀୟ ପୁରୁଷଗଣ । |
| ସିଂହିକା | ହନୁମାନଙ୍କୁ ସମୁଦ୍ର ଲଂଘନବେଳେ ବାଧା ଦେଇଥିବା ରାକ୍ଷସୀ । |
| ସୁଗ୍ରୀବ | ବାଳୀଙ୍କର ଭ୍ରାତା, କିଷ୍କିନ୍ଧ୍ୟାର ବାନରରାଜ, ରାମଙ୍କର ପରମ ମିତ୍ର । |
| ସୁତୀକ୍ଷ୍ଣ | ପ୍ରସିଦ୍ଧ ଋଷି; ବନବାସବେଳେ ରାମ ତାଙ୍କର ଆଶ୍ରମକୁ ଯାଇଥିଲେ । |
| ସୁମିତ୍ରା | ଦଶରଥଙ୍କ ପତ୍ନୀ; ଲକ୍ଷ୍ମଣ ଓ ଶତ୍ରୁଘ୍ନଙ୍କ ମାତା; ଧର୍ମଦର୍ଶିନୀ । |
| ସୁରସା | ହନୁମାନ ସମୁଦ୍ର ଲଂଘନ କଲାବେଳେ ତାଙ୍କୁ ପରୀକ୍ଷା କରିବାପାଇଁ ଦେବତାମାନେ ଏହି ଦେବୀଙ୍କୁ ପଠାଇଥିଲେ, ନାଗମାତା । |
| ସୁଷେଣ | ସୁଗ୍ରୀବଙ୍କ ଶ୍ୱଶୁର, ବାନରଯୋଦ୍ଧା ଓ ବୈଦ୍ୟ । |
| ହନୁମାନ | ବାୟୁପୁତ୍ର; ସୁଗ୍ରୀବଙ୍କର ମନ୍ତ୍ରୀ; ରାମଙ୍କର ଦୂତ; ଜ୍ଞାନୀ ଓ ବୀରଶ୍ରେଷ୍ଠ; ଅସାଧ ସାଧନକାରୀ ରାମଭକ୍ତ ବାନରବୀର । |
| ହରଧନୁ | ଶିବଙ୍କ ପ୍ରଦତ୍ତ ଧନୁ; କେହି ଏହାକୁ ଉତ୍ତୋଳନ କରିପାରୁ ନ ଥିଲେ । ରାମ ଏହି ଧନୁ ଭଙ୍ଗ କରି ସୀତାଙ୍କ ପାଣି ଗ୍ରହଣ କରିଥିଲେ । |

———o———